



## ମାସିକପତ୍ର ଓ ସମାଲୋଚନା ।

୪ମ ଭାଗ । ବୈଶାଖ ୧୩୦୮ ୧ମ ସଂଖ୍ୟା ।

—:※:—

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ ।

—○:○:○—


ପ୍ରବନ୍ଧମାନଙ୍କ ମତ ସମ୍ବନ୍ଧେ ଲେଖକମାନେ ଦାୟୀ ।



—※—


CUTTACK.

PRINTED BY V. KAR,

AT THE UTKAL SAHITYA PRESS.

1901.

# ନୂତନ ଆୟୋଜନ ।

ସର୍ବସାଧାରଣଙ୍କ ଅବଗତ ନିମିତ୍ତ ପ୍ରକାଶ କରୁଅଛୁ ଯେ ଆମ୍ଭେ ସନ ୧୮୯୬ ମସିହାରୁ ଏହି ସହରର ବାଲୁବଜାରରେ ଡାକ୍ତରୀ ଔଷଧାଳୟ ସ୍ଥାପନ କରି ସୁଯୋଗ୍ୟ ସହିତ ଚିକିତ୍ସା ବ୍ୟବସାୟ ଚଳାଇ ଆସୁଅଛୁଁ । ଆମ୍ଭ ଔଷଧାଳୟରେ ସର୍ବଦା ନୂତନ ଔଷଧ ଡାକ୍ତରୀ ଅସ୍ତ୍ର ବିକ୍ରୟାର୍ଥ ପ୍ରସ୍ତୁତ ଥାଏ, ଅଥଚ ଆମ୍ଭେ ସେ ସମସ୍ତ ଆଶାନୁରୂପ ସୁଲଭ ବିକ୍ରୟ ମୂଲ୍ୟରେ କରିଥାଉଁ । ଯେଉଁମାନେ ଆମ୍ଭ ସହିତ କାରବାର କରିଅଛନ୍ତି ଓ କରୁଅଛନ୍ତି, ସେମାନେ ଆମ୍ଭର ବ୍ୟବହାର କଥା ଉତ୍ତମ-ରୂପେ ଜାଣନ୍ତି । ବୃଥା ବାଗାଡମ୍ବରରେ କିଛି ପ୍ରୟୋଜନ ନାହିଁ ।

ସମ୍ପ୍ରତି ଆମ୍ଭର ହିତାକାଂକ୍ଷୀ କେତେକ ଭଦ୍ରବ୍ୟକ୍ତିଙ୍କ ଅନୁରୋଧରେ ସର୍ବସାଧାରଣଙ୍କୁ ସୁଲଭ ମୂଲ୍ୟରେ ଖାଣ୍ଟି ନୂତନ ଔଷଧ ପ୍ରଚୁର ପରିମାଣରେ ଯୋଗାଇବା ଅଭିପ୍ରାୟରେ ବ୍ୟବସାୟର ପ୍ରସାର ବଢାଇ ଅଛୁଁ । ପୂର୍ବାପେକ୍ଷା ଅଧିକ ପରିମାଣରେ ସର୍ବପ୍ରକାର ପ୍ରୟୋଜନୀୟ ଔଷଧ ଓ ଡାକ୍ତରୀ ଅସ୍ତ୍ର ସର୍ବଦା ପ୍ରସ୍ତୁତ ରଖିବାର ବିହିତ ବନ୍ଦୋବସ୍ତ କରିଅଛୁଁ । ଆମ୍ଭ ସହିତ କାରବାର କଲେ କେହି କୌଣସି ପ୍ରକାରେ ପ୍ରତାରିତ ହେବେ ନାହିଁ । ଆମ୍ଭେ ଅନ୍ୟ ବ୍ୟକ୍ତିଠାରେ ଭାର ଦେଇ ନିଶ୍ଚିନ୍ତ ନରହି ନିଜେ ସମସ୍ତ ବିଷୟ ପୁଙ୍ଖାନୁପୁଙ୍ଖରୂପେ ଦେଖି ବ୍ୟବସ୍ଥା କରି ଥାଉଁ । ଇଚ୍ଛା କଲେ ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କଠାରୁ ପ୍ରଶଂସାପତ୍ର ସଂଗ୍ରହ କରି ସର୍ବସାଧାରଣଙ୍କ ଗୋଚରାର୍ଥ ପ୍ରକାଶ କରିପାରୁଁ । କିନ୍ତୁ ସେଥିରେ ଫଳ କଣ ? କାର୍ଯ୍ୟକାଳରେ ଭଲ ମନ୍ଦ ସବୁ ଆପେ ପ୍ରକାଶ ପାଏ । ଆମ୍ଭେ ଆଉ ଅଧିକ କିଛି ନ କହି ସର୍ବସାଧାରଣଙ୍କୁ ପ୍ରାର୍ଥନା କରୁଅଛୁଁ, ନିଜେ ନିଜେ ପରୀକ୍ଷା କରି ସତ୍ୟ ମିଥ୍ୟା ନିର୍ଣ୍ଣୟ କରନ୍ତୁ ।

ମଫସଲବାସିମାନଙ୍କଠାରୁ ଆମ୍ଭେ ଭି: ପି: ପାର୍ସେଲରେ ଔଷଧାଦି ପଠାଇ ଥାଉଁ । ମାତ୍ର ଅପରିଚିତ ସ୍ଥଳମାନଙ୍କରୁ ଚତୁର୍ଥାଂଶ ମୂଲ୍ୟ ଅଗ୍ରିମ ନ ପାଇଲେ ପଠାଇବାର ନିୟମ ନାହିଁ ।

ଶ୍ରୀ ନଗେନ୍ଦ୍ରନାଥ ଘୋଷ, ଡି, ଏଲ୍, ଏମ୍, ଏସ୍
ସ୍ୱତ୍ୱାଧିକାରୀ
ଘୋଷ ଏଣ୍ଡ ବ୍ରଦର୍ସ ଡ୍ରଗିଷ୍ଟ ହଲ୍, ବାଲୁବଜାର,
କଟକ ।

# ଉତ୍କଳ ସାହିତ୍ୟ ।

ନବଯୁଗର ଅଭିଷେକ ।

୧

କାଳର ହୃଦୟ ଅତଳେ  ନବଯୁଗାରମ୍ଭର
ଏ ବ୍ରାହ୍ମ ମୁହୂର୍ତ୍ତେ ଜାଗ ହେ  ନରନାରୀନିକର ।
ନବୀନ ଯୁଗର ତରୁଣ  ଉଷା-ଅରୁଣ ଜ୍ୟୋତି
ଆଶାର ପ୍ରସନ୍ନ କିରଣ  ଲୀଳାମୟୀ ବିଭୂତି ।
ଅମୃତ ବିଶ୍ବାସ-ଘଟିଣୀ  ଭାବ ଆନନ୍ଦମୟୀ
ଦଶଦିଗେଁ ଭାସି ଆସଇ  ମୋହି ବିଶ୍ବହୃଦୟ ।
ବହଇ ପୁଣ୍ୟର ମଳୟ  ହୃଦ-କମଳ-ବନେ
ଧର୍ମର ଅଜସ୍ର ବିଜୟ—ଶଙ୍ଖ ବାଜେ ସଘନେ ।
ସେ ମଙ୍ଗଳଶଙ୍ଖଘୋଷଣା  ପୁଣ୍ୟମୟ ଉଦାର
ନବନବ ଅର୍ଥେ ପୂରିତ  ନବଗୀତ ଝଙ୍କାର ।

୨

ଜଗତର ସିଂହଦୁଆରେ  ଜ୍ଞାନ-ଅର୍ଣ୍ଣବତଟରେ
ବିଜ୍ଞାନର ରତ୍ନବେଦିକା  ଦେଖ ସଜେ ରୁଚିରେ ।
ତହିଁ ସିଂହାସନ ପୁଣ୍ୟର  ସ୍ବର୍ଣ୍ଣବର୍ଣ୍ଣେ ରଞ୍ଜିତ
ତଥିପରେ ବସେ ନବୀନ  ଯୁଗ ଦେବାଶ୍ରିତ ।
ମସ୍ତକେ ଶୋଭଇ କିରୀଟ  ପ୍ରେମମଣିଖଚିତ
ହସ୍ତେ ରାଜଦଣ୍ଡ ନ୍ୟାୟର  ମହାମହିମାନ୍ବିତ ।
ସ୍ବର୍ଣ୍ଣରାଜଛତ୍ର ଗଗନ  ଧରିଅଛି ଉଲ୍ଲାସେ
ଆଶାର ବିଜୟ କେତନ  ଉଡୁଅଛି ଆକାଶେ ।
ଯୁଗ-ଅଭିଷେକ-ଉତ୍ସବେ  ମହାନନ୍ଦଧ୍ବନି
ବାଜଇ ସେ ସିଂହଦୁଆରେ  ପୂରି ସର୍ବ ଅବନୀ ।

୩

ଜଗତର ରାଜସଭାରେ  ଅଭିଷେକ ଯୁଗର
ଦେବେ ସ୍ବର୍ଗମର୍ତ୍ତ୍ୟରେ ପଢ଼ନ୍ତି  ଆଶୀର୍ବାଦମନ୍ତ୍ରର ।
ନବଯୁଗ-ରାଜଲଲାଟେ  ରାଜଟୀକା ଭାସ୍ବର
ନିଜେ ଅର୍ପନ୍ତି ଆଦରେ  କୋଟିବ୍ରହ୍ମାଣ୍ଡେଶ୍ବର ।
ରବି ଶଶୀ ଗ୍ରହ ନକ୍ଷତ୍ର  ସେହି ମହାସଭାରେ
ନବଯୁଗକଣ୍ଠେ ଲମ୍ବାନ୍ତି  ବରମାଲୋପହାରେ ।
ଏକତାନେ ବିଶ୍ବକବିଏ  ଧରି ଅମରବାଣୀ
ଗାଉଛନ୍ତି ଅଭିନନ୍ଦନ--  ଗୀତ ଅମୃତ-ଜଣା ।
"ଜୟଜୟ ଯୁଗ ନବୀନ  ଜୟ ଯୁଗ-ସମ୍ରାଟ,
ବିଧାତାର ପୁଣ୍ୟ ତେଜରେ  ଜ୍ୟୋତିର୍ମୟ ଲଲାଟ ।
ପାପ-ଭାରାକ୍ରାନ୍ତ ଧରଣୀ  କାନ୍ଦୁଅଛି ବିକଳେ
ପାପ ବଂଶ ଧ୍ବଂସ କରହେ  ମହାପୁଣ୍ୟର ବଳେ ।
ଜଣାଅ ମାନବସନ୍ତାନେ  ଉଚ୍ଚ କୁଳ ତାହାର
ସେ ଯେ ବ୍ରହ୍ମପୁତ୍ର ଏ ବାର୍ତ୍ତା କର ଭବେ ବିସ୍ତାର ।
ବ୍ରହ୍ମପୁତ୍ର ବ୍ରହ୍ମତନୟା  ନରନାରୀନିକର,
କର ଏ ସମ୍ବାଦ ଘୋଷଣା  ସତ୍ୟ ଶିବ ସୁନ୍ଦର ।
ସ୍ବର୍ଗର ପ୍ରେମ ଆଲୋକ  ଦଶ ଦିଗେ ପ୍ରକାଶୁ
ବିଧାତାର ପୁଣ୍ୟ-ଆନନ୍ଦ-ସ୍ରୋତେ ଜଗତ ଭାସୁ ।"

ଶ୍ରୀ ମଧୁସୂଦନ ରାଓ ।

## ଆତ୍ମକଥା ।

ପୂର୍ବ ପ୍ରଥାନୁସାରେ ଆମ୍ଭେମାନେ ବର୍ଷାରମ୍ଭରେ 'ଆତ୍ମକଥା' ଲେଖିବାକୁ ପ୍ରବୃତ୍ତ ହେଲୁଁ ସତ୍ୟ, ମାତ୍ର କଣ ଲେଖିବୁଁ, କିଛି ସ୍ଥିରକରି ପାରୁ ନାହୁଁ ! କେଉଁଠାରୁ ଆରମ୍ଭ କରିବୁଁ, କେଉଁଠାରେ ଶେଷ କରିବୁଁ ? ପୁଣି କାହା ପାଖରେ କହିବୁଁ, କିଏ ବା ଶୁଣିବ ? ଆମ୍ଭେମାନେ ସବୁ ଦେଖି ଅଛୁଁ, ଶୁଣିଅଛୁଁ, ବୁଝିଅଛୁଁ, ଭୋଗିଅଛୁଁ । ଆଉ ଆମ୍ଭମାନଙ୍କ ବକ୍ତବ୍ୟ ମଧ୍ୟ ଅନେକ ଥର ଅନେକ ଭାବରେ ବ୍ୟକ୍ତ କରିଅଛୁଁ । ଦେଖିଅଛୁଁ, ଗ୍ରାହକମାନଙ୍କ ମଧ୍ୟରୁ ଅଧିକାଂଶ ଆମ୍ଭମାନଙ୍କ କଥାରେ କର୍ଣ୍ଣପାତ କରିବାକୁ ଏକାନ୍ତ ନାରାଜ ! ଆମ୍ଭେମାନେ ଗତବର୍ଷ କାଳ ଏହିପରି ବହୁ ସୁଶିକ୍ଷିତ, ସମ୍ଭ୍ରାନ୍ତ, ସମ୍ପନ୍ନ ଉତ୍କଳସନ୍ତାନଙ୍କର ଅନାଦର, ଉପେକ୍ଷା, ଅବଜ୍ଞା ଯଥେଷ୍ଟ ପରିମାଣରେ ସହ୍ୟ କରିଅଛୁଁ । ବର୍ତ୍ତମାନ ଆମ୍ଭମାନଙ୍କର ଅନେକ ମଧୁର ଭ୍ରାନ୍ତ ବିଦୂରିତ ହୋଇଅଛି । ଯେଉଁମାନେ ନିତାନ୍ତ ବଡ଼ଲୋକ, ନିତାନ୍ତ ବିଜ୍ଞ, ଆମ୍ଭେମାନେ ଆଉ ଅଯାଚିତ ଭାବରେ ସେମାନଙ୍କ ଦ୍ୱାରସ୍ଥ ହେବୁଁ ନାହିଁ । ସେମାନଙ୍କୁ ବିରକ୍ତ କରିବୁଁ ନାହିଁ, ସେମାନଙ୍କ ସୁଖର ନିଦ୍ରାରେ ବ୍ୟାଘାତ ଜନ୍ମାଇବୁଁ ନାହିଁ । ଜଣେ ସୁବିଖ୍ୟାତ ଦେଶହିତୈଷୀ ଉତ୍କଳସନ୍ତାନଙ୍କ କଥା ଆଜି ବିଶେଷଭାବରେ ମନେ ପଡୁଅଛି । ସେ କହିଲେ, "ଓଡ଼ିଶାରେ ଅନେକ ବଡ଼ ବଡ଼ ଅଭାବ ରହିଅଛି, ସେ ସବୁର ତୁଳନାରେ 'ଉତ୍କଳ ସାହିତ୍ୟ' କେଉଁଠି ଲାଗେ ? ଆଉ ଏହାଦ୍ୱାରା ଦେଶର ବିଶେଷ ଉପକାର ବା କଣ ସାଧିତ ହେବ ?" ଯଥାର୍ଥ କଥା ! ଏଥି ଉପରେ ଆଉ ଯୁକ୍ତି କଣ ? ଏହିତ ସାଧାରଣ ଅବସ୍ଥା । ଏଥିରେ ଯେ ଆମ୍ଭେମାନେ ପତ୍ରିକାର ନାନାବିଧ ଉନ୍ନତିର ଆକାଂକ୍ଷା ହୃଦୟରେ ଏତେ ଦିନଯାଏ ପୋଷଣ କରି ଆସିଅଛୁଁ, ଏହା କେବଳ ଆମ୍ଭମାନଙ୍କର ନିର୍ବୋଧତାର ପରିଚାୟକ ! ବର୍ଷାରମ୍ଭରେ ଆମ୍ଭେମାନେ 'ଉତ୍କଳ ସାହିତ୍ୟ'ର ଆକାର ଓ ବେଶଭୂଷାର କିଞ୍ଚିତ୍ ପରିବର୍ତ୍ତନ ସାଧନ କରିବାକୁ ମନସ୍ଥ କରିଥିଲୁଁ । ବର୍ତ୍ତମାନ ସେ ସଙ୍କଳ୍ପ ପରିତ୍ୟାଗ କରିଅଛୁଁ । ବର୍ତ୍ତମାନ ଅବସ୍ଥାରେ ଦୀନବେଶହିଁ ସ୍ୱାଭାବିକ ଓ ସୁରୁଚିସଙ୍ଗତ । ଏହି ଦୀନହୀନ ବେଶରେ ଏତେଦିନ ଯାଏ 'ଉତ୍କଳ ସାହିତ୍ୟ' ଯେଉଁ ଉଦାରଚେତା ଉତ୍କଳସନ୍ତାନମାନଙ୍କ ନିକଟରେ ଆଦର ଲାଭ କରିଅଛି, ଆଜି ମଧ୍ୟ ସେମାନଙ୍କ ନିକଟରେ ଅନାଦୃତ ହେବ ନାହିଁ, ଆମ୍ଭମାନଙ୍କର ଏହା ଦୃଢ଼ ବିଶ୍ୱାସ । ସେମାନଙ୍କ ସଂଖ୍ୟା ଅଳ୍ପହେଲେ ସୁଦ୍ଧା ଆମ୍ଭେମାନେ ସେହିମାନଙ୍କଦ୍ୱାରା ପ୍ରୋତ୍ସାହିତ ହୋଇ ଏ ପର୍ଯ୍ୟନ୍ତ କର୍ମକ୍ଷେତ୍ରରେ ଅବଚଳିତ ରହିଅଛୁଁ । ସେହିମାନେ 'ଉତ୍କଳ ସାହିତ୍ୟ'ର ଜୀବନରକ୍ଷା କରିଅଛନ୍ତି, ଆମ୍ଭମାନଙ୍କର ଯାହା କିଛି ଅଳ ଅର୍ଦ୍ଦୋଳ ସେହିମାନଙ୍କ ନିକଟରେ । ଆଉ ଅଧିକ କିଛି କହିବାର ନାହିଁ । ବର୍ତ୍ତମାନ ଶୁଭବିଧାତା ସିଦ୍ଧିଦାତା ପ୍ରଭୁଙ୍କ ଶ୍ରୀଚରଣ ତଳେ ଭକ୍ତି, ପ୍ରୀତି, କୃତଜ୍ଞତା ଅର୍ପଣ କରି ଏବଂ ତାଙ୍କର କୃପା ଓ ଆଶୀର୍ବାଦ ଉପରେ ଏକାନ୍ତ ନିର୍ଭର ସ୍ଥାପନ କରି ଆମ୍ଭେମାନେ ପଞ୍ଚମ ବର୍ଷର କାର୍ଯ୍ୟ ଆରମ୍ଭ କରୁ ଅଛୁଁ ।

## ଧର୍ମବନ୍ଧନ ।

ବ୍ରହ୍ମଜିଜ୍ଞାସା ମାନବ ଅନ୍ତରରେ କେତେକାଳ ହେଲା କେଉଁ ସମୟରେ ଅଙ୍କୁରିତ ହୋଇଅଛି, ତାହା ନିର୍ଣ୍ଣୟ କରିବା ଦୁଃସାଧ୍ୟ । ମାନବ ଯେଉଁ ସମୟରେ ପଶୁତ୍ୱ ଅତିକ୍ରମ କରି ମନୁଷ୍ୟତ୍ୱର ଦ୍ୱାରଦେଶରେ ଦଣ୍ଡାୟମାନ ହୋଇ ଅନୁଭବ-ପରୀକ୍ଷାରୁ ସ୍ୱୀୟ ଆତ୍ମାକୁ ପୃଥକ୍‌ରୂପେ ଜାଣି ପାରିଲା, ସେତେବେଳେ ଯେ ତାହାର ପ୍ରାଣରେ କୌଣସି ଜିଜ୍ଞାସାର ଉଦୟ ହୋଇଅଛି ତାହା ଠିକ୍ କହାଯାଇ ନ ପାରେ ।

ଜିଜ୍ଞାସା ସନ୍ଦେହାତ୍ମିକା । ସ୍ୱୀୟ ଜ୍ଞାନର ସୀମା ଦର୍ଶନ ବ୍ୟତୀତ ସନ୍ଦେହ ଉପସ୍ଥିତ ହୋଇ ପାରେ ନାହିଁ । ଯେ ପର୍ଯ୍ୟନ୍ତ ସନ୍ଦେହ ଉଦିତ ହୋଇ ନାହିଁ, ସେ ପର୍ଯ୍ୟନ୍ତ ଜିଜ୍ଞାସା ମଧ୍ୟ ଜାତ ହୁଏ ନାହିଁ । ସେଥିପାଇଁ ଆଦିମ ଅବସ୍ଥାରେ ଯେତେବେଳେ ମାନବର ଦେହାତ୍ମ-ବୁଦ୍ଧି ପ୍ରବଳ ଥିଲା, ଗତିବିଶିଷ୍ଟ ଓ କାର୍ଯ୍ୟଶୀଳ ବସ୍ତୁମାନଙ୍କୁ ସ୍ୱତନ୍ତ୍ର ସ୍ୱତନ୍ତ୍ର ଜୀବ ବୋଲି ତାହା ନିକଟରେ ପ୍ରତୀତ ହେଉଥିଲା, ପ୍ରତ୍ୟେକ ବସ୍ତୁ କର୍ତ୍ତୃତ୍ୱ-ଶକ୍ତି-ସମ୍ପନ୍ନ ବୋଲି ବୋଧ ହେଉଥିଲା, କାର୍ଯ୍ୟର କାରଣ ସମ୍ମୁଖରେ ବର୍ତ୍ତମାନ ଥିଲା, ସେତେବେଳେ ତାହାର ଜ୍ଞାନ ପ୍ରତିହତ ହୋଇ ନାହିଁ, କାରଣାନୁସନ୍ଧାନର ପ୍ରୟୋଜନ ହୋଇ ନାହିଁ—ସୁତରାଂ ଜିଜ୍ଞାସା ମଧ୍ୟ ଜାତ ହୋଇ ନାହିଁ । ବାୟୁ, ଅଗ୍ନି ସମସ୍ତେ ଜୀବନ୍ତ ଓ ସ୍ୱ-ଇଚ୍ଛାରେ ପରିଚାଳିତ । ଦେହ ଯେତେବେଳେ ଜୀବନ୍ତ, ଦେହହିଁ ଆତ୍ମା । ସେତେବେଳଯାଏ ଦେହ ଓ ଆତ୍ମାର ପାର୍ଥକ୍ୟ ଜ୍ଞାନ ଜନ୍ମି ନାହିଁ । କିନ୍ତୁ ଯେତେବେଳେ ଦେହାତ୍ମ-ବୁଦ୍ଧିର ଧ୍ୱଂସ ହେଲା, ମାନବ ଯେତେବେଳେ ଆତ୍ମାକୁ ଦେହାତିରିକ୍ତ କିନ୍ତୁ ଦେହଯୁକ୍ତ ବୋଲି ବୁଝିଲା, ସେତେବେଳେ ଜଳ, ସ୍ଥଳ, ଶୂନ୍ୟ ଦେହାଭିମାନୀ ଦେବତାରେ ପୂର୍ଣ୍ଣ ହେଲା । ଆତ୍ମା ପରିଚାଳକ, ଦେହ ପରିଚାଳିତ । ଅଗ୍ନିରେ, ବାୟୁରେ ବିଭିନ୍ନ ଅଧିଷ୍ଠାତ୍ରୀ ଦେବତା ସ୍ୱୀକୃତ ହେଲେ, ଅଗ୍ନି ବର୍ତ୍ତମାନ ଦେହ—ଯନ୍ତ୍ର; ଦେବତା ଭିତରେ, ସେ ଯନ୍ତ୍ରଚାଳକ । ଆପଣା ଭିତରର ପରିବର୍ତ୍ତନ ସଙ୍ଗେ ସଙ୍ଗେ ବହିର୍ଜଗତରେ ଏହି ମହାପରିବର୍ତ୍ତନ ସଂଘଟିତ ହେଲା । ଏହା ଯେ କୌଣସି ଯୁକ୍ତି-ପରୀକ୍ଷାର ଫଳ ତାହା ନୁହେ; କିନ୍ତୁ ଶିଶୁ ଯେପରି ସମସ୍ତ ବସ୍ତୁକୁ ସ୍ୱୀୟଭାବରେ ଅନୁରଞ୍ଜିତ ଦେଖେ, ସମସ୍ତ ବସ୍ତୁକୁ ଆପଣାର ସମାନଗୁଣବିଶିଷ୍ଟ ବୋଲି ମନେ କରେ, ସ୍ୱଭାବତଃ ଏବଂ ସହଜରେ ସେ ଏହିପରି କରେ, ଶୈଶବରେ ମାନବଜାତି ମଧ୍ୟ ତାହାହିଁ କରିଥିଲା, ନିଃସଙ୍କୋଚରେ ସ୍ୱୀୟ ଭାବ ଜଗତରେ ଆରୋପ କରିଥିଲା । ସେ ଅବସ୍ଥାରେ ତାହାର ମନରେ କୌଣସି ଯୁକ୍ତି ତର୍କ ଉପସ୍ଥିତ ହୋଇ ନାହିଁ । ସୁତରାଂ ଏଠାରେ ମଧ୍ୟ କୌଣସି ସନ୍ଦେହ ଜାତ ହୋଇ ନାହିଁ । ଦୃଶ୍ୟର ଅନ୍ତରାଳରେ ଅଦୃଶ୍ୟକୁ ଅନ୍ୱେଷଣ କରିବାର କୌଣସି ଭାବ ନାହିଁ, ସେ ଆପେ ଆପଣାଠାରେ ପରିତୃପ୍ତ, ପ୍ରତ୍ୟକ୍ଷ ଯେନ ସନ୍ତୁଷ୍ଟ—ଏଥିରେହିଁ ତାହାର ଜ୍ଞାନ ଓ ଚିନ୍ତା ପର୍ଯ୍ୟବସିତ । ଅତିରିକ୍ତ କୌଣସି ପଦାର୍ଥର ଆକାଂକ୍ଷା ତାହାର ଜନ୍ମି ନାହିଁ ।

କିନ୍ତୁ ଯେତେବେଳେ ଜଡବସ୍ତୁର ଜ୍ଞାନ ପରିସ୍ଫୁଟ ହେଲା, ଯେତେବେଳେ ମାନବ ଦେଖିଲା ଯେ ସକଳ ପଦାର୍ଥ ଆତ୍ମଶକ୍ତି-ସମ୍ପନ୍ନ ବା ଇଚ୍ଛାଶୀଳ ନୁହେଁ, ସକଳ ଦେହ ଆତ୍ମା-ବିଶିଷ୍ଟ ନୁହେଁ, ସେତେବେଳେ ତାହାର ପୂର୍ବ ସଂସ୍କାର ପଦେ ପଦେ ବାଧା ପାଇଲା । ବାହ୍ୟ ଜଗତରେ ସମସ୍ତ କାର୍ଯ୍ୟର ସମ୍ୟକ୍ ମୀମାଂସା ନ ପାଇ ମାନବ ସୃଷ୍ଟିର ଅନ୍ତରାଳରେ ମୀମାଂସାର ଅନ୍ୱେଷଣରେ ପ୍ରବୃତ୍ତ ହେଲା । ପୁଣି ସ୍ୱୀୟ ଅନ୍ତରଅଡକୁ ଦୃଷ୍ଟିପାତ କରି ମାନବ ଯେତେବେଳେ ଦେଖିଲା ଯେ ସେଠାରେ

ମଧ୍ୟ ସକଳ କାର୍ଯ୍ୟ ସ୍ୱୀୟ ଇଚ୍ଛାନୁଯାୟୀ ସମ୍ପନ୍ନ ହେଉ ନାହିଁ, ଅନ୍ତର ବୁଝିଲା ଯେ ତାହାର ଶକ୍ତି ସକଳ କାର୍ଯ୍ୟ କରି ପାରେ ନାହିଁ ବା ତାହାର ଜ୍ଞାନ ସମୁଦାୟ ବିଷୟର ମୀମାଂସା କରିବାକୁ କ୍ଷମ ନୁହେ, ସେତେବେଳେ ପ୍ରଥମ ଜିଜ୍ଞାସାର ଆବିର୍ଭାବ ବୋଲି ମନେହୁଏ । ମାନବ ସେତେବେଳେ ଜ୍ଞାତ ରାଜ୍ୟକୁ ପରିତ୍ୟାଗ କରି ଅଜ୍ଞାତ ରାଜ୍ୟ ଆଡ଼କୁ ଅଗ୍ରସର ହେବାକୁ ଲାଗିଲା । ଏହି ଯେ ଦୃଶ୍ୟକୁ ପରିତ୍ୟାଗ କରି ଅଦୃଶ୍ୟର ଅନୁସନ୍ଧାନ, ଏହାକୁ ଆମ୍ଭେମାନେ ବ୍ରହ୍ମଜିଜ୍ଞାସା ନାମରେ ଅଭିହିତ କରୁଅଛୁଁ । ଏହା ଯେତେ ସ୍ଥୂଳ ହେଉ ପଛକେ, ଏହାହିଁ ମାନବର ପରିଣତ ବ୍ରହ୍ମଜ୍ଞାନର ପ୍ରଥମ ସୋପାନ । ଏହି କାରଣାନୁସନ୍ଧାନହିଁ ବ୍ରହ୍ମଜ୍ଞାନର ଭିତ୍ତି । ଏହି ଅନୁସନ୍ଧିତ୍ସା ପ୍ରବୃତ୍ତିହିଁ ମାନବର ମାନବତ୍ୱ । ବ୍ରହ୍ମଜ୍ଞାନ ଏହି ଅନୁସନ୍ଧାନର ଫଳ । ମାନବ ବ୍ରହ୍ମଜ୍ଞାନ ଲାଭକଲା, କିନ୍ତୁ ତାହାର ଚିନ୍ତା ବିଶ୍ରାମ ଲଭିଲା ନାହିଁ । ମାନବ-ଚିନ୍ତା ବିଭିନ୍ନ ପଥ ଅବଲମ୍ବନ କରି ନାନା ସ୍ରୋତରେ ପ୍ରବାହିତ ହେବାକୁ ଲାଗିଲା, ନାନା ତତ୍ତ୍ୱ ତାହା ନିକଟରେ ଉଦ୍ଘାଟିତ ହେଲା । ଚିନ୍ତାର ସ୍ୱଭାବ ଏହି ଯେ ତାହା କେବେହେଁ ଏକ ସ୍ଥାନରେ ରହେ ନାହିଁ । ଏହା ସର୍ବଦା ଅଗ୍ରସର ହେଉଅଛି ଓ ପରିବର୍ତ୍ତନ ଆନୟନ କରୁଅଛି । ସୁତରାଂ ଚିନ୍ତା-ରାଜ୍ୟ ଜଳସ୍ରୋତ ଭଳି ତରଙ୍ଗାୟିତ । ଏହି ସ୍ରୋତ ବିଭିନ୍ନ ଦେଶରେ ବିଭିନ୍ନ ସମୟରେ ଭିନ୍ନ ଭିନ୍ନ ଗତି ପ୍ରାପ୍ତ ହୋଇଅଛି । ଏପରି କି, ଏକ ସମୟରେ ଦୁଇଗୋଟି ପ୍ରବାହ ଠିକ୍ ବିପରୀତ ପନ୍ଥା ଅବଲମ୍ବନ କରି ଏକାବେଳକେ ବିପରୀତ ସିଦ୍ଧାନ୍ତରେ ଉପନୀତ ହୋଇଅଛି । "ନାସୌ ମୁନିର୍ଯସ୍ୟ ମତଂ ନ ଭିନ୍ନଂ ।" କେତେ ମୁନି କେତେ ସମୟରେ ଭୀଷଣ ଆବର୍ତ୍ତ ଉତ୍ପାଦନ କରି ଏ ରାଜ୍ୟକୁ ଆକୁଳିତ କରିଅଛନ୍ତି ।

ମାନବ ଆଦିମାବସ୍ଥାରେ ସମସ୍ତ ପଦାର୍ଥକୁ ଆତ୍ମାନୁରୂପ କଳ୍ପନା କରୁଥିଲା । ପ୍ରାଚୀନ ଗ୍ରୀସର ଇତିହାସରେ ଦେଖାଯାଏ ଯେ ସେ ସ୍ଥାନର ପଣ୍ଡିତଗଣ ଜଡ଼ବସ୍ତୁର ଆକର୍ଷଣ ଓ ବିପ୍ରକର୍ଷଣର କାରଣରୂପେ ବସ୍ତୁ ସକଳର ରାଗ ଓ ଦ୍ୱେଷକୁ ନିର୍ଦ୍ଦେଶ କରିଅଛନ୍ତି । ସେମାନଙ୍କ ନିକଟରେ ଜଡ଼ର କାର୍ଯ୍ୟଶୀଳତା ନାହିଁ । ଆମ୍ଭମାନଙ୍କ ଦେଶରେ ମଧ୍ୟ ଦେଖୁଅଛୁଁ ଋଷିଗଣ ବି ଜଡ଼ କି ଚେତନ ସମସ୍ତଙ୍କର ଅଧିଷ୍ଠାତ୍ରୀ ଦେବତା କଳ୍ପନା କରିଅଛନ୍ତି । ତାହା ନ ହେଲେ ଜଡ଼-ଜଗତର କାର୍ଯ୍ୟ ବ୍ୟାଖ୍ୟାତ ହୋଇପାରେ ନାହିଁ । ଆତ୍ମା ଛଡ଼ା ଆଉ କାହାରି କାର୍ଯ୍ୟଶକ୍ତି ସେମାନେ ଦେଖି ପାରି ନାହାନ୍ତି । ବର୍ତ୍ତମାନ ଯୁଗର ଚିନ୍ତା କିନ୍ତୁ, ଠିକ୍ ବିପରୀତମାର୍ଗଗାମୀ । ସେ ଯାହା ହେଉ, ଚିନ୍ତା ବିଭିନ୍ନସ୍ରୋତରେ ପ୍ରବାହିତ ହୋଇ ମାନବାତ୍ମା ନିକଟରେ ଶତ ସିଦ୍ଧାନ୍ତ ଆଣି ଉପସ୍ଥିତ କଲା । ସେତେବେଳେ ତାହାର ହୃଦୟ ନାନା ସନ୍ଦେହରେ ଆନ୍ଦୋଳିତ ହେବାକୁ ଲାଗିଲା । ଏହି ଆଲୋଡ଼ନରେ ପତିତ ହୋଇ ହୃଦୟର ଅନ୍ତସ୍ତଳରୁ ପ୍ରଶ୍ନ ଉତ୍ଥିତ ହେଲା :—

"କିଂ କାରଣଂ ବ୍ରହ୍ମ କୁତଃ ସ୍ମ ଜାତା
ଜୀବାମ କେନ କ୍ୱ ଚ ସମ୍ପ୍ରତିଷ୍ଠାଃ ।
ଅଧିଷ୍ଠିତାଃ କେନ ସୁଖେତରେଷୁ
ବର୍ତ୍ତାମହେ ବ୍ରହ୍ମବିଦୋ ବ୍ୟବସ୍ଥାଂ ।
କାଳଃ ସ୍ୱଭାବୋ ନିୟତିର୍ଯଦୃଚ୍ଛା
ଭୂତାନି ଯୋନିଃ ପୁରୁଷ ଇତି ଚିନ୍ତ୍ୟଂ ।"
ଶ୍ୱେତାଶ୍ୱତରଃ ।

ବ୍ରହ୍ମ କି କାରଣ ? ଆମ୍ଭେମାନେ କେଉଁଠାରୁ ଜନ୍ମିଅଛୁଁ ? କିପରି ଜୀବନଧାରଣ କରିବାକୁ କ୍ଷମ ହେଉଅଛୁଁ ? କେଉଁଠାରେ ଥାଉଁ ? ହେ ବ୍ରହ୍ମବିଦ୍‌ଗଣ, କି ହେତୁରୁ ଆମ୍ଭେମାନେ ସୁଖ ଦୁଃଖ ବିଷୟରେ ବ୍ୟବସ୍ଥା କରି ବର୍ତ୍ତମାନ ଥାଉଁ ? କାଳ, ପଦାର୍ଥମାନଙ୍କର ସ୍ୱଭାବ, ନିୟତି, ଆକସ୍ମିକ ଘଟନା, ଭୂତସମୂହ, ଅଥବା ପୁରୁଷ, କି କାରଣରୂପେ ଚିନ୍ତନୀୟ ?

ଏହି ପ୍ରଶ୍ନରେ ଆମ୍ଭେମାନେ ଶ୍ୱେତାଶ୍ୱତରର ଜଟିଳତାର ବେଶ୍ ଆଭାସ ପାଉଅଛୁଁ। ଏଠାରେ ବହୁମତର ଅବତାରଣା ହୋଇଅଛି। ଏହି ମତ-ଦ୍ୱନ୍ଦ୍ୱରେ ଆତ୍ମା ଯେତେବେଳେ ନିପୀଡ଼ିତ, ସେତେବେଳେ ଋଷି ମୀମାଂସା କଲେ :—

"ସଂଯୋଗ ଏଷାଂ ନ ତ୍ୱାତ୍ମଭାବା-
ଦାତ୍ମାପ୍ୟନୀଶଃ ସୁଖଦୁଃଖହେତୋଃ।
ତେ ଧ୍ୟାନଯୋଗାନୁଗତା ଅପଶ୍ୟନ୍
ଦେବାତ୍ମଶକ୍ତିଂ ସ୍ୱଗୁଣୈର୍ନିଗୂଢ଼ାଂ।
ଯଃ କାରଣାନି ନିଖିଳାନି ତାନି
କାଳାତ୍ମଯୁକ୍ତାନ୍ୟଧିତିଷ୍ଠତ୍ୟେକଃ।"
ଶ୍ୱେତାଶ୍ୱତରଃ।

ଏମାନଙ୍କର ସଂଯୋଗ କାରଣ ନୁହେ, କାହିଁକି ନା ସଂଯୋଗ ଆତ୍ମା-ସାପେକ୍ଷ ଏବଂ ଜୀବାତ୍ମା ମଧ୍ୟ ସୁଖଦୁଃଖର ଅଧୀନ ବୋଲି ସୃଷ୍ଟ୍ୟାଦି କାର୍ଯ୍ୟରେ ଅସମର୍ଥ।

ଧ୍ୟାନଯୋଗପରାୟଣ ଋଷିଗଣ ସ୍ୱଗୁଣ ସମ୍ବନ୍ଧ-ଦ୍ୱାରା ପ୍ରଚ୍ଛନ୍ନ ଦେବାତ୍ମ-ଶକ୍ତି ଦର୍ଶନ କରିଅଛନ୍ତି। ସେହି ଅଦ୍ୱିତୀୟ ଦେବତା କାଳ ଓ ଆତ୍ମା-ସମ୍ବଳିତ ସ୍ୱଭାବ ପ୍ରଭୃତି ପୂର୍ବୋକ୍ତ କାରଣସମୂହକୁ ନିୟମିତ କରନ୍ତି।

କିନ୍ତୁ ସମସ୍ତଙ୍କ ମୀମାଂସା ଏକ ହେଲା ନାହିଁ। କେହି କେହି କାଳ ଓ ସ୍ୱଭାବ ପ୍ରଭୃତିକୁ କାରଣ ବୋଲି ନିର୍ଦ୍ଦେଶ କଲେ। "ଈଶ୍ୱରାସିଦ୍ଧେଃ" ଧ୍ୱନି ଉତ୍ଥିତ ହେଲା। କିନ୍ତୁ ଏ ଧ୍ୱନି ଦୀର୍ଘକାଳ ସ୍ଥାୟୀ ହେଲା ନାହିଁ, ଅନତିକ୍ରମଣୀୟ ବ୍ରହ୍ମଜ୍ଞାନ ପୁଣି ଆସି ଉପନୀତ ହେଲା। ଇତିହାସରେ ଏପରି ଭୂରି ଭୂରି ଦୃଷ୍ଟାନ୍ତ ରହିଅଛି। କିନ୍ତୁ ଇତିହାସ ଅନୁସରଣ କରିବା ଆମ୍ଭମାନଙ୍କର ଉଦ୍ଦେଶ୍ୟ ନୁହେ — ଉଦ୍ଦେଶ୍ୟ କେବଳ ଈଶ୍ୱର ବିଶ୍ୱାସର ଅନତିକ୍ରମଣୀୟତା ପ୍ରତିପନ୍ନ କରିବା। ସେହି ଉଦ୍ଦେଶ୍ୟସାଧନର ପଥରେ ସର୍ବପ୍ରଧାନ ବିଘ୍ନ ବର୍ତ୍ତମାନ ଅଜ୍ଞେୟତାବାଦ, କାରଣ ସ୍ପଷ୍ଟ ନାସ୍ତିକ୍ୟବାଦ ବର୍ତ୍ତମାନ ଦର୍ଶନ-ଜଗତରେ ବିଦ୍ୟମାନ ନାହିଁ ବୋଇଲେ ଅତ୍ୟୁକ୍ତି ହେବ ନାହିଁ। ସୁତରାଂ ପ୍ରଥମରେ ଏହି ମତର ନିରସନ କରି ଆମ୍ଭେମାନେ ପଥ ପରିଷ୍କାର କରିବୁଁ।

କ୍ରମଶଃ—

ଶ୍ରୀ ଧୀରେନ୍ଦ୍ରନାଥ ଚୌଧୁରୀ।

---

## ଭାରତର କୁଟୀରେ ସନ୍ଧ୍ୟା। (୪)

ଆମ୍ଭମାନଙ୍କ ଗ୍ରାମର ଶ୍ରୀଯୁକ୍ତ ଭଗୀରଥି ସାମନ୍ତ-ରାୟ ସହରରେ ଅନେକ ଦିନ ହେଲା ମୁକ୍ତ୍ୟାରି କରନ୍ତି। ଆଜିକାଲି ଧରଣର ସେ ପାଶକରା ମୁକ୍ତ୍ୟାର ନୁହନ୍ତି। ସେ ଜଣେ ମରହଟ୍ଟୀ। ବର୍ଷେ ଦୁଇ ବର୍ଷକେ ଥରେ ଗ୍ରାମକୁ ଆସନ୍ତି। ତେବେ ପୁରା ସହରରେ ସପରିବାର ବାସ କରିବାର ସମ୍ପୂର୍ଣ୍ଣ ବିରୋଧୀ। ଜାତିରେ ବ୍ରାହ୍ମଣ; ବଡ଼ କର୍ମ-ନିଷ୍ଠ, ନିତ୍ୟ ଦୁଇ ଘଣ୍ଟା ପୂଜାପୂଜି ନ କଲେ ଜଳଗ୍ରହଣ କରିବେ ନାହିଁ। ନିତାନ୍ତ ପରୋପକାରୀ ଦାୟରେ ପଡ଼ିଲେ ମିଥ୍ୟା କହିବାକୁ ବା ଯୋଗାଡ଼ କରିବାକୁ କୁଣ୍ଠିତ ହୁଅନ୍ତି ନାହିଁ। ଆମ୍ଭେମାନେ କହୁଁ 'ପରୋପକାରଂ ସ୍ୱର୍ଗାୟ।' ('ପର' ଅର୍ଥ ଆପଣାକୁ ଛାଡ଼ି ଗ୍ରାମର ପରିବାର ବର୍ଗ; 'ଉପକାର' ଭରଣପୋଷଣ) ଦୁର୍ଜନମାନେ ଦୋଷାନ୍ୱେଷୀ। ସେ ଯାହା ହେଉ, ସାମନ୍ତରାୟ ମହାଶୟଙ୍କର ଗ୍ରାମକୁ ଆସିବା କ୍ୱଚିତ୍ ଘଟେ। କନିଷ୍ଠା କନ୍ୟାର ବିବାହ ଉପଲକ୍ଷରେ କେତେକ ଦିନ ହେଲା ଗ୍ରାମକୁ ଆସିଅଛନ୍ତି। ଆଜି ବିବାହ ଦିନ। ସହରର

କେତେ ଦୂରରୁ ଭଦ୍ରଲୋକ ଆଜି ଗ୍ରାମକୁ କୃତାର୍ଥ କରୁଅଛନ୍ତି । ଆମନ୍ତ୍ରିତ ବ୍ୟକ୍ତିମାନଙ୍କ ମଧ୍ୟରୁ କେତେକ ଯୁବକ ନୃତ୍ୟବାଦ୍ୟ ଓ ଅନ୍ୟମାନଙ୍କର ପୂର୍ବପରିଚୟ, ଆଜି ଆମ୍ଭମାନଙ୍କ ଅନୁରୋଧ ରକ୍ଷା କରିବାକୁ ୫ । ୬ ଜଣ ନିର୍ବାଚିତ ଯୁବକ ଟୁଙ୍ଗୀରେ ଉପସ୍ଥିତ । ଗ୍ରାମର ମହାଜନ ସାହୁ, ପଣ୍ଡିତ ମହାଶୟ ଆଜି ଟୁଙ୍ଗୀକୁ ଆସିଥିଲେ; କିନ୍ତୁ ପଞ୍ଚାଏ କାଲକାଲ ପିଲାଙ୍କୁ ଟୁଙ୍ଗୀରେ ଦେଖି 'ଗଢ଼ ହେଲ ନୁହେଁ' ବିବେଚନା କରି ଟୁଙ୍ଗୀ ତ୍ୟାଗ କଲେ । ମନ୍ତ୍ରୀମ ମଧ ଆଜି ଭୋଜନ ଲୋଭରେ ଗ୍ରାମରେ ଉପସ୍ଥିତ । ତାର ଆଜି ପ୍ରଧାନ ଚିନ୍ତା ଭୋଜନ । ଦଣ୍ଡେ ଘଡ଼ିକେ ସେହି ଭୋଜନ କଥା ଆସି ପକାଉଅଛି—ଟୁଙ୍ଗୀରେ ଯେଉଁ ଯୁବକମାନେ ସମବେତ ହୋଇଅଛନ୍ତି, ସେମାନଙ୍କ ମଧ୍ୟରୁ କାହାର କାହାର ପରିଚୟ ଶୁଣନ୍ତୁ ।

ବାବୁ ଗୌରାଙ୍ଗ ଦାସ V. L. M. S. ସମ୍ପର୍କରେ ସାମନ୍ତରାୟଙ୍କ ଝିଅରର ପୁଅ---ବୟସ ୨୫ । ୨୬; ଦୁଇବର୍ଷ ହେଲା ଡାକ୍ତରୀ ପାଶ କରି ସହରରେ ଗୋଟିଏ ଔଷଧାଳୟ ଖୋଲିଅଛନ୍ତି । ବିନା ଦର୍ଶନୀରେ ଅନେକ ଗରିବଙ୍କର ଉପକାର କରନ୍ତି ।

ବାବୁ ରାମହରି ମିଶ୍ର B.A. ୪ ବର୍ଷ ହେଲା B. A. ପାଶ କରି ସବରେଜିଷ୍ଟ୍ରୀକଚେରିରେ ଖଣ୍ଡେ ନକଲ କରିଅଛନ୍ତି । ଅର୍ଥାଭାବରୁ ଇଚ୍ଛା ସତ୍ତ୍ୱେ କୌଣସି ଉଚ୍ଚ ଆକାଂକ୍ଷା ପୂର୍ଣ୍ଣ ହେଲା ନାହିଁ । ତେବେ ଯେ ନିତାନ୍ତ ଉଚ୍ଚ ଆଶାରେ ଜଳାଞ୍ଜଳି ଦେଇଅଛନ୍ତି, ତାହା ନୁହେ । ଘରେ ବସି କେତେକ ପୁସ୍ତକ ଆଲୋଚନା କରନ୍ତି । ବୟସ ୨୮ ବର୍ଷ ।

ବାବୁ କୃଷ୍ଣଚରଣ ମହାନ୍ତି—ଏବର୍ଷ ଏଣ୍ଟ୍ରାନ୍ସ ପାଶ କରିଅଛନ୍ତି । ବାରିଷ୍ଟରୀ ଲାଇନ୍‌ରେ ପଶିବା ତାଙ୍କର ଇଚ୍ଛା । କିନ୍ତୁ ବର୍ତ୍ତମାନ ସର୍ଭେ ସ୍କୁଲରେ ପଢ଼ୁଅଛନ୍ତି । ବେଶ୍ ବୁଦ୍ଧିମାନ୍, ବୟସ ୨୦ ।

ବାବୁ ଶ୍ୟାମଚରଣ ପଟ୍ଟନାୟକ—ମୁକ୍ତ୍ୟାରଙ୍କର ପ୍ରାଣବନ୍ଧୁ । ପଣ୍ଡିତ ବର୍ଗର ତୃତୀୟ ବାର୍ଷିକ ପରୀକ୍ଷାରେ ଉଚ୍ଚସ୍ଥାନ ଲାଭ କରି ମଫସଲରେ ଗୋଟିଏ ମାଇନର ବିଦ୍ୟାଳୟରେ ହେଡପଣ୍ଡିତ କାର୍ଯ୍ୟ କରନ୍ତି । ବେଶ୍ ସମ୍ଭ୍ରାନ୍ତ ଉନ୍ନତଚରିତ୍ର ଲୋକ, ବୟସ ୩୦ ମଧ୍ୟରେ ।

ବାବୁ ଶ୍ୟାମସୁନ୍ଦର ମିଶ୍ର—ମୁକ୍ତ୍ୟାରଙ୍କର ଜ୍ୟେଷ୍ଠ ଜାମାତା, ମୁକ୍ତିଆରେ ଏହାଙ୍କ ପିଛା ଅନେକ ଅର୍ଥ ବ୍ୟୟ କଲେ । କିନ୍ତୁ ଏ ଅନେକ ଚେଷ୍ଟା କରି ସୁଦ୍ଧା ଏଣ୍ଟ୍ରାନ୍ସ ଖଣ୍ଡିକ ପାଶ୍ କରି ପାରିଲେ ନାହିଁ । ବର୍ତ୍ତମାନ କଲେକ୍ଟରୀରେ କିରାଣିଗିରି କରନ୍ତି ।

(ପାଠକ ମହୋଦୟ କ୍ଷମା କରିବେ, 'ପ୍ରତିବଧ୍ନାତି ହି ଶ୍ରେୟଃ ପୂଜ୍ୟପୂଜାବ୍ୟତିକ୍ରମଃ ।' ଏତେ ଲୋକଙ୍କର ପରିଚୟ ଦେଇ ନିଜର ପରିଚୟ ନ ଦେଲେ ପୂଜ୍ୟପୂଜାବ୍ୟତିକ୍ରମ ହୁଏ । ଏଣେ ଫେର୍ 'ଆତ୍ମନାମ ଗୁରୋର୍ନାମ ଯନ୍ନାମ କୃପଣସ୍ୟଚ' ଏସବୁ ଅପ୍ରକାଶ୍ୟ—ଅନ୍ୟତଃ କଚେରି ମିସଲରେ ସାକ୍ଷୀ ଜବାନବନ୍ଦି ଛଡ଼ା ଅନ୍ୟତ୍ର ଅପ୍ରକାଶ୍ୟ । ଆଜିକାଲି ସମୟରେ ଋଷିବାକ୍ୟ ଧରି ଚାଲିବା ସର୍ବଥା ଅସମ୍ଭବ, ଆପଣା ନାମ ପ୍ରକାଶ ନ କଲେ ପିନାଲକୋଡର ୧୭୧ ଦଫା ଧରିବନା; ସେଥି ପାଇଁ ଏ ସମସ୍ୟା ଅତିକ୍ରମ କରିବାକୁ ଲୋକେ ଜନ୍ମପତ୍ରିକାରେ ଗୋଟିଏ ନାମ ଓ ଅନ୍ୟ ଗୋଟିଏ ଶ୍ରବାନାମ ଏପରି ଦୁଇଟି ନାମ ଗ୍ରହଣ କରିଥାନ୍ତି । ଶ୍ରବା ନାମରେ ଆପଣାର ପରିଚୟ ଦିଅନ୍ତି ଓ ଜନ୍ମପତ୍ରିକା ନାମଟି ପ୍ରକାଶ କରନ୍ତି ନାହିଁ । ସେ ଯାହାହେଉ, ମୋର ଟିକିଏ ପରିଚୟ ଦେବି । ଯେବେ କେବଳ ଗୁଣଗୁଡ଼ିକ ବ୍ୟାଖ୍ୟା କରିବି, ତେବେ ଆପଣମାନେ କହିବେ ଅହଂକାରୀ; କେବଳ ଦୋଷଗୁଡ଼ିକ ବର୍ଣ୍ଣନା କଲେ ଆତ୍ମନିନ୍ଦା ଯୋଗୁଁ ଈଶ୍ୱରଙ୍କ ନିକଟରେ ଦୋଷୀ । ଏଥିର ସ୍ଥଳରେ ମୁଁ ବୈଜ୍ଞାନିକ ପ୍ରଣାଳୀରେ ମୋର ପରିଚୟ ଦେବି । Aristotle ଙ୍କ Golden

mean ବୋଧ ହୁଏ ଅନେକେ ଜାଣିଅଛନ୍ତି । ମୁରାରେଷ୍ଟୃତୀୟଃପନ୍ଥା; କେବଳ ଦୋଷ ବା କେବଳ ଗୁଣ ବର୍ଣ୍ଣନା ନ କରି ଗୋଟିଏ ଗୁଣ ଓ ତାହାଂ ସଙ୍ଗେ ସଙ୍ଗେ ପୂରଣକାରୀ (compensating) ଗୋଟିଏ ଦୋଷ ଏହିପରି ଦେଖାଇ ମୋର ପରିଚୟ ସାଙ୍ଗ କରିବି । ନାମଟା ଅବଶ୍ୟ ପୂର୍ବରୁ ଜାଣିଅଛନ୍ତି ତେବେ—ଏଇ—ଶୁଣନ୍ତୁ, ଦେଖନ୍ତୁ ଓ ଭାବନ୍ତୁ )

ଶ୍ରୀ ଦୁର୍ମୁଖ ଶର୍ମା ଏଇଟି ମୋର ଡାକନାମ । ପିଲାଦିନେ ସ୍ଥାନଅସ୍ଥାନ ନ ବୁଝି ବୃଥାରେ ଅନେକ ବାକ୍ୟ ବ୍ୟୟ କରୁଥିଲି ଓ ଅତ୍ୟନ୍ତ କଳହପ୍ରିୟ ଥିଲି ବୋଲି ଏ ନାମକରଣ—କିନ୍ତୁ ମୋର ଜନ୍ମ ପତ୍ରିକା ନାମ ଗୁଣନିଧି (ବୋଧହୁଏ ଆପଣମାନେ ବୁଝି ପାରୁଛନ୍ତି ଯେ ମୋର ପ୍ରଥମ ଲିଖିତ ନାମର ଦୋଷ, ଦ୍ୱିତୀୟଲିଖିତ ନାମର ଗୁଣରେ କଟି ଗଲା ।)

ସନ୍ଧ୍ୟା ପାଳବନା ହିନ୍ଦୁ—କିନ୍ତୁ ସନ୍ଧ୍ୟାପୂଜା କର୍ମ କର୍ମୀଙ୍କର ପାଖେ ଯାଏ ନାହିଁ ।

ପରୋପକାରରତ—କିନ୍ତୁ କେହି ଉପକାର ହେଲେ, ଯେଉଁ ଯେଉଁ ଉପକାର କରଥାଏଁ, ତାହାର ଦ୍ୱାହିଦେଇ ବିପକ୍ଷଙ୍କୁ ପରାସ୍ତ କରେଁ ଓ କୃତଜ୍ଞତ ଉପକାର ସମସ୍ତଙ୍କୁ କହି ବୁଲେ ।

ଯୁବକ; ବୟସ ୩୦—କିନ୍ତୁ କେତେକ ଅନିବାର୍ଯ୍ୟ କାରଣରୁ ମସ୍ତକର ଅନେକ କେଶ ସେମାନଙ୍କ ଯୁବାବୃତ୍ତିର କୃତ୍ୟବର୍ତ୍ତିକୁ ୩ । ୪ ବର୍ଷ ହେଲା ଭୁଲି ଗଲେଣି ।

ନ୍ୟାୟ ଅନ୍ୟାୟ ଉତ୍ତମରୂପେ ବୁଝିପାରେ—କିନ୍ତୁ ଉପରସ୍ଥ ଲୋକଙ୍କ ମନ ଜଗି କାର୍ଯ୍ୟ କରିବାକୁ ବାଧ୍ୟ ହୁଏ, ବର୍ଷା ଦେଖି ଛତା ଧରେ ।

ପରର ଦୁଃଖ ଦେଖିଲେ କାନେ—କିନ୍ତୁ ତାଙ୍କୁ ଦୁଃଖରୁ ଉଦ୍ଧାର କରିବାକୁ ଚେଷ୍ଟା କରେ ନାହିଁ, କାରଣ ଈଶ୍ୱର ତାଙ୍କୁ ଦୁଃଖ ଦେଇ ଅଛନ୍ତି । ସେ ଦୁଃଖ ମୋଚନ କଲେ ଈଶ୍ୱରଙ୍କ ଇଚ୍ଛାବିରୁଦ୍ଧ କାର୍ଯ୍ୟ ହେବ ବୋଲି ମୋର ଧାରଣା ।

କୃତବିଦ୍ୟ—କିନ୍ତୁ 'ଯଥା ଖରଶ୍ଚନ୍ଦନଭାରବାହୀ ଭାରସ୍ୟବେତ୍ତା ନହି ଚନ୍ଦନସ୍ୟ ।' ସବୁଦିନେ ବାଡ଼ି ବାଇଗଣ ପୋଥି ବାଇଗଣରେ ପ୍ରଭେଦ ରଖିଥାଏ । ବହି ଧରି ସଂସାରରେ ଚଳିଲେ ଚଳ ହେବ ନାହିଁ, ଏହା ସିଦ୍ଧାନ୍ତ କରିଅଛି ।

ମାଦକ ସେବନର ନିତାନ୍ତ ବିରୋଧୀ—କିନ୍ତୁ ବେଜାୟ ମୋଦକ(ମିଷ୍ଟାନ୍ନ)ପ୍ରିୟ ।

ଗାର୍ହସ୍ଥ୍ୟଜୀବନର ଉଚ୍ଚ ଆଦର୍ଶମାନ ପାଠକରି ଦେହ ପୁଲକିତ ହୁଏ—କିନ୍ତୁ ଘରେ ସନ୍ଦିଦ୍ଧିକ ଜଳ; ପୁଣି ମୋର ଗୃହପ୍ରଲୁବ୍ଧ ହେତୁ ଘରେ ସମସ୍ତେ ବିରକ୍ତ ।

ଇତ୍ୟାଦ—(ବିଯୁକ୍ତ) ଇତ୍ୟାଦ=(ସମାନ) (ଏତିକି ପରିଚୟରୁ ମୋର ରୁଚି, ବୈଦ୍ୟିକ ଜ୍ଞାନ ଇତ୍ୟାଦ ବୁଝିପାରିବେ ।)

ଆମ୍ଭେମାନେ ଏହି ୭ ଜଣ ଓ ମନ୍ତ୍ରାମ୍ ଆଜ ଟୁଙ୍ଗୀର ଅଧିକାରୀ ।

ସମସ୍ତେ ବିଭାଘର ଧୂମ୍ଧାମ୍ ଯୋଗୁଁ ଅସ୍ଥିର । ଆଜ କେବଳ ବାଜେ ଗଳ୍ପରେ କାଳ କାଟିଲୁଁ ।

ଆଗନ୍ତୁକମାନେ ପ୍ରଥମେ ଏ ଗ୍ରାମର ସମସ୍ତ ସମାଚାର ଠିକେ ଠିକେ ଶୁଣିଲେ । ଭାଗବତ ଘରଟି ଜୀର୍ଣ୍ଣାବସ୍ଥା ପ୍ରାପ୍ତ ହୋଇ ଥିବାରୁ

ରାମହରିବାବୁ ପ୍ରସ୍ତାବ କଲେ ଏ ଗୁମ୍ଟିର ସଂସ୍କାର ନିମନ୍ତେ ଗୋଟିଏ ଚାନ୍ଦା ଅସୁଲ କର ।

ବାବୁ ଶ୍ୟାମଚରଣ ପଟ୍ଟନାୟକ ଆପଣା ପକେଟରୁ ଖଣ୍ଡେ କାଗଜ ଓ ପେନ୍‌ସିଲ୍ ବାହାର କରି ଦେଲେ ଓ ଟୁଙ୍ଗୀରେ ଉପସ୍ଥିତ ବ୍ୟକ୍ତିମାନଙ୍କଠାରୁ ପ୍ରଥମେ ଚାନ୍ଦା ସ୍ୱାକ୍ଷରର ଯୋଗାଡ଼ ହେଲା । ପ୍ରଥମେ ଆମ୍ଭେମାନେ ରାମହରିବାବୁଙ୍କୁ ସେ କାଗଜ ଖଣ୍ଡିକ ଦେଲୁଁ । ରାମହରି ବାବୁ ଆପଣା ନାମ 'ରାମହରି ମିଶ୍ର' ଲେଖି ସ୍ୱୀକୃତ ଅର୍ଥର ପରିମାଣ ଲେଖି ଦେଲେ ଓ ଗୌରାଙ୍ଗ ବାବୁଙ୍କ ଆଡ଼କୁ ସେ କାଗଜ ଖଣ୍ଡିକ ବଢ଼ାଇ ଦେଲେ । ଗୌରାଙ୍ଗ ବାବୁ ସେ କାଗଜ, ଦେଖି ରାମହରି ବାବୁଙ୍କୁ ସମ୍ବୋଧନ କରି କହିଲେ, 'ମହାଶୟ, ଆପଣଙ୍କ ନାମ ପୂର୍ବରେ 'ଶ୍ରୀ' ବ୍ୟବହାର ନ କରିବା କି ଯୁକ୍ତିସଙ୍ଗତ ?' ରାମହରି ବାବୁ ଶାନ୍ତଭାବରେ ଉତ୍ତର କଲେ, 'କୌଣସି ବିଷୟରେ ଅନ୍ୟକୁ ପ୍ରବର୍ତ୍ତାଇବା ଯୁକ୍ତିଯୁକ୍ତ ହୋଇ ନ ପାରେ, କିନ୍ତୁ ନିଜର ମତ ଅନୁସାରେ କାର୍ଯ୍ୟ କରିବା ଯୁକ୍ତିଯୁକ୍ତ; ଏପରି ପ୍ରଶ୍ନ ଆପଣ କଲେ କାହିଁକି ? 'ଶ୍ରୀ' ଗୋଟିଏ ସମ୍ମାନସୂଚକ ଶବ୍ଦ ଓ ନାମ ପୂର୍ବରେ ଶ୍ରୀ ଶବ୍ଦ ପ୍ରୟୋଗ କରିବା ଭଦ୍ରତାନୁମୋଦିତ । ତାହା ବୋଲି ମୋ ମତରେ ନିଜର ନାମ ପୂର୍ବରେ 'ଶ୍ରୀ' ଲେଖିବା ଉଚିତ ନୁହେ । ଇଂରାଜୀରେ Mr. (ମିଷ୍ଟର) ବା Esquire (ସ୍କ୍ୱାୟାର) ଯେପରି ସମ୍ମାନସୂଚନାରେ ପ୍ରଯୁକ୍ତ ହୁଏ, ମୋ ମତରେ ଦେଶୀୟ ଭାଷାରେ 'ଶ୍ରୀ'ର ସେହି ସ୍ଥାନ । ଅନ୍ୟ ଜଣେ ମୋ ନାମ ଲେଖିଲେ Mr. କିମ୍ବା Esq. କିମ୍ବା ଶ୍ରୀ ଲେଖିବାର ଉଚିତ । କିନ୍ତୁ ନିଜେ ନିଜର ନାମରେ ଏପରି କିଛି ଲଗାଇଲେ ମତେ ଅନୁଆ ବୋଧ ହୁଏ ।'

ଶ୍ୟାମଚରଣ ବାବୁ କହିଲେ, 'ରାମହରି ବାବୁ, ତାହା ନୁହେ, ଶ୍ରୀ ଅର୍ଥ ଲକ୍ଷ୍ମୀ । ପ୍ରଥମେ କୌଣସି ମଙ୍ଗଳାଚରଣ କରି କୌଣସି କଥା ଲେଖିବା କି କରିବା ଆମ୍ଭମାନଙ୍କ ଦେଶରେ ଚଳି ଆସୁଅଛି । ଏଥିର ଉଦାହରଣ ପ୍ରାୟ ସମସ୍ତ ସଂସ୍କୃତ ପୁସ୍ତକମାନଙ୍କରେ ମିଳେ । ନାମ ପୂର୍ବରେ 'ଶ୍ରୀ' ଲେଖିବା ଅର୍ଥ ମଙ୍ଗଳାଚରଣ ।'

ରାମହରି ବାବୁ ଈଷତ୍ ହାସ୍ୟ କରି କହିଲେ, 'ପୁସ୍ତକ ବା କାର୍ଯ୍ୟର ଆରମ୍ଭରେ ମଙ୍ଗଳାଚରଣ ତ ବେଶ୍ କଥା । କିନ୍ତୁ ନାମ ପୂର୍ବରେ 'ଶ୍ରୀ'ର ଆପଣ ଏପରି ଏକ ଆଧ୍ୟାତ୍ମିକ ଅର୍ଥ ବାହାର କଲେ, ମୁଁ ବଡ଼ ଆନନ୍ଦିତ ହେଲି । ବିଚାର କରି ଦେଖିବ ଯେ ଆପଣଙ୍କ ଯୁକ୍ତି ଗ୍ରାହ୍ୟ କି ନା ?'

କୃଷ୍ଣଚରଣ ମହାନ୍ତି କହିଲେ, ବୋଧ ହୁଏ ମଙ୍ଗଳାଚରଣ ଉଦ୍ଦେଶ୍ୟରେ କେତେକ ଜମିଦାର ଓ ଭଦ୍ରଲୋକମାନେ ଆପଣା ଆପଣା ନାମରେ ଦୁଇ ତିନି ଥର 'ଶ୍ରୀ' ଲଗାନ୍ତି ଓ ଜଗନ୍ନାଥ ମହାପ୍ରଭୁଙ୍କ ନାମ ପୂର୍ବରେ ମଧ୍ୟ 'ଶ୍ରୀଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀଚରଣେ ଶରଣ' ଏପରି ଲେଖନ୍ତି ।

ରାମହରି ବାବୁ କହିଲେ, 'ଏପରି 'ଖୋଳ ପର୍ବତ ମାର ମୂଷା' ଯୁକ୍ତିରେ ମନର ଗତି ବିଶେଷ ଭାବରେ ଚାଳିତ ହୁଏ, ସତ୍ୟ, କିନ୍ତୁ ମୋ ମତରେ ଶ୍ରୀ, ଶ୍ରୀଯୁକ୍ତ, ଶ୍ରୀମାନ୍, ଶ୍ରୀଲ ଶ୍ରୀଯୁକ୍ତ, ଏ ସମସ୍ତ ସମ୍ମାନସୂଚକ ପଦ । ନିଜେ ସ୍ୱାକ୍ଷର କଲାବେଳେ ଏ ସବୁ ନ ଲେଖିଲେ ଚଳେ---ବ୍ୟକ୍ତିବିଶେଷରେ ଏ ବିଷୟରେ ମତବିଶେଷ ଅନୁସାରେ କାର୍ଯ୍ୟକଲେ କିଛି କ୍ଷତି ହେବ, ଏପରି ବୋଧ ହେଉ ନାହିଁ । ଅନ୍ୟ ଜଣେ ମୋ ନାମ ଲେଖି ତା ପୂର୍ବରେ ଶ୍ରୀ ଲେଖିଲେ ମୋର ତହିଁରେ କିଛି ଆପତ୍ତି ନାହିଁ । କିନ୍ତୁ ସ୍ୱାକ୍ଷର ବିଷୟରେ ଯାହାର ଯେପରି ରୁଚି ହେଲା, ସେଥିରେ କ୍ଷତି ନାହିଁ । ସ୍ୱାକ୍ଷର କରିବାର ଅର୍ଥ ଏହି ଯେ, ଆବଶ୍ୟକ ହେଲେ ଭବିଷ୍ୟତରେ ମୁଁ ମୋର ସ୍ୱାକ୍ଷରିତ ବିଷୟ ଚିହ୍ନି ପାରିବି । ଯେ ଯେଉଁପରି ଲେଖୁ, ସେଥିରେ ଆପତ୍ତି ନାହିଁ ।'

ମୁକ୍ତ୍ୟାରଙ୍କ ଜାମାତା ଶ୍ୟାମସୁନ୍ଦର ମିଶ୍ରେ କହିଲେ ଯେ ଯେବେ ଶ୍ରୀ ମଙ୍ଗଳାଚରଣ ଅର୍ଥରେ

ଲେଖା ଯାଉ ଥାନ୍ତା, ତେବେ ପୁରୁଷମାନଙ୍କ ନାମରେ ଏକ ପ୍ରକାର ମଙ୍ଗଳାଚରଣ ସ୍ତ୍ରୀମାନଙ୍କ ନାମରେ ଏକପ୍ରକାର ମଙ୍ଗଳାଚରଣ କାହିଁକି ହୁଅନ୍ତା ? ପୁରୁଷମାନଙ୍କ ବେଳେ ଶ୍ରୀ ଅମୁକ ଓ ସ୍ତ୍ରୀମାନଙ୍କ ବେଳେ 'ଶ୍ରୀମତ୍ୟା—ଦେବ୍ୟା' ଏପରି କାହିଁକି ଲେଖା ଯାନ୍ତା ?

ଶ୍ୟାମଚରଣ କହିଲେ—ଅରେ ତୁମ କଟେଇଆ ଭାଷାରେ ସିନା ଲେଖାଯାଏ 'ଶ୍ରୀମତ୍ୟା—ଦେବ୍ୟା' କିନ୍ତୁ ପ୍ରକୃତରେ 'ଶ୍ରୀମତୀ—ଦେବୀ' ।

ମନ୍ତ୍ରୀରାମ୍ ଆଜ ପରିପୂର୍ଣ୍ଣ ଖିରିପିଠା ଭୋଜନ କରିବ ବୋଲି ଆନନ୍ଦରେ ମାତି ଯାଉଛି । 'ଶ୍ରୀମତୀ' ଶବ୍ଦ ଶୁଣି 'ପାଞ୍ଚପଟ କପଟ ପ୍ରୀତି କରି ଶ୍ରୀମତୀଙ୍କୁ ଲଗାଇଲେ ହେ' ଚନ୍ଦ୍ରପାଟି ସ୍ୱରତାଳ ଚଡ଼ାଇ ଚିତ୍କାର କଲା ଓ ଗୋଟିଏ ଶ୍ଳୋକ ବୋଲି ଉଠିଲା; କହିଲା, ଭୁଲି ଯିବା ପଙ୍କଜର ଉଦ୍ୟମ ଦେଖିବା :—

'ଘଣ୍ଡା ପିଣ୍ଡାତଳକୁ ବହିଲେ ମଣ୍ଡପେ ଶାସନାଏ ।
ଗଣ୍ଡା ଗଣ୍ଡା ବସିବସି ଗଲେ ଚଦ୍ଧରେ ପାଡ଼ି ଥାନ୍ତି ।
ମଣ୍ଡା ଗଣ୍ଡା ଲଡୁ ଗଡୁଦମେ ଖଣ୍ଡପାକେ ସଜାନ୍ତି ।
ଭେଣ୍ଡାଭେଣ୍ଡା ଦ୍ୱିଜପରଶିଲେ ପୂର୍ଣ୍ଣପ୍ରାଣେ ଅଜାନ୍ତି ।'

ଫେର୍ ଈଶ୍ୱରଙ୍କ ଇଚ୍ଛାରୁ କ୍ଷଣକ ପାଇଁ ନିସ୍ତବ୍ଧ ହୋଇଗଲା ଓ ଏହି ସମୟରେ ଆନ ଗ୍ରାମର ବୈଦ୍ୟ 'ଅର୍ତ୍ତ ସନ୍ତପଥୀ' ଆସି ଟୁଙ୍ଗୀରେ ଯୋଗ ଦେଲେ । ବୈଦ୍ୟରାଜ ଗର୍ବ କରି କହନ୍ତି ଯେ ତାଙ୍କ ଘରେ ଯେତେ ବୈଦ୍ୟଶାସ୍ତ୍ର ଅଛି, ଏତେ ପୋଥି ଏ ଅଞ୍ଚଳରେ ନାହିଁ । ଆମ୍ଭେମାନେ ଯେତେଦୂର ବୁଝିଅଛୁଁ ବୈଦ୍ୟରାଜ ସେ ପୋଥିର କିଛି ଧାରନ୍ତି ନାହିଁ । କେବଳ କେତେ ଗୁଡ଼ିଏ ଶ୍ଳୋକ ମୁଖସ୍ଥ କରିଅଛନ୍ତି । ବୈଦ୍ୟରାଜେ ସେ ଶ୍ଳୋକମାନ ଯେପରି ଅର୍ଥ କରନ୍ତି, ତାହା ବୁଝିବାକୁ ମଲ୍ଲିନାଥ ଦଳାକେତେ ପୁନର୍ବାର ଅର୍ଥଶାସ୍ତ୍ର ଶିକ୍ଷା କରନ୍ତେ । ବୈଦ୍ୟରାଜେ ଯେଉଁ ଔଷଧ ପ୍ରସ୍ତୁତ କରନ୍ତି, ସେ ଔଷଧର ଉପକରଣମାନ ସର୍ବସାଧାରଣରେ ପ୍ରକାଶ କରିବାକୁ ନଜାନ୍ତି ନାହିଁ । ଯେବେ କେହି ଜାଣନ୍ତି ଜୋର କରେ, ତେବେ ଗୃଣକ୍ୟଙ୍କ 'ନବଗୋପ୍ୟାନି କାରୟେତ୍' ଦୋହି ଦିଅନ୍ତି । ଉପର ଡାକ୍ତର ବାବୁଙ୍କୁ ପରାସ୍ତ କରିବେ, ଏତିଦିନ ହେଲା କେବଳ ସେହି ସୁଯୋଗ ଖୋଜି ବୁଲୁଛନ୍ତି । ଡାକ୍ତର ବାବୁ ୨।୩ ଦିନ ହେଲା ୫।୭ ଜଣ ଲୋକଙ୍କୁ ଆରୋଗ୍ୟ କରି ଅଛନ୍ତି । ଏହାଦ୍ୱାରା ବୈଦ୍ୟରାଜଙ୍କ ପସାର ଢିବ । ସେଥି ପାଇଁ ପର ଲୋକେ କହନ୍ତି 'ଭଗାର ନ ଥିଲେ ଯାତ୍ରାକାଳ ଭଗାର ।' ପୂର୍ବରେ ବୈଦ୍ୟରାଜେ ବାହାରି ଥିଲେ 'ମଣ୍ଡୀମଣ୍ଡଳେ କାହିଁ ଏମନ୍ତ ଜନ, ମୋ ଅଧିକାର ଲୋଭେ କରିବ ରଣ ।' କିନ୍ତୁ ଡାକ୍ତର ଆସି ତାଙ୍କର ପ୍ରତିଦ୍ୱନ୍ଦୀ ହେଲେ, ଏହା କ୍ରମଶଃ ଅସହନୀୟ ହୋଇ ଉଠିଲା । ଡାକ୍ତରବାବୁ, ରାମନନ୍ଦ ବାବୁ ଓ ମୁଁ ବୈଦ୍ୟଙ୍କ ଅଭିପ୍ରାୟ ଉତ୍ତମରୂପେ ବୁଝି ପାରିଥିଲୁଁ । ସେ ପ୍ରଥମେ ଆସି ଡାକ୍ତରୀ ଚିକିତ୍ସାର ଅଯଥା ନିନ୍ଦା ଓ ସ୍ୱୀୟ ଚିକିତ୍ସା ପଦ୍ଧତିର ପ୍ରଶଂସା କରି କେତେକ ଶ୍ଳୋକ ବୋଇଲେ । ପଛକୁ ମନ୍ତ୍ରୀରାମ୍ ହୁଙ୍କାର କରି ବୈଦ୍ୟରାଜଙ୍କ ଉପରେ ତର୍ଜନଗର୍ଜନ କରି ଡାକ୍ତରଙ୍କ ସପକ୍ଷରେ କହିଲା । (ମନ୍ତ୍ରୀରାମ୍ ବହୁତର 'ଅମାବାଇ,' ବୈଦ୍ୟଙ୍କୁ କେତେ ଅନୁସରଣ କଲା । ବୈଦ୍ୟରାଜ ଯେଉଁ ଚୂର୍ଣ୍ଣ ଦେଲେ ତହିଁରେ କିଛି ଉପକାର ହେଲା ନାହିଁ । ୩ । ୪ ଦିନ ହେଲା ଡାକ୍ତରଙ୍କୁ ଅନୁସରଣ କରିବାରୁ ଡାକ୍ତର ପାକେ Seidlitz powder ଓ ୩ ପାନ Essence Anisi ଦେବାରୁ ମନ୍ତ୍ରୀରାମ୍ ଖୁବ୍ ଆରାମରେ ଅଛି । ଏଥିଯୋଗୁଁ ବୈଦ୍ୟରାଜଙ୍କ ଉପରେ ବଡ଼ ରାଗ ଓ ଡାକ୍ତର ବାବୁଙ୍କଠାରେ ଭାରି ପ୍ରସନ୍ନ ।)

"ବୈଦ୍ୟେ, କାହା ସାଙ୍ଗରେ କାହାକୁ ତୁଳୁଚ ? ଗଧଟାଏ, ଘୋଡ଼ାଟାଏ !

ଅର୍ତ୍ତ ସନ୍ତପନ୍ତି ବୈଦ, ଆଉ ଚୌଧରୀ ବାବୁ ଡାକ୍ତର ! ତୁମର ଗୋଟେଇ ନାହିଁ । କୌଣସି କଥାରେ ସନ୍ଦେହ ହେଲେ ବୈଦ ଯାଇ ଘରେ ପୋଥି ଫିଟେଇବ । ଡାକ୍ତର ଯାଇ ତାଙ୍କ ଉପର

ଡାକ୍ତରଙ୍କୁ ପଗ୍ଭରିବେ । ନଇଲେ ସାହେବଙ୍କୁ ପଗ୍ଭରିବେ । କଷ୍ଟ ବେମାର ହେଲେ ତୁମେ ବିଶାଏ ଔଷଧ ଗିଳିଲେଇବ । ଡାକ୍ତର ଟୋପାଏ ଅରକ ଦେଲେ ସବୁ ଠିକ୍ ଠାକ୍ । ବଥଟିଏ ହେଲେ ତୁମେ ମାଡ଼େ ଲେଖାଏ ଔଷଧ ବାଟି ପନ୍ଦରଦିନେ ବଥଙ୍କୁ ପଚେଇବ । ଡାକ୍ତର ସେହି ଘଡ଼ି ଖୋଳ ଦେଇ ଔଷଧ ପଟି ଲଗେଇ ଦେବେ, ଔପର୍ ବେଳକୁ ଅରାମ । ତୁମେ ସତ ମିଛ ନାଡ଼ି ଚିପି ଦେଇ ଅଖି ବୁଜି ସେଠଟାମାନଙ୍କୁ ଫିଙ୍ଗି ପକେଇ ମୁଣ୍ଡ ପିଟେଇ ବସିବ । ଡାକ୍ତର ବିନା ସବୁ ଲକ୍ଷଣ ନ ଦେଖିଲେ ମନ୍ତ୍ରଙ୍କୁ ଔଷଧ ଦେବେ ନାହିଁ ।"

ଅମ୍ଭେମାନେ ମନ୍ତ୍ରରାମର କଥା ଶୁଣି ହସିଲୁଁ । ବୈଦ୍ୟରାଜ ମନ୍ତ୍ରରାମଙ୍କୁ ଗୁଡ଼ାଏ ବକ ଦେଇ ଗଲେ; ଓ 'ଅଚ୍ଛା, ପରଖାପରଖି ହେବା' ବୋଲି ଡାକ୍ତର ବାବୁଙ୍କୁ ଧମକ ଦେଇ ଟଙ୍ଗାରୁ ବାହାରି ଗଲେ ।

ରାମହରି ବାବୁ କହିଲେ—ଅହା ଚରକ ଶୁଶ୍ରୁତର ପଥଙ୍କୁ ଏହି ଦଶା ହେଲା ! ଅମ ଦେଶରେ ଅଧିକାଂଶ 'ବୈଦ୍ୟରାଜ' ଅଯୋଗ୍ୟ ଲୋକ ସହପାଠୀଙ୍କ ଶ୍ରେଣୀର, ଚିକିତ୍ସା ଶାସ୍ତ୍ରର ଧାର ଧାରିବେ ନାହିଁ । ବାପ ଅଜା ଯାହା କାନ୍ଥରେ ଲେଖି ଦେଇ ଯାଇଅଛନ୍ତି, ସେହି 'ଚୂର୍ଣ୍ଣକ' 'ପାଚନ' ଓ 'ମୋଦକ' ଛଡ଼ା ଆଉ କିଛି କଥା ଜଣା ନାହିଁ । ସବୁ ରୋଗକୁ ଏହି 'ପାଚନ' ବା 'ଚୂର୍ଣ୍ଣକ' ! ମନ୍ଦ ଭଲ ହେଲେ କେତେ ନ ହେଲେ କେତେ । ଔଷଧ ଖର୍ଚ୍ଚା ବୋଲି ଯାହା କିଛି ଭଣ୍ଡାଇ ନେଇ ଅପଣା କାର୍ଯ୍ୟ କଲେ ହେଲା । ଅମ୍ଭମାନଙ୍କ ଦେଶର ଅଧିକାଂଶ ବୈଦ୍ୟ ଅନେକ ଚେରମୂଳ ଚିହ୍ନି ଅଛନ୍ତି କି ନାହିଁ ସନ୍ଦେହ । ଇଉରୋପୀୟମାନେ ଧାରବାହିକ ଅନୁଶୀଳନ କରି ଚିକିତ୍ସା ଶାସ୍ତ୍ରର କେତେ ଉନ୍ନତି କରିଅଛନ୍ତି । ପୂର୍ବତନ ଚିକିତ୍ସା ଶାସ୍ତ୍ରର ଚର୍ଚ୍ଚା ନିମନ୍ତେ ଯେବେ ବିଦ୍ୟାଳୟମାନ ସ୍ଥାପିତ ହୁଅନ୍ତା, ତେବେ ଆୟୁର୍ବେଦର କେତେ ଉନ୍ନତି ହୁଅନ୍ତା ! ରାଜା ଅନୁଗତ ଧର୍ମ । ଦେଶବିଦେଶରେ ଯେପରି ଡାକ୍ତରୀ ଶିକ୍ଷା ଦିଆ ଯାଉଅଛି, ଯେବେ ସେହିପରି ଆୟୁର୍ବେଦ ବିଦ୍ୟାଳୟମାନ ସ୍ଥାପିତ ହୁଅନ୍ତା, ତେବେ ଆୟୁର୍ବେଦର ମହିମା ସମ୍ପୂର୍ଣ୍ଣ ପ୍ରକାଶିତ ହୁଅନ୍ତା । Pathology (ନିଦାନ), Surgery (ଅସ୍ତ୍ରଚାଳନ), Midwifery (ଧାତ୍ରୀ-ବିଦ୍ୟା) ସମସ୍ତ ଅମ୍ଭମାନଙ୍କ ଦେଶରେ ଥିଲା । କିନ୍ତୁ ଉପଯୁକ୍ତ ଚର୍ଚ୍ଚା ଅଭାବରୁ ସେ ସମସ୍ତ ଆଜି ଧୂଳିରେ ପୋତି ହୋଇ ଗଲାଣି । କି ଦୁର୍ଭାଗ୍ୟ !

ଅନନ୍ତର ବୟସ୍କ ସେ ଗୌରାଙ୍ଗ ବାବୁ ଏ ବିଷୟରେ ଟିକିମାତ୍ର ଦୁଃଖିତ ନ ହୋଇ କହିଲେ—ମୁଁ ନିଜେ ଅନେକ ସ୍ଥଳରେ ମୋର ଅନୁଭବରୁ ବୁଝି ପାରିଅଛି ଯେ କୌଣସି କୌଣସି ରୋଗୀ ଡାକ୍ତରୀ ଔଷଧ ପ୍ରୟୋଗରେ ଆରୋଗ୍ୟ ଲାଭ ନ କରି ଶେଷକୁ କବିରାଜୀ ଔଷଧରେ ନିସ୍ତାର ପାଇଅଛନ୍ତି । ଅଶିକ୍ଷିତ ଲୋକମାନଙ୍କ ହାତରେ ବୈଦ୍ୟଶାସ୍ତ୍ରମାନ ପଡ଼ିବାରୁ ଆୟୁର୍ବେଦର ଏତେ ନିଗ୍ରହ !

ଶ୍ୟାମଚରଣ ପଟ୍ଟନାୟକ କହିଲେ—ଏ ଦେଶର ଜଳବାୟୁ, ଲୋକଙ୍କ ଶାରୀରିକ ଅବସ୍ଥା ଇତ୍ୟାଦି ସମ୍ୟକ୍ ବିଚାର କରି ପୂର୍ବକାଳର ଋଷି-ମାନେ ଆୟୁର୍ବେଦୀୟ ଔଷଧମାନଙ୍କର ବ୍ୟବସ୍ଥା କରି ଯାଇଅଛନ୍ତି । ଇଉରୋପୀୟମାନଙ୍କ ଆବିଷ୍କୃତ ଔଷଧମାନ ସେମାନଙ୍କ ଦେଶରେ ବିଶେଷ ଫଳ ଦେଖାଇ ପାରେ । ଅମ୍ଭମାନଙ୍କ ଦେଶୀୟ ଔଷଧ ଅମ୍ଭମାନଙ୍କ ପକ୍ଷେ ଯେପରି ହିତକର, ବିଦେଶୀୟ ଔଷଧ କଦାପି ସେ ଫଳ ଦେଖାଇ ପାରନ୍ତା ନାହିଁ । କେବଳ ଆୟୁର୍ବେଦଚର୍ଚ୍ଚା ଲୁପ୍ତ ହେବାରୁ ବାଧ ହୋଇ ଲୋକେ ଡାକ୍ତରୀ ଔଷଧର ଆଶ୍ରୟ ନେଉଅଛନ୍ତି ।

ମନ୍ତ୍ରରାମ ଭୋଜନ ବ୍ରତରେ ହଠାତ୍ ଅସ୍ଥିର; କହିଲା—'ପାଗ ବାବୁ ବାବୁ ଚରେଇ ବରଖାସ୍ତ ! ଆମେ ଯାଉଁ ଯାଉଁ ସମସ୍ତେ ଖାଇ ସାରିବେ ।

ଆମେ ଅନ୍ନ ଉପାସ ରହିବା । ସମସ୍ତେ ଉଠ, ନଇଲେ ମୁଁ ବାହାରିଲି ।

ଏହି ସମୟରେ ସାମନ୍ତରାୟଙ୍କ ଘରୁ ମନୁଷ୍ୟ ଆସି ଆମ୍ଭମାନଙ୍କୁ 'ଅଶୀର୍ବାଦ ସଭା'କୁ ଡାକିଲା । ବ୍ରାହ୍ମଣମାନଙ୍କ ବିବାହ ବ୍ରତ ଇତ୍ୟାଦିରେ 'ଅଶୀର୍ବାଦସଭା' କପରି ହୁଏ, ତାହା ଦେଖିବାକୁ ଶ୍ୟାମଚରଣ ବାବୁ ଓ କୃଷ୍ଣଚରଣ ମହାନ୍ତି ଆଗ୍ରହ ପ୍ରକାଶ କଲାରୁ ସେମାନଙ୍କୁ ସଙ୍ଗରେ ନେଇ ଆମ୍ଭେମାନେ କୁଟୀରୁ ବାହାରିଲୁଁ ଓ ସେମାନଙ୍କୁ ପୂର୍ବରୁ କହି ରଖିଥିଲୁଁ ଯେ ଏଠାର 'ଅଶୀର୍ବାଦ ସଭା' କେବଳ ଗୋଟିଏ ଅସ୍ତିକକାଳବିଶିଷ୍ଟ ପ୍ରଥା । ଆଶୀର୍ବାଦ ସଭାରେ ଚାଣକ୍ୟ, ମଣିରତ୍ନମାଳା, ରଘୁ, କୁମାର ଇତ୍ୟାଦିରୁ ମୁଖସ୍ଥ ଶ୍ଲୋକ କେତେ ଲୋକ ବୋଲନ୍ତି । କିଏ ବା ଶୁଦ୍ଧ ଅଶୁଦ୍ଧ କରି ବେଦରୁ କାଣ୍ଡିଏ ଅଧେ ମନ୍ତ୍ର ବୋଲନ୍ତି । କ୍ୱଚିତ କେହି ଆଶୀର୍ବାଦ ଶ୍ଲୋକ ବା ମନ୍ତ୍ର ପଢନ୍ତି । ଅଳ୍ପ ବହୁତ ସମସ୍ତେ 'ସଙ୍ଗୀତ ସଭା'ର ଚିନ୍ତା କରୁଥାନ୍ତି ।

ଶ୍ରୀ ଦୁର୍ମୁଖ ଶର୍ମା ।

---

## ଭ୍ରମଣକାରିର ପତ୍ର ।

### ରାୟଗଡ଼ ।

ରାୟଗଡ଼ ଗୋଟିଏ ଫିଉଡେଟରୀ ଷ୍ଟେଟ୍ । ପରିମାଣ ଫଳ ୧୪୮ ବର୍ଗମାଇଲ । ବର୍ତ୍ତମାନ ଲୋକସଂଖ୍ୟା ୧୭୪୯୧୧; ଏହାର ପୂର୍ବଦିଗ ଧରି ଗାଙ୍ଗପୁର, ଯଶପୁର, ଉଦୟପୁର, ସରଗୁଜା ପ୍ରଭୃତି ରାଜ୍ୟ ଅନ୍ତର୍ଗତ 'ରାଜ୍ୟମାନ । ଦକ୍ଷିଣରେ ସମ୍ବଲପୁର । ପ୍ରଧାନ ଉତ୍ପନ୍ନ ଦ୍ରବ୍ୟ କୋଷ(ତସର କୋଷି) ଏହି ରାଜ୍ୟର ଅଧିପତି ଶ୍ରୀଯୁକ୍ତ ଭୂପଦେବ ସିଂହ; 'ପୁତ୍ରକଳତ୍ର, ବିଭବ ଓ ଶକ୍ତିରେ ସୁସେବିତ । ଶୁଣିଲୁଁ ପ୍ରଜାବାତ୍ସଲ୍ୟ ଗୁଣ ଏହାଙ୍କଠାରେ ବିଲକ୍ଷଣ ଅଛି ।

ବେଙ୍ଗଲ ନାଗପୁର ରେଲର ରାୟଗଡ଼ ଷ୍ଟେସନରେ ଅବତରଣ କରି ବିଶ୍ରାମର ସ୍ଥାନ ଅନୁସନ୍ଧାନ କଲୁଁ । ଦେଖିଲୁଁ, ରାଜପ୍ରାସାଦ ନିକଟରେ । କଲିକତାନିବାସୀ ଦେବାନ ରାମଶରଣ ଘୋଷ ମହାଶୟ ଛୁଟିରେ ଯାଇ ଥିବାରୁ ସହସା ଆଶ୍ରୟ ପାଇବାର ଅସୁବିଧା ଘଟିଲା । ଡାକ୍ତର ବାବୁଙ୍କ ଡେରା ଖୋଜି ଗଲୁଁ । ରାତ୍ରି ଅଧିକ ହେଲାଣି । ମାତ୍ର ସହର ଓ ରାଜବାଡି ଷ୍ଟେସନର ଅତି ନିକଟବର୍ତ୍ତୀ ଥିବାରୁ ଅବାଧ ଲୋକଚଳାଚଳ ଲାଗିଥିଲା । ଅଜ୍ଞାତ ବ୍ୟକ୍ତିଙ୍କୁ ଅପରିଚିତ ସ୍ଥାନରେ ଯେପରି ଅଡୁଆ ଲାଗେ, ଆମ୍ଭ ଭାଗ୍ୟକୁ ତାହାହିଁ ଘଟିଲା । ଡାକ୍ତରଖାନା ବାରଣ୍ଡାରେ ଅଯାଚିତ ଅତିଥି ପ୍ରାୟ ଶୋଇଲୁଁ । ନିଦ୍ରା ହେଲା ନାହିଁ । ଘୋଡାଗାଡି ଓ ଏକ୍କା ପ୍ରଭୃତିର ଘନ ଘର୍ଘର-ଶବ୍ଦ । ଅନାଇ ଦେଖିଲୁଁ, ଏକ ଯୋଡି ଘୋଡ଼ାଗାଡି ଆଗରେ ଯୋଡ଼ାଏ ମଶାଲ ଓ ଛତ୍ର ପଛରେ କେତେ ଖଣ୍ଡ ଗାଡି ବେଗରେ ଛୁଟି ଅଛି । ଅନୁମାନ ହେଲା ଏ ଗାଡିରେ ଯାଉଥିବା ବ୍ୟକ୍ତି ରାଜା ବା ରାଜପରିବାରସ୍ଥ କେହି ହେବେ । ପରଦିନ ଅନୁସନ୍ଧାନରୁ ଜାଣିଲୁଁ, ଆମ୍ଭ ଅନୁମାନ ଠିକ୍ । ଆମ୍ଭେମାନେ ଦୋଳପୂର୍ଣ୍ଣିମା ଦିନ ବାମଣ୍ଡା ରାଜଧାନୀ ଦେବଗଡ଼ରେ ଥିଲୁଁ । ଏକ ସପ୍ତାହ କାଳ ନାନା ଦିଗଦେଶ ଭ୍ରମଣ କରି ଏଠାରେ ପହଞ୍ଚି ଦେଖିଲୁଁ, ବସନ୍ତୋତ୍ସବର ଜେର୍ ନାଲି ଅଛି । ନାଚ ତାମସାର ବିରାମ ନାହିଁ । ଅବସ୍ଥା ସ୍ୱଚ୍ଛଳ ନ ହେଲେ ସୌଖୀନତା ଆସେ ନାହିଁ । ନାଗପୁର ରେଲ ରାୟଗଡ଼ର ବାଣିଜ୍ୟଦ୍ୱାର ଫିଟାଇ ଦେଇଅଛି । ଏ ସହରର ଛତିଶଗଡ଼, ବିଭାଗର 'ବର୍ଦ୍ଧମାନ' ହୋଇଅଛି ।

କଚେରୀ, ଡାକ୍ତରଖାନା, ଜେଲଖାନା ଓ ରାଜକୁମାର ସ୍କୁଲ୍ ନଗରର ଅନୁରୂପ । ପୂର୍ବେ ଏ

ସ୍ଥାନର ଅବସ୍ଥା ମନ୍ଦ ଥିଲା । ରେଲ ଖୋଲିବା ଦିନଠାରୁ କିଛି ଉନ୍ନତି ଲଭୁଅଛି, ବିଶେଷ ବାଣିଜ୍ୟରେ । ସହରର ଖାତିରୀ ବ୍ୟବସାୟୀ ବିଦେଶୀ; ସ୍ଥାନୀୟ ଅଧିବାସିମାନେ ଅଲସ ଓ କ୍ଷୀଣକାର୍ଯ୍ୟ । ରାଜକର୍ମଚାରୀ ମଧ୍ୟରେ ଡାକ୍ତର କଟକୀ ବଙ୍ଗାଳୀ, ଓଭରସିୟର ଓ ଦେୱାନ ବଙ୍ଗାଳୀ । ଅବଶିଷ୍ଟ କର୍ମଚାରୀ ସ୍ଥାନୀୟ ଲରିଆ ଓ ଓଡ଼ିଆ ବ୍ରାହ୍ମଣ ଏବଂ କେତେକ ଜଣ ମରହଟ୍ଟା । ନରେଶ ପରିଦର୍ଶନ ସମୟରେ ଏ ମହାଶୟଗଣଙ୍କ ସହିତ ଆଳାପ କରି ସୁଖୀ ହେଲୁଁ । ଦେଖି ଆଶ୍ଚର୍ଯ୍ୟାନ୍ୱିତ ହେଲୁଁ ଏମାନଙ୍କର ଓଡ଼ିଆ ଭାଷା ପ୍ରତି ମମତା ଅଳ୍ପ ନୁହେ । କେହି ଓଡ଼ିଆରେ ରଚିତ ଚୌପଦୀ ସଂଗ୍ରହର ପାଣ୍ଡୁଲିପି ଦେଖାଇଲେ । କେହି ବା ହିତୈଷିଣୀ ଖବରକାଗଜ ଆଣି ଦେଲେ । ଉତ୍କଳ ଭାଷାର ଆଲୋଚନାରେ ଏମାନଙ୍କର ଅନୁରାଗ ଦେଖି ଆଶାତିରିକ୍ତ ପ୍ରୀତିଲାଭ କଲୁଁ । ସହରରେ ଠାବେ ଠାବେ ଓଡ଼ିଆ ତାଳପତ୍ରଲିଖିତ ରାମାୟଣ ପାଠ ହେଉ ଥିବାର ଶୁଣିଲୁଁ । କଟକୀ ଓ କଣ୍ଟିଲୋକବାସୀ କଂସାରିମାନେ ଏଠାରେ ଔପନିବେଶିକ ହୋଇ ବାସ କରୁଅଛନ୍ତି । ଓଡ଼ିଆ କଥା ବେଶ୍ କହୁଅଛନ୍ତି । ସେମାନଙ୍କର ବିବାହିତା ସ୍ତ୍ରୀଲୋକମାନେ ଏତଦ୍ଦେଶୀୟ । ଅନୁସନ୍ଧାନରୁ ଜଣାଗଲା, ପୂର୍ବେ କଟକଅଞ୍ଚଳରୁ କଂସାରିମାନେ ଆସି ବାସ କରିଥିଲେ । ଖାଲପନ୍ଦ ଚୌଡ଼ ସ୍ଥଳରେ ବେଲ୍ଲକଟରୀ ଯୋଗାଉ ଥିଲେ । ଖାଙ୍କର କନ୍ୟାମାନେ ଏବେ କଣ୍ଟିଲୋ କଂସାରିଙ୍କର ପାଣିଗ୍ରହଣ କରି ଲୁଟୁବାକି ରହିଲେ । ଏମାନଙ୍କଠାରୁ ଶୁଣିଲୁଁ, ରାଜା ଉତ୍ତମ ଓଡ଼ିଆ କହି ପାରନ୍ତି । କେହି କେହି ଆମ୍ଭଙ୍କୁ ଉପଦେଶ ଦେଲେ ରାଜାଙ୍କ ସହିତ ହିନ୍ଦି କହିବାକୁ । ଆମ୍ଭର ଇଚ୍ଛା ଥିଲା ଓଡ଼ିଆ ଭାଷାରେ ଆଳାପ କରିଥାନ୍ତୁ ଏବଂ ରାଜାଙ୍କ ଶ୍ରୀମୁଖୋଚ୍ଚାରିତ ଓଡ଼ିଆ ଶୁଣି କୃତାର୍ଥ ହୋଇଥାନ୍ତୁ । ସେ ସୁବିଧା ଆମ୍ଭ ଭାଗ୍ୟକୁ ଘଟିଲା ନାହିଁ । ଏଠାରୁ ସୌଭାଗ୍ୟ ବୃଦ୍ଧି ହେଲେ ଅର୍ଥଲୋଲୁପ ଓ ରୋଜଗାର-ପ୍ରତ୍ୟାଶୀ ଉଜାଡ଼ ଆସନ୍ତି । କାଏଦା କାନୁନ୍ ଯଥାବିଧାନ ଜାରି ନ ଥିଲେ ଉନ୍ନତିବିଶେଷ ହେବ ନାହିଁ । ମନସ୍ତ୍ରେ ଏକାକାର । ଅଫିସର, ଖିଦମତଗାର, ସଓଦାଗର, ସମାଗତ ଭଦ୍ରଦର୍ଶକ, ସମସ୍ତେ ଏକାସନ । ରାଜାସାହେବ ଅମାୟିକ । ରାଜଦର୍ଶନରୁ ଆମ୍ଭେମାନେ ବଞ୍ଚିତ ହେଲୁଁ । ଅପରିଚିତ ବ୍ୟକ୍ତି ଭାଗ୍ୟରେ ସାଧାରଣତଃ ଏହିପରି ଘଟିଥାଏ । ସେ ଯାହା ହେଉ, ଆମ୍ଭର ଅଧ୍ୟୟନ ସିଦ୍ଧ ହୋଇଅଛି । ଲୋକଗଣନର ନୂଆ ପୁରୁଣା ପୋଥି ପଢ଼ା ହୋଇଅଛି । ସମୟରେ ତାହାର ବିବରଣ ପ୍ରକାଶିତ ହେବ । ଏହିଠାରୁ ଉତ୍କଳ ଭାଷା ପ୍ରଚଳିତ ପ୍ରଦେଶର ସୀମା ଧରା ଯାଇପାରେ । କିନ୍ତୁ ଏ ରାଜ୍ୟରେ ଚତୁର୍ଦ୍ଦିଗରେ ଓଡ଼ିଆ ଭାଷା ଅଳ୍ପ ଅଧିକ ଚଳୁଅଛି । ପୁଲଝର—୧୬, ଚନ୍ଦ୍ରପୁର—୧୦, ପଦ୍ମପୁର—୧୬, ରାୟଗଡ଼—୭, ସାରଙ୍ଗଗଡ଼—୭, ଏବଂ ନିଜ ସମ୍ବଲପୁର ଖାଲସାରେ ୧୭ ପଣ ଓଡ଼ିଆ ଭାଷା ପ୍ରଚଳିତ । ଶକ୍ତି, ରାଜନାନ୍ଦ ଗାଁଓ, ଖୈରାଗଡ଼, ଖଡ଼ିଆଳ ପ୍ରଭୃତିରେ ଅଳ୍ପ ଓଡ଼ିଆ ପ୍ରଚଳିତ । ଖଡ଼ିଆଳ ରାଜକୁମାର ଓଡ଼ିଆ ଭାଷାର ଜଣେ କବି ଅଟନ୍ତି ।

ଉତ୍କଳର ପ୍ରତାପଶାଳୀ ମହାନାୟକମାନଙ୍କର ରାଜ୍ୟବିସ୍ତାର ବିବରଣକୁ ଅସମ୍ଭବ କାହାଣୀ ମଣି ଲୋକେ ଅଧୁନା ଅବିଶ୍ୱାସ କରି ନ ପାରନ୍ତି । ଦେଖି ଶୁଣି ଆମ୍ଭ ମନରେ ଯେଉଁ ଧାରଣା ଜନ୍ମି ଅଛି, ତାହା ଲେଖିବୁଁ । ଅନୁସନ୍ଧାନ ଭ୍ରମଯୁକ୍ତ ହେଲେ ସଂଶୋଧନ କରିବା ସୁକଠିନ ନୁହେ । ଓଡ଼ିଶାରେ ଆର୍ଯ୍ୟ ସମାଗମ ଖ୍ରୀଷ୍ଟର ବହୁ ପଶ୍ଚାତରେ । ସମୃଦ୍ଧି ପୂର୍ଣ୍ଣତା ଲଭିଲା ଉତ୍ତାରୁ ମହାନାୟକଗଣ ରାଜ୍ୟ ବିସ୍ତାରକୁ ବହିର୍ଗତ ହେଲେ । ବଙ୍ଗଳା ବିଜୟ କରି ବିଷ୍ଣୁପୁରରେ ମଲ୍ଲରାଜ ରାଜଧାନୀ ସ୍ଥାପନ କଲେ । ସିଂହ, ଶିଖର, ମାନ, ବୀର, ଧଳ, ମଲ୍ଲବୀର, କେଶରୀଗଣ ଭୂୟାଁ ଓ ସାନ୍ତାଳ ଅନାର୍ଯ୍ୟ ଜାତି ଏବଂ ସେମାନଙ୍କର ଅଧିନାୟକମାନଙ୍କୁ ପରାଜିତ ଓ ନିଜ ପରାକ୍ରମରେ ବଶୀଭୂତ କରି ଗୋଟାଏ

ଗୋଟାଏ ରାଜ୍ୟ ସ୍ଥାପନ କଲେ । ମାନଭୂମି, ଉଦୟପୁର, ଗାଙ୍ଗପୁର ଜଶପୁର, ସରଗୁଜା, ରାଜଗଣ ସେହି ବଜସ୍ପିକୁଳର ବଂଶଧର । ଅବଧି ମାତୃଭାଷା ଏହି କୁଳ ହୋଇ ହେଉଅଛି । ଉତ୍କଳ ବ୍ରାହ୍ମଣ ଏମାନଙ୍କର ପୂଜାର୍ହ ହୋଇ ଅଛନ୍ତି । ସାନ୍ତାଲ ପରଗନା ଅଧିକୃତ ହେଲା । ସାନ୍ତାଲ ପରଗଣା ଅର୍ଥାତ୍ ଛୋଟ ନାଗପୁର ବିଭାଗରେ, ସାନ୍ତାଲ ଅଧିକାରକ କେଉଁ ଭୂଞ୍ୟା ଅବଧି ଉକ୍ତ ରାଜ୍ୟମାନଙ୍କରେ ଏକ ଏକ ବୃହତ୍ ଭୂଖଣ୍ଡ ପୁରୁଷାନୁକ୍ରମେ ଅଧିକାର କରି Baron ତୁଲ୍ୟ ଅଧିସ୍ତ ରାଜଗଣଙ୍କୁ କର ଦେଉ ଅଛନ୍ତି । ଗାଙ୍ଗପୁର ରାଜ୍ୟରେ (୧) ନାଗରା (୨) ହେମଗିର (୩) ସର୍ପଗଡ଼ (୪) ସର୍ଗୀପାଲିର ଭୂଞ୍ୟା Baron ଜମିଦାର । ଆଶ୍ଚର୍ଯ୍ୟ ଏହି ଭୂଞ୍ୟା ଜମିଦାରଙ୍କ ମାତୃଭାଷା କେଉଁ କାଳରୁ ଓଡ଼ିଆ ଚଳୁଅଛି । ଅଧୁନା ସେହି ଭାଷାରେ କଥା କହନ୍ତି । ଏ ଓଡ଼ିଆ ଅବଶ୍ୟ ବିକୃତ ହୋଇଥିଲେହେଁ, ଏହାର ଅସ୍ଥି ଓ ମେରୁଦଣ୍ଡ ଓଡ଼ିଆ ଅଟେ ।

ମହାନଦୀର ଉତ୍ପତ୍ତି ସ୍ଥାନ ପର୍ଯ୍ୟନ୍ତ ଓଡ଼ିଆ ଭାଷା ପ୍ରଚାରିତ ହୋଇଥିଲା । କାଙ୍କର ରାଜ୍ୟର କଙ୍କ ପର୍ବତରୁ ଏହାର ପ୍ରଧାନ ଶାଖାର ଉତ୍ପତ୍ତି । ଏ ନଦୀ ଉତ୍ତରବାହିନୀ ହୋଇ ବିଲାସପୁର ସୀମା ସ୍ପର୍ଶ କରି ପୂର୍ବଦିଗକୁ ପ୍ରବାହିତା ହୋଇ ଉତ୍ତର ଦିଗରେ ରାୟଗଡ଼ ରଖି ସମ୍ବଲପୁରରେ ପହଞ୍ଚିଅଛି । ପାଟଣା ଓ କଳାହାଣ୍ଡିର ମଧ୍ୟବର୍ତ୍ତୀ ତେଲନଦୀ ମହାନଦୀର କରଦ ।

ଉତ୍ତରରୁ ରାୟଗଡ଼, ସାରଙ୍ଗଗଡ଼, ଫୁଲଝର, ବୃନ୍ଦାଦମ୍ବର, ପାଟଣା, କଳାହାଣ୍ଡି ପର୍ଯ୍ୟାୟକ୍ରମେ ଦକ୍ଷିଣକୁ ଆସି ମାନ୍ଦ୍ରାଜହତା ସ୍ପର୍ଶ କରିଅଛି । ଏହି ପର୍ଯ୍ୟନ୍ତ ମଧ୍ୟ ପ୍ରଦେଶରେ ଓଡ଼ିଆ ଭାଷାର ସୀମା । ବସ୍ତର ରାଜ୍ୟ ୧୩ ହଜାର ବର୍ଗମାଇଲରୁ ଅଧିକ । ସମସ୍ତ ଓଡ଼ିଶା ଗଡ଼ଜାତ ଭୂଖଣ୍ଡର ପରିମାଣ ୧୬ ହଜାର ବର୍ଗମାଇଲରୁ କିଛି ଅଧିକ । ବସ୍ତରର ପୂର୍ବଦିଗରେ ମାନ୍ଦ୍ରାଜହତା, ପଶ୍ଚିମରେ ବସ୍ତର ଓ ନିଜାମ ରାଜ୍ୟ । ଏ ରାଜ୍ୟର ନୃପତି ଉତ୍କଳ ନୃପକୁଳୋଦ୍ଭୂତ । ମାତୃଭାଷା ଓଡ଼ିଆ । ରାଜପରିବାରରେ ଭିନ୍ନ ଭାଷା ଶିକ୍ଷିତ ହେଉ ଥିବାର ଅନୁମାନ । ଏ ରାଜ୍ୟ ଦୋଠେଲାରେ ରହିଅଛି । ଏକ ଦିଗରେ ଉର୍ଦ୍ଦୁ ଅପର ଦିଗରେ ମାନ୍ଦ୍ରାଜୀ ଭାଷା । ମୂଳକଥା ମହାନଦୀ ସ୍ରୋତ ଧରି ଉତ୍କଳ ବୀରକୁଳ ଦିଗ୍‌ବିଜୟ କରିଥିଲେ, ଗଣ୍ଡୋୟାନାର ଅର୍ଦ୍ଧାଂଶ ଅଧିକାର କରିଥିଲେ । ଏହି ଅଧିକାର ବିସ୍ତାର ସଙ୍ଗେ ସଙ୍ଗେ ଓଡ଼ିଆଭାଷାର ସୀମା ବଢ଼ିଅଛି । ବହୁଲକ୍ଷ ଗଣ୍ଡ ଓ କୋହ୍ନଙ୍କର ମଧ୍ୟ ଏହି ଭାଷା ମାତୃଭାଷା ହୋଇଅଛି ।

ସମ୍ବଲପୁର ଛତିଶଗଡ଼ ବିଭାଗର କଟକ । କଟକ ମହାନଦୀ ତୀରରେ । ସମ୍ବଲପୁର ମହାନଦୀ ତୀରରେ । କଟକ ଉତ୍କଳର ରାଜପାଟ, —ସମ୍ବଲପୁର ଛତିଶଗଡ଼ ଓ ଅନ୍ୟ ଉତ୍କଳ ରାଜ୍ୟର ରାଜପାଟ । ଏହି ଦୁଇ ଶକ୍ତିର ଅଧୀନରେ ଗଡ଼ଜାତ, କିଲ୍ଲାଜାତ, କରଦ, ମିତ୍ର ସମସ୍ତ ରାଜ୍ୟର ରାଜା ଓ ଖଣ୍ଡପତିମାନେ ଥିଲେ । ସମସ୍ତ ରାଜ୍ୟରେ ଏକ ଭାଷା । କଟକଠାରୁ ସମ୍ବଲପୁର ପ୍ରାୟ ଦୁଇ ଶତ ମାଇଲ । ଉକ୍ତ ସମ୍ବଲପୁରକୁ ଓଡ଼ିଆ ଭାଷାର ଅନ୍ୟତର କେନ୍ଦ୍ର କରି ଉତ୍ତର ଦକ୍ଷିଣ ଓ ପଶ୍ଚିମ ଦିଗକୁ ହାରାହାରି ଅଳ୍ପାଧିକ ଦୁଇ ଶତ ମାଇଲ ପର୍ଯ୍ୟନ୍ତ ଓଡ଼ିଆ ଭାଷାର ଅଧିକୃତ ସ୍ଥାନ ଥିଲା ।

ଆମ୍ଭେମାନେ ରାୟଗଡ଼ ଛାଡ଼ି ଷ୍ଟେସନ ଅଶି ମାଇଲ ଲେଉଟି ଆସି ସମ୍ବଲପୁରରେ ପହଞ୍ଚିଲୁଁ । ସମ୍ବଲପୁରର ପୂର୍ବ ସୌଭାଗ୍ୟ ଲୁପ୍ତ ହୋଇଅଛି । ମନ୍ଦିର, ଦୁର୍ଗ, ମହାନଦୀଗର୍ଭସ୍ଥ ପଥର ବନ୍ଧ, ସୁପ୍ରଶସ୍ତ ଘାଟ ଏବଂ ଜୀର୍ଣ୍ଣ ରାଜଭବନମାନ ଅତୀତ ଗୌରବର ପ୍ରମାଣ ଧରି ବସିଅଛି । ଅରଣ୍ୟ ଓ ଉତ୍କଳ ବ୍ରାହ୍ମଣ ଏବଂ କରଣ ପ୍ରଧାନ ଅଧିବାସୀ । ପଡ଼ାମାନ ବ୍ରାହ୍ମଣ ପଡ଼ା ମହାନ୍ତି ପଡ଼ା ଇତ୍ୟାଦି ନାମରେ କଥିତ । ବ୍ରାହ୍ମଣମାନଙ୍କ ଅଙ୍ଗରେ ଆର୍ଯ୍ୟ ଲକ୍ଷଣ ଦେଦୀପ୍ୟମାନ । ଏମାନେ ଓଡ଼ିଆରେ ରାଜକାର୍ଯ୍ୟ କରି ଯାଉ ଥିରେ ଉଠୁଥିଲେ ।

ନାଗପୁରରେ ଡେପ୍ କମିଶନର ଓ ରାଏପୁରରେ ପୋଲିଟିକେଲ କମିଶନର ସାହେବ ମାନଙ୍କର ଅଫିସ୍ ଥିବାରୁ ସେ ସ୍ଥାନମାନଙ୍କର ପ୍ରଚଳିତ ରାଜକୀୟ ଭାଷା ହିନ୍ଦି । ସେହି ହିନ୍ଦି ଭାଷା ଏ ଅଞ୍ଚଳର ଅର୍ଥାତ୍ ସମ୍ବଲପୁର ଜିଲ୍ଲାର ରାଜକୀୟ ଭାଷା କରାଇବା ସକାଶେ ମହାରାଷ୍ଟ୍ରୀ ଉଚ୍ଚ କର୍ମ୍ମଚାରି-ମାନଙ୍କର ମନ୍ତ୍ରଣା ସଫଳ ହେଲା । ଭୂତପୂର୍ବ ଡେପ୍ କମିଶନର ଉଡ୍‌ବର୍ଣ୍ଣ ମହୋଦୟ ସେମାନଙ୍କର କାମନା ସିଦ୍ଧ କରିଦେଲେ । ଓଡ଼ିଆ ସ୍କୁଲମାନ ଅରକ୍ଷିତ ହେଲା, ସାହାଯ୍ୟବଞ୍ଚିତ ହେଲା । ରାଜ-ବଳରେ ହିନ୍ଦି ଓଡ଼ିଆ ରାଜଦେଶରେ ଅର୍ଦ୍ଧଚନ୍ଦ୍ର ଦେଲା । ଏହି ଭାଷା ବିଭ୍ରାଟକୁ ଉତ୍କଳ ଭାଷାର ମହାପରୀକ୍ଷା ବୋଲିବାକୁ ହେବ । ଯେଉଁ ବ୍ରାହ୍ମଣ ଓ କରଣ ମାନେ ଉତ୍କଳ ଭାଷା ବଳରେ ଇଂରାଜୀ ନଜାଣି ଏକ୍‌ଷ୍ଟ୍ରା ଏସିଷ୍ଟାଣ୍ଟ କମିଶନର ଓ ତହସିଲ-ଦାର ପ୍ରଭୃତି ପଦରେ ନିଯୁକ୍ତ ହୋଇଥିଲେ, ହେଉଥିଲେ, ସେମାନଙ୍କ ଘରେ ଭୁକୁଣୀ ପଡ଼ିଲା । ରକ୍ଷାକଳୀ କମ୍ପୁତ୍ପରମାଣରେ ଏଠା ହାଇ ସ୍କୁଲ । ଯୁଚଭୁର, ପ୍ରବୀଣ, ବୃଦ୍ଧପୁଙ୍ଗ ଧରଣୀ ମିଶ୍ରେ ଓ ଦାଶରଥି ପୂଜାରୀ ଆପଣା ପୁତ୍ରମାନଙ୍କୁ ଇଂରାଜୀ ପଢାଇ M. A. B. A. କରାଇନେଲେ । ତାଙ୍କ ଦେଖା ଦେଖି ଅନେକ ସମ୍ବଲପୁରୀ ଛାତ୍ର ଇଂରାଜୀ ଶିଖୁ ଅଛନ୍ତି ଓ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଉ ଅଛନ୍ତି । ଏଠା ହେଡ୍ ମାଷ୍ଟର ବାବୁ ଦାଶରଥି ପାଣିଗ୍ରାହୀ ଉତ୍କଳର ଗୋଟିଏ ରତ୍ନ । ଉତ୍କଳରେ ଅବଧି ଯାଏଁ ଓଡ଼ିଆ କେହି ଜିଲ୍ଲା ସ୍କୁଲ ହେଡ୍ ମାଷ୍ଟର ନାହାନ୍ତି । ଧନ୍ୟ ପାଣିଗ୍ରାହୀ ମହାଶୟ । ମହାରାଷ୍ଟ୍ରପ୍ରଧାନ ଶିକ୍ଷାବିଭାଗରେ ଉଚ୍ଚ ପଦରେ ରହି ଦାଶରଥି ବାବୁ ଯେ ଯଶସ୍ୱୀ ହୋଇ ଅଛନ୍ତି, ଏହା ଉତ୍କଳୀୟମାନଙ୍କ ପକ୍ଷରେ ଗୌରବର ବିଷୟ । ଦାଶରଥି ବାବୁ ଚରିତ୍ରବାନ୍ ଓ କର୍ତ୍ତବ୍ୟ-ନିଷ୍ଠ । ଛାତ୍ରମାନେ ତାହାଙ୍କୁ ଅତ୍ୟନ୍ତ ଭକ୍ତି କରନ୍ତି । ସୁତରାଂ ଛାତ୍ରଚରିତ୍ରଗଠନ ତାଙ୍କ ପକ୍ଷରେ ସହଜ ହୋଇଅଛି । ସମ୍ବଲପୁର ଓଡ଼ିଆମାନେ ଭାଗ୍ୟବାନ୍ ଜଣେ ଓଡ଼ିଆ ବ୍ରାହ୍ମଣ ହେଡ୍ ମାଷ୍ଟର ପାଇ ସୁଖୀ ହୋଇଅଛନ୍ତି । ମହାରାଜ ମୟୂରଭଞ୍ଜାଧିପତି ଓ ମହାରାଜ ସର୍ ସୁଚଳଦେବ ବାମଣ୍ଡାଧିପତି ଓଡ଼ିଆଙ୍କ ପ୍ରତି ଶ୍ରଦ୍ଧାବାନ୍ ନ ହେଲେ ଯେ କ୍ଷତିଟା ହେବ, ସେ କ୍ଷତି କି ସାମାନ୍ୟ ? କାରଣ ଗୁଣଗ୍ରାହୀ ବୋଲି ଯେଉଁ କ୍ଷମତାଶାଳୀ ନୃପତିଗଣ ଉତ୍କଳରେ ଯଶଃପତାକା ଉଡ଼ାଇ ଅଛନ୍ତି, ଉତ୍କଳର ଉନ୍ନତି ପକ୍ଷରେ କୌଣସି ଅଂଶରେ ସେମାନଙ୍କର ଅମନୋଯୋଗ ସାଧାରଣଙ୍କ ଚକ୍ଷୁରେ ପଡ଼ିବ ନାହିଁ କି ? ବାମଣ୍ଡା ଓ ମୟୂରଭଞ୍ଜ ହାଇ ସ୍କୁଲ ଚଳାଇବାଲାଗି ଅବଧି କି ଉତ୍କଳ ପୁଏ ଯୋଗ୍ୟ ହୋଇ ନାହାନ୍ତି ? ଦାଶରଥି ବାବୁ କି ସେ ସନ୍ଦେହ ଅପନୋଦନ କରୁ ନାହାନ୍ତି ? ଆମ୍ଭର କଥଟା ବଳ ବଳ ଆସିଲା । ମାଇ ଘରଧନ ପର ଖାଇବ, ଘରପୁଅ ଉପାସ ଶୋଇବ, ଏକଣ ଭଲ କଥା ? "Charity bcgins at home" ଅମ୍ଭେ କହୁଁ ସହାନୁଭୂତିଟା ଘରୁ ଆରମ୍ଭ ହେଉ । ଗଙ୍ଗାନଦୀଟା ଯେ ଡେଇଁ ବୁଲିଚ । ଏକଥା ସିନା ବଳ ? ଅମ୍ଭେ ବଡ଼—ଅମ୍ଭେ ଯାହା ବୁଝୁଁ ସେଇଟା ବଡ଼, ଏପରି ଭାବଟା ଅମ୍ଭ ଭଳିଆ କ୍ଷୁଦ୍ରମନା ଲୋକଙ୍କର ଥାଇପାରେ । ଈଶ୍ୱର କରନ୍ତୁ, ଅମ୍ଭର ନେତାମାନେ ଅମ୍ଭମାନଙ୍କ ଜାତୀୟ ଜୀବନରେ ଜୀବନୀଶକ୍ତି ଦେବାକୁ ଯେମନ୍ତ ସର୍ବଦା ଯତ୍ନଶୀଳ ହେଉନ୍ତୁ । ସମ୍ବଲପୁରର ଶିକ୍ଷିତ ଓଡ଼ିଆଯୁବକ ଓ ପ୍ରବୀଣମାନଙ୍କୁ ଜିଜ୍ଞାସ୍ୟ ମାତୃଭାଷାକୁ କାଙ୍ଗାଳ ଦେଖିବା ନିଜ ଗର୍ଭଧାରିଣୀକୁ କାଙ୍ଗାଳୁଣୀ ଦେଖିବା ପରି ନୁହେଁ କି ? ସମ୍ବଲପୁରର ସମାଜ-ନେତାମାନେ ସ୍ୱ ସ୍ୱ ସ୍ୱାର୍ଥ ସକାଶେ ବ୍ୟସ୍ତ । ଏକଥା କାହିଁ ? ମାତୃଭାଷାର ପୁଷ୍ଟିସାଧନ ବିଷୟରେ ଚେଷ୍ଟା କାହିଁ ? ଏଠାରେ ଓଡ଼ିଆଙ୍କର ଓଡ଼ିଆ ପ୍ରେସ୍ କାହିଁ ? ସମ୍ବାଦପତ୍ର କାହିଁ ? ମାତୃଭାଷା ଜୀବନର ଜୀବନ । ତାହାର ଉନ୍ନତି ଯେ ନ କଲା, ସେ କଣ କଲା ? କି ସମ୍ପଦରେ ସେ ଭାଷା ପୁରୁଷଙ୍କୁ ଧନୀ କରିବ ? ଧନରତ୍ନ ସବୁ ଯିବ, ରହିବ

ଅକ୍ଷୟ ହୋଇ ଜ୍ଞାନରତ୍ନ ମାତୃଭାଷା ଗର୍ଭରେ— ସର୍ବସାଧାରଣଙ୍କ ନିକଟରେ । ଏ ସୁଯୋଗ ବ୍ୟର୍ଥ ହେଲେ, ଜୀବନ ବ୍ୟର୍ଥ ହେବ, ଜାତୀୟତା ବ୍ୟର୍ଥ ହେବ ।

ଶ୍ରୀ ଭୋଳାନାଥ ସାମନ୍ତରାୟ ।

---

## ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା ।

ପ୍ରାୟ ତେର ବର୍ଷ ପୂର୍ବେ କେତେକ ବଙ୍ଗାଳୀ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ଲୋପ କରିବାକୁ ଚେଷ୍ଟା କରି ଅକୃତକାର୍ଯ୍ୟ ହୋଇଥିଲେ । ବିଧାତାଙ୍କ କୃପାରେ ଭାଷା-ଜୀବନର ସେ ମହାରିଷ୍ଟର ଖଣ୍ଡନ ହୋଇଗଲା । ଭାଷାତତ୍ତ୍ୱକ୍ଷେତ୍ରରେ ଓ ରାଜଦ୍ୱାରରେ ବର୍ତ୍ତମାନ ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟ ସୁପ୍ରତିଷ୍ଠିତ । ପୁଣି ସକଳ ବିଷୟ ବିବେଚନା କରି ଦେଖିଲେ ଏହା ମଧ୍ୟ ପ୍ରତିପନ୍ନ ହେବ ଯେ ଗତ ତେର ବର୍ଷ ମଧ୍ୟରେ ଅନ୍ୟାନ୍ୟ ପ୍ରାଦେଶିକ ଭାଷାର ତୁଳନାରେ ଓଡ଼ିଆ ଭାଷାର ଉନ୍ନତି ନିତାନ୍ତ ହେୟ ନୁହେ । ବଙ୍ଗଳାର ମାଇକେଲ, ଈଶ୍ୱରଚନ୍ଦ୍ର, ଅକ୍ଷୟକୁମାର, ହେମଚନ୍ଦ୍ର, ବଙ୍କିମଚନ୍ଦ୍ର, ରବୀନ୍ଦ୍ରନାଥ ପ୍ରଭୃତି ସାହିତ୍ୟରଥୀମାନଙ୍କର ପ୍ରତିଭାର ଉଜ୍ଜ୍ୱଳ ସାହିତ୍ୟକ୍ଷେତ୍ରରେ ଭୂମିଷ୍ଠ ହୋଇ ନ ଥିଲେ ସୁଦ୍ଧା, ରାଧାନାଥ, ମଧୁସୂଦନ, ଫକୀରମୋହନ, ରାମଶଙ୍କର, ପ୍ୟାରୀମୋହନ ପ୍ରଭୃତି ସାହିତ୍ୟସେବକମାନଙ୍କର ଅମଳ ଉଜ୍ଜ୍ୱଳ ସାହିତ୍ୟକ୍ଷେତ୍ରରେ କୌଣସି ପ୍ରକାରରେ ଅଳ୍ପ ସମ୍ମାନିତ ନୁହେ । ପ୍ରାଚୀନ ବିଭବ ସମ୍ବନ୍ଧରେ ମଧ୍ୟ ଓଡ଼ିଆ ଭାଷା ଆପଣାର ଭଗିନୀମାନଙ୍କ ଅପେକ୍ଷା ନିତାନ୍ତ ଦରିଦ୍ର ନୁହେ । ବରଂ ପ୍ରାଚୀନତ୍ୱ ବିଷୟରେ ତାହାର ଅନେକ ଭଗିନୀଙ୍କ ଅପେକ୍ଷା ଶ୍ରେଷ୍ଠ ହୋଇ ପାରେ । ବଙ୍ଗଳାର ଭାରତଚନ୍ଦ୍ର, କାଶୀରାମ, କୀର୍ତ୍ତିବାସ ପ୍ରଭୃତିଙ୍କ ତୁଳନାରେ ଉପେନ୍ଦ୍ରଭଞ୍ଜ, କବିସୂର୍ଯ୍ୟ ବ୍ରହ୍ମା, ଜଗନ୍ନାଥ ଦାସ, ବଳରାମ ଦାସ ପ୍ରଭୃତି ହୀନ ହେବେ ନାହିଁ । ଶେଷୋକ୍ତ ମହାଜନମାନେ ଓଡ଼ିଆ ଭାଷାକୁ ଯେଉଁ ସବୁ ଅମୂଲ୍ୟ ରତ୍ନରାଜି ଦ୍ୱାରା ଅଳଙ୍କୃତ କରି ଯାଇ ଅଛନ୍ତି, ତାହା ଯେ କୌଣସି ବିଭବଶାଳୀ ସାହିତ୍ୟ ପକ୍ଷରେ ଉପଯୁକ୍ତ ଅଟେ । ରାଜକୀୟ ବିଭାଗ ଅନୁସାରେ ଓଡ଼ିଶାର ବିସ୍ତୃତି ଅତିସଙ୍କୀର୍ଣ୍ଣ ସୀମା ମଧ୍ୟରେ ଅବଦ୍ଧ ହେଲେ ସୁଦ୍ଧା ପ୍ରକୃତ ଓଡ଼ିଆଭାଷୀ ପ୍ରଦେଶର ବିସ୍ତୃତି ନିତାନ୍ତ ଅଳ୍ପ ନୁହେ । ପ୍ରକୃତିର ବିଚିତ୍ରତା, ସୁପ୍ରାଚୀନ ଇତିହାସ, ସଭ୍ୟଜାତିର ବିସ୍ମୟୋତ୍ପାଦକ ଶିଳ୍ପବିଭବ, ବୌଦ୍ଧଧର୍ମର ଲୁପ୍ତ ଆଧିପତ୍ୟ, ଏ ସକଳ ସାହିତ୍ୟୋନ୍ନତିର ବୀଜଗୁଡ଼ିକ ଓଡ଼ିଶାରେ ପ୍ରଚୁର ପରିମାଣରେ ନିହିତ ଅଛି । ଏକା "ଚକାଡୋଳା କାଳିଆ" ସମସ୍ତ ପୃଥିବୀର ସମ୍ମୁଖରେ କ୍ଷୁଦ୍ର ଓଡ଼ିଶା ଓ ଦରିଦ୍ର ଓଡ଼ିଆପୁଅଙ୍କୁ ସମ୍ମାନିତ କରିବାକୁ କ୍ଷମ ହୋଇଅଛି । ଅଳ୍ପାଧିକ ପରିମାଣରେ ସବୁ ଅଛି । ଅଭାବ କେବଳ ପରିଶ୍ରମ ଓ ଯତ୍ନର ।

ବ୍ରିଟିଶ ଗଭର୍ଣ୍ଣମେଣ୍ଟ ଯେତେବେଳେ ଆମ୍ଭମାନଙ୍କର ଶିକ୍ଷାଭାର ସ୍ୱହସ୍ତରେ ଗ୍ରହଣ କଲେ, ସେତେବେଳେ ଏକ ପ୍ରକାର ନିଶ୍ଚିତ ହୋଇଥିଲା ଯେ କେବଳ ସଂସ୍କୃତ ବା ଇଂରାଜୀ ସାହାଯ୍ୟରେ ସମସ୍ତ ଶିକ୍ଷା ପ୍ରଦତ୍ତ ହେବ । ମାତ୍ର ତାହା ହେଲେ ଭାରତର ନାନାପ୍ରାଦେଶିକ ଭାଷାମାନ ପୁଷ୍ଟ ହୋଇ ପାରିବ ନାହିଁ ବୁଝି ସାର୍ ମେକଲେପ୍ରମୁଖ ରାଜନୀତିଜ୍ଞ ପଣ୍ଡିତମଣ୍ଡଳୀ ତହିଁରେ ଘୋର ପ୍ରତିବାଦ କରି ଦେଶୀୟ ଭାଷାମାନଙ୍କ ସାହାଯ୍ୟରେ ଅଧିକାଂଶ ବିଷୟର ଶିକ୍ଷା ପ୍ରଦତ୍ତ ହେବ ବୋଲି ସ୍ଥିର କଲେ । ସେହି ଦିନଠାରୁ ପ୍ରକୃତପକ୍ଷେ ପ୍ରାଦେଶିକ ଭାଷାମାନଙ୍କର ପ୍ରକୃତ ଉନ୍ନତିର ସୂତ୍ରପାତ ହେଲା ।

ବାସ୍ତବିକ ତାହା ହୋଇନଥିଲେ ଆଜ ଆମ୍ଭେମାନେ ବଙ୍ଗଳା, ଓଡ଼ିଆ, ମରହଟ୍ଟି, ତାମିଲ ପ୍ରଭୃତି ଭାଷାର ଏତେ ଉନ୍ନତି ଦେଖି ପାରନ୍ତୁ ନାହିଁ। କ୍ରମେ ଦେଶ ମଧ୍ୟରେ ଯେତେବେଳେ ନାନା ସ୍ଥାନରେ ବିଶ୍ୱବିଦ୍ୟାଳୟମାନ ସ୍ଥାପିତ ହେଲା । ସେତେବେଳେ କର୍ତ୍ତୃପକ୍ଷମାନେ ଅତ୍ୟନ୍ତ ସଦ୍‌ବିବେଚନାପୂର୍ବକ ପ୍ରାୟ ସକଳ ପ୍ରଧାନ ପ୍ରଧାନ ପ୍ରାଦେଶିକ ଭାଷାମାନଙ୍କ ବିଶ୍ୱବିଦ୍ୟାଳୟର ସୀମାର ଅନ୍ତର୍ନିବିଷ୍ଟ କଲେ । ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ତ ଏକାବେଳକେ ସଂସ୍କୃତକୁ ପରିତ୍ୟାଗ କରି କେବଳ ଦେଶୀୟ ଭାଷାମାନଙ୍କୁ ବି, ଏ, ପରୀକ୍ଷା ପର୍ଯ୍ୟନ୍ତ ସର୍ବତ୍ର Second language ର ଆସନ ଦେଇଅଛି । ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟମାନଙ୍କ ମଧ୍ୟରେ କଲିକତା ଓ ବୋମ୍ବାଇ ବିଶ୍ୱବିଦ୍ୟାଳୟଦ୍ୱୟ ଏପର୍ଯ୍ୟନ୍ତ ସଂସ୍କୃତ ଭାଷାଛଡ଼ା ଅନ୍ୟ କୌଣସି ପ୍ରାଦେଶିକ ଭାଷାକୁ ପ୍ରବେଶିକା ପରୀକ୍ଷା ବ୍ୟତୀତ ଅନ୍ୟାନ୍ୟ ଉଚ୍ଚତର ପରୀକ୍ଷାମାନଙ୍କରେ ପ୍ରବେଶାଧିକାର ଦେଇ ନ ଥିଲେ । ବୋମ୍ବାଇର ସୁପୁତ୍ର ସ୍ୱର୍ଗୀୟ ମହାତ୍ମା ରାନାଡେ ଓ ବଙ୍ଗଳାର "ବଙ୍ଗୀୟ ସାହିତ୍ୟ ପରିଷତ୍" ନାମକ ବିଦ୍ୱନ୍‌ମଣ୍ଡଳୀର ବାରମ୍ବାର ଯୁକ୍ତିପୂର୍ଣ୍ଣ ପ୍ରାର୍ଥନାରେ ଉକ୍ତ ବିଶ୍ୱବିଦ୍ୟାଳୟ ଦ୍ୱୟ ଅବଶେଷରେ ମରହଟ୍ଟୀ ଓ ଉର୍ଦ୍ଦୁ, ବଙ୍ଗଳା, ହିନ୍ଦି ଭାଷାମାନଙ୍କୁ ଆପଣା ଆପଣାର ଉଚ୍ଚତର ପରୀକ୍ଷାମାନଙ୍କରେ ପ୍ରବେଶାଧିକାର ପ୍ରଦାନ କରିଅଛନ୍ତି । ଏହା ଦେଖି ଉତ୍କଳର କେତେକ ଛାତ୍ର-ସନ୍ତାନ ଓଡ଼ିଆ ଭାଷାକୁ ଉକ୍ତ ଅଧିକାର ଦେବା ପାଇଁ ବିଶ୍ୱବିଦ୍ୟାଳୟ ନିକଟରେ ପ୍ରାର୍ଥନା କରିଥିଲେ । ଦୁଃଖର ବିଷୟ, ବିଶ୍ୱବିଦ୍ୟାଳୟ ଛାତ୍ରମାନଙ୍କର ଉକ୍ତ ପ୍ରାର୍ଥନା ଯୁକ୍ତିଯୁକ୍ତ ନ ଥିବାର କହି ତାହା ପରିତ୍ୟାଗ କଲେ । ଏଥିରେ ହତାଶ ନ ହୋଇ ଛାତ୍ରମଣ୍ଡଳୀ ପୁନର୍ବାର ବଙ୍ଗଳାର ଦୟାଳୁ ଶାସନକର୍ତ୍ତାଙ୍କ ନିକଟରେ ଆବେଦନ କରିବାରୁ ଏତେଦିନ ପରେ ସେମାନଙ୍କର ପ୍ରାର୍ଥନା ସଫଳ ହୋଇଅଛି । ଆଗାମୀ ବର୍ଷରୁ ଏଫ୍, ଏ, ଓ ବି, ଏ, ପରୀକ୍ଷାମାନଙ୍କରେ ଓଡ଼ିଆ ଭାଷାରେ ମୌଳିକ ରଚନାର ପ୍ରଶ୍ନ ପ୍ରଦତ୍ତ ହେବାର ବିଜ୍ଞାପନ ବାହାରିଅଛି । ଓଡ଼ିଆ ଭାଷା ପକ୍ଷରେ ଏହା ଅବଶ୍ୟ ଗୋଟିଏ ଶୁଭ ସମ୍ବାଦ ବୋଲିବାକୁ ହେବ । ପୁଣି, ସମ୍ପୂର୍ଣ୍ଣରୂପେ ଛାତ୍ରମାନଙ୍କ ଯତ୍ନରେ ଏହି ଅଧିକାରଟି ଲବ୍ଧ ହେବାରୁ ସେମାନେ ଯେ ଦେଶବାସିଙ୍କର ଅଶେଷ ଧନ୍ୟବାଦର ପାତ୍ର ହୋଇଅଛନ୍ତି, ତାହା ବୋଲିବା ବାହୁଲ୍ୟ ମାତ୍ର । ଯେଉଁ ସଦୁଦ୍ଦେଶ୍ୟଦ୍ୱାରା ପ୍ରଣୋଦିତ ହୋଇ ସେମାନେ ମାତୃଭାଷାର ସେବା କରିବାରେ ପ୍ରବୃତ୍ତ ହୋଇଅଛନ୍ତି, ଈଶ୍ୱର ଆଶୀର୍ବାଦ କରନ୍ତୁ, ସେହି ପବିତ୍ର ଉଦ୍ଦେଶ୍ୟ ସାଧନ ନିମିତ୍ତ ସେମାନେ ଯଥେଷ୍ଟ ବଳ ପ୍ରାପ୍ତ ହେଉନ୍ତୁ ଏବଂ ଦୀନା ମାତୃଭାଷା ପ୍ରତି ସେମାନଙ୍କର ଏଷା ଉତ୍ତରୋତ୍ତର ବୃଦ୍ଧିଲାଭ କରୁ ।

ପ୍ରଚଳିତ ଉଚ୍ଚ ଶିକ୍ଷାପ୍ରଣାଳୀସହିତ ଭାଷାର ସମ୍ବନ୍ଧ ନ ରହିଲେ ଭାଷାର ଉନ୍ନତି ଅସମ୍ଭବ । ଛାତ୍ରମଣ୍ଡଳୀର ଉଦ୍ୟମ ଓ ଯତ୍ନରେ ଉକ୍ତ ସମ୍ବନ୍ଧ ସ୍ଥାପିତ ହେଲା । ବର୍ତ୍ତମାନ ଆମ୍ଭମାନଙ୍କର କର୍ତ୍ତବ୍ୟ ପାଳନର ସମୟ ଉପସ୍ଥିତ । ଛାତ୍ରମାନଙ୍କର ଯେ ଆଉ କିଛି କର୍ତ୍ତବ୍ୟ ନାହିଁ, ତାହା ଆମ୍ଭେମାନେ କହୁ ନାହୁଁ । ବରଂ ଦେଶବାସିମାନଙ୍କ ଅପେକ୍ଷା ଏବିଷୟରେ ସେମାନଙ୍କ କର୍ତ୍ତବ୍ୟ ଅନେକ ବେଶି । ତାହା ଆମ୍ଭେମାନେ କ୍ରମେ ପ୍ରତିପନ୍ନ କରିବୁଁ । ଦେଶବାସିଙ୍କର କର୍ତ୍ତବ୍ୟ ପ୍ରଥମେ ଆଲୋଚନା କରାଯାଉ । ଉତ୍କଳ ସାହିତ୍ୟ ଅତ୍ୟନ୍ତ ଦରିଦ୍ର । ଏହାର ପ୍ରାଚୀନ ବିଭବ ଯାହା ଅଛି, ତାହାର ଅଧିକାଂଶ ତାଳପତ୍ର ପୋଥିରେ ନିବଦ୍ଧ ଅଛି । ଗତ ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ଯାହା ପ୍ରକାଶିତ ହୋଇଅଛି, ତାହା ଅତି ସାମାନ୍ୟ । ସେଗୁଡ଼ିକ ସହିତ ଛାତ୍ରମାନେ କିପରି ପରିଚିତ ହେବେ ? ଓଡ଼ିଆ ଭାଷା କେଉଁ ସମୟରେ କି ପରିବର୍ତ୍ତନର ମଧ୍ୟ ଦେଇ ବର୍ତ୍ତମାନ ଅବସ୍ଥା ପ୍ରାପ୍ତ

ହୋଇ ଅଛି, ଯାହା ଛାତ୍ରମଣ୍ଡଳୀ କାହିଁରୁ ଶିକ୍ଷା କରିବେ ? ଏକ ଲେଖକ ସହିତ ଅନ୍ୟ ଲେଖକର ତୁଳନା କରିବାକୁ ହେଲେ କାହାର ସାହାଯ୍ୟ ନେବେ ? କେଉଁ ଲେଖକ ଭାଷାକୁ କି ପ୍ରକାରେ ଗଠନ କରିଅଛନ୍ତି, ତାହା ସେମାନେ କେଉଁଠାରୁ ଜାଣିବେ ? ଓଡ଼ିଶାର ପୁରାବୃତ୍ତସମ୍ବନ୍ଧୀୟ ପ୍ରଶ୍ନମାନ ସେମାନଙ୍କୁ କିଏ ମୀମାଂସା କରି ଦେବ ? ଏହି ସବୁ ବିଷୟରେ ଛାତ୍ରମାନଙ୍କୁ ସାହାଯ୍ୟ କରିବାକୁ ହେଲେ ଅନ୍ତତଃ ପ୍ରଧାନ ପ୍ରଧାନ ପ୍ରାଚୀନ ଲେଖକମାନଙ୍କର ଗ୍ରନ୍ଥାବଳୀ ପ୍ରକାଶ କରିବାକୁ ହେବ, ଖଣ୍ଡିଏ ସାହିତ୍ୟେତିହାସ ସଙ୍କଳନ କରିବାକୁ ହେବ, ଏବଂ ଓଡ଼ିଶାର ଖଣ୍ଡିଏ ବୃହତ୍ ଇତିହାସ ଲେଖିବାକୁ ହେବ। ଓଡ଼ିଆ ଭାଷାର ଖଣ୍ଡିଏ ଭଲ ଅଭିଧାନ ଓ ଖଣ୍ଡିଏ ବ୍ୟାକରଣ ମଧ୍ୟ ନିତାନ୍ତ ଆବଶ୍ୟକ । ଏସବୁ କରିବ କିଏ ? ଓଡ଼ିଆ ସାହିତ୍ୟସେବକମାନଙ୍କର ଦୁର୍ଦ୍ଦଶାର ତ ସୀମା ନାହିଁ। ସେମାନେ ପ୍ରାୟ ସମସ୍ତେ ରାଜକର୍ମଚାରୀ । ସେମାନଙ୍କର ଅବକାଶ ନିତାନ୍ତ ଅଳ୍ପ। ଆର୍ଥିକ ସ୍ୱଚ୍ଛଳତାର କଥା ତ ଏକାବେଳକେ ଉତ୍ଥାପିତ ହୋଇ ନ ପାରେ । ତେବେ କିଏ ଏ ସବୁ କରିବ? ଉତ୍କଳର ନୃପତୀଶ୍ୱରମାନେ ଟିକିଏ ମୁକ୍ତହସ୍ତ ନ ହେଲେ କି ଏ କାର୍ଯ୍ୟ କଦାପି ସମ୍ପନ୍ନ ହୋଇ ପାରିବ ? ପ୍ରାଚୀନ ଉତ୍କଳ ସାହିତ୍ୟ କେବଳ ନୃପତୀଶ୍ୱରମାନଙ୍କ କୃପାରୁ ଉନ୍ନତ ହୋଇ ପାରିଥିଲା । ଏକା ଭଞ୍ଜ କବିଙ୍କ ଛଡ଼ା ପ୍ରାୟ ଆଉ କେହି ଲକ୍ଷ୍ମୀଙ୍କର ମିତ୍ର ନ ଥିଲେ । ଅଧିକାଂଶ ସାହିତ୍ୟସେବକ ରାଜବୃତ୍ତିଭୋଗୀ ହୋଇ ସାହିତ୍ୟସେବା କରି ଯାଇଅଛନ୍ତି । ଆଧୁନିକ ଯୁଗରେ ସଭ୍ୟଦେଶମାନଙ୍କରେ ମଧ୍ୟ ଏହି ରୀତି ଅନୁସୃତ ହୋଇଥାଏ । ବିଗତ ଶତାବ୍ଦୀ ମଧ୍ୟରେ ଜର୍ମାନ ସାହିତ୍ୟ ଯେଉଁ ଅଭୂତ ଉନ୍ନତି ଲାଭ କରିଅଛି, ତାହାର ମୂଳରେ ନୃପତୀଶ୍ୱରମାନଙ୍କର ନିଃସ୍ୱାର୍ଥପର ସାହାଯ୍ୟ ବିଦ୍ୟମାନ। ଆମମାନଙ୍କର ସୁସଭ୍ୟ ଓ ଉଦାର ଗବର୍ଣ୍ଣମେଣ୍ଟ ମଧ୍ୟ ଏ ବିଷୟରେ ଆଦର୍ଶ ପ୍ରଦର୍ଶନ କରିବାକୁ ପଶ୍ଚାତ୍ପଦ ନୁହନ୍ତି । ବଙ୍ଗଳାର କବି ହେମଚନ୍ଦ୍ର ଓ ସୁଲେଖକ କିଶୋରୀମୋହନ ଗାଙ୍ଗୁଲି ବର୍ତ୍ତମାନ ଇଂରାଜ ଗବର୍ଣ୍ଣମେଣ୍ଟଙ୍କ ବୃତ୍ତିଭୋଗୀ । ମାତ୍ର ଓଡ଼ିଶାର ଧନବାନ୍ ବ୍ୟକ୍ତିମାନେ କଣ କରୁଅଛନ୍ତି? ଆଜିକାଲି ଗଡ଼ଜାତର ଅନେକ ରଜା ସୁଶିକ୍ଷିତ ହୋଇ ସଭ୍ୟ ଧରଣରେ ରାଜ୍ୟ ଶାସନ କରୁଅଛନ୍ତି । ପ୍ରତି ବର୍ଷ ଆୟବ୍ୟୟର ଲମ୍ବା ଲମ୍ବା ବଜେଟ ସବୁ ବାହାରୁଅଛି । କାହିଁ? କୌଣସି ବର୍ଷ ସାହିତ୍ୟ ସେବା ନିମନ୍ତେ କପର୍ଦ୍ଦକମାତ୍ର ବ୍ୟୟ କରୁଥିବାର ହିସାବ ତ ଦେଖିବାକୁ ମିଳୁ ନାହିଁ? ସେମାନଙ୍କର କି ଏ ବିଷୟରେ କିଛିମାତ୍ର ଦାୟିତ୍ୱ ନାହିଁ ବୋଲି ସେମାନେ ମନେ କରି ନିଶ୍ଚିନ୍ତ ହୋଇ ବସିଅଛନ୍ତି? ତାହା ଯଦି ହୋଇଥାଏ, ତେବେ ବାସ୍ତବିକ ଓଡ଼ିଶାର ଘୋର ଦୁର୍ଭାଗ୍ୟ ବୋଲିବାକୁ ହେବ । ପାଶ୍ଚାତ୍ୟ ଆଲୋକପ୍ରାପ୍ତ, ସୁଶିକ୍ଷିତ, ମୟୂରଭଞ୍ଜ, ନୀଳଗିରି, ଢେଙ୍କାନାଳ, ତାଳଚେର, ଲହଡ଼ା, ନରସିଂହପୁର, ବଡ଼ାମ୍ବାର ଯୁବକ ଓ କିଶୋର ରାଜନ୍ୟଗଣ କି କେବଳ ହୀରକଖଚିତ ଦ୍ୱିରଦରଦନନିର୍ମିତ ପର୍ଯ୍ୟଙ୍କୋପରି ଦୁଗ୍ଧଫେନନିଭ କୋମଳ ଶଯ୍ୟାରେ ଶୟାନ ରହିବା ନିମିତ୍ତ ଅଭିପ୍ରେତ? ପ୍ରବୀଣ ଓ ସୁଚତୁର କେନ୍ଦୁଝର, ଆଠମଲ୍ଲିକ, ବୌଦ, ହିନ୍ଦୋଳ, ଆଠଗଡ଼ ପ୍ରଭୃତି କି ଦୀନ ଉତ୍କଳ ସାହିତ୍ୟ ପ୍ରତି ଟିକିଏ ସୁଦୃଷ୍ଟି ନିକ୍ଷେପ କରିବେ ନାହିଁ? "ଉତ୍କଳ-ପ୍ରଭା"ର ଜନ୍ମ ଦେଇ ମୟୂରଭଞ୍ଜାଧିପତି ଉତ୍କଳ ସାହିତ୍ୟ ପ୍ରତି ଆପଣାର ପ୍ରଗାଢ଼ ଅନୁରାଗର ପରିଚୟ ପ୍ରଦାନ କରିଥିଲେ । ବର୍ତ୍ତମାନ ଉତ୍କଳ ସାହିତ୍ୟର ସେବା କରିବାର ଉପଯୁକ୍ତ ସମୟ ଉପସ୍ଥିତ । ଏତେବେଳେ ଟିକିଏ କୃପାଦୃଷ୍ଟି ଏଣେ ନିକ୍ଷେପ କରନ୍ତୁ—ଉତ୍କଳର କେତେ ଦୁଃଖ ଦୂର ହୋଇଯିବ । ରମେଶ ବାବୁଙ୍କ ଇତିହାସର ଅନୁବାଦ ତ ବନ୍ଦ ହୋଇଅଛି । ହଣ୍ଟର ସାହେବଙ୍କ ଓଡ଼ିଶା ଇତିହାସର ଅନୁବାଦ

ଧନ୍ୟ ହେଉ । ତଦ୍ଦ୍ୱାରା ଆଶୁ ଫଳ ଫଳିବ । ସାହିତ୍ୟର ଉନ୍ନତି ନିମିତ୍ତ ରାଜଭଣ୍ଡାର ଖୋଲି ଦିଅନ୍ତୁ—ଇତିହାସ ପୃଷ୍ଠରେ ମହାରାଜଙ୍କର କୀର୍ତ୍ତି ସ୍ୱର୍ଣ୍ଣାକ୍ଷରରେ ମୁଦ୍ରିତ ହୋଇ ରହୁ । ବାସ୍ତବିକ ଓଡ଼ିଆ ରାଜାମାନଙ୍କ ସଦ୍‌ବୁଦ୍ଧି ବ୍ୟତୀତ ଉତ୍କଳ ସାହିତ୍ୟର ତାମସୀ ରଜନୀର ପ୍ରଭାତ ହେବା ଯେ ଅସମ୍ଭବ, ଏଥିରେ ଲେଶମାତ୍ର ସନ୍ଦେହ ନାହିଁ । ଢେଙ୍କାନାଳ ପ୍ରଭୃତି ଅଙ୍କଠାରୁ ଏ ବିଷୟରେ ଆପଣା ଆପଣାର ଗୁରୁତର ଦାୟିତ୍ୱ ଉପଲବ୍ଧି କରନ୍ତୁ, ଜଗଦୀଶ୍ୱରଙ୍କ ନିକଟରେ ଏହି ପ୍ରାର୍ଥନା କରୁଅଛୁଁ ।

ସମୟର ସ୍ୱାଭାବିକ ନିୟମାନୁସାରେ ଉତ୍କଳ ଭାଷାରେ ମୌଳିକ ଗ୍ରନ୍ଥମାନ ପ୍ରଣୀତ ହେବ ବୋଲି ଯେଉଁମାନେ କହନ୍ତି, ସେମାନଙ୍କର ମତକୁ ଆମ୍ଭେମାନେ ସମ୍ମାନ କରୁଁ । ସେଥିପାଇଁ ଉକ୍ତ ବିଷୟକ ବିଚାର ଭବିଷ୍ୟତ ନିମନ୍ତେ ରଖି ଦେଲୁଁ । ମାତ୍ର ସେଥିପାଇଁ ଯେ ଆଦୌ ଚେଷ୍ଟା କରିବାକୁ ହେବ ନାହିଁ, ଆମ୍ଭମାନଙ୍କର ମତ ତାହାର ଘୋର ବିରୋଧୀ । ଚେଷ୍ଟା ଆରବ୍ଧ ହେବା ଏକାନ୍ତ ଉଚିତ । ମାତ୍ର ଅନୁବାଦ ଓ ସଙ୍କଳନ କାର୍ଯ୍ୟରେ ହେଳା କରିବା କୌଣସି ପ୍ରକାରେ ମାର୍ଜ୍ଜନୀୟ ନୁହେ । ପ୍ରଶ୍ନ ଉଠି ପାରେ ଉକ୍ତ କାର୍ଯ୍ୟମାନଙ୍କର ଭାରଗ୍ରହଣ କରିବ କିଏ ? ଲୋକର ଅଭାବ ନାହିଁ । ଉପଯୁକ୍ତ ବୃତ୍ତି ଓ ପାରିଶ୍ରମିକ ପ୍ରାପ୍ତ ହେଲେ ପ୍ରବୀଣ ସାହିତ୍ୟସେବକମାନଙ୍କ ମଧ୍ୟରୁ କେହି ମାତୃଭାଷାର ସେବା କରି ତାହାର ସାହିତ୍ୟକୁ ସମୁନ୍ନତ କରିବାକୁ କୁଣ୍ଠିତ ହେବେ ନାହିଁ । ବର୍ତ୍ତମାନ ସମୟରେ ସୁଶିକ୍ଷିତ ଉପାଧିଧାରୀ ଯୁବକମାନଙ୍କମଧ୍ୟରୁ କାହାରି କାହାରି ମାତୃଭାଷା ପ୍ରତି ଯେ ପ୍ରକାର ଅନୁରାଗ ଦୃଷ୍ଟ ହେଉଅଛି, ସେଥିରେ ସେମାନଙ୍କ ମଧ୍ୟରୁ ମଧ୍ୟ ଉପଯୁକ୍ତ ଲୋକ ବାହାରିବା ଅସମ୍ଭବ ନୁହେ । ଆମ୍ଭେମାନେ ସ୍ଥାନାନ୍ତରରେ କହିଅଛୁଁ, ଏଠାରେ ମଧ୍ୟ କହୁଅଛୁଁ, ଏ ବିଷୟରେ ସାହାଯ୍ୟ କରିବା ନିମିତ୍ତ ଉତ୍କଳର ବିଦ୍ୱନ୍ମଣ୍ଡଳୀଙ୍କର ଗୋଟିଏ ପରିଷଦ୍ ପ୍ରତିଷ୍ଠିତ ହେବା ଏକାନ୍ତ ବାଞ୍ଛନୀୟ । ଅର୍ଥ ସମସ୍ୟା ପ୍ରଧାନ ସମସ୍ୟା । ତାହାର ମୀମାଂସାର ଭାର ବୃତ୍ତୀଶ୍ୱରମାନେ ଗ୍ରହଣ କଲେ ବୋଲି ମନେ କରି ନେଲେ ଏ ସବୁ କାର୍ଯ୍ୟ ସାଧନ ପକ୍ଷରେ ଅଧିକ ଭାବିବାକୁ ହେବ ନାହିଁ । ତାହା ଆପେ ଆପେ ହୋଇଯିବ । କଥା (ମୃଦଙ୍ଗ) "କାନ୍ଧରେ ପଡ଼ିଲେ ବଜେଇ ଶିଖେ" ଏହି ନୀତିବାକ୍ୟ ସ୍ମରଣ କରି ଯଦି ଦେଶବାସୀ ମନେ କରନ୍ତି ଯେ ବିଶ୍ୱବିଦ୍ୟାଳୟ ଯେତେବେଳେ ଓଡ଼ିଆ ଭାଷାକୁ ଆପଣାର ସୀମା ମଧ୍ୟରେ ସ୍ଥାନ ଦେଲେଣି, ସେତେବେଳେ ପ୍ରୟୋଜନୀୟ କାର୍ଯ୍ୟମାନ ଆପେ ହୋଇଯିବ, ସେଥି ନିମିତ୍ତ ବିଶେଷ ଚିନ୍ତା କରିବାର ପ୍ରୟୋଜନ ନାହିଁ, ତାହା ହେଲେ ଆମ୍ଭମାନଙ୍କର ଆଉ ଦୁର୍ଭାଗ୍ୟର ସୀମା ରହିବ ନାହିଁ । ଉପଯୁକ୍ତ ଚେଷ୍ଟା ଅଭାବରୁ ଆମ୍ଭମାନଙ୍କର ଛାତ୍ରମଣ୍ଡଳୀ ଯଦି ଉତ୍କଳ ସାହିତ୍ୟ ସମ୍ବନ୍ଧରେ ସୁଚିନ୍ତିତ ଓ ସୁଲିଖିତ ରଚନାବଳୀ ବିଶ୍ୱବିଦ୍ୟାଳୟ ସମ୍ମୁଖରେ ଧାରଣ କରି ନ ପାରନ୍ତି, ତେବେ ସମୟରେ ଏହି ମଙ୍ଗଳଜନକ ଅଧିକାରଟି ପ୍ରତ୍ୟାହୃତ ହେବା ଅସମ୍ଭବ ନୁହେ । ଅତଏବ ଦେଶହିତୈଷିମାନଙ୍କ ନିକଟରେ ଆମ୍ଭମାନଙ୍କର ଏକାନ୍ତ ଅନୁରୋଧ ଯେ ସେମାନେ ଆଜିଠୁଁ ଆପଣା ଆପଣା କର୍ତ୍ତବ୍ୟ ପାଳନରେ ବ୍ରତୀ ହୁଅନ୍ତୁ । ସାହିତ୍ୟ କ୍ଷେତ୍ରରେ ବାମଣ୍ଡାଧିପତିଙ୍କ ସୁଯଶ ପ୍ରତିଷ୍ଠିତ ହୋଇଅଛି । ଉପସ୍ଥିତ ସମସ୍ୟାରେ ଆମ୍ଭେମାନେ କି ତାଙ୍କଠାରୁ କିଛି ବିଶେଷଭାବରେ ପ୍ରତ୍ୟାଶା କରି ନ ପାରୁ ? ପ୍ରକୃତପକ୍ଷେ ଏ କ୍ଷେତ୍ରରେ ସମବେତ ଚେଷ୍ଟାର ଏକାନ୍ତ ପ୍ରୟୋଜନ । ସେଥିପାଇଁ ନେତୃତ୍ୱ ଗ୍ରହଣ କରିବାକୁ କେହି କି ଅଗ୍ରସର ହେବେ ନାହିଁ ?

ଆଗାମୀ ବର୍ଷରୁ ଛାତ୍ରମାନେ ଓଡ଼ିଆ ଭାଷା ଓ ସାହିତ୍ୟ ସମ୍ବନ୍ଧରେ ରଚନା ଲେଖିବେ । କଲେଜରେ ସେମାନଙ୍କୁ ଲିଖିତ ପ୍ରବନ୍ଧର କିଛି ଶିକ୍ଷା

ଦିଆ ଯିବ ନାହିଁ । ଓଡ଼ିଆ ଭାଷାର ପୁସ୍ତକ ଇତ୍ୟାଦି ସହିତ ସେମାନଙ୍କର ପରିଚୟ ଅତି ଶୋଚନୀୟ । ସମସ୍ତେ ଯେ ଓଡ଼ିଆ ଭାଷାର ମୁଦ୍ରିତ ପୁସ୍ତକ, ପତ୍ରିକା ଇତ୍ୟାଦି କଷ୍ଟ କରି ପଢ଼ିବେ, ସେ ଆଶା ନାହିଁ । ଓଡ଼ିଶାର ରାଜଧାନୀରେ ସାଧାରଣ ପୁସ୍ତକାଳୟର ଅଭାବର କଥା ଭାବିଲେ ହୃଦୟ ଅବସନ୍ନ ହୋଇ ପଡ଼େ । ସାହିତ୍ୟିକ ସଭା ସମିତିର କଥା ତଥୈବଚ । କଲେଜସଂଲଗ୍ନ ପୁସ୍ତକାଳୟରେ ବୋଧ ହୁଏ ଓଡ଼ିଆ ପୁସ୍ତକର ନାମ ଗନ୍ଧ ନାହିଁ । ଥିଲେ ମଧ ଛାତ୍ରମାନଙ୍କର ପାଇବା ଦୁଷ୍କର ! ତେବେ ଛାତ୍ରମାନେ କଣ କରିବେ ? ବଙ୍ଗଳାରେ ଏ ସବୁ ପ୍ରଚୁର ପରିମାଣରେ ଥିବାରୁ ଛାତ୍ରମାନଙ୍କର ଜ୍ଞାନ ପିପାସା ନିବାରଣର ପ୍ରଭୂତ ସୁବିଧା ଅଛି । କଲିକତା କଥା ଛାଡ଼ । ଆମ୍ଭେମାନେ ବଙ୍ଗଳା ଭ୍ରମଣ ସମୟରେ ବର୍ଦ୍ଧମାନ ପ୍ରଭୃତି କ୍ଷୁଦ୍ର ସହରମାନଙ୍କରେ ମଧ୍ୟ ସୁପ୍ରତିଷ୍ଠିତ ସାଧାରଣ ପୁସ୍ତକାଗାରମାନ ଦେଖି ଆସିଅଛୁଁ । କଲିକତାର ପ୍ରେସିଡେନ୍ସି କଲେଜର ପୁସ୍ତକାଳୟରେ ବଙ୍ଗଳା ପୁସ୍ତକର ଆଦର ଅଛି । ଆଶୁ ଫଳପ୍ରାପ୍ତି ନିମିତ୍ତ ଆମ୍ଭମାନଙ୍କ କ୍ଷୁଦ୍ର ମତରେ ନିମ୍ନଲିଖିତ ପନ୍ଥାମାନ ଅବଲମ୍ବିତ ହେଲେ କେତେକ ପରିମାଣରେ କାର୍ଯ୍ୟସିଦ୍ଧି ହୋଇପାରେ । ପାରଦର୍ଶୀ ପଣ୍ଡିତମାନଙ୍କଦ୍ୱାରା ଓଡ଼ିଆଭାଷା ଓ ସାହିତ୍ୟ ସମ୍ବନ୍ଧରେ ଗବେଷଣାପୂର୍ଣ୍ଣ ପ୍ରବନ୍ଧମାନ ଲିଖିତ ହୋଇ ପୁସ୍ତକାକାରରେ ବା କୌଣସି ପତ୍ରିକାରେ ପ୍ରକାଶିତ ହେଉ, କଟକ ନଗରରେ ଗୋଟିଏ ଛାତ୍ରସମିତି ସ୍ଥାପିତ ହୋଇ ସେଥିରେ ଏ ସମ୍ବନ୍ଧରେ ନିୟମିତରୂପେ ପଣ୍ଡିତମାନଙ୍କଦ୍ୱାରା ଧାରାବାହିକ ବକ୍ତୃତାମାନ ପ୍ରଦତ୍ତ ହେଉ ଏବଂ ଏହି ସମିତି ସମ୍ପର୍କରେ ଗୋଟିଏ କ୍ଷୁଦ୍ର ପୁସ୍ତକାଳୟ ସ୍ଥାପିତ ହୋଇ ସେଥିରେ ଓଡ଼ିଆ ପୁସ୍ତକମାନ ସନ୍ନିବେଶିତ ହେଉ । ଏହି ଉପାୟମାନ ଅବଲମ୍ବିତ ହେଲେ ଯେ ବହୁପରିମାଣରେ କାର୍ଯ୍ୟସିଦ୍ଧି ହୋଇ ପାରିବ, ସେ ବିଷୟରେ ସନ୍ଦେହ ମାତ୍ର ନାହିଁ । ଦେଶର ଅଗ୍ରଣୀମାନେ ଓ ଛାତ୍ରମାନେ ଏ ବିଷୟରେ ଯତ୍ନବାନ୍ ହେବେ କି ? କୌଣସି କାର୍ଯ୍ୟର ପ୍ରଥମ ଅବସ୍ଥାରେ କେତେକ ପରିମାଣରେ ସ୍ୱାର୍ଥତ୍ୟାଗ ଯେ ଏକାନ୍ତ ଆବଶ୍ୟକ, ତାହା କାହାରିକୁ ବିଶେଷ କରି କହି ଦେବାକୁ ହେବ ନାହିଁ । ବିଶ୍ୱାସ କରୁଁ ଆମ୍ଭମାନଙ୍କର ଶିକ୍ଷିତ ସମ୍ପ୍ରଦାୟ ଏହା ଉତ୍ତମରୂପେ ବୁଝନ୍ତି ।

ପରିଶେଷରେ ଛାତ୍ରମାନଙ୍କୁ ଦୁଇଟି ଗୋଟିଏ କଥା କହି ପ୍ରବନ୍ଧର ଉପସଂହାର କରୁଁ । ଅତୀବ ସାଧୁ ଉଦ୍ଦେଶ୍ୟ ହୃଦୟରେ ପୋଷଣ କରି ତୁମ୍ଭେମାନେ ମାତୃଭାଷା ଓ ଜାତୀୟ ସାହିତ୍ୟର ଉନ୍ନତିପାଇଁ ଆଶା କରି ଅଛ । ବହୁ ଯତ୍ନ ଓ ପରିଶ୍ରମ ସ୍ୱୀକାର କରି ତୁମ୍ଭେମାନେ ଯେଉଁ ଅଧିକାର ଲାଭ କରିଅଛ, ତାହାର ଯୋଗ୍ୟ ହେବାକୁ ତୁମ୍ଭେମାନେ ଧର୍ମତଃ ବାଧ୍ୟ । ତୁମ୍ଭେମାନେ କି ତହିଁର ଉପଯୁକ୍ତ ହେବାକୁ ଚେଷ୍ଟା କରିବ ନାହିଁ ? ତୁମ୍ଭେମାନେ ଅତି ସରଳ ପ୍ରାଣରେ କହିଅଛ— "That the inclusion of the oriya language in the list of those vernaculars in which papers on original composition are set at the F. A. and B. A. examinations is calculated to promote a wholesome spirit of literary culture in their own mother tongue amongst the graduates and undergraduates of Orissa, and thereby to accelerate the growth and development of the language and literature of the province—a result which our paternal Government has always been earnestly anxious to secure." ଅତି ଯଥାର୍ଥ କଥା । ଏହି ସୁକଥାଗୁଡ଼ିକର ସାର୍ଥକତା ନିମନ୍ତେ ଈଶ୍ୱରଙ୍କ ନାମୋଚ୍ଚାରଣ କରି ଥରେ ମାତୃଭାଷାର ସେବାରେ ମନ ପ୍ରାଣ ଢାଳି ଦିଅ । ଦେଶର ଅଶେଷ ଦୁର୍ଗତି ନଷ୍ଟ ହୋଇଯାଉ । ଉତ୍କଳ ସାହିତ୍ୟ ମନ୍ଦିରର ଅନ୍ଧ ସନ୍ଧ ଖୋଜି ରହିନଥିଲୁ

ଅଳଙ୍କରଣ କର କଣ୍ଠରେ ଧାରଣ କର, ତୁମ୍ଭମାନଙ୍କର ଶୋଭାବୃଦ୍ଧି ହେବ । ଯେଉଁ ଗ୍ରାଜୁଏଟ୍ ଭାଇମାନଙ୍କ କଥା କହୁଅଛି, ସେହିମାନଙ୍କ ମଧ୍ୟରୁ କାହାର କାହାର ମୁଖରୁ ଶୁଣି ବ୍ୟଥିତ ହୋଇଅଛି ଯେ ଓଡ଼ିଆ ଭାଷାରେ ସେମାନଙ୍କର ଆଲୋଚନାଯୋଗ୍ୟ ପୁସ୍ତକାଦି କିଛି ନାହିଁ । ତୁମ୍ଭେମାନେ କି ଏବେ ଆଉ ସେ କଥା କହି କର୍ତ୍ତବ୍ୟ ଶେଷ କରିପାରିବ ? ଏବେ କି ଆଉ ଖଣ୍ଡେ ଓଡ଼ିଆ ପୁସ୍ତକ ପଢ଼ିବା ବା ଚାରି ଧାଡ଼ି ଓଡ଼ିଆ ଲେଖିବା ତୁମ୍ଭମାନଙ୍କ ଉଚ୍ଚଶିକ୍ଷା ପକ୍ଷରେ ସମ୍ମାନହାନିକର ବୋଲି ମନେ କରିବ ? ଓଡ଼ିଆ ପୁସ୍ତକ କିଣିବା ଓଡ଼ିଆ ସମ୍ବାଦପତ୍ର ବା ପତ୍ରିକାର ମୂଲ୍ୟ ଦେବା କି ତୁମ୍ଭମାନଙ୍କ ନିକଟରେ ଅପବ୍ୟୟ ବୋଲି ବିବେଚିତ ହେବ ? ସେକ୍ସପିଅର, ମିଲଟନ୍, କାଳିଦାସଙ୍କର ଗୋଟାଏ ଗୋଟାଏ ପଦର ପ୍ରକୃତ ଅର୍ଥ ନିରୂପଣ କରିବାକୁ ତୁମ୍ଭମାନଙ୍କୁ କେତେ ଟୀକା ଖୋଜି ବାହାର କରିବାକୁ ହୁଏ । ମାତ୍ର ଉପେନ୍ଦ୍ରଭଞ୍ଜ ବା ସାମନ୍ତ ସିଂହାର ପଢ଼ିଲାବେଳେ ତାହାର ଶତାଂଶର ଏକାଂଶ ଯତ୍ନ କରିବ କି ? ଯେଉଁ ମହତ୍ କାର୍ଯ୍ୟ ଆରମ୍ଭ କରିଅଛ, ତାହା ସୁସମ୍ପନ୍ନ କରିବାପାଇଁ ସାଧ୍ୟାନୁସାରେ ଯତ୍ନ କର । ମଙ୍ଗଳମୟ ବିଧାତା ସକଳ ବିଷୟରେ ତୁମ୍ଭମାନଙ୍କର ସହାୟ ହେଉନ୍ତୁ ।

ଶ୍ରୀ କୃଷ୍ଣପ୍ରସାଦ ଚୌଧୁରୀ ।

---

## କ୍ଷୁଦ୍ର କ୍ଷୁଦ୍ର କବିତା ।

### ବାଲବିଧବା ।

ଶୁଣ ଶୁଣ ଅରେ ଆର୍ଯ୍ୟକୁଳାଙ୍ଗାର ହିନ୍ଦୁ
ପ୍ରାଣେ ତୋର ନାହିଁ କି ରେ କରୁଣାର ବିନ୍ଦୁ ?
ଫେଡ଼ ନେତ୍ରାବରଣ ବାରେ ଅନ୍ଧ ରେ ନିଷ୍ଠୁର
ଆହା ଆହା କି ଲାବଣ୍ୟ ଯେନ ହୁଏ ଦୂର !

ନର ଗଳାର ହାର ନାରୀ ସୁକୁମାରୀ,
କି ଘୋର ଯନ୍ତ୍ରଣା ଦେଉ ପରାଣେ ତାହାର !
କି ନୃଶଂସହୃଦ ତୋର କାପୁରୁଷ ନର
ପୁରୁଷତ୍ୱ ନାହିଁ କି ରେ ହୃଦୟେ ତୋହର ?

ନାରୀ ଦୁଃଖ କି ସହଇ ପୁରୁଷ ପରାଣ,
ପଶୁପକ୍ଷୀ ଦିଅନ୍ତି ରେ ଏହାର ପ୍ରମାଣ ।
ଶ୍ରେଷ୍ଠ ଜୀବ ନର ପରା ଜଗତେ ପ୍ରସିଦ୍ଧ,
ନାରୀ ଦୁଃଖଶେଳେ ବକ୍ଷ ନୁହେ କ୍ଷୋଭବିଦ୍ଧ ?

ଫେଡ଼ ଫେଡ଼ ନାରୀଦୁଃଖ ଉଦାସ ରହ ନା,
କି ବିଷାଦମୂର୍ତ୍ତି ବାଲବିଧବା ଲଳନା !

ଶ୍ରୀ ନନ୍ଦକିଶୋର ବଳ ।

---

### ଆଶୀର୍ବାଦ ।

ସେତ ଅଧରାତିବେଳେ, ମେଘସଙ୍ଗେ ଚନ୍ଦ୍ର ଖେଳେ,
ନାହିଁ ଜନ କୋଳାହଳ, ପବନ ଥିଲା ନିଶ୍ଚଳ,
ଦର୍ପଣରେ ଛାୟାପରି ଅରେ ମାୟାମୟି !
ନିଭୃତେ ପଶିଲୁ ଚିତ୍ତେ, ଥିଲି ମୁହିଁ ଶୋଇ ।

ସେ ତ ଅଜ ପାଞ୍ଚବର୍ଷ; ଇତି ମଧ୍ୟେ ଶୋକ, ହର୍ଷ,
ବିପଦର ଝଞ୍ଜା ବାତ, ସମ୍ପଦର ସୁପ୍ରଭାତ,
କେତେ ଏ ଜୀବନସ୍ରୋତେ ଯାଇଅଛି ବହି,
କିନ୍ତୁ ତବ ସ୍ନେହ ତେବେ ଲିଭିଲାତ ନାହିଁ ?

କେଉଁ କୋଣେ ଲୁଚିଥାଉ, କେବେତ ଦେଖା
ନ ଦେଉ ?
ଉଡ଼ାଳରୁ କେବେ କେବେ ଏକାକୀ ଶୁଣେ ନୀରବେ
ଅବ୍ୟକ୍ତ ମଧୁର ତବ ସ୍ନିଗ୍ଧ କଣ୍ଠ ସ୍ୱର,
ଫୋନୋଗ୍ରାଫ ପରି ତାକୁ ଧରେ ମୋ ଅନ୍ତର ।

ଜାଗ୍ରତେ ଆଉ ତୁ କାହିଁ? କହ କି ପାରିବୁ ତୁହି
ଦିଏ ମୋର ନିଦ୍ରାବଶେ କ୍ଷଣକେ ଉଭା ମୋ ପାର୍ଶ୍ୱେ,
କେତେ ରଙ୍ଗେ ନୃତ୍ୟ କରେ, ଆଶା ବାଣୀ ଦିଏ,
କ୍ଷଣକେ ଚପଳା ପ୍ରାୟ ଅନ୍ତର୍ହିତ ହୁଏ ?

କେତେ଼ ସୁଖମୟ ଆଶା ପୋଷିଥିଲି ହୃଦେ
ପିନ୍ଧାଇଣ ବରମାଳ ଗୃହଲକ୍ଷ୍ମୀ ପଦେ
ବରିବି ତୁମ୍ଭଙ୍କୁ ଦେବ! ରୂପେ ଶକୁନ୍ତଲେ!
ଗୁଣେ ତୁଳିବାକୁ କେହି ନାହିଁ ଭୂମଣ୍ଡଳେ ।

ଯେ ବାୟୁ ପୃଥ୍ୱୀ ବ୍ୟାପି ସଦା ବିରାଜଇ
ମୋ ହୃଦ ନିଭୃତ ବାଣୀ ଯେ ତ ଶୁଣି ନାହିଁ,
ଜାଣିଛ କି ହେ ଉପସ୍ଥିତ! ଯେଉଁ ଅନୁମାନେ
ହୃଦୟର ରାଣୀ ରୂପେ ବିରାଜ ମୋ ମନେ ?

ନ ଜାଣି ନ ଜାଣି ତାହା; ସରିଛି ମୋ ସାଧ;
ବଡ଼ ନେଇ ଶୁଷ୍କ କଣ୍ଠ କ୍ଷୁଦ୍ର ଆଶୀର୍ବାଦ,
ଅଯାଚିତ ଶ୍ରଦ୍ଧା ପ୍ରେମ, ବିପୁଳ ବିଭବ,
ଭାଗ୍ୟବତି! ପାଅ ସବୁ; କେବଳ ମୂ ନୀରବ ।

ଶ୍ରୀ——

---

## ଲୋକେ କି କହିବେ ?

ଲୋକେ କି କହିବେ?
ସଂସାର ଦୁର୍ଗମ ପଥେ
କଠୋର କର୍ତ୍ତବ୍ୟରଥେ
ଯେବେ ସଙ୍ଗେ ସ୍ନେହ ପ୍ରୀତି,
ଚାଲିବାକୁ ଇଚ୍ଛା ନିତି,
(କନ୍ୟ) ଦୁର୍ବଳା ଅବଳା ଚିତ୍ତ,
ଲାଜେ ଭୟେ ସଙ୍କୁଚିତ;
ଲୋକେ କି କହିବେ?

ଲୋକେ କି କହିବେ?
କ୍ଷୁଦ୍ରାଦପି କ୍ଷୁଦ୍ରତମ——
ହୃଦୟେ ନୀରବେ ମମ,
କାର୍ଯ୍ୟର ବୁଦ୍‌ବୁଦ ଶତ
ଉଦେ ପୁଣି ହୁଏ ଲୁପ୍ତ ।
କରି ନ ପାରଇ କାର୍ଯ୍ୟ,
ଯେତେ ଥାଉ ଅନିବାର୍ଯ୍ୟ,
ଲୋକେ କି କହିବେ?

ଲୋକେ କି କହିବେ?
ସମ୍ମୁଖେ ନ ଚଳେ ପଦ,
ଭୀତି କହେ "ଅପବାଦ
ସାଧିବ ତୋହର ବାଦ,
କରିବାକୁ ପ୍ରତିବାଦ
ନ ମିଳିବ ଭବେ କେହି,
ତୋର ପାଇଁ ତୁହି ଦାୟୀ ।"
ଲୋକେ କି କହିବେ?

ଲୋକେ କି କହିବେ?
ତୁଚ୍ଛ ଏକ ଅଶ୍ରୁବିନ୍ଦୁ
ତୁଚ୍ଛ ଏକ ସ୍ନେହବିନ୍ଦୁ
ଦେବାକୁ ଶକତି ନାହିଁ ।
ପ୍ରୀତି କହେ "କାହିଁ ପାଇଁ?
ତୋ ସଙ୍ଗେ କରିବି ଯୁଦ୍ଧ,
ତୋତେ ମୁଁ ନ କଲେ ରୁଦ୍ଧ
ଲୋକେ କି କହିବେ?

## ପ୍ରାର୍ଥନା ।

ହେ ଦେବ, ଶୁଣ ହେ ମୋର ଏହି ନିବେଦନ,
  କୃପା କରି ଦୂର କର ଭୀତିର ଶୃଙ୍ଖଳ;
ଜଗତର ପଦେ ମୋତେ ଦିଅ ବିସର୍ଜ୍ଜନ,
  ସୁଜ୍ଞାନ ସୁମତି ଦେଇ ପ୍ରାଣେ ଦିଅ ବଳ ।

ତବ ପଦ ବକ୍ଷେ ଧରି ଏ ଚିର ଜୀବନ,
  ସଙ୍କଟସଙ୍କୁଳ ଭବେ ଦୀର୍ଘ ପର୍ଯ୍ୟଟନେ;
ତୁମ୍ଭର ଆଦେଶ ବାଣୀ ସଦା ମୁଁ ଶୁଣିବି,
  ଉଚ୍ଚ ଅବା ତୁଚ୍ଛ ହେଉ ଅନ୍ୟର ନୟନେ ।

ସ୍ୱାମିନ୍, ଦେଇଛ ଯାହା ତବ ଏ ଦାସୀକୁ,
  ତବ ପଦ ପାର୍ଶ୍ୱେ ଥାଇଁ ତବ ସେ ବିଭବ
ବିତରିବି ତବ ଭବେ କି ଲାଜ କି ଭୀତି?
  ଶୁଣେ ବା ନ ଶୁଣେ କାର ସ୍ନେହର ସୁରବ ।

ଶ୍ରୀମତୀ ରେବା ରାୟ ।

## ଜୀବନ-ନଦୀ ।

ଭୈରବ ଅରବେ    କାଳ-ପାରାବାର
ଅଛୁଟି ନାଚି କି ରଙ୍ଗେ,
ଲହରୀ ବ୍ୟାଳରେ    ଅଣିଛି ଅସଂଖ୍ୟ
ଭୀମ ଯମଦୂତ ସଙ୍ଗେ । ୧ ।
ମୋର ଆୟୁଷ୍କାଳ    ପୂରିବ ଏମଣି
ବାନ୍ଧି ନେବେ ଯମଦୂତେ,
ଚିତ୍ରଗୁପ୍ତଦ୍ୱାରେ    ହୋଇବ ବିଚାର
ମୋ ସଙ୍ଗେ ଯିବେ କି ମିତେ । ୨ ।
ଯାହାଙ୍କ ସଙ୍ଗତେ    ଏତେ କାଳ ଯାଏ
କରିଥିଲି ଲୀଳାଖେଳା,
ଅସମୟ ଦେଖି    ନିଜ ନିଜ ରାସ୍ତା
ଧରିଲେଣି ଥାଉଁ ବେଳା । ୩ ।
ଭାବିଥିଲି ତବେ    ଚିରଜୀବୀ ମୁହିଁ
ଚିତ୍ରଗୁପ୍ତ ପାଞ୍ଜିକାର
ଲିଭ ମୋ ପ୍ରତାପେ    ଟାଣି ନାହିଁ ଭୁଲି
ମୋ ନାମେ ଗୋଟିଏ ଗାର । ୪ ।
ଭୂତ ଭବିଷ୍ୟତ    ନ ଭାବି କାଟିଛି
ଏ ଜୀବନ ସମ୍ଭବେ,
ଭାବିନାହିଁ ସ୍ୱପ୍ନେ    ଦିନେ ଅତର୍କିତେ
ଆସିବ କାଳ ଏ ଭାବେ । ୫ ।
ଅତଳ ପୁଲକ    ବାନ୍ଧୁ ଠୁଁକି କନ୍ଦେ
ସଯମୀ କି ସ୍ୱର୍ଗେ ଯିବ,
କାହିଁ ସେହି ଦମ୍ଭ    କାହିଁ ସେ ପ୍ରତାପ
ଭୟରେ ଶୁଖିଛି ଜୀବ । ୬ ।
ବାଲ୍ୟେ ମାତୃକାଳେ    ଆଦରେ ବଢ଼ିଲି
ସ୍ନେହସୁଧାପାନ ଆଶେ,
ଧନୀ, ମାନୀ, ଜ୍ଞାନୀ,    ବାଳ, ବୃଦ୍ଧ, ଯୁବା
ମିଳିଲେ ଆସି ମୋ ପାଶେ । ୭ ।
ଅବ୍ୟକ୍ତ ମଧୁର    ବଚନେ ମୋହିତ
ସହୃଦୟ ସାଧୁଜନ,
ଶତ ଶତ ମୁଖେ    ପ୍ରଶଂସା ଗାଇଲେ
ଯହିଁର ମୁଁ ଅଭାଜନ । ୮ ।
ବାଲ୍ୟକାଳ ଗତେ    ମାତୃକୋଳ ଛାଡ଼ି
ହରାଇ ସଦ୍‌ବୃତ୍ତିଚୟ
ସଙ୍ଗ ଦୋଷେ ପଡ଼ି    ସଙ୍ଗିଗଣ ସହ
ହେଲି ଅଚଳତାମୟ । ୯ ।
ଋଷି-ଅଧ୍ୟୁଷିତ    ଦେବତାବାଞ୍ଛିତ
ଛାଡ଼ି ଶାନ୍ତନିକେତନ
ଗାଢ଼ସବଚ୍ଛଳ    ହିଂସ୍ରଜନ୍ତୁମୟ
ପଶିଲି ଗହନ ବନ । ୧୦ ।
ଦିବ୍ୟାଲୋକ ଛାଡ଼ି    ଅନ୍ଧାରେ ଭ୍ରମିଲି
ଆତ୍ମା ହେଲା ତମୋମୟ
ସ୍ୱର୍ଗୀୟ ସାରଲ୍ୟ    ଛୁହୁଁ ଗଲା ଉଡ଼ି
ଆଶ୍ରିଲେ ତା ରିପୁଚୟ । ୧୧ ।
ସିତପକ୍ଷଚନ୍ଦ୍ର—    ପରି ଦିନେ ଦିନେ
ବଢ଼ିଲା ମୋ କ୍ଷୀଣ ଅଙ୍ଗ
ବୟୋବୃଦ୍ଧି ସଙ୍ଗେ    ନାନାଦି କଳଙ୍କ
ଆଶ୍ରିଲେ ମୋହର ଅଙ୍ଗ । ୧୨ ।
କାମ କ୍ରୋଧ ଲୋଭ,    ମୋହ ମଦ ଆଦି
ଦୁରଜୟ ରିପୁଗଣ
ଆଶ୍ରିଲେ ମୋ ହୃଦ    ଏକେ ଏକେ ଆସି
ଧରି ରୂପ ଗ୍ରାହଗଣ । ୧୩ ।
ପୂର୍ଣ୍ଣ ଯଉବନେ    ଧର୍ମାଧର୍ମ ହତ
ମାତିଲି ନାନା ବ୍ୟସନେ
ନାନାଦି କୁକର୍ମ    ଅକାତରେ କଲି
ଉପୁଜେ ଆତଙ୍କ ମନେ । ୧୪ ।
କାଳ ବେଳ ଜାଣି    କେତେ କୁହକିନୀ
ମୋ ପଥେ ଜଗି ବସିଲେ
ଯୁବା ଅସଂଯତ    ଅଟଇତ ଛାର,
ସାଧୁ କେ ପଥ ହୁଡ଼ିଲେ । ୧୫ ।
ତର ତର ହୋଇ    ଧାଇଁଲି ସେବିବା
ଆଶେ ତାଙ୍କ ଶ୍ରୀଚରଣ
ମୋର ଲୀଳାଖେଳା    ହୋଇଲା ଅନେକ
ପ୍ରାଣୀଙ୍କ ନାଶକାରଣ । ୧୬ ।
ନବୋଧଭାବରେ    ଶିରକୁ ନୁଆଁଇ
ମୋହିନୀଙ୍କ ପଦତଳେ
କେତେ କେତେ ଧନୀ    ସର୍ବସ୍ୱାନ୍ତ ହେଲେ
କେତେ ମହାପ୍ରାଣୀ ମଲେ । ୧୭ ।

ଯୌବନ ମଦରେ  ଲଙ୍ଘି ବେନ କୂଳ
କଲି ସବୁ ଅତ୍ୟାଚାର
ଦର୍ମ୍ୟ ବୃଷ୍ଟି ହେଲା,  ସୁଫଳା ଶ୍ୟାମଳା
ଧରଣୀ ହେଲା କାନ୍ତାର । ୧୮ ।
ବୃନ୍ଦେଁ ଧୃନ୍ଦେଁ ଗଲା  ଗତ ଯଉବନ
ତନୁ ହେଲା କ୍ରମେ କ୍ଷୀଣ
ଅସ୍ଥି ମାଂସ ଦେହ  କେତେ ବା ସହିବ
ହେଲା ବଳବୀର୍ଯ୍ୟହୀନ । ୧୯ ।
ବିବେକଦଂଶନ  କଲା ଉଚ୍ଚାଟନ
ଅନୁତପ୍ତ ସଦା ମନ
ଅନ୍ତିମରେ ସୁଦ୍ଧା  ଶାନ୍ତି ନ ପାଇଲି
ନ ଛାଡ଼ିଲେ ରିପୁଗଣ । ୨୦ ।

ହେଲେହେଁ ଗମ୍ଭୀର  ଧୀର ପ୍ରଶାନ୍ତ
ଚନ୍ଦନଧାରା ଲଭିଲି
ଦୁଷ୍ଟ ରିପୁ ବେଢି  ରହିଲେ ସର୍ବତ୍ର
କରଗତ ହୋଇଲି । ୨୧ ।
ଜଘନ୍ୟ ବ୍ୟସନୀ  ହେଲେହେଁ ଯୌବନେ
ସୁଧାତୃଷାତୁର ହତ
ବେଳେ ବେଳେ ସାଧୁ  ପାଉଥିଲି ସୁଖ
ସେଥିରୁ ହେଲି ବଞ୍ଚିତ । ୨୨ ।
କୃତକର୍ମ ଫଳ  ଯାଉଛି ଭୋଗିବି
ନ ଲଭି ଭୂତ ତନ୍ଦ୍ରାରେ,
ମୋ ଦୁର୍ଦ୍ଦଶା ଦେଖି  ମାନବେ ମନକୁ
ରଖନ୍ତୁ ହିତ-ଚିନ୍ତାରେ । ୨୩ ।

ଶ୍ରୀ—

## ବିବିଧ ପ୍ରସଙ୍ଗ ।

୧ । ଓଡ଼ିଆ ଭାଷାର ଅଧିକାରବୃଦ୍ଧି—'ଉତ୍କଳ ସାହିତ୍ୟ'ର ପାଠକବର୍ଗ ଅବଗତ ଅଛନ୍ତି ଯେ ଏଫ୍,ଏ, ଓ ବି,ଏ, ପରୀକ୍ଷାରେ ଓଡ଼ିଆ ରଚନା ବିଷୟରେ ପ୍ରଶ୍ନ ପ୍ରଦାନ କରିବା ନିମିତ୍ତ କଟକ କଲେଜର ଓଡ଼ିଆ ଛାତ୍ରଗଣ ସିଣ୍ଡିକେଟ ନିକଟରେ ପ୍ରାର୍ଥନା କରି ବିଫଳମନୋରଥ ହୋଇଥିଲେ । ମାତ୍ର ସେମାନେ ଏଥିରେ ନିରାଶ ବା ହତୋତ୍ସାହିତ ନ ହୋଇ ମାନ୍ୟବର ଛୋଟଲାଟ ମହୋଦୟ ବାଲେଶ୍ୱରକୁ ଶୁଭାଗମନ କରିଥିବା ସମୟରେ ତାଙ୍କ ନିକଟକୁ ଗୋଟିଏ ଆବେଦନ ପତ୍ର ପ୍ରେରଣ କରିଥିଲେ । ଆମ୍ଭେମାନେ ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇ ଅଛୁଁ ଯେ ଛାତ୍ରମାନଙ୍କର ଚେଷ୍ଟା ଫଳବତୀ ହୋଇ ଅଛି—ବିଶ୍ୱବିଦ୍ୟାଳୟର ଏଫ୍,ଏ, ଓ ବି,ଏ, ପରୀକ୍ଷାରେ ଓଡ଼ିଆ ଭାଷାର ନ୍ୟାଯ୍ୟ ଦାବୀ ଗୃହୀତ ହୋଇଅଛି । ଅନେକ ସମୟରେ ଓଡ଼ିଆ ଭାଷାର ଦୁର୍ଦ୍ଦଶାର କଥା ଭାବି ଆମ୍ଭେମାନେ ମର୍ମ୍ମବ୍ୟଥା ଅନୁଭବ କରିଅଛୁଁ । ଘରେ ବାହାରେ ଯେଉଁ ଓଡ଼ିଆ ଭାଷାର ଲାଞ୍ଛନା, ଅନେକ 'ଘରଢେଙ୍କି କୁମ୍ଭୀର' ହୋଇ ଯେଉଁ ଓଡ଼ିଆ ଭାଷାର ମୂଳରେ ପଦାଘାତ କରିବାକୁ କୁଣ୍ଠିତ ନୁହନ୍ତି, ଆଜି ବିଶ୍ୱବିଦ୍ୟାଳୟରେ ତାହାର ଅଧିକାରବୃଦ୍ଧି ଦେଖି ପ୍ରାଣରେ ଅଭୂତପୂର୍ବ ଆନନ୍ଦ ଜାତ ହେଉଅଛି । ମାତ୍ର ଏଥି ସଙ୍ଗେ ସଙ୍ଗେ ସମ୍ମୁଖରେ ଗୋଟିଏ ଗୁରୁତର ସମସ୍ୟା ଉପସ୍ଥିତ । ସେ ସମସ୍ୟା ପୂରଣ କରିବ କିଏ ? ଛାତ୍ରମାନଙ୍କ ପକ୍ଷରେ ଯାହା ସମ୍ଭବ (ସମ୍ଭବ କାହିଁକି ? ଅସମ୍ଭବ କହିଲେ ଚଳେ) ସେମାନେ ତାହା ସାଧନ କରି ଅଛନ୍ତି । ଏ ବିଷୟରେ ସେମାନେ ଦେଶର ଦଳପତି ଓ ମୁଖପାତ୍ରମାନଙ୍କଠାରୁ କିପରି ସାହାଯ୍ୟ ଓ ସହାନୁଭୂତି ପାଇ ଅଛନ୍ତି, ତାହା ସେମାନେ ଜାଣନ୍ତି—ଆମ୍ଭେମାନେ ମଧ୍ୟ କିଛି କିଛି ଜାଣୁ । ବର୍ତ୍ତମାନ ଏହି ଅଧିକାରର ସଦ୍‌ବ୍ୟବହାର ହେବ କିପରି, ଏହି ଚିନ୍ତା ଉପସ୍ଥିତ । ଓଡ଼ିଆ ଛାତ୍ରମାନେ କି ଯଥାର୍ଥ ଓଡ଼ିଆ ଭାଷାର ସମ୍ୟକ ଚର୍ଚ୍ଚା କରନ୍ତି ବା କରିବାପାଇଁ ପ୍ରସ୍ତୁତ ? ଏବଂ ତାହାର ସଦୁପାୟ ବା କଣ ? ବିଶ୍ୱବିଦ୍ୟାଳୟର ଉଚ୍ଚ ପରୀକ୍ଷାର ଉପଯୋଗୀ ପ୍ରଶ୍ନମାନଙ୍କର ଉତ୍ତର ଦେବାଭଳି ଯୋଗ୍ୟତା ଛାତ୍ରମାନେ କିପରି ଲାଭ କରିବେ ? ଅଧିକାର ଲାଭ କରିବା ଅନେକ ସମୟରେ ସହଜ ହୋଇପାରେ, ମାତ୍ର ଅଧିକାର ରକ୍ଷା ବଡ଼ କଠିନ । କେବଳ

ନାହିଁ କୁହେ—ଅଯୋଗ୍ୟ ପକ୍ଷରେ ଉଚ୍ଚାସନ କେବଳ ଲଜ୍ଜାର କାରଣ ହୋଇଥାଏ । ଶେଷରେ ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷାର ସେହି ଦଶା ଘଟିବ ନାହିଁ ତ ? ତାହାହେଲେ କି ସାମାନ୍ୟ ଲଜ୍ଜାର କଥା ହେବ ? ଆମ୍ଭେମାନେ ବର୍ତ୍ତମାନ ଏ ସମ୍ବନ୍ଧରେ କିଛି କହିବୁ ନାହିଁ । ସ୍ଥାନାନ୍ତରେ ଉକ୍ତ ବିଷୟକ ଗୋଟିଏ ପ୍ରବନ୍ଧ ପ୍ରକାଶିତ ହେଲା । ଆଶା କରୁଁ ଓଡ଼ିଆ ଭାଷାର ପ୍ରକୃତ ହିତୈଷୀ ବ୍ୟକ୍ତିମାନେ ବିଷୟଟିର ସମୁଚିତ ଆଲୋଚନା କରିବାକୁ କଦାପି ପଶ୍ଚାତ୍ପଦ ହେବେ ନାହିଁ ।

୨ । ନୂତନ କମିଟୀ—ବଙ୍ଗପ୍ରଦେଶରେ ଗବର୍ଣ୍ଣମେଣ୍ଟ ନିମ୍ନ ଓ ମଧ୍ୟ ଶିକ୍ଷାର ଆମୂଳ ପରିବର୍ତ୍ତନ ସାଧନର ଆୟୋଜନ କରି ଅଛନ୍ତି । ଏ ସମ୍ବନ୍ଧରେ ସ୍ଥୂଳକଥା ଓ ଆମ୍ଭମାନଙ୍କ ମନ୍ତବ୍ୟ ଯଥାସମୟରେ ପାଠକମାନଙ୍କୁ ଜଣାଇ ଅଛୁଁ । ବର୍ତ୍ତମାନ ଗବର୍ଣ୍ଣମେଣ୍ଟ ନୂତନ ପଦ୍ଧତିର ନିୟମାବଳି ସ୍ଥିର କରି ସାଧାରଣଙ୍କୁ ଜଣାଇ ଦେଇ ଅଛନ୍ତି ଏବଂ ନୂତନ ନିୟମାନୁଯାୟୀ ପୁସ୍ତକ ପ୍ରଣୟନନିମିତ୍ତ ବିଜ୍ଞାପନ ଜାରି କରିଅଛନ୍ତି । ସବୁ ଯେତେବେଳେ ନୂତନ, ପାଠ୍ୟପୁସ୍ତକ ନିର୍ବାଚନ କମିଟୀ ପୁରାତନ ରହିବ କାହିଁକି ? ବଙ୍ଗ, ବିହାର, ଓଡ଼ିଶା ପାଇଁ ନୂତନ କମିଟୀମାନ ଗଠିତ ହୋଇଅଛି । ଓଡ଼ିଶାର କମିଟୀରେ ବିଭାଗୀୟ ଇନ୍‌ସ୍ପେକ୍ଟର, କଟକ ଜିଲ୍ଲାର ଡେପୁଟି ଇନ୍‌ସ୍ପେକ୍ଟର, ବାବୁ ସୁଦାମଚନ୍ଦ୍ର ନାୟକ, ବାବୁ ହରିଶ୍ଚନ୍ଦ୍ର ଦତ୍ତ ଏମ୍, ଏ, ବାବୁ ଗୌରୀଶ୍ୟାମ ମହାନ୍ତି ବି, ଏ, ବାବୁ ନୀଳମଣିଚନ୍ଦ୍ର ଦେ ବି, ଏ, ବାବୁ ବ୍ରଜାନନ୍ଦ ଦାସ ବି, ଏ, ସଭ୍ୟ ନିଯୁକ୍ତ ହୋଇ ଅଛନ୍ତି । ପ୍ରଥମ ଦୁଇଜଣ ବିଭାଗୀୟ ଉଚ୍ଚ କର୍ମଚାରୀ—ସୁତରାଂ ସେମାନଙ୍କ ଯୋଗ୍ୟତା ସମ୍ବନ୍ଧରେ ସନ୍ଦେହ କରିବାର ଅଧିକାର କାହାର ନାହିଁ । ସୁଦାମ ବାବୁ ସୁଶିକ୍ଷିତ ଉଚ୍ଚପଦସ୍ଥ କର୍ମଚାରୀ ଏବଂ ପୁରାତନ କମିଟୀର ସଭ୍ୟ । ସୁତରାଂ ତାଙ୍କର ଯୋଗ୍ୟତା ସମ୍ବନ୍ଧରେ ପ୍ରଶ୍ନ ଉଠି ନ ପାରେ । ଶେଷୋକ୍ତ ଚାରିଜଣ ବିଶ୍ୱବିଦ୍ୟାଳୟର ଉଚ୍ଚ ଉପାଧିଧାରୀ—ସୁତରାଂ ମାନି ନେବାକୁ ହେବ, ସେମାନେ ଏକାର୍ଯ୍ୟର ସର୍ବଥା ଉପଯୁକ୍ତ । ତେବେ ଆମ୍ଭମାନଙ୍କ ମନରେ ଗୋଟାଏ ପ୍ରଶ୍ନ ଉଦିତ ହେଉଅଛି । ପୁରାତନ କମିଟୀର ପ୍ରବୀଣ ଓ ସୁଦକ୍ଷ ସଭ୍ୟମାନେ ପରିତ୍ୟକ୍ତ ହେଲେ କାହିଁକି ? ସେମାନେ କଣ ଅଯୋଗ୍ୟ ଓ ଅକର୍ମଣ୍ୟ ବିବେଚିତ ହେଲେ ? ଓଡ଼ିଆ ପୁସ୍ତକ ନିର୍ବାଚନ ବ୍ୟାପାରଟା ଏତେ ତୁଚ୍ଛ ? ସାହିତ୍ୟକ୍ଷେତ୍ରରେ ଯେଉଁମାନଙ୍କ ନାମରେ କେବେ ଖଡ଼ି ପଡ଼ି ନାହିଁ, ସେମାନେ ମଧ୍ୟ ପୁସ୍ତକ ନିର୍ବାଚକ ! ବେଶ୍ ବ୍ୟବସ୍ଥା !

୩ । ଭିକ୍ଟୋରିୟା ସ୍ମୃତିଚିହ୍ନ—ଓଡ଼ିଶାର ସ୍ମୃତିଚିହ୍ନ ସମ୍ବନ୍ଧରେ ଆମ୍ଭେମାନେ ସ୍ୱୀୟ ଅଭିମତ ବ୍ୟକ୍ତ କରିଅଛୁଁ । ଦେଖି ସୁଖୀ ହେଲୁଁ, ଉତ୍କଳ ଦୀପିକାର ଜଣେ ପତ୍ରପ୍ରେରକ ଠିକ୍ ସେହି ମତ ବ୍ୟକ୍ତ କରି ଖଣ୍ଡିଏ ଇଂରାଜୀ ପତ୍ର ପ୍ରକାଶ କରି ଅଛନ୍ତି । ଇତି ମଧ୍ୟରେ ଭେଦାଙ୍ଗଗ୍ରହ ଓ ସ୍ମୃତିଚିହ୍ନ ସମ୍ବନ୍ଧରେ କର୍ତ୍ତବ୍ୟ ନିରୂପଣ ନିମିତ୍ତ ଏକାଧିକ ଥର କଟକ କମିଟୀର ଅଧିବେଶନ ହୋଇ ଯାଇ ଅଛି । କିଏ କି ପରିମାଣରେ ଚାନ୍ଦା ଦେଇ ଅଛନ୍ତି, ବା ଅଙ୍ଗୀକାର କରିଅଛନ୍ତି, ତାହା ଜଣା ଯାଇ ନାହିଁ । କମିଟୀ ଏପର୍ଯ୍ୟନ୍ତ କୌଣସି ସିଦ୍ଧାନ୍ତରେ ଉପନୀତ ହୋଇ ନାହାନ୍ତି । ତେବେ ବିଷୟଟି ଯେପରି ଗୁରୁତର, ଉଦ୍ୟୋଗିମାନେ ସେହିପରି ଉପଯୁକ୍ତ । ସୁତରାଂ ସଫଳତାର ସମ୍ପୂର୍ଣ୍ଣ ଆଶା ଅଛି । ଇତିମଧ୍ୟରେ ମୟୂରଭଞ୍ଜାଧିପତି ଓ ଅନ୍ୟ କୌଣସି କୌଣସି ରାଜା କଲିକତା ପାଣ୍ଠି ପାଇଁ ଉପଯୁକ୍ତ ଅର୍ଥ ଦାନ କରି ଥିବାର ଜଣା ଯାଇ ଅଛି । ଓଡ଼ିଶା ପାଣ୍ଠି ପାଇଁ ସେମାନଙ୍କଠାରୁ ସେହି ପରିମାଣ କିମ୍ବା ତଦଧିକ ଅର୍ଥ ପ୍ରତ୍ୟାଶା କରିବା ଅସଙ୍ଗତ କି ? ତାହା ଯଦି ନ ହୁଏ, ତେବେ ଦୀନହୀନ ଉତ୍କଳ ପ୍ରତି ସେମାନଙ୍କ କର୍ତ୍ତବ୍ୟ ପାଳନରେ ତ୍ରୁଟି ହେବ ନାହିଁ କି ? କଲିକତା ପାଇଁ କେତେ ବଡ ବଡ ରାଜା ମହାରାଜା ନାହାନ୍ତି ? ଓଡ଼ିଶାର ସମ୍ବଳ ତ ଏଇ କେତୋଟି ଆଖିରେ ନାଚୁଅଛନ୍ତି ? ସେମାନେ କଣ ଆଗେ 'ଘର ନ ବାହାର' 'ଭାଟଭିକାର' ବେଢ଼ଶିବେ ?




ମାସିକପତ୍ର ଓ ସମାଲୋଚନା ।

୪ର୍ଥ ଭାଗ । ଜ୍ୟେଷ୍ଠ ୧୩୦୮ ୨ୟ ସଂଖ୍ୟା ।

—:०:—

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ


—०:०—

ପ୍ରବନ୍ଧମାନଙ୍କ ମତ ନିମନ୍ତେ ଲେଖକମାନେ ଦାୟୀ ।



—:०:—


CUTTACK.

PRINTED BY V. KAR.

AT THE UTKAL SAHITYA PRESS.

1901.



ଡାକମାସୁଲ ସମେତ ବାର୍ଷିକ ମୂଲ୍ୟ ୪ ...

# ନୂତନ ଆୟୋଜନ ।

ସର୍ବସାଧାରଣଙ୍କ ଅବଗତ ନିମିତ୍ତ ପ୍ରକାଶ କରୁଅଛୁଁ ଯେ ଆମ୍ଭେ ସନ ୧୮୯୬ ମସିହାରୁ ଏହି ସହରର ବାଲୁବଜାରରେ ଡାକ୍ତରି ଔଷଧାଳୟ ସ୍ଥାପନ କରି ସୁଖ୍ୟାତି ସହିତ ଟିକେସ୍ଥା ବ୍ୟବସାୟ ଚଳାଇ ଆସୁଅଛୁଁ । ଆମ୍ଭ ଔଷଧାଳୟରେ ସର୍ବଦା ନୂତନ ଔଷଧ ଓ ଡାକ୍ତରି ଅସ୍ତ୍ର ବିକ୍ରୟାର୍ଥ ପ୍ରସ୍ତୁତ ଥାଏ, ଅଥଚ ଆମ୍ଭେ ସେ ସମସ୍ତ ଆଶାନୁରୂପ ସୁଲଭ ମୂଲ୍ୟରେ ବିକ୍ରୟ କରଥାଉଁ । ଯେଉଁମାନେ ଆମ୍ଭ ସହିତ କାରବାର କରି ଅଛନ୍ତି ଓ କରୁଅଛନ୍ତି, ସେମାନେ ଆମ୍ଭର ବ୍ୟବହାର କଥା ଉତ୍ତମରୂପେ ଜାଣନ୍ତି । ବୃଥା ବାଗାଡମ୍ବରରେ କିଛି ପ୍ରୟୋଜନ ନାହିଁ ।

ସମ୍ପ୍ରତି ଆମ୍ଭର ହିତାକାଂକ୍ଷୀ କେତେକ ଭଦ୍ରବ୍ୟକ୍ତିଙ୍କ ଅନୁରୋଧରେ ସର୍ବସାଧାରଣଙ୍କୁ ସୁଲଭ ମୂଲ୍ୟରେ ଖାଣ୍ଟି ନୂତନ ଔଷଧ ପ୍ରଚୁର ପରିମାଣରେ ଯୋଗାଇବା ଅଭିପ୍ରାୟରେ ବ୍ୟବସାୟର ପ୍ରସାର ବଢ଼ାଇ ଅଛୁଁ । ପୂର୍ବାପେକ୍ଷା ଅଧିକ ପରିମାଣରେ ସର୍ବପ୍ରକାର ପ୍ରୟୋଜନୀୟ ଔଷଧ ଓ ଡାକ୍ତରି ଅସ୍ତ୍ର ସର୍ବଦା ପ୍ରସ୍ତୁତ ରଖିବାର ବିହିତ ବନ୍ଦୋବସ୍ତ କରଅଛୁଁ । ଆମ୍ଭ ସହିତ କାରବାର କଲେ କେହି କୌଣସି ପ୍ରକାରେ ପ୍ରତାରିତ ହେବେ ନାହିଁ । ଆମ୍ଭେ ଅନ୍ୟ ବ୍ୟକ୍ତିଠାରେ ଭାର ଦେଇ ନିଶ୍ଚିନ୍ତ ନ ରହି ନିଜେ ସମସ୍ତ ବିଷୟ ପୁଙ୍ଖାନୁପୁଙ୍ଖରୂପେ ଦେଖି ବ୍ୟବସ୍ଥା କରଥାଉଁ। ଇଚ୍ଛା କଲେ ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କଠାରୁ ପ୍ରଶଂସାପତ୍ର ସଂଗ୍ରହ କରି ସର୍ବସାଧାରଣଙ୍କ ଗୋଚରାର୍ଥ ପ୍ରକାଶ କରିପାରୁଁ। କିନ୍ତୁ ସେଥିରେ ଫଳ କଣ ? କାର୍ଯ୍ୟ କାଳରେ ଭଲ ମନ୍ଦ ସବୁ ଆପେ ପ୍ରକାଶ ପାଏ । ଆମ୍ଭେ ଆଉ ଅଧିକ କିଛି ନ କହି ସର୍ବସାରଣଙ୍କୁ ପ୍ରାର୍ଥନା କରୁଅଛୁଁ, ନିଜେ ନିଜେ ପରୀକ୍ଷା କରି ସତ୍ୟ ମିଥ୍ୟା ନିର୍ଣ୍ଣୟ କରନ୍ତୁ ।

ମଫସଲବାସିମାନଙ୍କଠାରୁ ଆମ୍ଭେ ଭିଃ ପିଃ ପାର୍ଶେଲରେ ଔଷଧାଦି ପଠାଇ ଥାଉଁ । ମାତ୍ର ଅପରିଚିତ ସ୍ଥଳମାନଙ୍କରୁ ଚତୁର୍ଥାଂଶ ମୂଲ୍ୟ ଅଗ୍ରିମ ନ ପାଇଲେ ପଠାଇବାର ନିୟମ ନାହିଁ ।

ଶ୍ରୀ ନଗେନ୍ଦ୍ରନାଥ ଘୋଷ, ଭି, ଏଲ୍, ଏମ୍, ଏସ୍,
ସ୍ୱତ୍ୱାଧିକାରୀ
ଘୋଷ ଏଣ୍ଡ ବ୍ରଦର୍ସ ଡ୍ରଗିଷ୍ଟ ହଲ୍, ବାଲୁବଜାର,
କଟକ ।

# ଉତ୍କଳ ସାହିତ୍ୟ ।

---

ଉତ୍କଳ- ଜନନୀ ।

---

(୧)

ବିଶାଳ ବିସ୍ତାର ତବ, ମା ଉତ୍କଳଭୂମି,
ଦେଖି ଆସିଲି ମୁଁ ଗୃହ ଅଟେଡ଼ ଭ୍ରମି ଭ୍ରମି ।
କୋଟିଏ ସନ୍ତାନ ମାଗୋ ଧରଅଛୁ କୋଳେ,
ଗୋଟିଏ ମନୁଷ୍ୟ କିନ୍ତୁ ନ ଦେଖିଲି ଡୋଳେ ।
ସମସ୍ତେ ମୋହର ପର ମୋହେ ମୂଢମତ,
କ୍ଷୁଦ୍ର ସ୍ୱାର୍ଥକାରାରୁଦ୍ଧ, ଦାସ୍ତେ ନିମୂରତ ।
ଯବେ ଶୂଦ୍ରୀକୃତ ପୂଜ ମୁଦ୍ର ମୁଦ୍ରାଖଣ୍ଡେ,
ମହାନ ଅନ-ନ୍ତ କେହି ନ ପୂଜଇ ଦଣ୍ଡେ ।
ନଶ୍ୱର ଐଶ୍ୱର୍ଯ୍ୟମଦେ କେହି ଯାଉ ହୋଇ
ବିଳାସ-ଆଳସ୍ୟ-ଶେଯେ ରହିଅଛୁ ଶୋଇ ।
ଅନେକେ ପଣ୍ଡିତମନ୍ୟ ସ୍ଫୀତ ଅହଙ୍କାରେ
ଜୀର୍ଣ୍ଣ ଶାସ୍ତ୍ର ଛନ୍ଦ ମନ୍ତ୍ର ଗିଳ ଅବଗୃରେ ।
ଧର୍ମ-ରଣ-କ୍ଷେତ୍ରେ କେହି ବୃଥା ବାବଦୂକ,
କର୍ମର ସମରାଙ୍ଗନେ ଚତୁର ନମୂକ ।
କାହିଁ ମାଗୋ ଧର୍ମବୀର, କାହିଁ କର୍ମବୀର,
କାହିଁ ମା ସେ ମହୋତ୍ସବ ସାଧନା ସିଦ୍ଧିର ?

(୨)

ମହତ୍ତ୍ୱ-ମାନବ-ମନ ନ ଦେଖଇ କାହିଁ,
ଜଡ଼ତା-ଜଡ଼ିତ ମୃତ ସବୁ କାହିଁ ପାଇଁ ?
କାହିଁକି ତମିରଘୋର ଘୋଟିଛି ଗଗନେ
ଜାଗିଲ ଆଶାର ତାରା, ପ୍ରେମର ତପନେ ?
ଜୀବନ-ତାରୁଣ୍ୟସ୍ରୋତ ନ ଚଳଇ ଅତ୍ର,
ଲାଗିଅଛି ଗୃହଅନ୍ତେ ବୃଥା ହାତ୍‌ହାତ୍ ।
କାହିଁ ମା ସତ୍ୟର ସେହି ଉନ୍ମାଦନା ଗୀତ,
କାହିଁ ବୀରପ୍ରସବନୀ ସେ ଅମୃତ ପ୍ରୀତ ?
ମୋହନାଗପାଶଛେଦୀ କାହିଁ ସେହି ଜ୍ଞାନ,
କାହିଁ ମା ତୋ କୋଳେ ବୀର ମାନବ ସନ୍ତାନ ?
କାହିଁ ପ୍ରାଣ, କାହିଁ ଗତ, ଦଗ୍ଧ ମରୁସର
କାହିଁକି ମା ଏ ଦୁର୍ଗତି, କହଗୋ ସୁମଗ ।

(୩)

ଶୁଣ ମା ଶୁଣ ମା ବାରେ ଢେରୁଣ ଶ୍ରବଣ,
ବିପୁଳ ବିଶ୍ୱର ମଧୁମୟ ଆମନ୍ତ୍ରଣ !
"ଉତ୍ତିଷ୍ଠ ଉତ୍ତିଷ୍ଠ"—କ୍ଷୁଦ୍ର ସ୍ୱର ଛାଡ଼ ମଣେ
ପଶନ୍ତୁ ତୋ ଶୋ ସନ୍ତାନେ ବିଶ୍ୱ-ସଭାଙ୍ଗନେ ।
ନିଖିଳମାନବହୃଦେ ମିଶାଇ ହୃଦୟ
ଗାଆନ୍ତୁ ବିଶ୍ୱ-ସଭାରେ 'ଜୟ ସତ୍ୟ ଜୟ' ।
ସତ୍ୟର ଅଲୋକ ପ୍ରାଣେ କରନ୍ତୁ ଧାରଣ,
କାଟିବ ତମିର ରାଶି ବେଗେ ପଳାଇବ ।
କ୍ଷଣକେ ଉଠିବ ନାଚ ଜୀବନ-ଶୋଣିତ,
କ୍ଷଣକେ ସକଳ ପାପ ହୋଇବ ଖଣ୍ଡିତ ।
ଆଶାର ଅନନ୍ତେ ମାତ ଶୋ ସନ୍ତାନଗଣେ
ଧର୍ମବୀର କର୍ମବୀର ହେବେ ଶୁଭକ୍ଷଣେ ।
ବିଧାତାର ଆଶୀର୍ବାଦେ ଲକ୍ଷ୍ମୀ ମୂର୍ତ୍ତିମତୀ
ହେବୁ ତୁ ଉତ୍କଳଭୂମି ବୀରମାତା ସତୀ ।

---

## ଭ୍ରମଣକାରୀର ପତ୍ର ।

## ( ରେଢାଖୋଲ । )

ଶ୍ରଦ୍ଧାସ୍ପଦ ଓ ସମ୍ମାନାର୍ହ ସମ୍ବଲପୁରୀ ବନ୍ଧୁମାନଙ୍କ ସହୃଦ ସାକ୍ଷାତ୍ ଓ ସଦାଳାପ ପରେ ରେଢାଖୋଲ ଯାତ୍ରା । ରେଢାଖୋଲ ଗୋଟିଏ ଫିଉଡେଟରି ଷ୍ଟେଟ୍ । ଖାଣ୍ଟି ଓଡ଼ିଆପ୍ରଚଳିତ ରାଜ୍ୟ । ଏହାର ପରିମାଣ ଫଳ ୮୩୩ ବର୍ଗମାଇଲ । ବର୍ତ୍ତମାନ ଲୋକସଂଖ୍ୟା ୨୬୮୮୮ । ଏ ରାଜ୍ୟ ଉତ୍ତର ଦିଗରୁ ଯଥା ବାମଣ୍ଡା, ଅନୁଗୁଳ, ଆଠମଲ୍ଲିକ, ବୌଦ୍ଧ, ସୋନପୁର ଓ ସମ୍ବଲପୁରଦ୍ୱାରା ବେଷ୍ଟିତ । ଅର୍ଦ୍ଧ ଶତ ବର୍ଷପୂର୍ବେ ଏହାର ରାଜଧାନୀ ଏକ ଦୁର୍ଗମ ଗିରି-ଗହ୍ୱରରେ (ଖୋଲରେ) ଥିଲା । ସେ ସ୍ଥାନର ନାମ ଥିଲା ରଢା ବା ରେଢାଖୋଲ । ତଦନୁସାରେ ଏ ରାଜ୍ୟଟି ରେଢାଖୋଲ ନାମରେ ଆଖ୍ୟାତ । ଏବେ ରାଜଧାନୀ ରାମପୁର ଗଡ଼ । ଏହି ରାମପୁର ଦୁର୍ଗ ସମ୍ବଲପୁରଠାରୁ ପୂର୍ବ ଦକ୍ଷିଣ ୫୦ ମାଇଲ ଦୂର । ଆମ୍ଭେମାନେ ରାତ୍ର ଏଗାରଟା ସମୟରେ ସମ୍ବଲପୁର ଛାଡ଼ି ଦୁଇ ଖଣ୍ଡି ବଳଦ ଗାଡ଼ିରେ ରେଢାଖୋଲ ଅଭିମୁଖରେ ଯାତ୍ରା କଲୁଁ । ଅନ୍ଧକାର ରାତ୍ରି । ଆମ୍ଭମାନଙ୍କର ସହାୟ ଗାଡ଼ିଚାଳକ ଦୁଇ ଜଣ, ଖଣ୍ଡେ ଟାଙ୍ଗି, ଗୋଟାଏ ଲଣ୍ଠନ । ସହରରୁ ୩ ମାଇଲ ବାହାର ଆସି ଏକ ପଲ୍ଲିରେ ପହୁଞ୍ଚି ଦେଖିଲୁଁ ଓଡ଼ିଆ ପାଲା ହେଉଥିଲା । ଗ୍ରାମ ମଧ୍ୟରେ ଦାଣ୍ଡ ଉପରେ ପଲ୍ଲିବାସିନୀମାନେ ଉଭା ହୋଇ ଠିଆପାଲା ଶୁଣୁଥିଲେ । ନୃତ୍ୟକାରମାନଙ୍କ ତାଣ୍ଡବ ତାଳ ପଲ୍ଲୀରମଣୀମାନଙ୍କ ଅଞ୍ଚଳଗୁଡ଼ାକୁ ବେଳେ ବେଳେ ଦୋହଲାଇ ଦେଉଥିଲା । ଓଡ଼ିଆ ଗାନ ଶୁଣି ଆମ୍ଭମାନଙ୍କ ମନ ମଧ୍ୟ ଟିକିଏ ଦୋହଲିଲା । ଏହି ପଲ୍ଲିର ଅନତିଦୂରରେ ଅରଣ୍ୟ ପଥ । ଗାଡ଼ି ଗୁଣଟା କହିଲେ ନ ସରେ । ସ୍ଥାନେ ସ୍ଥାନେ ଝର ନଦୀ—ପ୍ରସ୍ତରମୟ ସ୍ତର—ଗାଡ଼ି ଭୟଙ୍କର ବେଗରେ ଉପରୁ ନଦୀ ଗର୍ଭକୁ ଗଡ଼ୁଥିବା ସମୟରେ ଘାତ ପ୍ରତିଘାତ ଶବ୍ଦରୁ ଅନୁଭବ ହେଉଥିଲା ଗାଡ଼ି ଆଉ ଗଡ଼ରେ ନାହିଁ । ଏହି ପରି କେତେ ନଦୀ ନାଳ ଅତିକ୍ରମ କରି ୩୬ ମାଇଲ ଆସିଲୁଁ । ଧନ୍ୟ ବଳଦ ! ଧନ୍ୟ ଗାଡ଼ି ! ଧନ୍ୟ ଗାଡ଼ିଚାଳକ ! ଧନ୍ୟ ଆମ୍ଭେମାନେ ! ସମ୍ବଲପୁର ଓ ରାୟପୁରର ଶକଟ ପରି ଶକଟ କୌଣସି ସ୍ଥାନରେ ଦେଖି ନାହୁଁ । ଏହାର ଚକ ରେଲ ଗାଡ଼ି ଚକର ସାନ ଭାଇ ହେବ ।

ନିବିଡ଼ ଅରଣ୍ୟ ଗର୍ଭରେ ଗୋଟିଏ ଝର ତଟରେ ସ୍ନାନାହାର ସାରି ପୁଣି ଅଖଣ୍ଡ ଅରଣ୍ୟପଥରେ ଗମନ କଲୁଁ । ଏ ଅରଣ୍ୟ ଜୁଜୁମରା ଗଡ଼ତିଆର ଅଧିକୃତ । ଗଡ଼ତିଆ ବୋଲନ୍ତେ ଗଡ଼ନାୟକ । ଏ ଜଣେ ଗଣ୍ଡ ଖଣ୍ଡପତି । ପୂର୍ବରେ ଏ ଅରଣ୍ୟ ଖଣ୍ଡ ରେଢାଖୋଲର ଅନ୍ତର୍ଗତ ଥିଲା । ଏବେ ଖାଲସାରେ । ଜୁଜୁମରା ପାର ହୋଇ ମୁଣ୍ଡବାହାଲ ନାମକ ପଲ୍ଲିରେ ରାତ୍ରି ଯାପନ କଲୁଁ । ଏ ପଲ୍ଲିର ଗଉନ୍ତିଆ (ସରବରାକାର) ଗଣ୍ଡ । ଗଉନ୍ତିଆ ଉଆସରୁ ଏକ ଅବଳାକଣ୍ଠ-ନିଃସୃତ 'କୋଇଲି ଗୀତ' ଶ୍ରୁତ ହେଲା । ଗଣ୍ଡ ପିଲାମାନେ ମାତୃଭାଷାକୁ ଅନୁସରି ସମସ୍ୱରରେ ଓଡ଼ିଆ କୋଇଲି ଗୀତଟି ଆବୃତ୍ତି କରୁଥିଲେ । ଅବ୍ୟକ୍ତ ଆନନ୍ଦ ଉପଲବ୍ଧ ହେଲା । ଏ ପ୍ରଦେଶର ଗଣ୍ଡମାନଙ୍କର ମାତୃଭାଷା ଓଡ଼ିଆ, ଏହି ପୂର୍ବ ସିଦ୍ଧାନ୍ତ ଦୃଢ଼ତର ହେଲା ।

ଏହିଠାରୁ ରେଢାଖୋଲ ଆରମ୍ଭ । ମୁଣ୍ଡବାହାଲ-ଠାରୁ ୧୮ ମାଇଲ ଦୂରରେ ରାମପୁର ଗଡ଼ । ରେଢାଖୋଲରାଜଙ୍କ କୃପାରୁ ଆମ୍ଭମାନଙ୍କର ଶକଟ-କଷ୍ଟ ଦୂର ହେଲା । ଘୋଡ଼ା, ଖଡ଼ଖଡ଼ି, ମାଲମତ୍ତା ନେବା ଗାଡ଼ି, ଉପଯୁକ୍ତ ଅର୍ଦ୍ଦଳି ଘର-ମାଲଠାରେ ଉପସ୍ଥିତ ଥିଲେ । ମୁଣ୍ଡବାହାଲ ପର୍ଯ୍ୟନ୍ତ ଖାଲସା ରାସ୍ତା ଅପ୍ରଶସ୍ତ, ଅର୍ଦ୍ଧଗଠିତ ଓ ଅପରିବ୍ୟକ୍ତ । ଏ ରାସ୍ତାଟାକୁ ନାମମାତ୍ର ରାସ୍ତା

ବୋଲଯିବ । କାରଣ ରାସ୍ତା ଅରଣ୍ୟ କାଟି କିଟା ହୋଇଅଛି, ମାତ୍ର ଅପରିଷ୍କୃତ ଥିବା ହେତୁ ବନ୍ଧୁର ଓ ଅଗମ୍ୟ ହୋଇଅଛି । ଲୋକ ଓ ଶକଟ ଅରଣ୍ୟରେ (କେନ୍ଦ୍ର କେନ୍ଦ୍ର) ଘୂରି ଘୂରି ଗନ୍ତବ୍ୟ ପଥ କିଟାଇ ଅଛନ୍ତି । ଅରଣ୍ୟ ପଥଟା ବଡ଼ ବିରକ୍ତିଜନକ ହୋଇଥିଲା । ମୁଣ୍ଡବାହାଲଠାରୁ ମନ ବାହେଲ୍ ହେଲା । ସୁପ୍ରଶସ୍ତ ରେଢାଖୋଲ ରାଜପଥ, ସୁରକ୍ଷିତ ବନରାଜି, ଅଧିତ୍ୟକା, ଉପତ୍ୟକା, ଉପବନ ପ୍ରଭୃତି ନବ ନବ ଦୃଶ୍ୟ ମନକୁ ପ୍ରଫୁଲ୍ଲ କଲା । ସମ୍ବଲପୁରରେ ଶୁଣିଥିଲୁଁ ରେଢାଖୋଲ ଧନଲୋଭରେ ପଡ଼ି ପାର୍ବତ୍ୟ ରାଜ୍ୟର ମୂଳ ସମ୍ପଦ ଶାଳବନ ସାର ଦେଇଅଛି । ଏ କଥାଟି ଠିକ୍ ବୋଲି ଏଠାରେ ଜଣା ଗଲା ନାହିଁ । ପରେ ଶୁଣାଗଲା ବାମଣ୍ଡାକାନରେ ବୃହତ୍ ଶାଳବନ ସିଲ୍‌ପର୍ ହୋଇ କେତେ ଲୋକଙ୍କୁ ଧନୀ କରି ଦେଇ ଅଛି । "ଧୀର ବଣିକ୍, ଉତ୍ତାଳ ଗୃହ ।" ରାଜା ଓ ଦେବାନସାହେବ ସମ୍ଭାଳି ହୋଇ ଶାଳବନ କର୍ତ୍ତନ କରାଇବେ । ବର୍ତ୍ତମାନ ରେଲଗାଡ଼ିର ନବ ଯୁଗ । ବିଲାତର ସମୁଦ୍ରତୁଲ୍ୟ ମୂଳଧନ ଆସି ଏ ଦେଶକୁ ଗିଳି ବସିଅଛି । ସମ୍ଭାଳି ନ ହେଲେ ସବୁ ସରି ଯିବଟି ! ସୌଖୀନତା ବଢ଼ିବ—ମୂଳ ସମ୍ପଦ ବାହାରି ଯିବ । ଅପ୍ରୟେ ବିପଦ—ବ୍ୟୟରେ ବିପଦ ! ସମ୍ଭାଳି ହୁଅ—ଯେପରି ପାଉଣ୍ଡ ହେବ--ପଇସାଟି ଟଙ୍କାଟିଏ ହେବ ।

ରାତ୍ର ୯ ଘଣ୍ଟାରେ ଗଡ଼ରେ ପହଞ୍ଚିଲୁଁ । ଆଲ-ବିଲମ୍ବ ନାହିଁ—ଗୁମର ନାହିଁ—ଗଡ଼ଜାତ ଶକ୍ତି—ସାକ୍ଷାତ୍—ଅନୁସରଣସାପେକ୍ଷ ନାହିଁ, ରାଣ୍ଡ-ବଂଶାବତଂସ—ଖଣ୍ଡପତି — ଏରଣ୍ଡଦ୍ରୁମାଓମାନ ନାହିଁ । ଅବିଲମ୍ବରେ ସାକ୍ଷାତ୍, କୁଶଳଜିଜ୍ଞାସା, ବିବିଧ ପ୍ରସଙ୍ଗରେ କଥୋପକଥନ । ପୂର୍ବ ପରିଚୟର ପୁନରାବୃତ୍ତି । କାନ ବହୁମୂଲ୍ୟ ରତ୍ନରେ ବିମଣ୍ଡିତ ହେଲେ କଣ ରାଜହଂସ ହେବ ? ରାଜହଂସ ଘୋର ଅରଣ୍ୟସରରେ ଥିଲେହେଁ ମରାଳ ବୋଲି ଜଣା ନ ଯିବ କି ?

ଶୁଣିଥିଲୁଁ ରେଢ଼ାଖୋଲ ଅସ୍ୱାସ୍ଥ୍ୟକର ସ୍ଥାନ । ସେଥିଲାଗି ଉଠି ସେହି ଅନୁସନ୍ଧାନରେ ଲାଗିଲୁଁ । ଗଡ଼ର ଉତ୍ତରପଶ୍ଚିମରେ ଗୋଟାଏ ଗିରିନଦୀ ପ୍ରବାହିତ । ଖଣିଜ ଓ ଉଦ୍ଭିଜ୍ଜ ପରମାଣୁରେ ପରି-ପୂରିତ ଥିବାରୁ ପରିପାକ-ଶକ୍ତି ଏ ଜଳରେ ଅଳ୍ପ ଅଛି ବୋଲି ଆମ୍ଭର ପ୍ରିୟ ଡ଼ାକ୍ତର କୃଷ୍ଣବିହାରୀ ପଟ୍ଟନାୟକଙ୍କଠାରୁ ଅବଗତ ହେଲୁଁ । ଗଡ଼ର ତିନି ଦିଗରେ ପରିଖା, ସେହି ପରିଖାର କଣ୍ଠ-ଦେଶରେ ବାଉଁଶ ମୂର୍ଚ୍ଛା । ଏପରି ଦୁର୍ଗଲକ୍ଷଣ ଦେଖି ଅନୁମାନ ହୁଏ—ମରହଟ୍ଟା ଆକ୍ରମଣରୁ ରକ୍ଷା ପାଇବା ନିମିତ୍ତ ଉତ୍କଳର କଲ୍ପାକାର—ଭୂୟାଁନାତ୍‌ମାନଙ୍କର ଏହି ଭଳି ପରିଖା ଓ ବାଉଁଶ ବଣରେ ବେଷ୍ଟିତ ଗଡ଼ ଥିଲା । ମରହଟ୍ଟା ଲୁଣ୍ଠନ-କାଣ୍ଡ—ଅଶ୍ୱାରୋହୀ ସେନାଙ୍କ ଅତର୍କିତ ଆକ୍ରମଣରୁ ରକ୍ଷା ପାଇବାର ଉପାୟ ଏଠାରେ ମଧ୍ୟ ହୋଇ ଥିଲା । ଏବେ ସେ କାଳ ନାହିଁ । ପରିଖା ପୋତି ହେବା ସହଜ । ବାଉଁଶ ମୂରୁଜ୍ ଗୁଡ଼ାକ ଫୁଲି ଯାଇ ଆପେ ମରି ଅଛି । ପାପଶାନ୍ତ ! ଗଡ଼ର ପୂର୍ବଦକ୍ଷିଣ ପ୍ରଶସ୍ତ କର୍ଷିତ ଓ ଅଳ୍ପ ପତିତ ବିସ୍ତୃତ ସମତଳ ଉପତ୍ୟକା । ଅବାଦ ଜମି ହେଲେହେଁ ପୁନର୍କର୍ଷିତ ବୋଲି ମନେ ହେଲା ନାହିଁ । ମାଟି ଉର୍ବରା, ସ୍ଥାନେ ସ୍ଥାନେ ଝାଡ଼ି ଜଙ୍ଗଲ, ଜମିର ଉନ୍ନତି ପୂର୍ବ ରାଜା ଯାହା କରିଥିଲେ । ରାଜ-ପ୍ରାସାଦ ନବନିର୍ମିତ । ଇଂରାଜ ଗବର୍ଣ୍ଣମେଣ୍ଟଙ୍କର ତତ୍ତ୍ୱାବଧାନରେ ଥାଇ ଯେପରି ହେବାର ତାହା ହୋଇଅଛି । କଣ୍ଟ୍ରାକ୍ଟରମାନଙ୍କ କଲ ପୂରିଅଛି ।

ସ୍କୁଲ, ଡାକ୍ତରଖାନା, ପଥ, ଘାଟ ତିଆର ହୋଇଅଛି, ହେଉଅଛି । ଏ ଷ୍ଟେଟ୍‌ର ଉନ୍ନତି ସକାଶେ ଦେବାନ ଶ୍ରୀଯୁକ୍ତ ଦାଶରଥି ପୃଷ୍ଟି ମହାଶୟ ବିଶେଷ ସୁଖ୍ୟାତି ଲାଭ କରିଅଛନ୍ତି । ବିଜ୍ଞତା ବୁଦ୍ଧି ଓ ଧୈର୍ଯ୍ୟ ଗୁଣରେ ସମ୍ବଲପୁରରେ ଏ ମହାଶୟ ଜଣେ ପ୍ରସିଦ୍ଧ ବ୍ୟକ୍ତି ।

ପଙ୍କିଳଜଳବାହିନୀ ଗିରିନଦୀ ବନାଇ ପାଣି ସମ୍ଭାଳିବା ପ୍ରସ୍ତାବରେ କେବଳ [illegible] । [illegible]

ଅଟକ ରହିବ ନାହିଁ—ରହିଲେ ଅପେୟ—ଅବ୍ୟବହାର୍ଯ୍ୟ ହେବ । ଅତଏବ ଆମ୍ଭର ମତ ପାନୀୟ ଜଳ ସକାଶେ ଅଧିକ ୨୪ ଗୋଟା କୂପ ଓ ନିମ୍ନଭୂମି ଦେଖି ଗଡ଼ ଅନ୍ତରକୁ ସାଧାରଣ ଲୋକଙ୍କ ସ୍ନାନାଦି ସକାଶେ ପୋଖରୀ ଖୋଳା ହେଲେ ଜଳକଷ୍ଟ ଯିବ, ସ୍ୱାସ୍ଥ୍ୟରକ୍ଷା ହେବ ଏବଂ ରାମପୁର ଦୁର୍ଗର ସ୍ୱାସ୍ଥ୍ୟସମ୍ବନ୍ଧୀୟ ଦୁର୍ନାମ ବିଦୂରିତ ହେବ ।

ଗଡ଼ଜାତ ଦୁର୍ଗନିବାସିମାନେ ସାଧାରଣତଃ ଅଳସ । ରାଜଗୃହର ତଣ୍ଡୁଳ, ପକ୍ୱ ଅନ୍ନ ଏବଂ ବସନାଦି ସେବାଦ୍ୱାରା ପାଉଥାନ୍ତି । ଦୁର୍ଗନିବାସିଗଣ ପ୍ରାୟ ସେବାକାରୀ । ତାହାର ଆତ୍ମନିର୍ଭର ନାହିଁ—ଭବିଷ୍ୟତ ଭାବନା ନାହିଁ—ଆତ୍ମୋନ୍ନତିର ଚେଷ୍ଟା ନାହିଁ । ଯେ ଯେଉଁ ସେବାଟି କରନ୍ତି ଭଲ ପରି କରନ୍ତି—ଯଥା ତଥା ଉଦରପୂର୍ତ୍ତି କରନ୍ତି । ଚରିତ୍ରବଳ ଥିବାର ତ କଥା ନୁହେଁ । ପ୍ରଜା ଉନ୍ନତିରେ ମୁଣଖିଆ । ରାଜା ବା ମନ୍ତ୍ରୀ ସଂସ୍କାରକ ହେଲେ ଅଶୁଦ୍ଧିଶୋଧନ ହୋଇପାରେ । କାରଣ ସଭ୍ୟ ଦେଶରେ ସଂସ୍କାର ସୁକଠିନ—ସ୍ୱସ୍ୱପ୍ରାଧାନ୍ୟ ପ୍ରବଳ । ଏ ସବୁ ଦେଶରେ ଏକାଧିପତ୍ୟ ମୂର୍ତ୍ତିମାନ୍ । ଆଜି ଯାହା ହୁକୁମ୍ ହେବ, କାଲି ତାହା ନ ଶୁଣି ରହିବ କିଏ ? ଜୟପୁରର କାନ୍ତବାବୁ ବା କାଶ୍ମୀରର ନୀଲାମ୍ବର ମୁଖର୍ଯ୍ୟାଙ୍କ ପରି ଦେବାନ ଆମ୍ଭ ଦେଶର ରାଜଷ୍ଟେଟ୍‌ମାନଙ୍କରେ ଆବଶ୍ୟକ ନାହିଁ । ସେ ରାଜ୍ୟ ଅଗ୍ନିକୁଣ୍ଡ, ଶାଣିତ ଖଡ଼୍ଗ । ଏ ରାଜ୍ୟର ପ୍ରଜାଗଣ ପଦାନତ । ରାଜା ଓ ଦେବାନଙ୍କ କଥାରେ ସର୍ବସ୍ୱ ସମର୍ପଣ କରି ଦେବେ । ଏପରି ଶାନ୍ତ ପ୍ରଜାଙ୍କର ଉନ୍ନତି କରିବା ସହଜ ନୁହେଁ କି ? ରାଜା ଯଦି ଆତ୍ମମୁଗ୍ଧ ନ ହୁଅନ୍ତି —ମନ୍ତ୍ରୀ ଯଦି ସ୍ୱାର୍ଥବିଜଡ଼ିତ ନ ହୁଅନ୍ତି, ସେ ରାଜ୍ୟର ଜଡ଼ତା ଦୂର ହେବା ଦୂର କଥା ନୁହେଁ ।

ରେଢ଼ାଖୋଲନରପତି ଶ୍ରୀ ଗୌରଚନ୍ଦ୍ର ଦେବ ଜେନାମଣି ଏବେ ରେଢ଼ାଖୋଲ-ମୁକୁଟମଣିରୂପେ ବିରାଜିତ । ପିତୃହୀନ ହୋଇ ପିତାମହ ବିଷ୍ଣୁଚନ୍ଦ୍ର ଦେବ ଜେନାମଣିଙ୍କ ସ୍ନେହରେ ଲାଳିତ ଓ ବର୍ଦ୍ଧିତ ହୋଇଅଛନ୍ତି । ଏହାଙ୍କର ବୟସ ଏତେବେଳେ ୩୬ ବର୍ଷ । ସୁବିଚାରକ, ସୁଚରିତ୍ର, କର୍ତ୍ତବ୍ୟନିଷ୍ଠ ଏବଂ କ୍ଷମାଶୀଳ । ଚିଫ୍‌କମିଶନର ସଦୟ ହୋଇ କମିଶନର, ପୋଲିଟିକେଲ ଏଜେଣ୍ଟ, ବାମଣ୍ଡା ଓ ସୋନପୁରର ଅଧୀଶ୍ୱର ମହୋଦୟମାନଙ୍କ ସହିତ ଏ ଦୁର୍ଗକୁ ଶୁଭାଗମନ କରି ପିତାମହ ବିଷ୍ଣୁଚନ୍ଦ୍ରଦେବ ଜେନାମଣିଙ୍କ ଗଦିରେ ଯୁବକ ପୌତ୍ର ଯୁବରାଜଙ୍କୁ ଗଦିନସୀନ କରାଇ ଅଛନ୍ତି । ସିଦ୍ଧ ଭେଟର ଚିଫ୍‌ମାନଙ୍କ ପ୍ରତି ଏପରି ଅନୁଗ୍ରହ ବିଶେଷ ଅନୁକୂଲ୍ୟର ନିଦର୍ଶନ ଅଟେ । ମହାତ୍ମା ଫ୍ରେଜର ଚିଫ୍ କମିଶନର ଛତିଶଗଡ଼ ବିଭାଗର ରାଜାମାନଙ୍କୁ ଆତ୍ମୀୟଭାବରେ ପରିରକ୍ଷଣ କରୁଅଛନ୍ତି । ଶାସନକର୍ତ୍ତାଙ୍କ ପକ୍ଷରେ ଏ ଗୁଣ ଅସାଧାରଣ । ବୟଃପ୍ରାପ୍ତ—ଶାସନଭାରପ୍ରାପ୍ତ ନୃପତିମାନଙ୍କୁ Restriction ରେ ରଖିବାର ପ୍ରୟୋଜନ ଅଳ୍ପ । ଏ କାଳରେ ରାଜାମାନେ ଅଳ୍ପ ଯଥେଚ୍ଛାଚାରୀ । ଅନ୍ୟାୟ, ଅତ୍ୟାଚାର ଗବର୍ଣ୍ଣମେଣ୍ଟ ତତ୍ତ୍ୱାବଧାରକ—ପୋଲିଟିକେଲ ଏଜେଣ୍ଟଙ୍କ ଗୋଚରରେ ପଡ଼ିଲେ ପନ୍ଥିଷପାରେ—ଉପଦେଶଦ୍ୱାରା, ତାଡ଼ନଦ୍ୱାରା ସାବଧାନ କରି ଦିଆଯାଇ ପାରେ । ଅଧିକାରର ଅଧିକାର ପ୍ରତିରୋଧ ବିଷମବାଧକ । ଜଣେ ଅଶ୍ୱାରୋହଣ କରିବ, ଅନ୍ୟ ଜଣେ ଲଗାମ ଧରି ରହିଥିବ, ଏପରି ଘୋଡ଼ାଚଢ଼ାରେ ସୁଖ କଣ ? ମନ୍ତ୍ରୀ ଉପଦେଶକ ହେଉନ୍ତୁ, ମନ୍ତ୍ରଦାତା ହେଉନ୍ତୁ, —ମନ୍ତ୍ରୀ ଯେବେ ରାଜାର ଶାସକସ୍ଥଳାଭିଷିକ୍ତ ହୁଅନ୍ତି, ତେବେ ରାଜା ଓ ମନ୍ତ୍ରିଙ୍କ ମଧ୍ୟରେ ସୌହାର୍ଦ୍ଦ ରକ୍ଷା ହେବ କି ? ଯଦି ସୌହାର୍ଦ୍ଦ ନ ରହିଲା, ସେ ରାଜ୍ୟ ସୁଶାସିତ ଓ ସୁପାଳିତ ହେବ କି ?

ରେଢ଼ାଖୋଲ ପରିମାଣରେ ପ୍ରାୟ ୩ ଗୋଟା ନୀଳଗିରି ରାଜ୍ୟର ସମାନ । ମାତ୍ର ଏହାର ଲୋକସଂଖ୍ୟା ଓ ରାଜସ୍ୱ ନୀଳଗିରି ଅନୁପାତରେ ଅନେକ ଊଣା । ନୀଳଗିରିରାଜ୍ୟଠାରୁ ଏ ରାଜ୍ୟର ମାଟି

କୌଣସି ଅଂଶରେ କଳୁଷ୍ଟ ନୁହେ । ଅନେକ ଘର ନୀଚ ଜାତିର ନିପଡ଼ିକାମଧ୍ୟରେ ଅଛି । ପ୍ରଜାବୃଦ୍ଧି ଓ ଭୂମିର ଆବାଦପାଇଁ ଚେଷ୍ଟା ଅଳ୍ପ ହୋଇଅଛି । ବୃଦ୍ଧ ରାଜା ଅନାସକ୍ତ ଥିଲେ । 'ଯେନ ଅଳ୍ପ ଛନ୍ଦ ବ୍ୟଗ୍ର' କରୁଥିଲେ । ସୁତରାଂ ଆୟବୃଦ୍ଧି ହୋଇ ନାହିଁ । ବନୋବସ୍ତ ଆଜକୁ ୩ ବର୍ଷ ହେଲା ଲାଗିଅଛି—ଏ ପର୍ଯ୍ୟନ୍ତ ଶେଷ ହୋଇ ନାହିଁ । ଗଡ଼ଜାତରେ ସବାରସି ଜରିବ ନାହିଁ । ଉଠବାଟି ଜରିବ ଏତେ ଦୀର୍ଘକାଳ ! ରାଜା ଓ ଦେବାନ ସାହେବ ସ୍ୱୟଂ ଜରିବ କାର୍ଯ୍ୟ ଠିକେ ଠିକେ ପରଖାଲ କରିବେ, ଜମାବନ୍ଦି ଅନେକନେ ଦେଖିବେ । କର୍ମଚାରୀମାନଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର ବ୍ୟବହାରସଙ୍ଗତ ନୁହେ । ମୋଗଲବନ୍ଦରେ ବନୋବସ୍ତ ସାହେବମାନେ ଯମପରି ଜଗି ଥାଉଁ ଥାଉଁ ନିମ୍ନକର୍ମଚାରୀମାନଙ୍କର ଅନେକ ପଞ୍ଚୁ ନାହାରି ପଡ଼େ । ଗଡ଼ଜାତ କଥା ତ ଅକଳ, ଅଥଳ !

ଏ ରାଜ୍ୟର ଲୋକମାନଙ୍କର ଭବିଷ୍ୟତ ଭାବନା ନ ଥିବାର କାରଣ—ବନଜାତ ଫଳ, ମୂଳ, ଫୁଲ, ଶାଗ, ମଞ୍ଜି ପ୍ରଭୃତି ଖୋଳ ଖୋଳ ଖାଇ ଦିନ କଟାଇ ଦିଅନ୍ତି । କୃଷିର ଅବସ୍ଥା ଏପରି ମନ୍ଦ ଯେ ସୋନପୁରର ଚାଉଳ ଏଠାର ଅଭାବ ପୂର୍ଣ୍ଣ କରେ । ଅଦୃଷ୍ଟ ବୋଲିବାକୁ ହେବ ।

ରାମପୁର ଦୁର୍ଗର ପୂର୍ବଦିଗରେ ରତ୍ନନା ନିର୍ଝରଣୀ । ଏହି ନିର୍ଝରଣୀର ଶଯ୍ୟା ପ୍ରସ୍ତରମୟ—ସ୍ରୋତ ସ୍ଥାନେ ସ୍ଥାନେ ସଭରଭର ଓ ସ୍ଥାନେ ସ୍ଥାନେ ବିଷମ ଗହ୍ୱର ପ୍ରସ୍ତୁତ କରିଅଛି । ଅରଣ୍ୟ ଜନ୍ତୁ ଗଭୀର ନିସ୍ତବ୍ଧ ହେଲେହେଁ ମୟୂର-କୋକିଳାଦିବିହଙ୍ଗକଣ୍ଠଧ୍ୱନି ବନ ବିଘୂର୍ଣ୍ଣିତ କରି ନିସ୍ତବ୍ଧତା ଭାଙ୍ଗି ଦେଉଥିଲା । ମୃଗମାନେ ଏ ବନରେ ଶୃଙ୍ଗ ଖସାଇ ପକାଇ ଥିଲେ । ମୃଗକୁଳର ପୁରୁଣା ଶୃଙ୍ଗ ଖସେ ଜାଣି ନ ଥିଲୁଁ । ଦୁର୍ଗଠାରୁ ଏ ବନ ୩ କୋଶ । ରାଜା ସାହେବ ଏଠାରେ ବନଭୋଜନର ଆୟୋଜନ କରିଥିଲେ । ରତ୍ନନାରେ ମାଛ ମାରିବା ଲାଗି ଟେଗା-ମାନେ ପହୁଞ୍ଚିଥିଲେ । ରତ୍ନନାଧାରା କ୍ରମେ ବହି ମହାନଦୀରେ ପଡ଼ିଅଛି । ମହାନଦୀର ମାଛମାନେ ସ୍ରୋତରେ ଆସି ରତ୍ନନାର ଗଭୀର ଗହ୍ୱରରେ ରହି ଅଛନ୍ତି । ସେ ଗହ୍ୱରମାନ ଏମନ୍ତ କୁଟିଳ ଯେ ଜାଲ ପକାଇ ମାଛ ଧରିବାର ସୁବିଧା ନାହିଁ । ମନୁଷ୍ୟ-ବୁଦ୍ଧି ଉଦ୍ଭିଦ-ରାଜ୍ୟରୁ ଅମୃତ ଓ ବିଷ ପାଉଅଛି । ମାଛବିଷ ଗୋଟାଏ ଉଦ୍ଭିଦର ମୂଳ ଓ ଜେଲ ଟେଗମାନେ ଆଣିଥିଲେ । ଘଣ୍ଟାଏ ଜଳରେ ପକାଇ ରଖନ୍ତେ କ୍ଷୁଦ୍ରଠାରୁ ବୃହତ୍ ମାଛ ପର୍ଯ୍ୟନ୍ତ ଭେଁଇ ସ୍ଥଳରେ ପଡ଼ିଲେ । ବନରେ ଅଗ୍ନି ଲାଗିଲେ ପଶୁ ପକ୍ଷୀ ଯେମନ୍ତ ଆତ୍ମରକ୍ଷାରେ ଆକୁଳ ହୋଇ ପଦାକୁ ବାହାରି ଯାନ୍ତି, ମାଛମାନେ ବିଷଜ୍ୱାଳାରେ ଜଳକୁ ସ୍ଥଳ ସ୍ଥଳକୁ ଜଳ ମଣି ଝଇ ଧନ୍ଦିଲା ପରି ଭେଁଇ ଶୁଖିଲା ବାଲି ଉପରେ ଗଣି ଗଣି ହୋଇ ପଡ଼ି ମଲେ । ଅର୍ଦ୍ଧଲା ନାମକ ବିଷଲତା ମତ୍ସ୍ୟବଂଶ କ୍ଷଣକେ ଧ୍ୱଂସ କରେ । ଭେକ, କଚ୍ଛପ, କୁମ୍ଭୀର, ଦୁଣ୍ଡୁଭ, ଏମାନେ ନିରାପଦ । ଏଣୁ ପ୍ରମାଣ ମତ୍ସ୍ୟ ଅନ୍ୟ ଜଳଜନ୍ତୁମାନଙ୍କଠାରୁ ଭିନ୍ନ । ବନରେ ପତ୍ରକୁଟୀର, ପତ୍ରଶଯ୍ୟା, ପତ୍ରପାତ୍ର, କହିଲା ମାତ୍ରକେ ରଚନା ହେଲା । ଦେଖୁଁ ଦେଖୁଁ ବନଟି ରାଜଭବନ ହୋଇଉଠିଲା । "ଯାହାଁ ରାମ୍, ୱାହାଁ ଅଯୋଧ୍ୟା" ରାଜାସାହେବଙ୍କ ସୌଜନ୍ୟ ଓ ସରଳ ବ୍ୟବହାର ଏ ସ୍ମୃତି ଆଜୀବନ ବିସ୍ମୃତ ହେବ ନାହିଁ ।

ରେଢ଼ାଖୋଲ ବିଷୟରେ ଆଉ ଦୁଇ ଏକ କଥା କହିବାର ପ୍ରୟୋଜନ ହୋଇଅଛି । ଏ ରାଜ୍ୟରେ ଦେବାନ ସର୍ବେସର୍ବା—ରାଜା ଯେମନ୍ତ ଦେବାନଙ୍କର ତାବେଦାର । ସମସ୍ତ ଅମଲା ପଟ-ସ୍ୱରକ ପଦାଜନ ଦେବାନଙ୍କର ଅନୁଗତ । ଏପରି ହେବାର କାରଣ ଅଛି । ବୃଦ୍ଧ ରାଜା ଅତି ବୃଦ୍ଧ ହୋଇ ଥିବାରୁ ପୋଲିଟିକେଲ ଏଜେଣ୍ଟଙ୍କୁ ୧୦।୧୨ ବର୍ଷ ପୂର୍ବେ ଆପଣା ରାଜଧାନୀକୁ ଡକାଇ ଆଣି ରାଜ୍ୟ ଓ ପୌତ୍ର ଯୁବରାଜଙ୍କୁ ତାଙ୍କ ହସ୍ତରେ

ଅର୍ପଣ କରିଥିଲେ । ପୋଲିଟିକେଲ ଏଜେଣ୍ଟ ପୂର୍ଣ୍ଣାସ୍ୱୀ ସାହେବଙ୍କୁ ପୂର୍ଣ୍ଣ କ୍ଷମତା ଦେଇ ଉକ୍ତ ରାଜ୍ୟଚାଳନରେ ନିଯୁକ୍ତ କରିଥିଲେ । ସେହି ଦିନରୁ ପୂର୍ଣ୍ଣାସ୍ୱୀ ସାହେବ କ୍ଷମତାନୁସାରେ ଏରାଜ୍ୟ ଶାସନ କରୁଅଛନ୍ତି । ସୁତରାଂ ପ୍ରଜାପରିଜନାଦି ସମସ୍ତେ ତାଙ୍କର ବଶୀଭୂତ । ଶ୍ରୀମାନ୍ ଗୌରଚନ୍ଦ୍ରଦେବ କେନାମଣି ଅତିବ ସହିଷ୍ଣୁ । ମହାତ୍ମା ଉଡ଼ିବର୍ଣ୍ଣ ଚିଫ୍ କମିଶନର ଥିବା ବେଳେ ଗୌରଚନ୍ଦ୍ର ଦେବଙ୍କର ସୁଗୁଣ ଦେଖି ତାହାଙ୍କୁ ଷ୍ଟେଟ୍ ଜଜ ଓ ପ୍ରଥମଶ୍ରେଣୀ ମାଜିଷ୍ଟ୍ରେଟ୍ କ୍ଷମତା ଦେଇଥିଲେ । ସେ ସେହି ଦିନଠାରୁ ନିଜ କ୍ଷମତାରେ ବିଚାରକ ହୋଇ ରାଜକାର୍ଯ୍ୟ ଚଳାଇ ଆସୁଥିଲେ । ବୃଦ୍ଧରାଜାଙ୍କର ପରଲୋକଗମନରେ ଗଦିନସୀନ ହୋଇ ରାଜା ହେଲେ । ଦେବାନଙ୍କର ପୂର୍ବ କ୍ଷମତା ଶିଥିଳ ହୋଇ ନାହିଁ । ରାଜାସାହେବ ସ୍ୱକ୍ଷମତାର ଅଭାବ ଅନୁଭବ କରି ମନେ ମନେ ଯେମନ୍ତ କିଞ୍ଚିତ ଅସନ୍ତୁଷ୍ଟ । ଚମ୍ପୁଲଙ୍କାଟା ରାଜାମାନଙ୍କର ଅଧିକ । ଆମ୍ଭର ଆଶଙ୍କା ଏହି ଚମ୍ପୂଲଙ୍କା ଯେମନ୍ତ ଭୂପାଳଙ୍କରେ ପରିଣତ ନ ହୁଏ । ପୂର୍ଣ୍ଣାସ୍ୱାସାହେବ ବିଜ୍ଞ ଓ ଦୂରଦର୍ଶୀ । ଗବର୍ଣ୍ଣମେଣ୍ଟ ଚାକିରୀରୁ ଫିଉଡେଟରୀ ଷ୍ଟେଟକୁ ଆସି ତାଙ୍କର ସୌଭାଗ୍ୟ ସୀମାରେ ପହୁଞ୍ଚି ଯାଇଅଛନ୍ତି । ତାଙ୍କଠାରୁ ଶୁଣିଲୁଁ ସେ ପେନ୍‌ସନ୍ ସକାଶେ ଆବେଦନ କରିଅଛନ୍ତି । ମାନେ ମାନେ ସେ ବିଦାୟ ଗ୍ରହଣ କଲେ ରାଜାସାହେବ ମନ ଭରି କ୍ଷମତା ଚାଳନା କରି ପାରିବେ ।

ରାଜାସାହେବ ଇଚ୍ଛା କରନ୍ତୁ ଦେବାନ ସାହେବଙ୍କଠାରେ ପୂର୍ଣ୍ଣ ଭାର ଅର୍ପଣ ନ କରି କିଛିକାଳ ନାନା ସ୍ଥାନ ନାନା ରାଜ୍ୟ ବିଚାରପଥ ଦେଖି ବହୁଦର୍ଶିତା ଲାଭ କରିବେ । ଦର୍ଶନଜ୍ଞାନ ତାଙ୍କ ମନ ଓ ହୃଦୟକୁ ପ୍ରଶସ୍ତ କରିବ । ଆମ୍ଭେମାନେ ଏକାନ୍ତ ଆଶା କରୁଁ ରାଜା ଯେପରି ଶାନ୍ତସ୍ୱଭାବ, ଭବିଷ୍ୟତରେ ପ୍ରଜାମାନଙ୍କର ଶାନ୍ତିରକ୍ଷାରେ ସେ ପାରଦର୍ଶୀ ହେବେ ।

ଶ୍ରୀ ଭୋଳାନାଥ ସାମନ୍ତରାୟ ।

---

## ମହାଜନର ପୁଅ ବୋହୂ ।

---

ଏକ ରାଇଜରେ ଜଣେ ମହାଜନ ଥାଏ, ତାର ଅଚଳାଚଳ ସମ୍ପତ୍ତି ! ମହାଜନର ଗୋଟିଏ ପୁଅ, ଗୋଟିଏ ବୋହୂ । ମହାଜନ ଅସି ବୁଢ଼ା ହେଲା । ମହାଜନ ଘରଣୀ ଦିନେ ମହାଜନକୁ କହିଲା, 'ଆମ୍ଭେତ ଅସି ବୁଢ଼ା ବୁଢ଼ୀ ହେଲୁଁ । ଦିନାକେତେ ଗଲେ ଘର ଦୁଆର ଖଣ୍ଡ ଚାଲି ଯିବ । କିଛି ସାଙ୍ଗରେ ନେଇ ଯିବା ନାହିଁ । ରାଇଜରେ ଗୋଟିଏ କିଛି କୀର୍ତ୍ତି ରଖିଲେଇଁ ନାହିଁ ।' ପାଠରେ ପରା କହିଛି, ଯାହା ଖାଇଯିବ ପେଟକୁ, ଯାହା ଦେଇଯିବ ବାଟକୁ, ଯାହା ରଖିଯିବ ଖମ୍ଭକୁ । ପଛକୁ ବୁଢ଼ା ବୁଢ଼ୀ ଦିହେଁ ବିଚାରବିଚାର ହୋଇ ସ୍ଥିର କଲେ—ଗୋଟିଏ ବଡ଼ ପୋଖରୀ ଖୋଳାଇବେ । କେତେ ଲୋକ 'ଶୋଷୀଙ୍କ ନିଶ୍ୱାସ ରହିବ । ଅଡ଼ପାର୍ଶ୍ୱ ଦ'କୋଶ ଅନ୍ତାନ୍ତରେ ଗୋଟିଏ ପୋଖରୀ ଖୋଳା ଗଲା । କେତେ ମୂଲିଆ ଲାଗିଲେ । ଖୋଳୁ ଖୋଳୁ ବାର ବରଷ ବିତିଗଲା, ପୋଖରୀରେ ପାଣି ପଡ଼ିବାକୁ ନାହିଁ । ମହାଜନ ବଡ଼ ବ୍ୟସ୍ତ ଥାଏ । ଏତେ ପଇସା ଖରଚ ହେଲା, ଯେବେ ପୋଖରୀରେ ପାଣି ନ ପଡ଼ିଲା, ତେବେ ପୋଖରୀ ଖୋଳେଇ କେତେ ନ ଖୋଳେଇ କେତେ । ଇମିତ ବଡ଼ ଭାବନାରେ ଥାଏ । ଦିନକରେ ଜଣେ ବାବାଜୀ ଆସି ସେଠେଇଁ ପହଞ୍ଚିଲେ । ମାହାଜନ ଦିନାକେତେ ବାବାଜୀଙ୍କି ବହୁତ ଅନୁସରଣ କଲା । ପଛକୁ ବାବାଜୀଙ୍କର

ଦସ୍ତି ହେଲା । ବାବାଜୀ କହିଲେ 'ତୋ ବୋହୂକୁ ଏଠେଇଁ ବଳ ଦେଲେ ପୋଖରୀରେ ପାଣି ପଡ଼ିବ ।' ମହାଜନ ବିରସ ମନରୁ ଘରକୁ ଯାଇ ଚିନ୍ତାରେ ପଡ଼ିଲା । ଏଣେ ମାଇଲେ ଗୋହତ୍ୟା, ତେଣେ ମାଇଲେ ବ୍ରହ୍ମହତ୍ୟା । ଏତେ ପଇସା ଖର୍ଚ୍ଚ କରି ପୋଖରୀ ଖୋଳିଛି, ସେଥିରେ ପାଣି ନ ପଡ଼ିଲେ ଭାରି ଦୋଷ । ଏଣେ ଘର ଗୋଟିଏ ପୁଅକୁ ଗୋଟିଏ ବୋହୂ, ବୋହୂ ପିଲାଟି କେତେ ଗେଲବସରରେ ବଢ଼ିଛି, ବୋହୂକୁ ବଳ ଦବାକୁ କିପରି ମନ ବଳବ ? ପଛକୁ ଅତି କଷ୍ଟରେ ବାବାଜୀଙ୍କ କଥାରେ ମଙ୍ଗିଲା । ତହିଁ ଆର ଦିନ ବୋହୂକୁ ବଳ ଦବାର ଠିକ୍ ହେଲା । ବୋହୂ ପାଖର ପୋଇଲିଏ ଏକଥା ଶୁଣିଲେ । ଯାଇ ବୋହୂକୁ ଏ ସମାଚାର କହିଲେ । ବୋହୂ ମନେ ମନେ ବିଚାରିଲା, ଯାହା ମୋ କରମରେ ଥିବ ହେବ, ସେଥିପାଇଁ ଭାବନା କରିବି କି ? ଦିନେ ତ ମରିବି, କାଲି ମଲେ କେତେ କୀର୍ତ୍ତି ରହିବ । ସେ ହେତୁ ଆଜ ସାତ ତିଅଣ ଅଠ ଭଜା କରି ଶାଶୁ ଶଶୁରଙ୍କୁ ଗେରସ୍ତଙ୍କୁ ମନବୋଧ କରି ଖାଇବାକୁ ଦେବି । ଚଞ୍ଚଳ ଚଞ୍ଚଳ ଅଡ଼ିଆ ପକ ସାରି ହାଣ୍ଡିଶାଳକୁ ଗଲା । ସାତ ତିଅଣ, ଅଠ ଭଜା, ଖିରି, ପିଠା, କେତେ ପଦାର୍ଥ ତିଆରି କଲା । ଶଶୁର ବୁଢ଼ାକୁ ମନବୋଧ କରି ଖାଇବାକୁ ଦେଲା । ପଛକୁ ମହାଜନ ପୁଅ ଆସିଲା ଖାଇବାକୁ । ଖାଇବାକୁ ଦେଲାବେଳେ ଗେରସ୍ତକୁ କହିଲା 'ସେତିକି ଆଜି ଦିନକ ମୋହାତରେ ଖାଇ ଥାଅ । କାଲିକି ମୁଁ ନୂଆ ପୋଖରୀରେ ବଳ ପଡ଼ିବି ।' ମହାଜନପୁଅ ଏକଥା ଶୁଣି ଅବା କାବା ହୋଇଗଲା । କିଛି ବୁଦ୍ଧି ସୁରିଲା ନାହିଁ । ରାତି ହେଲାରୁ ଘୋଡ଼ା ଶାଳରୁ ପକ୍ଷିରାଜ ଘୋଡ଼ାଟିଏ ବାଛି ଆପେ ଚଢ଼ି ହଜାର ବାଜି ଟଙ୍କା ତୋଡ଼ାର ସଙ୍ଗରେ ନେଇ ଭାରିଯା ପାଖରେ ପହଞ୍ଚିଲା । ତାକୁ ଆଗରେ ବସାଇ ଘୋଡ଼ା ମାରି ଦେଲା । ଯାଉଁ ଯାଉଁ ଉଦିଉଦିଆ ହ'ପହର ବେଳେ ଗୋଟିଏ ବନସ୍ତରେ ପହଞ୍ଚିଲେ । ମହାଜନପୁଅ ଗୋଟିଏ ଗଛଡ଼ାଳ ଉପରେ ଚଢ଼ି ଦେଖେ ଯେ ଗୋଟିଏ ବଡ଼ ଗାଁ । ସେ ଗାଁରେ ବଡ଼ ବଡ଼ ନଅର, ବଗିଚା, କୋଠା ଅଛି; ହେଲେ କଣ ମଣିଷ ଜନ ପ୍ରାଣୀ କେହି ଦିଶୁ ନାହିଁ । ଭାରିଯାକୁ ସାଙ୍ଗରେ ନେଇ ଯାଇ ସେ ଗାଁରେ ପହଞ୍ଚିଲା । ବାଛି ବାଛି ଗୋଟିଏ ଦିବ୍ୟ ସୁନ୍ଦର ଘରରେ ତାକୁ ରଖି ବଣକୁ ବୁଲିବାକୁ ବାହାରିଛି, ଆଗରେ ଆସି ଏକ ଅସୁର ଭେଟିଲା । ଏ ଯେଉଁ ଘରେ ଭାରିଯାକୁ ଛାଡ଼ିଛି, ସେ ଘର ସେ ଅସୁରର । ସେ ଅସୁର ଗାଁ ଯାକ ଲୋକଙ୍କୁ ଖାଇ ପଦା କରି ସାରିଲାଣି । ତା ଡରରେ ସେ ଗାଁ ମଶାଣିଠାରୁ ବଳିଗଲାଣି, ଏମାନଙ୍କୁ ଦେଖି ଖାଇବାକୁ ଆଁ କରି ଦଉଡ଼ି ଆସିଲା ବେଳକୁ ମହାଜନ ପୁଅ ହାତଅର ବାହାର କରି ସେ ଅସୁରକୁ ହାଣିବାକୁ ବସିଲା । ସେଠେଇଁ ଏତେ ହାତହତିଆର ଅଛି ବୋଲି ସେ ଅସୁରକୁ ଜଣା ନ ଥିଲା । ମହାଜନ ପୁଅକୁ ସିନା ଖାଇବାକୁ ଆସି ବାହାରିଥିଲା । ଏବେ ଆପଣା ଜୀବନ ଉପରେ ପଡ଼ିଲା । କିଛି ଉପାୟ ନ ଦେଖି ମହାଜନ ପୁଅ ଆଗରେ ଲମ୍ବ ହୋଇ ଗୋଡ଼ ତଳେ ପଡ଼ିଲା, କହିଲା "ମହାତ୍ମା, ମୁଁ ଜାଣିଲିଣି ମୋ ବଧ ତୋର ହାତରେ, ଏବେ ମୁଁ ନେହୁରା ହଉଛି, ମତେ ମାସ ଦିନ ରଖ, ସାତ ଦିନ ବାଦ ହାଣିବୁ । ମୁଁ ତୋର କିଛି କରିବି ନାହିଁ । ମତେ ଗୋଟିଏ ଘରେ କୋଲପ ପକାଇ ରଖ । ସାତ ଦିନ ବାଦ ଯାହା ଇଚ୍ଛା ତାହା କରିବୁ ।" ମହାଜନ ପୁଅ ଅଳଅଳ ଘର ପିଲା, ବଡ଼ ଦୟାବନ୍ତ । ଅସୁରକୁ ନେଇ ଗୋଟିଏ ଘରେ କୋଲପ ପକାଇ ରଖି ବନସ୍ତକୁ ବାହାରିଲା । ଭାରିଯା ଜିମା ସବୁ ଘର କୁଞ୍ଚି ଯାକ ଦେଇଗଲା । ଅସୁର କଥା କହିଲା ନାହିଁ, ଯେଉଁ ଘରେ ଅସୁର ଥାଏ, ସେ ଘର ଦେଖାଇ କହିଲା, ସବୁ ଘର ଫିଟେଇବୁ, ଏ ଘର ଫିଟେଇବୁ ନାହିଁ । ସେ କହି ମହାଜନପୁଅ ବଣକୁ ଗଲା । ଏ ତ ମାଇପି ଜାତ, ମନେ ମନେ ବିଚାରିଲା,

ସବୁ ଘର ଫିଟେଇବାକୁ କହିଲା ଏ ଘରଟିକି କାହିଁ ମନା କଲ, କଣ୍ଟ ଭଲ ଜିନିଷ ରଖିଛ, ମତେ ଲୁଚଉଛ । ପୂର୍ବ ବଗ୍‌ର ସେ ଘର ଫିଟେଇ ଦେଖେ ତ ଅସୁର ବସିଛି । ଅସୁର ଏ ବୋହୂକୁ ଦେଖି କହିଲା, ମୋର ଏତେ ଘଇଜ, ଏତେ ସମ୍ପତ୍ତି, ଏତେ କଥା ଭୋଗ କରିବାକୁ ମୁଁ ଏକା । ମହାଜନ ବୋହୂ ଏକଥା ଶୁଣି ଅସୁର ସଙ୍ଗେ ଘର ଦୁଆର କରି ରହିବ ବୋଲି କହିଲା । ଅସୁର କହିଲା ତୋ ଗେରସ୍ତକୁ ନ ମାଇଲେ ଆମେ ତ ସୁଖରେ ରହି ପାରିବା ନାହିଁ । ସେ ତ ଆମର କାଳ ହବ । ମହାଜନ ବୋହୂ କହିଲା, ତେବେ ମତେ ଉପାୟ ବତେଇ ଦେ, ମୁଁ ସେହି ଉପାୟରେ ଗେରସ୍ତକୁ ମାରିବି, ତୁ ମୁଁ ଦୁହେଁ ସୁଖରେ ଏଠେଇଁ ଘର କରି ରହିବା । ଅସୁର କହିଲା, 'ତୁ ଗୋଟିଏ କଥାକର । ମହାଜନ ପୁଅ ବଣ୍ଡରୁ ଫେରି ଆସିଲା ବେଳକୁ ତୁ ଆଖିରେ କପୁର ଗୁଣ୍ଡା ପକେଇ ଆଖିକି ମକଚି ମକଚି ରଙ୍ଗ କରି ବସିଥା, ଗେରସ୍ତ ଆସି ପଚାରିଲେ କହିବୁ, ମୋ ଆଖି ଧରୁଛି । ସେ ଯେତେ ଉପାୟ କରିବ, କହିବୁ ଯେ କେଉଁଥିରେ ଭଲ ହେଲା ନାହିଁ । ପଛକୁ କହିବୁ ଯେ ମୁଁ ପିଲା ହେଇଥିଲି, ଥରେ ଆଖି ଧରିଥିଲା । ଯେତେ ଅଡ଼ୁ ଯେତେ ଉପାୟ କଲେ ଭଲ ହେଲା ନାହିଁ । ପଛକୁ ମୋ ବାପା ବାଘଦୁଧ ଆଣି ମୋ ଆଖିରେ ପକେଇ ଦେଲାରୁ ଆଖି ଭଲ ହେଲା । ତୁମେ ମତେ ବାଘଦୁଧ ଆଣି ଦେଲେ ମୁଁ ଆଖିରେ ପକେଇବି । ବାଘଦୁଧ ଆଣିଲା ବେଳକୁ ତାକୁ ବାଘ ଖାଇବ । ତୁ ମୁଁ ଆନନ୍ଦରେ ରହିବା ।' ସଞ୍ଜକୁ ସଞ୍ଜ ମହାଜନପୁଅ କଣ୍ଟ ଖାଇବା ସାମଗ୍ରୀ ଆଣି ଘରେ ପହଞ୍ଚିଲା ବେଳକୁ ଭାରିଯା ଆଖି ଦୁହିଁକି ରଙ୍ଗ କରି ବସି ବାପକୁ ବାହୁନି କାନ୍ଦୁଛି, ମୋ ବାପା ଥିଲେ ବୋଲି ସିନା ମୋ ଆଖି ଭଲ ହୋଇଥିଲା, ଆଉ କିଏ ମୋ ଆଖି ଭଲ କରିବ ?

ମହାଜନପୁଅ ଆସି ଏକଥା ଶୁଣି ପଚାରିଲାରୁ ପହିଲେ ସେ କାହିଁ କଲା । କହିଲା 'ତୁମେ ସୁକୁମାର ମଣିଷ, ତୁମକୁ ମୁଁ କିମିତି ବାଘ ମୁହଁକୁ ଛାଡ଼ି ଦେବି ? ମୋ ଆଖି ପଛକେ ଫୁଟି ଯାଉ, ତୁମେ ବସି ଥା ।' ଏକଥା ଶୁଣି ମହାଜନପୁଅ ଅଧିକ ଉଚ୍ଛନ ହୋଇ ପଚାରିଲାରୁ ଅସୁର ଯିମିତି ଶିଖେଇ ଦେଇଥିଲା, ବୋହୂ ସିମିତି କହିଲା । ଟୋକା ବିଚାରିଲା, ଯାହାପାଇଁ ଏତେ ଦୁଃଖ ସହି ବନସ୍ତକୁ ଆସିଛି, ତାପାଇଁ ପ୍ରାଣ ପଛକେ ଯିବ, ମୁଁ ଯାଇଁ ବାଘ ଦୁଧ ଆଣିବି । ଅଖିଆ ଅପିଆ ଫେର ଘୋଡ଼ାରେ ଚଢ଼ିଲା । ନିୟମ କରି ଗଲା, ବାଘଦୁଧ ନ ଆଣିଲେ ମୁଁ ପାଣି ଛୁଇଁବି ନାହିଁ । ଘୋଡ଼ାଟା ବଡ଼ ଚତୁର । ତା ଶିର ଉଡ଼ି ଚଢ଼ୁ ଦେଉଥାଏ । ମଝିରେ ମଝିରେ କେତେ ସାଲୁଲେଇ ହେଲା, ଗେରସ୍ତକୁ ମନା କଲା । ମହାଜନପୁଅ ତା କଥା ନ ମାନି ଏକ ଧ୍ୟାନରେ ଗଲା । ମହାଜନପୁଅ ଗଲାରୁ ଏ ମହାଜନବୋହୂ କୋଳପ ଫିଟେଇ ଅସୁର ସଙ୍ଗେ ହସଖେଳରେ ମାତିଲା । ଏଣେ ମହାଜନପୁଅ ଯାଉଁ ଯାଉଁ ଦେଖିଲା, ଗୋଟିଏ ବଣରେ ଗଛର ପାଖରେ ନଈଁ ଲାଗିଛି । ସେଠିରେ ଯୋଡ଼ିଏ ବାଘଛୁଆ ପଡ଼ି ଛଟର ପଟର ହଉଛନ୍ତି । ମହାଜନପୁଅ ସେହିକ୍ଷଣି ଘୋଡ଼ା ମାରି ଦେଇ ନଈଁକୁ ଡେଇଁ ପଡ଼ିଲା, ବାଘପିଲା ଦିହିଙ୍କି ନେଇ ଫେର ଆସି ପଦାରେ ପହଞ୍ଚିଲା । ବାଘଛୁଆଙ୍କୁ ପାଣିରେ ଧୂଆ ଧୋଇ କରି ଟୋପିଏ ଲେଖାଏଁ ପାଣି ତାଙ୍କ ମୁହଁରେ ଦେଲା । ଖଣ୍ଡେ ଦୂର ବାଟ ଆସି ଘୋଡ଼ାରୁ ଓହ୍ଲେଇଲା । ଘୋଡ଼ାକୁ ଗୋଟିଏ ଗଛମୂଳେ ବାନ୍ଧିଲା । ଘୋଡ଼ା ଉପରୁ ଗଦିଯାମା ଫିଟେଇ ଆଉ ଗୋଟିଏ ଗଛମୂଳେ ପାରିଦେଲା, ସେଥିରେ ବାଘଛୁଆ ଦିଓଟିଙ୍କୁ ବସାଇ ଆପେ ଶୋଇପଡ଼ିଲା । ଏହି ସମୟରେ ବାଘ ବାଘୁଣୀ ଆସି ପିଲାଙ୍କୁ ବନସ୍ତଯାକ ଖୋଜି ଖୋଜି ଏଠେଇ ପହଞ୍ଚିଲେ । ବିଚାରିଲେ ଆମ ପିଲାଙ୍କୁ ଏ ମଣିଷ ଚୋରେଇ ନେଇ ପଳାଉଛି । ଏହା ପାଖ

ମହାଜନ ପୁଅକୁ ଖାଇବାକୁ ବସିଛନ୍ତି, ଏହି ସମୟରେ ବାଘଟି ଆସି ମହାଜନ ପୁଅର ସବୁ ଉପକାରଯାକ ବାପମାଙ୍କୁ କହିଲେ । ବାପ ମା ଶୁଣି ବଡ଼ ଖୁସି ହେଲେ, ମହାଜନପୁଅ ଉଠିଲା ବେଳକୁ ବାଘ ବାଘୁଣୀ ତାପାଇଁ ଉତ୍ତମ ସୁନ୍ଦର ଖାଇବା ସାମଗ୍ରୀ, ଘୋଡ଼ାପାଇଁ ଦାନା, ଘାସ, ଆଣି ମହାଜନ ପୁଅର ଗୋଡ଼ତଳେ ପଡ଼ିଲେ । ମହାଜନପୁଅ କହିଲା ମୁଁ ଯେଉଁ କଥା ପାଇଁ ଆସିଛି ତା ନ କଲେ ମୁଁ ପାଣି ଛୁଇଁବି ନାହିଁ । ବାଘୁଣୀ ଏକଥା ଶୁଣି ଠିଆ ହେଲା, କହିଲା ଯେତେ ଇଚ୍ଛା ସେତେ ଦୁଧ ଦୁହିଁ ନେ । ମହାଜନପୁଅ ଆପଣା ଥାଳରେ ଥାଳେ ଦୁଧ ଦୁହିଁ ରଖିଲା । ଆପେ ପେଟେ ଜଳଖିଆ କଲା, ଘୋଡାକୁ ଘାସ ଦାନା ଖୋଇ ବାହାରିଲା । ବାହାରିଲା ବେଳକୁ ବାଘ ବାଘୁଣୀ ବହୁତ ନେହୁରା ହେଲେ, କହିଲେ -ଆମ ବଡ଼ ପିଲାଟିକି ତୁମ ସଙ୍ଗରେ ନେଇ ଯା, ତୁମେ ପିଲା ଦୁହିଙ୍କ ପ୍ରାଣ ରଖିଛ, ସେଥିରୁ ତୁମେ ଗୋଟିଏ ସଙ୍ଗରେ ରଖି ଥା, ଦିନେ ହେଲେ ଏ ବହୁତ କାମରେ ଆସିବ । ମହାଜନପୁଅ ବାଘ ପିଲାଟିକି ସଙ୍ଗରେ ନେଇ ଘରକୁ ଫେରିଲା, ଭାରିଯାକୁ ନେଇ ବାଘଦୁଧ ଦେଲା । ବହୁତ ଦିନରୁ ଫେରି ଆସିଥିଲା, ଯିମିତି ଘରେ ପହଞ୍ଚିଲା ସିମିତି ଶୋଇ ପଡ଼ିଲା । ମହାଜନପୁଅ ଶୋଇଲାରୁ ମହାଜନ ବୋହୂ ଯାଇ ଅସୁରକୁ ବାଘଦୁଧ ଆଣିବା କଥା କହିଲା । ଅସୁର କହିଲା 'ତୁ କହ ମୋ ଆଖି ବାଘ ଦୁଧରେ ଭଲ ହେଲା ନାହିଁ, ବଳିଲାଣି, ଏମିତି ଛଟା ଗାଲ ବାଢ଼େଇ କନ୍ଦୁଥା ହୋ । ସେ ପଚାରିଲାରୁ କହିବୁ ଯେ ପିଲା ଦିନେ ମତେ ବାପା କହିଥିଲେ ଯେବେ ଫେର ତୋ ଆଖି ଧରିବ, ଫେର ବାଘଦୁଧ ପକେଇଲେ ଭଲ ନ ହେବ, ତେବେ ଦେବକୁଣ୍ଡରୁ ଅମୃତପାଣି ଟୋପାଏ ଆଣି ପକେଇ ଦେଲେ ଭଲ ହେବ, ନଇଲେ ଆଖି ଫୁଟି ଯିବ । ଦେବକୁଣ୍ଡ ସ୍ୱର୍ଗରେ, ସେଥିରେ ସବୁ ବେଳେ ଦେବତାମାନେ ଜଗୁଆଳ । ସେଠେଇଁକି ମଣିଷ ଗଲେ ଆଉ ବର୍ତ୍ତି ଆସିବ ନାହିଁ । ଦେବତାମାନେ ହାଣି ପକେଇବେ । ତୋ ଗେରସ୍ତ ସେଠେଇଁକି ଗଲେ ଆଉ ଫେରିବ ନାହିଁ । ଆମେ ଦିହେଁ ଆନନ୍ଦରେ ଘର ଦୁଆର କରି ନିଶ୍ଚିନ୍ତରେ ରହିବା ।' ଦିନେ ଦୁଦିନ ଗଲାରୁ ମହାଜନ ବୋହୂ ଫେର ଛଟା ଗାଲ ଅସୁର ଆଗରୁ ଯିମିତି ଶିଖେଇ ଥିଲା, ସିମିତି କଲା । ମହାଜନପୁଅ ଅମୃତପାଣି ଆଣିବ ବୋଲି ଘରୁ ବାହାରିଲା । ଯାଉଁ ଯାଉଁ ବାଟରେ ଦିପହର ହେଲା । ଗୋଟିଏ ଗଛମୂଳେ ଘୋଡ଼ାକୁ ବାନ୍ଧି ଦେଇ ଖରା ବର୍ଷା ପାଳିବ ବୋଲି ସେ ଗଛମୂଳେ ରହିଲା । ଆଗରେ ଏକ ଗଛ, ସେ ଗଛରେ ଯୋଡ଼ାଏ ଗଣ୍ଡଭୈରବ ଚଢ଼େଇଙ୍କର ବସା; ସେ ଚଢ଼େଇ ଅସି ମରିବାକୁ ହେଲେଣି, ତାଙ୍କର ଗୋଟିଏ ସୁଦ୍ଧା ଛୁଆ ରହିଲା ନାହିଁ । ଚଢ଼େଇ ଦିହେଁ ଅଧାର ଖୋଜିବାକୁ ଯାନ୍ତି, ଅସି ଦେଖନ୍ତି ଯେ ଛୁଆ ନାହାନ୍ତି । ସେଦିନ ମହାଜନପୁଅ ପହଞ୍ଚିଲା ବେଳକୁ ଚଢ଼େଇ ଦିହେଁ ଯାଇଛନ୍ତି ଅଧାର ଖୋଜି । ମହାଜନପୁଅ ଦେଖିଲା ଯେ ଗଛମୂଳରୁ ଗୋଟିଏ ଅହିରାଜ ବାହାରି ସେ ଗଛଉପରକୁ ଚଢ଼ିଲା । ଗଛ ଉପରେ ଚଢ଼େଇ ଛୁଆ ଯୋଡ଼ିକ ସାପକୁ ଦେଖି କେଁ କାଁ ହେଲେ । ମହାଜନପୁଅ ସେ ସାପକୁ ଦେଖେଇ କାଣ୍ଡ ବିନ୍ଧ ଦେଲା । ସାପ ଗଛରୁ ଖସି ପଡ଼ିଲା । ଖୋଲରୁ ଖଣ୍ଡା ବାହାର କରି ସାପକୁ ତିନି ଗର କରି କାଟି ଆପଣା ଢାଲ ତଳେ ଘୋଡ଼େଇ ଶୋଇ ପଡ଼ିଲା । ଶୋଇଛି ଏତିକି ବେଳେ ବୁଢ଼ା ବୁଢ଼ୀ ଚଢ଼େଇ ଅସି ପହଞ୍ଚିଲେ । ବାପମାଙ୍କୁ ଦେଖି ଚଢ଼େଇ ଛୁଆ କହିଲେ 'ଆମକୁ କଣ ଅଧାର ଦେବ ? ଯେ ଗଛମୂଳେ ଶୋଇଛି, ସେ ଆମ ଜୀବନ ରଖିଛି; ତା କଥା ଆଗେ ବୁଝ ।' ବାପମାଙ୍କୁ ଛୁଆ ଦୁହେଁ ସବୁ କଥା କହିଲାରୁ ଚଢ଼େଇ ଦିହେଁ ସେହିକ୍ଷଣି ଉଡ଼ି ଗଲେ । ଯାଇ ମହାଜନପୁଅ ପାଇଁ ଖାଇବା ସାମଗ୍ରୀ ଘୋଡ଼ା ପାଇଁ ଦାନା ଘାସ ଆଣି ପହଞ୍ଚିଲେ ।

ମହାଜନପୁଅ ଉଠିଲା ବେଳକୁ ଲମ୍ଫଝମ୍ଫ ହୋଇ ତା ଗୋଡ଼ ତଳେ ପଡ଼ିଲେ । କଲଶିଅ କଢ଼ିବାକୁ ତା ସଙ୍ଗରେ ଅତି ଯିଗର କଲେ । ମହାଜନପୁଅ କହିଲା, 'ମୁଁ ଯେଉଁ ଦେବକୁଣ୍ଡରୁ ଅମୃତ ପାଣି ପାଇଁ ଅସିଛୁ, ତା ହାତରେ ନ ଥଇଲେ ପାଣି ଛୁଇଁବ ନାହିଁ ।' ବୁଢ଼ା ଚଢ଼େଇ କହିଲା । 'ସେଠଉଁ ଅମୃତ ପାଣି ଅଣିବା ସହଜ କଥା ନୁହେଁ । ତୁମେ ଯେତେବେଳେ ଆମ ପିଲାଙ୍କୁ ବଞ୍ଚାଇଛ, ଆମକୁ ଯାହା କହିବ, ତାହା କରିବୁଁ । ତୁମେ ଖାଇପିଇ ସୁସ୍ଥରେ ରହ । ଆଗେ ମୁଁ ଯାଉଛି । ଯେବେ ତିନ ଦିନ ଭିତରେ ନ ଫେରିବି ତେବେ ଜାଣିବ ଯେ ମତେ ଦେବତାଙ୍କ ଜଗୁଆଳ ମାରିପକାଇଲେ । ତିନ ଦିନ ବାଦ ଅମୃତପାଣି ପାଇଁ ବୁଢ଼ୀ ଯିବ । ସେ ଫେରି ନ ଆସିଲେ ପିଲାଏ ଯିବେ । ତେଣିକି ତୁମ କପାଳ ।' ଏହା କହି ବୁଢ଼ା ଚଢ଼େଇ ଏଣେ ଘାଲରେ ସାତ ହଜାର ହାତ ଦଉଡ଼ି ଲଗାଇ ନେଇଗଲା । ରାତିଦିନ ଉଡ଼ି ଉଡ଼ି ଯାଇ ସେ ଦେବକୁଣ୍ଡ ପାଖରେ ପହଞ୍ଚିଲା । ପାଖରେ ଉଡ଼ିଲେ ଦେବତା ଯାକ ହାଣି ପକାଇବେ ବୋଲି ସାତ ହଜାର ହାତ ଉପରେ ଉଡ଼ୁଥାଏ । ଦିପହର ବେଳେ ଜଗୁଆଳମାନେ ଖାଇ ସାରି ଟିକିଏ ନିଦ୍ରେଇ ପଡ଼ିଲେ । ସେତିକି ବେଳେ ବୁଢ଼ା ଚଢ଼େଇ ଧୀର କରି ସେ ଦଉଡ଼ିକି ଧରି ଘାଲଟିକି କୁଣ୍ଡ ଭିତରକୁ ଛାଡ଼ିଦେଲା । ଘାଲରେ ପାଣି ଭର୍ତ୍ତି ହେଲାରୁ ଦଉଡ଼ିକି ଓଟାରି ଘାଲକୁ ଟେକି ନେଲା । ଅମୃତପାଣି ଘାଲକୁ ଥଣ୍ଟରେ ଧରି ଉଡ଼ି ଉଡ଼ି ଆସି ମହାଜନପୁଅ ପାଖରେ ପହଞ୍ଚିଲା । ମହାଜନପୁଅ ଘରକୁ ବାହାରିଲା ବେଳକୁ ଚଢ଼େଇ ହଳେ ବଡ଼ ଯିଗର କରି କହିଲେ 'ତୁମେ ଆମ ଦ ପିଲାଙ୍କୁ ବଞ୍ଚାଇଛ, ଗୋଟିଏ ଛୁଆକୁ ତୁମେ ସାଙ୍ଗରେ ରଖ । ଦିନେ ହେଲେ ଏ ତୁମ କାମରେ ଆସିବ ।' ଆଗରୁ ତ ମହାଜନ ପୁଅ ସାଙ୍ଗରେ ବାଘ ଛୁଆଟି ଥାଏ । ମହାଜନପୁଅ ବାଘ ଛୁଆକୁ ଆଉ ଏ ଗଣ୍ଡଭୈରବ ଚଢ଼େଇ ଛୁଆକୁ ଦିହିଙ୍କି ସାଙ୍ଗରେ ନେଇ ଘରକୁ ଫେରିଲା । ବାଟରେ ଏକ ରଜାର ରାଇଜ ପଡ଼ିଲା । ସେ ରଜାର ଝିଅ ଅମର ବର ପାଇବ ବୋଲି ମହା-ଦେବଙ୍କ ପାଖରେ ବାର ବରଷ ତପସ୍ୟା କରି ଥାଏ, ମହାଦେବ ତାକୁ ବର ଦେଇଥାନ୍ତି ତୁ ନିଶ୍ଚେ ଅମର ବରଟିଏ ପାଇବୁ । ହେଲେ ଜଣ ଦେବ ପହିଲେ ଗୋଟିଏ ମଲା ମଣିଷ ମିଳିବ । ସେ ମଣିଷକୁ ତୁ ଜୀବଦାନ ଦବୁ । ସେ ବଞ୍ଚିଲାରୁ ତୁମେ ଦହେଁ ଅମର ହୋଇ ଘରଦ୍ୱାର କରିବ । ରଜାଝିଅକୁ କାକଚରିତ୍ର ଜଣା । ମହାଜନପୁଅ ଆସି ତା ରାଇଜରେ ପହଞ୍ଚିଲା ବେଳକୁ ରଜାଝିଅ ଜାଣିଲା ଯେ ଆଜି ତାକୁ ବର ମିଳିବ । ରଜାଝିଅ ଗାଧୋଇ ଧାଧୋଇ କୋଠାଉପରେ ଖଟ ପୋଉଁଛି, ଏତିକି ବେଳେ ଏଣେ ଦୂରରେ ବରଗଛ ପାଖରେ ମହାଜନପୁଅ, ବାଘଛୁଆ, ଗଣ୍ଡଭୈରବ ଚଢ଼େଇଛୁଆ ଯାଇ ପହଞ୍ଚିଲେ । ରଜାଝିଅ ମହା-ଜନପୁଅକୁ ଦେଖି କାକଚରିତ୍ର ଗଣି ଜାଣି ପାରିଲାଣି ଯେ ଏ ତାର ବର ହବ । ଏହା ଭାରିଯା ଅସୁର ସଙ୍ଗେ ମିଳି ଏହାକୁ ଆଜି ହାଣି ପକାଇବ । ପୋଇଲିଙ୍କ ପଠେଇ ମହାଜନପୁଅକୁ ଡାକି ଆଣିଲା, କହିଲା, ମତେ ବାହା ହୁଅ । ମହାଜନପୁଅ ନାହିଁ କଲାରୁ ମହାଜନପୁଅକୁ ଅଣି ଆପଣା ନଅର ଭିତରେ ଖୁବ ଚର୍ଚ୍ଚା କରି ରଖେଇଲା । ମହାଜନପୁଅ ଖାଇପିଇ ଶୋଇଲା । ରଜାଝିଅ କାକଚରିତ୍ରରେ ସବୁ ଜାଣି ପାରେ । ମହାଜନ ବୋହୂ ଛଟାଘାଲ ଏତେ ଫିକର କରୁଛି ଏକଥା ରଜାଝିଅ ସବୁ ଜାଣି ପାରିଲା । ସେ ଘାଲରୁ ଅମୃତ ପାଣିତକ ଅଲଗା ରଖିଲା । ଘାଲରେ ଆଉ ତାଳେ ପାଣି ଭର୍ତ୍ତି କରି ଥୋଇ ଦେଲା । ଏଣେ ଏ ବାଘ ଛୁଆକୁ ଚଢ଼େଇ ଛୁଆକୁ ଶିଖେଇଲା, କହିଲା ଆଜି ରାତିରେ ଯେତେବେଳେ ଏହା ଭାରିଯା ଏହାକୁ ହାଣି ପିଙ୍ଗି ଦବ, ସେତିକି ବେଳେ ତୁମେ ଦହେଁ ଜଣେ ଏହା ମୁଣ୍ଡ ଜଣେ ଏହା ଗଣ୍ଡି ଖାଇବା ବାହାନାରେ ଅଧୁଣ କର ମୋ ।

ପାଖକୁ ଆଣିଲେ ମୁଁ ଯାକୁ ବଞ୍ଚାଇ ଦେବି । ମହାଜନପୁଅ ଏକଥା ଜାଣି ନ ଥାଏ । ନଦୀରୁ ଉଠି ମହାଜନପୁଅ ଆପଣା ମନକୁ ଜାଣିବାକୁ ଅମୃତପାଣି ଢାଳକ ଘେନି ଯାଇ ଘରେ ପହଞ୍ଚିଲା । ପହଞ୍ଚି ପାଣି ଢାଳକ ଭାରିଯାକୁ ଦେଲା । ମହାଜନ ପୁଅ ଏ ଅମୃତ ପାଣି ଆଣିବାକୁ ଗଲାରୁ ଅସୁର ଆଉ ମହାଜନବୋହୂ ଆଗରୁ ବିଚାରିକରି ହୋଇ ଥାନ୍ତି, ଯେବେ ମହାଜନପୁଅ ଏଥର ଜୀଇ ନ ମରି ଫେରି ଆସିବ, ତେବେ ଫେରି ଆସିଲା ଦିନ ରାତିରେ ତାକୁ ହାଣି ପକାଇବା । ନୋହିଲେ ଏ କେବେଁ ମରିବ ନାହିଁ । ସତକୁ ସତ ମହାଜନ ପୁଅ ଆସି ପହଞ୍ଚିଲା । କେତେ ଦିନ ହେଲା ଯମା ଆଖିପଲକ ପଡି ନାହିଁ । ନିଦରେ ମହାଜନ ପୁଅ ଘାରି ହଉଛି । ଭାରିଯା କହିଲା ମୋ ଆଖିରେ ଏ ପାଣି ପକାଇଲାରୁ ଆଖି ଭଲ ହୋଇଗଲା । ବହୁତ ଦିନ ହେଲା ତୁମ ସାଙ୍ଗରେ ପଶା ଖେଳି ନାହିଁ, ଆଜି ଆସ ପଶା ଖେଳିବା । ମହାଜନପୁଅ ମଙ୍ଗିଲା, ମୁହିଁ ଭାଙ୍ଗି ପାରିଲା ନାହିଁ । ଅତି କଷ୍ଟରେ ଭାରିଯା ସଙ୍ଗେ ପଶା ଖେଳିଲା । ପଶା ଖେଳି ଖେଳି ଅତି ବାଧି ଗଲାରୁ ଯେଉଁଠେଇଁ ବସି ଥିଲା ସେଇଠେଇଁ ଢଳି ପଡ଼ିଲା । ସେତିକି ବେଳେ ମହାଜନବୋହୂ ଖଣ୍ଡା ଆଣି ତାକୁ ଦି ଗଡ଼ କରି କାଟି ଦେଲା । ହାଣିସାରି କୋଲପ ପିଟେଇ ଦେଲା । ଅସୁର ସେ ଘର ଭିତରୁ ବାହାରିଲା । ମୁଣ୍ଡ ଗଣ୍ଡିକ କେଉଁଠି ପକାଇବେ ଏକଥା ବିଚାରୁଛନ୍ତି—ସେତିକି ବେଳେ ବାଘଛୁଆ ଚଢ଼େଇଛୁଆ କହିଲେ, 'ଏ ମଲା, ଆଛା ହେଲା ଆମକୁ ବନସ୍ତରୁ ଧରି ଆଣି କେତେ ଦହଗଞ୍ଜ କରୁଥିଲା । ଏବେ ଆମକୁ ଛାଡ଼ିଦିଅ, ଆମେ ଆମ ଘରକୁ ଯାଉଁ । ଆମର ଯା ଉପରେ ବଡ଼ ଅଦରକ୍ତି ଅଛି, ଯା ମୁଣ୍ଡ ଗଣ୍ଡିକ ଆମକୁ ଦିଅ, ଆମେ ବାଟରେ ଖାଇ ମନ ଉର-ମାନ ମେଣ୍ଟେଇବୁ । ଖାଇସାରି ଯେଝା ବାଟରେ ଯେଝା ଘରକୁ ଯିବୁଁ ।' ଅସୁରକୁ ମହାଜନ ବୋହୂକୁ ଭଣ୍ଡେଇ ମୁଣ୍ଡ ଗଣ୍ଡିକ ନେଇ ଅଖଣ୍ଡ କରି ବାଘଛୁଆ ଚଢ଼େଇଛୁଆ ଦହେଁଯାକ ଯାଇ ସେ ରଜାଝିଅ ପାଖରେ ପହଞ୍ଚିଲେ । ରଜାଝିଅ ଯାଙ୍କୁ ଚାହିଁ ଅନିଦ୍ରା ହୋଇ ବସିଛି । ଏ ଦିହେଁ ଯାଇ ପହଞ୍ଚିଲେ ସିମିତି ଗୋଟିଏ ପଲଙ୍କରେ ଦିବ୍ୟସୁମନର ଶେଯ ପକାଇ ମୁଣ୍ଡ ଗଣ୍ଡିକ ଯୋଡ଼ି ଶୁଆଇ ଦେଲା । ଆଗରୁ ଯେଉଁ ଅମୃତ ପାଣି ଲୁଚେଇ ରଖିଥିଲା, ହର ପାର୍ବତୀଙ୍କ ନାଁ ଧରି ସେ ମଢ଼ା ଉପରେ ଛିଞ୍ଚି ଦେଲାରୁ ମହାଜନପୁଅ ଠେଇଁ ଉଠିଲା । ଆଖି ମଳିଲା, କହିଲା ଆହା କେତେ ଗୁଡ଼ାଏ ଶୋଇ ପଡ଼ିଲି । ଯା କହି ଆପଣା ଭାରିଯାକୁ ଖୋଜିଲା । ରଜାଝିଅ ତାକୁ ସବୁ କଥା ବୁଝେଇ କହି ଦେଲା । ପହିଲେ ମହାଜନପୁଅ ସେ କଥା ପ୍ରତେ ଗଲା ନାହିଁ । ରଜାଝିଅ କଥା ବଢ଼ିବାକୁ ସକାଳୁଁ ଯାଇ ଦେଖିଲା ବେଳକୁ ଆପଣା ଭାରିଯା ଅସୁର ସାଙ୍ଗରେ ଖୁସ ଦୁଃଖସୁଖ ହଉଛି । ଖୋଳରୁ ଖଣ୍ଡା ବାହାର କରି ଅସୁରକୁ ହାଣି ପକାଇଲା । ଗୋଟିଏ ଖଣିଗାଡ ଖୋଳି ଭାରିଯାକୁ ଜଳକଣ୍ଟା ଉପରେ କଣ୍ଟା କରି ପୋତି ପକାଇଲା । ଫେରି ଆସି ରଜାଝିଅକୁ ବିଭା ହେଲା । ଦହେଁଯାକ ଆନନ୍ଦରେ ଘର ଦୁଆର କଲେ । ମୁଁ ଗଲାରୁ କଥା କହିଲେ ନାହିଁ ।

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ।

## ଧର୍ମବିଜ୍ଞାନ । (୬)

ଅମ୍ଭେମାନେ ପୂର୍ବେ କହିଅଛୁଁ ମାନବଚିନ୍ତା ଏକ ସ୍ଥାନରେ ବସି ରହେ ନାହିଁ । ପ୍ରାଚୀନ କାଳର ଋଷିଗଣ ଯେଉଁ ସ୍ଥାନରେ କେବଳ ଏକମାତ୍ର ଆତ୍ମା ଦେଖୁଥିଲେ, ବର୍ତ୍ତମାନ ପଣ୍ଡିତଗଣ ସେ ସ୍ଥାନରେ ଜଡ଼ ଓ ଜଡ଼ୀୟ ଶକ୍ତିମାନ ଭିନ୍ନ ଆଉ କିଛି ଦେଖି ପାରନ୍ତି । ପ୍ରାଚୀନ ଋଷିଗଣ ଜଡ଼ର ଅନ୍ତର୍ଗଣ ଓ ବହିର୍ଗଣ ମଧ୍ୟରେ ସୁଦ୍ଧା ଆତ୍ମା ଦେଖୁଥିଲେ, ଆଧୁନିକ ପଣ୍ଡିତଗଣ ଆଧ୍ୟାତ୍ମିକ ବ୍ୟାପାରରେ ମଧ୍ୟ ଜଡ଼ଶକ୍ତି ଦେଖୁଅଛନ୍ତି । ଚିନ୍ତାସ୍ରୋତର କି ଅଦ୍ଭୁତ ପରିବର୍ତ୍ତନ ! କିନ୍ତୁ ଏହି ପରିବର୍ତ୍ତନରେ ମଧ୍ୟ ଆବର୍ତ୍ତନ ଆସିଅଛି । ଜଡ଼ବାଦ ଓ ଆତ୍ମବାଦର ସାମଞ୍ଜସ୍ୟ ସମ୍ପାଦନର ଚେଷ୍ଟା ହେଉଅଛି । ମାନବଚିନ୍ତା ବର୍ତ୍ତମାନ ଏହି ସମ୍ମିଳନ-ଭୂମି ଅଭିମୁଖେ ଧାବିତ । ଏହି ସମ୍ମିଳନ-ଭୂମିହିଁ ବ୍ରହ୍ମ । କିନ୍ତୁ ଏହାଙ୍କ ସ୍ୱରୂପ ଓ ଜ୍ଞାନ ସମ୍ବନ୍ଧରେ ବିଶେଷ ମତଭେଦ ରହିଅଛି । ଅଜ୍ଞେୟତାବାଦ ଓ ବ୍ରହ୍ମବାଦର ପ୍ରଭେଦ ଏହାଙ୍କ ସତ୍ତା ଓ ସ୍ୱରୂପ ନିର୍ଦ୍ଦେଶ ବ୍ୟାପାର ଯେନ ସଙ୍ଘଟିତ ହୋଇଅଛି । ଯେଉଁମାନେ କହନ୍ତି ତାହାଙ୍କ ସ୍ୱରୂପ ଜ୍ଞେୟ, ସେମାନେ ବ୍ରହ୍ମବାଦୀ । ଆଉ ଯେଉଁମାନେ କହନ୍ତି—ଅଜ୍ଞେୟ, ସେମାନେ ଅଜ୍ଞେୟତାବାଦୀ । ଏହି ଶେଷୋକ୍ତମାନଙ୍କ ମଧ୍ୟରେ ପୁଣି ମତଭେଦ ଦୃଷ୍ଟ ହୁଏ । କେହି କେହି କହନ୍ତି, କେବଳ ମାତ୍ର ତାହାଙ୍କର ସତ୍ତା ଜ୍ଞେୟ; ସ୍ୱରୂପ ଅଜ୍ଞେୟ । କେହି କହନ୍ତି, ତାହାଙ୍କର ସତ୍ତା ମଧ୍ୟ ଆମ୍ଭମାନଙ୍କର ପ୍ରତ୍ୟକ୍ଷ ଜ୍ଞାନର ଗୋଚର ନୁହେ । ଆମ୍ଭମାନଙ୍କ ଜ୍ଞାନ ନିକଟରେ ତାହାଙ୍କର ସତ୍ତା ଶୂନ୍ୟମାତ୍ର ।

ଅମ୍ଭେମାନେ ବର୍ତ୍ତମାନ ଏମାନଙ୍କ ଯୁକ୍ତିପ୍ରଣାଳୀ ଅନୁସରଣ କରି ଦେଖିବୁଁ, ଏହା ମଧ୍ୟରେ କିଛି ସତ୍ୟ ଅଛି କି ନାହିଁ । ଏମାନଙ୍କର ଭ୍ରାନ୍ତି ନିରସନ- [illegible] କର୍ତ୍ତବ୍ୟ ପଥ ପ୍ରଦର୍ଶନ

କିନ୍ତୁ ଅଗ୍ରସର ହେବା ପୂର୍ବରୁ ପ୍ରଶ୍ନ ଉପସ୍ଥିତ,—ତୁମ୍ଭେ ଯେ ଅଗ୍ରସର ହୋଇ ପାର, ବ୍ରହ୍ମତତ୍ତ୍ୱ ଆଲୋଚନା କରିବାର ଶକ୍ତି ଯେ ତୁମ୍ଭର ଅଛି, ତାହାର ପ୍ରମାଣ କିଣ ? ତାହା ପ୍ରମାଣ ନ କରି ତୁମ୍ଭେ ଯଦି ଆଲୋଚନାରେ ପ୍ରବୃତ୍ତ ହୁଅ, ତୁମ୍ଭର ଅଧିକାର ନିରୂପଣ ନ କରି ତୁମ୍ଭେ ଯଦି କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୁଅ, ତେବେ ତାହା ଯେ ସମ୍ପୂର୍ଣ୍ଣରୂପେ ଅନଧିକାରଚର୍ଚ୍ଚା ହେବ ନାହିଁ, ତାହା କିଏ କହିଲା ? ବ୍ରହ୍ମଙ୍କ ସ୍ୱରୂପ ଜଣାଯାଏ କି ନାହିଁ, ତାହା ନିର୍ଣ୍ଣୟ କରିବା ପୂର୍ବରୁ ମାନବଜ୍ଞାନ କେତେ ଦୂର ଯିବାକୁ ସମର୍ଥ, ତାହାର ଅଧିକାର କେତେଦୂର ପର୍ଯ୍ୟନ୍ତ ବିସ୍ତୃତ, ତାହା ନିର୍ଦ୍ଧାରଣ କର । ଆଗେ ଦେଖାଅ, ବ୍ରହ୍ମତତ୍ତ୍ୱ ମାନବଜ୍ଞାନର ଅତୀତ ବିଷୟ ନୁହେ, ତତ୍ପରେ ବ୍ରହ୍ମବିଷୟକ କୌଣସି ସ୍ଥିର ମୀମାଂସାରେ ଉପନୀତ ହେବାର ପ୍ରୟାସ କରିବ । ନତୁବା ସବୁ ଚେଷ୍ଟା, ସବୁ ପରିଶ୍ରମ ଭସ୍ମରେ ଘୃତାହୁତି ତୁଲ୍ୟ ବିଫଳ ହୋଇ ଯିବ ।

ହଠାତ୍ ପ୍ରଶ୍ନଟି ଶୁଣିଲେ ଟିକିଏ ଇତସ୍ତତଃ ହେବାକୁ ପଡ଼େ । ମନେହୁଏ, ପ୍ରଶ୍ନଟିର କିଛି ସାରବତ୍ତା ଅଛି । ମନେ ହୁଏ, ବ୍ରହ୍ମତତ୍ତ୍ୱ ଆଲୋଚନାର ପଥରେ ଗୋଟିଏ ପ୍ରକାଣ୍ଡ ବିଘ୍ନ ମସ୍ତକୋତ୍ତୋଳନ କରି ଦଣ୍ଡାୟମାନ ରହିଅଛି । ମନେ ହୁଏ ଏହାକୁ ଅତିକ୍ରମ ନ କଲେ ଆଉ ଅଗ୍ରସର ହେବାର ଉପାୟ ନାହିଁ ଏବଂ ଏହାକୁ ଅତିକ୍ରମ କରିବା ସହଜସାଧ୍ୟବ୍ୟାପାର ନୁହେ । କିନ୍ତୁ ଟିକିଏ ପ୍ରଣିଧାନ କରି ଦେଖିଲେ ଦେଖାଯିବ ଯେ ବିଷୟଟି ଯେତେ ଗୁରୁତର ବୋଲି ମନେ ହେଉଥିଲା, ବସ୍ତୁତଃ ତାହା ନୁହେ ।

ଏହିପରି ପ୍ରଶ୍ନର ଉତ୍ତରରେ ଅମ୍ଭମାନଙ୍କର [illegible] ମାନବଜ୍ଞାନର [illegible]

କେତେଦୂର ପର୍ଯ୍ୟନ୍ତ ବିସ୍ତୃତ, ତାହା କିଏ ନିର୍ଣ୍ଣୟ କରିବ ? ଯାହାର ଶକ୍ତି ଓ ଅଧିକାରକୁ ଖର୍ବ କରିବାକୁ ଚେଷ୍ଟିତ, ସେହି ମାନବଜ୍ଞାନ କି ନିର୍ଣ୍ଣୟ-କର୍ତ୍ତା ନୁହେଁ ? ଯଦି କୌଣସି ଆପ୍ତ ବାକ୍ୟର ଦୋହାଇ ଦେଇ କହ ଯେ ବ୍ରହ୍ମତତ୍ତ୍ୱ ନିର୍ଣ୍ଣୟରେ ଜ୍ଞାନ ଅକ୍ଷମ, ତଥାପି ଜ୍ଞାନହିଁ ଏହି ଦାବିର ବଲାବଲ ପରୀକ୍ଷା କରିବ; ଆଉ ଯଦି ଅକ୍ଷମତାର କୌଣସି କାରଣ ପ୍ରଦାନ କର, ତେବେ ଜ୍ଞାନହିଁ ସେହି କାରଣସମୂହର ସତ୍ୟାସତ୍ୟ ବିଚାର କରିବ । ସୁତରାଂ ପ୍ରଶ୍ନ ଉଠିବ, ଏହି ଶେଷୋକ୍ତ ବିଚାରରେ ମଧ୍ୟ ଜ୍ଞାନର ଅଧିକାର ଅଛି କି ନାହିଁ ? ତାହା ହେଲେ ଏହି ମୀମାଂସାରେ ଉପସ୍ଥିତ ହେଲୁଁ ଯେ, ଯଦି ଜ୍ଞାନର ଶକ୍ତି ଓ ଅଧିକାର ନିର୍ଣ୍ଣୟ କରିବାକୁ ଇଚ୍ଛା କର, ତେବେ ତାହାର ଯେ ଆତ୍ମଶକ୍ତି ପରିମାଣ କରିବାର ସାମର୍ଥ୍ୟ ଅଛି, ତାହା ସ୍ୱୀକାର କର । ତେବେ ସବୁ ବିବାଦ ଭଞ୍ଜନ ହେଲା । ଜ୍ଞାନକୁ ତାହାର ବିଷୟରୁ ବିଚ୍ଛିନ୍ନ କରି କେବେହେଁ ବିଚାର କରିବା ସମ୍ଭବପର ନୁହେ । ଯଦି ଜ୍ଞାନକୁ ତାହାର ଆତ୍ମଶକ୍ତି ନିରୂପଣର କ୍ଷମତା ପ୍ରଦାନ କର, ତେବେ ଏହା ମଧ୍ୟ ସ୍ୱୀକାର କରିବାକୁ ହେବ ଯେ, ସେ ସ୍ୱୀୟ ବିଷୟସମୂହର ବିଚାରରେ—ସେ ଯେ କୌଣସି ବିଷୟର ଖବର ରଖେ, ତତ୍ସମୁଦାୟର ଆଲୋଚନାରେ ସମର୍ଥ । କାରଣ, ସେ ବିଷୟ ବିଚାର ନ କରି ଆତ୍ମବିଚାରରେ ଅସମର୍ଥ । ଯଦି ତାହାକୁ କୌଣସି ଗୋଟିଏ ବିଶେଷ ବିଷୟର ବିଚାରରୁ ବଞ୍ଚିତ କରିବାକୁ ଇଚ୍ଛା କର, ତେବେ ସେହି ବିଷୟର ବିଚାର ପରେ ତାହା କରି ପାର । (ଯଦି ତାହା କରିବା ଅସଙ୍ଗତି-ଦୋଷ-ଦୁଷ୍ଟ ନ ହୁଏ ।) ସୁତରାଂ ଜ୍ଞାନର ଶକ୍ତି ନିରୂପଣ କରିବାକୁ ଗଲେ ଜ୍ଞାନର ବିଷୟସମୂହର ବିଚାରରେ ସର୍ବାଗ୍ରେ ପ୍ରବୃତ୍ତ ହେବାକୁ ହେବ । ଅତଏବ ବ୍ରହ୍ମତତ୍ତ୍ୱ ଜ୍ଞାନର ଅଗୋଚର ବିଷୟ ହୋଇ [illegible] ବିଗର୍ହ୍ୟ ।—"ଅଥ ନୁ ମୀମାଂସ୍ୟମେବତେ ।" (କେନ ଶ୍ରୁତି)

ବ୍ରହ୍ମତତ୍ତ୍ୱ ଆଲୋଚନା କରି ଯେଉଁମାନେ ନିର୍ଦ୍ଧାରଣ କରିଅଛନ୍ତି ଯେ ମାନବ-ପକ୍ଷରେ ବ୍ରହ୍ମଜ୍ଞାନ ସମ୍ଭବ ନୁହେ, ସେମାନଙ୍କ ଯୁକ୍ତିପ୍ରଣାଳୀ ସାଧାରଣତଃ ଏହି:—ମାନବମନର ଗଠନ, ଏପରି ଯେ ଏହାକୁ କିଛି ଜାଣିବାକୁ ହେଲେ ଏହା ଆପଣାର ଜ୍ଞାନର ବିଷୟକୁ ସୀମାବଦ୍ଧ ଓ ଅନ୍ୟାନ୍ୟ ବସ୍ତୁ ସଙ୍ଗେ ସମ୍ବଦ୍ଧ ବୋଲି ଜାଣିବ । ଏହା ପକ୍ଷରେ ଚିନ୍ତା କରିବା ଓ ଚିନ୍ତାର ବିଷୟକୁ ସୀମାବଦ୍ଧ କରିବା ଏକ କଥା । ଯେହେତୁ ଗୋଟିଏ ବିଷୟକୁ ଜାଣିବାକୁ ହେଲେ ତାହାକୁ ଅନ୍ୟ ବିଷୟସମୂହରୁ ପୃଥକ୍ କରି ଜାଣିବାକୁ ହେବ । ସୁତରାଂ ମାନବମନ ଯାହା ଜାଣେ, ଯେ ସକଳ ବିଷୟ ମାନବଜ୍ଞାନ ନିକଟରେ ଉପନୀତ ହୁଏ, ତତ୍ସମୁଦାୟ ପରସ୍ପରର ସମ୍ବନ୍ଧରେ ସୀମାବିଶିଷ୍ଟ ହୋଇଯାଏ, ସମ୍ବନ୍ଧବିଶିଷ୍ଟ ହୋଇ ପଡ଼େ । ଆଉ କୌଣସି ସମ୍ବନ୍ଧ ନ ଥିଲେହେଁ ଜ୍ଞାତା ଓ ଜ୍ଞେୟର ସମ୍ବନ୍ଧ ନିଶ୍ଚୟ ଥିବ ଏ ସମ୍ବନ୍ଧକୁ ପରିହାର କରିବାର ଯେତେବେଳେ ଉପାୟ ନାହିଁ, ତେତେବେଳେ ଜ୍ଞାନର ବିଷୟ ପକ୍ଷରେ ସସୀମ ଓ ସମ୍ବଦ୍ଧ ହେବା ଅନିବାର୍ଯ୍ୟ । ବସ୍ତୁ ଗୁଣଯୁକ୍ତ ନ ହେଲେ ଯେତେବେଳେ ତାହାକୁ ଅନ୍ୟ ବସ୍ତୁଠାରୁ ପୃଥକ୍ କରାଯାଇ ପାରେ ନାହିଁ, ତେତେବେଳେ ମାନବଜ୍ଞାନର ବିଷୟ ସଗୁଣ ବ୍ୟତୀତ ଆଉ କିଛି ହୋଇ ନ ପାରେ । ପକ୍ଷୀ ଯେଉଁ ଆକାଶରେ ଉଡ଼େ ସେହି ଆକାଶକୁ ଅତିକ୍ରମ କରି ବିଚରଣ କରିବା ତାହା ପକ୍ଷରେ ଯେପରି ଅସମ୍ଭବ, ସେ ଯେତେ ଊର୍ଦ୍ଧ୍ୱକୁ ଉଠୁ ପଛକେ, ସେ ଯେପରି ଏହି ଆକାଶର ସୀମା ମଧ୍ୟରେ ଆବଦ୍ଧ ରହିବାକୁ ବାଧ୍ୟ, ସେହିପରି ମାନବମନର ବିଷୟ ଯେତେ ସୂକ୍ଷ୍ମ ହେଉ, ସେ ଆପଣା ଜ୍ଞାନର ସୀମା-ରେଖାକୁ କେବେହେଁ

ଜ୍ଞାନରେଖାକୁ ଅତିକ୍ରମ କରି କେହିହେଁ ଜାଣି ପାରେ ନାହିଁ । ଜ୍ଞାନର ପ୍ରକ୍ରିୟା ଭିତରେ ଏହି ବନ୍ଧନ ରହିଅଛି, ଜ୍ଞାନ ସଙ୍ଗେ ଏହି ବନ୍ଧନ ଅବିଚ୍ଛିନ୍ନଭାବରେ ଜଡ଼ିତ । ମନୁଷ୍ୟ ପକ୍ଷରେ ତାହାର ଛାୟାକୁ ଲଙ୍ଘନ କରିବା ଯେପରି ଅସମ୍ଭବ, ଜ୍ଞାନ ପକ୍ଷରେ ଏହି ବଦ୍ଧ ଭାବକୁ ପରିହାର କରିବା ମଧ୍ୟ ସେହିପରି ଅସମ୍ଭବ । ସୁତରାଂ ମାନବ ପକ୍ଷରେ ସାନ୍ତ, ସସୀମ ଓ ସଗୁଣର ଜ୍ଞାନ ବ୍ୟତୀତ ଅନ୍ୟ କେଉଁହିଁ ସମ୍ଭବ ନୁହେଁ । ଅନନ୍ତ, ଅସୀମ ଓ ନିର୍ଗୁଣ ମାନବଜ୍ଞାନ ନିକଟରେ ଶୂନ୍ୟ ମାତ୍ର—ବସ୍ତୁର ଅଭାବ-ପ୍ରକାଶକ ଶବ୍ଦ ମାତ୍ର । ଏମାନେ କୌଣସି ବସ୍ତୁର ଜ୍ଞାନ ପ୍ରକାଶ କରନ୍ତି ନାହିଁ, କେବଳ ଅଭାବ ଜ୍ଞାପନ କରନ୍ତି ମାତ୍ର । ଏହି ଯେ 'ସସୀମ' ଓ 'ଅସୀମ' ପ୍ରଭୃତି ବିପରୀତାର୍ଥବୋଧକ ଯୁଗ୍ମ ଶବ୍ଦସକଳ ଦେଖା ଯାଏ, ସେମାନଙ୍କ ମଧ୍ୟରୁ ଗୋଟିଏ ବସ୍ତୁ, ଅନ୍ୟଟି ଅବସ୍ତୁ, ଅଭାବ ମାତ୍ର । ଜ୍ଞାନ ପକ୍ଷରେ ଅନନ୍ତ ଓ ନିର୍ଗୁଣର କୌଣସି ସତ୍ତା ନାହିଁ । ବ୍ରହ୍ମ ଯେତେବେଳେ ଅସୀମ, ଅନନ୍ତ ଓ ନିର୍ଗୁଣ, ସେତେବେଳେ ମାନବଜ୍ଞାନ ସହିତ ତାଙ୍କର କୌଣସି ସମ୍ବନ୍ଧ ଥାଇ ନ ପାରେ । ମାନବଜ୍ଞାନ କେବଳ ସଗୁଣ (Phenomenon) କୁ ଘେନି କାର୍ଯ୍ୟ କରିପାରେ, 'ନିର୍ଗୁଣ (Noumenon) ତାହାର ଜ୍ଞାନର ସୀମାର ସମ୍ପୂର୍ଣ୍ଣ ବହିର୍ଦ୍ଦେଶରେ ଅବସ୍ଥିତ । ସୁତରାଂ ବ୍ରହ୍ମଜ୍ଞାନ ମାନବ ପକ୍ଷରେ ଅସମ୍ଭବ । ତାହାର ଜ୍ଞାନର ପ୍ରକୃତି ତାହାକୁ ବ୍ରହ୍ମଜ୍ଞାନରୁ ବଞ୍ଚିତ କରୁଅଛି ।

ଆମ୍ଭେମାନେ ବର୍ତ୍ତମାନ ଦେଖିବୁଁ ଉପରୋକ୍ତ ଯୁକ୍ତିରେ କି ସାରବତ୍ତା ଅଛି । ଏହି ଯେ 'ସସୀମ' ଓ 'ଅସୀମ' ପ୍ରଭୃତି ବିପରୀତାର୍ଥବୋଧକ ଯୁଗ୍ମଶବ୍ଦ ଗୁଡ଼ିକ ମଧ୍ୟରୁ ଗୋଟିକୁ ଅବସ୍ତୁ ବୋଲି ହୋଇ ଅଛି, ତାହା ଅତ୍ୟନ୍ତ ଅଯୌକ୍ତିକ । ଗୋଟିଏ ଦୃଷ୍ଟାନ୍ତ ଗ୍ରହଣ କରାଯାଉ । 'ସମାନ' ଓ 'ଅସମାନ' ଏ ଦୁଇଟି ଏହିପରି ଯୁଗ୍ମ ଶବ୍ଦ । କିନ୍ତୁ ସେଥିପାଇଁ କିଛି ଅବସ୍ତୁ ନୁହେଁ । "ଏହି ଦୁଇଟି ସରଳରେଖା ଅସମାନ" ଏ କଥା କହିଲେ କି ଆମ୍ଭମାନଙ୍କ ମନରେ କୌଣସି ବସ୍ତୁର ଧାରଣା ନ ଥାଏ ? ରେଖା ଦୁଇଟି 'ଅସମାନ' ବୋଇଲେ ଯଦି ଏମାନଙ୍କୁ ଅବସ୍ତୁ କରି ଦିଆ ହୁଏ, ତେବେ ଏମାନଙ୍କ ପ୍ରତି ବଡ଼ ଅବିଚାର ହେବ । 'ରେଖା ଦୁଇଟି ସମାନ' କହିଲେ ସତ୍ୟଜ୍ଞାନ ଯେପରି ପ୍ରବଳ ଥାଏ, 'ଅସମାନ' କହିଲେ ସେହିପରି ଥାଏ, କିଛି ନ୍ୟୁନାଧିକ ହୁଏ ନାହିଁ । ବିଶେଷତଃ ବିପରୀତାର୍ଥବୋଧକ ଭାବ ଗୁଡ଼ିକ କେବଳ ପରସ୍ପର ସମ୍ବନ୍ଧଦ୍ୱାରା ଜଣାଯାଏ । ପରସ୍ପର ମଧ୍ୟରେ ତୁଳନା ନ କରି ଗୋଟିକୁ ଜାଣି ହୁଏ ନାହିଁ । ସୁତରାଂ ଯଦି 'ଅସୀମ' 'ନିର୍ଗୁଣ' ଆମ୍ଭମାନଙ୍କ ନିକଟରେ ଶୂନ୍ୟମାତ୍ର ହୁଏ, ତେବେ 'ସସୀମ' 'ସଗୁଣ' ମଧ୍ୟ ଶୂନ୍ୟମାତ୍ରରେ ପର୍ଯ୍ୟବସିତ ହେବ, 'ଅସୀମ'କୁ ଉଡ଼ାଇ ଦେଲେ 'ସସୀମ'କୁ ଉଡ଼ାଇ ଦେବାକୁ ଆମ୍ଭେମାନେ ବାଧ୍ୟ ହେବୁଁ । ଜ୍ଞାନମାତ୍ରକେ ଅସମ୍ଭବ ହେବ । ବର୍ତ୍ତମାନ ସ୍ପଷ୍ଟ ଦେଖା ଯାଉ ଅଛି ଯେ ଜ୍ଞାନ ନିକଟରେ 'ସସୀମ' ଓ 'ଅସୀମ' ଦୁହିଙ୍କର ଜ୍ଞାନ ଅପରିହାର୍ଯ୍ୟ । ଗୋଟିକୁ ଛାଡ଼ି ଅନ୍ୟଟି ସମ୍ଭବ ହୁଏ ନାହିଁ । ଅତଏବ ସ୍ପଷ୍ଟ ପ୍ରତୀୟମାନ ହେଲା "ଆମ୍ଭମାନଙ୍କ ଜ୍ଞାନପ୍ରକ୍ରିୟା 'ଅସୀମ' ଜ୍ଞାନକୁ ପରିହାର କରୁଅଛି," ଏହି ଯେ ଆପତ୍ତି ଉତ୍ଥାପିତ ହୋଇଅଛି, ତାହା ସମ୍ପୂର୍ଣ୍ଣ ଅମୂଳକ । ବରଂ ଏହାହିଁ ସ୍ଥିର ସିଦ୍ଧାନ୍ତ ହେଉ ଅଛି ଯେ 'ଅସୀମ'ର ଜ୍ଞାନ ବ୍ୟତୀତ ଜ୍ଞାନ ସମ୍ଭବ ନୁହେଁ । ଆମ୍ଭମାନଙ୍କର ଜ୍ଞାନର ପ୍ରକୃତି ଏହି ଯେ ସେ 'ଅସୀମ'କୁ ଜାଣିବ । ଏଠାରେ ଆଉ ଗୋଟିଏ ପ୍ରଶ୍ନ ଏଠାରୁ ଉତ୍ଥାପିତ ହୋଇପାରେ । ଆମ୍ଭମାନଙ୍କର ବ୍ୟକ୍ତିଗତ ଜ୍ଞାନ ତ ସସୀମ । ସୁତରାଂ 'ଅସୀମ' ସେ ଜ୍ଞାନର ବିଷୟ କିପରି ହୋଇ ପାରିବ? ଏ କଥାର ବିସ୍ତୃତ ଉତ୍ତର ଏ ସ୍ଥାନରେ ଅପ୍ରାସଙ୍ଗିକ ହେବ । ଏତିକିମାତ୍ର କହି ରଖୁଅଛୁଁ,

[illegible]

ଜାଣ, ତାହା କୌଣସି ସାନ୍ତ ସସୀମ ବସ୍ତୁ ନୁହେ । ଆମ୍ଭମାନଙ୍କର ଜ୍ଞାନ ସେହି ଅସୀମ ଜ୍ଞାନର ପ୍ରକାଶ, ସେହି ନିତ୍ୟ ଜ୍ଞାନବସ୍ତୁ ସ୍ୱୟଂ । ନତୁବା 'ଅସୀମ' ଆମ୍ଭମାନଙ୍କର ଜ୍ଞାନର ବିଷୟ ହୋଇ ପାରନ୍ତେ ନାହିଁ । ବ୍ରହ୍ମଜ୍ଞାନର ପଥରେ ଯେ ସକଳ କଣ୍ଟକ ଅଛି, ତାହା ବିଦୂରିତ କରି ଯେତେବେଳେ ଆମ୍ଭେମାନେ ପ୍ରକୃତପକ୍ଷେ ବ୍ରହ୍ମଜ୍ଞାନ-ରାଜ୍ୟରେ ପ୍ରବେଶ କରିବୁଁ, ସେହି ସମୟରେ ଏହି ସମସ୍ତ ପ୍ରଶ୍ନର ଯଥାଯଥ ଉତ୍ତର ଦେବାକୁ ଯଥାସାଧ୍ୟ ଚେଷ୍ଟା କରିବୁଁ । ବର୍ତ୍ତମାନ ପୁଣି ପ୍ରକୃତ ବିଷୟର ଆଲୋଚନାରେ ପ୍ରବୃତ୍ତ ହେବୁଁ ।

ଆମ୍ଭେମାନେ ଦେଖିଅଛୁଁ 'ଅସୀମ'କୁ ଛାଡ଼ି 'ସସୀମ'ର ଜ୍ଞାନ ସମ୍ଭବ ନୁହେ । 'ଅସୀମ'କୁ ଛାଡ଼ି ଦେଲେ 'ସସୀମ'କୁ ମଧ୍ୟ ଛାଡ଼ି ଦେବାକୁ ହେବ । ଜ୍ଞାନମାତ୍ରକେ ବିଲୁପ୍ତ ହେବ । ଏହି ବିପଦରୁ ଉଦ୍ଧାର ଲଭିବା ପାଇଁ ସ୍ପେନ୍‌ସର ପ୍ରଭୃତି ପଣ୍ଡିତଗଣ "ସାପ ମରୁ, ବାଡ଼ି ନ ଭାଙ୍ଗୁ" ଏହିପରି ଗୋଟିଏ ଉପାୟ ଉଦ୍ଭାବନ କରିଅଛନ୍ତି । ସ୍ପେନ୍‌ସର କହନ୍ତି, 'ଅସୀମ' ଆମ୍ଭମାନଙ୍କ ନିକଟରେ କେବଳ ଶୂନ୍ୟମାତ୍ର ହୋଇ ନ ପାରନ୍ତି, କାରଣ, ତାହାହେଲେ ଜ୍ଞାନର ମୂଳଭିତ୍ତି ଉତ୍ପାଟିତ ହେବ, ଜ୍ଞାନ ବିନଷ୍ଟ ହେବ । ତାହାଙ୍କର ଅସ୍ତିତ୍ୱ ସମ୍ବନ୍ଧରେ ଆମ୍ଭମାନଙ୍କର ସ୍ପଷ୍ଟ ଜ୍ଞାନ ଥିବା ନିତାନ୍ତ ପ୍ରୟୋଜନ । ଜଗଦତୀତ ଏକ ମହାଶକ୍ତି ବିଦ୍ୟମାନ ଅଛନ୍ତି, ଏହି ଜଗତ ତାଙ୍କର ପ୍ରକାଶ, ତାହାଙ୍କର ସତ୍ତାର ଜ୍ଞାନ ଆମ୍ଭମାନଙ୍କ ମଧ୍ୟରେ ଅତି ସ୍ଫୁଟ ଭାବରେ ବର୍ତ୍ତମାନ ରହିଅଛି । କିନ୍ତୁ ଏହି ସତ୍ତା ପର୍ଯ୍ୟନ୍ତ ଆମ୍ଭମାନଙ୍କ ଜ୍ଞାନର ଗତି । ତଦତିରିକ୍ତ ତାହାଙ୍କ ସମ୍ବନ୍ଧରେ ଆମ୍ଭେମାନେ ଆଉ କିଛି କହି ନ ପାରୁଁ । ତାହାଙ୍କ ସମ୍ବନ୍ଧରେ ଆମ୍ଭମାନଙ୍କର ସ୍ପଷ୍ଟ କୌଣସି ଧାରଣା ହୋଇ ନ ପାରେ, ତାହାଙ୍କ ସ୍ୱରୂପ ଅଜ୍ଞେୟ, କାରଣ ତାହାଙ୍କୁ ଜାଣିବାକୁ ଗଲେ ସେ ସୀମାବଦ୍ଧ ଓ ବସ୍ତୁ-ଜଗତର ଅନ୍ତର୍ଗତ ହୋଇ ପଡ଼ିବେ ।

ସ୍ପେନ୍‌ସର ଏକ ମୁଖରେ ଦୁଇ କଥା କହି ଅଛନ୍ତି । ସେ କହିଅଛନ୍ତି ମାନବଜ୍ଞାନ ସମ୍ପୂର୍ଣ୍ଣରୂପେ 'ସସୀମ'ରେ ଆବଦ୍ଧ, ଏହି ବନ୍ଧନରୁ ତାହା ମୁକ୍ତ ହୋଇ ନ ପାରେ, ପୁଣି କହିଅଛନ୍ତି ଯେ 'ଅସୀମ'ର ସତ୍ତାଜ୍ଞାନ ତାହା ମଧ୍ୟରେ ନିତ୍ୟରୂପେ ବର୍ତ୍ତମାନ । ଏହି ଦୁଇ ମତ କେବେହେଁ ମିଳିତ ହୋଇ ନ ପାରେ । ଯାହାର କୌଣସି ସାମଞ୍ଜସ୍ୟ ନାହିଁ, ତାହା ସେ ମିଳାଇବାକୁ ଗଲେ କାହିଁକି ? ସ୍ପେନ୍‌ସର ବାଧ୍ୟ ହୋଇ ଏପରି କରିଅଛନ୍ତି । ଏକଅଡ଼େ ସେ ଜ୍ଞାନର ପ୍ରକୃତ ଓ ପ୍ରକ୍ରିୟା ଆଲୋଚନା କରି ଦେଖି ପାରିଲେ 'ଅସୀମ'କୁ ଛାଡ଼ି 'ସସୀମ'ର ଜ୍ଞାନ ହୁଏ ନାହିଁ; ଯଦି ଆମ୍ଭମାନଙ୍କ ମଧ୍ୟରେ ଗୋଟିଏ 'ଅସୀମ' ବସ୍ତୁ ବର୍ତ୍ତମାନ ନ ଥାଏ, ଯାହାର ତୁଳନାରେ ଆମ୍ଭେମାନେ ସୀମାକୁ ସୀମା ବୋଲି ବୁଝିବାକୁ ସକ୍ଷମ ହେଉଅଛୁଁ, ଯେ ଆଲୋକ-ସ୍ୱରୂପ ସୀମାକୁ ସୀମା ବୋଲି ଦେଖାଇ ଦେଉଅଛି, ତେବେ 'ମାନବଜ୍ଞାନ 'ସସୀମ'ରେ ଅବଦ୍ଧ' ଏ କଥାର ଅର୍ଥ କିଛି ରହେ ନାହିଁ । ଆମ୍ଭମାନଙ୍କର ଜ୍ଞାନ ଯଦି Phenomenon ରେ ଅବଦ୍ଧ ଥାନ୍ତା, ତାହାକୁ ଅତିକ୍ରମ କରି ଊର୍ଦ୍ଧ୍ୱକୁ ଉଠି Noumenon କୁ ଜାଣିବା ଯଦି ଆଦୌ ଅସମ୍ଭବ ହୋଇଥାନ୍ତା, ତାହାହେଲେ Phenomenon କୁ Phenomenon ବୋଲି ବୁଝି ପାରନ୍ତୁ ନାହିଁ ! ତାହାହେଲେ କେବେହେଁ କହି ପାରନ୍ତୁ ନାହିଁ ଯେ ଆମ୍ଭେମାନେ Phenomenon ଛଡ଼ା ଆଉ କିଛି ଜାଣୁ ନାହିଁ । Noumenon ଆମ୍ଭମାନଙ୍କ ଜ୍ଞାନ ନିକଟରେ ପ୍ରକାଶିତ ନ ଥିଲେ ଆମ୍ଭେମାନେ Phenomenon କୁ ଜାଣି ପାରନ୍ତୁ ନାହିଁ । ସେଥି ନିମନ୍ତେ ସେ ଅସୀମ ଅନନ୍ତ ଜଗଦତୀତ ସତ୍ତାଜ୍ଞାନକୁ ଜ୍ଞାନର ଅପରିହାର୍ଯ୍ୟ ଅଙ୍ଗ ବୋଲି ଗ୍ରହଣ କରିବାକୁ ବାଧ୍ୟ ହୋଇ ଅଛନ୍ତି । ଅନ୍ୟଅଡ଼େ ପୁଣି ସେ 'ମାନବଜ୍ଞାନ କେବଳ ମାତ୍ର 'ସସୀମ'ରେ ଅବଦ୍ଧ' ଏହି ମତମଧ୍ୟ ପରିତ୍ୟାଗ କରିବାକୁ ପ୍ରସ୍ତୁତ ନୁହନ୍ତି । ସ୍ପେନ୍‌ସର ସତ୍ତାଜ୍ଞାନକୁ ଜ୍ଞାନ (Knowledge)

ବୋଲିବାକୁ ଅସମ୍ମତ । ସେଥିପାଇଁ ତାଙ୍କର ମତ-ସଙ୍କଟ ଘଟିଅଛି । ସେ 'ମାନବ ଜ୍ଞାନ 'ସସୀମ'ରେ ଆବଦ୍ଧ' ଏହି ମତର ଅନୁରୋଧରେ 'ଅସୀମ'ର ଜ୍ଞାନକୁ ଅସ୍ୱୀକାର କରୁ ଅଛନ୍ତି, ପୁଣି ସେହିପରି ଏହି ସୀମା-ଜ୍ଞାନକୁ ସମ୍ଭବ କରିବା ପାଇଁ 'ଅଜ୍ଞେୟ' 'ଅସୀମ'ଙ୍କୁ କିୟତ୍ପରିମାଣରେ ଜ୍ଞେୟ ଗଣ୍ୟ କରିବାକୁ ଟାଣି ଆଣୁଅଛନ୍ତି । ଯାହାର ଜ୍ଞାନ ନାହିଁ ସେ କେବେହେଁ ବୁଝି ପାରେ ନାହିଁ ଯେ ସେ ଅଜ୍ଞାନ । ଜ୍ଞାନାଲୋକର ସାହାଯ୍ୟରେ ଅଜ୍ଞାନତା ବୋଧଗମ୍ୟ ହୁଏ । ପାଗଳ କେବେହେଁ ବୁଝି ପାରେ ନାହିଁ ଯେ ସେ ପାଗଳ । ପଶୁମାନେ ଅଜ୍ଞ କେବଳ ତାହା ନୁହେଁ, ସେମାନେ ଆପଣାର ଅଜ୍ଞତା ବିଷୟରେ ମଧ୍ୟ ଅଜ୍ଞ । ଜ୍ଞାନବାନ୍ ଜୀବ ମନୁଷ୍ୟ ବୁଝି ପାରେ ଯେ ପଶୁମାନେ ଅଜ୍ଞ । ସୁତରାଂ ଆମ୍ଭମାନଙ୍କର ଜ୍ଞାନ ଯଦି କେବଳ 'ସସୀମ'ରେ ଅବଦ୍ଧ ଥାନ୍ତା, ତାହାହେଲେ ଆମ୍ଭେମାନେ ଆମ୍ଭମାନଙ୍କ ଜ୍ଞାନର ଏହି ସୀମା କେବେହେଁ ଜାଣି ପାରନ୍ତୁ ନାହିଁ । ଏହା ଜାଣିବାକୁ ଉଚ୍ଚତର ଜ୍ଞାନର ପ୍ରୟୋଜନ ହୁଅନ୍ତା । ସମ୍ପୂର୍ଣ୍ଣରୂପେ ସୀମାରେ ଅବଦ୍ଧ ହେବା ଏବଂ ସେହି ସୀମା ସମ୍ବନ୍ଧରେ ଅଭିଜ୍ଞ ହେବା ଏକ ଜ୍ଞାନ ପକ୍ଷରେ ସମ୍ଭବ ନୁହେଁ । ଯେଉଁ ଜ୍ଞାନରେ ସୀମା-ଜ୍ଞାନ ରହିଅଛି, ସେ ଜ୍ଞାନ କେବେହେଁ ସମ୍ପୂର୍ଣ୍ଣରୂପେ ସୀମାରେ ଅବଦ୍ଧ ନୁହେଁ, ସୀମା-ଜ୍ଞାନ ସଙ୍ଗେ ସଙ୍ଗେ ସେ ସୀମାକୁ ଅତିକ୍ରମ କରୁଅଛି । ଯଦି ସ୍ପେନ୍ସରଙ୍କ ମତ ଗ୍ରହଣ କରାଯାଏ, ତେବେ ଏହା ମଧ୍ୟ ସ୍ୱୀକାର କରିବାକୁ ହେବ ଯେ ମାନବଜ୍ଞାନ କେବଳ ଯେ 'ସସୀମ'ରେ ଅବଦ୍ଧ ତାହା ନୁହେଁ, କିନ୍ତୁ ଏହା ଯେ ଏହିପରି ସୀମାବଦ୍ଧ, ସେ ଜ୍ଞାନ ମଧ୍ୟ ତାହାର ନାହିଁ । ସ୍ପେନ୍ସର ଅବଶ୍ୟ ଏହା ସ୍ୱୀକାର କରନ୍ତି ନାହିଁ, କାରଣ ଏହା ପ୍ରତିପାଦନ କରିବା ପାଇଁ ସେ ଗୋଟିଏ ପ୍ରକାଣ୍ଡ ଗ୍ରନ୍ଥ ରଚନା କରି ଅଛନ୍ତି । ସୁତରାଂ ପ୍ରମାଣିତ ହେଉଅଛି ଯେ ମାନବଜ୍ଞାନ କେବଳ ମାତ୍ର 'ସସୀମ'ରେ ଅବଦ୍ଧ ନୁହେଁ । ତାହା ମଧ୍ୟରେ 'ଅସୀମ' ରହିଅଛି ।

ଅସଲ କଥା ଏହି, ବ୍ରହ୍ମଜ୍ଞାନକୁ ପୂର୍ଣ୍ଣରୂପେ ସ୍ୱୀକାର କର, ନଚେତ୍ "ମାନବଜ୍ଞାନ 'ସସୀମ'ର ଉପରକୁ ଉଠି ପାରେ ନାହିଁ" ବୋଲି ସମ୍ପୂର୍ଣ୍ଣରୂପେ ତାହା ସହିତ ସକଳ ସମ୍ବନ୍ଧ ପରିତ୍ୟାଗ କର । ଉଭୟ କୂଳ ରକ୍ଷା କରିବାକୁ ଚେଷ୍ଟା କରିବା ବୃଥା ପ୍ରୟାସ ମାତ୍ର । ଏହାଛଡ଼ା ଅନ୍ୟ ଉପାୟ ନାହିଁ । ମଧ୍ୟବର୍ତ୍ତୀ କୌଣସି ପଥ ନାହିଁ । ବସ୍ତୁତଃ ସ୍ପେନ୍ସରଙ୍କ ମତ ଅନୁସରଣ କଲେ 'ଅସୀମ ଅଛନ୍ତି କିନ୍ତୁ ସେ ଜ୍ଞେୟ ନୁହନ୍ତି', ଏହି ସିଦ୍ଧାନ୍ତରେ ଉପନୀତ ନ ହୋଇ 'ଅସୀମ' ବୋଲି କିଛି ନାହିଁ, ଏହି ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ । 'ସସୀମ'ରେ ଅବଦ୍ଧ ରହିବା ଯଦି ମାନବଜ୍ଞାନର ଗୋଟିଏ ଅପରିହାର୍ଯ୍ୟ ନିୟମ ହୁଏ, ଅସ୍ତିତ୍ୱ ସମ୍ବନ୍ଧରେ ସେ ନିୟମ ପ୍ରଯୁଜ୍ୟ ହେବ । ଅସ୍ତିତ୍ୱଜ୍ଞାନ ମଧ୍ୟ ଜ୍ଞାନ, ସୁତରାଂ ଜ୍ଞାନର ସକଳ ନିୟମ ଏସ୍ଥଳରେ ପ୍ରୟୋଗ କରିବାକୁ ହେବ । ଯଦି 'ଅସୀମ'ର କୌଣସି ଜ୍ଞାନ ମାନବମନରେ ପ୍ରବେଶ କରି ନ ପାରେ, ତେବେ ତାହାର ଅସ୍ତିତ୍ୱ ମଧ୍ୟ ପ୍ରବେଶ କରି ପାରିବ ନାହିଁ । ଜ୍ଞାନର ଆୟତ୍ତ ହେବାକୁ ଗଲେ 'ଅସୀମଙ୍କୁ' ଯଦି 'ସସୀମ' ହୋଇଯାଏ, ତେବେ 'ଅସୀମ'ରେ ଯେଉଁ ଅସ୍ତିତ୍ୱ ଆରୋପ କରୁଅଛ, ତାହା ଅସୀମ ଅସ୍ତିତ୍ୱ ନୁହେଁ, ତୁମ୍ଭର ମନର କଳ୍ପନା ମାତ୍ର, ସୁତରାଂ ସସୀମ । କାରଣ, ତୁମ୍ଭେ ତୁମ୍ଭର ମନର ସୀମା ଅତିକ୍ରମ କରି ଅସ୍ତିତ୍ୱ ଚିନ୍ତା କରିବାକୁ ଅକ୍ଷମ । ଅତଏବ 'ଅସୀମ'ର ଅସ୍ତିତ୍ୱ ସମ୍ଭବ ନୁହେଁ । ସକଳ ଐଶ୍ୱର୍ଯ୍ୟରୁ ବଞ୍ଚିତ କରି ବ୍ରହ୍ମଙ୍କୁ ଯେ କେବଳ ଅସ୍ତିତ୍ୱରେ ରକ୍ଷା ହୋଇଥିଲା, ତାହା ମଧ୍ୟ ଉଡ଼ି ଗଲା । ସ୍ପେନ୍ସରଙ୍କ ଅତି ପ୍ରିୟ 'ଅସୀମ' ଯାହାଙ୍କୁ ଛଡ଼ା ତାଙ୍କର ଜ୍ଞେୟ ସସୀମ ଜଗତର ଅସ୍ତିତ୍ୱ ସମ୍ଭବ ନୁହେଁ, ଦେଖୁ ଦେଖୁ ସେ ଶୂନ୍ୟରେ ବିଲୀନ ହେଲେ ! ସୁତରାଂ ହ୍ୟାମିଲ୍ଟନ ଓ ମ୍ୟାନ୍ସେଲଙ୍କ ପ୍ରତିବାଦ କରିବାକୁ

ଯାଇ ସ୍ପେନ୍‌ସାର ଯେ କହୁଅଛନ୍ତି "ଅସୀମର ଅସ୍ତିତ୍ୱ ଆମ୍ଭମାନଙ୍କ ମନରେ ଶୂନ୍ୟମାତ୍ର ନୁହେ, କିନ୍ତୁ ବସ୍ତୁ ରୂପେ ଅବସ୍ଥିତ କରୁଅଛି" ତାହା କିନ୍ତୁ ଯୁକ୍ତିଯୁକ୍ତ ନୁହେ । ଏକଥା ଠିକ ଏବଂ ଆମ୍ଭେମାନେ ତାହା ସ୍ପଷ୍ଟରୂପେ ପ୍ରମାଣ କରିଅଛୁଁ ଯେ 'ଅସୀମ'ର ଜ୍ଞାନଛଡ଼ା 'ସସୀମ'ର ଜ୍ଞାନ ସମ୍ଭବ ନୁହେ, କିନ୍ତୁ ସ୍ପେନ୍‌ସାରଙ୍କ ମତ ଏହି 'ଅସୀମ'ର ଜ୍ଞାନକୁ ପରିହାର କରୁଅଛି, ସୁତରାଂ ତାଙ୍କ ମତ ସମ୍ପୂର୍ଣ୍ଣ ଭ୍ରମାତ୍ମକ; ତାଙ୍କ ମତକୁ ଠିକ୍ ବୋଲି ଧରିଲେ ଏହି ମୀମାଂସାରେ ଉପନୀତ ହେବୁଁ ଯେ ଆମ୍ଭମାନଙ୍କର 'ସସୀମ'ର ଜ୍ଞାନ 'ଅସୀମ'ର ଜ୍ଞାନ-ନିରପେକ୍ଷ । ଏହା ସ୍ପେନ୍‌ସାରଙ୍କ ନିଜ ମତରେ ଠିକ୍ ନୁହେ, । ସୁତରାଂ ତାଙ୍କ ମତର ଦୁଇ ଅଙ୍ଗ ମଧ୍ୟରେ ସଂଘର୍ଷଣ ଉପସ୍ଥିତ ହୋଇଅଛି, ଅତଏବ ଏହା ନ୍ୟାୟସଙ୍ଗ-ରୂପେ ଭ୍ରାନ୍ତ । ଯଦି 'ଅସୀମ'ର ଜ୍ଞାନକୁ ଛାଡ଼ି 'ସସୀମ'ର ଜ୍ଞାନ ସମ୍ଭବ ନ ହୁଏ, ଯଦି 'ଅସୀମ'ର ଜ୍ଞାନ 'ସସୀମ'ର ଜ୍ଞାନର ଅପରିହାର୍ଯ୍ୟ ଆଶ୍ରୟ ହୁଏ, ତେବେ ଉଭୟକୁ ସମାନ ପରିମାଣରେ ବାସ୍ତବ ସତ୍ତା ଯେନ ଆମ୍ଭମାନଙ୍କ ଜ୍ଞାନରେ ଅବସ୍ଥିତ କରିବାକୁ ହେବ, ଉଭୟଙ୍କର ଜ୍ଞାନ ସମାନ ପରିମାଣରେ ବାସ୍ତବ ହେବା ପ୍ରୟୋଜନୀୟ । ଗୋଟିକର ଜ୍ଞାନ ଯେତେବେଳେ ଅପରଟି ପକ୍ଷରେ ଅପରିହାର୍ଯ୍ୟ, ସେତେବେଳେ ଦୁହିଙ୍କର ପ୍ରକୃତ ସମାନ ଜ୍ଞାନ ଆବଶ୍ୟକ । 'ଅସୀମ'ର ଗୋଟିଏ ଅସ୍ପଷ୍ଟ ଧାରଣା ଯେନ ସନ୍ତୁଷ୍ଟ ହେଲେ ଚଳିବ ନାହିଁ । ସମ୍ବନ୍ଧବିଶିଷ୍ଟ ବସ୍ତୁଦ୍ୱୟର (Correlative) ଜ୍ଞାନ ସର୍ବଥା ସମପ୍ରକୃତିବିଶିଷ୍ଟ ହେବା ଅନିବାର୍ଯ୍ୟ ।

ଶ୍ରୀଧୀରେନ୍ଦ୍ରନାଥ ଚୌଧୁରୀ ।

---

## ଭାଗବତଟୁଙ୍ଗୀରେ ସନ୍ଧ୍ୟା (୫)

ଆମ୍ଭମାନଙ୍କ ଗ୍ରାମର ଶ୍ରୀଯୁକ୍ତ ଭାଗୀରଥି ସାମନ୍ତରାୟଙ୍କ ଜ୍ୟେଷ୍ଠା କନ୍ୟାର ବିବାହୋପଲକ୍ଷରେ ଯେଉଁ ବ୍ୟକ୍ତିମାନେ କାଲି ଗ୍ରାମରେ ଉପସ୍ଥିତ ଥିଲେ ସେଥି ମଧ୍ୟରୁ ବାବୁ ରାମହରି ମିଶ୍ର B, A, ବାବୁ ଗୌରାଙ୍ଗ ମହାପାତ୍ର V. L. M. S. ବାବୁ ଶ୍ୟାମସୁନ୍ଦର ମିଶ୍ର (ସାମନ୍ତରାୟଙ୍କ ଜ୍ୟେଷ୍ଠଜାମାତା) ବାବୁ ଶ୍ୟାମଚରଣ ପଟ୍ଟନାୟକ (ପଣ୍ଡିତ) ଗ୍ରାମରୁ ବିଦାୟ ହୋଇ ନାହାନ୍ତି; ଦୈବକ୍ରମେ ଏ ଗ୍ରାମର ଶ୍ରୀ ରାମଚନ୍ଦ୍ର ସର୍ବରାଜ ଆଜି ଗ୍ରାମରେ ଉପସ୍ଥିତ । ଏ ମହାଶୟ ଏଫ୍, ଏ, ପାସ୍ କରି କଲିକତାର ରିପନ୍ କଲେଜରେ ବି. ଏ. କ୍ଲାସ୍ ଏ, କୋର୍ସରେ ଅଧ୍ୟୟନ କରୁ ଅଛନ୍ତି । କଲିକତାରେ ମହାମାରୀ ରୋଗର ପ୍ରାବଲ୍ୟ ଯୋଗୁଁ ଏହାଙ୍କ କଲେଜ କେତେକ ଦିନ ବନ୍ଦ ଥିବାରୁ ଏ ମହାଶୟ ଗ୍ରାମକୁ ଆସି ଅଛନ୍ତି । ସୁଖର ବିଷୟ ଯେ ଏ ମହାଶୟ କଲିକତାରେ ଥାଇ ସୁଦ୍ଧା ମାତୃଭାଷା ପ୍ରତି ମମତା ରଖି ଅଛନ୍ତି । ଅନେକ କଲିକତାବାସୀ ଓଡ଼ିଆଙ୍କଠାରୁ ଯେପରି ବଙ୍ଗଳାମିଶା ଓଡ଼ିଆ ଶୁଣାଯାଏ, ଏହାଙ୍କର ସେପରି ନୁହେ । ଏ ମହାଶୟ ଅତ୍ୟନ୍ତ ସରଳପ୍ରକୃତିକ ଓ ବନ୍ଧୁମାନଙ୍କ ନିକଟରେ କୌଣସି କଥା ଲୁଚାନ୍ତି ନାହିଁ । ଏଥି ନିମନ୍ତେ ସମୟ ସମୟରେ ସ୍ତ୍ରୀର ଅଭିଭାବକମାନଙ୍କଠାରୁ ଅନେକ ନାସ୍ତ୍ର ଭୋଗ କରନ୍ତି । ସେ ଯାହାହେଉ, ଆଜି ଏ ପାଞ୍ଚଜଣ ଓ ନୃସିଂହ ଶର୍ମା ଟୁଙ୍ଗୀଟିକୁ ମଣ୍ଡିତ କରି ଅଛନ୍ତି ।

ବାବୁ ରାମଚନ୍ଦ୍ର ସର୍ବରାଜ କହିଲେ, 'ଶର୍ମା ମହୋଦୟଙ୍କୁ ଆଜି 'ଡାଇରି' ରେ ବେଶି ଟିପ୍ପଣୀ ଲେଖିବାକୁ ହେବ ନାହିଁ । ମୁଁ ଗୋଟିଏ ପଦ୍ୟ ରଚନା କରିଛି, ସେ ପଦ୍ୟଟି ଆଜି ପାଠ କରିବି । ମୋପରି ଅନୁଭବୀ ଆମ୍ଭମାନଙ୍କ ମଧ୍ୟରେ, ଏମନ୍ତକି, ଆମ୍ଭମାନଙ୍କ ଗ୍ରାମରେ ଅନେକ ଅଛନ୍ତି । ମାତ୍ର ମୁଁ ଯାହା ପ୍ରକାଶ କରିବି ତାହା ପ୍ରକାଶ କରିବାର ନୈତିକ ସାହସ ସମସ୍ତଙ୍କର ନାହିଁ ।' ସର୍ବରାଜେ ଜଣେ ଖ୍ୟାତନାମା ସାହିତ୍ୟସେବକ ବୋଲି

ଆମ୍ଭେମାନେ ପୂର୍ବରୁ ଜାଣୁ, ଏପରି ସ୍ଥଳରେ ତାଙ୍କର ପଦ୍ୟ ଅବଶ୍ୟ 'ପଣ୍ଡିତ ମହାଶୟ' ଓ 'ମାଷ୍ଟର ମହାଶୟ'ଙ୍କ ରଚିତ ପଦ୍ୟ ଅପେକ୍ଷା ଉତ୍କୃଷ୍ଟ ହୋଇ ଥିବ ଏହା ଭାବ ସ୍ଥିର କରିବାକୁ ଆମ୍ଭମାନଙ୍କୁ ଅଧିକ ସମୟ ଲାଗିଲା ନାହିଁ । 'ମୌନ ସନ୍ମତିଲକ୍ଷଣଂ' ଦେଖି ପାରି ସର୍ବାଗ୍ରେ ପଦ୍ୟଟି ଆରମ୍ଭ କଲେ ।

'Two silent sufferers meet'

ଦୁଇଟି ନୀରବ ଦୁଃଖିଙ୍କର ମିଳନ ।

ଆସ ଆସ ଭକ୍ତହୃଦୟେ କମଳବାସିନି,
ଆସ ଆସ ବାକ୍ୟଦେବି ନମଇ ପ୍ରେମରେ,
ଦିଅ ଏହି କ୍ଷୀଣକଣ୍ଠେ ଶକ୍ତି ବର୍ଣ୍ଣିବାକୁ
ଯାହା ଅନୁଭବ ବିନା ଆନ କେ ନ ଜାଣେ;
ଦିଅ ସେହି ଶକ୍ତି ଯାହାର ପ୍ରଭାବେ
କଳ୍ପନା ହୋଇବ ଘୋର ଦୃଢ଼ ଅନୁଭବ ।
ଅନୁଭବୀ କେହି ସୁଦ୍ଧା ଯେବେ ଏ ରଚନା
ବୁଝିବ, ଜାଣିବ ତେବେ ମୋ ଇଚ୍ଛା ପୂରଣ ।
ସଂସାରର ଦୁଃଖ ସୁଖ ମୋହ ମାୟା ଆଦି
'ବିପଦ ଦୁର୍ଦ୍ଦିନତମ ଘୋର ଭୟଙ୍କର'
ଅନୁଭବେ ବୁଝିଛନ୍ତି ସର୍ବେ ନ୍ୟୂନାଧିକ;
କିନ୍ତୁ କେତେ ଲୋକ ଏଡ଼ି ଆଲସ୍ୟ ଅବସ୍ଥା
ପ୍ରକାଶନ୍ତି ନିଜ ଦୁଃଖ ଜନସମାଜରେ ? —
ନିଜ ଦୁଃଖ ନୁହେ ତାହା ସଂସାରର ଦୁଃଖ,
ସମାଜର ଦୁଃଖ, ପୁଣି ଅନିଷ୍ଟର ହେତୁ—
ସମାଜକୁ ମଣଇ ମୁଁ ଦୁରନ୍ତ ଦୁର୍ଦ୍ଦମ,
ଯାହାର କରାଳ ମୁଖେ କେତେ ଦୀନହୀନ,
କେତେ ନିର୍ଦ୍ଦୋଷ ମାନବ ଉତ୍ସର୍ଗି ରୁଧିର
କରନ୍ତି ଦୁର୍ଦ୍ଦମ କ୍ଷୁଧା ଅଳ୍ପ ପ୍ରଶମିତ—
ରାବଣର ଚିତାପରି ଜ୍ୱଳଇ ସେ କ୍ଷୁଧା,
ଦୋଷୀ ନିର୍ଦ୍ଦୋଷ ମଧ୍ୟରେ ନାହିଁ ବିଭିନ୍ନତା ।
ବୁଲୁଥିଲି ସଂସାରରେ ଉଲ୍କାମୁଖୀ ପ୍ରାୟେ
ନ ଥିଲା ଉଦ୍ଦେଶ୍ୟ କିବା ନ ଥିଲା ଉଦ୍ୟମ ।
ମାର୍ଜାରର ଶିଶୁ ଗୃହୁଁ ହେଲେ ଅପହୃତ
ମାର୍ଜାରୀ ଭ୍ରମଇ ଯଥା ଶିଶୁ ଅନ୍ୱେଷଣେ—
ଗୃହାନ୍ତରେ ଭ୍ରମେ କେବେ, କେବେ ଗ୍ରାମାନ୍ତରେ,
କେବେ ଜଳାଶୟ ତଟେ, କେବେ ନଦୀତଟରେ,
ଗ୍ରାମ ପ୍ରାନ୍ତ ମରୁ ବନ, କ୍ଷେତ୍ର, ଉପବନ,
ଦୁର୍ଗମ ସ୍ଥାନ ସକଳ ଅତି ଆୟାସରେ
ଅତିକ୍ରମ କରେ ନିଜ ଶିଶୁଲାଭ ଆଶେ ।
କ୍ରୋଧ, ଶୋକ, ଅନୁତାପ, ସେନେହ, ମମତା,
ଅତୀତର ସ୍ମୃତି, ପୁଣି ସଂସାରର ମାୟା,
ଦୁଃଖିନୀ ହୃଦୟ ସଦା କରେ ଆଲୋଡ଼ିତ ।
ସବୁ ସ୍ଥାନ ଭ୍ରମି ଶେଷେ ନିରସ୍ତ ହୋଇଣ
ଫେରଇ ସେ ନିଜ ସ୍ୱାମିଗୃହକୁ ନିରାଶେ ।
ଯେଉଁ ହୃତ ମଣି ପାଇଁ କାନ୍ଦଇ ହୃଦୟ,
ଯାହା ପାଇଁ ଏତେ ବାଧା କରି ଅତିକ୍ରମ
ଭ୍ରମିଥିଲା ଏ ଦୁଃଖିନୀ ଦୁର୍ଗମ ସ୍ଥାନରେ,
ସେହି ଶିଶୁଲାଭ ଆଶା ଦୁରାଶା ହୋଇଲା ।
ବିଚାରିଲା "ଆଉ ପ୍ରାଣେ କିସ ପ୍ରୟୋଜନ ?
ପ୍ରାଣ ବିନା ପିଣ୍ଡେ ଅବା କି ଲାଭ ହୋଇବ ?
ଶିଶୁ ଯୋଗୁଁ ସିନା ମୋର ଜୀବନ ସାର୍ଥକ—
ପର୍ବତଶିଖରେ ଯାଇ ମହାସମୁଦ୍ରକୁ
ଡେଇଁ ପଡ଼ି ଲିଭାଇବି ଏ ଜୀବନଦୀପ ।"
ଏ ସମୟେ ତାହା କର୍ଣ୍ଣେ କିଏ ଦେଲା କହି
'କିପାଇଁ ହେଉଛୁ ତୁହି ବୃଥାରେ ବାଉଳା ?
ଥରେ ଯାଇ ଦେଖି ଆସ ତୋ ସ୍ୱାମିର ଗୃହ
ଯେବେ ତହିଁ ନ ପାଇବୁ ହୋଇବୁ ବିମୁଖ'
ମାର୍ଜାରୀ ବିଚାରେ ସତେ ଏହା କି ସମ୍ଭବେ ?
ଆଉ କି ପାଇବି ସତେ ମୁହିଁ ସ୍ୱର୍ଗସୁଖ ?
କିନ୍ତୁ ଆଶା ନିରାଶାରେ ଦେଉଥାଏ ଦେଖା—
ଅବଶେଷେ ସେ ଦୁଃଖିନୀ ଯାଇ ପ୍ରବେଶଇ
ନିଜ ସ୍ୱାମିଗୃହେ—ଦେଖେ ଅପରୂପ ଦୃଶ୍ୟ—
ଗୃହସ୍ୱାମି-ପୁତ୍ର କୋଡ଼େ ଶିଶୁକୁ ଶୁଆଇ
କେତେ ରଙ୍ଗେ ଖେଳୁଅଛି ଶାବକ ସଙ୍ଗରେ,
ମାର୍ଜାରୀ ବିଚାରେ ମୋର ଦିବ୍ୟ ଚକ୍ଷୁ ହେଲା,
ହଜିଥିବା ମଣି ମତେ ମିଳିଲା ଅନନ୍ତେ;
କେ ଜାଣି, ବଧାଳା ହରି ନେଇଥିଲା ଶିଶୁ
କରିବାକୁ ମୋର ସୁଖୋଲ୍ଲାସ ଦ୍ୱିଗୁଣିତ ।

ଶିଶୁକୁ ଅଣାଇ ପାଖେ, କେତେ ଚୁମ୍ବ ଦିଏ,
ମନୁ କଷ୍ଟ, ମନୁ ଦୁଃଖ ହୁଅଇ ବିସ୍ମୃତ—
ସଫଳ ନେତ୍ର ନେତ୍ରରେ ଗଣନା ନୁହଇ—
ଆଜ ବନ୍ଧୋ ! ତୋତେ ପାଇ ମୋହର ହୃଦୟ
ନାଚଇ, ସେହି ମାର୍ଜାରୀ ଶିଶୁ ପାଇ ଯଥା ।
କାନ୍ଦୁଛି ନୀରବେ କେତେ ଯେଉଁ ଧନ ପାଇଁ,
ଡାକୁଛି କ୍ଷଣରେ କେତେ ଯେଉଁ ଧନ ଆଶେ
ଆଜ ସେହି ଧନ ମୋତେ ମିଳିଲା ହସ୍ତରେ ।
ବସୁଥିଲି, ଜଳୁଥିଲି ନୀରବେ କାନ୍ଦିବ,
ବସୁଥିଲି, ଜଳୁଥିଲି ମରିବା ନୀରବେ,
ମୋ ଦୁଃଖକାହାଣୀ କେହି ଶୁଣିବାକୁ ନାହିଁ,
ମୋର ଅନୁଭବ ନାହିଁ କେହି ଅନୁଭବ,
ଏହି ଚିନ୍ତା-ଚିତା ଜଳ ନିଭିବ ନାହିଁତେ;
ଏ ସଂସାର ଅଟେ ଏକା ଦୁଃଖମରୁଭୂମି,
ଯହିଁରେ ଜନମେ ସଦା ପାପ ତାପ ଶୋକ;
'ଗୃହାରମ୍ଭ କଲେ ଦୁଃଖ'—ଏ ମହାବାକ୍ୟକୁ
ଜପୁଥିଲି, ଜପୁଅଛି, ଜପିବି ନିରନ୍ତେ ।
କିନ୍ତୁ ବନ୍ଧୋ ! ଆଜ ହେଲା କି ପରିବର୍ତ୍ତନ !
ତୋତେ ଦେଖି ଆଜ ଅନୁଭବ ପରପକ୍ଷ;
"ନିଜ ଦୁଃଖ ବନ୍ଧୁଠାରେ ହେଲେ ପ୍ରକାଶିତ
ଦୁଃଖଭାର ଦ୍ୱିଧା ହୋଇ ହୁଏ ସହନୀୟ"
ଏହି ଯେ ମହତ ବାକ୍ୟ କବି-ଉଚ୍ଚାରିତ
ଅନ୍ତରେ ଅନ୍ତରେ ସତ୍ୟ ଜାଣିଲି ମୁଁ ଆଜ ।
ଯାହା ମୁଁ ବିଚାରିଥିଲି ପୂର୍ବେ ନିରନ୍ତେ
ସେ ସବୁ ତ ନିଭିଗଲା ମୁହୂର୍ତ୍ତକ ମଧ୍ୟେ !
ଜଳୁଥିଲା ହୃଦେ ଯେଉଁ ରାବଣର ଚିତା
ସେହି ନେତ୍ର-ଚିତା କ୍ଷଣମଧ୍ୟେ ହେଲା ଲୟ ।
ଯାହାକୁ ମୁଁ ମଣୁଥିଲି ଦୁଃଖ-ମରୁଭୂମି
ପାପ, ତାପ, ଶୋକ, ନେତ୍ର ଯହିଁ ଜନମଇ—
ସେ ସଂସାରେ ଦେଖିଲି ମୁଁ ଶ୍ୟାମଳ ଭୂଖଣ୍ଡ,
ଯହିଁ ବିରାଜଇ ପ୍ରୀତି, ସ୍ନେହ, ମମତା—
ଯାହା ସ୍ୱାଦେ ବ୍ରହ୍ମାନନ୍ଦ ଲଭଇ ମାନବ,
ଯାହା ପାଇ ରସିକ ଧନ ତୁଚ୍ଛ ମଣେ ।
'ଗୃହାରମ୍ଭ କଲେ ଦୁଃଖ' ଏହି ମହାବାକ୍ୟ
ଅଟଇ ଅନ୍ତରେ ସତ୍ୟ ଏହାଠି ନିଶ୍ଚିତ;—
କିନ୍ତୁ ବେଳେ ବେଳେ ସୁଖ ପ୍ରସ୍ରବଣ ପ୍ରାୟେ
ଉଚ୍ଛୁଳି ଉଠେ ଲବଣସମୁଦ୍ରବକ୍ଷରେ ।
(କିମ୍ବା ଯଥା ଦଶାଗ୍ରସ୍ତ ପଥିକ ପଡ଼ିଲେ
ନିର୍ଜନ କାନ୍ତାରେ, ଘନବରଷା ଅନ୍ଧାରେ,
ଦେଖାଏ ତାହାକୁ ପଥ ସତୀର୍ଥ ବିଦ୍ୟୁତ ;
ଅବା ଯଥା ଅମାବସ୍ୟେ ସମୁଦ୍ରର ବକ୍ଷ
ମୁହୁଃ ଆଲୋକିତ ହୁଏ ବଡ଼ବା ପ୍ରସାଦେ )
କେଉଁ କେଉଁ ଅନୁଭବେ ହୃଦେ ସମଭାବେ
ଜଡ଼ିତ ହୋଇଛୁଁ ବନ୍ଧୋ ! ତାହା ବର୍ଣ୍ଣିବାକୁ
ଇଚ୍ଛଇ ମୁଁ, କିନ୍ତୁ କାହିଁ ସେ କ୍ଷମତା ମୋର !
ଉତ୍ତମ ଉଦ୍ଦେଶ୍ୟ ବୁଝି ପରର ମଙ୍ଗଳେ
ଆଚରିଲି କେତେ କର୍ମ ବହୁତ ଆୟାସେ;
କିନ୍ତୁ ଧାତା ଲେଖିଅଛି ଅଭାଗା କପାଳେ
ଅଧମ ଉଦ୍ଦେଶ୍ୟ ତହିଁ ଅରୋପନ୍ତି ନରେ ।
ମୁହିଁ ଯାହା ହିତ ପାଇଁ ସେ ହୁଏ ମୋ ରିପୁ;
ଜନସମାଜରେ ରଟେ ମୋ ଅସତ ଭାବ ।
ରଟୁ, ନାହିଁ ତହିଁ ମୋହୋର ଆକ୍ଷେପ;
କେବଳ ଆକ୍ଷେପ ବନ୍ଧୋ ! ଏହି କଥା ଲାଗି—
କେ ଜାଣେ, ଶୁଣିଣ ସଦା ଏ ନିଷ୍ଠୁର ନିନ୍ଦା
ଭୁଲିଯିବ ପାପ ମନ ମହତ ଉଦ୍ଦେଶ୍ୟ । (୧)
ଦେଖୁଛି ସମ୍ମୁଖେ ମୋର ଅନ୍ୟାୟ ଘଟଇ
କିନ୍ତୁ କହିବାକୁ କିଆଁ ନାହିଁ ପରାକ୍ରମ ?
ଯାହା ମୋ ବିବେକଶକ୍ତି କହୁଛି ଅନ୍ୟାୟ
ଇତରେ ଘୋଷୁଅଛନ୍ତି ତାକୁ ନ୍ୟାୟ ବୋଲି
(ନ ଘୋଷିଲେ ନ୍ୟାୟ ବୋଲି, ବୁଡ଼ିଯିବ ଆୟ)
ବିବେକ ଦେଲ କି ବିଧେ ! ଅପବ୍ୟବହାର
କରି ମୁହିଁ ଜଗିଥିବି ଇତରଙ୍କ ମନ ?
ଦିଅନ୍ତୁ ଇତରେ ମୋତେ ତାଡ଼ନା ଅନେକ,
ବିବେକକୁ ଲଂଘି କେବେ ନ କହିବି ବାକ୍ୟ;
ଦିଅନ୍ତୁ ପଠାଇ ମୋତେ ସମାଜରୁ ଛାଡ଼ି,
ନ ମିଳୁ ବନ୍ଧୁଏ ହେଲେ ଥରେ ମୁଠା ଅନ୍ନ,
ଯାଉ ନିରଶନେ ପ୍ରାଣ ପ୍ରାନ୍ତର ମଧ୍ୟରେ,
କିନ୍ତୁ ନ କହିବି କେବେ ଅନ୍ୟାୟକୁ ନ୍ୟାୟ ।(୨)

ଦେଖିଲୁ ଏହି ସଂସାରେ ଧନ ମାନ ପାଇ
ରହି କେତେ ଲୋକ, 'ବଡ଼ଲୋକ' ଯେ ବୋଲନ୍ତି;
ତହିଁ ମଧ୍ୟେ ପୁଣି କେତେ ଲଂଘିଣ ବିବେକ
ଅସାଧ୍ୟେ କରନ୍ତି ସାଧ, ମୁହିଁ କି ବୁଝିବି !
'ଭାବିବା ଉଚିତ ଅଟେ ପ୍ରତିଜ୍ଞା ବେଳରେ'
ଏହି ଉପଦେଶ ହୃଦେ ନ ଦିଅନ୍ତି ସ୍ଥାନ ।
କାର୍ଯ୍ୟକ୍ଷେତ୍ରେ ଦେଖେଁ, କେତେ ଗଲ୍ଭ ଯେ ପ୍ରତିଜ୍ଞା,
ପ୍ରତିଜ୍ଞା ଲଂଘନ୍ତି କେତେ ଛଳନା ଦେଖାଇ ।
ଲଂଘନ୍ତୁ, ନାହିଁ ତହିଁର ମୋହୋର ଭାବନା ।
କି ଉତ୍ତର ଦେବେ ? ଯେବେ ହେବେ ଉପନୀତ
ପ୍ରଧାନ ଧର୍ମାଧିକାରେ ବିଭୁ-ପାଦପଦ୍ମେ । (୩)

ପୃଥିବୀରେ ଅସନ୍ତୋଷ କାରଣ ଯେତେକ
ଅଧିକାଂଶ ହୁଏ ନୀଚବୃତ୍ତିରୁ ଜନମ ।
ନିଜ ରକ୍ତ ସଙ୍ଗେ ଯାର ଶୋଣିତ ସମ୍ବନ୍ଧ
ସେ କରଇ ଛଳ, ଦିଏ ମନେ କେତେ ବ୍ୟଥା ।
ବାହାରେ ଦେଖାଇ ସତ ପାଏଁ ମୁଁ ଯାତନା,
ପରେ ଦେଖାଇଲେ ତହିଁ ଯାର ହୁଏ ଯୁକ୍ତ;
ମୋର ଦୁଃଖ ଦେଖି ଅନ୍ୟେ ହୁଅନ୍ତି କାତର,
କିନ୍ତୁ ନିଜ ଲୋକେ ଦେଖି ତାହା ଆନନ୍ଦିତ;
ଯାହାକୁ ମୋହୋର ବୋଲି ବାଲ୍ୟକାଳୁଁ ମତି
ସମର୍ପଇ ପ୍ରାଣ, ସେହି କାଟଇ ଗଳାକୁ । (୪)

କେତେକ ସାହସ ଶିକ୍ଷା ପାଇ ଚିରଦିନ
ଆଚରନ୍ତି କେତେ ଲୋକ ଦୃଢ଼ ଧର୍ମବ୍ରତ;
ଗର୍ବ, ଦମ୍ଭ, ଅଭିମାନ, ପାପ, ତାପ, ମୋହ
ବହିଷ୍କୃତ କରି ଭବେ ହୁଅନ୍ତି ପୂଜିତ;
ଦେଖ କିନ୍ତୁ ପରକ୍ଷଣେ କି ବିକୃତ ଦୃଶ୍ୟ !—
କେଉଁ ଅତଳେ ଗଲା ଏତେ କଠୋର ତପସ୍ୟା !
ମୁହୂର୍ତ୍ତକ ପାଇଁ ଦେଖି ପ୍ରଲୋଭନ ଶିଖା
ତହିଁରେ ଝାସନ୍ତି ନିଜ ଶୁଦ୍ଧ କଳେବର !
'ବାରବର୍ଷ ତପସ୍ୟାକୁ ଶୁଖୁଆ ପୋଡ଼ାରେ'
ନଷ୍ଟ କରି ଚିରଦିନ ଲଭନ୍ତି ସେ ଶୋକ ।
ମୁହୂର୍ତ୍ତକ ପୂର୍ବେ ଯେଉଁ କୁକର୍ମକୁ ନିନ୍ଦା
କରୁଥିଲେ, ଏହିକ୍ଷଣି କରନ୍ତି ପ୍ରଶଂସା । (୫)

ବକମଧ୍ୟେ ହଂସ ଯଥା ସ୍ୱଗୁଣେ ଭୂଷିତ
ହେଲେ କି ସେ ହେବ ? କିନ୍ତୁ ଦେଖ ତା ଦୁର୍ଦ୍ଦଶା—
କାହିଁ ପାଆନ୍ତା ସମ୍ମାନ, ଆଦର ବହୁତ,
କିନ୍ତୁ ବକେ ଆଚରନ୍ତି ଘୋର ନିଷ୍ଠୁରତା,
ମୂଢ଼େ ବିଚାରନ୍ତି ନାହିଁ କ୍ଷଣ କାଳ ପାଇଁ—
'ମୂଢ଼ ମଧ୍ୟେ ଗୁଣୀ ଲୋକ ହେଲେ ସମ୍ଭାବିତ
ବଢ଼ିବ ସମସ୍ତଙ୍କର ସମ୍ମାନ ବହୁତ ।'
ପରଶ୍ରୀକାତରତାରେ ହୋଇ ଜର୍ଜରିତ
ହଂସକୁ ଧିକ୍କାରି ସଦା ତା ପ୍ରାଣ ନିଅନ୍ତି ।
ମୂଢ଼େ ! ବୁଝି ନପାରିଲ ନିଜର ଦୁର୍ଦ୍ଦଶା,
ତୁମ୍ଭ ମଧ୍ୟେ ହଂସ ଥାଇ ମଣ୍ଡନ୍ତା ତୁମ୍ଭଙ୍କୁ,
ଏବେ ଛାଡ଼ି ଦେଲ, ଅଛି ତାହା ପାଇଁ ସ୍ଥାନ;
ପଦ୍ମବନେ ଯାଇ ହଂସ ସହଚର ମଧ୍ୟେ
କରୁଥିବ କ୍ରୀଡ଼ା ପାଇ ସଙ୍ଗୀଙ୍କ ଆଦର;
କିନ୍ତୁ ବକେ ! ପଙ୍କ ମଧ୍ୟେ ଚିରକାଳ ପାଇଁ
ହୋଇବ ଲୁଣ୍ଠିତ, କରି ନିଜ ଭାଗ୍ୟେ ନିନ୍ଦା ।
ପୂଜ୍ୟ-ପୂଜା-ବ୍ୟତିକ୍ରମ ହେଲେହିଁ ନିଶ୍ଚୟ
ପଡ଼ିଲ ଦୁର୍ଦ୍ଦଶା ଅବମାନକାରୀ ପ୍ରତି ।
ପୂଜ୍ୟଙ୍କୁ ଅବମାନନା କଲେହିଁ ସତତ
ମୂଲ୍ୟର ଟିକେକ କ୍ଷତ କେବେହେଁ ନୋହିବ,
ଅବମାନକାରୀ ଲୋକ ନିଜ ହୃଦୟକୁ
କରିବ ସ୍ୱାର୍ଥାନ୍ଧ ଲୋକେ ସଦା କଳଙ୍କିତ ।
ମଣି ଲୋଟୁ ପାଦତଳେ, କାଚ ଶିରେ ଥାଉ,
କାଚ କି ହୋଇବ ମଣି ଉଚ୍ଚସ୍ଥାନେ ଥାଇ ?
ମଣି ଉଜ୍ଜ୍ୱଳିତ ବଢ଼େ କଠୋର ଶାଣରେ,
କାଚ ଖଣ୍ଡ ଖଣ୍ଡ ହୋଇ ମିଶିବ ଧୂଳରେ । (୬)

ହଂସ ଆଗେ ଜଳମିଶ୍ର ଦୁଗ୍ଧ ରଖିଦେଲେ
ଦୁଗ୍ଧ ଟାଣିନେଇ ଜଳ ଛାଡ଼ଇ ପାତ୍ରରେ;
ବିବେକୀ ଲୋକ ତା ଦେଖି ହଂସେ ପ୍ରଶଂସଇ,
କହେ 'ଧନ୍ୟ ତୁହି ଜୀବ ! ବାଛି ନେଲୁ ସାର,
ଜାଣିଲି ଦୁଗ୍ଧରେ କେତେ ମିଶିଥିଲା ଜଳ,
ଏବେ ମୁଁ ଏଥିର କରିବି ପ୍ରତିକାର ।'
କିନ୍ତୁ ଅବିବେକୀ ଲୋକ ଜଳଶେଷ ଦେଖି
ଧିକ୍କାରେ ହଂସକୁ କହି ନିଷ୍ଠୁର ବଚନ—
'ଜଳ ଥାଉ, ଲାଭ କିସ ମୋର ତାହା ଜାଣି,
କିପାଇଁ ଏ ଭ୍ରମ ତୁହି ଆଚରେ ମୂଢ଼ ହଂସ

ଦେଖାଇ ମୋର ଅବସ୍ଥା କରୁ ପ୍ରତିପନ୍ନ;
ମୋଠାରୁ ଅଧମ ପ୍ରାଣୀ ନାହିଁ ଏ ସଂସାରେ ।'(୭)
ଯେଉଁମାନେ ମୋର ପ୍ରତି ହୃଦେ ଈର୍ଷାଭାବ
ସତତେ ପୋଷନ୍ତି କେତେ ଅକଷ୍ଟ ଯାତନା,
ଯାହାଙ୍କ ପ୍ରକୃତି ମୋର ପ୍ରକୃତି ସଙ୍ଗରେ
ଏକ ଉପାଦାନେ ବିଧେ ଗଠିଛ, କେମନ୍ତ
ଏଭିଣ ବିବେକ ତାଙ୍କ, ତାଙ୍କ ସଙ୍ଗେ ମିଶି
କଟାଇବି କାଳ, ବିଭୋ ! ଅହା କି ଯନ୍ତ୍ରଣା !
କେମନ୍ତ ହୃଦୟେ ଜାଣି, ସେମାନେ ମୋ ରିପୁ,
ଅଶଙ୍କିତ ଚିତ୍ତେ କରିବି ମୁଁ ବ୍ୟବହାର ?
ବେଶ୍ୟା-ହାସ୍ୟ ମୁହିଁ ପରା କେବେ ଶିଖି ନାହିଁ,
ବିବେକ ନ ଦିଏ ଏହି ହାସ୍ୟକୁ ପ୍ରଶ୍ରୟ ।
ଅନ୍ତରେ ଯା' ଇଚ୍ଛା ଥାଉ, ବାହ୍ୟେ ନ ହସିଲେ
ବାହ୍ୟେ ବେଶ୍ୟା-ଆଚରଣ ନ କରି ପାରିଲେ
ହେଲି ଅପରାଧୀ, ଅପମାନରେ ପ୍ରୋଥିତ !
କେବେ ହେଁ ଏ ଦୁଃଖ ବିଭୋ ! ନ ଦିଅ ଶତ୍ରୁକୁ ।(୮)
କବି ଯାହା କହିଛନ୍ତି ଅମର ସଙ୍ଗୀତେ,
'ଅନ୍ୟ ଦୁଃଖ ଯେତେ ଇଚ୍ଛା, ପ୍ରଭୋ ! ତେତେ ଦିଅ,
ସହିବି ତାହା ସମସ୍ତ ନତ ମସ୍ତକରେ;
ଅରସିକ ଠାରେ ରସ-ନିବେଦନ-ଦୁଃଖ
କେବେ ହେଁ ନ ଲେଖ ବିଭୋ ! ଅଧମ-କପାଳେ ।'
ଗୁଣୀ ଗୁଣ ପୂଜା କରେ, ନ ଜାଣେ ନିର୍ଗୁଣ;
ମୂର୍ଖ ହାତରେ ଗୁଣ ହୁଏ ଅପମାନିତ;
ଏହାଠାରୁ ବଳି ଦୁଃଖ କିବା ଅଛି ଆଉ ?
ଦୁଃଖ ଦିଅ ବିଭୋ ! ନାହିଁ ତହିଁକି ଆକ୍ଷେପ,
କିନ୍ତୁ ଦୁଃଖ ସହିବାକୁ ହୃଦେ ଦିଅ ବଳ ।
ଅନ୍ତର୍ଯ୍ୟାମୀ ! ପାଦ ତଳେ କରୁଛି ପ୍ରାର୍ଥନା
ହେଲେ ସୁଦ୍ଧା ନିରାଶାରେ ଜର୍ଜରିତ ପ୍ରାଣ
ତବ ମହିମାରୁ କଦା ଏ ମୁଣ୍ଡ ନ ଫିଟୁ । (୯)
ଗୋଟିଏ ସମସ୍ୟା ମୁହିଁ ସାଧନେ ଅକ୍ଷମ—
କଲି କେତେ ବୃଥା ଚେଷ୍ଟା, ନ ଗଲା ସନ୍ଦେହ—
ଯେଉଁ ଠାରେ ମନ ଅଛି ମହାନ ଉଦ୍ଦେଶ୍ୟ
ସେଠାରେ କପାଇଁ ହେଉ ନାହିଁଟି ସୁବିଧା ।
କେତେ କେତେ ସାଧୁ ଚେଷ୍ଟା ସୁବିଧା ଅଭାବେ
ଅରଣ୍ୟ-ରୋଦନେ ହେଉଅଛି ପରିଣତ ।
ସଂସାର ବିକଟ ସ୍ୱରେ କରୁଛି ଚିତ୍କାର:—
" 'ଅର୍ଥ, ଅର୍ଥ' ଅର୍ଥ ଛଡ଼ା ନାହିଁ ଅନ୍ୟ ଗତି,
" ସଂସାର-ସୁଖ-ଗନ୍ଧରେ ଯାଉଥାଅ ଅର୍ଥ,
" ତେବେ ଯିବା ସଂସାରରେ ହୋଇବ ପୂଜିତ ।
" ଯେବେ ଅର୍ଥ ନାହିଁ ତେବେ ଯାଅ ଅରଣ୍ୟକୁ,
" ଅରଣ୍ୟ-ରୋଦନ ସାର କରି ଯାପ ପ୍ରାଣ ।"(୧୦)
ବ୍ୟାଧଶର-ପ୍ରପୀଡ଼ିତ ହରିଣୀ ଯେସନ
ଜୀବନ ବିକଳେ ଧାଉଁଥାଏ ଅରଣ୍ୟରେ;
କ୍ଷତ ସ୍ଥାନୁ ବୋହୁଥାଏ ଅଜସ୍ର ଶୋଣିତ;
କ୍ଷତ ସ୍ଥାନେ ଉଠୁଥାଏ ମର୍ମଦାହୀ ଜ୍ୱାଳା;
କେମନ୍ତ ହୋଇବ ଏହି ବ୍ୟଥା ପ୍ରଶମିତ ?
ଧାଉଁ ଧାଉଁ କେତେ ବୃକ୍ଷେ ଘଷି କ୍ଷତସ୍ଥାନ
ଲଭେ ବ୍ୟଥା-ପ୍ରଶମନ; ଭାବିରେ ସେ ମନେ
'ଏ ବ୍ୟଥା-ପ୍ରଶମ-ସୁଖ ଅଟଇ କ୍ଷଣିକ',
କିନ୍ତୁ କେତେ ଦୂର ଯାଇ ଦେଖିଲା ବେଳକୁ
କ୍ଷତ ସ୍ଥାନେ କେଉଁ ଲାଗିଅଛି ଲେପ ।
ଦୈବକ୍ରମେ ଲାଗି କ୍ଷତ ଔଷଧ-ବୃକ୍ଷରେ
ଲୁପ୍ତ ହୋଇ ଯାଇଅଛି; ଜଣା ନାହିଁ ତାକୁ ।
ସେହିପରି ବନ୍ଧୋ ! ବିଷଜର୍ଜରିତ ପ୍ରାଣେ
ବୁଲୁ ବୁଲୁ ଏ ସଂସାର ଅରଣ୍ୟ ମଧ୍ୟରେ
ଜାଣି ନ ପାରିଲି; ତୋର ସେନେହ-ଔଷଧ
ଲାଗି ହୋଇଗଲା ମୋର କ୍ଷତଟି ପୂରିତ । (୧୧)
ସର୍ବେଶ୍ୱରେ ତାଙ୍କ ପଦ୍ୟଟି ଶେଷ କଲେ ।

ଅଳ୍ପ ବହୁତ ସମସ୍ତଙ୍କ ମୁଖ ମୋହନପୂର୍ଣ୍ଣ । ଅଳ୍ପ ବହୁତ ପ୍ରତ୍ୟେକଙ୍କ ମନରେ କେତେ ଅଜ୍ଞାତ ଅନୁଭବ କ୍ରିୟା ହୋଇ ଗଲା । ବାବୁ ରାମହରି ମିଶ୍ର B, A, କହିଲେ "ସର୍ବେଶ୍ୱର ମହାଶୟ, ଏ ପଦ୍ୟଟିର ନାମ 'ଗୋଟି ଜନ୍ମର ଦୁଃଖର ମିଳନ' ଦିଅନ୍ତୁ । ଆପଣଙ୍କ ପଦ୍ୟ ଶୁଣି ମୋର ନୈରାଶ୍ୟଜର୍ଜରିତ ପ୍ରାଣରେ ଆଶାର ସଞ୍ଚାର ହୋଇଅଛି । ମୁଁ ଜଣେ ଆପଣଙ୍କର ସହ-ଅନୁଭବୀ" । ବାବୁ ଗୌରଙ୍ଗ ମହାପାତ୍ର V, L, M, S, କହିଲେ "ଏ ପଦ୍ୟଟିର ନାମ

'ଗୃହେଃ କଣ୍ଟକ ଦୃଷ୍ଟିଃ ମିଳନ' ବଦଳନ୍ତୁ ।" କ୍ରମଶଃ ଶ୍ୟାମସୁନ୍ଦର ବାବୁ ଓ ଶ୍ୟାମଚରଣ ବାବୁ ଏ ପଦ୍ୟର ଯଥୋଚିତ ନାମ ପରିବର୍ତ୍ତନ କରିବାର ପ୍ରସ୍ତାବ କଲେ । ଅବଶେଷରେ ମୁଁ ସେମାନଙ୍କର ପ୍ରଥା ଅନୁସରଣ କରିବାକୁ ପ୍ରୟାସୀ ହେଲି ଓ ପ୍ରସ୍ତାବ କଲି ଯେ ବର୍ତ୍ତମାନ ପଦ୍ୟଟିର ନାମ ବଦଳାଇବାର ଆବଶ୍ୟକ ନାହିଁ । କାରଣ ଏହା Final decision (ଶେଷ ନିଷ୍ପତ୍ତି) ହୋଇ ନ ପାରେ । ପଦ୍ୟଟି ଯେଉଁ ପତ୍ରିକାରେ ପ୍ରକାଶିତ ହେବ, ସେ ପତ୍ରିକାର ସମ୍ପାଦକ ଯେବେ ପୁନର୍ବାର ନାମ ପରିବର୍ତ୍ତନର ପ୍ରସ୍ତାବ କରନ୍ତି, ତାହାହେଲେ ଆଉ ଥରେ ଏ ପଦ୍ୟର 'Title' ଶିରୋନାମାଟି ବଦଳାଇବାକୁ ଆପଣ (ଅର୍ଥାତ୍ ମଧ୍ୟସ୍ଥେ) ବାଧ୍ୟ ହେବେ । ଅତଏବ ସେ ବିଷୟ ଉତ୍ତମ ରୂପେ ବୁଝି ଶେଷ ନିଷ୍ପତ୍ତି କରିବା ।

ସେଦିନ ଟୁଙ୍ଗୀରେ ଉପସ୍ଥିତ ସମସ୍ତଙ୍କ ମନ ଏତେଦୂର ପର୍ଯ୍ୟନ୍ତ 'ବିଭୋର' ହୋଇଥିଲା ଯେ ଆଉ 'ବାଜେ ଗପ' କରିବାକୁ କାହାରି ମନ ବଳଲା ନାହିଁ ଓ 'ପୂର୍ଣ୍ଣ-ହୃଦୟ'ରେ ଆମ୍ଭେମାନେ ଟୁଙ୍ଗୀରୁ ପ୍ରସ୍ଥାନ କଲୁଁ । (ପାଠକ ମହାଶୟ ! କ୍ଷମା କରିବେ, ଇଂରାଜି ଭାଷାର Full heart ର 'ପୂର୍ଣ୍ଣ-ହୃଦୟ' ଛଡ଼ା ଅନ୍ୟ କୌଣସି ଶବ୍ଦ ମୋର ମନେ ହେଲା ନାହିଁ ।)

ଶ୍ରୀ ଦୁର୍ମୁଖ ଶର୍ମା ।

## ବୈଦିକ ଉପାଖ୍ୟାନ । (୧)

ଏକଦା ଦେବଗଣ, ମନୁଷ୍ୟଗଣ ଓ ଅସୁରଗଣ ଗୋଟିଏ ସୁବିଶାଳ ସମାଜ ସଂସ୍ଥାପନପୂର୍ବକ ନିଜ ନିଜର ଦୁଃଖର କାରଣ ଆଲୋଚନା କରିବାକୁ ଆରମ୍ଭ କଲେ । ବିଚାରଦ୍ୱାରା ସ୍ଥିର କଲେ, ଆମ୍ଭେମାନେ ଆପଣା ଆପଣା ଦୁଃଖର କାରଣ ସ୍ଥିର କରିବାକୁ ଅସମର୍ଥ, ଏ ବିଷୟ ପିତାମହ ବ୍ରହ୍ମାଙ୍କୁ ପ୍ରଶ୍ନ କରିବାକୁ ହେବ । ସେ ଆମ୍ଭମାନଙ୍କୁ ସୃଜନ କରିଅଛନ୍ତି । ସୁତରାଂ ଆମ୍ଭମାନଙ୍କ ଦୁଃଖର କାରଣ ତାଙ୍କୁ ଜଣା ଅଛି । ଆମ୍ଭେମାନେ ସ୍ପଷ୍ଟରେ ଏତିକି ମାତ୍ର ବୁଝି ପାରୁଅଛୁଁ ଯେ ଆପଣା ଆପଣା ଦୋଷରୁ ଆମ୍ଭମାନଙ୍କର ଦୁଃଖ ହେଉଅଛି, କିନ୍ତୁ ଆମ୍ଭମାନଙ୍କ ମଧ୍ୟରେ କାହାର କି ଦୋଷ ଅଛି, ତାହା ବୁଝିବା ସହଜ କଥା ନୁହେ । ଯେହେତୁ ନିଜ ଦୋଷ ନିଜ ଚକ୍ଷୁରେ ପ୍ରାୟ ପଡ଼େ ନାହିଁ । ଅତଏବ ଏ ବିଷୟ ବ୍ରହ୍ମାଙ୍କଠାରୁ ଅବଗତ ହେବା ନିତାନ୍ତ ଆବଶ୍ୟକ । ଅନନ୍ତର ଦେବ, ମନୁଷ୍ୟ, ଅସୁର, ସମସ୍ତେ ସର୍ବଲୋକପିତାମହ ବ୍ରହ୍ମାଙ୍କ ଦର୍ଶନକାମନାରେ କଠୋର ତପସ୍ୟା କରିବାକୁ ଆରମ୍ଭ କଲେ । ଦୀର୍ଘକାଳ ତପସ୍ୟା ପରେ ପ୍ରଜାପତି ବ୍ରହ୍ମା ସେମାନଙ୍କ ସମ୍ମୁଖରେ ଆବିର୍ଭୂତ ହୋଇ "ଦ" ଏହି ଏକବର୍ଣ୍ଣବିଶିଷ୍ଟ ଶବ୍ଦଟି ଉଚ୍ଚାରଣ କରି ପୁନର୍ବାର ଅଦୃଶ୍ୟ ହେଲେ ।

ଅନନ୍ତର ଦେବଗଣ, ମନୁଷ୍ୟଗଣ ଓ ଅସୁରସଂଘଗଣ ପ୍ରଜାପତିଙ୍କର ଉକ୍ତ ଏକବର୍ଣ୍ଣବିଶିଷ୍ଟ ଶବ୍ଦର ଅର୍ଥ ପର୍ଯ୍ୟାଲୋଚନା କରିବାକୁ ପ୍ରବୃତ୍ତ ହେଲେ । ଦେବଗଣ ଭାବିଲେ ପିତାମହ ଆମ୍ଭମାନଙ୍କୁ କଣ କହିଗଲେ ? "ଦ" ଶବ୍ଦର ଅର୍ଥ କଣ ? ଆମ୍ଭେମାନେ ଯେଉଁ ଦୋଷରେ ଦୁଃଖ ପାଉଅଛୁଁ, ପିତାମହ ନିଶ୍ଚୟ ସେହି ଦୋଷସଂଶୋଧନର ଉପାୟସ୍ୱରୂପ "ଦ" ଶବ୍ଦ ସଙ୍କେତ କରି ଯାଇଅଛନ୍ତି । ଏବେ ଦେଖାଯାଉ, ଆମ୍ଭମାନଙ୍କ ସ୍ୱଭାବରେ କି ଦୋଷ ଅଛି । ଅନୁସନ୍ଧାନଦ୍ୱାରା ସ୍ଥିର କଲେ, ଆମ୍ଭେମାନେ ବଡ଼ ଅଦାନ୍ତ, ଅର୍ଥାତ୍ ଆମ୍ଭେମାନେ ଅତ୍ୟନ୍ତ ଇନ୍ଦ୍ରିୟପରାୟଣ, ଭୋଗବିଳାସରେ ରତ, ବୋଧ ହୁଏ ପିତାମହ ଆମ୍ଭମାନଙ୍କୁ କହିଅଛନ୍ତି, ଦମ୍ୟଂ—ଦମନ କର—ଇନ୍ଦ୍ରିୟବେଗ ସଂଯତ କର ।

ଏଣେ ମନୁଷ୍ୟଗଣ ପିତାମହୋକ୍ତ "ଦ" ଶବ୍ଦର ଅର୍ଥଚିନ୍ତାରେ ମନୋନିବେଶ କରି ବୁଝି ପାରିଲେ, ଆମ୍ଭମାନଙ୍କ ସ୍ୱଭାବରେ କୃପଣତାର ଆତିଶଯ୍ୟ ଲକ୍ଷିତ ହେଉଅଛି, ଅର୍ଥାତ୍ ଆମ୍ଭେମାନେ ସର୍ବଦା ଅର୍ଥଗୃଧ୍ନୁ ହୋଇ ରହିଅଛୁଁ ; ସ୍ୱାର୍ଥତ୍ୟାଗ କରିବାକୁ ଆମ୍ଭମାନଙ୍କ ମନରେ ବଡ଼ କଷ୍ଟ ହୁଏ ।

ବୋଧ ହୁଏ ଉକ୍ତ ଦୋଷ ଅମ୍ଭମାନଙ୍କ ଦୁଃଖର ବୀଜ; ଏବଂ ସେହି ବୀଜ ଧ୍ୱଂସ କରାଇବା ନିମନ୍ତେ କରୁଣାମୟ ପିତାମହ ଅମ୍ଭମାନଙ୍କୁ କହୁଅଛନ୍ତି "ଦ" ଅର୍ଥାତ୍ ଦଦଧ୍ୱଂ—ଦାନ କର, ସ୍ୱାର୍ଥତ୍ୟାଗ-ବୃତ୍ତି ପ୍ରବଳା କର ।

ଏହା ପରେ ଅସୁରମାନେ ପିତାମହୋକ୍ତ "ଦ" ଶବ୍ଦର ଅର୍ଥତତ୍ତ୍ୱରେ ନିବିଷ୍ଟ ହୋଇ ମନେମନେ ସ୍ଥିର କଲେ, ପିତାମହ ହୁଏତ ଅମ୍ଭମାନଙ୍କ ଦୁଃଖବୀଜ ଦୋଷ ପରିତ୍ୟାଗ ନିମିତ୍ତ ସଙ୍କେତରେ "ଦ" ଶବ୍ଦ କହି ଅନ୍ତର୍ହିତ ହୋଇଅଛନ୍ତି । ବିଶେଷ ଅନୁସନ୍ଧାନଦ୍ୱାରା ସେମାନେ ସ୍ଥିର କଲେ, ଅମ୍ଭେମାନେ ଅତ୍ୟନ୍ତ ନିର୍ଦ୍ଦୟ, ସର୍ବଦା ଦେବତା, ମନୁଷ୍ୟ ଓ ପଶ୍ୱାଦିଙ୍କର ଉତ୍ପୀଡ଼ନରେ ରତ ଅଛୁଁ; ସେଥିପାଇଁ ଅମ୍ଭମାନଙ୍କର ଦୁଃଖ ହେଉଅଛି । ଏଣୁ ପିତାମହ ଅମ୍ଭମାନଙ୍କୁ ସଙ୍କେତରେ କହିଅଛନ୍ତି, ଦୟଧ୍ୱଂ—ଦୟା କର ।

ଏହି ଗଳ୍ପଟିର ତାତ୍ପର୍ଯ୍ୟ ଏହି ଯେ, ଇନ୍ଦ୍ରିୟ ଦମନ କରିବା, ସ୍ୱାର୍ଥପର ନ ହୋଇ ଶକ୍ତ୍ୟନୁସାରେ ଦାନ କରିବା ଏବଂ ଜୀବମାନଙ୍କଠାରେ ଦୟା କରିବା, ଏହି ତିନୋଟି କର୍ମ ସ୍ୱର୍ଗ ଓ ଧର୍ମର ମୂଳୀଭୂତ କାରଣ ଅଟେ । ମାନବପ୍ରକୃତିରେ ଦେବଭାବ, ମନୁଷ୍ୟଭାବ ଓ ଅସୁରଭାବ ବିଦ୍ୟମାନ ଅଛି; ମଧ୍ୟ ସମୟ ସମୟରେ ଏହି ଭାବମାନଙ୍କର ପ୍ରାବଲ୍ୟ ଓ ଦୌର୍ବଲ୍ୟ ଘଟିଥାଏ; କେତେବେଳେ ବା ଦେବଭାବ ପ୍ରବଳ ଓ ଅନ୍ୟାନ୍ୟ ଭାବ ଦୁର୍ବଳ ହୁଏ; କେତେବେଳେ ମନୁଷ୍ୟ ଭାବ ପ୍ରବଳ ଓ ଅନ୍ୟାନ୍ୟ ଭାବ ଦୁର୍ବଳ ହୁଏ ଏବଂ କେତେବେଳେ ବା ଅସୁରଭାବ ପ୍ରବଳ ଓ ଅନ୍ୟାନ୍ୟ ଭାବ ଦୁର୍ବଳ ହୁଏ । ଯେତେବେଳେ ଯାହା ପ୍ରବଳ ହେବ, ତାହା ବୁଝି ଇନ୍ଦ୍ରିୟଦମନ, ଦାନ ଓ ଦୟାଦି କାର୍ଯ୍ୟ କରିବା ଅମ୍ଭମାନଙ୍କର ସର୍ବତୋଭାବରେ ବିଧେୟ ।

ଶ୍ରୀ ରାମଚନ୍ଦ୍ର ନନ୍ଦ, ଢେଙ୍କାନାଳ ।

## ଓଡ଼ିଆ ଲଳନା ।

କେ ଦେଖିବ ଦେଖ ଆସି ଓଡ଼ିଆ ଅବଳା,
ଆଖିକୁଣ୍ଟୁ କାନଯାଏ ନାଇଛି ସେ କଳା ।
ମଥାରେ ସିନ୍ଦୂର ଥୋପା ଅଢ଼େଇ କଉସି,
କେତେ କଷ୍ଟେ ନାଇଛି ସେ ଦେଖିଣ ଆରସି ।
ଭାଲେ ସିନ୍ଥି, ମଥାମଣି; କଯ୍ୟୁପନ୍ତୀ, ଶିରେ
ମଞ୍ଜୀକଡ଼ୀ, ଗୋଜକାଠି, ସଯୁକ୍ତ ଜଞ୍ଜିରେ ।
ଟନ ଗୃର ଗଣ୍ଡା ମୁଣ୍ଡେ ଭଡ଼ା ପାଟସୂତ,
ବର ଓହ୍ଲଲ ସମାନ ପଛେ ଅଛି ଝୁଲି ।
ବାଟର୍‌ଶେଡ୍ ( watershel )ସମ ମାଙ୍ଗ; ବେଣୀ
ଶିବଜଟା
ମାସେ ଖଣ୍ଡନରେ ମୁଣ୍ଡ ହୁଏ ଥରେ ପିଟା ।
ଦଣ୍ଡି, ନଥ, ଫୁଲ, ଗୁଣା, ବଶଣୀ ନାକର,
କାହାର କାହାର ଥାଏ ବେଶଘ ବେଶର ।
କାନେ କାପ, ମଞ୍ଜୁକଣ୍ଠୀ, ଚଉକୀ, ବାଉଳୀ,
ଲବଙ୍ଗ, ବାଳିଆ, ନୋଲି, ଗୋଖରା, କୁଣ୍ଡଳ ।
ବେକେ ଚମ୍ପାକଢ଼ୀ, କଣ୍ଠି, ଧାନ, ଧୂପସରୀ,
ମୋହନମାଳା, ଇତ୍ୟାଦି ଲେଖିଲେ ନ ସରେ ।
ହାତେ ତାଡ଼, ବାଜ, ଚୂଡ଼ି, ତାଇତ, ଖାସିଆ,
ପଇଞ୍ଚି, ମଗରମୁଣ୍ଡି, ଶଙ୍ଖା, ତେଉଁରିଆ ।
ଦେହ ଯାକ ଗହଣାରେ ପୂର୍ଣ୍ଣ ଷୋଳକଳା,
କେ ଦେଖିବ ଦେଖ ଆସି ଓଡ଼ିଆ ଅବଳା ।(୧)

କେ ଦେଖିବ ଦେଖ ଆସି ଓଡ଼ିଆ ଅବଳା,
ଗୋଟିଏ ଗୃହ୍‌ଲେ ଯେତେ ଦେହଟି ତା ଇଳା ।
ମୋଟାଶାଢ଼ୀ ଓହ୍ମଣ୍ଡିଆ ହଳଦ ଗର୍‌ଭର,
ମାସେ ଦୁଇମାସେ ଥରେ ଯାଏ ଧୋବାଘର ।
ପନର ହାତ ଶାଢ଼ୀକୁ ନ ହାତ ଅଣ୍ଟାରେ,
ମୁହଁରେ ହାଣ୍ଡେ ଏଡ଼ଣା ଅଣୁଟା ପଦାରେ ।
ଓସାର ଅଢ଼ାଇ ହାତୁଁ ହାଣ୍ଡକ ଯୁଡ଼ାକୁ,
ପିଠି ଅଧିକ ପଛରେ ବଶୁଛି ପଦାକୁ ।
ଗୁରବେଣୀ ଚନ୍ଦ୍ରହାର, ସୁଟା ଅବା ଗୋଠ,
ଲମ୍ବରେ କୁଅ ଦଉଡ଼ୀଠାରୁ କଛି ଖୋଟ ।
ଗୋଡ଼ରେ ପାହୁଡ଼, ଖଡୁ, ବଳା, ବେଙ୍ଗପାଟିଆ,

ଦଶ ଅଙ୍ଗୁଳିରେ ଅଛି (ଦଶ ଦ୍ୱିଗୁଣେ) କୋଡ଼ିଏ ଝୁମ୍ପିଆ ।
ପାଦପଦ୍ମ, ପାଉଁଜି ଅଳଙ୍କା(ର)ପାଟୀ
ଝୁମୁକାଲଗା ମୁଦିଟା କରେ ଭାରି ଘାଟି ।
ଯାଇ ଗଲେ ଗରବିଣୀ ନ ଦିଶଇ ପଥ,
ବଡ଼ଦାଣ୍ଡେ ଗଲେ ଯେହ୍ନେ ଜଗନ୍ନାଥ ରଥ ।
ଗୁଣ୍ଡିମିଶା ପାନଖିଲେ ଗାଲ ଯାଏ ଫାଟି,
ପାନବୋଳ ଲାଗି କଳା ଦିଶେ ଦାନ୍ତପାଟି ।
ଏପରି ରମଣୀ ଯେବେ ନ ଦେଖିଛ ଭାଇ,
ଦେଖ ଦେଖ ଓଡ଼ିଆଣୀ ଯାଇଁ ଗାଁକୁ ଥାଇ । (୨)
କେ ଦେଖିବ ଦେଖ ଅସି ଓଡ଼ିଆ ରମଣୀ,
ଦୁଃଖ କାଳେ ଗୀର; ଦ୍ୱନ୍ଦ ସେ ଘରଣୀ ।
ଭାତ, ତୁଣ, ଡାଲି, ଭଜା, କାଞ୍ଜି, ଖିରି, ପିଠା,
ଅରିସା, ସରୁଚକା, ଶାଗଭାଜ, ଯାଉ ମିଠା,
ଘରେ ବାଢ଼େ ଉଦରରେ ଲକ୍ଷ୍ମୀରୂପେ ବାଳୀ,
ବ୍ରତପର୍ବେ ଓଷାବାରେ କରେ ଅଟକାଳି,
ଚକୁଳି, ଗଇଣ୍ଠା, ମଣ୍ଡା, ଆରିସା, କାକରା,
ଏଣ୍ଡୁରି, ଛୁଞ୍ଚିପତର, ଘାଣ୍ଟିଆ, ସାଜର ।
ରଜାପୁଅ, ମନ୍ତ୍ରୀପୁଅ, ସାଧବୋହୂ, କଥା,
ତ୍ରୀ ତ୍ରିମାର୍ଲୀ ପ୍ରବାଦ ବ୍ରତ ଉପକଥା,
ବୁଧବାର, ଯମଓଷା, ଭଉପୋଇ ବ୍ୟଥା,
ଦ୍ୱିତୀୟାଓଷା କଥାରେ ମହାସମରଥା ।
ଅନ୍ତର୍ଲିପି, ବହିର୍ଲିପି, ନେପଯୁକ୍ତ ଅବ,
ପଦ୍ମବନ୍ଧ, ନାଗବନ୍ଧ, ଗୋମୂତ୍ର ଛନ୍ଦାଦି,
ଗୀତଦୀପିକା ବିଶ୍ୱ ଅବା ଅଭିମନ୍ୟୁ ବ୍ୟୂହ,
ଚଉପାଢ଼ୀ କାନ୍ଥେ ଲେଖେ ଯେନ ପୁଅ ଝିଅ ।
ବାଷଣା ତୃଣରେ କେହି କାହିଁ ସମସର,
କାଉଁଞ ପଞ୍ଜୁରୀ ତୃଣ ଦ୍ୱନ୍ଦ କାରିଗର ।
ଚନ୍ଦନ ଘୋଷିବା, ଲୁଗାଲୁଚା, ପାନଭଙ୍ଗା,
ଧାନମେଣ୍ଟି ତୁଣି ଘର ମଥାନରେ ଟଙ୍ଗା,
ଦଇଭରି ଡେନାଥାଉ ଦ୍ୱଳଦ ଲଗାଇ
ଘର କେଳ ବଦ କହି ବୁଲେ ଘାଇ ଘାଇ ।
ଖାଉଥାଏ ଘିଅ ଗୋଡ଼ ଲଦାଇଣ ବସି,
ସଞ୍ଜୁଳୀ ପାଖରେ ଦୁଇ ଜଣ ଘଡ଼ି ବସି ।
ଏପରି ରମଣୀ ଯେବେ ନ ଦେଖିଛ କାନ୍ତା,
ଦେଖ ଦେଖ ଯାଇଁ ଅସି ଓଡ଼ିଆ ଲଳନା । (୩)
କେ ଦେଖିବ ଦେଖ ଅସି ଓଡ଼ିଆ ରମଣୀ
ଓଡ଼ିଆକୁ ଘଦ କରେ ଯେ କାଚ ଝୁଣ୍ଟୁଣୀ ।
ଅଶେଷ ଯୌତୁକ ବାପଘରୁ ନେଇ ଯାନ୍ତି,
କଷ୍ଟରେ ଉଣାହେଲେ ଗାଳିକୁ ପଠାନ୍ତି ।
ଯାହାର ଖାଆନ୍ତି ତାର ରଟନ୍ତି ବଦ୍ନାମ,
ରାଗିଗଲେ ମଣ୍ଡକୋଡ଼ି ଅର୍ଜନ୍ତି ନେକ୍ନାମ ।
କାହାଣ ବେଳେ ବାଟୁଳି ନ ଗଡ଼େ ତୁଣ୍ଡେ
କହୁଅରେ ହାରଗଲେ ପିଟୁଥାନ୍ତି ମୁଣ୍ଡେ ।
ଓଷାବାରେ ବ୍ରତପର୍ବେ ବନ୍ଧୁଗଣ ବଳ
ସାଉପାଣ୍ଡି ମିଳ ଦେଉଥାନ୍ତି ହୁଳହୁଳି ।
ହମେଷା କନ୍ଦୋଳ କରି ଯାଆ ବୋହୂ ସଙ୍ଗେ,
ଦୁଃଖେ ଶୋକେ ରାଗିଣୀରେ ବାନ୍ଧୁଛନ୍ତି ରଙ୍ଗେ ।
ତୁଥାରେ ଠେଙ୍ଗାନ୍ତି ପିଲା କରି ଘୋର ଗୋଳ,
ଅନ୍ୟ ଛୁଇଁ ଦେଲେ ହୋଇ ବିଷମ କନ୍ଦୋଳ ।
ବସାନ୍ତି ସେ ପାର୍ଲେମେଣ୍ଟ ମିଳ ଯଥା ତଥା,
ଗାଧୁଆ ଘାଟରେ ହୁଏ ସବୁ ଘର କଥା ।
ବାହି ବାମ ହେଲେ ଯେବେ ରାଗିଯାଏ ବାଳୀ
ଛତ୍ରୁଣୀ ଗୋକଣା ମଧ ଖାଉ ଥାନ୍ତି ଗାଳି ।
ବାଇଶ ପାହାଚେ ଯାଇଁ ସଙ୍ଗାତ ବସଇ,
ପ୍ରାଣାନ୍ତେ ସଙ୍ଗାତ ନାମ ତୁଣ୍ଡେ ନ ଧରଇ ।
ଟୁରୁକାନ ଥିଲେ ଡାକେ 'ଚୁନ୍ ଚୁନ୍' କରି,
ଅତି ଅଳପ ଲୋକଙ୍କୁ ଡାକେ ନାମ ଧରି ।
ଘରେ ଥିଲାବେଳେ ଲାଜେ ପଡ଼ ସଢ଼ି ଯାନ୍ତି,
ଯାତ୍ରାଗର୍ତ୍ତେ ଗଲେ ଘୋର ନିର୍ଲଜ୍ଜ ହୁଅନ୍ତି ।
ଜଗନ୍ନାଥ ସ୍ୱଦରେ ଲୁଚ ସ୍ୱାମୀ ପାଶେ ଯିବା,
ଯାଇଁ ଯାଇଁ କରି ଘର ଚୁମ୍ବନ କହିବା,
ଘର ନ ପାହୁଣୁ ଉଠି ଲୁଣ୍ଡଣ ପଳାଇ,
କାଳେ କେହି ସ୍ୱାମୀ ସଙ୍ଗେ ଦେବ ତାକୁ ଚାହିଁ ।
ଶାଶୁଘରେ ଜଣେ ପଣି ଲାଜେ ସିଜୁଥାଇ
ବାପଘରେ ପାନ ଖାଇ ବୁଲେ ଘାଇ ଘାଇ ।
ଏପରି ରମଣୀ ଯେବେ ନ ଦେଖିଛ କାନ୍ତା ;
ଦେଖ ଦେଖ ଯାଇଁ ଅସି ଓଡ଼ିଆ ଲଳନା । (୪)

ଶ୍ରୀ—

# ମୂଲ୍ୟ ପ୍ରାପ୍ତ ।

୧୮୯୮

ଶ୍ରୀଯୁକ୍ତ ... ଦ୍ୱିବେଦୀ ଅନୁଗୁଳ ଟ ୬ ୧

୧୮୯୯ ଶେଷ ପର୍ଯ୍ୟନ୍ତ ।

" କପିଳେଶ୍ୱର ମିଶ୍ର କଟକ ଟ ୨ ୧
" ଭଗବାନଚରଣ ଦାସ ଅନୁଗୁଳ ଟ ୪ ୧
" ବାଳକୃଷ୍ଣ ଦାସ " ଟ ୨ ୧
" ଅଦ୍ୱୈତଚରଣ ମହାପାତ୍ର ଢେଙ୍କାନାଳ ଟ ୩ ୧
" ଅକ୍ଷୟଚନ୍ଦ୍ର ଗୁପ୍ତ " ଟ ୨ ୧
" ଦୀନବନ୍ଧୁ ହରିଚନ୍ଦନ କଟକ ଟ ୧ ୧
" ରାଜା ସାହେବ ମଞ୍ଜୁଷା ଟ ୬ ୧

୧୯୦୦ ସାଲ ଶେଷ ପର୍ଯ୍ୟନ୍ତ ।

" ଫକୀରଚରଣ ସାହାଣୀ ବୋଦ ଟ ୮ ୧
" ଶ୍ରୀଚୈତନ୍ୟ ଚରଣ ଜେନା କଟକ ଟ ୧ ୧
" ହରେକୃଷ୍ଣ ମିଶ୍ର " ଟ ୧ ୧
" ରାଜକିଶୋର ଦାସ " ଟ ୧ ୧
" ଭଗବାନ ମିଶ୍ର " ଟ ୧ ୧
" ଇନ୍ଦୁଭୂଷଣ ଘୋଷ " ଟ ୧ ୧
" ଶ୍ରୀନିବାସ ସିଂହ ଅନୁଗୁଳ ଟ ୪ ୧
" ଜଗନ୍ନାଥ ରଥ " ଟ ୪ ୧
" ସୁଦର୍ଶନ ପଟ୍ଟନାୟକ " ଟ ୪ ୧
" ନାଗୁଣି ପଟ୍ଟନାୟକ " ଟ ୪ ୧
" ମଧୁବାବା ମିଶ୍ର " ଟ ୪ ୧
" ନରେନ୍ଦ୍ରକିଶୋର ଦାସ " ଟ ୨ ୧
" ଗୋପୀନାଥ ଅଧିକାରୀ ଟିକାଲି ଟ ୨ ୧
" ବୈଦ୍ୟନାଥ ମିଶ୍ର କଟକ ଟ ୧ ୧
" ଗୋପୀନାଥ ରାଜଗୁରୁ ପାରଳାଖେମିଣ୍ଡି ଟ ୨ ୧
" ନନ୍ଦନମୋହନ ପଟ୍ଟନାୟକ କଟକ ଟ ୨ ୧
" ନଫରଚରଣ ମହାପାତ୍ର ନୀଳଗିରି ଟ ୨ ୧
" ଚକ୍ରଧର ଦାସ କୁଆଁଗାଁ ଟ ୧ ୧
" ବ୍ରହ୍ମାନନ୍ଦ ପାଣିଗ୍ରାହୀ " ଟ ୨ ୧
" ରଘୁନାଥ ସିଂହ ବେଲ୍ସିନ ଟ ୪ ୧

୬ମ ବର୍ଷର ଅଗ୍ରିମ ସାହାଯ୍ୟ ।

ଶ୍ରୀଯୁକ୍ତ ବଳରାମ ବହିଦାର ବନାଇ ଟ ୧ ୧
" କରୁଣାକର ପଣ୍ଡା କଟକ ଟ ୦ ୧
" ରଘୁନାଥ ଦାସ " ଟ ୧ ୧
" ଜଗତସେନ ଦାସ " ଟ ୦ ୧
" ମନୋରଥର ଦାସ " ଟ ୦ ୧
" ବୈଦ୍ୟନାଥ ପଟ୍ଟନାୟକ କଲିକତା ଟ ୦ ୧
" ବୈଷ୍ଣବଚରଣ ପଟ୍ଟନାୟକ କଟକ ଟ ୦ ୧
" କିଶୋରଚନ୍ଦ୍ର ବାବୁ ସମ୍ବଲପୁର ଟ ୧ ୧
" ଚନ୍ଦ୍ରମୋହନ ମହାରଣା ପୁରୀ ଟ ୨ ୧
" ବାଲୁକେଶ୍ୱର ମିଶ୍ର ବଲାଙ୍ଗୀର ଟ ୨ ୧
" କୃଷ୍ଣପ୍ରସାଦ ମହାନ୍ତି " ଟ ୨ ୧
" ଭରତ ନାୟକ " ଟ ୧ ୧
" ବାସୁଦେବ ମିଶ୍ର କଟକ ଟ ୦ ୧
" ଅଦ୍ୱୈତଚରଣ ପଟ୍ଟନାୟକ " ଟ ୧ ୧
" ମହାରାଜା ଚକ୍ରଧର ପୁର ଟ ୬ ୧
" ମହାରାଜା ସରାଇକଲା ଟ ୬ ୧
" ରାଜାସାହେବ ବଣାମ୍ବା ଟ ୬ ୧
" ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓ ବାରିପଦା ଟ ୪ ୧
" ଶ୍ରୀରାମଚନ୍ଦ୍ର ଭଞ୍ଜ ଦେଓ " ଟ ୪ ୧
" ଯୁବରାଜ ଶ୍ରୀନିବାସ ଦେଓ ମଞ୍ଜୁଷା ଟ ୬ ୧
" ରାଜା ସାହେବ ଦଶପଲ୍ଲା ଟ ୬ ୧
" ତାରିଣୀଚରଣ ରଥ ବ୍ରହ୍ମପୁର ଟ ୧ ୧
" ବିଶ୍ୱନାଥ ଜଗଦେବ ଅଳ ଟ ୪ ୧
" ରାଜାସାହେବ ସୁକିନ୍ଦା ଟ ୮ ୧
" ରାଜାସାହେବ ପାରଳାଖେମିଣ୍ଡି ଟ ...
" ରାଧାନାଥ ପାଢ଼ୀ ମେଦିନୀପୁର ଟ ୪ ୧
" ରାଣୀସାହେବ ଜାଜପୁର ଟ ୬
" ରାଜାସାହେବ ଚାନ୍ଦବାଲି ଟ ୮
" ଫକୀରମୋହନ ସେନାପତି କଟକ ଟ ୮

# ଅଙ୍କପ୍ରଶ୍ନ ସମାଧାନ ।

ମୂଲ୍ୟ ଆଠଅଣା ।

ଶ୍ରୀଯୁକ୍ତ ରାୟ ରାଧାନାଥ ରାୟ ବାହାଦୁର ମହୋଦୟ ଏ ପୁସ୍ତକ ସମ୍ବନ୍ଧରେ ଲେଖି ଅଛନ୍ତି:—

"ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓଙ୍କ ସଙ୍କଳିତ "ଅଙ୍କପ୍ରଶ୍ନ ସମାଧାନ" ଓଡ଼ିଆ ଭାଷାରେ ଏହି ଶ୍ରେଣୀର ସର୍ବପ୍ରଥମ ପୁସ୍ତକ । ମଧ୍ୟମ ଶ୍ରେଣୀ ଏବଂ ଉଚ୍ଚପ୍ରାଥମିକ ବିଦ୍ୟାଳୟର ଛାତ୍ରମାନଙ୍କର ଗଣିତାନୁଶୀଳନର ସମ୍ୟକ୍ ଉପଯୋଗୀ ଏଭଳି ଗ୍ରନ୍ଥ ଉନ୍ନତ ବଙ୍ଗ ପ୍ରଦେଶରେ ସୁଦ୍ଧା ଦୁର୍ଲଭ, ଓଡ଼ିଶାର ତ କଥା ନାହିଁ । ନିମ୍ନପ୍ରାଇମେରୀ ଛାତ୍ରମାନେ ମଧ୍ୟ ଏହାଦ୍ୱାରା ସମଧିକ ଉପକୃତ ହେବେ । ଏ ପୁସ୍ତକର ଅନୁଶୀଳନଦ୍ୱାରା ଶିକ୍ଷକମାନେ ମଧ୍ୟ ଗଣିତାଧ୍ୟାପନାରେ କୁଶଳତା ଲାଭ କରି ପାରିବେ । ଫଳତଃ ଜଟିଳ ଗଣିତ ଶାସ୍ତ୍ରରେ ବ୍ୟୁତ୍ପତ୍ତି ଲାଭ ବିଷୟରେ ଉତ୍କଳୀୟ ଛାତ୍ରବୃନ୍ଦଙ୍କ ପକ୍ଷରେ ଏ ପୁସ୍ତକ ଗୋଟିଏ ଅଭିନବ ରାଜପଥ ସ୍ୱରୂପ, ଏହା ମୁଁ ମୁକ୍ତକଣ୍ଠରେ କହିପାରେଁ ।"

ଯେଉଁମାନେ ୫ଖଣ୍ଡରୁ ୨୫ଖଣ୍ଡ ପର୍ଯ୍ୟନ୍ତ ନେବେ, ସେମାନଙ୍କୁ ଶତକଡ଼ା ୨୦ ଟଙ୍କା କମିସନ ଦିଆଯିବ ।

---

## ବିଜ୍ଞାପନ ।

ଅମ୍ଭେ ସମ୍ପ୍ରତି ଗୋଟିଏ ପୁସ୍ତକ ଦୋକାନ ଫିଟାଇ ନାନାପ୍ରକାର ପ୍ରୟୋଜନୀୟ ଓଡ଼ିଆ ପୁସ୍ତକ ଉଚିତ ମୂଲ୍ୟରେ ବିକ୍ରୟ କରୁଅଛୁଁ । ଅମ୍ଭଠାରୁ କେହି ଟ ୫୦ ରୁ ଅଧିକ ମୂଲ୍ୟର ପୁସ୍ତକ କ୍ରୟ କଲେ ଶ୍ରୀଯୁକ୍ତ ନନ୍ଦକିଶୋର ବଳ ବି,ଏ, ଙ୍କ ପ୍ରଣୀତ ପଲ୍ଲୀଚିତ୍ର ନାମକ ସୁନ୍ଦର କବିତା ପୁସ୍ତକ ଖଣ୍ଡିଏ ଉପହାର ପାଇ ପାରିବେ ।

ମଫସଲର କ୍ରେତାମାନଙ୍କଠାରୁ ଭିଃ ପିଃ ପୋଷ୍ଟରେ ପୁସ୍ତକ ପଠାଯାଇ ଥାଏ ।

ଶ୍ରୀ ବୃନ୍ଦାବନ ମିଶ୍ର ।
ନନ୍ଦପଡ଼ା, ସମ୍ବଲପୁର ।

---

## ବିତରଣ ।

(୧) ନବବିଧାନ ପ୍ରସଙ୍ଗ (ବଙ୍ଗଳା) (୨) *Faith and Culture in the New Dispensation Brahmo Samaj* (୩) *The Religion of Keshub Chunder Sen* ଏହି ତିନିଖଣ୍ଡି ପୁସ୍ତକ ବିତରଣ କରିବାକୁ ପ୍ରସ୍ତୁତ ଅଛୁ । ବୁଢାବାଟ (କଟକ) ବାବୁ ରାଜମୋହନ ଦାସଙ୍କ ନିକଟରେ ମିଳିବ । ଦୁଇ ପଇସାର ଷ୍ଟାମ୍ପ ପଠାଇଲେ ମଫସଲର ପ୍ରାର୍ଥୀମାନେ ତିନିଖଣ୍ଡି ପୁସ୍ତକ ଏକତ୍ର ପାଇ ପାରିବେ ।

---




## ମାସିକପତ୍ର ଓ ସମାଲୋଚନ।

୫ମ ଭାଗ ।　　ଆଷାଢ଼ ୧୩୦୮　　୩ୟ ସଂଖ୍ୟା ।

—:×:—

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ ।

—o:○:o—

ପ୍ରବନ୍ଧମାନଙ୍କ ମତ ନିମନ୍ତେ ଲେଖକମାନେ ଦାୟୀ ।



—:×:—

CUTTACK.

PRINTED BY V. KAR,

AT THE UTKAL SAHITYA RESS.

1901.

# ବିଜ୍ଞାପନ ।

ଚତୁର୍ଥ ବର୍ଷର 'ଉତ୍କଳସାହିତ୍ୟ' ବନ୍ଧା ହୋଇ
ବିକ୍ରୟାର୍ଥ ପ୍ରସ୍ତୁତ ଅଛି ।

ଉତ୍କୃଷ୍ଟ ବନ୍ଧା ଟ ୨୲

ସାଧାରଣ ,, ଟ ୨ ।

—(※)—

୧୯୦୨ ସାଲର ମାଇନର ସ୍କଲରସିପ୍ ପରୀକ୍ଷା ନିମନ୍ତେ ବୋଧୋଦୟ ପରିବର୍ତ୍ତରେ ବାଲ୍ୟପାଠ ନିର୍ବାଚିତ ହୋଇଅଛି । ପରୀକ୍ଷାର୍ଥୀ ଛାତ୍ରମାନଙ୍କର ସାହାଯ୍ୟ ନିମନ୍ତେ ଅମ୍ଭେ ଏହାର ଏକ ଅର୍ଥପୁସ୍ତକ ପ୍ରକାଶ କରୁଅଛୁଁ । ମୂଲ୍ୟ ଟ ୦ /୨ ।

ଅମ୍ଭ ନିକଟରେ ବିଦ୍ୟାଳୟମାନଙ୍କର ସକଳ ପ୍ରକାର ପାଠ୍ୟପୁସ୍ତକ ଓ କାଗଜ କଲମ ପ୍ରଭୃତି ବିକ୍ରୟାର୍ଥେ ପ୍ରସ୍ତୁତ ଅଛି । ମଫସଲର କ୍ରେତାମାନଙ୍କ ଠାରୁ ଭି: ପି: ପୋଷ୍ଟରେ ପୁସ୍ତକାଦି ପ୍ରେରିତ ହୁଏ । କେହି ୫ ଟଙ୍କାରୁ ଊର୍ଦ୍ଧ୍ୱ ମୂଲ୍ୟର ପୁସ୍ତକ କ୍ରୟ କଲେ ଯଥୋଚିତ କମିଶନ ଦିଆ ଯାଏ ।

ଶ୍ରୀ ରାମକୃଷ୍ଣ ରାଓ ।
ଗଣେଶମନ୍ଦିର, କଟକ ।

---

ଶ୍ରୀ ନନ୍ଦକିଶୋର ବଳ ବି, ଏ, ପ୍ରଣୀତ "ପଲ୍ଲୀଚିତ୍ର" (ମୂଲ୍ୟ ଟ°।୵) "ନିର୍ଝରିଣୀ" (ମୂଲ୍ୟ ଟ° ।) "ସୀତାବନବାସ" (ମୂଲ୍ୟ ଟ°।୵) ଓ "କୁହୁକୁମାରୀ" (ମୂଲ୍ୟ ଟ°।୵) କଟକର ସମସ୍ତ ବଡ଼ ବଡ଼ ପୁସ୍ତକ ଦୋକାନରେ, ସମ୍ବଲପୁର ନନ୍ଦପଡ଼ାର ଶ୍ରୀ ବୃନ୍ଦାବନ ମିଶ୍ରଙ୍କଠାରେ ମିଳେ । ଶ୍ରୀଯୁକ୍ତ ରାୟ ରାଧାନାଥ ରାୟ ବାହାଦୁର ମହୋଦୟ ଲେଖି ଅଛନ୍ତି ।

"His 'Pallichitra,' 'Nirjharini' and 'Sitabanabasa' are replete with passages of great beauty and tenderness and as such can challenge comparison with the best poetical compositions extant in the Oriya language"

---

ନୂତନ ପୁସ୍ତକ ।

ଶ୍ରୀମଦ୍ ଭାଗବତ ମାହାତ୍ମ୍ୟ ।

ମୂଳସଂସ୍କୃତ ଏବଂ ସରଳ ଉତ୍କଳାନୁବାଦ ଏକତ୍ର ପ୍ରକାଶିତ ହୋଇଅଛି । ୧୨୧ ପୃଷ୍ଠାରେ ସମାପ୍ତ ଅଥଚ ମୂଲ୍ୟ ଅତି ସୁଲଭ—ଟ° ।୵ ମାତ୍ର ।

କଟକର ସମସ୍ତ ପୁସ୍ତକ ଦୋକାନମାନଙ୍କରେ, ଏବଂ ଅମ୍ଭନିକଟରେ ମିଳିବ ।

ନନ୍ଦିକା ରାଜବାଟୀ, କଟକ । } ଶ୍ରୀ ନିତ୍ୟାନନ୍ଦ ଅଧିକାରୀ ପ୍ରକାଶକ ।

---

ଉତ୍କଳମଧୁପର ଉପହାର ।

"ଉତ୍କଳମଧୁପ" ମାସିକ ପତ୍ରିକାର ବାର୍ଷିକ ମୂଲ୍ୟ ଏଗାର ଅଣା ପଠାଇ ଦେଇ ଗ୍ରାହକ ହେଲେ ୪୭ ପୃଷ୍ଠାରେ ସମାପ୍ତ ଋତୁମୋହିନୀ ଚରିତ ଉପହାର ଦିଆଯିବ । ଭି: ପି: ରେ ଉପହାର ପଠାଯାଇ ମୂଲ୍ୟ ଆଦାୟ କରାଯାଇ ପାରେ । ଏ ସୁବିଧା ଅଳ୍ପ ଦିନ ପାଇଁ ।

ମେନେଜର, ଉତ୍କଳମଧୁପ
ଦେବଗଡ଼, ପୋ: ସମ୍ବଲପୁର ।

---

ବିତରଣ ।

(୧) ନବବିଧାନ ପ୍ରସଙ୍ଗ (ବଙ୍ଗଳା)
(୨) *Faith and Culture in the New Dispensation Brahmo Samaj*
(୩) *The Religion of Keshub Chunder Sen*
(୪) *The Gospel of Love.*

ଏହି ଖାରଖଣ୍ଡି ପୁସ୍ତକ ବିତରଣ ନିମିତ୍ତ ପ୍ରସ୍ତୁତ ଅଛି । ଚୁଡ଼ାହାଟ (କଟକ) ବାବୁ ରାମମୋହନ ରାୟଙ୍କ ନିକଟରେ ମିଳିବ । ଦୁଇ ପଇସାର ଡାକଟିକଟ ପଠାଇଲେ ମଫସଲର ପ୍ରାର୍ଥୀମାନେ ଉକ୍ତଖଣ୍ଡି ପୁସ୍ତକ ଏକତ୍ର ପାଇ ପାରିବେ ।

---

# ନୂତନ ଆୟୋଜନ ।

ସର୍ବସାଧାରଣଙ୍କ ଅବଗତ ନିମିତ୍ତ ପ୍ରକାଶ କରୁଅଛୁଁ ଯେ ଆମ୍ଭେ ସନ ୧୮୯୭ ମସିହାରୁ ଏହି ସହରର ବାଲୁବଜାରରେ ଡାକ୍ତରି ଔଷଧାଳୟ ସ୍ଥାପନ କରି ସୁଖ୍ୟାତି ସହିତ ଚିକିତ୍ସା ବ୍ୟବସାୟ ଚଳାଇ ଆସୁଅଛୁଁ । ଆମ୍ଭ ଔଷଧାଳୟରେ ସର୍ବଦା ନୂତନ ଔଷଧ ଓ ଡାକ୍ତରି ଅସ୍ତ୍ର ବିକ୍ରୟାର୍ଥେ ପ୍ରସ୍ତୁତ ଥାଏ, ଅଥଚ ଆମ୍ଭେ ସେ ସମସ୍ତ ଅଶାନୁରୂପ ସୁଲଭ ମୂଲ୍ୟରେ ବିକ୍ରୟ କରିଥାଉଁ । ଯେଉଁମାନେ ଆମ୍ଭ ସହିତ କାରବାର କରିଅଛନ୍ତି ଓ କରୁଅଛନ୍ତି, ସେମାନେ ଆମ୍ଭର ବ୍ୟବହାର କଥା ଉତ୍ତମରୂପେ ଜାଣନ୍ତି । ବୃଥା ବାଗାଡମ୍ବରରେ କିଛି ପ୍ରୟୋଜନ ନାହିଁ ।

ସମ୍ପ୍ରତି ଆମ୍ଭର ହିତାକାଙ୍କ୍ଷୀ କେତେକ ଭଦ୍ରବ୍ୟକ୍ତିଙ୍କ ଅନୁରୋଧରେ ସର୍ବସାଧାରଣଙ୍କୁ ସୁଲଭ ମୂଲ୍ୟରେ ଖାଣ୍ଟି ନୂତନ ଔଷଧ ପ୍ରଚୁର ପରିମାଣରେ ଯୋଗାଇବା ଅଭିପ୍ରାୟରେ ବ୍ୟବସାୟର ପ୍ରସାର ବଢ଼ାଇ ଅଛୁଁ । ପୂର୍ବାପେକ୍ଷା ଅଧିକ ପରିମାଣରେ ସର୍ବପ୍ରକାର ପ୍ରୟୋଜନୀୟ ଔଷଧ ଓ ଡାକ୍ତରି ଅସ୍ତ୍ର ସର୍ବଦା ପ୍ରସ୍ତୁତ ରଖିବାର ବିହିତ ବନ୍ଦୋବସ୍ତ କରିଅଛୁଁ । ଆମ୍ଭ ସହିତ କାରବାର କଲେ କେହି କୌଣସି ପ୍ରକାରେ ପ୍ରତାରିତ ହେବେ ନାହିଁ । ଆମ୍ଭେ ଅନ୍ୟ ବ୍ୟକ୍ତିଠାରେ ଭାର ଦେଇ ନିଶ୍ଚିନ୍ତ ନ ରହି ନିଜେ ସମସ୍ତ ବିଷୟ ପୁଙ୍ଖାନୁପୁଙ୍ଖରୂପେ ଦେଖି ବ୍ୟବସ୍ଥା କରିଥାଉଁ । ଇଚ୍ଛା କଲେ ବହୁମାନ୍ୟଗଣ୍ୟ ବ୍ୟକ୍ତିଙ୍କଠାରୁ ପ୍ରଶଂସାପତ୍ରସଂଗ୍ରହ କରି ସର୍ବସାଧାରଣଙ୍କ ଗୋଚରାର୍ଥ ପ୍ରକାଶ କରିପାରୁଁ । କିନ୍ତୁ ସେଥିର ଫଳ କଣ ? କାର୍ଯ୍ୟକାଳରେ ଭଲ ମନ୍ଦ ସ୍ୱରୂପେ ପ୍ରକାଶ ପାଏ । ଆମ୍ଭେ ଆଉ ଅଧିକ କିଛି ନ କହି ସର୍ବସାଧାରଣଙ୍କୁ ପ୍ରାର୍ଥନା କରୁଅଛୁଁ, ଲୋକେ ନିଜେ ପରୀକ୍ଷା କରି ସତ୍ୟ ମିଥ୍ୟା ନିର୍ଣ୍ଣୟ କରନ୍ତୁ ।

ମଫସଲବାସିମାନଙ୍କଠାକୁ ଆମ୍ଭେ ଭି: ପି: ପାର୍ଶେଲରେ ଔଷଧ ପଠାଇ ଥାଉଁ । ମାତ୍ର ଅପରିଚିତ ଲୋକମାନଙ୍କଠାରୁ ଚତୁର୍ଥାଂଶ ମୂଲ୍ୟ ଅଗ୍ରିମ ନ ପାଇଲେ ପଠାଇବାର ନିୟମ ନାହିଁ ।

ଶ୍ରୀ ନଗେନ୍ଦ୍ରନାଥ ଘୋଷ, ଜି, ଏଲ୍, ଏମ୍, ଏସ୍,
ସ୍ୱତ୍ୱାଧିକାରୀ
ଘୋଷ ଏଣ୍ଡ ବ୍ରଦର୍ସ ଡ୍ରଗିଷ୍ଟ ହଲ୍, ବାଲୁବଜାର,
କଟକ ।

# ଉତ୍କଳ ସାହିତ୍ୟ ।

—:o:—

ଅପୂର୍ବ ମିଳନ ।

(ଐତିହାସିକ ଉପନ୍ୟାସ ।)

୧

## ସୁବାଦାର ଅଲିବର୍ଦ୍ଦି ଖାଁ ।

ନବାବ ଅଲିବର୍ଦ୍ଦିଙ୍କ ସମୟରେ ସୁବେ ବଙ୍ଗଳା ମରହଟ୍ଟାମାନଙ୍କଦ୍ୱାରା କିରୂପେ ବିପଦ୍‌ଗ୍ରସ୍ତ ହୋଇ ଥିଲା, ତାହା ଇତିହାସବେତ୍ତାମାନେ ବିଶେଷରୂପେ ଅବଗତ ଅଛନ୍ତି । ନବାବ ଦେଖିଲେ ରାଜ୍ୟରକ୍ଷାର ଆଉ ଉପାୟ ନାହିଁ । ବିପଦରାଶି ତାହାଙ୍କୁ ଗ୍ରାସ କରିବା ନିମନ୍ତେ ଚତୁର୍ଦ୍ଦିଗରୁ ବେଢ଼ି ଆସୁଅଛି । ଗତ ଦୁଇ ବର୍ଷର ଖଜଣା ଦିଲ୍ଲୀସରକାରରେ ପୈଠ ହୋଇ ନାହିଁ । ମହମ୍ମଦ ସା ବାଦ୍‌ସାହଙ୍କ ତଲବ ପରୱାନା ଘେନି ମନସବ୍‌ଦାର ମୁରାଦ୍ ଖାଁ ମୁରଶିଦାବାଦରେ ବସି ଅଛି । ମହାରାଷ୍ଟ୍ର ପେଶବା ବାଲାଜୀ ରାଓ ଲେଖି ଅଛନ୍ତି, ତାଙ୍କ ପ୍ରାପ୍ୟ ଚୌଥ ଟଙ୍କା ଅବିଲମ୍ବେ ଆଦାୟ ନ କଲେ ସେ ଆପେ ଅସୁଲ କରିବାକୁ ଚେଷ୍ଟା କରିବେ । ସୁତରାଂ ତାଙ୍କ ସହିତ ସମର ଆସନ୍ନପ୍ରାୟ । ସେନାମାନେ ଉପଯୁକ୍ତ ସମୟରେ ବେତନ ନ ପାଇବାରୁ ନିତାନ୍ତ ଅବାଧ୍ୟ ହୋଇ ପଡ଼ିଅଛନ୍ତି । ବିଦେଶୀ ସୈନ୍ୟମାନେ ନୋକରିରେ ଇସ୍ତଫା ଦେଇ, କେହି କହିବୋଲି କେହି ବା କିଛି ନ କହି ଚାଲି ଯାଉଅଛନ୍ତି । ଏଣେ ଘରର ଢିଙ୍କି କୁମ୍ଭୀର ହୋଇ ବସିଲାଣି । ସେନାପତି ମିର ହବିବ୍ ପାଞ୍ଚ ହଜାର ସୈନ୍ୟ ସହିତ ମରହଟ୍ଟାଙ୍କୁ ବାଟ ଓଗାଳିବା ନିମନ୍ତେ ମେଦିନୀ ପୁରଠାରେ ଥିଲେ । ସେ ଶତ୍ରୁଦଳ ସହିତ ମିଶି ଗଲେଣି । ଭିନ୍ନବୁଦ୍ଧି ଅଲିବର୍ଦ୍ଦି ବୁଝିଲେ ସବୁ ଅମଙ୍ଗଳର ଏକମାତ୍ର ମୂଳ କାରଣ ଭାସ୍କରପଣ୍ଡିତ । ଭାସ୍କର ଶାସିତ ନ ହେଲେ ରାଜ୍ୟରକ୍ଷାର ଅନ୍ୟ ଉପାୟ ନିତାନ୍ତ ବିରଳ ।

ଭାସ୍କର ବାଲେଶ୍ୱର ବନ୍ଦରଠାରେ ସ୍ଥାୟୀରୂପେ ରହିଅଛନ୍ତି । ଏହି ଅଞ୍ଚଳରେ ନବାବଙ୍କ ଅଧିକାରର ଚିହ୍ନ ମାତ୍ର ନାହିଁ । ବାଲେଶ୍ୱରର ଫୌଜଦାର କତଲୁ ଖାଁ କେଉଁଝର ଜଙ୍ଗଲ ମଧ୍ୟରେ ଲୁଚି ରହି ଆତ୍ମରକ୍ଷା କରୁଅଛନ୍ତି । ଭାସ୍କରଙ୍କ ଘୋଡ଼ଚଢ଼ା ପାଇକମାନେ ମୁରଶିଦାବାଦ କାନ୍ଥି ମୂଳ ପର୍ଯ୍ୟନ୍ତ ଲୁଟତରାଜରେ ନିଯୁକ୍ତ ; ମେଦିନୀପୁର, ବର୍ଦ୍ଧମାନ, ହୁଗଲୀ, କାଟୋୟା, ନଦିଆ ପ୍ରଭୃତି ସ୍ଥାନର ପ୍ରଧାନ ପ୍ରଧାନ ଲୋକେ ଆପଣା ଆପଣା ଧନପ୍ରାଣ ଘେନି ଜାହାଙ୍ଗୀର ପୁର, ମାଲଦହ, ରାମ ପୁର ବୋୟାଲିଆ ପ୍ରଭୃତି ଅଗମ୍ୟ ସ୍ଥାନରେ ଲୁଚି ରହି ଅଛନ୍ତି । ପଠାଣମାନଙ୍କ ସପକ୍ଷତା କରି ବାଲେଶ୍ୱର ଅଞ୍ଚଳର ପତନୋନ୍ମୁଖ ଖଣ୍ଡାଏତମାନେ ନିର୍ମୂଳ ହୋଇ ଗଲେଣି । ସାଳନ୍ଦୀ କୂଳଠାରୁ ସୁବର୍ଣ୍ଣରେଖା କୂଳ ପର୍ଯ୍ୟନ୍ତ ସେମାନଙ୍କ ଚୌଧୁରାଇର ଚିହ୍ନ ମାତ୍ର ନାହିଁ । ଜାମକୁଣ୍ଡା ଗଡ଼ର ଦଳେଇ ରାଜାବ ଦଳଗଞ୍ଜନ, ସାହାବନଗରର ବିଜୟ ମଲ୍ଲ, ବାଲିପାଳର ହରିହର ମଲ୍ଲ, ଏମାନେ ମଲ୍ଲଭୂମି, ଶିଖରଭୂମି ପ୍ରଭୃତି ଜଙ୍ଗଲକୁ ପଳାଇ ଗଲେଣି । ଦକ୍ଷିଣ ଅଞ୍ଚଳର ଖଣ୍ଡାଏତମାନେ ନାଲିଗିରି, କୁଲ୍ଲୁଣ୍ଡା,

ବେଣାଗଡ଼ିଆ, କଇଫାଇ ପ୍ରଭୃତି ଅରଣ୍ୟ ସ୍ଥାନରେ ଲୁଚି ରହିଥାନ୍ତି । ସୁତରାଂ ଶତ୍ରୁର ପଶ୍ଚାତପ୍ରତି ଲୋଷ୍ଟ୍ରଟିଏ ମାତ୍ର ନିକ୍ଷେପ କରିବାକୁ କେହି ନାହିଁ । ବଙ୍ଗଳା ଦେଶ ମଧ୍ୟରେ କେବଳ କଲିକତା ସେହି ସମୟରେ ନିରୁପଦ୍ରବ ଥିଲା । ଇଷ୍ଟ ଇଣ୍ଡିଆ କୋମ୍ପାନୀ ନାମଧାରୀ ଏକଦଳ ଇଂରେଜ ସେ ସ୍ଥାନରେ ବାଣିଜ୍ୟରେ ନିଯୁକ୍ତ ଥିଲେ । ମରହଟ୍ଟାଙ୍କ ହସ୍ତରୁ ରକ୍ଷା ପାଇବା ନିମନ୍ତେ ସେମାନେ ଗୋଟିଏ ପରିଖା ଖୋଳାଇ ଥିଲେ । ତାହାର ନାମ ମରହଟ୍ଟା ଡିଚ ଏବଂ ତାହା ବର୍ତ୍ତମାନ ବିଦ୍ୟମାନ ଅଛି । ଇଂରେଜମାନଙ୍କର ଲୁଣ, ରେଶମ, ତସର, ଢାକାଇ ଓ ବାଲେଶ୍ୱରୀ ଲୁଗାର କାରବାର ଥିଲା । ସେହି କାରବାର ଉପଲକ୍ଷରେ ଦେଶୀୟ ଲୋକଙ୍କ ସହିତ ଇଂରେଜମାନଙ୍କର ପରିଚୟ । କାରବାରର ସୁବିଧା ତଥା ମରହଟ୍ଟାମାନଙ୍କ ହସ୍ତରୁ ରକ୍ଷା ପାଇବା ନିମନ୍ତେ ଦେଶୀୟ ପ୍ରଧାନ ପ୍ରଧାନ ଧନବନ୍ତ ଲୋକେ ବାସସ୍ଥାନ ନିର୍ମାଣପୂର୍ବକ କଲିକତାରେ ବାସ କରିବାକୁ ଆରମ୍ଭ କରିଥିଲେ । କଲିକତା ଛଡ଼ା ଆଉ କୌଣସି ସ୍ଥାନ ନିରାପଦ ନ ଥିଲା । କେଉଁ ଦିନ କେତେବେଳେ ମରହଟ୍ଟା ଘୋଡ଼ାଚଢ଼ା ପାଇକମାନେ ପଡ଼ି ଲୁଟ-ତରାଜ କରି ନେଇ ଯିବେ, ସମସ୍ତଙ୍କର ଏହି ଭୟ । ଗୃହ କରିବାକୁ ବେଳ ନାହିଁ— ବେପାର ବଣିଜ ବା କରିବ କିଏ ? ସୁତରାଂ ସରକାରୀ ଖଜଣା ଆଦାୟ ହେବାକୁ ନାହିଁ । ମୁରଶିଦାବାଦ ନବାବଙ୍କ ଭଣ୍ଡାର ଶୂନ୍ୟ ହୋଇ ପଡ଼ିଅଛି । ନବାବ ଅଲିବର୍ଦ୍ଦି ଖାଁ ଅନେକ ଚେଷ୍ଟା କରି ମୁରଶିଦାବାଦନିବାସୀ ବିଖ୍ୟାତ ଧନ-କୁବେର ଜଗତ ଶେଠଙ୍କୁ ଚିଠା ଲେଖି ଦେଇ ଅଶି ଲକ୍ଷ ଟଙ୍କା ଋଣ ନେଲେ । ସେହି ଟଙ୍କାରେ ସୈନ୍ୟମାନଙ୍କ ପିଛିଲା ଦରମା ଛିଣ୍ଡାଇ ଦେଲେ ଏବଂ ଆଗକୁ ବଢ଼ି ବଢ଼ି ଦରମା ଦେଲେ—ନୂତନ ସୈନ୍ୟ ମଧ୍ୟ ସଞ୍ଚୟ କଲେ ।

୨

## ସାମନ୍ତରାୟ ରାଘବ ରାଉତ ସିଂହ ଜଗଦେବ ବୈରଗଞ୍ଜନ ମାହାଙ୍ଗା ।

ଉତ୍କଳଗୌରବ-ରବିର ଚରମ କାଳ ପର୍ଯ୍ୟନ୍ତ ଛୋଟ ଛୋଟ ଦୁର୍ଗେଶ୍ୱର ଆପଣା ଆପଣା ପ୍ରଭୁତ୍ୱ ଏବଂ ମହିମା ଅକ୍ଷୁଣ୍ଣ ରଖିବାକୁ ସମର୍ଥ ହୋଇ ଥିଲେ । ଦକ୍ଷିଣରେ ପାରଳାକିମେଡ଼ି ଦୁର୍ଗେଶ୍ୱର— ଏମାନେ ଗଜପତି ରାଜବଂଶର ଶାଖାବିଶେଷ, ମାତ୍ର ଆମ୍ଭମାନଙ୍କ ଆଖ୍ୟାୟିକା ସହିତ ସମ୍ପର୍କ-ଶୂନ୍ୟ । ଉତ୍କଳର ଉତ୍ତରସୀମା ଜଲେଶ୍ୱର ରାଇବଣିଆ ଦୁର୍ଗର ତତ୍କାଳୀନ ଅଧିପତିଙ୍କ ନାମ ସାମନ୍ତ-ରାୟ ରାଘବ ରାଉତ ସିଂହ ଜଗଦେବ ବୈରଗଞ୍ଜନ ମାହାଙ୍ଗା । ଗୋଟିଏ ଦୁର୍ଗର ଅଧୀଶ୍ୱର, ଦଶ ହଜାର ପାଇକର ଅଧିପତି । ସୁତରାଂ ଅସାଧାରଣ ଲୋକର ଅସାଧାରଣ ନାମ ହେବା ଅଯୁକ୍ତ ନୁହେଁ । ମାତ୍ର ସଂକ୍ଷେପରେ କାର୍ଯ୍ୟ ସାଧନ ନିମନ୍ତେ ଆମ୍ଭେମାନେ ଏହାଙ୍କୁ ମାହାଙ୍ଗା ବୋଲି ଡାକିବୁଁ । ଉତ୍କଳ-କ୍ଷେତ୍ରରେ ମରହଟ୍ଟା ଓ ମୁସଲମାନଙ୍କ ସଂଘର୍ଷଣ ସମୟରେ ଆମ୍ଭମାନଙ୍କ ମାହାଙ୍ଗା ମୁସଲମାନ ପକ୍ଷ ଅବଲମ୍ବନ କରି ମଧ୍ୟ ନିରାପଦରେ ବାସ କରୁଥିଲେ । ତାହାର କାରଣ ରାଇବଣିଆ ଦୁର୍ଗ ପ୍ରସ୍ତରନିର୍ମିତ ସ୍ଥୂଳ ପ୍ରାଚୀର ଏବଂ ପରିଖାରେ ବେଷ୍ଟିତ । ପୁଣି ଦୁର୍ଗର ଚତୁର୍ଦ୍ଦିଗରେ ଘନସନ୍ନିବିଷ୍ଟ ବାଉଁଶବୁରୁଜ୍ କ୍ରୋଶ ବ୍ୟାପି ବିସ୍ତୃତ ଥିବାରୁ ଶତ୍ରୁପକ୍ଷରେ ବିଶେଷରେ ଅଶ୍ୱାରୋହୀ ମରହଟ୍ଟା ସୈନ୍ୟପକ୍ଷରେ ଅଗମ୍ୟ ଥିଲା । ତହିଁ ଉପରେ ଏହାଙ୍କର ଯେଉଁ ଦଶ ହଜାର ଖଣ୍ଡାଏତ ପାଇକ ଥିଲେ ସେମାନେ ବୀର, ଶିକ୍ଷିତ ଏବଂ ଅନଳସ । ସେମାନେ ଦୁର୍ଗେଶ୍ୱରଙ୍କ-ଠାରୁ ନଗଦ ବେତନ ପାଉ ନ ଥିଲେ । ପ୍ରତ୍ୟେକ ଜଣର ସ୍ୱତନ୍ତ୍ର ସ୍ୱତନ୍ତ୍ର ଜାଗିର ଥିଲା । ପ୍ରତ୍ୟେକ ଜଣ ଆପଣା ଆପଣା ଭୂଖଣ୍ଡରେ ଅଧୀଶ୍ୱର ଥିଲେ । ପାଇକମାନେ ସର୍ବଦା ଦୁର୍ଗରେ ଉପସ୍ଥିତ ନ ଥାନ୍ତି, ଦୁର୍ଗ ମଧ୍ୟରେ ସାଙ୍କେତିକ

କାଗଜ ବାହେଲେ ଅବଲୋକନ ଉପସ୍ଥିତ ହୁଅନ୍ତି ।

ଉତ୍କଳଖଣ୍ଡରେ ମରହଟ୍ଟାମାନଙ୍କ ଶେଷ ପର୍ଯ୍ୟବେକ୍ଷଣ ଏବଂ ସେମାନେ ଯେପରି ସୁବର୍ଣ୍ଣରେଖା ପାର ହୋଇ ସହଜରେ ବଙ୍ଗଦେଶରେ ପ୍ରବେଶ କରି ନ ପାରନ୍ତି ସେଥିର ଯତ୍ନ କରିବା ନିମନ୍ତେ ମୁରଶିଦାବାଦ ଦରବାରରୁ ମାନ୍ଧାତା ସନନ୍ଦ ଏବଂ କର୍ମଦା ଚକଲା ଇନାମସ୍ୱରୂପ ପ୍ରାପ୍ତ ହୋଇଥିଲେ । ମାନ୍ଧାତା ଆପଣା କର୍ମରେ କ୍ରୁଟି କରି ନାହାନ୍ତି । ତାଙ୍କ ଯତ୍ନରୁ ମରହଟ୍ଟାମାନେ ସହଜରେ ସୁବର୍ଣ୍ଣରେଖା ପାର ହୋଇ ପାରୁ ନ ଥିଲେ । ସେମାନଙ୍କୁ ବାରଭୂମ ଜଙ୍ଗଲମହଲ ବାଟେ ବୁଲି ବଙ୍ଗଦେଶକୁ ଆସିବାକୁ ହେଉଥିଲା । ଏଥି ସକାଶେ ମରହଟ୍ଟା ଫୌଜଦାର ଶିବ ପଣ୍ଡିତ ସର୍ବଦା ମାନ୍ଧାତାଙ୍କ ପ୍ରତି ଅସନ୍ତୁଷ୍ଟ । ମାତ୍ର ନାନା କାରଣରୁ ତାହାଙ୍କୁ ଶାସନ କରିବାକୁ ସୁଯୋଗ ପାଇ ନ ଥିଲେ ।

ଶ୍ରୀ ମୂର୍ତ୍ତି ।

---

ଧର୍ମବିଜ୍ଞାନ । (୩)

ବର୍ତ୍ତମାନ ଦେଖାଯାଉ, ଅଜ୍ଞେୟତାବାଦୀ ପଣ୍ଡିତଗଣ ଯେ ଏହି ମହାଭ୍ରାନ୍ତି-ଜାଲରେ ପତିତ ହୋଇଅଛନ୍ତି, ତାହାର ମୂଳ କାରଣ କଣ ? ଅନନ୍ତ ଅସୀମ ପରମ ବ୍ରହ୍ମଙ୍କୁ ଜାଣିବା ସମ୍ଭବ ନୁହେଁ,—ସେମାନଙ୍କର ଏହି ଉକ୍ତିର କାରଣ ଅନୁସନ୍ଧାନ କଲେ ଦେଖାଯାଏ ଯେ ଏମାନେ ମାନବଚିତ୍ତର ଅତୀତ, ଜ୍ଞାନର ସହିତ ସମ୍ପର୍କରହିତ ଏବଂ ଜୀବ ଓ ଜଗତ ସଙ୍ଗରେ ସକଳ ପ୍ରକାର ସମ୍ବନ୍ଧବର୍ଜିତ ଗୋଟିଏ ଦେବତା ମନେ ମନେ ଗଠନ କରି ତାହାଙ୍କୁ ଧାରଣା କରିବାପାଇଁ ଅଗ୍ରସର ହୁଅନ୍ତି ଏବଂ ବିଫଳପ୍ରଯତ୍ନ ହୋଇ ଉପଦେଶ ଦିଅନ୍ତି ଯେ ତାହାଙ୍କୁ ଜାଣିବା ଅସମ୍ଭବ ସୁତରାଂ ତାହାଙ୍କୁ ବର୍ଜ୍ଜନ କର । ଏମାନେ ଅଲୀକ ବସ୍ତୁଟିକୁ ଧରିବାକୁ ଚେଷ୍ଟା ନ କରି କଳ୍ପନାର ପଶ୍ଚାତରେ ଦୌଡ଼ି ଅଛନ୍ତି । ସୁତରାଂ ବିଫଳମନୋରଥ ହେଉଅଛନ୍ତି । ଯାହା କେବେ ହେବ ନାହିଁ, ତାହାପାଇଁ ଯତ୍ନ ବୃଥା । ଜ୍ଞାନରାଜ୍ୟର ବହିର୍ଦ୍ଦେଶରେ ରହିବା ଯାହାର ପ୍ରକୃତ, ଜ୍ଞାନ ତାହାକୁ ଧରି ପାରେ ନାହିଁ । ଏହାଦ୍ୱାରା ଜ୍ଞାନର କୌଣସି ଅକ୍ଷମତା ସୂଚିତ ହେଉ ନାହିଁ । ମୁଁ ମୋହର ବନ୍ଧୁଙ୍କର ଏକାନ୍ତ ନିକଟସ୍ଥ ନ ହୋଇ ତାଙ୍କ ସଙ୍ଗରେ ଦେଖା କରି ପାରେ ନାହିଁ, ଏଥିରେ ମୋହର କୌଣସି ଶକ୍ତିର ବା ମନର କୌଣସି ଦୁର୍ବଳତା ପ୍ରକାଶ ପାଉ ନାହିଁ, କାରଣ ବନ୍ଧୁ ସଙ୍ଗରେ ଦେଖା କରିବା ଅର୍ଥ ତାଙ୍କର ଏକାନ୍ତ ନିକଟସ୍ଥ ହେବା । ଜ୍ଞାନର ଅବିଷୟ ହୋଇ ରହିବା ଯାହାର ପ୍ରକୃତି ବୋଲି ନିର୍ଦ୍ଦେଶ କରୁଅଛ, ତାହାକୁ ଜ୍ଞାନର ବିଷୟ କରିବାକୁ ଗଲେ ଯେ ତାହାର ଅସ୍ତିତ୍ୱ ବିନାଶ କରିବ ହେବ ଏବଂ ଏ ପ୍ରକାର ଚେଷ୍ଟା ଯେ ସର୍ବଥା ନିଷ୍ଫଳ ହେବ ତାହା କିଏ ଅସ୍ୱୀକାର କରିବ ? ଯାହାକୁ ଜ୍ଞାନର ଅବିଷୟ ବୋଲି କଳ୍ପନା କରୁଅଛ, ସେ ଯେ ଜ୍ଞାନର ବିଷୟରୂପେ ଗୃହୀତ ହୋଇପାରେ ନାହିଁ, ଏହା ତ ସ୍ୱତଃସିଦ୍ଧ । ଏମାନଙ୍କ ଧାରଣା ଏହି ଯେ ଏପରି ଗୋଟିଏ ବସ୍ତୁ ଅଛି ଯାହା ଜ୍ଞାନର ବାହାରେ ଥାଏ କିନ୍ତୁ ଜ୍ଞାନମଧ୍ୟରେ ପରିବର୍ତ୍ତନ ଉତ୍ପାଦନ କରେ, ଜ୍ଞାନ ତାହାକୁ ଧରିବାମାତ୍ରେ ସେ ସ୍ୱୀୟ ପ୍ରକୃତିବିଚ୍ୟୁତ ହୁଏ, ସୁତରାଂ ଆମ୍ଭମାନଙ୍କର ଜ୍ଞାନରେ ଆମ୍ଭେମାନେ ଆଉ ପ୍ରକୃତ ବସ୍ତୁଟିକୁ ପାଉ ନାହିଁ । ବର୍ତ୍ତମାନ ପ୍ରଶ୍ନ ଏହି, ଜ୍ଞାନର ବାହାରେ ରହିଲେ ଯାହାର ଅସ୍ତିତ୍ୱ ବଜାଏ ରହେ, ସେ ଜ୍ଞାନ ଭିତରେ କାର୍ଯ୍ୟ କରେ କିପରି ? ଜ୍ଞାନ ଭିତରେ ପରିବର୍ତ୍ତନ ଉତ୍ପାଦନ କରିବାକୁ ହେଲେ ଅବଶ୍ୟ ତାହାକୁ ଜ୍ଞାନର ସଙ୍ଗରେ ସମ୍ବନ୍ଧଯୁକ୍ତ ହେବାକୁ

ପଡ଼ିବ । ଯଦି କିଛି ଜ୍ଞାନର ସଂସର୍ଗରେ ଏମାନେ ଗୋଟିଏ ବିକୃତ ଆକାର ପ୍ରାପ୍ତ ହୁଏ, ତାହାହିଁ ଏହି ପରିବର୍ତ୍ତନପଦବାଚ୍ୟ, ତେବେ ବକ୍ତବ୍ୟ ଏହି ଯେ ଦୁଇଟି ସ୍ୱତନ୍ତ୍ର ବସ୍ତୁ (ଯେଉଁମାନେ ପରସ୍ପରର ବାହାରେ ଥାନ୍ତି) ଯେତେବେଳେ ଏକତ୍ର ହୁଅନ୍ତି, ସେତେବେଳେ ଏପରି ଗୋଟିଏ ତୃତୀୟ ବସ୍ତୁର ପ୍ରୟୋଜନ, ଯାହା ସେମାନଙ୍କର ସମ୍ମିଳନଭୂମି, ଯାହା ଏହି ଉଭୟଙ୍କର ଅତୀତ କିନ୍ତୁ ଉଭୟଙ୍କୁ ଧାରଣ କରି ରହିଅଛି । ସେହି ତୃତୀୟ ବସ୍ତୁଟି କିଏ ? ଏହାର ଅସ୍ତିତ୍ୱ ଯେବେ ସ୍ୱୀକାର କର ତେବେ ତୁମ୍ଭର 'ଅସୀମ' ଆଉ 'ସସୀମ' ରହିଲେ ନାହିଁ, ପୁଣି ଯଦି ଏହାର ଅସ୍ତିତ୍ୱ ସ୍ୱୀକାର ନ କର, ତେବେ ତୁମ୍ଭର 'ଅସୀମ' ଜ୍ଞାନ ମଧ୍ୟରେ କୌଣସି ପରିବର୍ତ୍ତନ ଉତ୍ପାଦନ କରେ ନାହିଁ । ସୁତରାଂ ଯେଉଁ ବହିର୍ଜଗତର କାର୍ଯ୍ୟ ଦେଖି ତାହାର କାରଣରୂପୀ, ତାହାର ଅଜ୍ଞେୟରୂପୀ ଏହି 'ଅସୀମ' କଳ୍ପନା କରିବାକୁ ଯାଇଥିଲ—ଯାହା ଜ୍ଞାନର ସୀମାର ବାହାରେ ଅବସ୍ଥିତ କରେ, ସେ କିନ୍ତୁ କାରଣତ୍ୱର ଦାବି କରିପାରେ ନାହିଁ । ଆହୁରି ଗୋଟିଏ କଥା—ଜ୍ଞେୟ ଓ ଅଜ୍ଞେୟର ମଧ୍ୟରେ କୌଣସି ସମ୍ବନ୍ଧ ସ୍ଥାପିତ ହୋଇପାରେ ନାହିଁ । ସ୍ପେନ୍ସର କହନ୍ତି, ଏହି ସସୀମ ଜ୍ଞେୟ ଜଗତ୍ ଅସୀମ ଅଜ୍ଞେୟ ବ୍ରହ୍ମଠାରୁ ନିଷ୍ପନ୍ନ ହୋଇଅଛି । ଏହି ଜ୍ଞେୟ ଏବଂ ଜ୍ଞାତ ଜଗତ୍‌ରୂପ କାର୍ଯ୍ୟର କାରଣ ଏହି ଅଜ୍ଞେୟ ଓ ଅଜ୍ଞାତ ବ୍ରହ୍ମ । ଯେ ଅଜ୍ଞେୟ ସେ ଯେ କାରଣ ତାହାର ପ୍ରମାଣ କିଣ ? ଏହି ଯେ କାର୍ଯ୍ୟକାରଣରୂପ ସମ୍ବନ୍ଧ, ଏହାର କାର୍ଯ୍ୟ ଏକ ପକ୍ଷ, କାରଣ ଅନ୍ୟପକ୍ଷ । ଉଭୟ ପକ୍ଷହିଁ ସମାନ ପରିମାଣରେ ଅପରିହାର୍ଯ୍ୟ । ଏହି ସମ୍ବନ୍ଧଟି ଜ୍ଞାନର ଆଭ୍ୟନ୍ତରିକ ସମ୍ବନ୍ଧ, ଜ୍ଞାନର ବାହାରେ ଏ ସମ୍ବନ୍ଧ କଳ୍ପିତ ହୋଇପାରେ ନାହିଁ । ସୁତରାଂ ଏ ସମ୍ବନ୍ଧର ଏକ ଅଙ୍ଗ ଜ୍ଞାନ ରାଜ୍ୟର ବାହାରେ ଥାଇ ନ ପାରେ । ଉଭୟହିଁ ଜ୍ଞାନର ଭିତରେ ଅବସ୍ଥିତ । ସୁତରାଂ 'ସସୀମ'ର କାରଣ 'ଅସୀମ' ଜଗତ୍‌କାରଣ ବ୍ରହ୍ମ ଅଜ୍ଞେୟ ହେବେ କିପରି ? ଅଜ୍ଞେୟ ହେଲେ ସେ କାରଣ ନୁହନ୍ତି, କାରଣ ହେଲେ ସେ ଆଉ ଅଜ୍ଞେୟ ହୋଇ ନ ପାରନ୍ତି ; ସ୍ପେନ୍ସର ବ୍ରହ୍ମଙ୍କୁ କାରଣ କହିଅଛନ୍ତି, ସୁତରାଂ ସେ ଅଜ୍ଞେୟ ନୁହନ୍ତି । ଯାହାହେଉ, ଏମାନଙ୍କ ଭ୍ରମର କାରଣ ଆମ୍ଭେମାନେ ଇତଃପୂର୍ବରୁ ନିର୍ଦ୍ଦେଶ କରିଅଛୁଁ । ବ୍ରହ୍ମ ଯଦି ଆମ୍ଭମାନଙ୍କ ଜ୍ଞାନର ଅବିଷୟ ହୁଅନ୍ତେ, ତେବେ ତାହାଙ୍କ ସମ୍ବନ୍ଧରେ 'ହଁ' ବା 'ନା' କିଛିହିଁ ସମ୍ଭବ ହୁଅନ୍ତା ନାହିଁ, ତାହାଙ୍କ ଅସ୍ତିତ୍ୱର ସମ୍ବାଦ ଆମ୍ଭେମାନେ ପାନ୍ତୁ ନାହିଁ । ଏମାନେ ଏପରି ଗୋଟିଏ କାଳ୍ପନିକ ବସ୍ତୁ ଯେନି ଆନ୍ଦୋଳନ କରୁଅଛନ୍ତି, ଯାହା ବାସ୍ତବିକ ଜ୍ଞାନର ଅବିଷୟ, ଯାହାର କୌଣସି ଅସ୍ତିତ୍ୱ ନାହିଁ ; ଆଉ ଜ୍ଞାନ ଏହାକୁ ଜାଣି ପାରେ ନାହିଁ ବୋଲି କହୁଅଛନ୍ତି ଯେ ଜ୍ଞାନର ଏପରି ଗୋଟିଏ ପ୍ରକୃତିଗତ ଅକ୍ଷମତା ଅଛି ଯେ ସେ ବ୍ରହ୍ମଙ୍କୁ ଜାଣି ପାରେ ନାହିଁ । ସେହି ବ୍ରହ୍ମ ବସ୍ତୁ ବା କିଏ, ଯାହା ଜ୍ଞାନର ବାହାରେ ଅବସ୍ଥିତ, ଆଉ ସେହି ବସ୍ତୁଟା ବା କିଏ, ଯାହା ଜ୍ଞାନ ଭିତରକୁ ଆସି ବିକୃତ ଲଭେ ? ଏପରି କି କୌଣସି ବସ୍ତୁ ଅଛି, ଯାହା ଜ୍ଞାନର ବାହାରେ ଅବସ୍ଥିତ? ଏପରି କି କୌଣସି ବସ୍ତୁ ଅଛି, ଯାହାକୁ ଜ୍ଞାନ ଗ୍ରହଣ କରି ପାରେ ନାହିଁ? ଯଦି ଥାଏ, ତାହାର ସମ୍ବାଦ କିଏ ଦେଲା ? ଆମ୍ଭେମାନେ କି ଏପରି କିଛି ଜାଣି ପାରୁଁ, ଯାହା ଆମ୍ଭମାନଙ୍କ ଜ୍ଞାନର ବିଷୟ ନୁହେଁ? ଦୁଇଟି ବ୍ରହ୍ମ କଳ୍ପନା କରାଯାଇ ନପାରେ ଯହିଁମଧ୍ୟରୁ ଗୋଟିଏ ଜ୍ଞାନର ଅତୀତ ବସ୍ତୁ, ଅପରଟି ତାହାର ବିକୃତରୂପ—ଜ୍ଞାନର ବିଷୟ । ଏହି ଯେ ଜ୍ଞାନର ଅତୀତ ବସ୍ତୁ କଳ୍ପନା କରୁଅଛ, ତାହା ମଧ୍ୟ ଜ୍ଞାନର ବିଷୟ । ଜ୍ଞାତା ନିଜର ଅତୀତ ହୋଇ କିଛି ଜାଣିପାରେ ନାହିଁ । ଜ୍ଞେୟ କେବେହେଁ ଜ୍ଞାତାଠାରୁ ସ୍ୱତନ୍ତ୍ରଭାବରେ ଅବସ୍ଥିତ କରେ ନାହିଁ । ବସ୍ତୁ ପକ୍ଷରେ ଅବସ୍ଥାନ କରିବା ଆଉ ଜ୍ଞାତ ହେବା ଏକ କଥା । ଆମ୍ଭେମାନେ ଏପରି କୌଣସି ଜ୍ଞାତ

କଳ୍ପନା କରି ନ ପାରୁଁ, ଯେ ଏପରି କୌଣସି ବସ୍ତୁ ଜାଣୁଅଛୁ ଯାହା ତାହାର ଜ୍ଞାନର ବିଷୟ ନୁହେ । ଆମ୍ଭେମାନେ ଯାହା କିଛି କଳ୍ପନା କରୁଁ, ତାହା ମଧ୍ୟରେ ଜ୍ଞାତା ଓ ଜ୍ଞେୟ ଏହି ଦୁଇ ପକ୍ଷ ନିଶ୍ଚୟ ଥିବ । ଏମାନେ ପରସ୍ପର ଅଚ୍ଛେଦ୍ୟ ଯୋଗରେ ଅବଦ୍ଧ । ଆମ୍ଭେମାନେ କଳ୍ପନା-ବଳରେ ଏମାନଙ୍କୁ ବିଭିନ୍ନ କରି ଦେଖି ପାରୁଁ, କିନ୍ତୁ ଏମାନଙ୍କଠାରେ ପୃଥକ୍ ଅସ୍ତିତ୍ୱ ଆରୋପ କରି ନ ପାରୁଁ । ଆମ୍ଭେମାନେ ଗୋଟିଏ ବୃତ୍ତର କେନ୍ଦ୍ରଠାରୁ ପରିଧିକୁ ଭିନ୍ନ କରି ଦେଖି ପାରୁଁ, କିନ୍ତୁ ଏପରି କୌଣସି ବୃତ୍ତ କଳ୍ପନା କରି ନ ପାରୁଁ, ଯାହାର ପରିଧି ଅଛି କିନ୍ତୁ କେନ୍ଦ୍ର ନାହିଁ, ଅଥବା କେବଳ କେନ୍ଦ୍ର ଅଛି କିନ୍ତୁ ପରିଧି ନାହିଁ । ଗୋଟିଏ ପତ୍ରର କେବଳ ଏକ ପୃଷ୍ଠା କଳ୍ପନା କରିବା ଯାହା, ଜ୍ଞାତାକୁ ଛାଡ଼ି ଜ୍ଞେୟ କଳ୍ପନା କରିବା ତାହା । ସୁତରାଂ ଜ୍ଞାନର ବାହାରେ ଅବସ୍ଥିତ କୌଣସି ବସ୍ତୁର ଅସ୍ତିତ୍ୱ କଳ୍ପନା କରିବା ପ୍ରୟାସଟା ଅତିରିକ୍ତ ମାତ୍ରାରେ କାଳ୍ପନିକ । ଏପରି କଳ୍ପନାରେ ବିଫଳପ୍ରଯତ୍ନ ହେଲେ ଜ୍ଞାନର ଅକ୍ଷମତା ପ୍ରକାଶ ପାଏ ନାହିଁ, ପରନ୍ତୁ ଏହାହିଁ ପ୍ରକାଶ ପାଏ ଯେ ଯାହାର କଳ୍ପନାରେ ପ୍ରବୃତ୍ତ ହୋଇଥିଲୁଁ, ତାହା ଅଜ୍ଞେୟ ବସ୍ତୁ ନୁହେ କିନ୍ତୁ ଶୂନ୍ୟ ମାତ୍ର, ଅର୍ଥାତ୍ କିଛି ନୁହେ । ସକଳ ବସ୍ତୁ ପକ୍ଷରେ ଯାହା, ବ୍ରହ୍ମଙ୍କ ପକ୍ଷରେ ମଧ୍ୟ ତାହା । ସେ ମଧ୍ୟ ଜ୍ଞାତା-ଜ୍ଞେୟରୂପ ସମ୍ବନ୍ଧର ବାହାରେ ଅବସ୍ଥିତ କରନ୍ତି ନାହିଁ । ଅବଶ୍ୟ ସେ ଦୁଇଟି ମଧ୍ୟରୁ କୌଣସି ଗୋଟିଏ ନୁହନ୍ତି । ଅଦ୍ୱିତୀୟ ଜ୍ଞାନବସ୍ତୁ ବ୍ରହ୍ମଙ୍କର ଜ୍ଞାତା ଓ ଜ୍ଞେୟ ଦୁଇ ଅଙ୍ଗ । ସେ ଜ୍ଞାତା ଓ ଜ୍ଞେୟ ଉଭୟ । ଅଥବା ସେ ଏହି ଜ୍ଞାତା ଓ ଜ୍ଞେୟ ଉଭୟର ଅତୀତ, ଏହି ଦୁହିଙ୍କର ସଂଯୋଗ-ରଜ୍ଜୁ ଜ୍ଞାନବସ୍ତୁ ସେହି ବ୍ରହ୍ମ । ସେ ନିଜେ ନିଜର ଜ୍ଞାନର ବିଷୟ । ସେ ଅନ୍ୟ କୌଣସି କ୍ଷୁଦ୍ରଜ୍ଞାନର ବିଷୟ ହୋଇ ପାରନ୍ତି ନାହିଁ । "ନ ତସ୍ୟାସ୍ତି ବେତ୍ତା ।" ଆମ୍ଭେମାନେ ଯେତେବେଳେ ତାହାଙ୍କୁ ଜାଣୁ ସେତେବେଳେ ସେହି ଜ୍ଞାନର ସାହାଯ୍ୟରେ ଜାଣୁ । ବ୍ରହ୍ମଜ୍ଞାନହିଁ ଆମ୍ଭମାନଙ୍କ ଜ୍ଞାନର ଭିତ୍ତି । ଏ ସକଳ କଥା ବିଶେଷଭାବରେ ପରେ ଆଲୋଚ୍ୟ ।

"ଜ୍ଞାନର ବାହାରେ ସତ୍ତା ଅଛି" ଏହି ଭ୍ରାନ୍ତ ଧାରଣାର କାରଣ ଅନୁସନ୍ଧାନ କଲେ ଦେଖିବୁ ଯେ ଏହା ମଧ୍ୟରେ ଟିକିଏ ସତ୍ୟର ଆଭାସ ଅଛି । ଆମ୍ଭମାନଙ୍କର ବ୍ୟକ୍ତିଗତ ଜ୍ଞାନରେ ଆର ବହି-ର୍ଦ୍ଦେଶରେ ଅନେକ ବସ୍ତୁ ରହିଅଛି । ସୁତରାଂ ସହଜରେ ଆମ୍ଭମାନଙ୍କର ମନେ ହୁଏ ଯେ ଜ୍ଞାନର ବାହାରରେ ବସ୍ତୁ ଅଛି । ଯେହେତୁ ଯେଉଁମାନେ ସେପରି ଚିନ୍ତାଶୀଳ ନୁହନ୍ତି ସେମାନଙ୍କ ନିକଟରେ ବ୍ୟକ୍ତିଗତ ଜ୍ଞାନର ବହିର୍ଦ୍ଦେଶ ଏବଂ ସମଷ୍ଟିରୂପେ ଜ୍ଞାନର ବହିର୍ଦ୍ଦେଶ ଏତଦୁଭୟ ମଧ୍ୟରେ କୌଣସି ବିଭିନ୍ନତା ନାହିଁ । କିନ୍ତୁ ନିତ୍ୟ ଜ୍ଞାନ ଓ ବ୍ୟକ୍ତିଗତ ଜୀବନରେ ତାହାର ପ୍ରକାଶ, ଏହି ଦୁଇ ବସ୍ତୁ କେବେହେଁ ଏକ ନୁହନ୍ତି । ସମସ୍ତ ବସ୍ତୁ ସମସ୍ତ ବିଷୟ ନିତ୍ୟ ଜ୍ଞାନରେ ଅବସ୍ଥିତ କରୁଅଛି, କିନ୍ତୁ ବ୍ୟକ୍ତିଗତ ଜୀବନରେ ଏହି ବିଷୟସମୂହର ପ୍ରକାଶ ମଧ୍ୟରେ ଗୋଟିଏ କ୍ରମ ଅଛି, କାଳର ପ୍ରଭାବ ଅଛି । ସୁତରାଂ ଆମ୍ଭମାନଙ୍କ ବ୍ୟକ୍ତିଗତ ଜ୍ଞାନର ବହିର୍ଦ୍ଦେଶରେ ବସ୍ତୁ ଅଛି, ଆମ୍ଭମାନଙ୍କ ବ୍ୟକ୍ତିଗତ ଜୀବନ ଆରମ୍ଭ ହେବା ପୂର୍ବରୁ ମଧ୍ୟ ବସ୍ତୁ ଥିଲା, ଏହା କହିଲେ ଏହି କଥା ପ୍ରମାଣିତ ହୁଏ ଯେ ଆମ୍ଭମାନଙ୍କର ଜୀବନ କାଳର ଅଧୀନ ଓ ଆମ୍ଭମାନଙ୍କ ଜ୍ଞାନର ବିଷୟ ସୀମାବଦ୍ଧ । କିନ୍ତୁ ଯେଉଁ ନିତ୍ୟ ଜ୍ଞାନବସ୍ତୁ ପ୍ରକାଶିତ ହୋଇ ଆମ୍ଭମାନଙ୍କର ଜୀବନକୁ ସମ୍ଭବ କରୁଅଛି ତାହା ଉପରେ କାଳର ପ୍ରଭାବ ବା ଜ୍ଞାନର ସୀମା କଳ୍ପିତ ହେଉ ନାହିଁ । ସୁତରାଂ ବ୍ୟକ୍ତିଗତ ଜ୍ଞାନର ବାହାରେ ବସ୍ତୁ ଥିଲେହେଁ ନିତ୍ୟ ଜ୍ଞାନର ବାହାରେ ବସ୍ତୁ ଥିବାର ପ୍ରମାଣିତ ହୁଏ ନାହିଁ । ନିତ୍ୟ ଜ୍ଞାନର ବାହାରେ ବସ୍ତୁ କଳ୍ପନା କଲେ ଜ୍ଞାତାର ବାହାରେ ଜ୍ଞେୟ କଳ୍ପିତ ହେଲା—

ବିଷୟକୁ ବିଷୟୀର ଅଙ୍ଗୀଭୂତ କରାଗଲା । ତାହାଦ୍ୱାରା ଯେ କେବଳ ନୈରାଜ୍ୟର ମୂଳଭିତ୍ତି ଉତ୍ପାଟିତ ହେଲା ତାହା ନୁହେ, ଜ୍ଞାନର ମଧ୍ୟ ମୂଳତତ୍ତ୍ୱ ସ୍ୱୀକୃତ ହେଲା । ଅମ୍ଭମାନଙ୍କର କ୍ଷୁଦ୍ର ଜ୍ଞାନକୁ ଜଗତର ହର୍ତ୍ତା, କର୍ତ୍ତା, ବିଧାତା ମନେ କରିବାରୁ ଏହି ମହାଭ୍ରାନ୍ତି ଉତ୍ପନ୍ନ ହୁଏ । କିନ୍ତୁ ଯେତେବେଳେ ଅମ୍ଭେମାନେ ବିଷୟକୁ ପରିତ୍ୟାଗ କରି ବିଷୟୀ ପ୍ରତି ଅଥବା ବିଷୟ ବିଷୟୀର ସଂଯୋଗସ୍ଥଳ ନିତ୍ୟ ଜ୍ଞାନବସ୍ତୁ ପ୍ରତି ଦୃଷ୍ଟିପାତ କରୁଁ, ସେତେବେଳେ ଏହି ଜ୍ଞାନର ବହିର୍ଦେଶରେ ସତ୍ତା କଳ୍ପନାର ଭ୍ରାନ୍ତି ବିଶେଷଭାବରେ ଉପଲବ୍ଧ ହୁଏ । ସେତେବେଳେ ଦେଖି ପାରୁଁ, ଯାହାକୁ ନିଜର ଜ୍ଞାନ କହୁଅଛୁଁ, ତାହା କାଳରେ ଉତ୍ପନ୍ନ ବା ଦେଶରେ ଅବଦ୍ଧ ନୁହେ । ଅମ୍ଭେମାନେ ଯାହାକୁ ବ୍ୟକ୍ତିଗତ ଜୀବନ କହୁଁ, ତାହା ଏହି ଜ୍ଞାନର ପ୍ରକାଶଦ୍ୱାରାହିଁ ସମ୍ଭବ ହୋଇଅଛି । ଏହି ଜ୍ଞାନର ସାହାଯ୍ୟରେ ଜାଣିପାରୁଁ ଯେ ଅମ୍ଭମାନଙ୍କର ବ୍ୟକ୍ତିଗତ ଜୀବନର ଗୋଟିଏ ଆରମ୍ଭ ଅଛି । ଏହି ଜ୍ଞାନ ଯଦି ବ୍ୟକ୍ତିଗତ ଜୀବନର ଅତୀତ ହୋଇ ନ ଥାନ୍ତା ତେବେ ଅମ୍ଭେମାନେ ଏହାର ଆରମ୍ଭ ଜାଣି ପାରନ୍ତୁ ନାହିଁ । ସୁତରାଂ ଏହି ଜ୍ଞାନ କାଳରେ ଆବଦ୍ଧ ନୁହେ । ଏହି ଜ୍ଞାନ ଆଡ଼କୁ ଯେତେବେଳେ ଦୃଷ୍ଟିପାତ କରୁଁ ସେତେବେଳେ ବୁଝିପାରୁଁ ଯେ ଏହାର ବାହାରେ ବସ୍ତୁ ନାହିଁ । ଅମ୍ଭେମାନେ ଯେତେବେଳେ ମନେକରୁଁ ଯେ ଅମ୍ଭମାନଙ୍କ ଜ୍ଞାନର ବାହାରେ ବସ୍ତୁ ଅଛି, ସେତେବେଳେ ଏହି ବସ୍ତୁକୁ ଅମ୍ଭମାନଙ୍କ ଜ୍ଞାନର ଅନ୍ତର୍ଗତ ବୋଲି ଭାବୁଁ, ନତୁବା ଏପରି ମନେ କରିବା ସମ୍ଭବ ହୁଅନ୍ତା ନାହିଁ । ସୁତରାଂ ଦେଶ ଓ କାଳ ଅମ୍ଭମାନଙ୍କ ଜ୍ଞାନର ଅନ୍ତର୍ଗତ ହୋଇ ପଡ଼ୁଅଛି । ଅତଏବ ନିତ୍ୟ ଜ୍ଞାନ ଓ ବ୍ୟକ୍ତିଗତ ଜ୍ଞାନ ଏ ଦୁହିଙ୍କ ମଧ୍ୟରେ ପ୍ରଭେଦ ଅନୁଭବ କରିବାରୁ "ଜ୍ଞାନର ବାହାରେ ବସ୍ତୁ ଅଛି" ଏହି ଭ୍ରମ ଉତ୍ପନ୍ନ ହେବାର ଯେ ସମ୍ଭାବନା ହୋଇଥିଲା, ତାହା ଏହି ସୂକ୍ଷ୍ମ ଦର୍ଶନଦ୍ୱାରା ତିରୋହିତ ହେଲା । ନିତ୍ୟ ଜ୍ଞାନ ଓ ବ୍ୟକ୍ତିଗତ ଜ୍ଞାନର ମୂଳ ଦେଶରେ କୌଣସି ବିଭିନ୍ନତା ନାହିଁ । ସେହି ନିତ୍ୟ ପୂର୍ଣ୍ଣ ଜ୍ଞାନହିଁ ଆଂଶିକ ଭାବରେ ଆପଣାକୁ ପ୍ରକାଶିତ କରି ଅମ୍ଭମାନଙ୍କର ଏହି ବ୍ୟକ୍ତିଗତ ଜୀବନଲୀଳା ରଚନା କରୁ ଅଛନ୍ତି ।

ଅମ୍ଭେମାନେ ଯେଉଁ ଜ୍ଞାନ ସାହାଯ୍ୟରେ ଜାଣୁ ଜଗତରେ ମଧ୍ୟ ସେହି ଜ୍ଞାନ ବର୍ତ୍ତମାନ, ଜଗତ ସେହି ଜ୍ଞାନର କାର୍ଯ୍ୟ, ଏତଦ୍ରୂପରେ ଏକଜ୍ଞାନ ବର୍ତ୍ତମାନ, ଏହି ଧାରଣା ସତ୍ୟ ନ ହେଲେ ବିଜ୍ଞାନ ଅସମ୍ଭବ ହୋଇ ଥାନ୍ତା । ଜଗତ ଜ୍ଞାନର କାର୍ଯ୍ୟ ବୋଲି ଏବଂ ଅମ୍ଭମାନଙ୍କର ଜ୍ଞାନ ସେ ଜ୍ଞାନ ସଙ୍ଗେ ଏକ ବୋଲି ବିଜ୍ଞାନ ନିୟମର ଅନୁସନ୍ଧାନରେ ପ୍ରବୃତ୍ତ ହୁଏ । ମାନବଜ୍ଞାନ ଯେତେବେଳେ ଜଗତକୁ ଆଲୋଚନା କରେ, ସେତେବେଳେ ସେ ଆପଣା ମଧ୍ୟରେ ଥାଏ, ବାହାରକୁ ଯାଏ ନାହିଁ । ଏହି ଯେ ଜ୍ୟୋତିର୍ବିତ୍ ପଣ୍ଡିତ ଆପଣା ଗୃହରେ ଅବଦ୍ଧ ଥାଇ ସ୍ୱୀୟ ଜ୍ଞାନର ନିୟମାନୁସାରେ ସ୍ଥିର କଲେ ଆକାଶର କୌଣସି ବିଶେଷ ସ୍ଥାନରେ ଗୋଟିଏ ଜ୍ୟୋତିଃପିଣ୍ଡ ଅବଶ୍ୟ ଅବସ୍ଥିତ କରୁଅଛି ଏବଂ ଦୂରବୀକ୍ଷଣ ସାହାଯ୍ୟରେ ଦେଖିଲେ ଠିକ୍ ସେହି ସ୍ଥାନରେ ତାଙ୍କର ଗଣନାନୁଯାୟୀ ଗୋଟିଏ ପିଣ୍ଡ ରହିଅଛି, ଦେଖି ଭକ୍ତି ଓ ବିସ୍ମୟର ସହିତ କହି ଉଠିଲେ— "O God, I think Thy thoughts after Thee." ଏଥିରେ ଅମ୍ଭେମାନେ କଣ ଦେଖିଲୁଁ ? ଦେଖିଲୁଁ, ଯେଉଁ ଜ୍ଞାନ ମାନବର ଜ୍ଞାନରୂପେ ପ୍ରକାଶିତ, ସେହି ଜ୍ଞାନରେ ଏହି ଜଗତ ଧୃତ ଓ ପରିଚାଳିତ । ଏହି ଜଗତ ଲୀଳା ସେହି ଅସୀମ ନିତ୍ୟ ଜ୍ଞାନର କ୍ରୀଡ଼ା ମାତ୍ର । ଏହି ଅନନ୍ତ ଅସୀମ ପୂର୍ଣ୍ଣ ନିତ୍ୟଜ୍ଞାନ ଯେ ସସୀମର ସହିତ ସମ୍ବନ୍ଧଯୁକ୍ତ ହୋଇ ଆପଣାକୁ କୌଣସି ପ୍ରକାରେ ହୀନ କରୁଅଛନ୍ତି, ତାହା ନୁହେ; କିନ୍ତୁ ଅମ୍ଭେମାନେ ପରେ ଦେଖିବୁଁ ଯେ ଏହିପରି କରିବାହିଁ ତାଙ୍କର ପ୍ରକୃତି, ଏହା ତାଙ୍କର ନିତ୍ୟ ଲୀଳାର ଅଂଶ ।

ଏହି ବୈଚିତ୍ର୍ୟପୂର୍ଣ୍ଣ ଜଗତ ତାଙ୍କର ମଧ୍ୟରେ ଅବସ୍ଥିତ, ଏହି ଜଗତ ତାଙ୍କର ଅଙ୍ଗୀଭୂତ । ସେ ଏହି ଜଗତକୁ ପରିତ୍ୟାଗ କରି କୌଣସି ଗିରିଗୁହାରେ ଲୁକ୍କାୟିତ ନୁହନ୍ତି । ସେ ଏହି ଜଗତକୁ ଆପଣା ମଧ୍ୟରୁ ଉତ୍ପନ୍ନ କରି ଆପଣା ଆଡ଼କୁ ଘେନ ଯାଉ ଅଛନ୍ତି । ଏଦ୍ୱାରା ଉତ୍ପତ୍ତି-ସ୍ଥାନ ବ୍ରହ୍ମ, ଗମ୍ୟସ୍ଥାନ ମଧ୍ୟ ବ୍ରହ୍ମ । ଯେଉଁମାନେ ମନେ କରୁଅଛନ୍ତି ବ୍ରହ୍ମ ବିଷୟ-ଜଗତର ସହିତ ସମ୍ବନ୍ଧ ହେଲେ ଆପଣାର ପ୍ରକୃତିଚ୍ୟୁତ ହେବେ, ଆମ୍ଭେମାନେ ଦେଖୁଅଛୁଁ ସେମାନେ ଭ୍ରାନ୍ତି-ତନ୍ତୁଦ୍ୱାରା ଜାଲ ନିର୍ମାଣ କରି ନିଜର ଜାଲରେ ନିଜେ ଆବଦ୍ଧ ହେଉଅଛନ୍ତି ଏବଂ ତତ୍ତ୍ୱକୁ ଅନ୍ଧକାରରେ ଜାଲର ମୁଖ ଏପରି ଶକ୍ତ କରି ଧରି ରଖି ଅଛନ୍ତି ଯେ ମନେ କରୁ ଅଛନ୍ତି, ତାହାର ବାହାରକୁ ଯିବାର ଅନ୍ୟ ପଥ ନାହିଁ । ତତ୍ତ୍ୱକୁ ଜାଲର ମୁଖବନ୍ଧ ଥିବାରୁ ଏହି ଲାଭ ହୋଇଅଛୁ ଅନ୍ୟ କେହି ସେହି ଜାଲରେ ଆବଦ୍ଧ ହେବେ ନାହିଁ । ଆମ୍ଭେମାନେ କିନ୍ତୁ ବାହାରେ ଦଣ୍ଡାୟମାନ ହୋଇ ଦେଖୁଅଛୁଁ;—

ବ୍ରହ୍ମୈବେଦମମୃତଂ ପୁରସ୍ତାତ୍ ବ୍ରହ୍ମ ପଶ୍ଚାତ୍ ବ୍ରହ୍ମ ଦକ୍ଷିଣତଶ୍ଚୋତ୍ତରେଣ । ଅଧଶ୍ଚୋର୍ଦ୍ଧ୍ୱଂ ପ୍ରସୃତଂ ବ୍ରହ୍ମୈବେଦଂ ବିଶ୍ୱମିଦଂ ବରିଷ୍ଠମ୍ । ମୁଣ୍ଡକ ।

କ୍ରମଶଃ

ଶ୍ରୀ ଧୀରେନ୍ଦ୍ରନାଥ ଚୌଧୁରୀ ।

## ଭାଗବତ ଟୁଙ୍ଗୀରେ ସନ୍ଧ୍ୟା । (୬)

ଆଜି ଟୁଙ୍ଗୀରେ ପଣ୍ଡିତମହାଶୟ, ମାଷ୍ଟର-ମହାଶୟ, ରାମଚନ୍ଦ୍ର ସର୍ବରାଜ, ମନ୍ତ୍ରୀରାମ୍ ଓ ମୁଁ ଉପସ୍ଥିତ ଥିଲୁଁ । ମୁଁ ମାଷ୍ଟରମହାଶୟଙ୍କୁ କହିଲି, "ମାଷ୍ଟର ମହାଶୟ ! ଆପଣ ପୂର୍ବ ସନ୍ଧ୍ୟାରେ ଉପସ୍ଥିତ ନ ଥିଲେ । 'ଦର୍ଶନ କାତର ଦୁଃଖୀଙ୍କ ମିଳନ' ଶୀର୍ଷକ ସର୍ବରାଜଙ୍କ ରଚିତ ପଦ୍ୟଟି ଶୁଣି ପାରିଲେ ନାହିଁ । ବଡ଼ ଦୁଃଖର ବିଷୟ ।"

ମାଷ୍ଟରମହାଶୟ—"ସର୍ବରାଜ ମଝେ ମଝେ ସେ poem (ପଦ୍ୟ)ଟି shew କରି (ଦେଖାଇ) ଥିଲେ । ପଦ୍ୟଟି ତେତେ good (ଭଲ) ଲାଗିଲା ନାହିଁ । ଭାଗବତ ଟୁଙ୍ଗୀ ବାପେ talk (ଗପ)ର place(ସ୍ଥାନ) । ସେଠାରେ ଏପରି poem (ପଦ୍ୟ) ପଢ଼ା ହେଲେ ଠିକ୍ 'ହାଟ ମଧ୍ୟରେ ବ୍ରହ୍ମଜ୍ଞାନ' ପରି ହୁଏ । ସେଥିକି ଖଣ୍ଡେ note (ଟୀକା)ପଣ୍ଡିତ ମହାଶୟଙ୍କ ସାହାଯ୍ୟରେ prepare (ପ୍ରସ୍ତୁତ) କରୁଛି ।"

ପଣ୍ଡିତମହାଶୟ—"ମଣିର୍ଲୁଣ୍ଠତି ପାଦେଷୁ କାଚଃ ଶିରସି ଧାର୍ଯ୍ୟତେ; ଯଥୈବାସ୍ତେ ତଥୈବାସ୍ତାଂ କାଚଃ କାଚଃ ମଣିର୍ମଣିଃ ।' 'ଅରସିକେଷୁ ରସସ୍ୟ ନିବେଦନଂ ଶିରସି ମାଲିଖ ମାଲିଖ ମାଲିଖ ।' 'ସ୍ୱସ୍ନାଦର୍ଥମୁପର୍ଜ୍ଜୟେସ୍ତୁ ହି ସର୍ବେ ବ୍ୟର୍ଥେନ ସର୍ବେ ବଶାଃ ।' ଏବଂଭୂତ କତିପୟ ଶ୍ଳୋକାନୁବାଦରେ ପାଣ୍ଡିତ୍ୟ ପ୍ରକାଶ କରି ସର୍ବରାଜଙ୍କେ ଯଶୋଲିପ୍ସୁ କରଅଛନ୍ତି । ମହାସ୍ତୁ କୌମାରୀ ପୂର୍ଣ୍ଣିମା ପଦ୍ୟଟି ଯଶୋଲିପ୍ସୁମାନଙ୍କର ଅନୁକରଣୀୟ ।"

ମୁଁ ଓ ସର୍ବରାଜ ଦେଖିଲୁଁ ଯେ ପଣ୍ଡିତମହାଶୟଙ୍କର ଆଜି 'ମହାଭାଗ ଦଅସିଲାଇ'ର ଅବସ୍ଥା, ଟିକିଏ ଘସି ଦେଲେ କେତେ ରକମର ଫୁଲ ଝଡ଼ିବାର ସମ୍ଭାବନା ! ମୁଁ ଦଅସିଲାଇ ଘସିବାକୁ ଆରମ୍ଭ କଲି ।

"ପଣ୍ଡିତ ମହାଶୟ, ଗତ ସନ୍ଧ୍ୟା କଥା ଅନ୍ୟ କାହିଁକି ପକାଉ ଅଛନ୍ତି ? ସେ ପଦ୍ୟଟି ଆପଣଙ୍କ ପଦ୍ୟଠାରୁ ଟାଉସ । ସେ କଥା ଛାଡ଼ନ୍ତୁ; ଅଜି ଆପଣଙ୍କଠାରୁ କେତେକ ବିଷୟ ଶୁଣିବାର ଇଚ୍ଛା । ସ୍ତ୍ରୀଶିକ୍ଷା ବିଷୟରେ ଆପଣଙ୍କ ମତ କଣ ?

ପଣ୍ଡିତ ମହାଶୟଙ୍କ Engine (କଳ) ଚାଲିଲା, "ସ୍ତ୍ରୀଶିକ୍ଷା ପ୍ରଚଳିତ ନ ହେବା ପର୍ଯ୍ୟନ୍ତ ସ୍ୱତନ୍ତ୍ରତେ

ଧ୍ୟାନ କରିବାକୁ ହେବ ନାହିଁ । ଧନୁର୍ବିଦ୍ୟାନଭିଜ୍ଞ ଛାତ୍ରମାନଙ୍କ ସମ୍ମୁଖରୁ ବଡ଼ଲୋକ ଓ ମଧ୍ୟବିତ୍ତ ମନୁଷ୍ୟମାନେ ପାନ ଓ ଗୃହସମର୍ଦ୍ଦନାଦରେ ଉଦ୍ଭ୍ୟ ନିଯୁକ୍ତ କରିବେ ଓ ନିରର୍ଥକମାନେ (ପଣ୍ଡିତ ମହାଶୟ ପଦ୍ଧବଲୋକ ଅର୍ଥରେ ଏ ଶବ୍ଦ ବ୍ୟବହାର କଲେ ପଗ ?) ନିଜେ ନିଜେ ରନ୍ଧନ ପରି-ବେଷଣାଦି କ୍ରିୟା ସମାପନ କରି ଶିକ୍ଷାପ୍ରାପ୍ତା ସ୍ତ୍ରୀମାନ-ଙ୍କର ଶଂକ୍ରହାଭୂତ ହେବେ । ହା କଷ୍ଟଂ ଖଳୁ ବର୍ତ୍ତତେ କଳିଯୁଗେ ଧନ୍ୟା ମୃତା ଯେ ନରାଃ । ବେଶି ଦିନ ରହିଲେ ବେଶି କଥା ଦେଖିବାକୁ ହୁଏ । ଆମ୍ଭର ବାଲ୍ୟାବସ୍ଥାରେ ସ୍ତ୍ରୀମାନେ ରାତ୍ରି ଦୁଇ ଦଣ୍ଡ ଥାଇଁ ଗାତ୍ରୋତ୍ଥାନ (ବୋଧହୁଏ ଗାତ୍ରୋତ୍ଥାନ) କରି ପ୍ରାତଃକୃତ୍ୟ ବହିର୍ଦ୍ଦେଶ ମାର୍ଜ୍ଜନାଦି ସମାପନାନ୍ତେ ଗ୍ରାମବାସିଙ୍କ ଅଜ୍ଞାତରେ ଗୃହକୁ ଅବର୍ତ୍ତିତା ହେଉଥିଲେ; ଆଜିକାଲି ନବାଗତା ବଧୂମାନେ ଦିନ ଦୁଇଘଡ଼ି ନ ହେଲେ ତୁଳତଳ୍ପ-ସହବାସ-ସୁଖ-ତ୍ୟାଗିନୀ ହେବାକୁ ଅନିଚ୍ଛୁକା । ପୂର୍ବେ ସ୍ତ୍ରୀମାନେ ଅର୍ଦ୍ଧବୃଦ୍ଧା ହେବା ପର୍ଯ୍ୟନ୍ତ ତାଙ୍କ କଣ୍ଠ-ଧ୍ୱନି କାହାର ଶ୍ରୁତିବିଷୟୀଭୂତ ହେଉ ନ ଥିଲା । ଅଧୁନା ନବାଗତା ବଧୂମାନେ ଶ୍ୱଶ୍ରୁ ପ୍ରଭୃତି ଗୁରୁ-ଜନମାନଙ୍କ ସଙ୍ଗେ ବାଗ୍‌ଯୁଦ୍ଧ କରିବାକୁ ଅକୁଣ୍ଠିତା ଓ ତାମ୍ବୂଲଖଣ୍ଡଦ୍ୱାରା ଦନ୍ତୋଷ୍ଠ ପକ୍ୱ କରି ବହି-ର୍ଦ୍ୱାରରେ ଦଣ୍ଡାୟିତା ହୋଇ ସ୍ୱାମିସହ ସଙ୍ଗୀତାଳାପ କଲେଣି । ଏହି ସ୍ୱାଧୀନତାଧୀନରେ ସଂସାରର ପରନ୍ତୁ ସମାଜର ଅମଙ୍ଗଳ । ଗୀତାରେ ଅର୍ଜ୍ଜୁନ କହିଅଛନ୍ତି 'ଅଧର୍ମାଭିଭବାତ୍ କୃଷ୍ଣ ! ପ୍ରଦୁଷ୍ୟନ୍ତି କୁଳସ୍ତ୍ରିୟଃ । ସ୍ତ୍ରୀଷୁ ଦୁଷ୍ଟାସୁ ବାର୍ଷ୍ଣେୟ ! ଜାୟତେ ବର୍ଣ୍ଣସଙ୍କରଃ ।' ଅଧୁନା 'ନାହଂବଶା ମାନବାଃ ।' ଆଜିକାଲି ମାଇପଙ୍କ ସ୍ୱାଧୀନତା ପରାକାଷ୍ଠାକୁ ଲଭିଲାଣି । ଏବେ ସ୍ତ୍ରୀମାନଙ୍କଠାରୁ ଭୟ କରି ଚଳିବାକୁ ବାଧ । ନବ୍ୟମାନେ ଅତିଶୟିତ ସ୍ତ୍ରୈଣ ହୋଇ ଅବଳାମାନଙ୍କୁ ବଳ ପ୍ରଦାନ କରୁ ଅଛନ୍ତି । ଅତଏବ 'କଳୌ ନମସ୍ତେ ।' ସ୍ତ୍ରୀମାନଙ୍କୁ ଶାସନ କରିବା ଦୂରରେ ଥାଉ, ସେମାନଙ୍କୁ ଜଗଜ୍ଜନନୀ ମଣି ପାଦପୂଜା କରୁ-ଅଛନ୍ତି ଓ ଗୁରୁଜନମାନଙ୍କ ସଙ୍ଗରେ ଯୁଦ୍ଧ କରିବାକୁ ମନ୍ତ୍ରଣା ଦେଉଅଛନ୍ତି । ତ୍ରିକାଳଜ୍ଞ ମହର୍ଷିମାନଙ୍କର ଭବିଷ୍ୟଦ୍‌ବାଣୀ କି ମିଥ୍ୟା ହେବ ?

ମର୍ଦ୍ଦରାଜେ କହିଲେ, "ପଣ୍ଡିତମହାଶୟ, ଆପଣ ଯାହା ଉତ୍କଳ କଲେଜର ସଂସ୍କୃତ ପ୍ରଫେସର୍ ନ ହେଲେ, ଏହା ଆମ୍ଭେମାନଙ୍କର ବିଷୟ ! ଆପଣଙ୍କର ବାଗ୍ମିତା 'ବାନ୍ଦର ପାଇରେ ମାଣିକ୍ୟ ପଡିବା ପରି ଏ ଟୁଙ୍ଗୀରେ ଅନାଦୃତ ହେଉଅଛି । ଆପଣ ଟିକିଏ ସ୍ଥିରଚିତ୍ତ, ଧୀରବୁଦ୍ଧିରେ ବିଚାର କରନ୍ତୁ ଯେ ଆପଣ ନିଜେ ଆପଣଙ୍କ ଯୁକ୍ତିଦ୍ୱାରା ପରାସ୍ତ ହେବେ । ଆପଣ କହୁଅଛନ୍ତି ଯେ କଳି-ଯୁଗରେ ସ୍ତ୍ରୀସ୍ୱାଧୀନତା ଘଟିବ ବୋଲି ତ୍ରିକାଳଜ୍ଞ ମହର୍ଷିମାନେ କହି ଯାଇ ଅଛନ୍ତି । ତାହା ଘଟିଲା ବୋଲି ଆପଣ କ୍ଷୋଭ କରୁଅଛନ୍ତି । ଆପଣଙ୍କ କହିବା ଅନୁସାରେ କଳିଯୁଗ ତ ସତ୍ୟଯୁଗ ହେବ ନାହିଁ । ଯାହା ଅବଶ୍ୟମ୍ଭାବୀ ତାହା ନିମନ୍ତେ କ୍ଷୋଭ କରିବା ଅସାର ପ୍ରଳାପ ଛଡ଼ା ଆଉ କିଛି ନୁହେଁ । ଯୁଗର ସ୍ରୋତ ବିରୁଦ୍ଧରେ ବକିବା କେବଳ ଅରଣ୍ୟରୋଦନ । ଆଧୁନିକ ସଭ୍ୟତା ସ୍ତ୍ରୀଶିକ୍ଷା ଓ ସ୍ତ୍ରୀସ୍ୱାଧୀନତାର ପକ୍ଷପାତୀ, ଯେଉଁମାନେ ସେମାନଙ୍କୁ ପିଞ୍ଜରବଦ୍ଧ ପକ୍ଷୀ କରିଥିଲ ସେହିମାନେ !"

ମନ୍ତ୍ରୀରାମ୍ କହିଲା "ପଣ୍ଡିତେ ! ତୁମେ ତ ବୁଢ଼ା ହେଲ, ବଳ ବୟସ ଗଲା, ସୁଖ କରି ପାରିଲ ନାହିଁ । ଏବେ ପିଲାଙ୍କ ସୁଖ ଦେଖି ମନ ରଖେଇ ଖଟେଇ ହଉଛ । ମୁଁ ମଧୁଆ ମାକୁ (ମନ୍ତ୍ରୀରାମ ପୁଅର ନାମ ମଧୁ) ଦିନେ ପଚାରିଲି, ହଇ ଲୋ, ତୁ ବୋହୂକୁ ଏତେ ଅବସ୍ଥା ଦଉଛୁ କାହିଁ ? ସେ କହିଲା, ମୋ ଶାଶୁ ମତେ ଯେତେ ଅବସ୍ଥା ଦେଇଥିଲା, ମୁଁ ତାକୁ ଶୁଝୁଛି ପରା । ଧନ୍ୟ ରେ କାଳ ! ବାପ ମା ଆପଣା ପୁଅ ବୋହୂଙ୍କ ସୁଖ ଦେଖି ନ ପାରି ରଖେଇ ଖଟେଇ ହେବେ । କଳିଯୁଗକୁ ଦୋଷ ଦେବେ । ବିଚାରନ୍ତୁ, ଆମେ ତ

ସଡ଼ି ପଚ ଦିନ କାଟିଲୁଁ । ଏ କଥା ଆଜ୍ଞା ସୁଖରେ ରହିବେ? ପଣ୍ଡିତେ, ତୁମ ଘରେ ଶାଶୁ ବୋହୂଙ୍କର କଳି କଜିଆ ଲାଗେ କାହିଁକି ? ଶାଶୁ ତ ଯାଇକି ଯାଇ ବୁଲି ତୁମ ବୋହୂର ଗୁଣ ଗାଇ ବୁଲୁଥାନ୍ତି । ଯେ ଶୁଣୁଥାଏ ସେ ଶାଶୁଙ୍କୁ ଏକଛରଫା ଡିଗ୍ରି ଦିଏ । ଅବୁଝାମଣା ରଜାକୁ ପାଞ୍ଚବଣ୍ଡା ମନ୍ତ୍ରୀ । ଆଜିକାଲି ଶାଶୁ ବୋହୂ କଳି ହେଲା ସବୁଠେଇଁ । ବୋହୂ ଟିକିଏ ପାନ ଖାଉଛି, ଦେଖ ଶାଶୁଙ୍କଠାରୁ ଦ୍ବିଗୁଣ ବାହାରିଲା । ଯେବେ ବୋହୂର ପୁଅର ଟିକିଏ ଦେଖା ହେଲା, ଘୃଣାକ ବାଦ୍ ସାଇ ଝମ୍‌ଝମ୍ ନାଗରା ବାଜିଗଲା । ଦିନ ଗଡ଼ିଲେ ବୋହୂ ବାଘୁଣୀ ଉଠିଲା, ସାଇ ମାଇପେ ଘଡ଼ସରିକି ଖାଲୁ କାହି କାହି କରି ଖାଇ ଦିବେ । ଗାଁଆ ଛୋଟରେ ହୁରି ପଡ଼ିଯିବ, ଆଜି ଅମୁକ ଘର ବୋହୂ ଦିନ ଦିଘଡ଼ିରେ ଉଠିଲା । କି କଳିକାଳ ହେଲା ! "ମୁଁ ତ ଖାଏଁ ମୋହୋର ଭାତ; ମୋର କଥା ଗାଲରେ ଦାନ୍ତ ।"

ପଣ୍ଡିତମହାଶୟ ନିଜ ଗୃହଛିଦ୍ର ସଦାରେ ପ୍ରକାଶିତ ହେବାର ଦେଖି କ୍ଷଣକାଳ କିଂକର୍ତ୍ତବ୍ୟ-ବିମୂଢ଼ ହେଲେ । ପଛକୁ ହୁଙ୍କାର କରି ଉଠିଲେ "ଭଦ୍ରଂ କୃତଂ କୃତଂ ମୌନଂ କୋକିଲୈର୍ଜଳଦାଗମେ । ଦର୍ଦ୍ଦୁରା ଯତ୍ର ବକ୍ତାର ସ୍ତତ୍ର ମୌନଂ ହି ଶୋଭନଂ ।"

ମୁଁ ଦେଖିଲି ଯେ ଏ ପ୍ରସଙ୍ଗର ସ୍ରୋତକୁ ଅନ୍ୟ ଆଡ଼କୁ ନ ଫେରାଇଲେ ପଣ୍ଡିତେ ଓ ମାଷ୍ଟର ମାଡ଼ ମରାମରି ହେବେ । ବିଶେଷତଃ ପଣ୍ଡିତଙ୍କର ଓ ମାଷ୍ଟରଙ୍କର ପୂର୍ବରୁ ବିବାଦ ।

ଆମ୍ଭେମାନେ ଏପରି ଅବସ୍ଥାରେ ବସିଛୁଁ, ଏହି ସମୟରେ ଟୁଙ୍ଗୀର ଦାଣ୍ଡରେ 'ଜୟ ରାମଜୀକି ଜୟ' ଧ୍ୱନି ଉଠିଲା । ଆମ୍ଭେମାନେ ଦେଖିଲୁଁ ଯେ ଯାନ, ବାହନ, ଦାସ, ଦାସୀ, ଗାଈ, ବସ୍ତ୍ରାଦିରେ ପରିବୃତ ନାଟି ଶୋଭାରେ ସଜ୍ଜିତ ୨୦।୨୫ ଜଣ ବୈଷ୍ଣବ ଆସି ଉପସ୍ଥିତ । ବାଟରେ ସ୍ନାନ କରି ଖାଲୁଥିବା ଏହିପରି କରି ଆଜି ଗ୍ରାମର ଜମିଦାରଙ୍କ ଘରେ ଜବରଦସ୍ତି ଆତିଥ୍ୟ ଗ୍ରହଣ କରିବାର ସଙ୍କଳ୍ପ କରି ଆସି ଅଛନ୍ତି । ଟୁଙ୍ଗୀରେ ଆମ୍ଭମାନଙ୍କୁ ଦେଖି 'କମାଣ୍ଡର'ର ମହନ୍ତମହାରାଜ ବଜ୍ରଗମ୍ଭୀର-ସ୍ୱରରେ ଚିତ୍କାର କରି ଜମିଦାରଙ୍କ ଘର ଦେଖାଇ ଦେବାକୁ କହିଲେ ଓ ସୁଯୋଗରୁ ଜମିଦାରଙ୍କ ଘର ଦେଖାଇ ଦେବାକୁ ପଣ୍ଡିତ-ମହାଶୟ 'ବାବାଜି'ମାନଙ୍କ ସଙ୍ଗରେ ଗଲେ ।

ମୁଁ କହିଲି 'ପଣ୍ଡିତ ମହାଶୟ ଆଜ୍ଞା ଯାନେ କଡ଼ା ଔଷଧ ପାଇଲେ ।'

ମାଷ୍ଟର ମହାଶୟ—ଆଗେ ଶାଶୁମାନେ ବହୁ-ଟିଏ ଘରକୁ ଆଣିଲେ butcher (କଂସାଇ) ଗୋଟିଏ fat lamb (ପୃଥୁଳ ମେଣ୍ଢା) ପାଇ ଯେପରି glad (ଆନନ୍ଦିତ) ହୁଏ, ସେହିପରି ହେଉଥିଲେ । ଭାବୁଥିଲେ 'I am the monarch of all I survey' । ବଧୂର ଜୀବନ slave (କ୍ରୀତଦାସ)ର ଜୀବନ ଅପେକ୍ଷା କଷ୍ଟକର ଥିଲା । day and night (ଦିନରାତି) ଘରେ ମାଡ଼ ଖାଇ, ଗାଳି ଖାଇ, ସଦା ଲୋକଙ୍କ ଅଖାହୁଣା bear କରି କରି (ସହିସହି) କବାଟ କଣରେ silently (ତୁନି ହୋଇ) କାନ୍ଦୁ କାନ୍ଦୁ ଦିନରାତି ଯାଉଥିଲା । କେତେ innocent creature (ନିର୍ଦ୍ଦୋଷ ପ୍ରାଣୀ) ଏପରି cruelty (ନିଷ୍ଠୁରତା) ସହି ନ ପାରି untimely death (ଅକାଳ ମୃତ୍ୟୁ)କୁ ଆଗ୍ରହସହକାରେ ଆଲିଙ୍ଗନ କରିଅଛନ୍ତି ।

ମର୍ଦ୍ଦରାଜ କହିଲେ—ଜଣେ ବିଖ୍ୟାତ ଆମେ-ରିକା ଲେଖକ ଗୋଟିଏ ପଦ୍ୟ ଲେଖି ଅଛନ୍ତି । ସେ ପଦ୍ୟରୁ ଗୋଟିଏ ଛନ୍ଦ ମନେ ପଡ଼ିଲା ।

'O hearts that break and give no sign
Save whitening lip and fading tresses,
Till death pours out his cordial wine
Slow-dropped from misery's crushing presses.

If singing breath or echoing chord
To every hidden pang were given,
What endless melodies were poured
As sad as earth, as sweet as heaven.

ଏହାର ତାତ୍ପର୍ଯ୍ୟ ଏହି କି ଯଦ୍ୟପି ପ୍ରତ୍ୟେକ ଅପ୍ରକାଶିତ ଦୁଃଖପଦାରେ ପ୍ରକାଶିତ ହେଉଥାନ୍ତା, ତେବେ ଅହୋ! କିଂଭୂତ ମଧୁମୟ ଓ ଦୁଃଖପୂର୍ଣ୍ଣ ସଙ୍ଗୀତ ଅଜସ୍ର ଧାରରେ ବହୁ ନ ଥାନ୍ତା!

ଏହି ସମୟରେ ଗ୍ରାମ ମଧ୍ୟରେ ଜମିଦାରଙ୍କ ଗୃହନିକଟରେ ଘୋର କୋଳାହଳ ଶ୍ରୁତିଗୋଚର ହେବାରୁ ଅମ୍ଭେମାନେ ଟୁଙ୍ଗୀ ତ୍ୟାଗ କରି ଘଟଣା ସ୍ଥଳକୁ ଯାଇଁ ଦେଖିଲୁଁ ଯେ ଜମିଦାର ବାବୁ ଜମାଦ୍ରିତଙ୍କ ପାଖରେ ବାବାଜୀମାନଙ୍କ ସିଧା ସରଞ୍ଜାମ, ଗୋରୁ ଘୋଡ଼ାଙ୍କ ପାଇଁ ଘାସ କୁଟା ଓ ଦାନା, ହାଣ୍ଡି କାଠ ଉପସ୍ଥିତ କରାଇ ଗଳଲଗ୍ନୀକୃତବସ୍ତ୍ର ହୋଇ ଠିଆ ହୋଇ ଅଛନ୍ତି ଓ ବାବାଜୀମାନେ 'ଗଞ୍ଜା ଖର୍ଚ୍ଚା' ୧୫ ଟଙ୍କା ନ ପାଇଲେ ଜମିଦାରଙ୍କ ଘରୁ ପ୍ରସାଦ ନ ପାଇ ବାହାରି ଯିବେ ଓ ଅଭିଶାପ ଦେବେ ବୋଲି ହୋଲ୍ଲାଭ କରୁଅଛନ୍ତି । ଅବଶେଷରେ ଜମିଦାର ବାବୁ ଗଞ୍ଜା ଖର୍ଚ୍ଚା ପାଇଁ ୫ ଟଙ୍କା ଆଣି ଦେବାରୁ ବାବାଜୀମାନେ ଜମିଦାରଙ୍କ ଦାଣ୍ଡରେ ଗୋରୁ, ଘୋଡ଼ା, ଉଟ ଇତ୍ୟାଦି ବାନ୍ଧି ଗଣ୍ଡିପତ୍ର ଓହ୍ଲାଇଲେ ଓ ଭୋଜନର ଆୟୋଜନ କଲେ ।

ଅମ୍ଭେମାନେ ମନେ ମନେ ଭାବିଲୁଁ, 'ଧନ୍ୟ ବାବାଜୀମାନେ ! ତୁମ୍ଭେମାନେ ସଂସାରରେ 'ବୈରାଗୀ' ନାମରେ ଅଭିହିତ । କିନ୍ତୁ ସଂସାରିମାନଙ୍କ ଅପେକ୍ଷା ତୁମ୍ଭେମାନେ ଇନ୍ଦ୍ରିୟସୁଖରେ ଦୃଢ଼ତରଭାବରେ ଲଗ୍ନ । ହାୟ ! ଭଗବାନଙ୍କ ନାମରେ ତୁମ୍ଭେମାନେ କି ଅପବ୍ୟବହାର କରୁଅଛ । ଗଞ୍ଜା ନ ହେଲେ ଦଣ୍ଡେ ରହି ପାରିବ ନାହିଁ । ସିଧା ସାମଗ୍ରୀର ପରିମାଣ କିଛି ଅଳ୍ପ ହେଲେ ସୃଷ୍ଟି ପ୍ରଳୟ । ତୁମ୍ଭମାନଙ୍କ ମଧ୍ୟରେ ବିବାଦର ସୀମା ନାହିଁ । ତୁମ୍ଭମାନଙ୍କ ମଧ୍ୟରେ ଆକ୍ରୋଶ ନାହିଁ । ସଂସାରର ସମସ୍ତ ଦୋଷ ତୁମ୍ଭମାନଙ୍କଠାରେ ଷୋଳକଳାରେ ପୂର୍ଣ୍ଣ । ତୁମ୍ଭମାନଙ୍କର କିଛି ଅସାଧ୍ୟ ନାହିଁ । ମୁହଁରେ ବୈରାଗ୍ୟ ଦେଖାଇଲେ ପ୍ରକୃତ ବୈରାଗ୍ୟ ହୁଏ ନାହିଁ । ଯାହିଁ ଈଶ୍ୱରଧ୍ୟାନରେ ସମୟଯାପନ କରନ୍ତ, ତାହା ନ କରି ପେଟଚିନ୍ତାରେ ତୁମ୍ଭମାନଙ୍କ ସମୟ ଯାଉଛି ! ତେବେ ସଂସାର ଛାଡ଼ିଲ କିଆଁ ? ସଂସାର ଛାଡ଼ିବା ସହଜ ନୁହେଁ । ଜୀବ ଥିବା ଯାଏ ସଂସାର ଛାଡି ହେବ ନାହିଁ । ବୈରାଗୀ ହୋଇ ଅସ୍ପୃହତାର ଜ୍ୱଳନ୍ତ ପ୍ରମାଣ ଦେଖାଉଅଛ । ତୁମ୍ଭମାନଙ୍କ ମଧ୍ୟରେ 'ବୈରାଗୀ' ପଦବାଚ୍ୟ ଶତକରା ଜଣେ ଅଧେ ମିଳିବା କଷ୍ଟ । କେବଳ ଧର୍ମର ଦୁହାଇ ଦେଇ ଲୋକମାନଙ୍କୁ ଠକାଉଅଛ । ଈଶ୍ୱରଧ୍ୟାନରେ ସମୟ କାଟ । ଯେବେ ସେ ପନ୍ଥା ଧରିବ, ତେବେ ଈଶ୍ୱର ଅବଶ୍ୟ ତୁମ୍ଭମାନଙ୍କୁ ଦିନାନ୍ତେ ଭୋଜନ ଦେବେ ।'

ମନ୍ତ୍ରରାମ୍ ହାଲ୍ଦାର କଲା, 'ମୁଁ ଦିନାକେତେ ଜମାଦ୍ରିତଙ୍କ ସାଙ୍ଗରେ ଥିଲି । ଦିବ୍ୟ ଅରୁଆ ଅନ୍ନ ଗୁଆ ଘିଅ, ଦେଉଳିଆ ଡାଲି ଭୋଜନ ମିଳେ । ଏଣେ ମୁଁ କୁଣ୍ଡାଇ କରି ମାଛ ପୋଡ଼ି ଖାଏ । ପହିଲେ ପହିଲେ ମୋତେ ଘୋଡ଼ାଘାସ କାଟିବାକୁ ହେଲା ଓ କେତେଦିନ ବର୍ତ୍ତନ ମିଳିଲା । ଦିନେ ମୋ ମାଛଖିଆ ଧରା ପଡ଼ିବାରୁ ବୈଷ୍ଣବମାନେ ଚିମଟା ଛଣେଇ ମୋତେଇଁ ଠେଁ ଦେଲେ । ମୁଁ ପଳେଇ ଆସିଲି ।'

ମୁଁ କହିଲି, 'ଦିନକୁ ଦିନ ଏମାନଙ୍କ ଅତ୍ୟାଚାର ବଢୁଛି । ଲୋକେ କ୍ରମଶଃ ଏମାନଙ୍କର ପ୍ରତାରଣା ବୁଝି ପାରୁଅଛନ୍ତି । ଏମାନଙ୍କ ସଂଖ୍ୟା କମି ଯିବାକୁ ବେଶି ଦିନ ନାହିଁ ।

ଏ କଥୋପକଥନ ପରେ ଅମ୍ଭେମାନେ ଦେଖିଲୁଁ ଯେ ବାବାଜୀମାନଙ୍କ ଗଞ୍ଜାଟଣା ଆରମ୍ଭ ହେଲା । ଅମ୍ଭେମାନେ ସେମାନଙ୍କ ନିକଟରୁ ପ୍ରସ୍ଥାନ କଲୁଁ ।

ଶ୍ରୀ ଦୁର୍ମୁଖ ଶର୍ମା ।

## ଭ୍ରମଣକାରୀର ପତ୍ର ।
### (ସୋନପୁର ।)

ବେଢ଼ାଖୋଲର ସ୍ନେହବନ୍ଧନ କଷ୍ଟରେ ଶିଥିଳ କରାଇ ଆମ୍ଭେମାନେ ସୋନପୁର ବାହାର ଆସିଲୁଁ । ବେଢ଼ାଖୋଲ ରାଜ୍ୟର ଅନ୍ତର୍ଗତ କଦଳୀଗଡ଼ନାମକ ଏକ ବୃହତ ପଲ୍ଲୀରେ ରାତ୍ରିବାସ । ପଲ୍ଲୀବାଳକମାନେ ପାଞ୍ଚ ସାତ ମିଳି ଓଡ଼ିଆ ଗୀତ ଗାଉଥିବାର ଶୁଣିଲୁଁ । ଏଠାରେ ବେଢ଼ାଖୋଲାଧିପଙ୍କର ଗୋଟିଏ ଓଡ଼ିଆ ଲୋୱର ପ୍ରାଥମିକ ବିଦ୍ୟାଳୟ ଅଛି । ସ୍କୁଲ ଗୃହରେ ଆମ୍ଭେମାନେ ରାତ୍ରି ଯାପନ କଲୁଁ । ଗୋଟାଏ ରହସ୍ୟଜନକ କାଣ୍ଡ ଘଟିଲା । ରାଇପୁର ସଦର ଗଡ଼ରେ ଥିବାବେଳେ ଆମ୍ଭ ଡେରାର କପାଟ ଓ ଗବାକ୍ଷମାନ ଭଗ୍ନ ଓ ଅଲଗ୍ନ ଦେଖି ସଙ୍ଗୀ ଲୋକଙ୍କୁ କହିଥିଲୁଁ, ଜଣେ ଲୋକ ଆମ୍ଭ ପଦାର୍ଥମାନ ଚୋର-ଚମ୍ଭୂରେ ଦେଖୁଥିଲା—ସାବଧାନ ହୁଅ, "ସାବଧାନର ଶତ୍ରୁ ନାହିଁ ।" ଆମ୍ଭର ପାଚକ ଏ କଥା ଶୁଣି ହସରେ ଉଡ଼ାଇ ଦେଲେ । ଆମ୍ଭେ ଭଗ୍ନ ଗବାକ୍ଷ ଓ ଅଲଗ୍ନ କପାଟ ଭିତରୁ ବନ୍ଦ କଲୁଁ । ଅନ୍ଧକାର ରାତ୍ରି ବାରଟା ସମୟରେ ପ୍ରଥମ ଭାତ ନିଦ ଲାଗି ଆସୁଅଛି, ଚୋର କପାଟ ଖୋଲିବାକୁ ହାତ ଲଗାଇଲା । ସେହିକ୍ଷଣି ଆମ୍ଭର ଚେତନା ହେଲା । କପାଟ ନ ବାହାରିବାରୁ ସେ ଗୋଟାଏ ଜାଲାକବାଟି ଭାଙ୍ଗି ପକାଇଲା । ଆମ୍ଭର ପାଚକ ଚମକି ଉଠି ଚିତ୍କାର କଲା । ଚୋର ପଳାଇ ଗଲା । କିନ୍ତୁ ମନରେ ସେହି ଘଟଣାରୁ ଛନକା ଲାଗି ଯାଇଥିଲା । କଦଳୀଗଡ଼ରେ ସେହି ଛନକାର ପୁନରାବୃତ୍ତି । ଆମ୍ଭେ କାହାର ନିଦ୍ରା ବ୍ୟାଘାତ ନ କରିବା ମାନସରେ ଧୀରେ ଧୀରେ ଉଠି ବାହାରକୁ ଯାଉଥିଲୁଁ, ସ୍କୁଲ ହଲରେ ଆମ୍ଭର ପାଚକ ଚୋର ବୋଲି ଗିରଫଦାର କଲେ । ଉପସ୍ଥିତ ସାହସ ଓ ଲଜ୍ଜାରେ ତାଙ୍କର ଚେହେରା ବିକୃତ ହୋଇଥିଲା । ହାସ୍ୟରସରେ ରାତ୍ରିଟା କଟିଗଲା । ଆର ଦିନ ସୋନପୁର ଅନ୍ତର୍ଗତ ସୁରୁ-ବାଳି ନଦୀ ତୀରରେ ସୁବଳୟ ନାମକ ଏକ ସହରରେ ପହଞ୍ଚିଲୁଁ । ପଣ୍ୟ ଓ ବିପଣି ଦେଖିବା ଭେଣିକି ଥାଉ, ଆଗ ଲୋକେ କେଉଁ ଭାଷା କହୁଅଛନ୍ତି, କାନ, ମନ ଦେଇ ତାହା ଶୁଣିଲୁଁ । ମନେ ହେଲା ଏଇଟି ଆମ୍ଭର ଖାସ୍ ଓଡ଼ିଆ ଦେଶ । ସୁବଳୟରେ ବଳୟାକୃତ ଦୃଷ୍ଟି ପେଷଇଲେ ପଶ୍ଚିମ, ଉତ୍ତର, ପୂର୍ବ ଧରି ବେଢ଼ାଖୋଲ, ଆଠ-ମଲ୍ଲିକ, ବୌଦ୍ଧ ଏବଂ ବୌଦ୍ଧକୁ ଭେଦି ସୋନପୁର । ଏହିଠାରେ ସୋନପୁରାଧିପଙ୍କ ନିର୍ମିତ ଜଗନ୍ନାଥ ମନ୍ଦିର । ଏ ପର୍ଯ୍ୟନ୍ତ ଯେଉଁ ବାଦ୍ୟ ଶୁଣୁଥିଲୁଁ, ତାହା ଢାଁସାଲ ମାଦଳର ଅନୁକରଣ । ଏଠାରେ କର୍ତନ ଢୋଲ ଓ ମୃଦଙ୍ଗର ଶବ୍ଦ ଶୁଣିଲୁଁ । ସୋନପୁର ରାଜ୍ୟର ଆରମ୍ଭରୁ ଅରଣ୍ୟ ଅଦୃଶ୍ୟ ହେଲା । ପର୍ବତ କ୍ୱଚିତ୍, କେବଳ ନିରବଚ୍ଛିନ୍ନ କର୍ଷିତ କ୍ଷେତ୍ର । ସ୍ଥାନେ ସ୍ଥାନେ ବର୍ଦ୍ଧ ହ୍ରଦ (ଜଳାଶୟ) । ଏପରି ସୁକର୍ଷିତ, ସୁଶାସିତ ରାଜ୍ୟକୁ ଦୁର୍ଭିକ୍ଷ କି ଛାରଖାର କରୁଅଛି ! ସୁବଳୟରେ ପ୍ରଧାନ ପଣ୍ୟ ଦେଶୀ ଲୁଗା ଓ ବାସନ । ଏ ସହରର ଅଧିବାସୀଙ୍କ ମଧ୍ୟରେ ଭୁଲିଆ (ତନ୍ତୀ) ଅଧିକ । ହର ହର ! ବିଲାତି ସଭ୍ୟତା, ବିଲାତି ଲୁଗା ଏ ଦେଶକୁ ଏ ପର୍ଯ୍ୟନ୍ତ ଆସି ନାହିଁ ମାତ୍ର କଳ ସୂତା-ତନ୍ତୀମାନଙ୍କର ମୂଳଧନ ହୋଇ ଅଛି ।

ସୁବଳୟର ସେତାର ଶୈଳ ବାମରେ ରଖି ପ୍ରଶସ୍ତ ରାଜପଥରେ ସୋନପୁର ଅଭିମୁଖରେ ଗତ କଲୁଁ । ଏ ପ୍ରଦେଶର ପ୍ରାକୃତିକ ଦୃଶ୍ୟ ମେଦିନୀପୁରର ଉତ୍ତରାଂଶ ବ୍ରାହ୍ମଣଭୂମିର ଅନୁରୂପ । ପାର୍ବତ୍ୟ ପ୍ରଦେଶର ଚିହ୍ନମାତ୍ର ନାହିଁ । ଠାବେ ଠାବେ ଏପରି ସୁକର୍ଷିତ କ୍ଷେତ୍ର ଯେ ଦନ୍ତମାର୍ଜନୀ ପର୍ଯ୍ୟନ୍ତ ଦୁଷ୍ପ୍ରାପ୍ୟ । ଶାଳଗଛ ସ୍ୱପ୍ନ-ପ୍ରାୟ । ସ୍ଥାନେ ସ୍ଥାନେ ସୁବୃହତ ଆମ୍ରକାନନ

ପ୍ରଚଣ୍ଡମାର୍ତ୍ତଣ୍ଡତାପିତ ପାନ୍ଥମାନଙ୍କୁ ସୁସ୍ନିଗ୍ଧ ଛାୟା ଦେବାକୁ କର ପ୍ରସାରଣ କରି ରହିଅଛି । ସ୍ଥାନେ ସ୍ଥାନେ କୃଷାଣମାନଙ୍କ ସହିତ ଓଡ଼ିଆ ଭାଷାରେ ଆଳାପ କଲୁଁ । ଭାଷାର ଉଚ୍ଚାରଣ ଓ ଭଙ୍ଗି ବଡ଼ ଫେର ଅଛି । ପର୍ବତସଙ୍କୁଳ ଖଣ୍ଡରୁ ଆମ୍ଭେମାନେ କ୍ରମେ ମହାନଦୀର ପ୍ରଦେଶକୁ ଓହ୍ଲାଇ ଆସିଲୁଁ । କୋଟି ପ୍ରାଣୀ ଯାହା ଜୀବନରେ ଜୀବନ ଧାରଣ କରି ଅଛନ୍ତି, ଯେ ଗଙ୍ଗବଂଶୀୟ ଖାରକୁଳକୁ ବକ୍ଷରେ ବାଟ ଦେଇ ଗଣ୍ଡୋୟାନା ପ୍ରଦେଶକୁ ଡାକି ଆଣିଥିଲା ଏବଂ ଶାଖା ପ୍ରଶାଖା ଯୋଗେ ଓଡ଼ିଆ ଭାଷାକୁ ଏହି ଅରଣ୍ୟ ପ୍ରଦେଶକୁ ଉଜାଣି ବୁହାଇ ଥିଲା, ସେହି ମହାନଦୀ ଏହି ସୁବର୍ଣ୍ଣପୁର ଦୁର୍ଗର ଜଳବାହିକା । ବାମତଟରେ ଉତ୍କଳୀୟ ବ୍ରାହ୍ମଣମାନଙ୍କର ଏକ ପବିତ୍ର ଶାସନ, ଦକ୍ଷିଣ ତୀରରେ ସ୍ୱର୍ଣ୍ଣପୁର ନଗର ଓ ରାଜପ୍ରାସାଦ । ହର୍ମ୍ମ୍ୟମାଳାର ଅଭ୍ୟନ୍ତରରେ ଦେବାଳୟମାନ ମଥା ଟେକି ଦୂରରୁ କହି ଦେଉଥିଲେ, ଏ ନଗରଟି ପବିତ୍ର ଆର୍ଯ୍ୟରାଜଧାନୀ । ଅସଂଖ୍ୟ ନରନାରୀ ନାନା ଘାଟରେ ସ୍ୱଚ୍ଛନ୍ଦ ଭାବରେ ଅଙ୍ଗପ୍ରକ୍ଷାଳନରେ ବ୍ୟାପୃତ ରହିଥିଲେ । ଗଙ୍ଗାସ୍ନାନରେ କୁଳାଙ୍ଗନା ଓ କୁଳଟାର ଏବଂ ସ୍ୱର୍ଣ୍ଣପୁରରେ ମହାନଦୀସ୍ନାନରେ ଆର୍ଯ୍ୟ ଓ ଅନାର୍ଯ୍ୟର ବିଭେଦ ନାହିଁ । ଧୀବରାଙ୍ଗନାମାନେ ଗଭୀର ମହାନଦୀପ୍ରବାହରେ ବରଙ୍ଗ ଉପାଇ କ୍ଷିପ୍ର ସନ୍ତରଣ କରୁଥିଲେ ଓ ବେଳେବେଳେ କୁଣ୍ଡୁଳୀ(ନାବ)ରେ ସୁକୌଶଳରେ ଖେଳ କରୁଥିଲେ । ପଟ, ଧ୍ୱଜ, ସ୍ୱଜନ ଓ ପରିଜନଙ୍କ ପ୍ରତି ଭ୍ରୂକ୍ଷେପ ନାହିଁ । ପ୍ରକୃତିର କନ୍ୟା ପ୍ରକୃତି କୋଳରେ କ୍ରୀଡ଼ାରତା । କି ପବିତ୍ର ମନୋହର ଦୃଶ୍ୟ ! ମହାନଦୀ ଏଠାରେ ତୀର୍ଥରୂପା, ସ୍ୱର୍ଣ୍ଣପୁର ଛତିଶଗଡ଼ର ବାରାଣସୀ ।

ମହାନଦୀର ତଟ ପର୍ଯ୍ୟବେକ୍ଷଣ କରି ସ୍ୱର୍ଣ୍ଣପୁର ଦୁର୍ଗାଧୀଶ୍ୱରଙ୍କର ପୂର୍ବ ପୁରୁଷ ଏଠାରେ ଦୁର୍ଗ ନିର୍ମାଣ କରିଥିଲେ । ମହାନଦୀ ଚଞ୍ଚଳା ଏବଂ ପ୍ରାୟ ଅଧିକାଂଶ ସ୍ଥଳରେ ପରିବର୍ତ୍ତନଶୀଳା । ମାତ୍ର ଏଠାରେ ଅବସ୍ଥମାନ କାଳ ଶିଳାଶଯ୍ୟାରେ ଧୀର ଓ ଗମ୍ଭୀରଙ୍ଗ । ମହାନଦୀ ସ୍ନାନ ପ୍ରାଣରେ ସ୍ୱର୍ଗ ସମ୍ପଦ ଢାଳି ଦେଲା । ନଗରରେ ପ୍ରବେଶ କରି ଅପରିଚିତର ଅସୁବିଧା କ୍ଷଣକ ସକାଶେ ଭୋଗ କରିବାକୁ ଦେଲା ନାହିଁ । ପରିଚିତ ଓ ଅପରିଚିତ ବିଦେଶୀ ଭଦ୍ର ବ୍ୟକ୍ତିମାନଙ୍କର ସହାନୁଭୂତି ପାଇ ଆମ୍ଭମାନଙ୍କର କୌଣସି କଷ୍ଟ ରହିଲା ନାହିଁ । ସ୍ୱର୍ଣ୍ଣପୁର ଦୁର୍ଗାଧୀଶ ଆମ୍ଭମାନଙ୍କ ଆଗମନ ବାର୍ତ୍ତା ଶ୍ରବଣ କରି ଆମ୍ଭମାନଙ୍କୁ ଅତିଥିରୂପେ ଗ୍ରହଣ କଲେ । ରାଜ୍ୟ ସାହେବ ଦେବାନ୍ ସାହେବ ସମ୍ବଲପୁରରୁ ଫେରି ଆସି ନ ଥିବାର ସମ୍ବାଦ ପାଇ ଆମ୍ଭର ମନ କିଞ୍ଚିତ୍ ଉଦ୍‌ଭ୍ରାନ୍ତ ହୋଇଥିଲା । ମାତ୍ର ତହସିଲଦାର ସାହେବ ଶ୍ରୀଯୁକ୍ତ କେଶବଚନ୍ଦ୍ର ଗୁରୁ ମହାଶୟ ଦେବାନଙ୍କ ଅଭାବ ଆମ୍ଭମାନଙ୍କୁ ଭୋଗ କରିବାକୁ ଦେଲେ ନାହିଁ । ବିନୟପୂର୍ଣ୍ଣ ମଧୁର ବଚନରେ ସମାଦର ଜ୍ଞାପନ କରି ଆମ୍ଭ ହୃଦୟକୁ ପ୍ରୀତି-ରଜ୍ଜୁରେ ବନ୍ଧନ କଲେ । ଆମ୍ଭେମାନେ ଅଟକି ଗଲୁଁ । ଦେଖି ଶୁଣି ଲେଖିବାକୁ ସମୟ ପାଇଲୁଁ । କଣ ଦେଖିଲୁଁ, କଣ ଶୁଣିଲୁଁ, ତାହାର ସଂକ୍ଷିପ୍ତ ବିବରଣୀ ଦେବାର ପ୍ରୟୋଜନ । ସୋନପୁର ରାଜ୍ୟର ପରିମାଣ ଫଳ ୯୦୬ ବର୍ଗମାଇଲ । ୧୮୯୧ ସାଲରେ ଲୋକସଂଖ୍ୟା ୧୯୫୬୪୫ ଥିଲା, ବର୍ତ୍ତମାନ ଗଣନାରେ ସ୍ଥିର ହୋଇଅଛି ୧୬୦୬୩୩ । ୧୦ ବର୍ଷ ମଧ୍ୟରେ ପାର୍ଶ୍ୱବର୍ତ୍ତୀ ରେଢ଼ାଖୋଲ ରାଜ୍ୟର ଲୋକସଂଖ୍ୟା ଶତକଡ଼ା ୩୫ ଜଣ ବୃଦ୍ଧି ପାଇଅଛି । ସେହି ଅନୁପାତରେ ସୋନପୁରର ଲୋକସଂଖ୍ୟା ବୃଦ୍ଧି ହୋଇଥିଲେ ପ୍ରାୟ ଅଢ଼ାଇ ଲକ୍ଷ ଲୋକ ହୋଇଥାନ୍ତେ । ଆମ୍ଭମାନଙ୍କର ଅନୁମାନ ପ୍ରାୟ ପଞ୍ଚାଶ ହଜାର ଲୋକ ବିଗତ ଦୁର୍ଭିକ୍ଷରେ ଏ ରାଜ୍ୟରେ ଅକାଳମୃତ୍ୟୁ ମୁଖରେ ପତିତ ହୋଇ ଅଛନ୍ତି ଏବଂ କେତେକ ପଳାଇ ଯାଇ ଅଛନ୍ତି । ବୌଦ ଓ ପାଟଣାରାଜ୍ୟର ଅସଂଖ୍ୟ ଦୁର୍ଭିକ୍ଷପୀଡ଼ିତ ଅନାର୍ଯ୍ୟ ନରନାରୀ ଓଜାଡ଼ି ଆସି ସୋନପୁର

ଦୁର୍ଭିକ୍ଷକୁ ଦ୍ୱିଗୁଣିତ କରୁଥିଲେ । ତେଣୁ ଏହାର ଏ ଦୁର୍ଗତି । ଏବେବେଳେ ଦୁର୍ଭିକ୍ଷ ନାହିଁ କିନ୍ତୁ ମହରଗ ଯାଇନାହିଁ । ନିଃସ୍ୱ ଦରିଦ୍ରମାନେ ଦୁର୍ଭିକ୍ଷର ପ୍ରକୋପ ଅବଧି ଭୋଗ କରୁଅଛନ୍ତି ।

ପ୍ରକୃତରେ ଏ ନଗରର ନାମ ସୁବର୍ଣ୍ଣପୁର ଥିଲା । ଅନୁମାନ, ପୂର୍ବକାଳରେ ଏ ରାଜ୍ୟ ମଧ୍ୟରେ ସୁବର୍ଣ୍ଣ ଖଣି ଆବିଷ୍କୃତ ହୋଇଥିଲା । ଏତେ ପ୍ରଚୁର ପରିମାଣରେ ସୁବର୍ଣ୍ଣ ମିଳିଥିଲା ଯେ ଏ ନଗରକୁ ସୁବର୍ଣ୍ଣନଗର ବୋଲି ହୋଇଥିଲା । ସୁବର୍ଣ୍ଣ ପୁରର ପୂର୍ବ ପ୍ରାନ୍ତରେ ମହାନଦୀ ସହିତ ତେଲ ନଦୀର ସଙ୍ଗମ ଘଟିଅଛି । ଏହି ସଙ୍ଗମର ୨୦ ମାଇଲ ପଶ୍ଚିମକୁ ବିନିକା ବା ବଲଙ୍ଗୀ ନଗର । ମହାନଦୀ ଓ ତେଲନଦୀ ସୁବର୍ଣ୍ଣପୁରକୁ ବେଷ୍ଟନ କରି ଦ୍ୱୀପ ପ୍ରାୟ କରିଅଛି । ସମୟରେ ଏହାର ସମୃଦ୍ଧି ଏପରି ବୃଦ୍ଧି ହୋଇ ଥିଲା ଯେ କିମ୍ବଦନ୍ତୀ କହେ, ଏଠାରେ ୫୨ ହଜାର ଗୃହ ଥିଲା ଏବଂ ଅଢ଼ାଇ ଦଣ୍ଡ ସୁବର୍ଣ୍ଣବୃଷ୍ଟି ହୋଇଥିଲା । ଏହି କିମ୍ବଦନ୍ତୀ ମୂଳରେ ସୁବର୍ଣ୍ଣ ଖଣି ଥିବାର ଅନୁମାନ । କାଳକ୍ରମରେ ଖଣି ବିଲୁପ୍ତ ଏବଂ ତେଲ ବା ମହାନଦୀର ଗର୍ଭଗତ ହୋଇଅଛି । ଯେତେବେଳେ ଏହାର ପୂର୍ଣ୍ଣସମୃଦ୍ଧି ଘଟିଥିଲା ସେହି ସମୟର କୌଣସି ରାଜା ଏହାକୁ ନକଲ ସ୍ୱର୍ଣ୍ଣପୁରୀ ଲଙ୍କା କରିଥିଲେ । ସୁବଳୟା, ବିଲଙ୍କା, ଶେତବନ୍ଧ ବା ସେତୁବନ୍ଧ, ରାମେଶ୍ୱର ମହାଦେବ, ଲଙ୍କଚଣ୍ଡୀ ପ୍ରଭୃତି ନାମ ନକଲ ଲଙ୍କାର ପରିଚୟ ଦେଉଅଛି । ଏହି ରାଜବଂଶାବଳୀ ଲେଖିବାକୁ ଆମ୍ଭର ବେଳ ନାହିଁ । ଆମ୍ଭର ନିର୍ଦ୍ଦେଶ୍ୟ ଉତ୍କଳ ସହିତ ଛତିଶଗଡ଼ର ଏକତା ବନ୍ଧନ, ବିଶେଷତଃ ଭାଷା ଘେନି । ବର୍ତ୍ତମାନ ସ୍ୱର୍ଣ୍ଣପୁରେଶ୍ୱର ମହାରାଜ ପ୍ରତାପରୁଦ୍ର ସିଂହ ଦେବ ବାହାଦୁର ଉତ୍କଳର ପ୍ରତାପଶାଳୀ ଗଙ୍ଗବଂଶୀୟ ନୃପକୁଳଭଣ୍ଡାରର ଅମୂଲ୍ୟ ରତ୍ନ । ରାଜା, ରାଜନଗର ଓ ରାଜନୀତି ଦେଖିଲାକ୍ଷଣି ଅନୁମାନ ହୁଏ, ପୁଣ୍ୟପ୍ରତାପ-ନରଦେବ-ଗଙ୍ଗ-ରାଜବଂଶର ନମୁନା ଏହିଠାରେ ରହିଅଛି ।

ଗଙ୍ଗବଂଶୀୟ ରାଜାମାନଙ୍କର ରାଜଧାନୀମାନ (City of temples) 'ମନ୍ଦିର-ନଗର' ହେଉଥିଲା । ସ୍ୱର୍ଣ୍ଣପୁର ନଗର ମନ୍ଦିରମୟ । ଏଠାରେ ଅଧିବାସିସଂଖ୍ୟା ୮୮୭୩ ଏବଂ ବାସଗୃହ ୨୦୪୪ ।

ଉଚ୍ଚ, ମଧ୍ୟ, ନିମ୍ନ ଶ୍ରେଣୀର ଲୋକମାନେ ପ୍ରାୟ ସମସ୍ତେ ଦେବଭକ୍ତ, ଅତ୍ୟନ୍ତ ରାଜଭକ୍ତ ଏବଂ ଅନେକେ ଦେବଦେବୀପୂଜାରତ । ଅନେକ ମନ୍ଦିର ଅଛି । ତନ୍ମଧ୍ୟରେ ଜଗନ୍ନାଥ ମନ୍ଦିର, ଗୁଣ୍ଡିଚା ମନ୍ଦିର, ସିମନ୍ତର ଓ ସୁବର୍ଣ୍ଣେଶ୍ୱର ମନ୍ଦିର ପ୍ରଧାନ । ଏମାନେ ହେମକଳଶଚୂଡ଼ । ସୁବର୍ଣ୍ଣେଶ୍ୱର ମନ୍ଦିର ତେଲନଦୀ ତୀରରେ । ଭୁବନେଶ୍ୱର ମନ୍ଦିରର ନିର୍ମାଣପଦ୍ଧତିରେ ଏ ମନ୍ଦିର ନିର୍ମିତ । ବେଢ଼ା ପକ୍କା ପ୍ରାଚୀରଦ୍ୱାରା ବେଷ୍ଟିତ । ସୁବର୍ଣ୍ଣ-ମେରୁ ଶିବ ମନ୍ଦିରର ଚାରି ଦିଗରେ ଅନେକ କନିଷ୍ଠ ଶିବ ମନ୍ଦିର ପ୍ରତିଷ୍ଠିତ ଅଛି । ତେଲନଦୀର ବାମତୀରରେ ସୁବର୍ଣ୍ଣପୁର ଓ ସୁବର୍ଣ୍ଣମେରୁ ମନ୍ଦିର । ଏ ନିଦାଘ କାଳରେ ତେଲ ଶିଳାଶଯ୍ୟାରେ କ୍ଷୀଣଭାବରେ ପ୍ରବାହିତ । କିନ୍ତୁ ଏହାର ଜଳ ଅତି ଶୀତଳ ଓ ନିର୍ମଳ । ଆମ୍ଭେମାନେ ଏ ସ୍ରୋତରେ ସ୍ନାନ ସାରି ପରମଶାନ୍ତି ଲଭିଲୁଁ । ଅନ୍ୟ ତୀରରେ ଯେଉଁ ପଲ୍ଲି ଦେଖା ଯାଉଥିଲା, ତାହା ଓଡ଼ିଶାବାସୀ ବୌଦ୍ଧ ରାଜ୍ୟର ପ୍ରଜାମାନଙ୍କର ସ୍ୱତ୍ୱ । ତେଲ ନଦୀର ଅପର ତଟରେ ଉପର ଭାଗକୁ ପ୍ରାୟ ୬୦ ମାଇଲ ବ୍ୟାପି ବୌଦ୍ଧ ରାଜ୍ୟ ଓ କନ୍ଧମାଳ କଳାହାଣ୍ଡି ସୀମାରେ ମିଳି ଅଛି । ପାଟଣା ଓ ବୌଦ୍ଧର ଉପରିଭାଗରେ କନ୍ଧାନ ରାଜ୍ୟ । କନ୍ଧପଲ୍ଲିମାନ ଏଠାରୁ ବହୁ ଦୂରରେ । କନ୍ଧଜାତି ଅତି ଦୁର୍ଦ୍ଦାନ୍ତ ଥିଲେ, ଇଂରାଜଶାସନ ଅବଜ୍ଞା କରୁଥିଲେ । ଉତ୍କଳର ପୂର୍ବତନ କମିଶନର ଧୀରମତି ରେଭେନ୍‌ସା ସାହେବ ଧୀରେ ଧୀରେ କନ୍ଧମାନଙ୍କୁ ବଶୀଭୂତ କରିଥିଲେ । ସେହିକାଳରୁ ଏମାନେ ଅଧୁନାତନ ଉନ୍ନତିପଥରେ ଅଗ୍ରସର ହୋଇଅଛନ୍ତି । ଏମାନଙ୍କର ଅଗ୍ନି ତେଜ ଭସ୍ମରେ ପରିଣତ ହୋଇ

ହେଉ । କିନ୍ତୁ ପାଟଣା ରାଜ୍ୟର ଲୋକମାନଙ୍କର ଶ୍ରୀହୀନ ସ୍ୱଭାବ ଏ ପର୍ଯ୍ୟନ୍ତ ଉଣା ହୋଇ ନାହିଁ । ଆମ୍ଭମାନଙ୍କ ଦେଶରେ ଅର୍ଦ୍ଧ ଅନାର୍ଯ୍ୟ ପ୍ରକୃତି ରହିବା ଆମ୍ଭମାନଙ୍କ ପକ୍ଷରେ ଯେପରି ସହଜ, ୟୁରୋପୀୟମାନଙ୍କ ପକ୍ଷରେ ସେପରି ସହଜ ନୁହେ । ଓଡ଼ିଶାର ଲୋକମାନେ ମଧୁବାବୁ, ନନ୍ଦକିଶୋର ବାବୁ ଓ ବର୍ତ୍ତମାନ ପ୍ରଧାନ ବାବୁଙ୍କ ହାତରେ ସୁକୌଶଳରେ ଶାସିତ ଓ ବଶୀଭୂତ । କଳାହାଣ୍ଡି ଓ ପାଟଣାର ଲୋକମାନେ ଶ୍ରୀହୀନ ବଣୁଆ ସ୍ୱଭାବ ଛାଡ଼ି ନାହାନ୍ତି । କେବେ ଏହାର ପରିବର୍ତ୍ତନ ଘଟିବ, ସେ ବିଷୟରେ ଆମ୍ଭେମାନେ ସନ୍ଦିହାନ । ରେଭେନ୍‌ସା ସାହେବ ଲୋକମାନଙ୍କଠାରୁ ମଦ କର ଆଦାୟ କରାଇ ସେହି କରରେ ସେମାନଙ୍କୁ ଓଡ଼ିଆ ପାଠ ପଢ଼ାଇ ମନୁଷ୍ୟ କରାଇଲେ । ଏଭଳି ଯହିଁ ଛତିଶଗଡ଼ ବିଭାଗରେ କିଏ କଲା ? ବରଂ ଯେଉଁମାନଙ୍କର ଭାଷା ଓଡ଼ିଆ ହୋଇଥିଲା, ସେମାନଙ୍କ ମଧ୍ୟରୁ ତାହା ଉଠାଇ ଦିଆ ଗଲା । ଶାସନକର୍ତ୍ତାମାନଙ୍କର ଏ କି ବିଷମ ଭ୍ରମ ! ଜାତୀୟ ଉନ୍ନତିର ମୂଳରେ କି ସାଂଘାତିକ କୁଠାରାଘାତ ! ଏହି ତେଲନଦୀ ଓଡ଼ିଆ ଜାତିକୁ ଓ ଭାଷାକୁ କଳାହାଣ୍ଡି ରାଜ୍ୟଯାଏ ପଥ ଦେଇଥିଲା । କଳାହାଣ୍ଡିରୁ ବସ୍ତର, ବସ୍ତରରୁ ଜୟପୁର ଯାଏ ବସ୍ତର ଓ କଳାମ ରାଜ୍ୟ ଦେଇ ଗଙ୍ଗବଂଶୀୟ ବୀରମାନେ ଦିଗ୍‌ବିଜୟ ଓ ରାଜ୍ୟବିସ୍ତାର କରିଥିଲେ । ବର୍ତ୍ତମାନ ମାନ୍ଦ୍ରାଜ ଅନ୍ତର୍ଗତ ଜୟପୁର, ଛତିଶଗଡ଼ର ବସ୍ତର, କଳାହାଣ୍ଡି, କାଙ୍କେର, ପାଟଣା, ସୋନପୁର, ବାମଣ୍ଡା ପ୍ରଭୃତି ରାଜ୍ୟର ନୃପତିଗଣ ଓ ବରପାଲି ପ୍ରଭୃତିର ଜମିଦାରମାନେ ଗଙ୍ଗବଂଶ-ଗରିମା ଅଦ୍ୟାପି ରକ୍ଷା କରୁଅଛନ୍ତି । ଏହା ଜାତୀୟ ଏକତାର ମୂଳ ଅଟେ । ଜାଣି ବା ନ ଜାଣି ଏହାର ମୂଳରେ ଯେ ଆଘାତ କରିଅଛନ୍ତି, ସେ ଆମ୍ଭମାନଙ୍କର ଅନିଷ୍ଟ କରିଅଛନ୍ତି । ଏ ବିନିପାତ ଯୋଗକୁ ଆମ୍ଭେମାନେ ଦୈବ ବିପାକ ବୋଲିବୁଁ । ଆଉ ଏହି କଥା ବୋଲି ମନକୁ ପ୍ରବୋଧ ଦେବୁଁ, ବିଧିଦେବଙ୍କୁ ଯେଉଁ ବିନିପାତ ଯୋଗ, ତାହା ସମୃଦ୍ଧିର ହେତୁ ଅଟେ ।

ହେ ନରଦେବ ଗଙ୍ଗରାଜଗଣ ! ମାତୃଭାଷାର ପତନ ଦେଖି ନୀରବ ରହିବ କି ? ବିଳାସରେ ଅନେକ ଅର୍ଥ ବୃଥା ନଷ୍ଟ ହେଉଥାଏ । "ସନ୍ନିମିତ୍ତେ ବରଂ ତ୍ୟାଗୋ ବିନାଶେ ନିୟତେ ସତି," ଯେଉଁ ଅର୍ଥଟା ନାଶ୍ୟ ବିନଷ୍ଟ ହେଉଅଛି, ସତ୍‌କାର୍ଯ୍ୟରେ ତାହାକୁ ବ୍ୟୟ କରିବା ଶ୍ରେୟଃ ନୁହେ କି ? ଅନ୍ୟର ମୁଖାପେକ୍ଷୀ ହୋଇ ମାତୃଭାଷାଟାକୁ କିଣ ବୁଡ଼ାଇ ଦେବା ? ଅଳ୍ପ ଚେଷ୍ଟା ଓ ଅଳ୍ପ ବ୍ୟୟରେ ମୁଦ୍ରାଯନ୍ତ୍ର ନୀଳ-ଦର୍ପଣ ପରି ହାତକୁ ଆସିବ । ଆମ୍ଭ ରାଜ୍ୟରେ ଆମ୍ଭେ ରାଜା, ଆମ୍ଭର ଓ ଆମ୍ଭ ପ୍ରଜାମାନଙ୍କର ମାତୃଭାଷା ଓଡ଼ିଆ । ବିନ୍ଧ୍ୟ କାଟି ମାତୃଭାଷା-ସ୍ରୋତରେ ଦେଶ ପ୍ଲାବିତ କରିଦେବା ଦୂର କଥା କି ? ମନ ନାହିଁ—ଚେଷ୍ଟା ନାହିଁ ! ବିଷମ ଆଲସ୍ୟ ଆମ୍ଭମାନଙ୍କୁ ନିଶ୍ଚେଷ୍ଟ କରି ରଖିଅଛି । ଏବେ କର୍ମଯୁଗ ଉପସ୍ଥିତ । ପ୍ରଭୁଙ୍କ ଇଚ୍ଛା !

ସୋନପୁରର ରାଜନୀତି ଓ ଲୋକଚରିତ୍ର ସମ୍ବନ୍ଧରେ କିଛି କହିବୁଁ ।

"ରାଜାନୁଗତ ଧର୍ମ" ଏ ବାକ୍ୟଟି ସର୍ବ କାଳରେ ସର୍ବତ୍ର ପ୍ରଯୋଜ୍ୟ । ଦେଖିଲୁଁ, ଏକ ରାଜ୍ୟର ରାଜା ବ୍ୟସନାସକ୍ତ—ପକ୍ଷୀ ଧରିବାରେ ଏପରି ବାୟୁଗ୍ରସ୍ତ ଯେ କାଳ ନାହିଁ, ସ୍ଥାନ ନାହିଁ, ଅବସ୍ଥାନଜ୍ଞାନ ନାହିଁ । ନିତାନ୍ତ ବାଳକ ଲୋକ ପରି ପ୍ରଜାମାନଙ୍କର ଓଳପନାଡ଼ିରେ ବୁଲି ପକ୍ଷୀ ଧରିବାରେ ବ୍ୟସ୍ତ । ସର୍ବସାଧାରଣ ଲୋକେ ଦେଖି ହସୁଅଛନ୍ତି, ଛି ଛାକର କରୁଅଛନ୍ତି, ଭ୍ରୂକ୍ଷେପ ନାହିଁ । ବୃଥା ବ୍ୟାପାରରେ ଏତେ ବଡ଼ ବଡ଼-ପଣର ଅପବ୍ୟବହାର । ଆସକ୍ତି ବୁଦ୍ଧିକୁ ଅନ୍ଧ କରିଅଛି । ବିଷମ କଥା ! ସୁତରାଂ ରାଜାଙ୍କ ଧର୍ମକୁ ଧରି ପ୍ରଜାପରିଜନ ଲଘୁଚିତ୍ତ ଓ ହୀନକର୍ମୀ ।

ଆଉ ଏକ ରାଜା ପାନାସକ୍ତ ଏବଂ ତାହାର ଆନୁଷଙ୍ଗିକ ବ୍ୟାପାରଟାରେ ବଧିରେ ଆସକ୍ତ !

ତାଙ୍କୁ ମିଳି ଯାଇଅଛନ୍ତି ୨୪ ଜଣ ବାକେ କଙ୍ଗାଳ । ରେଲ ଷ୍ଟେସନରେ ପାଦଦେବ ହଠାତ୍ ଜ୍ଞାନ ହୋଇ ଗୋଟିଏ ମହଲା ଉପରେ ମହାଆଶ୍ଚର୍ଯ୍ୟର ! ସାଉଡ଼ସ କାଣ୍ଡ ! ପାଟଦେବ, ପ୍ରଜାପରିଜନ ସୁଦ୍ଧାଂ ନିଃଶ୍ଚିନ୍ତା ଆଡ଼କୁ ଅଗ୍ରସର ।

ମହାରାଜ ବାମଣ୍ଡାଧୀଶର କର୍ମଗୁରୁ, ଗୁଣଗ୍ରାହୀ, ସତ୍ୟପରାୟଣ, ଲୋକପ୍ରିୟ, ପ୍ରଜାବତ୍ସଳ, ଅଭିମାନ-ଶୂନ୍ୟ । ଏ ରାଜ୍ୟର ରାଜକୁମାରଗଣ ଗୁଣପ୍ରିୟ, କର୍ମପ୍ରିୟ ଓ ବିଜ୍ଞ । ରାଜା ଯଦି ସୁଗୁଣୀ ହୋଇ ନଥାନ୍ତେ ଏ ରାଜ୍ୟର ଗତି କି ଏପରି ଫେରିଥାନ୍ତା? ଏପରି ସର୍ବତୋମୁଖୀ ଉନ୍ନତି ଲାଭ କରିଥାନ୍ତା କି ? ସ୍ୱର୍ଣ୍ଣପୁର ରାଜ୍ୟରେ ରାଜଧର୍ମ କର୍ମମୂଳକ ନ ହୋଇ ଧର୍ମମୂଳକ ହୋଇଅଛି । ରାଜା ଧର୍ମାବତାର । ଏହାଙ୍କର ପ୍ରତ୍ୟେକ କର୍ମ ଧର୍ମାଶ୍ରିତ । ଏପରି ଧର୍ମଭୀରୁ ନରେଶ ଏକାଳରେ ନବ୍ୟସଭ୍ୟ ଜଗତରେ ସହଜରେ ମିଳନ୍ତି ନାହିଁ । କଥାରେ କହିଲେ ହେବ " He eats, drinks, sleeps religiously" "ଧର୍ମଃ ସର୍ବେଷାଂ ଭୂତାନାଂ ମଧୁ ।" ରାଜଧର୍ମକୁ ଯେଣ ସମସ୍ତେ ଧର୍ମଭୀରୁ । ଦେବପୂଜାରେ ଭକ୍ତିସହକାରେ ଅଧିକାଂଶ ନରନାରୀ ରତ । ବଜାରରେ ହୁଇଓଳ ଫୁଲ କିଣାବିକା ଧୁମ ଲାଗିଅଛି । ନଗରର ଉତ୍ତର ପୂର୍ବ ଓ ଦକ୍ଷିଣରେ ମହାନଦୀ ଓ ତେଲନଦୀ । ଏ ଉଭୟ ବନର-ଜି-ବିଶୋଭିତ ବୃହତ୍ ଘରମାନ ତେଲତୀରରେ ବିଦ୍ୟମାନ । ସରସନ୍ନିକଟରେ ସୁରେଶ୍ୱରୀ ଓ ସ୍ୱର୍ଣ୍ଣେଶ୍ୱର ମନ୍ଦିରମାନ । ସ୍ନାନ ସଙ୍ଗେ ସଙ୍ଗେ ଦେବ ଦର୍ଶନ, ଦେବଭକ୍ତିରେ ଲୋକମାନଙ୍କର ଚିତ୍ତ ଶାନ୍ତିମୟ ଅନୁମିତ ହେଉଅଛି । ପ୍ରାୟ ତିନି ଚାରି ହଜାର ସ୍ତ୍ରୀଲୋକ ନଦୀସ୍ନାନରତା । ଆଶ୍ଚର୍ଯ୍ୟ, ଚପଳତା ନାହିଁ, କଟାକ୍ଷ ନାହିଁ, ଅବଗୁଣ୍ଠନ ନାହିଁ, ସ୍ୱଚ୍ଛନ୍ଦ ଅବଗାହନ ଓ ବସନାଦିପ୍ରକ୍ଷାଳନ, ବସନ ଭୂଷଣର ପରିପାଟୀ, ମସ୍ତକ ଓ କକ୍ଷଦେଶରେ ଜଳପୂର୍ଣ୍ଣ କଳଶମାନ ଧରି ବ୍ୟାଯାମକଳା ଭଙ୍ଗିରେ ଦଳ ଦଳ ହୋଇ ଘଟମାନଙ୍କୁ ଉଠି ଆସୁଅଛନ୍ତି । ଏ ଦୃଶ୍ୟ କି ମନୋହର ! ଅଙ୍ଗସୌଷ୍ଠବ ଦେଖି ଅନାର୍ଯ୍ୟମାନଙ୍କଠାରେ ଆର୍ଯ୍ୟ ଭ୍ରମ ହେଉଅଛି । ଏଠାରେ ଆରଣ୍ୟକ ବ୍ରାହ୍ମଣ, କୈବର୍ତ୍ତ ଓ ଭୂଲିଆ ଜାତି ଅଧିକ । କିନ୍ତୁ କେ ଏ ଆରଣ୍ୟକ, କେ ଏ ଭୂଲିଆ, ଚିହ୍ନିବା ସହଜ ନୁହେଁ । ମହାନଦୀ ଓ ତେଲନଦୀ ଜଳ ଏମାନଙ୍କର ଅଙ୍ଗସୌଷ୍ଠବ ଓ ସୌନ୍ଦର୍ଯ୍ୟ ସମ୍ପାଦନ କରିଅଛି । ମନର ଧୀରତା ଓ ଧର୍ମଗୁଣ ଦେଇଅଛି ରାଜଧର୍ମ । ଯେ ଅମ୍ଭ ଲେଖାକୁ ଅତ୍ୟୁକ୍ତି ମନେକରିବେ, ସେ ଥରେ ଆସି ସୋନପୁର ଦେଖିଗଲେ ତାଙ୍କ ମନ ମାନିଯିବ ।

ସୋନପୁର ସହର ସମ୍ବଲପୁର ଅନୁକରଣରେ ନିର୍ମିତ । ପ୍ରାୟ ପାଞ୍ଚଶତ ତନ୍ତି ବସ୍ତ୍ରବୟନରେ ନିଯୁକ୍ତ । ବ୍ରହ୍ମପୁରରୁ କେତେକ ତନ୍ତୁବାୟ ଏଠାରେ ସପରିବାର ବାସ କରନ୍ତି । ସୋନପୁରୀ ବସ୍ତ୍ର ଏ ପ୍ରଦେଶରେ ପ୍ରସିଦ୍ଧି ଲାଭ କରିଅଛି । ଶୁଣିଲୁଁ ଏ ରାଜ୍ୟରେ ପ୍ରାୟ ଦଶ ହଜାର ତନ୍ତ ଚଳୁଅଛି । ତନ୍ତିମାନଙ୍କୁ ଭୂଲିଆ ବୋଲନ୍ତି । ଏମାନଙ୍କର ଉପାଧି ମେହେର । "ମେହେର" ଏହି ଶବ୍ଦ ଉର୍ଦ୍ଦୁ—ଅର୍ଥ ପ୍ରୀତି । ବାସ୍ତବ ଏମାନଙ୍କର ନିର୍ମିତ ବସନ ପ୍ରୀତି-ଉତ୍ପାଦକ । ଆଗରିଆ, ଡୁମାଲ, ଗଉଡ଼, ଭୂଲିଆ ଏମାନେ ବରାର ରାଜ୍ୟରୁ ଆସି ଏ ପ୍ରଦେଶରେ ବାସ କରୁଅଛନ୍ତି । କ୍ରମେ ଏମାନଙ୍କ ଭାଷା ଓଡ଼ିଆ ହୋଇଅଛି । ମାତ୍ର ଗୋଟାଏ ଗୋଟାଏ ଉର୍ଦ୍ଦୁମିଶ୍ରଣରୁ ଓଡ଼ିଆ କିଛି ବିକୃତ । ପ୍ରକୃତ ଓଡ଼ିଆ ଯେଉଁମାନଙ୍କର ମାତୃଭାଷା, ସେମାନେ ମଧ୍ୟ ସଂସର୍ଗଦୋଷରୁ ଏମାନଙ୍କର ବିକୃତ ଭାଷା ଅନୁକରଣ କରିଅଛନ୍ତି । ନାଗପୁର ଅଧୀନରେ ଏ ରାଜ୍ୟମାନ ଶାସିତ ହେଉଥିବା ସମୟରେ ବରାରରାଜ୍ୟରୁ ଉପନିବେଶ-ସ୍ରୋତ ଏ ରାଜ୍ୟକୁ ଆସିଥିଲା । ସେହି କାଳରୁ ବରାରିମାନେ ଏଦେଶବାସୀ ଓ ଓଡ଼ିଆଭାଷୀ ହୋଇଅଛନ୍ତି । ପୁରୁଷମାନଙ୍କର ଆକୃତିର ବିଭେଦ ଅଳ୍ପ । ସ୍ତ୍ରୀଲୋକଙ୍କ ଆକୃତି, ବସନପରିଧାନ ଏବଂ ଅଳଙ୍କାର ଉତ୍କଳୀୟଙ୍କଠାରୁ ସମ୍ପୂର୍ଣ୍ଣ ପୃଥକ୍ ।

ଉତ୍କଳଦେଶୀ ବ୍ରାହ୍ମଣୀମାନେ ସୁଦ୍ଧା ବଙ୍ଗୀୟ ବସନଭୂଷଣରେ ବିଭୂଷିତା । ଦ୍ରାବିଡ଼ାଙ୍ଗନାମାନେ ବିବିଧ ବିଚିତ୍ରରଙ୍ଗର ବସନ ଏପରି ଭିଡ଼ି ମଳାଡ଼ି ପରିଧାନ କରନ୍ତି ଏବଂ ଏମାନଙ୍କର ଅଙ୍ଗ ଏପରି ସୁଠାମ ଓ କମନୀୟ ଯେ ଏମାନଙ୍କୁ ଦେଖିଲେ ରମଣୀଙ୍କ ରମଣୀ-ଭ୍ରମ ପ୍ରସୂତ ହୋଇପାରେ—ଅବଶ୍ୟ ବାହ୍ୟଦେଶରେ । ଧନ୍ୟ ଉତ୍କଳପଲ୍ଲୀ-ଅଙ୍ଗନାମାନଙ୍କ ଅଳଙ୍କାରକୁ ଓ ବସନପରିଧାନକୁ ! ଏକ ପଣ୍ଡୁରୀ ଗୋଡ଼ ଓ ବାହୁବଳା ! କି ଅସଭ୍ୟତା ! ବଙ୍ଗଳା ଅଙ୍ଗନାମାନେ ଲଙ୍ଗଳା ! ଉତ୍ତର ଉତ୍କଳ ସୂକ୍ଷ୍ମବସନ ଓ ଅଳଙ୍କାରରେ ବଙ୍ଗଳାକୁ ଅନୁକରଣ କରୁଅଛି । ଏ ପ୍ରଦେଶର ଅଙ୍ଗନାମାନେ ବାରାଙ୍ଗନା କି? ମନ୍ଦ ଆଖି ରଖି ଅଛନ୍ତି ପରିଧାନ ବସନରେ ; ରମଣୀ-ମୁଖର ସୌନ୍ଦର୍ଯ୍ୟ ଓ ସୁଦୀର୍ଘ କେଶଗୁଚ୍ଛର ମଧୁରିମା ସମସ୍ତଙ୍କ ଚକ୍ଷୁକୁ ଭୋଗ କରିବାକୁ ଦେଉଅଛନ୍ତି । ଚପଳା ବଙ୍ଗାଙ୍ଗନାମାନଙ୍କପରି ବୈଦର୍ଭୀମାନଙ୍କର ହାସ୍ୟ ନାହିଁ, କଟାକ୍ଷ ନାହିଁ । ଉପରେ ଧୀର, ଭିତରେ ବୀର ! ଅମୃତ ଅନୁଭବ ହେଉଥିଲା, ଯେମନ୍ତ ଏଇଟି ମହାରାଷ୍ଟ୍ର ଦେଶ । ସାଧୁ ମହାରାଷ୍ଟ୍ରେ! ତୁମ୍ଭଦ୍ୱାରା ଭାରତର ବୀରଜାତି ସୃଷ୍ଟି ହୋଇଥିଲା । ମୁସଲମାନମାନେ କାଳ ହୋଇ ଭାରତର ମହାବଳ ନାଶ କରିଅଛନ୍ତି । କାଳ ସବୁ କରେ । କାଳ ଭାଙ୍ଗେ, କାଳ ଗଢ଼େ । କାଳ ଗ୍ରାସ କରେ, କାଳ ଜନ୍ମ କରେ । କାଳେ କାଳଗର୍ଭରୁ କଣ ବାହାରିବ—କାଳରୂପୀ ଭଗବାନଙ୍କୁ ତାହା ଗୋଚର । ପୁଣି କହୁଅଛି, ଆର୍ଯ୍ୟାବର୍ତ୍ତରେ ରାଜପୁତ୍ର ଦାକ୍ଷିଣାତ୍ୟରେ ମହାରାଷ୍ଟ୍ରମାନେ ଜାତୀୟତା ସୃଷ୍ଟି କରିଥିଲେ । ରାଜପୁତ ରମଣୀମାନଙ୍କର ବୀର-ଲୀଳାମୃତ କିଏ କର୍ଣ୍ଣ ଭରି ପାନ ନ କରିଅଛନ୍ତି ? ମହାରାଷ୍ଟ୍ରଲଳନାମାନଙ୍କର ଜାତୀୟ ଧର୍ମ ଓ ଚରିତ୍ର ଆମ୍ଭମାନଙ୍କର ଚକ୍ଷୁ କର୍ଣ୍ଣ ଦେଖି ଶୁଣି ନାହିଁ । ମହାବୀର ନେପୋଲିଅନ କହିଥିଲେ "ଫ୍ରାନ୍ସବାସୀ, ଯଦି ତୁମ୍ଭେ ମାତୃଭୂମିର ଉନ୍ନତି ଇଚ୍ଛା କର, ମାତାର ଉନ୍ନତି କର ।" ମହାବୀର ଶିବଜୀ ମହାରାଷ୍ଟ୍ରଲଳନାମାନଙ୍କୁ ବୀରମାତା, ବୀରବନିତାରୂପେ ଗଠିତ କରିଥିଲେ । ଜାତିବିଶେଷର ପ୍ରଭେଦ ରଖିଲେ ଜାତୀୟ ଯନ୍ତ୍ର ପ୍ରସ୍ତୁତ ହୋଇ ନ ପାରେ । ସ୍ୱର-ସମନ୍ୱୟ ନ ହେଲେ ସୁତାନ ବାଦ୍ୟ ବାଜି ନ ପାରେ । ଯୋଜନ୍ତର ଦେଖି ସଙ୍କୀର୍ଣ୍ଣତା ପ୍ରତି ଘୃଣା ହେଲା । ଆମ୍ଭେ ବଡ଼, ସେ ଛୋଟ, ଏ ଭାବଟା ଯେଉଁଠାରେ ପ୍ରବଳ, ସେହିଠାରେ ଲଘୁତା ପ୍ରବଳ । ଶ୍ରୀମାନ ଲୋକ ନପୃଛ ଲଘୁ । ଲଘୁତ୍ୱ ଜାତୀୟ ଉନ୍ନତିର ଅନ୍ତରାୟ । ନରଶ୍ରେଷ୍ଠ ଶିବଜୀ ଉଚ୍ଚ ନୀଚ ଉପରେ ମହାରାଷ୍ଟ୍ରଚରିତ୍ର ଗଠନ କରିଥିଲେ । ତେଲିଆ, ପାନରା, ଛେଳ, ମୋଚୀ, ଧୋବା, ଭଣ୍ଡାରୀ, କମାର, କୁମ୍ଭାର, ବଣିଆ, କୃଷକ, ଏକପ୍ରାଣ—ଏକମାନ—ଏକମନ—ଏକଦେଶ—ଏକବସନ । ଏଣେ ଚିତ୍ତପ୍ରଫୁଲ୍ଲତା ସକଳ ଅବସ୍ଥାରେ ସନ୍ଧ୍ୟା-ବେଳେ ରଖିବା ଲାଗି ଫୁଲ ଲାଗିରେ ଅନୁରାଗୀ । ଯେ ଦୁଇଗଣ୍ଡା ଅଣା କମାଉ ଅଛି ସେ ମଧ୍ୟ ଦୁଇ ପଇସାର ଫୁଲ ବଜାରରୁ କିଣିଆଣି ପରିଶ୍ରମ ଉତ୍ତାରୁ ତାହା ଲାଗି ହୋଇ ମନ ପ୍ରଫୁଲ୍ଲ କରୁଅଛି । ତନ୍ତୁ-ବାୟ-ସୂନବୀ ଗୃହାଭ୍ୟନ୍ତରରେ କର୍ମ କରୁ କରୁ ଚିତ୍ତ-ଆନନ୍ଦରେ ଗୀତ ଗାଉଅଛି । ଯୁବକମାନେ ସହିରେ ଫୁଲ ଲାଗି ହୋଇ ଦାଣ୍ଡ ଘାଟରେ ଓଡ଼ିଆ ଚଉପଦୀ ଓ ଛାନ୍ଦ ଗାଉ ଅଛନ୍ତି । ମହାରାଷ୍ଟ୍ର ଅଭ୍ୟୁତ୍ଥାନ କାଳରେ ଉତ୍କଳ ଓ ବିଦର୍ଭ ମିଶାମିଶି ହୋଇ ଆସୁଥିଲା, ରାଜଚକ୍ରର ପରି-ବର୍ତ୍ତନ ତାହାର ପଥ ରୋଧ କଲା । ଏବେ ଏହି ମିଶାମିଶି କୁଟୁମ୍ବରେ ଓଡ଼ିଆ ଭାଷାର ବହୁଳ ପ୍ରଚାର ହେଲେ ବିଶେଷ ଉପକାରର ଆଶା ଅଛି । ଲୋକେ ସାଧାରଣବୋଧକ ସାହିତ୍ୟଚର୍ଚ୍ଚାରେ ଅଗ୍ରଣୀ । ସେହିଭଳି ସାହିତ୍ୟ ଆମ୍ଭେମାନେ ସୃଷ୍ଟି କରି ପାରୁ ନାହୁଁ । ବଙ୍ଗଳା ସାହିତ୍ୟାନୁକରଣ ଉତ୍କଳରେ ପ୍ରବଳ । "ଛ ମାଣ ଆଠ ଗୁଣ୍ଠ" "ଭାଗବତ ଟୁଙ୍ଗୀରେ ସନ୍ଧ୍ୟା" ଏହିଭଳି ଲେଖା ପଢ଼ିବାକୁ ଅନେକେ ସୁଖ ମଣନ୍ତି । ସୋନପୁର, ସମ୍ଭଗଡ଼ ଓ ରେଢ଼ାଖୋଲରେ ଫକୀର ମୋହନ

ସମାଲୋଚନାର ଆଦର ଅଛି । ଫକୀରମୋହନଙ୍କର ପ୍ରବନ୍ଧ ସୁପଥ୍ୟ ଓ ସୁରୋଚ୍ୟ ସାହିତ୍ୟ ବୋଲି ଅନେକଙ୍କର ମତ । ନିଜ ଅବଶିଷ୍ଟ ଜୀବନଟା ଅର୍ଥ-ଚିନ୍ତାରେ ନ କଟାଇ ଯେବେ ସାହିତ୍ୟ-ଚର୍ଚ୍ଚାରେ କଟାଇ ଦିଅନ୍ତେ ତେବେ ଓଡ଼ିଆ ଭାଷା ପ୍ରସର ଲଭନ୍ତା । ଯୁଗଧର୍ମ ଓ ଉତ୍କଳର ରୁଚି ପ୍ରତି ଲକ୍ଷ୍ୟ ରଖି ସାହିତ୍ୟସୃଷ୍ଟିର ପ୍ରୟୋଜନ । 'ଉତ୍କଳ ସାହିତ୍ୟ' ପତ୍ରିକାରେ କିଶୋର କବି ନନ୍ଦକିଶୋର ବଳଙ୍କର କବିତା ସୁରୋଚ୍ୟ ସୁପାଠ୍ୟ ଓ ପ୍ରୀତି-ଉତ୍ପାଦକ । ନବ କବି ଚନ୍ଦ୍ରମୋହନ ପୂର୍ଣ୍ଣଚନ୍ଦ୍ରରେ ଅଧିକ ଆସକ୍ତି ବଢ଼ାଇ କାବ୍ୟରସ ଆସ୍ୱାଦୁ ମଣିଲେ । ବଡ଼ ଖେଦ ହେଲା ! ମଧ୍ୟପ୍ରଦେଶରେ ବାମଣ୍ଡା ସାହିତ୍ୟଚର୍ଚ୍ଚାରେ ଅନୁରକ୍ତା । ସୋନପୁର ପୂର୍ଣ୍ଣ-ଉତ୍କଳଶୋଣିତ, ସୁବୋଧ ଓ ସୁପଣ୍ଡିତ । ଅବଶ୍ୟ ସୁଯୋଗ ନ ପାଇ ନିଜ ଦୁର୍ଗରେ ଉତ୍କଳ ଭାଷାର ଥାନା ବସାଇ ପାରି ନାହାନ୍ତି । ମନ ମୂଳରେ ସବୁ । ମନ ଥିଲେ କାମ ହୁଏ । ପୁଣି ଆଳସ୍ୟଟା କର୍ମର ଶତ୍ରୁ । ଏହାକୁ ପାଖଛଡ଼ା ନ କଲେ ମନ ଥିଲେ ସୁଦ୍ଧା କୌଣସି କାମ କରି ହୁଏ ନାହିଁ । ସୋନପୁରର ଯୁବରାଜ ଶ୍ରୀମାନ୍ ବୀରମିତ୍ରୋଦୟ ସିଂହଦେବ ଉତ୍କଳ ସରସ୍ୱତୀଙ୍କର ସମ୍ଭ୍ରମ ଶ୍ରୀସମ୍ପାଦନରୁ ମିତ୍ରୋଦୟ ହେଲେ କେଡ଼େ ସୁଖର କଥା ହୁଅନ୍ତା । ଜୀବନ-ସ୍ରୋତଟା ଚାଲିଛି କି ? 'ଆଜି, କାଲି,' ଏହିପରି ଅନନ୍ତ କାଳସମୁଦ୍ର ଆଡ଼କୁ ବୋହି ଯାଉଅଛି ପରା ? ସମୟର ତ୍ରୁଟି ଧରି କାଏକର ନାଥ । ମାନବ ଜୀବନ ଦୁର୍ଲ୍ଲଭ । ଦୁର୍ଲ୍ଲଭ ଜୀବନରେ ସମୟ ଦୁର୍ଲ୍ଲଭ । ବୋହିଗଲା ନଈପାଣି ଆଉ ବୋହିଗଲା ଜୀବନ-ସ୍ରୋତ କିଏ ଫେରାଇବ ? କେଡ଼େ ଖେଦ ! ଧନ ହୋଇ ନାହିଁ । ଭଣ୍ଡାର ଆଉ ଉପବାସ । ଜୀବନ ଆଉ ମୃତ । ଆଳସ୍ୟ-ସମ୍ପନ୍ନଙ୍କ ହାତରେ ଏଡ଼େ ଦୁର୍ଗତି !

ଲୌକିକତା ହୃଦୟର ପରିଚାୟକ ନ ହେଲେ ସୁଦ୍ଧା ମନ ଜାଣିବାର ଅଣୁବୀକ୍ଷଣ । ଆମ୍ଭେମାନେ ଲୋକଚରିତ୍ର ଚିହ୍ନିବାର ଚଷ୍ମାଦର୍ପଣକୁ ଯୋଗ୍ୟ ନୋହୁଁ । ହେଲେହେଁ ଆଖି, କାନ, ଯାହା ଯାହା ଦେଖି, ଶୁଣି, ବୁଝି ନେଉଥାଏ, ତହିଁରେ ମନ୍ତବ୍ୟ ଆପେ ଆସି ପଡ଼େ । ଜଣେ ପଚାରି ଥିଲେ "ମୁଁ କପର ଲୋକ କହି ପାରିବ କି ?" ଉତ୍ତର—"Tell me who are your friends and I will tell you what sort of man you are" କହ ତୁମ୍ଭର ବନ୍ଧୁ କେଉଁମାନେ, ତେବେ ଆମ୍ଭେ କହି ଦେବୁଁ ତୁମ୍ଭେ କି ଭଳି ଲୋକ ।" ଜଣେ ଯୁବକ ମନରଖିବା ସାଦ ପର୍ଦ୍ଦାରେ ଘୋଡାଇ ଶିଷ୍ଟାଚାରର ପେଟି ଫିଟାଇ ଦେଲେ । ଧରାପଡ଼ିଗଲେ, ସେ ମିଶିରର କ୍ଷୁର । ଆଉ ଜଣେ ସୁଚରିତ୍ର ଲୋକଙ୍କୁ ତାଙ୍କ ସଙ୍ଗକୁ ଓଟାରୁ ଥିଲେ । ସେ କିନ୍ତୁ ଛଡ଼ାଇ ହେଉଥିଲେ । ପୁଣି ଲଜ୍ଜାରେ ଅବନତମସ୍ତକ ହୋଇ ସାଧୁ ହୃଦୟର ପରିଚୟ ଦେଉଥିଲେ । ଅନ୍ୟଜଣେ ବନ୍ଧୁ ଖୋଲା ମନରେ ମିଶିରର କ୍ଷୁର କଥା ଶୁଣି ସଲଜ୍ଜ ବସିଥିଲେ । ସଜ ହେଲା ନାହିଁ—ଅପସରି ଗଲେ । ଅନ୍ୟ ସମୟରେ ସୁଚରିତ୍ରର ସାର୍ଟିଫିକଟ ସବୁ ଆପେ ହାଜର ହୋଇ ଆମ୍ଭମାନଙ୍କୁ ମନେ ମନେ ହସାଇଲେ । ଆଉ ଦୁଇ ଜଣ ଭଦ୍ର ଛାତ୍ରଙ୍କୁ ଗତି ଦେଖି ଉତ୍ତ୍ରସ୍ତ ହୋଇଥିଲେ । ଭଦ୍ରତାର ପୋଷାକ କିଏ ଖୋଜେ ? ବେଶ୍ ଆଳାପ, ବେଶ୍ ପ୍ରୀତି ! ଭିତରର କଥା ଜଣା ନ ଥିଲେ କେଉଁ ଭଦ୍ରଲୋକ ତାହା ବାହାର କରି ଲଘୁ ହେବ ? ନବ୍ୟ ସଭ୍ୟ ବାବୁମାନେ ବଙ୍ଗସଭ୍ୟତାପ୍ରିୟ ହୋଇ ଭୁଣ୍ଡି ମୁଣ୍ଡି ଭଳି ରଖୁ ଅଛନ୍ତି । ଲକ୍ଷଣ ଭଲ ନୁହେଁ । ସାଧାରଣ ଭଦ୍ରଲୋକଙ୍କୁ ଛାଡ଼ି ଷ୍ଟେଟର ପ୍ରଧାନ କର୍ମଚାରୀମାନଙ୍କ ସହିତ ଆଳାପ କଲୁଁ । ପୂର୍ବ ତହସିଲଦାର (ଡେପୁଟି କଲେକ୍ଟର) କେଶବଚନ୍ଦ୍ର ଗୁରୁ ସମ୍ବଲପୁରନିବାସୀ ଖ୍ୟାତନାମା ଦେୱାନ ସ୍ୱର୍ଗୀୟ ଗୋପୀନାଥ ଗୁରୁଙ୍କର ଭ୍ରାତୃପୁତ୍ର । ଶତ୍ରୁ ନାହିଁ, ମିତ୍ର ନାହିଁ, କୂଟ ନାହିଁ, କପଟ ନାହିଁ, ଚଳ ନାହିଁ, ଗରୁଷ ନାହିଁ, ତୁମ୍ଭେ ତୁଷ୍ଟ ହୁଅ, ତୁଷ୍ଟ ହୁଅ, ସେହି,

ତାଙ୍କ ମନ କଥାଟି ଭୁଣ୍ଡ ପିଟାଇ ତୁରନ୍ତ ବାହାର କରି ଦେବେ । ପ୍ରଭୁର ଓ ଶ୍ରେଷ୍ଠର ସମ୍ମାନ ବେଶ୍ ରକ୍ଷି ଜାଣନ୍ତି ଏବଂ କର୍ତ୍ତବ୍ୟପାଳନରେ ଅନୁକ୍ଷଣ ତତ୍ପର—ସାମ୍ପୁସୁଧାନ ।

ଶ୍ରୀଯୁକ୍ତ ରାୟ ସାହେବ ଦୀନବନ୍ଧୁ ପଟ୍ଟନାୟକ ମହାଶୟ ସମ୍ବଲପୁର ସହରର ଜଣେ ନାମଜାଦା ସମ୍ଭ୍ରାନ୍ତ ନାଗରିକ। ଦୀର୍ଘକାଳ ଏହାଙ୍କର ନାମ ଶୁଣି ଆସିଥିଲୁଁ—ସାକ୍ଷାତ୍ ହୋଇ ନ ଥିଲା । ସାକ୍ଷାତ୍ ହେଲାକ୍ଷଣି ଶିଷ୍ଟାଚାରର ଗାଳ ଦେଲେ । କିନ୍ତୁ ଏହାଙ୍କୁ ଚିହ୍ନିବା ଅଳ୍ପ ଆୟାସର କଥା ନୁହେ । ଉଚିତ ତାହି । ମନ୍ତ୍ରିର ଗୁଣ ଗାମ୍ଭୀର୍ଯ୍ୟ ଗୁଣ । ମନ୍ତ୍ରି-ମନ ଜାଣିବା ସହଜ କଥା କି ? ରାୟ ସାହେବ ମନ୍ତ୍ରିଯୋଗ୍ୟ ପାତ୍ର । ଶିକ୍ଷା ଓ ବହୁଦର୍ଶନର ସୁବିଧା ପାଇଥିଲେ ଏ ମହାଶୟ ମଧ୍ୟ ପ୍ରଦେଶରେ ସାର୍ ଦିନକର ରାଓ ହୋଇ ପାରିଥାନ୍ତେ । ଗୋଟାଏ କଥାରେ ଏହାଙ୍କର ମନ୍ତ୍ରିବୁଦ୍ଧିର ପରିଚୟ ଦିଆ ଯାଉ । ସୋନପୁରର ଆଧୁନିକ ଉନ୍ନତିର ହେତୁ କିଏ ? ରାଜା, ନା ଦେବାନ ? ଡେପ୍ କମିଶନର ଏହା ସିଦ୍ଧାନ୍ତ କରିବାକୁ ଯାଇ ଦେବାନଙ୍କୁ ପଚାରିଲେ । ଦେବାନ କହିଲେ ରାଜା । ରାଜାଙ୍କୁ ପଚାରିଲେ, ରାଜା କହିଲେ ଦେବାନ । ଦୁହିଙ୍କର ଉଦାର ମତରେ କମିଶନର ମହୋଦୟ ଏପରି ସୁପ୍ରସନ୍ନ ହୋଇଥିଲେ ଯେ ରାଜାସାହେବଙ୍କୁ ରାଜା ବାହାଦୁର ଏବଂ ଦେବାନ ସାହେବଙ୍କୁ ରାୟ ସାହେବ ସମ୍ମାନ-ସୂଚକ ଉପାଧିରେ ଭୂଷିତ କରାଇଲେ । ଅଧୁନା ରାୟ ସାହେବ ଗବର୍ଣ୍ଣମେଣ୍ଟ ମଞ୍ଜୁରରେ ତହସିଲ-ଦାର ପଦରୁ ଏକଷ୍ଟ୍ରା କମିଶନର ପଦକୁ ନିଯୁକ୍ତ ହେଲେ । ରାୟ ସାହେବଙ୍କର ଅନେକ କାନ, ଅନେକ ଆଖି ଓ ଅନେକ ହାତ । ଇଙ୍ଗିତରେ କଥା ନଅନ୍ତି । ବିନୟ ଓ ଲୋକପ୍ରିୟତା ଏହାଙ୍କର ପ୍ରଧାନ ଭୂଷଣ । ଅନୁମାନ ଯେ କେତେକ ସଦ୍‌ଗୁଣ ରାଜା ବାହାଦୁରଙ୍କଠାରୁ ଲାଭ କରିଅଛନ୍ତି ।

"କିଂ ତେନଂ ଯଃ ଦଣ୍ଡମନୁଗତୋ ।
ରାଜା ଭବେଦ୍ଧାର୍ମିକଃ ।"

ପୁନଃ ।—"ଧୃତିଃ କ୍ଷମା ଦମୋଽସ୍ତେୟଂ
ଶୌଚମିନ୍ଦ୍ରିୟନିଗ୍ରହଃ ।
ଧୀର୍ବିଦ୍ୟା ସତ୍ୟମକ୍ରୋଧୋ
ଦଶକଂ ଧର୍ମଲକ୍ଷଣଂ ।

ସ୍ୱର୍ଣ୍ଣପୁରାଧୀଶର ଏବମ୍ବିଧ ଧର୍ମଲକ୍ଷଣରେ ଅଳଙ୍କୃତ । ଆମ୍ଭେମାନେ ରାଜା ବାହାଦୁରଙ୍କୁ ଅଭିବାଦନ କରି ସୋନପୁର ଷଢ଼ି କୁଣ୍ଡୁକ (ନାବ) ଯୋଗେ ମହାନଦୀର କଲ୍ଲୋଳମୟ କୋଳରେ ଭାସିଲୁଁ । ଆମ୍ଭର ବନ୍ଧୁ ଦେବାନ ସାହେବ, ତହସିଲଦାର ସାହେବ ଏବଂ ପୁଲିସ୍ ଇନସ୍-ପେକ୍ଟର ମହୋଦୟଗଣ ବିଦାୟସୂଚକ ଗନ୍ଧ ଓ ପୁଷ୍ପହାର ପ୍ରଦାନପୂର୍ବକ ପ୍ରେମାଲିଙ୍ଗନଦ୍ୱାରା ହୃଦୟ ମିଶାଇ କୁଣ୍ଡୁକରେ ବସାଇ ଦେଇ ଗଲେ ।

ଶ୍ରୀ ଭୋଲାନାଥ ସାମନ୍ତରାୟ ।

---

## କ୍ଷୁଦ୍ର କ୍ଷୁଦ୍ର କବିତା ।

### ଓଡ଼ିଆ ବାଳକ ।

(୧)

ଯେତେବେଳେ ପିଲା ଥାଏ ଦେଶୀୟ ଅବଳା,
ପାଞ୍ଚ ଛଅ ବର୍ଷଯାଏ ରହେ ସେ ଲଙ୍ଗଳା ।
ଅଜା ଆଇ ପାଖେ ବସି ଶିଖେ ରସକଳା,
ଅସ୍ଥା ମଜା କରେ ଯେବେ ଆସେ ଭାଇଶଳା ।
ସାତ ଆଠ ବର୍ଷୁ ବୁଝେ ବିବାହର ମର୍ମ,
ପାଠଶାଳା ଗଲେ କିନ୍ତୁ ମହାନ ଅଧର୍ମ ।
ଓଢ଼ଣା ପକାଇ ବୋହୂ ସାଜି ଭୁନ ଭୁନ
ଧୂଳଘର କରି ବସି ଶିଖାଇ ବାହୁନ ।
କୁଣ୍ଢାଇକନ୍ୟାର ସଙ୍ଗେ କୁଣ୍ଢାଇର ବର,
ଦୁଇ ସମୁଦୁଣୀ କରୁଥାନ୍ତି ବାହାଘର ।
ଭାଉଜ, ଦେଢଣେଇ, ଭାଇଶଳା, ଅଜା, ଆଇ
ଗୁରୁ ଯାଉ, ପ୍ରଜାଣା ସେ ନ ହେବ କପାଇଁ ?

ହାତ ଘୋଡ଼ାଙ୍କ ଜାଣୁଣୁ ନାଶେ ବର୍ଣ୍ଣମର୍ମ,
ବଙ୍ଗ, ଛୁଆପିଲା, ଏକମାତ୍ର ବାହ୍ୟଧର୍ମ !

(୨)

ବଙ୍ଗ ଛୁଆପିଲା ଛାତ୍ର ହେ ସ୍ୱଦେଶୀ ଭାଇ,
ଏ ସଂସାରେ ବାହାର କି କିଛି କାର୍ଯ୍ୟ ନାହିଁ ?
ସାହିତ୍ୟ, ବିଜ୍ଞାନ, କାବ୍ୟ, ଦର୍ଶନ ପଠନ
କରନ୍ତି ଜବଷ୍ଟମାନେ ଯେଉଁ ପୁତ୍ରଗଣ,
ତାଙ୍କ ଉପଯୁକ୍ତ ବନ୍ଧୁ ହେବେ ଏହି ମାନେ—
ଧର୍ମବନ୍ଧୁ ଦୁଃଖେ ସୁଖେ କର୍ମପ୍ରେମଜ୍ଞାନେ ?
ବାପର କି ପୂର୍ବ ପ୍ରଥା ଲଙ୍ଘିବ କେମନ ?
ପଶୁରୁଚି, ଯୁଗଧର୍ମ କରିବ ବର୍ଜନ ?
ପିନ୍ଧୁଥିଲେ ପିତା ତୁମ୍ଭ ଧୋତି ଓ ଚଦର,
ସାର୍ଟ କୋଟ ପେଣ୍ଟ୍ଲୁ ତୁମ୍ଭ କିପାଇଁ ଆଦର ?
ଗୀତ ଭାଗବତେ ତୃପ୍ତ ଥିଲା ତାଙ୍କ ଚିତ୍ତ;
ଡିକେନ୍ସ ଥାକରେ ପଢ଼ି ତୁମ୍ଭେ ବିମୋହିତ ।
ହୋମର୍ ଭର୍ଜିଲ୍ ଗେଟେ ସେକ୍ସପିୟର୍ ମିଲ୍ଟନ୍
ଗୋଏଟେ ସିଲର ପାଠେ କିପାଁ ବଳା ମନ ?

(୩)

ପୁରୁଷ-ସହଧର୍ମିଣୀ ଅର୍ଦ୍ଧାଙ୍ଗ ଅଙ୍ଗନା,
ଆହା କି ଘୋର ଅଜ୍ଞାନ-ତିମିରେ ଅନ୍ଧପ୍ରା !
ନର ଉଚ୍ଚଶିକ୍ଷାପ୍ରାପ୍ତ ଉଚ୍ଚ ଜ୍ଞାନରତ,
ନାରୀ ନିରକ୍ଷର କ୍ଷୁଦ୍ର ବିଷୟେ ଆସକ୍ତ ।
ବିଜ୍ଞାନ ଦର୍ଶନେ ନର ସତତ ମୋହିତ,
ନାରୀ ପ୍ରତିବେଶୀ ସହ କଳହରେ ଲିପ୍ତ ।
ଜ୍ଞାନପ୍ରେମଧର୍ମବିଷୟେ ଆଦାନ ପ୍ରଦାନ
ମାନବ ମାନବ ମଧ୍ୟେ ବନ୍ଧୁତାନିଦାନ ।
ସତ୍ୟ, ନରନାରୀ-କର୍ମ-କ୍ଷେତ୍ର ଅଟେ ଭିନ୍ନ,
ମାନସୀ ଶକ୍ତିରେ କିନ୍ତୁ ହୋଇଏ ଅଭିନ୍ନ ।
ନର-କାର୍ଯ୍ୟକ୍ଷେତ୍ର ଏହି ବିଶାଳ ସଂସାର,
ନାରୀ-କର୍ମଭୂମି ସେହି କ୍ଷୁଦ୍ର ପରିବାର ।
ଜ୍ଞାନ କିନ୍ତୁ ଉଭୟଙ୍କ ସମ ଆବଶ୍ୟକ,
ଦୁହିଙ୍କ ସୌହୃଦ୍ୟ-ସମ୍ବନ୍ଧବନ୍ଧନକାରକ ।

ଶ୍ରୀ—

---

## ହେତୁ ନ ବୁଝନ୍ତି ଆହା !

ଅନନ୍ତ ବିସ୍ତୃତ ସିନ୍ଧୁ— ତଥା ଶତ ଶତ ନଦୀ
ବିସ୍ତାରି ନଗର ଗ୍ରାମ ବହୁ ଅଛି ନିରବଧି,
ଆହା ଯଥା ବିରଚିତ ବାଲୁପୂର୍ଣ୍ଣ ମରୁଭୂମି,
ବନେ ନାହିଁ କିପାଁ ବାରି ଉତ୍ତପ୍ତ ବାଲୁକା ଚୁମ୍ବି ?
ନୈଶ ରୌଦ୍ରକିରଣକ୍ଷୋଭ ଯେବେ ତପ୍ତକରେ ଧରା,
ମାନବେ ଦେବାକୁ ଶାନ୍ତି ନ ପଡ଼େ ବରଷା ଧାରା ।
ବନ୍ଧୁରେ ଶ୍ରାବଣ ମାସେ ଅବିଶ୍ରାନ୍ତ ବାରି ରାଶି
ପ୍ଲାବିତ କରଇ ଧରା, କା’ର ସାଧ ସେଥେ ଆସି ।
ଦାରୁଣ ମାଘର ଶୀତ ରୁଦ୍ର ବେଶ ତପନର
ଦୂର କରି ଧରଣୀରୁ ବିସ୍ତାରେ ନିଜର କର ।
ଏହି କ୍ରୂର ନିଷ୍ଠୁରତା ଦସ୍ୟୁକୁ ବିଧିଙ୍କ ଯଦି,
କୋଟି କଣ୍ଠ ଗାଏ କିପାଁ ତାଙ୍କ ଦୟା ନିରବଧି ?
ନା ନା, ସେ ଦସ୍ୟୁକୁ ସିଦ୍ଧ ମାନବେ ଦେବାକୁ ସୁଖ
ଋତୁ ଛନ୍ଦ ବିରଚିବ ପୂର୍ଣ୍ଣ କରି ସୁଖ ଦୁଃଖ ।
ଦେଖିବାକୁ ଇଚ୍ଛା ଯଦି ମଙ୍ଗଳମୟଙ୍କ ବିଧି,
ବିପଦ-ଅନ୍ଧାରେ ଦେଖ ସେହି ସୁମଙ୍ଗଳ ଛବି ।
ଯଥା ଝରେ ଶୋକ-ଅଶ୍ରୁ ଅନନ୍ତ-ନୟନ-ଧାରା,
ତାହାରି ଭିତରେ ଦେଖ ବିଧିଙ୍କ କୃପାର ଧାରା ।
ଯାହାଙ୍କ ବିଧାନ ଆହା ମଧୁର ମିଳନ-ସୁଖ
କରିବାକୁ ମିଷ୍ଟତର ଘଟାଏ ବିଚ୍ଛେଦ ଦୁଃଖ ।
ଯାହାଙ୍କ ନୟନ ଆହା ବିକାଶି ଅରୂପ ଭାତି
ସମ୍ମୁଖେ ଦେଖାଏ ପଥ ଆଲୋକ ଅନ୍ଧାର ରାତି ।
ଯାହାଙ୍କ ବିଧାନ ଆହା ସୁଖର କାରଣ ଦୁଃଖ,
ଚିର ବିଚ୍ଛେଦର ପଥେ ମହାମିଳନର ସୁଖ ।
ମଳିନ ହୃଦୟ ଆହା କରିବାକୁ ଶୁଭ୍ରତମ
ପ୍ରେରନ୍ତି ମାନବ ପାଶେ ନିଷ୍ଠୁରତା ନିରମମ ।
ତାଙ୍କର ମଙ୍ଗଳବିଧି ବ୍ୟାପି ଏହି ଚରାଚର
ଜୀବର କଲ୍ୟାଣ ଲାଗି ରହିଛନ ତତପର ।
କିବା ଶୋକୀ, ଦୁଃଖୀ, ପାପୀ, କିବା ଧନୀ, ପୁଣ୍ୟବାନ,
ସମଭାବେ ସର୍ବେ ରଖେ ତାଙ୍କ ବିଧି ସୁମହାନ ।
ଏ ଭବେ ଅଟନ୍ତି ସେହି ଏକମାତ୍ର କର୍ଣ୍ଣଧାର,
ଚଳାନ୍ତି ଜୀବନ-ନାବ ଲଙ୍ଘି ତରଙ୍ଗ ଅପାର ।

ଜୀବନେ ମରଣେ ସେହି ଏକମାତ୍ର ଧ୍ରୁବତାରା,
ପାପମଗ୍ନ ଧରାଧାମେ ପୁଣ୍ୟର ନିର୍ଝରଧାରା ।
ତାଙ୍କର ମଙ୍ଗଳବିଧି କେହି ନ ବୁଝନ୍ତି ଆହା !
ସ୍ୱତନ୍ତ୍ର ଅସତ୍ୟେ ସତ୍ୟ ଯାର ମୁଖେ ଆସେ ଯାହା ।
ସଂସାର-ଦୁର୍ଦ୍ଦିନେ ଆହା ତାଙ୍କର କରୁଣା ରାଶି
ବିତରଣେ ସ୍ନେହ, ପ୍ରେମ, ସଙ୍କଟ ଦୁର୍ଦ୍ଦିନ ନାଶି
ଅଭୟ ଅମୃତ ହସ୍ତେ ମୋ ଦୁର୍ବଳ ହସ୍ତ ଧରି
ସେନ ଦିବ ନାହିଁ କି ହେ ସତ୍ୟପଥେ କୃପା କରି?
ବିହାରିବେ ନାହିଁ କି ହେ ତାଙ୍କର ମଙ୍ଗଳ ଭାତି
ସଜ୍ଞାନେ ଅଜ୍ଞାନେ ମୋର ସୁଖେ ଦୁଃଖେ ଦିବାରାତି?

ଶ୍ରୀମତୀ ରେବା ରାୟ ।

---

## ପ୍ରଭୁ ହେ ।

ତୁମ୍ଭେ ସର୍ବ ଜଗଦୀଶ ! ସୃଜନକାରଣ,
ତୁମ୍ଭେ ସର୍ବ କର ନାଥ ! ଜଗତ ପାଳନ,
ତୁମ୍ଭେ ପୁଣି କର ସର୍ବ, ସମସ୍ତ ସଂହାର,
ଶ୍ରୀଚରଣେ ମହାପ୍ରଭୋ, କରେଁ ନମସ୍କାର । ୧ ।
ତୁମ୍ଭେ ସର୍ବ କର ଜୀବେ ଆହାର ପ୍ରଦାନ,
ତୁମ୍ଭେ ସର୍ବ ଦେଇ ଅଛ ନିବାସର ସ୍ଥାନ,
ଧନ ମାନ ଜ୍ଞାନ ବୁଦ୍ଧି ଦେଇଅଛ ସକଳେ,
ପ୍ରଣତ କରଇ ପ୍ରଭୁ, ଶ୍ରୀଚରଣତଳେ । ୨ ।
ତୁମ୍ଭେ ଦେଇଅଛ ଦେବ ! ତୃଷାତୁରେ ଜଳ,
ତୁମ୍ଭେ ଶାନ୍ତି ରଖିଅଛ ଛାୟା ସୁଶୀତଳ,
ତୁମ୍ଭର ଇଚ୍ଛାରେ ସର୍ବ ଶୁଭ ସଂଘଟନ,
ଶ୍ରୀଚରଣେ ଦେବଦେବ, କରଇ ବନ୍ଦନ । ୩ ।
ଆମ୍ଭାସଙ୍ଗେ ବାସ ତବ ଅମ୍ଭର ଦେବତା,
ସର୍ବଭୂତେ ପୂରିଅଛ ବିଶ୍ୱର କରତା,
ଦିବାନିଶି ରବି ଶଶୀ ଦେଖି ନିରନ୍ତର,
ତୋ ଅନନ୍ତ ପାଦ-ପଦ୍ମେ ପ୍ରଣତ ମୋହର । ୪ ।
ଗାଇ ତୋର ମହାଗୀତ ନଦୀ ବହିଯାଏ,
ଗଗନେ ବିହଙ୍ଗ ଉଡ଼ି ମଧୁସ୍ୱନେ ଗାଏ;
ସେ ମହାମନ୍ତ୍ରେ ମୋହିତ ଦେବ ଦୈତ୍ୟ ନର,
ଶତକୋଟି ନମସ୍କାର କରେଁ ତୋ ପୟର । ୫ ।
ପାପୀ, ତାପୀ, ଦୁଃଖୀ, ରଙ୍କ, ଧନିକ, ବଣିକ,
ସବାରେ ଖୋଜନ୍ତି ତୋତେ ତୁହି ଯେ ମାଣିକ,
ଅନନ୍ତ ନୟନେ ପୂର୍ଣ୍ଣ ମହାଶୂନ୍ୟ ଭିତେ,
ପ୍ରଣିପାତ କରେଁ ଦେବ, ତୋ ପଦପଙ୍କଜେ ।୬।
ଅନନ୍ତ ଦେବତା ! ତୋର ଅନନ୍ତ ମହିମା ,
କିନ୍ତୁ ପ୍ରକୃତିରେ ଯେତେ ଦେଖାଉଛୁ ସୀମା,
ଯୋଗିବର ତାହା ଧ୍ୟାଇ ତୋ କୋଳେ ବସଇ,
ଅଜ୍ଞାନ ପାମର ମୁହିଁ ତୋ ପଦେ ନମଇ । ୭ ।
ସତ୍ୟ-ଜ୍ଞାନ-ପ୍ରେମ-ପୁଣ୍ୟେ ପୂର୍ଣ୍ଣ ତୁ ଈଶ୍ୱର,
ଅପୂର୍ଣ୍ଣ ବିଶ୍ୱ ବ୍ରହ୍ମାଣ୍ଡ ରଚନା ତୋହର,
ସମଷ୍ଟିରେ ଯୋଗୀ ଧ୍ୟାଏ ତୋ ପୂର୍ଣ୍ଣ ବଦନ,
ବ୍ୟଷ୍ଟି-ନେତ୍ରେ ଆନ ଆନ ଭଜେ ଜନଗଣ । ୮ ।
ମୋତି-ପଦ-ତଳେ ବସି ବନ୍ଦିବି ପୟର,
ଗାଇବି ତୋ ଜୟଗୀତ କାମନା ମୋହର,
ହେ ପରମ-ପିତୃଦେବ, କର ସୁକଲ୍ୟାଣ,
ତବ ଭକ୍ତ-ପଦତଳେ କରଇ ପ୍ରଣାମ । ୯ ।

ଶ୍ରୀ ଦୈତ୍ୟାରି କର ।

—:o:—

## ନାରୀ ।

ଯିବାକୁ ସେ ଯାହାଠାରୁ ପାଇଛନ୍ତି ଶରୀର
କାହାକୁ କହଇଁ ମୁହିଁ ଜନନୀ ଆଦର ?
କାହା ସଙ୍ଗେ କଥା କହି ଲେଖି କେବେ ଭାଷା
ସାରମୁକ୍ତ କରେଁ ହୃଦ, ପୂରଇ ମୋ ଆଶା ?
ମୂର୍ଖ ସେ ଯେ କୁଟୁମ୍ବିତା କରେ ବିଦେଶରେ,
ଜ୍ଞାତି-ସ୍ନେହ ଖୋଜି ବୁଲେ ବିଦେଶୀଙ୍କଠାରେ ।
ଭକ୍ତି-ସ୍ନେହ-ସ୍ରୋତ ବହେ ଜ୍ଞାତ ପରିଜନେ,
ତୋ ଦୟା ତୋ ସ୍ନେହ ଏଥି ସାକ୍ଷୀ ମୋ ଜୀବନେ ।

ନିସ୍ପୃହ ନଦେଶେ କରେ ବିଦେଶେ ଭ୍ରମଣ,
ପାଏଁ ତଥା ସ୍ନେହ ପ୍ରୀତି, ନ ରୁଚଇ ମନ,
ନୈସର୍ଗିକ ସ୍ନେହ ପାଇଁ ଯେହିଁ ଥାଏଁ ତୋତେ,
କେବେ ଘରେ ଫେରିବି ମୁଁ ଭାବୁ ଥାଏ ଚିତ୍ତେ ।

ଫେରିଲେ ପୂଜିବି ତୋ ପାଦ ଭକ୍ତି-ପୁଷ୍ପ ଆଣି,
ଦୁଇଦିନ ପରେ ଯେବେ ଜାଏଁ ମୁଁ ମେଲାଣି,
ମସ୍ତକେ ଚୁମ୍ବନ ଦେଇ ଭିଡ଼ିଣ ଆଦରେ,
ଗୁଣି ହେଉ ଥାଏଁ ତୋତେ ଦେଶଦେଶାନ୍ତରେ ।

ସଞ୍ଜ ଘଣ୍ଟା ବାଜି ଉଠେ, ବାଜେ କରତାଳୀ,
ଘରେ ଘରେ ଶୁଭୁଥାଏ ଶଙ୍ଖ ହୁଳହୁଳି,
ଝିଲ୍ଲୀରବେ ପୂରେ ବାୟୁ ପୂରେ ଏ ଗଗନ,
ନୀରବେ ନଉକେ ବସି ଥାଉଁ ଦୁଇ ଜଣ ।

ପ୍ରଶାନ୍ତ ବଦନେ ଢୋଳେ ଅନନ୍ତଲହରୀ,
ପିଲାମାନେ ଖେଳୁଥାନ୍ତି ତୋ ଅଞ୍ଚଳ ଧରି,
ଧୀରେ ଧୀରେ ଯାଏଁ ମୁହିଁ ମନର ଉଲ୍ଲାସେ,
ଡାକ ସୁମଧୁର ସ୍ୱରେ ବସାଉ ତୋ ପାଶେ ।

ଯେତେବେଳେ ଦୁଃଖଜନି ଘୋଟେ ଚଉଦିଗ,
ବିସ୍ତୃତ ଜୀବନ-ପଥ ଦିଶେ ମରୁମାର୍ଗ,
ପିଇବାକୁ ମୃତ୍ୟୁ-ବାରି ଧାଉଁଥାଏ ମନ,
କାହା ସ୍ନେହ-ଚୁମ୍ବ ମୋତେ କରେ ନିବାରଣ ?

ପ୍ରକୃତିର ଲୀଳାକ୍ଷେତ୍ର ଗିରି, ନଦୀ, ଝର,
ପ୍ରାଚୀନ ପବିତ୍ର ଦେବଦେବୀଙ୍କ ମନ୍ଦିର,
ଦେଖାଇଛୁ ଖ୍ୟାପରି ନେଇ ସଙ୍ଗତରେ,
ଗତ ଦିନ ଭାସି ଉଠେ କଳ୍ପନାର ନରେ ।

ତୋହର ଅଶିଷ-ବାଣୀ ଯେବେ ମସ୍ତକରେ
ପ୍ରବେଶ କରଇ ମୁହିଁ ସଂସାର-ସମରେ,
କାହିଁ ଭକ୍ତି, କାହିଁ ବଳ, ଅସ୍ଥି-ଚର୍ମସାର,
କ୍ଷୀଣ ଏ ଶରୀରେ କରୁ ପ୍ରାଣର ସଞ୍ଚାର ।

ସ୍ନେହ, ପ୍ରୀତି, ଭକ୍ତି ତୋତେ ଦେଇଅଛୁ ସର୍ବ,
ଯେତେ ଭାବେଁ ତେତେ ମୋତେ ଦିଶନ୍ତି ଅପୂର୍ବ,
ମନେ କରେଁ ତୁହି ଅଟୁ ବାଦନ୍ତ୍ରାମଣି,
କେତେବେଳେ ଦେଖେଁ ତୋତେ ଲକ୍ଷ୍ମୀଠାକୁରାଣୀ

ବିଶ୍ୱପରେ ଅଟୁ ବଡ଼ ଜୋଡ଼ିଏ ବରଷ,
ତୋ ଜୀବନ ସୁଖମୟ ମୋହର ହରଷ,
ତୁହି ଅଟୁ ନିଷ୍କଳଙ୍କ ମୁହିଁ କଳଙ୍କିତ,
କହ କହ କିଏ ସେ ତୁ ଏଡ଼େ ସରତେ ?

ସୂର୍ଯ୍ୟଦେବ ସପ୍ତ ରଶ୍ମି ଦେଉଥାନ୍ତି ଢାଳ,
କିଏ ଶୋଇଥାଏ, କିଏ ଗୁନ୍ଥୁଥାଏ ମାଳ,
ଦୂରରେ ଶୁଭଇ ଡାକ, ଶୁଣେ କାନ ଡେରି,
କହେଁ "କାମ ଅଛୁ ଅଛୁ ଚଢ଼ିଣ ଶୁଆଏ" ।

ଶ୍ରୀ—

—: :—

## ସଂକ୍ଷିପ୍ତ ସମାଲୋଚନା ।

୧ । ଗୁଣ୍ଡିଚା ଯାତ୍ରା—ପଣ୍ଡିତ ଶ୍ରୀ ଲୋକନାଥ ମହାପାତ୍ର କାବ୍ୟତୀର୍ଥଙ୍କଦ୍ୱାରା ରଚିତ ଓ ପ୍ରକାଶିତ, ମୂଲ୍ୟ ୵୦ । ଜଗନ୍ନାଥଙ୍କ ରଥଯାତ୍ରା ଉପଲକ୍ଷରେ ଯାତ୍ରିସମାଗମ, ବଡ଼ଦାଣ୍ଡଗୋଳରେ ସହସ୍ର ସହସ୍ର ବ୍ୟକ୍ତିଙ୍କ ଶୋଚନୀୟ ମୃତ୍ୟୁ, ରଥଟଣା, ଗୁଣ୍ଡିଚାଘରେ ଠାକୁରଙ୍କ ଅବସ୍ଥାନ, ବାହୁଡ଼ାବିଜେ ଇତ୍ୟାଦି ବିଷୟ ପଦ୍ୟରେ ବର୍ଣ୍ଣିତ ହୋଇଅଛି । ଏ ପୁସ୍ତକର ଅନେକ ସ୍ଥଳର ବର୍ଣ୍ଣନା ସାଧାରଣ ଲୋକଙ୍କର ଚିତ୍ତରଞ୍ଜନ କରି ପାରିବ ।

୨ । ପଦ୍ମାମୃତଂ—ଶ୍ରୀ ପାରେଶ୍ୱର ସେନାପତିଙ୍କ ଦ୍ୱାରା ବିରଚିତ ଓ ପ୍ରକାଶିତ, ମୂଲ୍ୟ ୵୦ । ଏ କ୍ଷୁଦ୍ର ପୁସ୍ତକରେ ସଂସ୍କୃତ ଭାଷାରେ ଭିନ୍ନ ଭିନ୍ନ ଛନ୍ଦରେ କେତେକ ଦେବତାଙ୍କ ସ୍ତବ ଲିଖିତ ହୋଇଅଛି । ସେନାପତିଙ୍କ ସଂସ୍କୃତଜ୍ଞାନ ଅବଶ୍ୟ ପ୍ରଶଂସନୀୟ ।

୩ । ବାସବଦତ୍ତା—ଶ୍ରୀ ଅନ୍ତର୍ଯ୍ୟାମୀ ଶତପଥୀଙ୍କ-ଦ୍ୱାରା ପ୍ରଣୀତ, ବିନାମୂଲ୍ୟରେ ବିତରିତ । ପୁସ୍ତକରୁ ଶତପଥୀମହାଶୟଙ୍କ ଶକ୍ତିମତ୍ତାର ସୁନ୍ଦର ପରିଚୟ ମିଳୁଅଛି । ମାତ୍ର ଆମ୍ଭେମାନେ ଏ ଶ୍ରେଣୀର ପୁସ୍ତକ ପ୍ରଚାରର ପକ୍ଷପାତୀ ନୋହୁଁ । ସୁତରାଂ ସେ ସମ୍ବନ୍ଧରେ ଅଧିକ କିଛି କହିବୁଁ ନାହିଁ । ଶକ୍ତି, ସମୟ ଓ ଅର୍ଥର ସଦ୍‌ବ୍ୟବହାରର ଅନ୍ୟ କିଛି ପନ୍ଥା କଣ ଗ୍ରନ୍ଥକାରଙ୍କୁ ମିଳିଲା ନାହିଁ ?

୪ । ସୀତାହରଣ—ଶ୍ରୀ ମହେଶଚନ୍ଦ୍ର ରାୟଙ୍କ-ଦ୍ୱାରା ରଚିତ ଓ ପ୍ରକାଶିତ । ମୂଲ୍ୟ ୵୦ । ପଞ୍ଚବଟୀରେ ରାମସୀତାଙ୍କ ଅବସ୍ଥାନ, ମାୟାମୃଗ ଦର୍ଶନ, ରାମଙ୍କଦ୍ୱାରା ମୃଗର ଅନୁସରଣ, ଲକ୍ଷ୍ମଣଙ୍କ ଅନୁଗମନ ଓ ରାବଣକର୍ତ୍ତୃକ ସୀତାହରଣ, ଜଟାୟୁ ସହିତ ସମର, ଅଶୋକବନରେ ସୀତାଙ୍କୁ ରାକ୍ଷସୀ-ମାନଙ୍କ ହସ୍ତରେ ସମର୍ପଣ, ଏହି ଘଟନାମାନ

ପଦ୍ୟରେ ବର୍ଣ୍ଣିତ ହୋଇଅଛି । ଲେଖକଙ୍କର ଭାଷା ସରଳ, ବର୍ଣ୍ଣନା ମଧ୍ୟ ହୃଦୟ ଏକ ସ୍ଥଳରେ ଭଲ ଲାଗିଲା । ମାତ୍ର କାବ୍ୟକୌଶଳ ବା କବିତ୍ୱ କିଛି ଖୋଜି ପାଇଲୁଁ ନାହିଁ ।

୫ । ଅଙ୍କପ୍ରଶ୍ନସମାଧାନ—ଶ୍ରୀ ମଧୁସୂଦନ ରାଓଙ୍କ ପ୍ରଣୀତ । ମୂଲ୍ୟ ଟଂ୧ । ରାଓ ମହୋଦୟ ସୁପ୍ରବୀଣ ଅଧ୍ୟାପକ । ତାଙ୍କ ଲେଖନୀରୁ ଯାହା ବାହାରିବ, ତାହା ଯେ ଅଧ୍ୟାୟୀମାନଙ୍କର ସମ୍ପୂର୍ଣ୍ଣ ଉପଯୋଗୀ ହେବ, ଏକଥା ନିଃସନ୍ଦେହରେ କୋହିଯାଇ ପାରେ । ସମାଲୋଚ୍ୟ ପୁସ୍ତକ ଖଣ୍ଡି ଆମ୍ଭମାନଙ୍କ ଉଲ୍ଲିଖିତ ମତର ଉଜ୍ଜ୍ୱଳ ପ୍ରମାଣସ୍ୱରୂପ ହୋଇଅଛି । ପୁସ୍ତକର ଅନ୍ତର୍ଗତ ଅନେକ ଗୁଡ଼ିଏ ପ୍ରଶ୍ନର ସାଧନପ୍ରଣାଳୀ ଆମ୍ଭେମାନେ ମନୋଯୋଗ-ସହକାରେ ଦେଖିଅଛୁଁ । ସର୍ବତ୍ର ସୁକୌଶଳ ଅବଲମ୍ବିତ ଓ ସୁସ୍ପଷ୍ଟରୂପେ ପ୍ରଦର୍ଶିତ ହୋଇଅଛି । ଏହି ପୁସ୍ତକର ସମୁଚିତ ଆଲୋଚନାରେ ସକଳ ଶ୍ରେଣୀର ଓଡ଼ିଆ ବିଦ୍ୟାଳୟମାନଙ୍କର ଛାତ୍ରମାନେ ଯଥେଷ୍ଟ ଉପକାର ଲାଭ କରିବେ, ଶିକ୍ଷକମାନେ ମଧ୍ୟ ଯଥେଷ୍ଟ ସାହାଯ୍ୟ ପାଇ ପାରିବେ ।

୬ । ସୀତାବନବାସ—ଶ୍ରୀ ନନ୍ଦକିଶୋର ବଳ ବି, ଏ, ଙ୍କ ପ୍ରଣୀତ । ମୂଲ୍ୟ ଟଂ୦/ । ନବୀନ କବି ଶ୍ରୀମାନ୍ ନନ୍ଦକିଶୋର ସ୍ୱୀୟ ସୁମଧୁର ଓ ସୁଭାବ-ପୂର୍ଣ୍ଣ ରଚନାବଳୀଦ୍ୱାରା ଉତ୍କଳୀୟ ଭାବୁକ ପାଠକ-ମାନଙ୍କ ନିକଟରେ ସୁପରିଚିତ ହୋଇଅଛନ୍ତି ଏବଂ ଅଳ୍ପକାଳ ମଧ୍ୟରେ ନେତେଖଣ୍ଡି ଉପାଦେୟ କବିତା ପୁସ୍ତକ ପ୍ରକାଶ କରି ବିଶେଷ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ଆମ୍ଭେମାନେ ତାଙ୍କର ନବପ୍ରକାଶିତ 'ସୀତାବନବାସ' ଯତ୍ନସହକାରେ ପାଠ କରି ଅତ୍ୟନ୍ତ ପ୍ରୀତି ଲାଭ କରିଅଛୁଁ । ପୁସ୍ତକର ନାମରୁ ବିଷୟ ସୂଚିତ ହେଉଅଛି । ସୁମଧୁର ରାମାୟଣକଥା ବହୁ ପୁରାତନ ହୋଇ ମଧ୍ୟ ନିତ୍ୟ ନୂତନ ଏବଂ ଏହା କେତେ କବି ମହାକବିଙ୍କୁ କାବ୍ୟ-ଉପାଦାନ ପ୍ରଦାନ କରିଅଛି ଓ କରୁଥିବ । ବିଷାଦ-ପ୍ରତିମା ସୀତାଦେବୀଙ୍କର ଅନ୍ତିମ ଜୀବନ ବଡ଼ ବିଷାଦମୟ—ବଡ଼ ହୃଦୟଦ୍ରବକାରୀ । ଆମ୍ଭମାନଙ୍କର କବି ସେହି ଅଂଶଟିକୁ ଏହି କ୍ଷୁଦ୍ର କାବ୍ୟର ଉପାଦାନ କରିଅଛନ୍ତି । ପୁସ୍ତକଖଣ୍ଡି ଗୁଡ଼ିଏ କାଣ୍ଡ ସର୍ଗରେ ବିଭକ୍ତ ହୋଇଅଛି । ପ୍ରଥମ ସର୍ଗରେ ଦୁର୍ମୁଖଠାରୁ ରାମଙ୍କର ସୀତାସମ୍ବନ୍ଧୀୟ ଜନାପବାଦ ଶ୍ରବଣ; ଦ୍ୱିତୀୟ ସର୍ଗରେ ରାମାଦେଶରେ ଲକ୍ଷ୍ମଣଙ୍କ କର୍ତ୍ତୃକ ବନରେ ସୀତାନିର୍ବାସନ; ତୃତୀୟ ସର୍ଗରେ ସୀତାବିରହରେ ଶ୍ରୀରାମଙ୍କ ବିଳାପ; ଚତୁର୍ଥ ସର୍ଗରେ ବାଲ୍ମୀକିଙ୍କ ଆଶ୍ରମରେ ସୀତାଙ୍କର ଅବସ୍ଥାନ, ଲବ କୁଶଙ୍କର ଜନ୍ମ; ପଞ୍ଚମ ସର୍ଗରେ ନୈମିଷାରଣ୍ୟରେ ରାମଙ୍କ କର୍ତ୍ତୃକ ଅଶ୍ୱମେଧଯଜ୍ଞର ଆୟୋଜନ, ବାଲ୍ମୀକିଙ୍କ ସହିତ ଲବ କୁଶଙ୍କର ଯଜ୍ଞସ୍ଥଳକୁ ଗମନ; ଷଷ୍ଠ ସର୍ଗରେ ଲବ କୁଶଙ୍କ କର୍ତ୍ତୃକ ନାନା ସ୍ଥାନରେ ରାମାୟଣ ଗାନ, ତଦ୍ଦ୍ରବଣରେ ଶ୍ରୀରାମଙ୍କର ଅବସାଦ; ସପ୍ତମ ସର୍ଗରେ ମହାସଭାରେ ସର୍ବସମକ୍ଷରେ ଲବ କୁଶଙ୍କର ରାମାୟଣ ଗାନ; ଅଷ୍ଟମ ସର୍ଗରେ ଲବ କୁଶଙ୍କର ପରିଚୟ; ନବମ ସର୍ଗରେ ସୀତାଙ୍କର ପ୍ରତ୍ୟାଗମନ; ଦଶମ ସର୍ଗରେ ରାମଙ୍କ କର୍ତ୍ତୃକ ସୀତାପ୍ରତିଗ୍ରହର ପ୍ରସ୍ତାବ, ପ୍ରଜା-ମାନଙ୍କର ବିରୁଦ୍ଧ ଭାବ, ପୁନଃପରୀକ୍ଷାର ପ୍ରସ୍ତାବ, ଅପମାନରେ, ଦୁଃଖରେ ସୀତାଙ୍କର ତନୁତ୍ୟାଗ; ଏକାଦଶ ସର୍ଗରେ ଶ୍ରୀରାମଙ୍କ ଅନ୍ତିମଜୀବନ—ସୀତା-ବିରହରେ ଶ୍ରୀରାମଙ୍କର ଦୁର୍ବିସହ ମନୋବେଦନା; ଏହି ବିଷୟଗୁଡ଼ିକ ଅତି ସରଳ, ମଧୁର ଓ ହୃଦୟସ୍ପର୍ଶୀ ଭାଷାରେ ବର୍ଣ୍ଣିତ ହୋଇଅଛି । ଚରିତ୍ରଗୁଡ଼ିକ ସର୍ବତ୍ର ସୁସଙ୍ଗତ ଓ ସ୍ୱାଭାବିକ ହୋଇଅଛି । ମନୁଷ୍ୟକୁ ମନୁଷ୍ୟରୂପରେ ଚିତ୍ରିତ କରି ଅତିପ୍ରାକୃତ ଓ ଅଲୌକିକ ଘଟନାଂଶ ପରିତ୍ୟାଗ କରି କବି ସୁବୁଦ୍ଧିର ପରିଚୟ ଦେଇଅଛନ୍ତି । ଏହାଦ୍ୱାରା କୌଣସିଠାରେ ଚରିତ୍ର-ମାହାତ୍ମ୍ୟ କିଛି ମାତ୍ର କ୍ଷୁଣ୍ଣ ହୋଇ ନାହିଁ—ବରଂ ମାନବୀୟ ଭାବର ସୁସମାବେଶଦ୍ୱାରା ଉଜ୍ଜ୍ୱଳତର ହୋଇଅଛି । ଦୃଷ୍ଟାନ୍ତସ୍ୱରୂପ ସୀତାଦେବୀଙ୍କର ନିର୍ବେଦବ ବିଶେଷରୂପେ ଉଲ୍ଲେଖ କରାଯାଇ-

ପାରେ । କରୁଣରସର ବର୍ଣ୍ଣନାରେ କବି ବିଶେଷ ଦକ୍ଷତା ଦେଖାଇଅଛନ୍ତି । ଆମ୍ଭେମାନେ ନିଜ-ସାହିତ୍ୟାନୁରାଗୀ ପାଠକମାନଙ୍କୁ ସମଗ୍ର ପୁସ୍ତକ ଖଣ୍ଡି ପାଠ କରିବାକୁ ଅନୁରୋଧ କରୁଅଛୁଁ । ଆମ୍ଭମାନଙ୍କ ମତରେ ଏହି ଶ୍ରେଣୀର ପୁସ୍ତକ ଯେତେ ଅଧିକ ପ୍ରକାଶିତ ହେବ, ଦେଶର ରୁଚି ସେତେ ପରି-ମାର୍ଜିତ ହେବ ।

ପୁସ୍ତକ ମଧ୍ୟରେ ଯେ କିଛି ଦୋଷ ନାହିଁ, ତାହା ନୁହେ । ପ୍ରଥମ କଥା ଏହି ଯେ ସଂକ୍ଷିପ୍ତତାର ଅନୁରୋଧରେ ଭାବ କେତେକ ପରିମାଣରେ ସଙ୍କୁଚିତ ହୋଇ ପଡ଼ିଅଛି । ଏହା ଆଦୌ ବାଞ୍ଛ-ନୀୟ ନୁହେ ।

ପଦପ୍ରାନ୍ତରେ 'କରଲା', 'ଥୋଇଲା' ପ୍ରଭୃତି କ୍ରିୟାପଦ ଓ 'ସଙ୍ଗରେ' 'କୁଟୀରରେ' ପ୍ରଭୃତି ବିଭକ୍ତ୍ୟନ୍ତ ପଦର ପ୍ରୟୋଗ ବର୍ତ୍ତମାନ ସ୍ଥଳରେ ସମ୍ପୂର୍ଣ୍ଣ ଅନୁମୋଦିତ ନୁହେ । ଏହା ଗୁରୁତର ଦୋଷ ନ ହେଲେହେଁ କେତେକ ପରିମାଣରେ ରଚନାର ସୌନ୍ଦର୍ଯ୍ୟ ହାନି କରେ । ଦୁଇ ଏକ ସ୍ଥଳରେ ଯତିଭଙ୍ଗ ଓ ଦୁରନ୍ୱୟ ଦୋଷ ଦୃଷ୍ଟ ହେଲା । ଗୁଣର ତୁଳନାରେ ଦୋଷଗୁଡ଼ିକ ଅତି ସାମାନ୍ୟ ହେଲେହେଁ ଏଥି ପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖିବା ସର୍ବଥା ବିଧେୟ ।

୭ । ଲେଖାବଳୀ—ଏ ପୁସ୍ତକ ଖଣ୍ଡିକ ବଙ୍ଗ ଭାଷାରେ ଉତ୍କଳଗୌରବ କବିବର ଶ୍ରୀଯୁକ୍ତ ରାୟ ରାଧାନାଥ ରାୟ ବାହାଦୁରଙ୍କଦ୍ୱାରା ବିରଚିତ ହୋଇ କଲିକତାର ହେୟାର ପ୍ରେସରେ ମୁଦ୍ରିତ ହୋଇଅଛି । ମୂଲ୍ୟ ଟ ୦।/ ମାତ୍ର । ଏଥିରେ ରାମଚନ୍ଦ୍ରଙ୍କ ପ୍ରତି ଜାନକୀ, ଅର୍ଜୁନଙ୍କ ପ୍ରତି ସୁଭଦ୍ରା, କଚଙ୍କ ପ୍ରତି ଦେବଯାନୀ, ପୁଣ୍ଡରୀକଙ୍କ ପ୍ରତି ମହା-ଶ୍ୱେତା, ମଦନଙ୍କ ପ୍ରତି ମାୟାବତୀ, କୁମାରନାଥଙ୍କ ପ୍ରତି କମଳକାମିନୀ ଏହି ଛଅଟି ପତ୍ର ସନ୍ନିବିଷ୍ଟ ହୋଇଅଛି । ରାୟ କବିଙ୍କ ଲେଖନୀ-ପ୍ରସୂତ ସୁମଧୁର କାବ୍ୟାବଳୀ ଉତ୍କଳୀୟ ଶିକ୍ଷିତ ପାଠକମଣ୍ଡଳୀଙ୍କ ନିକଟରେ ସୁପରିଚିତ । ଆମ୍ଭେମାନେ ତାଙ୍କ ରଚନାର ପ୍ରଶଂସା ନୂତନଭାବରେ ଅଧିକ କଣ କରିବୁଁ ? ତାଙ୍କର କୌଣସି କୌଣସି କାବ୍ୟ ସୁରୁଚିର ଅନୁମୋଦିତ ନ ହେଲେହେଁ ଭାଷାର ମାଧୁରୀ, ରଚନାର ଭଙ୍ଗୀ, ଅଲଙ୍କାର ଓ ରସର ସୁସମାବେଶ, ପ୍ରାକୃତିକ ଶୋଭାର ବିଶଦ ଚିତ୍ର ପ୍ରଦର୍ଶନ ପ୍ରଭୃତି ବିଷୟରେ ପ୍ରତ୍ୟେକ ଖଣ୍ଡି କାବ୍ୟ-ଜଗତରେ ଅତି ଉଚ୍ଚ ସ୍ଥାନରେ ଅବସ୍ଥିତ ଏବଂ ଯେ କୌଣସି ଉନ୍ନତ ସାହିତ୍ୟପକ୍ଷରେ ଗୌରବର ସ୍ଥଳ । ସମାଲୋଚ୍ୟ ପୁସ୍ତକରେ କବି-ଙ୍କର ସେ ଗୌରବ ସର୍ବାଂଶରେ ରକ୍ଷିତ ହୋଇ-ଅଛି । ପୁସ୍ତକ ଖଣ୍ଡି ୨୩ ବର୍ଷ ପୂର୍ବର ଲେଖା । ସେହି ତରୁଣ ବୟସରେ ଅମିତ୍ରାକ୍ଷର ଛନ୍ଦରେ କବିତାରଚନାରୂପ ସୁକଠିନ ବ୍ୟାପାରରେ କବି କିପରି କୃତିତ୍ୱ ଲାଭ କରିଅଛନ୍ତି, ତାହା ସୂକ୍ଷ୍ମ-ଦର୍ଶୀ ପାଠକମାନେ ସହଜରେ ବୁଝି ପାରିବେ । ବଙ୍ଗୀୟ କବିକୁଳତିଳକ ଶ୍ରୀ ମଧୁସୂଦନ ବଙ୍ଗ-ଭାଷାରେ ଅମିତ୍ରାକ୍ଷର ଛନ୍ଦର ପ୍ରବର୍ତ୍ତକ ଏ[illegible] ତାଙ୍କର ବୀରାଙ୍ଗନା କାବ୍ୟ ଉକ୍ତ ଛନ୍ଦ[illegible] ବିରଚିତ । ରାୟ କବିଙ୍କ ଲେଖାବଳୀ ବୀରାଙ୍ଗନା କାବ୍ୟର ଛନ୍ଦ ଓ ଢଙ୍ଗରେ ଲିଖିତ । ତା[illegible] ବୋଲି ଯେ ଏହା କେବଳ ଅନୁକରଣ ମା[illegible] ଆମ୍ଭେମାନେ ଏକଥା କହୁ ନାହୁଁ । ଏଥିରେ ସ୍ୱାତନ୍ତ୍ର୍ୟର ପରିଚୟ ପଦେ ପଦେ ମିଳୁଅଛି ଯଥାର୍ଥ କହିବାକୁ ଗଲେ ଅମିତ୍ରାକ୍ଷର ଛନ୍ଦ[illegible] କବିତା ରଚନାରେ ଉନ୍ନତ ବଙ୍ଗଭୂମିରେ ମ[illegible] ଅତି ଅଳ୍ପସଂଖ୍ୟକ ବ୍ୟକ୍ତି ଏପରି କୃତିତ୍ୱ ଦେଖା-ଅଛନ୍ତି । ଏ ସମ୍ବନ୍ଧରେ ଅଧିକ ବାକ୍ୟବ୍ୟୟ ନିଷ୍ପ୍ରୟୋଜନ ।

ଆମ୍ଭେମାନେ ଏହି ଗ୍ରନ୍ଥର ବିଷୟ ସମ୍ବନ୍ଧରେ ଦୁଇଟି ଗୋଟିଏ କଥା କହି କର୍ତ୍ତବ୍ୟ ଶେ[illegible] କରିବୁଁ । ରାୟ କବି ଗମ୍ଭୀର ଓ ଉଚ୍ଚ ଭାବର ବର୍ଣ୍ଣନାରେ କ୍ଷମତାର ଯଥେଷ୍ଟ ପରିଚୟ ଦେ[illegible] ଥିଲେହେଁ ପ୍ରେମଚିତ୍ର ବର୍ଣ୍ଣନା ପ୍ରତି ତାଙ୍କ[illegible] ପ୍ରବଣତା ଯେ ଅଧିକ [illegible]ଥା ସ୍ୱୀକାର କ[illegible]

ହେବ । ଦୁର୍ଭାଗ୍ୟର ବିଷୟ ଏ ପର୍ଯ୍ୟନ୍ତ ଅମ୍ଭେମାନେ ତାଙ୍କଠାରୁ ଗୋଟାଏ ଖୁବ୍ ଉନ୍ନତ ପ୍ରେମଚିତ୍ର ପାଇ ପାରି ନାହୁଁ । ବରଂ ବ୍ୟଥିତଚିତ୍ତରେ କହିବାକୁ ପଡୁଅଛି ଯେ ସେ ତାଙ୍କର ପ୍ରାୟ ସମସ୍ତ ନାୟକନାୟିକାଙ୍କ ଦେହକୁ ଶାରୀରିକ ସୌନ୍ଦର୍ଯ୍ୟ ଏବଂ ଇନ୍ଦ୍ରିୟବୃତ୍ତିରେ ଅତିକ୍ରମ କରି ପକାଇଛନ୍ତି । ସ୍ଥଳବିଶେଷରେ ପୁଣି ସେ ସୁରୁଚିର, ଏମନ୍ତ କି, ସୁନୀତିର ସୀମା ଲଙ୍ଘନ କରି ଯାଇଅଛନ୍ତି । ସମାଲୋଚ୍ୟ ଗ୍ରନ୍ଥର ଶେଷ ପଦ୍ୟଟି (କୁମାରନାଥଙ୍କ ପ୍ରତି କମଳକାମିନୀ) ଏହି ଶେଷୋକ୍ତ ଶ୍ରେଣୀର ଅନ୍ତର୍ଗତ । ଏପରି ହେବାରେ ସମାଜର ବା ଜଗତର କି ଇଷ୍ଟ ସାଧିତ ହେବ ? ଏଥିରେ କବି ସମାଜପ୍ରତିଷ୍ଠିତ ପବିତ୍ର ସମ୍ବନ୍ଧ ପ୍ରତି ମଧ୍ୟ ଅବଜ୍ଞା ପ୍ରଦର୍ଶନ କରିଅଛନ୍ତି । ବାସ୍ତବ ଜଗତରେ ଏପରି ଚିତ୍ର ଯେ ନାହିଁ ବା ଥାଇ ନ ପାରେ, ତାହା ଅମ୍ଭେମାନେ କହୁ ନାହୁଁ । ମାତ୍ର ତାହା ବୋଲି କବି ଅଶ୍ଳୀଳର କାଳିମାମୟ ଚିତ୍ର ଅଙ୍କିତ କରି ସ୍ୱୀୟ ଯଶଃଶଶୀକୁ କଳଙ୍କିତ କରିବେ କାହିଁକି ? ସେପରି ଚିତ୍ର ଅଙ୍କନର ଯଦି ଆବଶ୍ୟକତା ଥାଇପାରେ, ତାହାର ସ୍ଥାନ ଓ ରୀତି ସ୍ୱତନ୍ତ୍ର । ପଞ୍ଚମ ପଦ୍ୟଟି (ମଦନଙ୍କ ମାଯାବତୀ) କବିତ୍ୱ କମାକାର, କିପରି ଅସ୍ୱାଭାବିକ । ପୁରାଣମାନଙ୍କରେ ଏପରି ଅନେକ ଅସଙ୍ଗତ କଳ୍ପନା ରହିଅଛି ସତ୍ୟ, କିନ୍ତୁ ତାହା[redacted] କାହ୍ନୀଣସିଙ୍କୁ କାବ୍ୟ-ଉପ[redacted]କରିବାକୁ କ[redacted] ଅନୁସାରେ ତାକୁ ଟିକିଏ କାଟି ଛାଟି ଦେବା ଉଚିତ । ଅପର ଗୋଟିଏ ପଦ୍ୟ ସୁନ୍ଦର ଏବଂ ନିର୍ଦ୍ଦୋଷ — ବିଶେଷତଃ "ରାମଚନ୍ଦ୍ରଙ୍କ ପ୍ରତି ଜାନକୀ" ଅତ୍ୟନ୍ତ ହୃଦୟଗ୍ରାହୀ ଓ ସାତ୍ତ୍ୱିକଭାବର ସମ୍ୟକ୍ ଉପଯୁକ୍ତ ।

୬ ଅମ୍ଭେମାନେ ସପ୍ତ କବିଙ୍କର ଚିରଭକ୍ତ— ତାଙ୍କୁ ଅନ୍ୟତର ସାହିତ୍ୟଗୁରୁରୂପେ ସର୍ବଦା ଭକ୍ତି କରି ଆସିଅଛୁଁ—ତାଙ୍କ ପଦପ୍ରାନ୍ତରେ ବସି ଅନେକ ଅମୂଲ୍ୟ ଶିକ୍ଷା ଲାଭ କରିଅଛୁଁ । ମାତ୍ର କର୍ତ୍ତବ୍ୟର ଅନୁରୋଧରେ ଆଜ ସେତିକି ଗୋଟିଏ ଅପ୍ରିୟ ସତ୍ୟ କଥା କହିବାକୁ ବାଧ୍ୟ ହେଲୁଁ । ମୂର୍ତ୍ତିରେ ଯେ ଯାହା କହନ୍ତୁ, ରାଧାନାଥଙ୍କ କାବ୍ୟାବଳୀରେ ଯେ ଗୋଟିଏ ମଧୁର ଆକର୍ଷଣ ରହିଅଛି, ତାହା କୌଣସି ଶିକ୍ଷିତ ସାହିତ୍ୟରସିକ ଉତ୍କଳସନ୍ତାନ ଅତିକ୍ରମ କରି ପାରିବେ ନାହିଁ, ଏହା ନିଶ୍ଚିତ କଥା । ସେ ଆଧୁନିକ ଉତ୍କଳ-ସାହିତ୍ୟ-ମନ୍ଦିରର "ସର୍ବଶ୍ରେଷ୍ଠ କବି" ଏହା ମଧ୍ୟ ଅତି ସତ୍ୟ କଥା । ଅନେକ କିଶୋରବୟସ୍କ ଛାତ୍ର ତାଙ୍କ ପୁସ୍ତକମାନ ଅତି ଆଗ୍ରହରେ ଓ ଅନୁରାଗରେ ପାଠ କରଥାନ୍ତି, ଏହା ଅମ୍ଭେମାନେ ନିତ୍ୟରୂପେ ଜାଣୁ । ସୁତରାଂ ତାଙ୍କ ଲେଖନୀରୁ ଅମ୍ଭେମାନେ ଉନ୍ନତ ଆଦର୍ଶର ପ୍ରତ୍ୟାଶା କରୁଁ । ସେହି ହେତୁରୁ ସରଳଭାବରେ ନିଜ ମତ ବ୍ୟକ୍ତ କଲୁଁ । ଅମ୍ଭମାନଙ୍କର ଦୃଢ଼ବିଶ୍ୱାସ ଯେ କବିବର ଅମ୍ଭମାନଙ୍କ ଉକ୍ତିକୁ ସରଳଭାବରେ ଗ୍ରହଣ କରିବେ ।

୭ । ଭିକ୍ଟୋରିୟାଚରିତ — ଶ୍ରୀ କମଳମଣି ବିଦ୍ୟାରତ୍ନଙ୍କଦ୍ୱାରା ପ୍ରଣୀତ ଓ ପ୍ରକାଶିତ । ପୁସ୍ତକର ବର୍ତ୍ତମାନ ସଂସ୍କରଣ ଲେଡି କୋର୍ଟ-ସ୍ମୃତି-[redacted]ଦ୍ୱାରା 'ଉତ୍କଳ ମଧୁପ'ର ଉପହାରସ୍ୱରୂପ ଗ୍ରାହକମାନଙ୍କୁ ପ୍ରଦତ୍ତ ହୋଇଅଛି । ପରଲୋକଗତା ମହାରାଣୀ ଭିକ୍ଟୋରିୟାଙ୍କ ଜୀବନର ଘଟନାବଳୀ ଅମୂଲ୍ୟ ଶିକ୍ଷାପ୍ରଦ । ସେହି ଅମୂଲ୍ୟ ଓ ମହତ୍ ଜୀବନର ଅନେକ ଗୁଡ଼ିଏ ଘଟଣା ଏ ପୁସ୍ତକରେ ସରଳଭାଷାରେ ବର୍ଣ୍ଣିତ ହୋଇଅଛି । ଆଶା କରୁଁ ମଧୁପର ଗ୍ରାହକମାନେ ଅଗ୍ରିମ ମୂଲ୍ୟ ଦେଇ ପୁସ୍ତକପ୍ରାପ୍ତିର ସୁଯୋଗ ପରିତ୍ୟାଗ କରିବେ ନାହିଁ ।

---

PRINTED AT THE UTKAL SAHITYA PRESS,—CUTTACK

## ସାହାଯ୍ୟ ପ୍ରାପ୍ତି ।

୧ । ଗାଙ୍ଗପୁର ରାଜ୍ୟର ମାନନୀୟ ଯୁବରାଜ ମହୋଦୟ 'ଉତ୍କଳ ସାହିତ୍ୟ'ର ସାହାଯ୍ୟ ନିମିତ୍ତ ଟ ୫୦୲ ପ୍ରେରଣ କରି ଅଛନ୍ତି ।

୨ । ମାନନୀୟ କେନ୍ଦୁଝରାଧିପତି ମହୋଦୟ ଟ ୫୦୲ ସାହାଯ୍ୟ ଅଙ୍ଗୀକାର କରି ଅଛନ୍ତି ।

୩ । କେନ୍ଦୁଝରାଧିପତିଙ୍କର ସିରସ୍ତାଦାର ଶ୍ରୀଯୁକ୍ତ ବାବୁ ବୈକୁଣ୍ଠନାଥ ଦାସ ମହାଶୟ ଟ ୫୲ ସାହାଯ୍ୟ ଅଙ୍ଗୀକାର କରି ଅଛନ୍ତି ।

୪ । 'ଉତ୍କଳ ସାହିତ୍ୟ'ର ଅକୃତ୍ରିମ ବନ୍ଧୁ ପାରଳାଖେମିଣ୍ଡିର ଦ୍ୱିତୀୟ ରାଜକୁମାର (Second Prince) ମାନନୀୟ ଶ୍ରୀଯୁକ୍ତ ପଦ୍ମନାଭ ନାରାୟଣ ଦେବ ମହୋଦୟ ପଞ୍ଚମ ବର୍ଷର ସାହାଯ୍ୟସ୍ୱରୂପ ଟ ୨୫୲ ପ୍ରେରଣ କରି ଅଛନ୍ତି ।

ଉପରୋକ୍ତ ଅନୁକୂଲ୍ୟ ନିମିତ୍ତ ଅମ୍ଭେମାନେ ସାହାଯ୍ୟଦାତାମାନଙ୍କଠାରେ ଆନ୍ତରିକ କୃତଜ୍ଞତା ନିବେଦନ କରୁଅଛୁଁ ।

## ମୂଲ୍ୟ ପ୍ରାପ୍ତି ।

୧୮୯୮ ଶେଷ ପର୍ଯ୍ୟନ୍ତ

| | | |
|---|---|---|
| ଶ୍ରୀଯୁକ୍ତ ରାଜା ସାହେବ | ଡମପଡା | ଟ ୪୲ |
| **୧୮୯୯ ସନ** | | |
| ,, ରାମସେନ ରାଉତ | କଟକ | ଟ ୧୲ |
| ,, କ୍ଷୀରୋଦଚନ୍ଦ୍ର ରାୟ | ଡେରାବିଶି | ଟ ୨୲ |
| **୧୯୦୦ ସନ ।** | | |
| ,, ପଦ୍ମନାଭ ଶତପଥୀ | କଟକ | ଟ ୧୲ |
| ,, ଜାନକୀନାଥ ବୋଷ | ,, | ଟ ୨୲ |
| ,, ଯଶୋବନ୍ତ ସାହୁ | ,, | ଟ ୧୲ |
| ,, ମଧୁସୂଦନ ମିଶ୍ର | ,, | ଟ ୧୲ |
| ,, ଧର୍ମାନନ୍ଦ ପଟ୍ଟନାୟକ | ,, | ଟ ୨୲ |
| ,, ଶ୍ୟାମସୁନ୍ଦର ବୋଷ | ଅନୁଗୁଳ | ଟ ୨୲ |
| ,, ବିଶ୍ୱନାଥ ଦାଶ | କଟକ | ଟ ୧୲ |
| ,, ଶଙ୍କରପ୍ରସାଦ କମିଲା | ,, | ଟ ୧୲ |
| ,, ପୀତାମ୍ବର ଦେ | ,, | ଟ ୧୲ |
| ,, ମଧୁସୂଦନ ଦାଶ | ,, | ଟ ୧୲ |
| ,, ପରଶୁରାମ ପ୍ରଧାନ | ଅଠାବିରା | ଟ ୨୲ |
| **୧୯୦୧ ସନ ।** | | |
| ,, ଗଙ୍ଗାଧର ମେହେର | ବରପାଲି | ଟ ୨୲ |
| ,, ରାଜା ସାହେବ | ପାରଳାଖେମିଣ୍ଡି | ଟ ୬୲ |
| ,, ,, | ବରପାଲି | ଟ ୧୦୲ |
| ,, ଯୁବରାଜ ସାହେବ | ,, | ଟ ୧୦୲ |
| ,, ସୂର୍ଯ୍ୟକୁମାର ଦାସ | ମେଦିନୀପୁର | ଟ ୨୲ |
| ,, ରାୟସାହେବ ଦାଶରଥି ପୂଜାହାରୀ | ରେଢ଼ାଖୋଲ | ଟ ୨୲ |
| ,, ହାରାଧନ ପୂଜାହାରୀ | ସମ୍ବଲପୁର | ଟ ୧୲ |
| ,, ବୃନ୍ଦାବନ ଦାସ | ଯାଜପୁର | ଟ ୪୲ |
| ଶ୍ରୀଯୁକ୍ତ ଗଙ୍ଗାଧର ଖାଡ଼ଙ୍ଗା | ପାରଳା | ଟ ୩୲ |
| ,, ଯୁବରାଜ ସାହେବ | ଗାଙ୍ଗପୁର | ଟ ୨୲ |
| ,, ଶିବଚରଣ ସାହାଣୀ | କଳାହାଣ୍ଡି | ଟ ୨୲ |
| ,, ପରମାନନ୍ଦ ସେନାପତି | ବାରିପଦା | ଟ ୨୲ |
| ,, ଛକଡି ମହାନ୍ତି | ,, | ଟ ୨୲ |
| ,, ଭବାନୀପ୍ରସାଦ ଦାସ | ,, | ଟ ୨୲ |
| ,, ପରମାନନ୍ଦ ସାହୁ | ବ୍ରହ୍ମପୁର | ଟ ୪୲ |
| ,, ବାଲମୁକୁନ୍ଦ କହ୍ନଦାର | ସମ୍ବଲପୁର | ଟ ୨୲ |
| ,, ରାଜା ସାହେବ | ନୂଆଗଡ | ଟ ୪୲ |
| ,, ହରେନ୍ଦ୍ରନାରାୟଣ ରାୟମହାଶୟ | ଲକ୍ଷ୍ମଣନାଥ | ଟ ୬୲ |
| ,, ଭାବଗ୍ରାହୀ ବରାଳ | ପାଲଲହଡା | ଟ ୬୲ |
| ,, ଭକ୍ତପ୍ରସାଦ ପଟ୍ଟନାୟକ | ସମ୍ବଲପୁର | ଟ ୪୲ |
| ,, ରାଜା ସାହେବ | ତାଳଚେର | ଟ ୮୲ |
| ,, ସଦାଶିବ ବିଦ୍ୟାଭୂଷଣ | ବ୍ରହ୍ମପୁର | ଟ ୨୲ |
| ,, ସହଦେବ ଗଡ଼ଭୂୟାଁ | ଅବନକେଲ | ଟ ୨୲ |
| ,, ରାଜା ସାହେବ | ପାଲଲହଡା | ଟ ୪୲ |
| ,, ଦାମୋଦର ପଟ୍ଟନାୟକ | ତାଳଚେର | ଟ ୪୲ |
| ,, ରବିଚନ୍ଦ୍ର ସାଏ | ବଲାଙ୍ଗିର | ଟ ୨୲ |
| ,, ରାଧାଚରଣ ଦାସ | ଢେଙ୍କାନାଳ | ଟ ୨୲ |
| ,, ରାଜା ସାହେବ | ନରସିଂହପୁର | ଟ ୪୲ |
| ,, ବୃନ୍ଦାବନ କର | କଟକ | ଟ ୧୲ |
| ,, ଫକୀରଚରଣ ରାଉତ | ,, | ଟ ୧୲ |
| ,, ରଘୁନାଥ ଦୀକ୍ଷିତ | ,, | ଟ ୧୲ |
| ,, ଆନନ୍ଦଚନ୍ଦ୍ର ପଢ଼ୀ | ,, | ଟ ୧୲ |
| ,, ଯୁବରାଜ ସାହେବ | ସୋନପୁର | ଟ ୪୲ |
| ,, ,, | ଖଡିଆଲ | ଟ ୪୲ |
| ,, ପଦ୍ମନ [illegible] ଏହି ସଂଖ୍ୟାର [illegible] | | |




ମାସିକପତ୍ର ଓ ସମାଲୋଚନା ।

୫ମ ଭାଗ ।　　ଶ୍ରାବଣ, ଭାଦ୍ର ୧୩୦୮　　୪ର୍ଥ, ୫ମ ସଂଖ୍ୟା ।

—:※:—

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ ।

—※○※—

ପ୍ରବନ୍ଧମାନଙ୍କ ମତ ନିମନ୍ତେ ଲେଖକମାନେ ଦାୟୀ ।



CUTTACK.

PRINTED BY V. KAR,

AT THE UTKAL SAHITYA PRESS.

1901

ଡାକମାସୁଲ ସମେତ ବାର୍ଷିକ ମୂଲ୍ୟ ଟ ୨ ୯　　ଏହି ସଂଖ୍ୟାର [redacted]

# ବିଜ୍ଞାପନ ।

ଚତୁର୍ଥ ବର୍ଷର 'ଉତ୍କଳସାହିତ୍ୟ' ବନ୍ଧା ହୋଇ ବିକ୍ରୟାର୍ଥ ପ୍ରସ୍ତୁତ ଅଛି ।

ଉତ୍କୃଷ୍ଟ ବନ୍ଧା ଟ ୨୲
ସାଧାରଣ „ ଟ ୨ ।

—(*)—

୧୯୦୨ ସାଲର ଜମ୍ବୁପ୍ରାଇମେରୀ ବୃତ୍ତିପରୀକ୍ଷା ନିମନ୍ତେ ବୋଧୋଦୟ ପରିବର୍ତ୍ତରେ ବାଲ୍ୟପାଠ ନିର୍ବାଚିତ ହୋଇଅଛି । ପରୀକ୍ଷାର୍ଥୀ ଛାତ୍ରମାନଙ୍କର ସାହାଯ୍ୟ ନିମନ୍ତେ ଅମ୍ଭେ ଏହାର ଏକ ଅର୍ଥପୁସ୍ତକ ପ୍ରକାଶ କରୁଅଛୁଁ । ମୂଲ୍ୟ ଟ ୦ ୵୨ ।

ଅମ୍ଭ ନିକଟରେ ବିଦ୍ୟାଳୟମାନଙ୍କର ସକଳ ପ୍ରକାର ପାଠ୍ୟପୁସ୍ତକ ଓ କାଗଜ କଲମ ପ୍ରଭୃତି ବିକ୍ରୟାର୍ଥେ ପ୍ରସ୍ତୁତ ଅଛି । ମଫସଲର ଲୋକମାନଙ୍କ ଠାରୁ ଭି: ପି: ଯୋଗ୍ୟରେ ପୁସ୍ତକାଦି ପ୍ରେରିତ ... ଏହି ୫ ଟଙ୍କାରୁ ଊର୍ଦ୍ଧ୍ୱ ମୂଲ୍ୟର ପୁସ୍ତକ ... ନେଲେ ଯଥୋଚିତ କମିଶନ ଦିଆ ଯାଏ ।

ଶ୍ରୀ ରାମକୃଷ୍ଣ ଗୁପ୍ତ ।
ଗଣେଶମନ୍ଦିର, କଟକ ।

---

ଶ୍ରୀ ନନ୍ଦକିଶୋର ବଲ ବି, ଏ, ପ୍ରଣୀତ "ପଲ୍ଲୀଚିତ୍ର" (ମୂଲ୍ୟ ଟ୦୵) "ନିର୍ଝରିଣୀ" (ମୂଲ୍ୟ ଟ୦ ।) "ସୀତାବନବାସ" (ମୂଲ୍ୟ ଟ୦।/) ଓ "ଦୁର୍ଲ୍ଲଭମାଳା" (ମୂଲ୍ୟ ଟ୦।/) କଟକର ସମସ୍ତ ବଡ଼ ବଡ଼ ପୁସ୍ତକ ଦୋକାନରେ, ସମ୍ବଲପୁର ନନ୍ଦପଡ଼ାର ଶ୍ରୀ ବୃନ୍ଦାବନ ମିଶ୍ରଙ୍କଠାରେ ମିଳେ । ଶ୍ରୀଯୁକ୍ତ ରାୟ ରାଧାନାଥ ରାୟ ବାହାଦୁର ମହୋଦୟ ଲେଖି ଅଛନ୍ତି ।

"His 'Pallichitra,' 'Nirjharini' and 'Sitabanabasa' are replete with passages of great beauty and tenderness and as such can challenge comparison with ... compositions extant ... uage"

---

ନୂତନ ପୁସ୍ତକ ।

ଶ୍ରୀମଦ୍‌ଭାଗବତମାହାତ୍ମ୍ୟ ।

ମୂଳସଂସ୍କୃତ ଏବଂ ସରଳ ଉତ୍କଳାନୁବାଦ ଏକତ୍ର ପ୍ରକାଶିତ ହୋଇଅଛି । ୧୬୧ ପୃଷ୍ଠାରେ ସମାପ୍ତ ଅଥଚ ମୂଲ୍ୟ ଅତି ସୁଲଭ—ଟ୦ ।୵ ମାତ୍ର ।

କଟକର ସମସ୍ତ ପୁସ୍ତକ ଦୋକାନମାନଙ୍କରେ ଏବଂ ଅମ୍ଭ ନିକଟରେ ମିଳିବ ।

ନନ୍ଦକା ରାଜବାଟୀ, କଟକ । } ଶ୍ରୀ ଜଗଦାନନ୍ଦ ଅଧିକାରୀ ପ୍ରକାଶକ ।

---

ଉତ୍କଳମଧୁପର ଉପହାର ।

"ଉତ୍କଳମଧୁପ" ମାସିକ ପତ୍ରିକାର ବାର୍ଷିକ ମୂଲ୍ୟ ଏଗାର ଅଣା ପଠାଇ ଦେଇ ଗ୍ରାହକ ହେଲେ ୪୭ ପୃଷ୍ଠାରେ ସମାପ୍ତ ଭିକ୍ଟୋରିଆ ଚରିତ ଉପହାର ଦିଆଯିବ । ଭି: ପି: ରେ ଉପହାର ପଠାଯାଇ ମୂଲ୍ୟ ଆଦାୟ କରାଯାଇ ପାରେ । ଏ ସୁବିଧା ଅଳ୍ପ ଦିନ ପାଇଁ ।

ମେନେଜର, ଉତ୍କଳମଧୁପ
ଦେବଗଡ଼, ପୋ: ସମ୍ବଲପୁର ।

---

ବିତରଣ ।

(୧) ନବବିଧାନ ପ୍ରସଙ୍ଗ (ବଙ୍ଗଳା)
(୨) *Faith and Culture in the New Dispensation Brahmo Samaj*
(୩) *The Religion of Keshub Chunder Sen*
(4) *The Gospel of Love.*

ଏହି ଚାରି ଖଣ୍ଡି ପୁସ୍ତକ ବିତରଣ ନିମିତ୍ତ ପ୍ରସ୍ତୁତ ଅଛି । ଚୁଡ଼ାହାଟ (କଟକ) ବାବୁ ରାଜମୋହନ ବସୁଙ୍କ ନିକଟରେ ମିଳିବ । ଦୁଇ ପଇସାର ଡାକଟିକଟ ପଠାଇଲେ ମଫସଲର ପ୍ରାର୍ଥୀମାନେ ଚାରି ଖଣ୍ଡି ପୁସ୍ତକ ଏକତ୍ର ପାଇ ପାରିବେ ।

# ଉତ୍କଳ ସାହିତ୍ୟ ।

ଏ ସୃଷ୍ଟି ଅମୃତମୟ ହେ ।

୧

ମଧୁମୟ ସୃଷ୍ଟି ସୁଧାମୟ ସୃଷ୍ଟି
ଏ ସୃଷ୍ଟି ଅମୃତମୟ ହେ ।
ଜାଗ ନରନାରୀ ଅମୃତସନ୍ତତି
ପିଅ ସେ ଅମୃତ ପୟ ହେ ।
ପିଇ ସେ ଅମୃତ ଦିବସଶର୍ବରୀ
ଗାଅ ଅମୃତର ଜୟ ହେ ।

୨

ମହାନ ଅନନ୍ତ ଉଦାର ଆକାଶ
ତେଜେ ତେଜେ ତେଜୋମୟ ହେ ।
ସେ ବରେଣ୍ୟ ଭର୍ଗ ମନ୍ଦାକିନୀ ଧାର
ନାଶଇ ମରଣଭୟ ହେ ।
ସେ ତିମିରହର ଜଗତର ଜ୍ୟୋତି
ପାନେ ହୁଅ ପୁଣ୍ୟାଶୟ ହେ ।

୩

ଅକୂଳ ଅତଳ ମହାପାରାବାର
ନାଦେ ନାଦେ ନାଦମୟ ହେ
ଅବନୀ-ଲକ୍ଷ୍ମୀର ପ୍ରହରୀ ସିନ୍ଧୁ
ନିବିଡ଼ ନୀଳିମାମୟ ହେ
ତରଳ ତରଙ୍ଗେ ଢାଳେ ନାଦସୁଧା,
ପିଅ ସେହି ଛନ୍ଦମୟ ହେ ।

୪

ଅମର କୀର୍ତ୍ତି ମହାମହୀଧର
ହିମେ ହିମେ ହିମାଳୟ ହେ ।
ଧବଳଶୀବେଣୀ କେତେ ଗିରିଶ୍ରେଣୀ
ନିର୍ଝର-ମୁକୁତାମୟ ହେ ।
ସେ ଶିଳା-ଲୀଳାରେ ସଜାଡୁଛ ସୁଧା

୫

ଅଶାନ୍ତ-ବିହାରୀ ବାୟୁ ସଦାଗତ
ଶ୍ୱାସେ ଶ୍ୱାସେ ଶ୍ୱାସମୟ ହେ
ମଳୟ-ଲାସ୍ୟେ ବା ପ୍ରଳୟତାଣ୍ଡବେ
ସଦା ଚଞ୍ଚଳ ଅଥୟ ହେ ।
ସେ ମୃଦୁଲ ଲାସ୍ୟେ ପ୍ରଚଣ୍ଡ ତାଣ୍ଡବେ
ଅମୃତର ଅଭିନୟ ହେ ।

୬

ମରୀଚିକାମୟ ତରୁ-ଶୂନ୍ୟ ମରୁ
ଘୋର ତୃଷା-ରଙ୍ଗାଳୟ ହେ
ଦିଗନ୍ତ-ବିସ୍ତୃତ ଜ୍ୱଳନ୍ତ ପ୍ରାନ୍ତର
ପଥଶୂନ୍ୟ ନିରାଶ୍ରୟ ହେ ।
ସେ ମରୁ-ଅନ୍ତରୁ ବହେ ସୁଧା-ସ୍ରୋତ
ପିଅ ସେହି ସୁଧାପୟ ହେ ।

୭

କୋମଳ ଶ୍ୟାମଳ ତୃଣଶସ୍ୟକ୍ଷେତ୍ର,
ବନ ତରୁଲତାମୟ ହେ ।
ବର୍ଣ୍ଣେ ବିଚିତ୍ରିତ, ଶବ୍ଦେ ମୁଖରିତ,
ଗନ୍ଧେ ପୂରିତ-ହୃଦୟ ହେ ।
ଡାଳେ ଡାଳେ ଢାଳେ ମଧୁ-ରସ-ଧାର
ଫଳପୁଷ୍ପ କିଶଳୟ ହେ ।

୮

ନିତ୍ୟ ବର୍ତ୍ତମାନ ନଦନଦୀମାନ,
ସ୍ୱଚ୍ଛ ସରୋବରଚୟ ହେ,
ସମୀର-ପରଶେ କଳକଳନାଦ
ରମ୍ୟ ଊର୍ମିମାଳା-ମୟ ହେ,
ବକ୍ଷରେ ବହିଛ ଚନ୍ଦ୍ର ସୂର୍ଯ୍ୟ ଛାପ

୯

ଭୂଲୋକ ଦ୍ୟୁଲୋକ ପୁଣି ଅନ୍ତରୀକ୍ଷ
ପ୍ରକୃତିର ନାଟ୍ୟାଳୟ ହେ,
ସ୍ଥାବର ଜଙ୍ଗମ ପଶୁ ବିହଙ୍ଗମ
କୀଟ ପତଙ୍ଗମୟ ହେ ,
ଭୂଦୃଶ୍ୟପୂରିତ ଏ ଅସୀମ ବିଶ୍ୱ
ଅମୃତେ ଅମୃତମୟ ହେ ।

୧୦

ପୂର୍ବାଶାର ଦ୍ୱାରେ ଦିବ୍ୟ ଉଷାରାଣୀ
ମୂର୍ତ୍ତ ଭାନୁ-ଅଭ୍ୟୁଦୟ ହେ,
ସ୍ନିଗ୍ଧଶ୍ୟାମମୟୀ ସନ୍ଧ୍ୟା ମହାଦେବୀ
ଆଦେଶିଣ ଧ୍ୟାନ-ଲୟ ହେ,
ଆଲୋକ-ବିଳାସୀ ଉଜ୍ଜ୍ୱଳଦିବସ
କର୍ମ-ଜାଗରଣମୟ ହେ ,
ତମସ୍ୱିନୀ ଅବା ଜ୍ୟୋତ୍ସ୍ନାମୟୀ ରାତ୍ରି
ବିଶ୍ରାମର ସୁଖମୟ ହେ ,
ବସନ୍ତ ନିଦାଘ ବରଷା ଶରତ
ହିମ ଶୀତ ଋତୁଚୟ ହେ,
ସୁଶାନ୍ତ ଗମ୍ଭୀର ମଧୁର ରୁଦ୍ର
ଦିବ୍ୟସୁଧାସ୍ୱାଦମୟ ହେ ।

୧୧

ଗୃହ ପରିବାର ମାନବସମାଜ
ନରନାରୀ-ଲୋକାଳୟ ହେ,
ପିତା ମାତା ଭ୍ରାତ ଭଗିନୀ ଦମ୍ପତି
ତନୟା କିମ୍ବା ତନୟ ହେ,
ଗୁରୁଜନ ବନ୍ଧୁ କିମ୍ବା ଅନ୍ତେବାସୀ
ଆତ୍ମୀୟସୁହୃଦ ପରିଚୟ ହେ ,
ଦୟାନିକେତନ ଧର୍ମାଧିକରଣ
ବିଦ୍ୟାଳୟ ଦେବାଳୟ ହେ,
ଶ୍ରଦ୍ଧା ଭକ୍ତି ପ୍ରୀତି ଦୟା ଶୁଭାକାଂକ୍ଷା
ପୁଣ୍ୟ ବିଶ୍ୱାସ ବିନୟ ହେ,
ଏ ସକଳ ମଧ୍ୟେ ନିବସନ୍ତି ବିଭୁ
ଶାଶ୍ୱତ-ଅମୃତ-ମୟ ହେ ।
ଗରଳୁ ଅମୃତ କରନ୍ତି ଯାହାର
ଅନନ୍ତ ଅମୃତାଳୟ ହେ ।
ପରମ ଜନକ ପରମ ଜନନୀ
ତାଙ୍କ ପାଦେ ବିଗତଭୟ ହେ ।
ସେହି ବିଗତଭୟ ଆନନ୍ଦାମୃତର
ହୁଅ ଶିଶୁ ସ୍ତନନ୍ଧୟ ହେ ।

ଶ୍ରୀ ମଧୁସୂଦନ ରାଓ ।

## ଅପୂର୍ବମିଳନ ।

(ଐତିହାସିକ ଉପନ୍ୟାସ)

କ

ସନ୍ଧାଜାନ ।

ଆଜି କାଲି ଯେଉଁ ବନା ବଡ ଦାଣ୍ଡ ଉତ୍ତର ଭାଗରେ ପଞ୍ଜାବଠାରୁ ଶ୍ରୀକ୍ଷେତ୍ର ଦକ୍ଷିଣକୁ ମାନ୍ଦ୍ରାଜ ଗଭମେଣ୍ଟର ଏବଂ ପଶ୍ଚିମ ସୀମା ଦେଇ ବୋମ୍ବେ ସ୍ପର୍ଶ କରି ଭାରତବର୍ଷର ଅନ୍ତଃପ୍ରଦେଶ ପର୍ଯ୍ୟନ୍ତ ଯଜ୍ଞୋପବୀତ ପରି ବିସ୍ତୃତ ହୋଇ ପଡ଼ିଅଛି, ଅମ୍ଭମାନଙ୍କ ବର୍ଣ୍ଣିତ ସମୟରେ ଏହାର

ଅରଣ୍ୟାବୃତ, ଏଥିକୁ ମାର୍ଗ ନିତାନ୍ତ ଦୁର୍ଗମ । ନଦୀ ନାଳ ତ ସବୁ ଦିନେ ଅଛି; ବନ୍ଧା ବାଟ ନାହିଁ, ପୋଲ କାହୁଁ ଆସିବ? ବର୍ଷାକାଳରେ ବାଟୋଇମାନଙ୍କର ସଳଖ ବାଟରେ ଚାଲିବାର ଉପାୟ ନ ଥିଲା, ଜଙ୍ଗଲ ମଧ୍ୟରେ ବୁଲି ବୁଲି ଚାଲୁଥିଲେ । କାଶୀଧାମରୁ ଶ୍ରୀକ୍ଷେତ୍ରକୁ ଆସିବାକୁ ଦୁଇ ତିନ ବର୍ଷ ଲାଗୁଥିଲା । ମାର୍ଗ ହିଂସ୍ର ଶ୍ୱାପଦ—ତହିଁରୁ ଅଧିକତର ହିଂସ୍ର ଅଧିକତର ଭୀଷଣ ପ୍ରାଣୀ ଚୋର

ବଙ୍ଗ ବେହାର ଉତ୍କଳ ପ୍ରଦେଶର ମାର୍ଗରେ ଅଧିକାଂଶର ନିଷ୍ଠୁର ଅଧିକାଂଶର ଭୀଷଣ ଏକ କାତର୍ଯ୍ୟ ପ୍ରାଣୀ ବିଚରଣ କରୁଥିଲେ । ଏମାନେ ମରହଟ୍ଟା ଅସୁର । ଚଳିତ ପ୍ରବାଦ ଅନୁସାରେ ଆମ୍ଭେମାନେ ମରହଟ୍ଟାମାନଙ୍କୁ ଅସୁର ବୋଲି କହିଲୁଁ । ମାତ୍ର କଥାଟା ଠିକ ହେଲା ନାହିଁ । ଯେଉଁ କାଙ୍ଗାଳି ଲକ୍ଷ୍ମୀଛଡ଼ା ଲୋକ ଗୁଡାକ ଖାଇବାକୁ ନ ପାଇ ପେଟ ଜାଳାରେ ଲୋକମାନଙ୍କ ଘରରୁ ଗାଈଟାଏ କଣାରୁଟାଏ, ପାଳ ମଧ୍ୟରୁ ଥାଳିଟାଏ କଂସାଖଣ୍ଡେ କିମ୍ବା କନାପଟା ଚୁରି ଖଣ୍ଡେ ନେଇ ପଳାନ୍ତି, ସେମାନଙ୍କୁ ଚୋର ବୋଲ, ଅସୁର ବୋଲ, ଯାହା ବୋଲ ଠିକ୍ ହେବ । ଆଉ ଯେଉଁମାନେ ଗ୍ରାମକୁ ଗ୍ରାମ ଦେଶକୁ ଦେଶ ପୋଡି ଜାଳି ଛାରଖାର କରି ଦେଇ କେତେ ନିର୍ଦ୍ଦୋଷ ଶାନ୍ତ ଶିଷ୍ଟ ପ୍ରାଣୀମାନଙ୍କ ରକ୍ତରେ ଭୂମିକୁ କର୍ଦ୍ଦମମୟ କରି ସେମାନଙ୍କ ନ୍ୟାୟୋପାର୍ଜ୍ଜିତ କଷ୍ଟୋପାର୍ଜ୍ଜିତ ପରିବାର-ପ୍ରାଣ-ରକ୍ଷାର ଏକମାତ୍ର ଅବଲମ୍ବନସ୍ୱରୂପ ସର୍ବସ୍ୱ ଲୁଣ୍ଠନ କରି ନେଇଯାନ୍ତି, ଯେଉଁମାନଙ୍କ ଶୁଭାଗମନରେ ଦେଶର ଶାନ୍ତି ସୁଖ ସମ୍ପତ୍ତି ବିଦୂରିତ ହୋଇ ସୁଦୀର୍ଘ କାଳ ପର୍ଯ୍ୟନ୍ତ ହୃଦୟଭେଦୀ ହାହାକାର ପଡିଯାଏ, ସେମାନେ କି ଅସୁର ? ସେମାନେ ଲୋକପୂଜ୍ୟ ମହାବୀର । ଇତିହାସ ସେମାନଙ୍କ ଯଶ ଗାୟନ କରି ଧନ୍ୟ ହେଉଅଛି । ନେପୋଲିୟନ୍ ମହାବୀର, ଆଲେକ୍-ଜାଣ୍ଡର ମହାବୀର, ବାବର ମହାବୀର, ପଞ୍ଜାବର ମାମୁଦ ଓ ନାଦିର ମହାବୀର, ଆଉ 'ଧାଲ୍ଲୀଶଗେ ବା ଜଗାବାଣଗେ ବା' ଅରଙ୍ଗଜେବଙ୍କୁ ମଧ୍ୟ ମହାବୀର ବୋଲାଯିବ । କାରଣ ଜଜିଆ ଅର୍ଥାତ୍ ବିଧର୍ମୀ କର ନ ଦେବାରୁ ସେ ଅନେକ ହିନ୍ଦୁ ଗ୍ରାମକୁ ପୋଡି ଜାଳି ଦେଇ ଥିଲେ; ଅନେକ ହିନ୍ଦୁଙ୍କୁ ହତ୍ୟା କରିଥିଲେ । ଏ ହିସାବରେ ମରହଟ୍ଟା-ମାନେ ମହାବୀର ଅଭିଧାନର ବାଚ୍ୟ; କାରଣ ଗ୍ରାମଦାହ, ଲୋକହତ୍ୟା, ପରସ୍ୱଲୁଣ୍ଠନ, ମହାବୀର [illegible]

ସେମାନେ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ । ମୂଳଦଳଭ୍ରଷ୍ଟ କିମ୍ବା କାର୍ଯ୍ୟାନ୍ତରରେ ନିଯୁକ୍ତ ପଣ୍ଡାରି ମରହଟ୍ଟା ଘୋଡଚଢ଼ା ପାଇକମାନଙ୍କର ଗହଣାଗାଣ୍ଠି ଓ ଗ୍ରାମଲୁଣ୍ଠନ ଦ୍ୱାରା ଅର୍ଥସଂଗ୍ରହ କରିବା ପ୍ରଧାନ କର୍ତ୍ତବ୍ୟ କର୍ମ ଥିଲା ।

ପୌଷମାସିଆ ସମୟ, ଦିବା ଅବସାନପ୍ରାୟ, ବୃହତ୍ ଗୋଟାଏ ଜ୍ୱଳନ୍ତ ସୁବର୍ଣ୍ଣ ପିଣ୍ଡପରି ସୂର୍ଯ୍ୟ ଦେବ ଚତୁର୍ଦ୍ଦିଗରେ କିରଣମାଳା ବୁଣି ବୁଣି ପଶ୍ଚିମ ଦିଗର ଆକାଶ ତଳକୁ ଖସି ପଡୁଅଛନ୍ତି । ନୀଳ ଲୋହିତ ପାଟଳ ସର୍ବବିଧ ରଙ୍ଗରେ ଚିତ୍ରିତ ହୋଇ ପଶ୍ଚିମ ଆକାଶର ସାଙ୍ଗ ଅପୂର୍ବ ଶ୍ରୀ ଧାରଣ କରିଅଛି । କାକ ଚଢ଼େଇ ପଲ ପଲ ହୋଇ କା କା ଶବ୍ଦ କରି ଚଞ୍ଚଳ ଭାବରେ ବସା ଦିଗ ଆଡ଼କୁ ଉଡ଼ି ଯାଉଅଛନ୍ତି—କାହିଁ ବା ଗୋଟାଏ କାଉ ରେଳ ଛଡ଼ିବା ଘଣ୍ଟା ଶୁଣି ଥାଉ଼ କ୍ଲାସ ପାସେଞ୍ଜର ପରି ଲଣ୍ଡଭଣ୍ଡ ହୋଇ ଯାଉଁଅଛି । ଅନ୍ଧକାର ସଙ୍ଗେ ସଙ୍ଗେ ଶୀତ ମାଡି ଆସୁଅଛି । ଏହିସମୟ ଗୋରୁବାହୁଡ଼ା ସମୟରେ ଗୋଡଖାଲି ନିକଟରୁ ବଡ଼ ଦାଣ୍ଡରେ ପଞ୍ଝାଏ ଯାତ୍ରୀ ଦେଖାଗଲେ । ଜଣାଯାଏ ଜଗନ୍ନାଥ ଯାତ୍ରୀ ହେବେ । ଏମାନେ ସୁବର୍ଣ୍ଣରେଖା ପାର ହୋଇ ଦକ୍ଷିଣ ଦିଗକୁ ଆସୁଅଛନ୍ତି । ରାତି ଧରିବା ଆଶାରେ କିଛି ଚଞ୍ଚଳ ଭାବରେ ଚାଲିଅଛନ୍ତି । ଦିନସାରା ପଥ ଭ୍ରମଣରେ କ୍ଳାନ୍ତ, ସମସ୍ତେ ନୀରବ, ଶୁଷ୍କମୁଖ ଓ ଏକମନରେ ଚାଲିଅଛନ୍ତି, ବେଶଭୂଷଣରୁ ଜଣା ଯାଏ ଏମାନେ ପଶ୍ଚିମଦେଶୀୟ ଯାତ୍ରୀ । ଶଗଡ଼ ଦାଣ୍ଡ ଭଳି ନ ଥିଲା, ମଧ୍ୟଭଳି ଲୋକମାନଙ୍କର ଟଟୁ ଏବଂ ବଡ଼ଲୋକ ବାଟୋଇମାନଙ୍କର ଘୋଡ଼ା ହୋଇ ଉଟ ସମ୍ବଳ ଥିଲା । ସାତ୍ରିପଞ୍ଝାରେ ସ୍ତ୍ରୀ ତିନି ଜଣ ପୁରୁଷ ପାଞ୍ଚ ଜଣ,—ସମସ୍ତେ ଟଟୁରେ, ସବାର । ଏମାନଙ୍କୁ ଛଅ ପାଞ୍ଚ ଛଟା ନଦନ, ଟଟୁକୁ ଦୁଇଜଣ ଲୋକ ହେଟ୍ ହେଟ୍ କହି ଅଡ଼ାଇ ନେଉଅଛନ୍ତି, ବେଳେବେଳେ ଟଟୁ [illegible]

ସେମାନଙ୍କୁ ମନୁଷ୍ୟ ଭାଷାରେ କିଛି ଅପମାନସୂଚକ ଦୁଇ କଥା ଶୁଣାଇ ଦେଇ ଯନ୍ତ୍ରିଦ୍ୱାରା ବସ୍ତୁର ସାମର୍ଥ୍ୟ ସଞ୍ଚାଳନ କରୁଅଛନ୍ତି ।

ଦଶବାର ଜଣ ବଳବନ୍ତ ହତ୍ୟାରବନ୍ଦ ଭେଣ୍ଡିଆ ଦଳର ଅଗ୍ରପଶ୍ଚାତରେ ରକ୍ଷକସ୍ୱରୂପ ହୋଇ ଚାଲୁଅଛନ୍ତି । ଯାତ୍ରିଦଳର ପଶ୍ଚାଦ୍ଭାଗରେ ହଠାତ୍ ଦୁଇ ଜଣ ଅଶ୍ୱାରୋହୀ ଦେଖା ଗଲେ । କ୍ରମେ ତିନି ଜଣ, ଚାରି ଜଣ, ପାଞ୍ଚ ଜଣ । ଅଶ୍ୱାରୋହୀମାନେ ଦୃଢ଼ଶରୀର ବଳିଷ୍ଠ, ସେମାନଙ୍କର ଅଶ୍ୱମାନେ ବଳିଷ୍ଠ, କ୍ଷିପ୍ରଗତି, କଷାଘାତ-ଅସହିଷ୍ଣୁ । ଯାତ୍ରିମାନଙ୍କର ନବାଗତ ଅଶ୍ୱାରୋହୀ ଦଳପ୍ରତି ଦୃକ୍‌ପାତ ନାହିଁ । ଏକ ମନରେ ଚାଲିଅଛନ୍ତି । ମାତ୍ର କେହି ସନ୍ଧାନୀ ଲୋକ ଥିଲେ ଦେଖି ପାରଥାନ୍ତେ, ନବାଗତ ଅଶ୍ୱାରୋହୀ ଦଳ ତୀକ୍ଷ୍ଣଦୃଷ୍ଟିରେ ଯାତ୍ରିମାନଙ୍କୁ ତନ୍ନ ତନ୍ନ କରି ଦେଖୁଅଛନ୍ତି । ନବାଗତ ଦଳ ପ୍ରଥମରେ କିଛି ଦୂରରେ ଥିଲେ, କ୍ରମଶଃ ଆସି ଯାତ୍ରି ଦଳରେ ମିଶିଲେ, ଏମନ୍ତ କି ସ୍ତ୍ରୀଲୋକମାନଙ୍କ ଘୋଡ଼ା ଦେହରେ ଲଗାଲଗି ହୋଇଗଲେ । ଯାତ୍ରି ଦଳରୁ ଜଣେ ଭେଣ୍ଡିଆ ଡାକ ଦେଲା, ତଫାତ୍ ଯାଓ । ମାତ୍ର ନବାଗତ ଦଳ କଥା ନ ଶୁଣିଲା ପରି ଅଗ୍ରସର ହୋଇ ଚାଲିଲେ । ଜଣେ ରକ୍ଷକ ବିରକ୍ତ ହୋଇ ଘୋଡ଼ାର ଲଗାମ ଧରି ଟାଣି ଦେଲା । ନବାଗତ ଅଶ୍ୱାରୋହୀ ମଧ୍ୟରୁ ଜଣେ ଭେଁ ଭେଁ କରି ଗୋଟିଏ ସାଙ୍କେତିକ ଶିଙ୍ଗା ବଜାଇ ଦେଲା । ଯାତ୍ରିମାନେ ଶବ୍ଦ ଶୁଣି ଅନାଇ ଦେଖିଲେ ଅଗ୍ର-ପଶ୍ଚାତ୍ ଜଙ୍ଗଲ ମଧ୍ୟରେ ଚାରି ପାଞ୍ଚ ଶତ ଅଶ୍ୱାରୋହୀ ଉତ୍କଟ ଶବ୍ଦ କରି ଧାଇଁ ଅଛନ୍ତି । ଯାତ୍ରିମାନେ ଉପସ୍ଥିତ ବିପଦର ଗୁରୁତ୍ୱ ସହଜରେ ଅନୁଭବ କଲେ ଏବଂ ସହସା କର୍ତ୍ତବ୍ୟ ନିରୂପଣ କରି ନ ପାରି ତଟସ୍ଥ ହୋଇ ଛିଡ଼ା ହୋଇଗଲେ । ବ୍ୟାଘ୍ରବେଷ୍ଟିତ ମୃଗୀପରି ସ୍ତ୍ରୀଲୋକଗୁଡ଼ିକ ଭୟରେ କମ୍ପିତ ହେଉଥାନ୍ତି । ଯାତ୍ରିମାନେ ସର୍ବସ୍ୱର ମାୟା ତ୍ୟାଗ କରି ଆତ୍ମସମର୍ପଣ କରିଥିଲେ ହେଲାଣି ବା କେତେଗୁଡ଼ିଏ ମହାପାପିଙ୍କର ପ୍ରାଣରକ୍ଷାର ସମ୍ଭାବନା ଥିଲା । ମାତ୍ର କ୍ଷତ୍ରିୟମାନଙ୍କ ଲଲାଟରେ ବିଧାତା ସେପରି ଲିପି ବିଧାନ କରି ନାହାନ୍ତି । ସାମର୍ଥ୍ୟ ଥାଉଁ ଥାଉଁ ଆତ୍ମରକ୍ଷାପାଇଁ ଚେଷ୍ଟା ନ କରି ଶତ୍ରୁର ଶରଣାପନ୍ନ ହେବା କ୍ଷତ୍ରିୟପକ୍ଷରେ ଅତ୍ୟନ୍ତ ଜଘନ୍ୟ କାର୍ଯ୍ୟ । ସେମାନଙ୍କ ବିଶ୍ୱାସରେ ଯେ ପ୍ରାଣ ଦେଇ ନ ଜାଣେ, ସେ ପ୍ରାଣରକ୍ଷା କରିବାକୁ ଅଯୋଗ୍ୟ---ଏପରି ପ୍ରାଣରକ୍ଷା ବିଡ଼ମ୍ବନା ମାତ୍ର । ଯାତ୍ରିଦଳପତି ଡାକ ଦେଲେ, "ହୁସିଆର, ଆପନ ଆପନା କାମପର ରହୋ ।" ଆଦେଶ ପ୍ରାପ୍ତିମାତ୍ରକେ ରକ୍ଷକମାନେ ତରବାରି ଖାପ ଖୋଲି ଢାଲ ଧରି ଯୁଦ୍ଧପାଇଁ ପ୍ରସ୍ତୁତ ହେଲେ । ଯୁଦ୍ଧାରମ୍ଭ ହେଲା । ପଞ୍ଚଶତ ଚତୁର୍ଗୁଣ ବଳିଷ୍ଠ ଶତ୍ରୁ ସଙ୍ଗରେ ଅବା କେତେବେଳଯାଏ ଯୁଦ୍ଧ କରନ୍ତେ ? ମାତ୍ର ସୌଭାଗ୍ୟ ବା ଦୁର୍ଭାଗ୍ୟପ୍ରଯୁକ୍ତ ସେମାନଙ୍କୁ କିଛି ସୁବିଧାଜନକ ସ୍ଥାନ ମିଳିଗଲା । ସୈନ୍ୟମାନଙ୍କର ସଂଖ୍ୟା ଶିକ୍ଷା ସାମର୍ଥ୍ୟ ପରି ଯୁଦ୍ଧକ୍ଷେତ୍ରର ସ୍ଥାନଟା ଉପରେ ମଧ୍ୟ ଜୟ ପରାଜୟ କେତେକ ପରିମାଣରେ ନିର୍ଭର କରେ । ସେନାପତି ନେ କୋୟାଟର-ବ୍ରାସ ସ୍ଥାନ ଅଧିକାର କରି ପାରି ଥିଲେ ୱାଟର୍ଲୁ ଯୁଦ୍ଧର ପରିଣାମ କିପରି ଘଟି ଥାନ୍ତା, ବୋଲାଯାଇ ନ ପାରେ । ପଲାଶିର ଆମ୍ର ତୋଟା କ୍ଲାଇବଙ୍କ ବିଜୟପକ୍ଷରେ ଯଥେଷ୍ଟ ସହାୟତା କରିଥିଲା । ଯାତ୍ରିମାନେ କିଛିଦୂର ପଛଘୁଞ୍ଚା ଦେଇ ଗୋଡ଼ଝାଲ ନାଳଧାରରେ ଗୋଟିଏ ପରିଷ୍କୃତ ଅପେକ୍ଷାକୃତ କିଛି ଉଚ୍ଚସ୍ଥାନ ଅଧିକାର କରି ଗୋଟିଏ କ୍ଷୁଦ୍ର ବ୍ୟୂହ ରଚନା କଲେ । ସେହି ସ୍ଥାନର ବାମ ଏବଂ ପୃଷ୍ଠଭାଗରେ ନାଳ ଏବଂ ଜଙ୍ଗଲ । ସୁତରାଂ ସେ ଦଗରୁ ଶତ୍ରୁ ଆକ୍ରମଣର ସମ୍ଭାବନା ନ ଥିଲା । ସମ୍ମୁଖ ଏବଂ ଦକ୍ଷିଣଭାଗ ଅନାବୃତ । ଯାତ୍ରିମାନେ ବଣ ଧାରରେ ସ୍ତ୍ରୀଲୋକମାନଙ୍କୁ ତଳେ ଛିଡ଼ା କରାଇ ସେମାନଙ୍କ ସମ୍ମୁଖରେ ଉଟମାନଙ୍କୁ ପ୍ରାଚୀରପରି ଛିଡ଼ା କରାଇ ଦେଲେ । ପୁରୁଷମାନେ ଅସ୍ତ୍ର ଧରି ଅର୍ଦ୍ଧଚନ୍ଦ୍ରାକାରରେ ଛିଡ଼ା ହେଲେ । ସଂଗ୍ରାମ ...

ବୋଲାଯାଇ ନ ପାରେ । ଏକ ପକ୍ଷରୁ ଆକ୍ରମଣ, ଅନ୍ୟ ପକ୍ଷରୁ ଆତ୍ମରକ୍ଷା । ତଥାପି ସ୍ଥାନାଭାବ ହେତୁରୁ ଅଧିକସଂଖ୍ୟକ ଶତ୍ରୁ ଏକାବେଳକେ ଆକ୍ରମଣ କରିବାକୁ ସୁବିଧା ନ ପାଇବାରୁ ପାନ୍ଥମାନେ ଅନେକ ବେଳ ପର୍ଯ୍ୟନ୍ତ ଆତ୍ମରକ୍ଷା କରିବାକୁ ସମର୍ଥ ହୋଇଥିଲେ । ବିନାଶ ସମ୍ମୁଖରେ ବିପଦଟା ସୂର୍ଯ୍ୟାସ୍ତ ଉତ୍ତାରେ ଅନ୍ଧକାର ପରି ଚତୁର୍ଦ୍ଦିଗରୁ ମାଡି ଆସେ । ଯାତ୍ରିଦଳର ଶତ୍ରୁଦ୍ୱାରା ଯୁଦ୍ଧ ଗୋଳମାଳ ଏବଂ ଅସ୍ତ୍ରାଘାତରେ ତ୍ରସ୍ତ ହୋଇ ବିଶୃଙ୍ଖଳ ଭାବରେ ପଳାଇବାକୁ ଲାଗିଲେ, ସେମାନଙ୍କୁ ସମ୍ଭାଳି ରଖିବା କଠିନ ହେଲା । ସୁତରାଂ ଆପଣା ମଧ୍ୟରେ ଭୟଙ୍କର ବିଶୃଙ୍ଖଳା ଘଟିଲା ଏବଂ ଅନ୍ଧକାର ମାଡି ଆସିବାରୁ ପାନ୍ଥମାନେ ଶତ୍ରୁର ଅସ୍ତ୍ରପାତ ଲକ୍ଷ୍ୟ କରି ପାରିଲେ ନାହିଁ । ଏହି ଅବସରରେ ତସ୍କରମାନେ ସୁଯୋଗ ପାଇ ବର୍ଚ୍ଛା ଏବଂ ତୀର ଆଘାତ କରୁଥାନ୍ତି । ଯୁଦ୍ଧର ଶେଷ ଫଳ ଲେଖିବା ଅନାବଶ୍ୟକ ।

ତସ୍କରମାନେ ଯାଇ ଦେଖିଲେ ଯାତ୍ରୀମାନେ ତଳେ ପଡ଼ିଅଛନ୍ତି । ଅନେକଗୁଡ଼ିଏ ମୃତ, କେହି ବା ଯାତନାଦ୍ୱାରା ମୃତ୍ୟୁର ପୂର୍ବଲକ୍ଷଣ ପ୍ରକାଶ କରୁଅଛି, କେହି ତଳେ ପଡି ଛଟପଟ ହେଉଅଛି ଏବଂ ହୃଦୟଭେଦୀ ଆର୍ତ୍ତନାଦ କରୁଅଛି । ଅର୍ଦ୍ଧମୃତ ମହିଷ ତଳେ ପଡ଼ି ଛଟପଟ ହେଉଥିଲେ ବ୍ୟାଘ୍ର ଯେମନ୍ତ ଆନନ୍ଦିତ ହୁଏ, ତସ୍କରମାନେ ସେହିପରି ଆନନ୍ଦ ମନରେ ସମ୍ପତ୍ତି ସଂଗ୍ରହ କରିବାକୁ ଲାଗିଲେ । ଦୁଇଗୋଟି ସ୍ତ୍ରୀଲୋକ ମୃତପ୍ରାୟ ହୋଇ ଜଙ୍ଗଲ ମଧ୍ୟରେ ପଡିଥିଲେ ସେମାନଙ୍କ ଦେହରେ ଅସ୍ତ୍ରାଘାତ ହୋଇ ନାହିଁ । ତସ୍କରମାନେ ଯୁବତୀ ସ୍ତ୍ରୀଟିକୁ ଆଖପାଖ ଜଙ୍ଗଲରେ ଅନେକ ଖୋଜ ତଲାସ କଲେ, ମାତ୍ର ପ୍ରାପ୍ତ ନ ହେବାରୁ ବିରକ୍ତ ହୋଇ 'ଯାଉ, ସେଟାକୁ ବାଘ ଖାଇଲାଣି' ଏହା କହି ଅନ୍ୟ ଦୁଇଗୋଟି ସ୍ତ୍ରୀଙ୍କୁ ସଙ୍ଗରେ ନେଇ ଗନ୍ତବ୍ୟ ସ୍ଥାନକୁ ଚାଲିଗଲେ ।

ଶ୍ରୀ ଧୂର୍ଜଟୀ ।

## ଗାଁଗବଭ ଟୁଙ୍ଗୀରେ ସନ୍ଧ୍ୟା (୨)

ମର୍ଦ୍ଦରାଜେ ଇତିମଧ୍ୟରେ କଲିକତା ଯାଇ ପୁନର୍ବାର ଫେରି ଆସି ଅଛନ୍ତି । କିନ୍ତୁ ଆଜି ସେ ପୂର୍ବର ମର୍ଦ୍ଦରାଜେ ନୁହନ୍ତି । ଆଜି ସେ 'ଶ୍ରୀଯୁକ୍ତ ରାମଚନ୍ଦ୍ର ମର୍ଦ୍ଦରାଜ ବି: ଏ: । ବି: ଏ: ପାଶ କରି କଲିକତାରେ 'ବଡ଼ ଓକିଲାତି' କ୍ଲାସରେ ଭର୍ତ୍ତି ହୋଇ ପୂଜା ଛୁଟିରେ ଗ୍ରାମକୁ ଆସି ଅଛନ୍ତି ।

ମୁକ୍ତ୍ୟାର ବାବୁ (ପ୍ରଥମ ସନ୍ଧ୍ୟାରେ ଯେଉଁ ମୁକ୍ତ୍ୟାର ବାବୁ ଉପସ୍ଥିତ ଥିଲେ ଏ ସେହି; ଏହାଙ୍କୁ ଗ୍ରାମର ସ୍ୱନାମଧନ୍ୟ ଭାଗୀରଥି ସାମନ୍ତରାୟ ମକ୍ତ୍ୟାର ବୋଲି ଭ୍ରମ କରିବେ ନାହିଁ), ମନ୍ତ୍ରୀରାମ୍, ମହାଜନ ସାହୁ, ପୁଲିସ ରାଇଟର କନଷ୍ଟବଲ କାଶୀ ବାବୁ (ଗ୍ରାମରେ ଜମାଦାର ବାବୁ ବୋଲି ଖ୍ୟାତ), ମାଷ୍ଟର ମହାଶୟ, ଗ୍ରାମର ସଙ୍କୀର୍ତ୍ତନ ଅଖଡ଼ା ଏଠାର ପ୍ରସିଦ୍ଧ 'ଗୁଣୀ' । "ଗୁଣୀ ଗୁଣଂ ବେତ୍ତି ନ ବେତ୍ତି ନିର୍ଗୁଣଃ" ଏ ସେପରି ଗୁଣୀ ନୁହନ୍ତି । ଏହାଙ୍କର ଭୂତ, ଡାହାଣୀ, ମନ୍ତ୍ର ଯନ୍ତ୍ର ଇତ୍ୟାଦି ଶାସ୍ତ୍ରଡ ବିଦ୍ୟା ସଙ୍ଗେ ବେଶ୍ ପରିଚୟ; ଗ୍ରାମରେ ଯେତେ ଲୋକଙ୍କୁ ଡାହାଣୀ ଲାଗେ, ଏ ନ ଥିଲେ ପ୍ରାୟ ସେମାନଙ୍କ ମଧ୍ୟରୁ ଶତକଡା ୧୦୦ ବଞ୍ଚନ୍ତେ କି ନାହିଁ ସନ୍ଦେହ । ଆମ ଗ୍ରାମର ରାମୁଗଡ଼ିତ ଘରକୁ କଏ 'ବାର' ପେଶିଥିଲା; ଗୁରୁ ବିଗାଇ ବହୁତ ପରିଶ୍ରମ କରି ଘର ଦ୍ୱାରରୁ 'ବାର' ଛଡ଼ାଇ ଦେଲେ । ତାହାଙ୍କର ୩ ପୁଅ ଧୁରନ୍ଧର, କିନ୍ତୁ ତିନ ପୁଅ ଯାକ କଲିକତାରେ ଚାକିରି କରି ୨/୩ ବର୍ଷରେ ଥରେ ଘରକୁ ଆସନ୍ତି । ରାତ୍ରିଭ ବଗାଡ଼ନ ଘରେ 'ବାର' ଲାଗିବାରୁ ରାତ୍ରିଭ ବୁଢ଼ା ଅତି

ପାଞ୍ଚ ସାତ ଦିନ ମଧ୍ୟରେ 'ଖୋର' ଛଡ଼ାଇଦେଲେ । ତାହାର ବୁଢ଼ା ଗୁରୁଙ୍କ ସଙ୍ଗେ ସେହି ଦିନଠାରୁ ଧର୍ମ ବାପ ବସିଛି । ଗ୍ରାମର ଯେବେ କାହାର ଗୋରୁ ହଜିଗଲା କିମ୍ବା ଚିଠା କି ଚିଠି ଲେଖିବା କିମ୍ବା କାହାକୁ କିଏ ବାଣ ମାରଇ, ତେବେ ଏ ଗୁରୁ ଭାଇ ଅଧରେ ଶୁଣିଲେ ସୁଦ୍ଧା ଦଣ୍ଡେ ବିଳମ୍ବ ନ କରି ଘଟଣା ସ୍ଥଳରେ ପହଞ୍ଚି ସବୁ ଠିକ କରି ଦେଇ ଆସନ୍ତି । ସେଥିପାଇଁ ପରା ପଣ୍ଡିତ ମହାଶୟ କହନ୍ତି 'ପରୋପକାରାୟ ସତାଂ ବିଭୂତୟଃ' । ଗ୍ରାମର ଦୁଇ ଗୋଟି ବନ୍ଧ୍ୟା ସ୍ତ୍ରୀଙ୍କୁ ମନ୍ତ୍ର ଯନ୍ତ୍ର ଓ ଔଷଧ ବଳରେ ଉତ୍ପାଦିକା ଶକ୍ତି ମଧ୍ୟ ଦେଇ ଅଛନ୍ତି । ଗୁରୁଙ୍କ ଅଭାବେ ଗ୍ରାମଟି କିପରି ଚଳିବ, ଗ୍ରାମର ବୃଦ୍ଧ ଓ ବିଶେଷତଃ ସ୍ତ୍ରୀମଣ୍ଡଳରେ ବଡ଼ ଭାବନା; ଅବଶ୍ୟ ଗୁରୁ ଏ ଗ୍ରାମବାସୀ ନୁହନ୍ତି, ଦୁଇ ବର୍ଷ ହେଲା ଏଠାର ସଙ୍କୀର୍ତ୍ତନ ଆଖଡ଼ାର ଗୁରୁ ପଦରେ ନିଯୁକ୍ତ ହୋଇ ଅଛନ୍ତି । ଆବାଳବୃଦ୍ଧବନିତା ସମସ୍ତଙ୍କର ଏହାଙ୍କ ପ୍ରତି ସ୍ନେହ; ସମସ୍ତଙ୍କ ଗୃହ ଗୁରୁଙ୍କୁ ଅବାରିତଦ୍ୱାର । ଅମ୍ଭେମାନେ ମଧ୍ୟ ଗୁରୁଙ୍କୁ ଭକ୍ତି କରୁଁ, ବିଶେଷତଃ 'ଭାରିଯା ଉପରୋଧରୁ ଯାଜ ଶଳାକୁ ନମସ୍କାର' । ଅମ୍ଭମାନଙ୍କ ଗ୍ରାମର ଅଧିକାଂଶ ଶିକ୍ଷିତଯୁବକଙ୍କର ଗୁରୁଙ୍କ ପ୍ରତି ଗୋଟାଏ ଆନ୍ତରିକ ଘୃଣା । କିନ୍ତୁ ନାଚାର । ଯେବେ କିଛି କଥା କହି ଗୁରୁଙ୍କୁ ଚିଡ଼େଇ ଦେବେ ତେବେ ସ୍ତ୍ରୀ ମହଲରେ ହୁଲସ୍ଥୂଳ ଲାଗି ଯିବ । ସ୍ତ୍ରୀମାନଙ୍କର ଧାରଣା ଯେ ଗୁରୁ ବିଗିଡ଼ିଗଲେ ପଣ୍ଡାଏ ଗ୍ରାମକୁ ଉତ୍ସନ୍ନ କରି ଦେଇ ପାରନ୍ତି । ଯୁବକମାନେ ନାରୀଙ୍କ ଅନୁରୋଧରେ ପଡି ପାଟି ବନ୍ଦ କରି ରହନ୍ତି । ଏ ଗ୍ରାମର ଜମିଦାରଙ୍କ ପୁଅ ଗୁରୁଙ୍କୁ ଦିନେ ଗାଳି ଦେଇଥିଲେ, ତହିଁ ଆରଦିନ ଜମିଦାରଙ୍କ ଘରେ କାନ୍ଦବୋବାଳି ପଡ଼ିଗଲା; ପୁଅଠାରୁ ରକ୍ତ ବାନ୍ତି ହେଲା; ସୁଯୋଗକୁ ଗୁରୁଙ୍କଠାରୁ କାଟପାଣି ନେଲାରୁ ରକ୍ତବାନ୍ତି ବନ୍ଦ ହୋଇ ପୁଅ

ପଛେ ଗ୍ରାମରେ ସମ୍ମାନ ନ ପାଇବାରୁ ଗୁରୁଙ୍କ ସହି ନ ପାରି ନାନା ଅପବାଦ ଦିଅନ୍ତି । କିନ୍ତୁ ମୁଁ ଧୀର ଚିତ୍ତ ସ୍ଥିରବୁଦ୍ଧିରେ, ବିନା କାହାରି ଜୋର ଜୁଲମ ବଳାତ୍କାରରେ, ପକ୍ଷପାତିତାରେ ନ ପଡ଼ି, ମନପ୍ରାଣରେ କହୁଛି ଯେ ଗୁରୁ ଜଣେ ଆଦର୍ଶ ମନୁଷ୍ୟ । ଅନେକ ସଙ୍କୀର୍ତ୍ତନ ମଣ୍ଡଳ ଆମ ଗ୍ରାମର ସଙ୍କୀର୍ତ୍ତନ ମଣ୍ଡଳ ସଙ୍ଗେ ପ୍ରତିଦ୍ୱନ୍ଦୀ ହୁଅନ୍ତି । କିନ୍ତୁ ମୃଦଙ୍ଗରେ ହାତ ନ ବାଜୁଣୁ ବିପକ୍ଷ ପକ୍ଷଙ୍କ ମୃଦଙ୍ଗ ଚୂନା ହୋଇଯାଏ, କାହାର କଣ୍ଠ ବସି ଯାଏ, କିଏ ରକ୍ତ ବାନ୍ତି କରେ, ସମସ୍ତେ ଏହିପରି ପରାସ୍ତ ହୁଅନ୍ତି । ଗୁରୁ କହନ୍ତି ସେ ପରୋପକାର କରିବେ ବୋଲି 'ଗୁଣି' ଶିଖିଛନ୍ତି । ତେବେ ନିତାନ୍ତ ଆପଣା 'ବଳ ଯାଚିବାକୁ' ପଦେ ଅଧେ ଏଣୁ ତେଣୁ ଶିଖିଛନ୍ତି । ଅଧିକ ଲେଖିଲେ ଗୋଟାଏ ପୋଥି ହୋଇଯିବ । ଅତଏବ ପଣ୍ଡିତ ମହାଶୟଙ୍କ କଥାରେ 'ବହୁନାଲଂ' ବା 'ଅଲମତି-ବିସ୍ତରେଣ' ।) ପଣ୍ଡିତ ମହାଶୟ; ଜମିଦାରଙ୍କ ପୁରୋହିତ 'ମହାପାତ୍ର ଆପଣେ' ଓ ଗ୍ରାମର ଆଉ ଦୁଇ ଗୋଟି ଯୁବକ ଉପସ୍ଥିତ ଅଛନ୍ତି । ସହୃଦୟ ପାଠକ ମହୋଦୟ, ଆପଣ ବିରକ୍ତ ହୁଅନ୍ତୁ ପଛକେ ମୋର ନିଜର ଆତ୍ମସମ୍ମାନ ଆପଣମାନଙ୍କ ବିରକ୍ତି ଅପେକ୍ଷା ବେଶି ମୂଲ୍ୟବାନ୍, ଆଜି ରାମଚନ୍ଦ୍ର ମର୍ଦ୍ଦରାଜଙ୍କ ନିକଟକୁ ଡାକରେ ଖଣ୍ଡେ ଚିଠି ଆସିଥିଲା, ତା ଉପର ଠିକଣାରେ ଲେଖାଅଛି —ଶ୍ରୀ ବାବୁ ରାମଚନ୍ଦ୍ର ମର୍ଦ୍ଦରାଜ ବି, ଏ,—ଏହା ଦେଖି ମୋ ମନରେ ବାସ୍ତବିକ ଟିକିଏ ଈର୍ଷା ହୋଇଅଛି । ମୁଁ ମଧ୍ୟ ଏଫ୍, ଏ, ପର୍ଯ୍ୟନ୍ତ ପଢ଼ିଥିଲି, କିନ୍ତୁ ଦ୍ୱିତୀୟ ବାର୍ଷିକ ଶ୍ରେଣୀକୁ ପ୍ରମୋଶନ୍ ନ ପାଉଣୁ ବିଦାୟ । ହେଲେ କି ହେବ, ମୋର ଭାଗ୍ୟ ବୁଦ୍ଧି, ମୁଁ ଯେତେବେଳେ ମୋର ବୁଦ୍ଧିମତ୍ତା କଥା ଭାବେ ସମୟ ସମୟରେ ଭାଗ୍ୟରେ ଯେ ମୁଁ ନିଶ୍ଚୟ ଫାଷ୍ଟ ଡିଭିଜନରେ ଏଫ୍, ଏ, ପାଶ କରିଥାନ୍ତି । ମୁଁ ଗିଳା ବଗୁଲିଅ

ନ ଥିଲେ କେତେଲୋକ ଅକାଳ ମୃତ୍ୟୁରେ ପଡ଼ୁଥାନ୍ତେ । ଅତଏବ ଏଫ୍, ଏ, ଉପାଧି ପ୍ରତି ମୋର ଅବଶ୍ୟ କିଛି ଅଧିକାର ଅଛି । ମୁଁ ଆଜିଠାରୁ ସଙ୍କଳ୍ପ କଲି ଯେ ମୋ ନାମ 'ଶ୍ରୀ ଦୁର୍ମ୍ମୁଖ ଶର୍ମା ଏଫ୍, ଏ/୨ (ଅର୍ଥାତ୍ ଅର୍ଦ୍ଧ ଏଫ୍, ଏ) ଲେଖିବି ।

ଆଜି ଟୁଙ୍ଗୀରେ ଏମାନେ ସମସ୍ତେ ଓ ଶ୍ରୀ ଦୁର୍ମ୍ମୁଖଶର୍ମା ଏଫ୍, ଏ/୨ ଉପସ୍ଥିତ ଅଛନ୍ତି । ଜମାଦାର ବାବୁଙ୍କ ପ୍ରସ୍ତାବ ଓ ଅନୁରୋଧ ଅନୁସାରେ ଆଜି ଟୁଙ୍ଗୀରେ 'ଭାଙ୍ଗ' ପ୍ରସ୍ତୁତ ହୋଇଅଛି; ସମସ୍ତେ ଅଳ୍ପ ବହୁତ ପିଇ ପକାଇ ଅଛନ୍ତି । ମନ୍ତ୍ରବର୍ମ୍ମ ମଧ୍ୟ ଆଜି ଭାଙ୍ଗ ନିଶାରେ ଚୂର୍ ।

ଜମିଦାରଙ୍କ ଘରେ ଆଜି ସତ୍ୟନାରାୟଣ ପୂଜା (ଠିଆ ପାଲା ନୁହେ; ବୋଧିଆ ପାଲା) ହେବ । ସେଥି ନିମନ୍ତେ ଅମ୍ଭେମାନେ ସମସ୍ତେ ଆମନ୍ତ୍ରିତ । ଜମିଦାର୍ ବଡ଼ ଲୋକ; ବଡ଼ ଲୋକଙ୍କର ବଡ଼ କଥା; ପ୍ରସାଦ ପାଉଁ ପାଉଁ ରାତି ଶେଷ । ଏପରି ସ୍ଥଳରେ ଆଜି ଆମ୍ଭମାନଙ୍କୁ ଟୁଙ୍ଗୀରେ ଅନେକ ସମୟ ବସିବାକୁ ହେଲା ଓ ନିଶା ଜୋରରେ ହର୍ଷପ୍ରକର୍ଷରେ ଅମ୍ଭେମାନେ ଗଳ୍ପ କରିବାକୁ ଆରମ୍ଭ କଲୁଁ । (ମୁଁ ମନେ ମନେ ମାଦକ ଦେବଙ୍କର ସ୍ତବ ଆରମ୍ଭ କଲି: — ହେ ପରାତ୍ପର ମାଦକ ଦେବ ! ଯେ ତୁମ୍ଭର ଭକ୍ତ ନୁହେ ସେ ମନୁଷ୍ୟ ନୁହେ । ହେ ଭକ୍ତବାଞ୍ଛା-ବ୍ୟଥାପୂର୍ଣ୍ଣ ! ହେ କଳ୍ପ-ତରୁ ! ତୁମ୍ଭ ଭକ୍ତର ଅସାଧ୍ୟ କିଛି ନାହିଁ । ମୂକଂ କରୋତି ବାଚାଳଂ, ପଙ୍ଗୁଂ ଲଂଘୟତେ ଗିରିଂ । ଯତ୍କୃପାତ୍ତମହଂ ବନ୍ଦେ ପରମାନନ୍ଦ ମାଦକ । ପୂର୍ବକାଳରେ ଛାପାଖାନା ଥିଲେ ବୋଧହୁଏ ଏ ଭ୍ରମ ସଂଶୋଧିତ ହୋଇ ଥାନ୍ତା । ଭାଗବତ-ପ୍ରଣେତା ମାଦକ ଲେଖିବାକୁ ଯାଇ ମାଧବ ଲେଖି ପକାଇଲେ । ଛାପାଖାନା ଥିଲେ ଅଗ୍ରେ କମ୍ପୋଜ୍ (compose) ହୋଇଥାନ୍ତା; ଅଗ୍ରେ ଗାଲି

ପେଜ୍ ପ୍ରୁଫ୍ (page proof) କଢ଼ା ଯାଉଥାନ୍ତା, ସେଥିରେ ମନ ବୋଧ ନ ହେଲେ ଶେଷକୁ final proof ଶେଷ ପ୍ରୁଫ୍ କଢ଼ା ଯାଉଥାନ୍ତା । ଏତେ ଥର ସଂଶୋଧିତ ହୋଇଥିଲେ କି ଭୁଲ ଥାନ୍ତା ? କିନ୍ତୁ ତାହା ନ ହୋଇ ଥିବାରୁ ତାଳ ପତ୍ରରେ ଲେଖୁ ଲେଖୁ ପ୍ରେମର ନିଶାରେ ଭୋଳ ବ୍ୟାସ ଦେବ ମାତ୍ର ଛାଡ଼ି ଯାଇ ଅର୍ଥାତ୍ 'ଦ'ର ଉପରଭାଗ ଓ 'କ'ର ଅଙ୍କୁଶୀ ଛାଡ଼ି ଯାଇ 'ମାଦକ'ଙ୍କୁ 'ମାଧବ'ଙ୍କରି ପ୍ରକଟିଲେ ଓ ତାହା ଚିରଦିନ ହୋଇ ରହି ଗଲା ଓ ମାଦକ ଦେବ ନିଜର ପ୍ରକୃତି ହରା-ଇଲେ । ହେ ସନ୍ତାପହାରୀ ଦେବଦେବ ! ତୁମ୍ଭର ଦାସ ଏଙ୍କା ସୁଙ୍ଗା; ଲକ୍ଷ୍ମୀ ମାଧବଙ୍କର ଅର୍ଦ୍ଧାଙ୍ଗ । ତୁମ୍ଭେ ଏ ଅଂଶରେ ମାଧବଙ୍କୁ ଜିଣିଅଛ । ଅ-ପୂର୍ବ ଲକ୍ଷ୍ମୀ (ଅଲକ୍ଷ୍ମୀ) ତୁମ୍ଭର ଅଙ୍କଗତା; ମାଧବ ଯେପରି ସୁଦାମାଦାରିଦ୍ର୍ୟଭଞ୍ଜନ, ତୁମ୍ଭେ ମଧ ତୁମ୍ଭ ଭକ୍ତର ପର୍ଣ୍ଣକୁଟୀରକୁ କିଛିଦିନ ମଧ୍ୟରେ ରମ୍ୟ ହର୍ମ୍ମ୍ୟରେ ପରିଣତ କର ପାର । ତୁମ୍ଭର ଭକ୍ତ-ମାନଙ୍କ ମୁଖ ଅ-ପୂର୍ବ, ରସିକତା ଅ-ପୂର୍ବ ଏବ ବାଗ୍ମିତା ଅ-ପୂର୍ବ । ତୁମ୍ଭେ ନିଜେ ଅପୂର୍ବ ! ସଂସାରରେ କେହି ତୁମ୍ଭର ମାହାତ୍ମ୍ୟକୁ ଏଡ଼ି ପାରି ନାହାନ୍ତି । 'କବଳା ଦେବୀ' ତୁମ୍ଭର ଅଛି ତ; 'ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂସ୍ତଥୈବ ଭଜାମ୍ୟହଂ' କିଏ କେଉଁ ପ୍ରକାରେ ତୁମ୍ଭଠାରେ ପ୍ରପନ୍ନ ! 'ସର୍ବଦେବନମସ୍କାରଂ କେଶବଂ ପ୍ରତି ଗଚ୍ଛତି' । କିଏ ଧୂମ୍ରରୂପରେ, କିଏ ଜଳରୂପରେ କିଏ ଚୂର୍ଣ୍ଣରୂପରେ, କିଏ Extract (ସାରାଂଶ) ରୂପରେ, କିଏ ରସରୂପରେ ତୁମ୍ଭକୁ କଳ୍ପନା କରି ପୂଜା କରୁଅଛନ୍ତି । ରୁଚୀନାଂ ବୈଚିତ୍ର୍ୟାତ୍ ଋଜୁକୁଟିଳନାନାପଥଜୁଷାଂ ନୃଣାମେକୋ ଗମ୍ୟସ୍ତ୍ୱମସି ପୟସାମର୍ଣ୍ଣବଇବ ।" ଦେବାଧିଦେବ ! ସନ୍ଧାନ ହୁଅନ୍ତ; ତୁମ୍ଭର ଭକ୍ତଗଣ ଏକଶ୍ରେଣୀର । 'ଶିକ୍ଷ୍ୟେଣ୍ ଭେକ ମୟୂର ବ୍ୟୋମ' ତୁମ୍ଭେ ସବୁ

ଲୋକର ସମଜ୍ଞାନ ଆସେ; ସ୍ଥାନାସ୍ଥାନ, ପାତ୍ରାପାତ୍ର, ବାଚ୍ୟାବାଚ୍ୟ ଜ୍ଞାନାଜ୍ଞାନ ବିବେକାବିବେକ କୌଣସି ପ୍ରଭେଦ ରହେ ନାହିଁ । ଯାହା କଠୋର ତପସ୍ୟା କରି ସୁଦ୍ଧା ଋଷିମାନେ ପାଇ ନାହାନ୍ତି, ଦୁଇ ପଇସା ଖରଚ କଲେ ଲୋକ ମୁହୂର୍ତ୍ତକେ ତବ ପ୍ରସାଦାତ୍ ସେହି ନିଦାର ପ୍ରକୃତଙ୍କୁ ପାଇ ପାରେ । ତୁମ୍ଭର ଦେବାଳୟମାନଙ୍କରେ ରାତ୍ରି ଦିବସ ଉପାସନାଭିଷେକାଦି ଅନୁଷ୍ଠିତ । ତୁମ୍ଭର ଭକ୍ତମାନେ ଯେତେବେଳେ ତୁମ୍ଭର ଦେବାଳୟରେ ସ୍ତବ କରୁଥାନ୍ତି, ସେତେବେଳେ ଏକା ସଂସାରରେ 'ବିଶ୍ୱଜନୀନ ମୈତ୍ରୀବ୍ରତ'ର ଜ୍ୱଳନ୍ତ ଉଦାହରଣ ମିଳେ । ତୁମ୍ଭର ଭକ୍ତମାନେ ସଂସାରବିରାଗୀ; ସେମାନଙ୍କର ସ୍ତ୍ରୀପୁତ୍ରଙ୍କଠାରେ ମମତା ନ ଥାଏ । ଜଣେ ଦିବା ରାତ୍ର ସଂସାରର ଦୁଶ୍ଚିନ୍ତା ନେଇ ବ୍ୟସ୍ତ ହେଉଅଛି, ସେ ତୁମ୍ଭର ନାମ ଆଶ୍ରୟ ନେଲା ମାତ୍ରକେ ସବୁ ପାସୋରି ପକାଏ । କିନ୍ତୁ ହେ ବିଶ୍ୱମୋହନ ! ତୁମ୍ଭର ପୁଣି ଶତ୍ରୁ ଅଛନ୍ତି; ତୁମ୍ଭର ଧର୍ମର ଧ୍ୱଜା ନଷ୍ଟ କରିବାକୁ କେତେ ଲୋକ ସାହସ ବାନ୍ଧିଅଛନ୍ତି । କିନ୍ତୁ 'ପ୍ରାଂଶୁଲଭ୍ୟ ଫଳେ-ଲୋଭୀ' ବାମନପରି ସେମାନଙ୍କ ଶ୍ରମ ବିଫଳ ! 'ଧନେ ଧନେ ସଞ୍ଚିତଦୋଽସ୍ତୁ ପୁଣ୍ୟଂ ଧନେ ଧନେ ସାଧୁକସଙ୍ଗମୋଽସ୍ତୁ ।' ମା ଭୈଃ । ତୁମ୍ଭର ଏକ ହୁଂକାରରେ ଜାହାଜ ବୁଡ଼ିଯାଇ ପାରେ, ବ୍ରହ୍ମାଣ୍ଡ ଉଡ଼ି ଯାଇପାରେ । ଛାର ପତଙ୍ଗ ଅଗ୍ନିଶିଖାର କଣ କରି ପାରେ ? ତୁମ୍ଭର ସହାୟ ଧନୀମାନେ, ତୁମ୍ଭର ସହାୟ ରାଜା ଓ ତୁମ୍ଭର ଭକ୍ତ ମୁଁ ଓ ଶ୍ରାଦ୍ଧନଷ୍ଟ-ପୂଜକମାନେ । ଅନ୍ୟଥା ଅବମାନନା ହେଲେ ଅମ୍ଭେମାନେ ତହିଁର ପ୍ରତିଶୋଧ ନେବାକୁ ପ୍ରସ୍ତୁତ । ଯେଉଁ ଗ୍ରନ୍ଥର ଆଦ୍ୟ ତୁମ୍ଭେ, ସେ ଗ୍ରନ୍ଥର ଶେଷ ତୁମ୍ଭେ !——————''ଆହା ! ସ୍ତବ ଶେଷ କରି ପାରିଲି ନାହିଁ । ମର୍ଦ୍ଦରାଜେ ମୋର ଧ୍ୟାନର ସଂସାର ଚୂନା କରି ଦେଲେ ।)

'ଶର୍ମା ! ଆଜ କାହିଁକି ଚୁପ୍ ହୋଇ ବସିଛ ? ସତ୍ୟନାରାୟଣ ପୂଜା, ପ୍ରସାଦ ମିଳିବାକୁ ବିଳମ୍ବ ହେଉ ଅଛି । ଏପରି ଚୁପ୍ ହୋଇ ବସିଲେ ସମୟ କାଟିବା କିପରି ?

ମନ୍ତ୍ରରାମର ଅଳ୍ପ ଅଗ୍ନିରେ ଆହୁତ ପଡ଼ିଛି, ଏକେତ ପାଗଳ; ତା ଉପରେ ସିଦ୍ଧି :—

'ପାଳରେ କହିଲା ସତ୍ୟପୀର; ତୁମେ କହୁଛ ସତ୍ୟନାରାୟଣ ! 'ସତ୍ୟପୀର୍ ବୋଲେ ବାବା ବାତ୍ କହୁଁ ତୋରେ ।' ତୁମ ନାରାୟଣ କେଉଁ ଦିନ ବୁଢ଼ା ଫକୀର ହେଲେ ? କାହିଁ ମହାପ୍ରଭୁ ବାଙ୍କଚୂଳ ବାନ୍ଧି ବଂଶୀ ଧରି କଦମ୍ବ ମୂଳେ ତ୍ରିଭଙ୍ଗୀ ଠାଣୀରେ ରାଧିକାଙ୍କ ପାଖରେ ଠିଆ ହେବେ; କାହିଁ ବୁଢ଼ା ଫକୀର ହୋଇ 'ଶିରନୀ' ଖାଇ ବୁଲୁଥିବେ ! ଆମ ଶ୍ରୀକୃଷ୍ଣ ସିନା ସରଲବଣୀ ଖୋଜୁଥିଲେ; ସେ ତ 'ସଓଆ ସେର 'ଶିରନୀ' ଖୋଜନ୍ତେ ନାହିଁ ।'

ମୁଁ, ମର୍ଦ୍ଦରାଜେ ଓ ଜମାଦାର ହସି ପକାଇଲୁଁ ।

ମର୍ଦ୍ଦରାଜେ କହିଲେ 'ଜମାଦାର ବାବୁ, ଆପଣଙ୍କ ମତ କଣ—ମନ୍ତ୍ରରାମ କଥା ଶୁଣି ହସ ମାଡ଼େ, କିନ୍ତୁ ବେଳେ ବେଳେ କାହିଁ କାହିଁ କଥାମାନ ବାହାର କରେ ।'

ଜମାଦାର—ଆମେ ଜାଣୁ ଯେପରି ଭଗବାନ ଏକ ଠାକୁର, ମହାଦେବ ଆଉ ଏକ ଠାକୁର, ପାର୍ବତୀ ଏକ, ଦୁର୍ଗା ଏକ, ଲିଙ୍ଗରାଜେ ଏକ, ଜଗନ୍ନାଥ ଏକ, ସେହିପରି ସତ୍ୟ ପୀର ଏକ ଠାକୁର । ଆମ ହିସାବରେ ଲିଙ୍ଗରାଜଙ୍କୁ ଭୋଗ ଦେଲେ ଜଗନ୍ନାଥ ପାଇବେ ନାହିଁ । ସେହିପରି ସତ୍ୟପୀରଙ୍କୁ ଭୋଗ ଦେଲେ ଆଉ ଠାକୁର ପାଇବେ ନାହିଁ ।

ପୁରୋହିତ — ସତ୍ୟନାରାୟଣ ପୂଜାରେ ନାରାୟଣଙ୍କ ମଣ୍ଡଳରେ ନୈବେଦ୍ୟ ହୁଏ ଓ ମନ୍ତ୍ରାମ ପୂଜାରେ ଦୁର୍ଗା, ଗଣେଶ, ସୂର୍ଯ୍ୟ, ଆଦି ଦେବତାଙ୍କୁ ଆବାହନ ହୁଏ । ନୈବେଦ୍ୟ ନାରାୟଣଙ୍କୁ ସମର୍ପଣ ହୁଏ, କିନ୍ତୁ ସତ୍ୟପୀର

ମହାଜନ ସାହୁ—ଥାଳରେ ଯେଉଁ ଚଉଷ ପଡେ, ସେ ହେଉଛି ଅସଲ । ତା ନ ହେଲେ ଲୋକେ ଠିଆଥାଳୀ କରନ୍ତେ କିଆଁ ? ଭୋଗରେ ଖର୍ଚ୍ଚ ହେବ ଆଠ ଅଣା; ଏଣେ ପାଳିବାଲା ନେବେ ଗଣ୍ଡେ ଟଙ୍କା । ଲୋକେ କଣ ବେକୁବ୍, ମିଛରେ ମିଛରେ ଏତେ ଟଙ୍କା ଖରଚ କରନ୍ତେ? ତୁମେ ବୁଝି ନାହିଁ । ସତ୍ୟପୀରଙ୍କ ପାଳି ଅସଲ ।

ମନ୍ତ୍ରୀରାମ୍ କହିଲା—ଆରେ, ପାଲି କି ଅସଲ ? ପୋଥି ପୂଜାରେ ଭଜନ ଅସଲ, ଠିଆ ପାଲାରେ ଦାଏକା ଅସଲ । ଭଲ ଚଉପଦୀ, ଦାଏକା ନ ହେଲେ ସେ କି ଠିଆ ପାଲା? ମେଷଯୁଦ୍ଧ ହେବ, ବ୍ୟାଘ୍ର ଗଡ ହେବ, ଯମକ ହେବ, ତେବେ ସିନା ଯାଇଁ ପାଲା! ପାଳି ଚଉଷ ପଡ଼ିଥିବ, ମଝିରେ ମଝିରେ ଗୋଟାଏ ଗୋଟାଏ ରସରସିଆ ଚଉପଦୀ, ଦାଏକା ପଡୁଥିବ, ନଅଁର ଡାକ ମଜାମଜା ହେଉଥିବ, ତେବେ ସିନା ପାଲାର ମଜା । ଯାଉଁଳ ବାଣୀ ପାଳା ନ ହେଲେ ସେ କି ପାଲା ? ଆମ ଚକଡ଼ାରେ ଥିଲା ସେ ଭଣ୍ଡାରି ଟୋକା; ତା ସମାନ କେହି ପାଲା କରି ପାରିବେ ନାହିଁ । ତାଙ୍କୁ ମା ସାରଳା ସାହା ଥିଲେ । ଫିରଙ୍ଗି ସୁବା ତା ପାଲା ଦେଖି ତାଙ୍କୁ 'ବାଘ ବଳଅର ସିଂହ' ନାଁ ଦେଇଥିଲା । ସମ୍ଭାର ପଢ଼ା ବି ତାଙ୍କୁ ଜଣାଥିଲା । ସବୁଠେଇଁ ପାଲାରେ ସେ ଜିତେ । ତାଙ୍କୁ ଗୁଣି ଗାରୁଡ଼ି କାଟୁ ନ ଥିଲା । ତା ନାଁ ଗଜେଟ୍‌ରେ ସୁଦ୍ଧା ଛପା ହୋଇଥିଲା ।

ମନ୍ତ୍ରୀରାମ୍ ଏହା କହି 'ଧନ୍ୟ ଲାବଣ୍ୟ ସରୋବରରେ କି ସୁନ୍ଦର' ଗୀତଟି ସ୍ୱର ମାନ ମିଳାଇ ଗାଇବାକୁ ଆରମ୍ଭ କଲା ଓ ଜମାଦାର ବାବୁଙ୍କ ଉପୁରେ କେତେ କଷ୍ଟରେ ନିବୃତ୍ତ ହେଲା ।

ଜମାଦାର କହିଲେ—'ଅଚ୍ଛା ପଣ୍ଡିତେ, ସତ୍ୟପୀର ତ ପଠାଣଙ୍କ ଠାକୁର, ସେ ଆମର ସତ୍ୟନାରାୟଣ କିପରି ହେଲେ ?

ପଣ୍ଡିତ ମହାଶୟ—ସମ୍ୟଗାଲୋଚନା କରି ଆମ୍ଭେ ସ୍ଥିରୀକୃତ କରିଅଛୁଁ ଯେ ସତ୍ୟପୀର ଏବଂ ସତ୍ୟନାରାୟଣ ଏକ ଦେବ ।

ଜମାଦାର—ଯେବେ ଏକ ଦେବତା, ତେବେ 'ନାରାୟଣଙ୍କୁ ନୈବେଦ୍ୟ' କଥା ଲୋକେ ନ କହି 'ସତ୍ୟପୀର ଶିର୍ଣ୍ଣି' ବୋଲି କାହିଁକି କହୁଛନ୍ତି ?

ମର୍ଦ୍ଦରାଜ—ଜମାଦାର ବାବୁ, ପଣ୍ଡିତ ମହାଶୟ ଯାହା କହିଲେ ତାହା ସତ୍ୟ, ଏଥିରେ ଆମ୍ଭମାନଙ୍କ ଉପାସ୍ୟ ଦେବତା ଏକ । କିନ୍ତୁ ଇତର ଲୋକମାନେ ଭ୍ରାନ୍ତ ଭାବରେ ବୁଝି 'ସତ୍ୟପୀର ପାଳି' କରନ୍ତି ଓ ମନେ କରନ୍ତି ଯେ ସତ୍ୟପୀର ଓ ନାରାୟଣ ଭିନ୍ନ । ଏଥିରେ ମଧ୍ୟ କେତେକ ଐତିହାସିକ ରହସ୍ୟ ଅଛି । ସତ୍ୟପୀର ପୂଜା ପ୍ରଥା ମୁସଲମାନ ରାଜତ୍ୱର ଚିହ୍ନସ୍ୱରୂପ ହିନ୍ଦୁମାନଙ୍କ ମଧ୍ୟରେ ରହିଅଛି । ମୁସଲମାନ ରାଜତ୍ୱ ସମୟରେ ହିନ୍ଦୁମାନେ ଧର୍ମ ବିଷୟରେ ନିରାପଦ ନ ଥିଲେ । ମୁସଲମାନ ରାଜାମାନଙ୍କୁ ତୁଷ୍ଟ କରିବା ନିମିତ୍ତ ହିନ୍ଦୁମାନେ ସେମାନଙ୍କର ଭଗବାନଙ୍କୁ ସତ୍ୟପୀର ବେଶରେ ଠିଆ କରାଇଲେ । କାରଣ ଉଚ୍ଚ ଭାବାପନ୍ନ ହିନ୍ଦୁମାନେ ବୁଝୁଥିଲେ ଓ ବୁଝୁଅଛନ୍ତି ଯେ ହିନ୍ଦୁଙ୍କର ଭଗବାନ୍ ଓ ମୁସଲମାନଙ୍କର ଅଲ୍ଲା ମଧ୍ୟରେ ପ୍ରଭେଦ ନାହିଁ ଓ 'ଶିରଣି'ଠାରୁ 'ଅମୃତ ରସାବଳୀ' ପର୍ଯ୍ୟନ୍ତ ଯାବତୀୟ ଦ୍ରବ୍ୟ ଭଗବାନଙ୍କୁ ସମର୍ପଣ କରାଯାଇ ପାରେ । ସତ୍ୟପୀର ବୋଲି ଡାକିଲେ ଯେ ଶୁଣିବେ, ସତ୍ୟନାରାୟଣ ବୋଲି ଡାକିଲେ ସେ ଶୁଣିବେ । କିନ୍ତୁ ସତ୍ୟପୀର ବୋଲି ଡାକି ଯେବେ ରାଜାଙ୍କ ଅତ୍ୟାଚାରରୁ ରକ୍ଷା ମିଳିଲା, ତେବେ ହାନି କଣ ? କିନ୍ତୁ ଦେଖନ୍ତୁ ଦିଅଁ ଗଢ଼ୁ ଗଢ଼ୁ କିପରି ମାଙ୍କଡ ହେଲା । ଇତର ଲୋକଙ୍କ ହାତରେ ସତ୍ୟପୀର ଓ ନାରାୟଣ ଦୁଇ ଭିନ୍ନ ମୂର୍ତ୍ତି ଗଠିତ ହେଲେ । 'ଭ୍ରମର ବର ପାଳି' 'ମର୍ଦ୍ଦରାଜ ପାଳି', 'ବିଦ୍ୟାସୁନ୍ଦର ପାଳି', ଇତ୍ୟାଦି ଇତର ଲୋକଙ୍କ ସୃଷ୍ଟି । କ୍ରମଶଃ ପାଳି ସଙ୍ଗେ ଦାଏକା, ଚଉପଦୀ ଇତ୍ୟାଦି ବଦ୍‌ରସିକତା ଯୁକ୍ତ ହେଲା । ବର୍ତ୍ତମାନ ସମୟକୁ ବାଘ ପାଳି କିମ୍ବା 'ଲଢ଼ାଇ ପାଳି' ଏକ କିମ୍ଭୂତ ଅପରୂପ ବେଶ ଧାରଣ କରିଅଛି । ଆଉ ମଧ୍ୟ ଆମ୍ଭମାନେ

ଏ ପାଲା ପଦ୍ଧତିଟି ବଙ୍ଗ ଦେଶରୁ ଆସିଅଛି । 'ପାଲା' ଶବ୍ଦଟି ବଙ୍ଗୀୟ ଓ ପାଲାର ଭାଷା ବଙ୍ଗଳା । ମୁସଲମାନ୍‌ମାନଙ୍କ ପ୍ରଭାବରୁ ସତ୍ୟପୀର ପାଲା ପ୍ରଥମେ ବଙ୍ଗ ଦେଶରେ ସୃଷ୍ଟ ହୋଇ କ୍ରମେ ଓଡ଼ିଶାକୁ ଆସିଅଛି ଓ ବଙ୍ଗଭାଷାନଭିଜ୍ଞ ଓଡ଼ିଆ ପାଲାବାଲାଙ୍କ ମୁହଁରେ ବଙ୍ଗଳା ଭାଷାର ସ୍ଥାନ ଓ ତହିଁରେ ସଲଗ୍ନ (ରୁଦ୍ରାକ୍ଷ ସଙ୍ଗରେ ପୁଣି କଣ୍ଠି ଗୁନ୍ଥିଲା ପରି) ଓଡ଼ିଆ ଭାଷାର ଦାଏକା, ଚଉପଦୀ, ଯମକ ଓ ମେଧଯୁକ୍ତ ଇତ୍ୟାଦି ସ୍ଥାନରେ ଅଭୂତନୀୟ, ଅଚିନ୍ତନୀୟ ଓ ଅକଥନୀୟ । ଧନ୍ୟ ରେ ଆମ ଦେଶ ! ଆମ ଦେଶ ଛଡ଼ା ଏପରି ଘାଣ୍ଟ ଘୋଣ୍ଟ ଅନ୍ୟ କେଉଁଠାରେ ଏତେ ଆଦୃତ ହେବ ନାହିଁ । କେବଳ ଯେ ପାଲାବାଲାମାନେ ବଙ୍ଗଳା ଗୀତ ବୋଲିବେ ତାହା ନୁହେ, ତହିଁରେ ପୁଣି ମା ସାରଳା କଣ୍ଠେ ବସି ଓଡ଼ିଆ ପାଲାବାଲାମାନଙ୍କୁ ବଙ୍ଗଳା ପଦ ଶିଖାଇ ଦେଉ ଥିବେ । (ମା ସାରଳା ଓଡ଼ିଆଣୀ, କିନ୍ତୁ ତାଙ୍କ ଭଗିନୀ କଲିକତାର କାଳୀଙ୍କ ସଙ୍ଗରେ ଡାକରେ ଚିଠି ପତ୍ର ଚଳିବାରୁ ଅଧା ବଙ୍ଗଳାରେ କଥାବାର୍ତ୍ତା କରି ପାରନ୍ତି ଓ ଭାଷା ଲେଖନ୍ତି)

ମସ୍ତରାମ୍ କହିଲା—ଠିକ୍ ଯେମିତି ଅଧ ଘଡ଼ିରେ ବର୍ଷା ହେଲେ ଧାନ ବିଲରେ ବେଙ୍ଗ ବେଙ୍ଗୁଲି ବୋବାନ୍ତି, ସିମିତି ଶୁଭେ । ଫେର୍ ସେଥିରେ ହିନ୍ଦୀ ଗୀତ ମିଶୁଥାଏ । ପଶ୍ଚିମରେ (ତିବଣୀ) ଚାଉଳ ଭଜା, ବୁଟ ଭଜା, ଚଣା ଭଜା, ଏକାଠେଇଁ ମିଶି ବଜାରରେ ବିକ୍ରି ହୁଏ । ଆମ ପାଲାବାଲାଙ୍କ ଗୀତ ମତେ ସିମିତି ଲାଗେ—ଗୋଟିଏ ବୁଟ୍, ଗୋଟିଏ ମୁଟ୍, ଗୋଟିଏ ଟାଣ, ଗୋଟିଏ ଢିଅଁଳି ।

"ଶୁନ ଶୁନ ସବ୍ବ ଜନ କରି ନିବେଦନ
ବାବା କଲ ନିବେଦନ ।

ସତ୍ୟପୀର ବାବାଙ୍କୁ ମୁଁ କରେଛେ ବନ୍ଦନ"

ମସ୍ତରାମ୍ ହୋଇ କରି ପାଲା ଆରମ୍ଭ କରିବାକୁ ବସିଲା । ଜମାଦାର ବାବୁ ଧମକ ଦେବାରୁ ଚୁପ୍ ହେଲା ।

ମୁକ୍ତ୍ୟାରଙ୍କର କେତେବେଳେ ସଚେତନ, କେତେବେଳେ ଅଚେତନ ଅବସ୍ଥା । (ବୋଧୋଦୟ, ବୋଧାଙ୍କୁର ଇତ୍ୟାଦିରେ ବସ୍ତୁ ତିନି ଭାଗରେ ବିଭକ୍ତ । କଥାଟା କାଟି 'ବସ୍ତୁ ନେ ଭାଗରେ ବିଭକ୍ତ' ଲେଖିବାକୁ ହେବ ।—

୧ ସଚେତନ—ଯଥା, ମସ୍ତରାମ୍

୨ ଅଚେତନ—ଯଥା, ଭାଗବତଟୁଙ୍ଗୀ

୩ ସଚେତନାଚେତନ—ଯଥା, ଭନ୍ନା ଦେଈଙ୍କ କ୍ରୋଡ଼ରେ ଦୋଳାୟମାନ ମୁକ୍ତ୍ୟାର ବାବୁ ।)

ମୁକ୍ତ୍ୟାର ବାବୁ କହିଲେ—ଆମ ହିନ୍ଦୁଙ୍କର କଣ ମୁସଲମାନ ଠାକୁରରେ ବିଶ୍ୱାସ ନାହିଁ ? କାଇପଦାର ପୀରଙ୍କ ମୁଜାହାତ କରିବାକୁ ହଜାରୁ ହଜାର ଲୋକ ଯାଉଛନ୍ତି । କଦମ୍‌ରସୁଲଙ୍କଠାରେ କେତେ ଲୋକ ଭୋଗ ମାନୁଛନ୍ତି ଓ ରୁଟ ଲଗାଉଛନ୍ତି । ଯେବେ ମୁସଲମାନ ଠାକୁରଙ୍କର କିଛି କରାମତ ନ ଥାନ୍ତା, ତେବେ ଲୋକେ କଣ ଫୋକଟ୍ ଏତେ କଥା କରନ୍ତେ ? ମୋର ନିଜ କଥାରୁ ମୁଁ ବୁଝିଛି । ମୋର ସନ୍ନିପାତ ହୋଇ ଥିଲା, କେତେ ଠାକୁରଙ୍କୁ କେତେ ମାନସିକ କଲି, କିଛି ହେଲା ନାହିଁ; ଏଥର କାଇପଦାରେ ଦରଗା 'ଫାତିଆ' କରେଇ ଦେଲି, ଚାରି ମାସରେ ସବୁ ଆରାମ ପାଇଲି । ଆଜି କାଲି ମତେ ଖୁବ୍ ଫରୁସତ ଅଛି । ସେ ବେମାରି ମୋ ଜାନ୍ ନେଇ ସାରନ୍ତାଣି ।

ପଣ୍ଡିତ ମହାଶୟ କହିଲେ—'ଧନ୍ୟ ରେ କାଳ । ଯବନଦେବତାଗ୍ରଥନପରତାର ପ୍ରାବଲ୍ୟ ହେଲା । କାଲଏବ କରୋତି ବଲାବଲଂ ।। ଧର୍ମତତ୍ତ୍ୱନଗୂଢ଼ତାଭେଦରେ ଅସମର୍ଥ ହୋଇ ଅଧୁନାତନ ମାନବ ଉଲଟାମୀ ହେଲା । ଯବନଙ୍କ ଦେବତାଙ୍କୁ ସିନା ଆମ ଦେବତାଙ୍କ ସମାନ ବୋଲି ମୁହଁରେ ଉଚ୍ଚାରଣ କରିବା; କିନ୍ତୁ କାର୍ଯ୍ୟତଃ ଯବନମନ୍ଦିରସ୍ଥ ହୋଇ ଫାତିଆ ସମର୍ପଣରେ ମନଯୋଗୀ ହେବା !!! (ପଣ୍ଡିତ ମହାଶୟ ମୌଖିକ ଖୁବ୍ କହି ପାରନ୍ତି, କିନ୍ତୁ ଭିତରେ ସନ୍ଦ

କଥାରେ ବାଡ଼ ବାଇଗଣ, ପୋଥି ବାଇଗଣର ପ୍ରଭେଦ ! ମୁହଁରେ ସବୁ କଥା ମାନିବାକୁ ସହଜ; କିନ୍ତୁ କାର୍ଯ୍ୟରେ ପରିଣତ କରିବାକୁ ହେଲେ ପଣ୍ଡିତ ମହାଶୟ୍ୟ ପଛଘୁଞ୍ଚା ଦିଅନ୍ତି) ଯବନଙ୍କ ଦେବତା କିପରି ଆମ୍ଭର ଆରାଧ୍ୟ ଦେବତା ହେବେ ?

ମର୍ଦ୍ଦରାଜେ କହିଲେ—ପଣ୍ଡିତ ମହାଶୟ, ଟିକିଏ ଚକ୍ଷୁ ଖୋଲନ୍ତୁ । ଯେଉଁ ଘର ବେଦର ଦୋହାଇ ଦେଇ ସବୁ କଥା କରୁଅଛନ୍ତି, ଥରେ ସେହି ବେଦଙ୍କ ପ୍ରମାଣ ଅଡ଼କୁ ଗଡ଼ାନ୍ତୁ । ଅଥର୍ବ ବେଦରେ ଗୋଟିଏ ସୂକ୍ତରେ ଅଲ୍ଲାଙ୍କ ବିଷୟ କିଣ ଲେଖା ଅଛି, ଶୁଣନ୍ତୁ । ଅଥର୍ବ ବେଦ ସର୍ବଶେଷରେ ଲିଖିତ । ଅଥର୍ବବେଦ ଲେଖନ ସମୟକୁ ଭାରତକୁ ମୁସଲମାନମାନେ ଆସି ଥିବାର (ଅଗ୍ରତଃ ମହମ୍ମଦଙ୍କ ଦ୍ୱାରା ଧର୍ମ ପ୍ରଚାରିତ ହେବାର) ଅନୁମିତ ହୁଏ । କିନ୍ତୁ ଯେତେବେଳେ ଅଲ୍ଲାଙ୍କ କଥା ବେଦରେ ଲିଖିତ ଅଛି, ଆପଣ ଏପରି କିଂକର୍ତ୍ତବ୍ୟବିମୂଢ଼ଭାବାନ୍ବିତ—ଭୟସନ୍ତ୍ରସ୍ତଚିତ୍ତ (ମର୍ଦ୍ଦରାଜେ ପଣ୍ଡିତଙ୍କ କଥନ ପଦ୍ଧତିକୁ ଅନୁକରଣ କରି ଏ ଦେଡ଼ ମାଇଲିଆ ଶବ୍ଦଟି ବ୍ୟବହାର କଲେ ପରା ?) ହେଉ ଅଛନ୍ତି କାହିଁ ? ଶୁଣନ୍ତୁ—

"ଓଁ ଅସ୍ମଲ୍ଲାଂ ଇଲ୍ଲେ ମିତ୍ରାବରୁଣୋ ଦିବ୍ୟାନି
ଧତ୍ତେ ଇଲ୍ଲଲ୍ଲେ ବରୁଣଂ ରାଜା ପୁନର୍ଦ୍ଦଦୁଃ

ମୋର ଆଉ ବେଶି ମନେ ନାହିଁ । ବଙ୍ଗଳା ଭାଷାର ବିଶ୍ୱକୋଷର 'ଅଲ୍ଲା' ଶବ୍ଦ ତଳେ ଏହି ସୂକ୍ତଟି ଦେଖିବେ ।

(ମଫସଲରେ ବିଶ୍ୱକୋଷ ମିଳିବା କଥା ଦୂରେ ଥାଉ, ବିଶ୍ୱକୋଷର ନାମ ଶୁଣିବା କଥା ଅସମ୍ଭବ)

ମୁଁ କହିଲି—ମର୍ଦ୍ଦରାଜ ବାବୁ, ଏଠାରେ ଆମ୍ଭେମାନେ ବିଶ୍ୱକୋଷ କେଉଁଠାରୁ ପାଇବୁଁ ? ସହରରେ ୨।୪ ଜଣ ବଡ଼ଲୋକଙ୍କ ପାଖରେ ଅବା ମିଳି ପାରେ । କିନ୍ତୁ ହାୟ ! ମୋର କାହା ସଙ୍ଗେ ବିଶେଷ ଘନିଷ୍ଠତା ନାହିଁ ଓ କେତେକ ଲୋକ ଅନୁଭବରୁ ବୁଝି ପାରି ଅଛନ୍ତି ଯେ ମତେ ବହି ଉଧାର ଦେବା ଯୁକ୍ତିଯୁକ୍ତ ନୁହେଁ । ପରର ବହି ଦେଖିଲେ ମୋ ପାଟିରୁ ପାଣି ବହେ । ମୁଁ ବହି ନ ପଢ଼େ ପଛକେ ବହି ପରଠାରୁ ଆଣି ଆପଣା ଘରେ ସଜାଇ ରଖିବାକୁ ମତେ ଭଲ ଲାଗେ । ଅତ୍ର ମଧ୍ୟ ପରର ପୁସ୍ତକକୁ ଦଖଲ ସ୍ୱତ୍ୱ ଅନୁସାରେ ନିଜସ୍ୱ କରିବାର ସୁବିଧା ନେଉ । ଯେଉଁ ଯେଉଁ ପୁସ୍ତକାଧିକାରୀମାନେ ପୂର୍ବ ଜନ୍ମ ତପସ୍ୟା ବଳରେ ମୋଠାରୁ ବହି ଫେରସ୍ତ ପାଇଅଛନ୍ତି, ଉକ୍ତ ବହିମାନଙ୍କର ପ୍ରତ୍ୟେକ ପୃଷ୍ଠାରେ ମୁ କମ୍ପା ଗୃହର ପିଲା-ମାନେ ପୁସ୍ତକ ବ୍ୟବହାର କରିଥିବାର ସ୍ପଷ୍ଟ ଚିହ୍ନମାନ ଦେଖିଥିବେ । ଚକ୍ଷୁଲଜ୍ଜା ଏଡ଼ ମତେ କେହି ମୁହଁରେ ମନା କରି ପାରନ୍ତି ନାହିଁ । କିନ୍ତୁ ମୁଁ ମାଗିଲେ ବହି ନାହିଁ ବା କିଏ ନେଇଛି ଏପରି ଛଳନାରେ ମତେ ଭଣ୍ଡନ୍ତି । ଅତଏବ 'ଅଲ୍ଲାଙ୍କ ସୂକ୍ତ' ଟି ଦେଖିବାର ଆଶା ଆମ୍ଭମାନଙ୍କ ପକ୍ଷରେ ଦୁରାଶା ।

ମର୍ଦ୍ଦରାଜ—ବିଶ୍ୱକୋଷରୁ ସେ ସୂକ୍ତଟି ମୁଁ ଲେଖି ଆଣିଥିଲି । ମୋ bundle (କାଗଜ ପତ୍ର) ଖୋଜିଲେ ସେ କାଗଜ ଖଣ୍ଡ ମିଳିବ । ମୁଁ ଆପଣଙ୍କୁ ପରେ ଦେଖାଇବି ।

(ମର୍ଦ୍ଦରାଜେ ତହିଁ ଆର ଦିନ ସେ କାଗଜ ଖଣ୍ଡିକ ମତେ ଦେଇ ଥିଲେ ଓ ତହିଁରେ ତଳ-ଲିଖିତ ଶ୍ଳୋକ ଗୁଡ଼ିକ ଲେଖା ଥିବାର ଦେଖିଲି:—

'ଅଲ୍ଲା'—

ଓଁ ଅସ୍ମଲ୍ଲାଂ ଇଲ୍ଲେ ମିତ୍ରାବରୁଣୋଦିବ୍ୟାନି ଧତ୍ତେ ।
ଇଲ୍ଲଲ୍ଲେ ବରୁଣଂ ରାଜା ପୁନର୍ଦ୍ଦଦୁଃ ।
ହୟାମି ମିତ୍ରୋ ଇଲ୍ଲାଂ ଇଲ୍ଲଲ୍ଲେତି
ଇଲ୍ଲାଲାଂ ବରୁଣୋ ମିତ୍ରୋ ତେଜସ୍କାମଃ
ହୋତାରମିନ୍ଦ୍ରୋ ହୋତାରମିନ୍ଦ୍ରୋ ମହାସୁରିନ୍ଦ୍ରାଃ ।
ଅଲ୍ଲୋଜ୍ୟେଷ୍ଠଂ ଶ୍ରେଷ୍ଠଂ ପରମଂ ପୂର୍ଣ୍ଣଂ ବ୍ରହ୍ମଣମଲ୍ଲାଂ
ଅଲ୍ଲୋ ରସୂଲମହମଦରକଂ ବରସ୍ୟ ଅଲ୍ଲୋ

ଅଲ୍ଲାଂ ଆଦଲ୍ଲାବୂକମେକକଂ ।
ଅଲ୍ଲାଂ ବୂକଂ ନିଖାତକଂ ।
ଅଲ୍ଲୋ ଯଜ୍ଞେନ ହୁତହୁତ୍ୱା, ଅଲ୍ଲା
ସୂର୍ଯ୍ୟଚନ୍ଦ୍ର ସର୍ବନକ୍ଷତ୍ରାଃ, ଅଲ୍ଲୋ ଋଷୀଣାଂ
ସର୍ବଦିବ୍ୟା ଇନ୍ଦ୍ରାୟ ପୂର୍ବଂ ମାୟା ପରମନ୍ତ
ଅନ୍ତରିକ୍ଷାଃ, ଅଲ୍ଲୋ ପୃଥିବ୍ୟା ଅନ୍ତରିକ୍ଷଂ
ବିଶ୍ୱରୂପଂ ଦିବ୍ୟାନି ଧତ୍ତେ, ଇଲ୍ଲଲେ
ବରୁଣୋ ରାଜା ପୁନର୍ଦଦୁଃ ।
ଇଲ୍ଲାକବର ଇଲ୍ଲାକବର ଇଲ୍ଲଲେତ
ଇଲ୍ଲାଲ୍ଲାଃ ଇଲ୍ଲା ଇଲ୍ଲାଲ୍ଲା ଅନାଦ —
ସ୍ୱରୂପା ଅଥର୍ବଣୀଶାଖାଂ ହ୍ରୁଁ ହ୍ରୀଁ
ଜନାନ୍ ପଶୂନ୍ ସିଦ୍ଧାନ୍ ଜଳଚରାନ୍
ଅଦୃଷ୍ଟଂ କୁରୁ କୁରୁ ଫଟ୍ ।
ଅସୁରସଂହାରଣୀଂ ହୁଁ ଅଲ୍ଲୋରସୂଲ
ମହମ୍ମଦରକଂ ବରସ୍ୟ ଅଲ୍ଲୋ
ଅଲ୍ଲାଂ ଇଲ୍ଲଲ୍ଲେତି ଇଲ୍ଲଲ୍ଲାଃ )

ପଣ୍ଡିତ ମହାଶୟ ସୂକ୍ତଟି ପ୍ରଥମ ଦୂର ଯାଡ଼ିଶୁଣି ଓ ବିଶ୍ୱକୋଷର ନାମ ଶୁଣି:—

"ଆଧୁନିକମାନଙ୍କର ନବନବୋନ୍ମେଷଶାଳିନୀ ପ୍ରତିଭା (ପଣ୍ଡିତମହାଶୟ ଅମରକୋଷରୁ ପାଣି ପର ମୁଖସ୍ଥ କରିଅଛନ୍ତି) ବହୁପ୍ରୋତ୍ସାହିକା; ଅମ୍ଭର ଭୂମିଷ୍ଠାବଧି ଏବଂଭୂତ ସୂକ୍ତର ନାମଧାମୋଲ୍ଲେଖ ଅମ୍ଭର ଶ୍ରୁତିଗୋଚରୀଭୂତ ହୋଇ ନ ଥିଲା । କିଏ ଜଣେ ମିଥ୍ୟାରେ ଏତାଦୃଶ ସୂକ୍ତୋଲ୍ଲେଖ କରିଅଛନ୍ତି । ଏହା ବେଦୋକ୍ତ ସୂକ୍ତ ହୋଇଥିଲେ ଆଜ ପର୍ଯ୍ୟନ୍ତ ଅସ୍ମଦ୍ ଜ୍ଞାତସାରକୁ ଅବଶ୍ୟ ଆସିବାକୁ ଯୋଗ୍ୟ ହୋଇଥାନ୍ତା । କଳିକାଳ ପିଲାଙ୍କ ପ୍ରତି କିଛି ଅସମ୍ଭବ ନୁହେ । ମନୋଭାବକୁ କବି ଲେଖନୀ ଧାରଣ କରିବାରେ ଅକୁଣ୍ଠିତ ।"

ପଣ୍ଡିତ ମହାଶୟଙ୍କ ମନରୁ ଏ ଅଯଥା ଧାରଣା ଦୂର କରିବାର ପ୍ରୟାସ ବୃଥା ମଣି ମୁଁ ଓ ମର୍ଦ୍ଦରାଜେ କିଛି ଉତ୍ତର ଦେଲୁଁ ନାହିଁ ।

ମନ୍ତ୍ରରାମ୍ କହିଲେ—ଅରେ ଅଲ୍ଲାଙ୍କୁ ଧର, ନାରାୟଣଙ୍କୁ ଧର, କି ହର ପାର୍ବତୀଙ୍କୁ ଧର, କି ଭାଗବତ ଗୋସାଇଁଙ୍କୁ ଧର, ଖାଇବାକୁ ଭଲ ମାଲ ମିଳିଲେ ହେଲା । ଆଗେ ସିନା ଖାଇବା ଜିନିଷ ଭୋଗ ହେଉଥିଲା । ଏଣିକି ଜଗନ୍ନାଥ-ମେଳାରେ ଗଞ୍ଜେଇ ଗୁଲି ଭୋଗ ହେଲାଣି । ଜୟ ଜଗନ୍ନାଥଙ୍କୁ ଜୟ ବୋଲମ ଗଞ୍ଜେଇ ! ଯେଉଁ ଦିନାକେତେ ଗଲେ ଅଫିମ ମଧ୍ୟ ଭୋଗ ହେବ । ଗୁଲି (ମଦତ୍ର) ମଧ୍ୟ ଭୋଗ ଲାଗିବାକୁ ବେଶି ଦିନ ନାହିଁ । ଖାଲି ବେଳେ ଦିନା ଗଞ୍ଜେଇ ଟାଣିଲେ ଦୋଷ, ଠାକୁରଙ୍କ ନାମ ଧରି ଠାକୁରଙ୍କ ପ୍ରସାଦ ଗଞ୍ଜେଇ ଯେତେ ଟାଣୁ ଥାଅ । କେହି କିଛି କହିବାକୁ ନାହିଁ । କହିଲେ ଠାକୁର ରାଗିଯିବେ । ପ୍ରସାଦକୁ ନିନ୍ଦା କଲେ ବଡ଼ ଦୋଷ ।

ଆମ୍ଭେମାନେ ଦେଖିଲୁଁ ଯେ ଆଜି ମନ୍ତ୍ରରାମର Bioscope (ଜୀବନ୍ତଚିତ୍ରପ୍ରଦର୍ଶକ ଯନ୍ତ୍ର) ର ଅବସ୍ଥା । ଯେଉଁ କଥାଟି ଧରୁଛି ସେ କଥାର ଉତ୍ତ-ମଣାରୁ ଏକ ଜୀବନ୍ତ ଚିତ୍ର ଆଙ୍କି ଦେଉଅଛି । ସେଥିପାଇଁ କବି କହିଅଛନ୍ତି — 'There is pleasure in being mad, which none but mad men know.' ବାତୁଳ ହେବାର ସୁଖ ବାତୁଳମାନେ ଏକା ଜାଣନ୍ତି । ମନେ ମନେ ବିଚାରିଲି, ମନ୍ତ୍ରରାମ୍, ତୁ ଏକା ସୁଖୀ; କାହାରି ପ୍ରତିକୂଳ ମତ ପ୍ରତି ତୋର ଭ୍ରୂକ୍ଷେପ ନାହିଁ । ତୋର ସ୍ୱାଧୀନତାର ଦଶମାଂଶ ମୋର ଥିଲେ ମୁଁ କେତେ ସୁଖୀ ହୋଇ ନ ଥାନ୍ତି । ଅମୁକଙ୍କୁ କାଲେ ମୋ କଥା ଭଲ ନ ଲାଗିବ, କାଲେ ଅମୁକ ବିରକ୍ତ ହେବେ, ଅମୁକଙ୍କର ନିନ୍ଦାକୁ ସହ୍ୟ କରିବାକୁ ହେବ, ଅମୁକ ଖଣ୍ଡେ ସୁପାରିସ୍ ଦେବେ ନାହିଁ, ଏପରି କେତେ ଭୟ କରି ଆମ୍ଭମାନଙ୍କର ମୁହଁ ବନ୍ଦ; କିନ୍ତୁ ତୁ ଯାହା ମନରେ ଭାବୁ, ତାହା ପ୍ରକାଶ କରୁ । ପ୍ରକୃତ କଥା କହିଃ—"ହାତ୍ କଟେଗା, ଗୁରୁ ଚଢ଼େଗା ତ ଚଢ଼େଗା ।" କବି କହିଛନ୍ତି "ହିତଂ ମନୋହାରି ଚ ଦୁର୍ଲଭଂ ବଚଃ ।"

ଏହି ସମୟରେ ଜମିଦାରଙ୍କ ଘରୁ ପୁରୋହିତଙ୍କୁ ଡାକରା ଆସିଲା—ପୁରୋହିତେ ପୋଥି ପୂଜା

ଆରମ୍ଭ କରିବାକୁ ଯୋଗ୍ୟ, କାଷ୍ଠ ଇତ୍ୟାଦି ନେଇ ବାହାରିଲେ ଓ ଜମାଦାର ବାବୁ, ପଣ୍ଡିତମହାଶୟ, ମହାଜନ ସାହୁ, ଅଖଡ଼ା ଗୁରୁ, ମନ୍ତ୍ରରାମ୍ ଓ ଉପସ୍ଥିତ ଦୁଇ ଜୋଡ଼ି ଯୁବକ ପୋଥି ପୂଜା ଶୁଣିବାକୁ ଗଲେ ।

ଟୁଙ୍ଗୀରେ ମୁଁ, ମର୍ଦ୍ଦରାଜ, ମୁକ୍ତ୍ୟାର ବାବୁ ଓ ମାଷ୍ଟର ମହାଶୟ ବାକି ରହିଲୁ ।

ମାଷ୍ଟରମହାଶୟ କହିଲେ—ଓଃ ! ଗୋଟାଏ load (ବୋଝ)ରୁ ଖଲାସ୍ ପାଇଲି । ଜମାଦାର ବାବୁ ଏଠାରୁ ନ ଯିବା ପର୍ଯ୍ୟନ୍ତ ମୋ body (ଶରୀର)ରେ life (ଜୀବ) ନ ଥିଲା । (ଜମାଦାର ବାବୁ ଗ୍ରାମର ଅପର ପ୍ରାଇମେରୀ ସ୍କୁଲର ମ୍ୟାନେଜିଂ କମିଟିର ମେମ୍ବର ହୋଇଅଛନ୍ତି । ସେଥି ନିମନ୍ତେ ଜମାଦାର ବାବୁଙ୍କ ଦୁଇ ପୁଅଙ୍କୁ ବିନା-ଦରମାରେ ମାଷ୍ଟର ମହାଶୟ ଦୁଇ ଓଳି ଘରେ ପଢ଼ାଇବେ । ତାହା ହୋଇ ସୁଦ୍ଧା ଜମାଦାର ବାବୁଙ୍କ ମନ ଜଗିବା ଦୁଃସାଧ୍ୟ; ଜମାଦାରଙ୍କ ପିଲା ଏ ବର୍ଷ ନିମ୍ନ ପ୍ରାଇମେରୀ ବୃତ୍ତି ନ ନେଲେ ମାଷ୍ଟର ମହାଶୟଙ୍କ ଦରମା କଟା ଯିବ ବୋଲି ଜମାଦାର ବାବୁ କହିଅଛନ୍ତି । ଜମାଦାର ବାବୁ ଟୁଙ୍ଗୀରେ ଉପସ୍ଥିତ ଥିବା ଯାକେ ମାଷ୍ଟରେ ମୂଷାଟି ପରି ବସି ଥିଲେ । ଜମାଦାରଙ୍କ ପ୍ରସ୍ଥାନ ସଙ୍ଗେ ସଙ୍ଗେ ମାଷ୍ଟର ମହାଶୟଙ୍କ ପ୍ରଭ ବାଗ୍-ଦେବୀ ପ୍ରସନ୍ନା ହେଲେ !)

ମୁଁ କହିଲି—ଆଜି ଅଖଡ଼ା ଗୁରୁଙ୍କୁ ଗୁଣି ଗାରଡ଼ି ବିଷୟରେ ପଦେ ଅଧେ ଶୁଣାଇବାର ଇଚ୍ଛା ଥିଲା; କିନ୍ତୁ ଜମାଦାର ବାବୁଙ୍କ ସଙ୍ଗେ ଗୁରୁ ଚାଲିଗଲେ ।

ମାଷ୍ଟର ମହାଶୟ—ମୁଁ ମଧ୍ୟ ତାଙ୍କୁ a bit of my heart (ମୋ ମନ କଥାରୁ ପଦେ ଅଧେ) Speak କରି (କହି)ଥାନ୍ତି ।

ମର୍ଦ୍ଦରାଜ କହିଲେ—ଗୁରୁ ବାପୁରା ଗୁଣି ଗାରଡ଼ି ବଳରେ ଏ ଗ୍ରାମରେ ଅଦ୍ଭୁତ । କେତେ ଲୋକଙ୍କ ଆଖିରେ ଧୂଳି ପକାଇ ସମ୍ମାନ ପାଉଅଛି । ଅଚ୍ଛା, ସେ କଥା ଆଉ ଦିନେ ହେବ । ଆଜି 'ଧୂମା ନିଆଁ ଉତ୍ସବ' କଥା କିଛି ଆଲୋଚନା କରିବା ।

ମୁକ୍ତ୍ୟାରେ—ଆଜି ବନ୍ଦ କର । ଟିକିଏ ଆମୋଦ କରିବା (ଆସନ=ଶୟନ) । ଆଜି ପଞ୍ଚମୀ; ଚନ୍ଦ୍ର ବୁଡ଼ିଲାଣି, ଛ ଘଡ଼ି ରାତିରୁ ବଳିଲାଣି, ଏ ଅନ୍ଧକାରରେ କିପରି ଘରେ ପହଞ୍ଚିବା । ଏଥର ତୁମର ବାଦୁଡ଼ି-ପ୍ରସଙ୍ଗ ବନ୍ଦ କର । ମୁଁ ମେଲାଣି ମାଗୁଛି । ଆଉ ଦିନେ ସେ କଥା ପକାଇବା ।

ଏହି ସମୟରେ ଗ୍ରାମର ଧୀନାମା ଆଉ 'ବହିର୍ଦ୍ଦେଶ' କାର୍ଯ୍ୟ ସାରି ଟୁଙ୍ଗୀ ଦ୍ୱାର ବାଟେ ଗୃହକୁ ଫେରୁଥିଲେ । ଆମ୍ଭମାନଙ୍କ ମଧ୍ୟରେ ତାଙ୍କର ମାନ୍ୟ ଲୋକ କେହି ନ ଥିବାର ଦେଖି ଟୁଙ୍ଗୀ ଦ୍ୱାରରେ ଆସି ପହଞ୍ଚିଲେ ଓ ମାଷ୍ଟରଙ୍କୁ ସମ୍ବୋଧନ କରି କହିଲେ:—

"ମାଷ୍ଟରେ ! ତୁମେ ସେ ମନ୍ତ୍ରା (ମନ୍ତ୍ରରାମ୍)କୁ କଣ ଶିଖାଇ ଦେଉଛ ? ସେ ଯାଇ ଆମ ଦାଣ୍ଡରେ ଠିଆ ହୋଇ ଗାଁର ବୁଢ଼ୀଙ୍କି ଦେଖାଇ ଶିଖାଇ କେତେ ଉଲୁଗୁଣା ଦେଉଛି, କେତେ ସମ୍ଭୁଛି । କହୁଛି ମାଷ୍ଟରେ ମତେ ଶିଖାଇ ଦେଇଛନ୍ତି । ଯଣ୍ଡପଣ୍ଡ କେତେ କଥା କହୁଛି, ମୁଁ ଶୁଣି ମୋ ମହିଆଣୀ ବୋହୂ ଏ ଅମାବାସ୍ୟା ଦିନୁ ମତେ ମାନିବାକୁ ନାହିଁ । ବୁଢ଼ୀ ଲୋକଏ କଳି କରୁଛି । ମୋ ପୁଅକୁ ମନ୍ତ୍ରା ଅଲେଇସ ଭେଣ୍ଡି କରିଦେଲା । ମହିଆଣୀକି ଚାରି ବରଷ ହେଲା ଘରକୁ ଆଣିଲିଣି, ଆଗେ ଘ କାନ କାଟିଲେ ବଚନ ବାହାରୁ ନ ଥିଲା । ଗଲାକାଲି ମନ୍ତ୍ରା ଆମକୁ ଗାଳି ଦେଲା ଦିନୁ ମୋ ବୋହୂ ମତେ ମାନିବାକୁ ନାହିଁ । କାଲି ଟିକିଏ ଭାତ ହାତ ଛୁଇଁ ଦେଲି ବୋଲି ଗର୍ଜନ କରି ସାତ ସାଉ କହୋଇଲା । ଯେ ଶୁଣୁଛି, ସେ ହସୁଛି, ଛି ଛି କରୁଛି । ତା କଥା ଶୁଣି ପଧ ବୃଷି ବାଳ ଛିଣ୍ଡେଇ ମରିବ ।"

ମୁକ୍ତ୍ୟାରେ ଟିକିଏ ସ୍ଫୂର୍ତ୍ତିରେ କହିଲେ, 'ମାଷ୍ଟର ବାବୁ; ତୁମେ ପରଦର କଣ ଭାଙ୍ଗୁଛ?'

ମାଷ୍ଟର ବାବୁ ହୀରାମା ଆଈ କଥା ମୁନ୍‌ସୀଆରଙ୍କ କଥା ଶୁଣୁ ନ ଶୁଣୁ ପାଇ ପିଲା ଶୋଇ ବସିଲା-ବେଳେ ଥାଳରୁ ବଗଡ଼ ମାଛଭଜା ଖଣ୍ଡିକ ଛାମି ନେଇ ପଳାଇଲେ ପିଲା ବରାବର ଅଟ୍ଟା କାଟ୍ଟା ହୋଇ ଖଣ୍ଡକାଳ ନିହିଁ ରହିଲାପରି ମୁହୂର୍ତ୍ତେ କର୍ତ୍ତବ୍ୟଜ୍ଞାନଶୂନ୍ୟ ହୋଇ ରହିଲେ ।

ସର୍ବଗଜେ—"ମୁନ୍‌ସୀଆର ବାବୁ, ଏଥିରେ ପର ଘର ଖୋଳିବା କଥା କିଛି ନାହିଁ । ଗଲ ଥର ସଭାବେଳେ ଟୁଙ୍ଗୀରେ ଶାଶୁମାନଙ୍କ ଅତ୍ୟାଚାର କଥା ପଡ଼ିଥିଲା । ସମ୍ପ୍ରତି ବୋଧ ହୁଏ ଗ୍ରାମରେ ସେହି କଥା ଗପ୍ପ ଚାଲିଛି ।

ହୀରାମା ଅଈ—କେଉଁ ଦିନ ମୁଁ ମୋ ବୋହୂକୁ ମାରୁଥିଲି ? ଅବା ଦହିଥିଲି ? (ପାଠକ ମହାଶୟ ! ସ୍ମରଣ ଥିବ, କିଛିକ୍ଷଣ ପୂର୍ବେ ହୀରା ମା ଅଈ ତାଙ୍କ ବୋହୂଠାରେ ହାତ କୁରାଇ ଦେବା କଥା ଅସତର୍କ ଭାବରେ କହି ପକାଇ ଅଛନ୍ତି) କିଏ ଦେଖିଛ ? ମିଛରେ ମତେ ମସ୍ତା ବୁଡ଼େଇ ଦେଉଛ । କାହିଁ ଲାଗି ସବୁ ବୁଢ଼ୀଙ୍କି ଦେଖେଇ ଶିଖେଇ କେତେ କଥା କହୁଛ— ତୁମେ କଣ ଆମକୁ ଏଡ଼େ 'ନାପାରିଲାର' କରି ଦେଖିଛ ! ଆମ ଆଡ଼କୁ ପିଠା କହିବାକୁ କେହି ନାହିଁ ବୋଲି ସବୁ କରୁଛ ! ଯାହା ମନକୁ ଆସିଲା କହୁଛି, ତୁଣ୍ଡରେ ବାଟୁଳ ବାଜୁ ନାହିଁ ! ବୋହୂ-ଯାକ ଜୁଳୁଫୀ ଗଛି ଦେଲେ, ଆମେ ହେଲୁଁ ବଇର ! କି ଅନାଚାର କାଳ ହେଲା । ସବୁ ଅଧେ ତଳରେ ମନରେ ଆମେ କହିବୁଁ ନାହିଁ ? ତେବେ ଆଉ ଶାଶୁ ହେଲୁଁ କାହିଁ ? 'ପାଖରେ ଶୁଏ, କାନରେ କୁହେ, ତା କଥା କ ଅନାସ୍ଥା ହୁଏ', ଆମକୁ ପଚାରୁଛି କିଏ ?

ମୁନ୍‌ସୀଆରେ କହିଲେ—ମାଷ୍ଟର ବାବୁ ! ହୁସିଆର୍—(ହୀରାମା ଅଈଙ୍କୁ ସମ୍ବୋଧନ କରି) ମାଉସି, କିଛି ଡରେଇ ନାହିଁ । ଗାଁର ଯେତେ ଶାଶୁ ଅଛ, ଥରେ ମୋ ସଙ୍ଗରେ ସହରକୁ ଗଲ, ଚାହିଁଲେ ମତେ ପାଞ୍ଚେ ପୋସ୍ତାପନ୍ନ ଦିଅ । ମୁଁ ସମସ୍ତଙ୍କୁ ଜବତ କରି ଦେବ । ଆମେ ବି ଏ କଥା ଆଗରୁ କିଛି କିଛି ଶୁଣିଛୁଁ । ପିନାଲକୋଡ଼ ୫୦୦ ଦଫା ଜଣା ନାହିଁ ପରା ? ତୁମେ ତ ପିଲାଙ୍କୁ ପଢ଼େଇବ, ତୁମର ପର କଥାରେ ମିଥ୍ୟାପବାଦ ଦେବାର ଅବଶେକ (=ଆବଶ୍ୟକ) କଣ ? ଟୁଙ୍ଗୀରେ ବସି ମଜଲିସ କଲା ବେଳକୁ ଉଆରଙ୍ଗ ନାରୀ ହେଲା ବେଳର ବନ୍ଧୁକ ଫୋଡ଼ । ହନ-କେତେ ମାମଲାର ଦେଖି ଆସିଲେ ମିଥ୍ୟାସ୍ ଥଣ୍ଡା ହୋଇଯିବ । ତୁମ କାମରେ ତୁମେ ମାତ । ପର କଥା କହିବାର ଦରକାର କଣ ?

ସର୍ବଗଜେ କହିଲେ—ମୁନ୍‌ସୀଆର ବାବୁ, ଆପଣ କହିଲେ ପର କଥା କହିବାର ଦରକାର କଣ ? କିନ୍ତୁ ମାଷ୍ଟରେ ତ ପର କଥା କହି ନାହାନ୍ତି, ଘର କଥା କହିଅଛନ୍ତି । ଯେବେ ସେ କଥାରେ କିଛି ମିଛ ଥାଏ, ତେବେ ତହିଁର ପ୍ରତିବାଦ କରନ୍ତୁ, ଧମକ ଦେଉଛନ୍ତି କାହିଁ ? ଘାଣ୍ଡି ଲୋକ କହିଲେ ସହିହେ, କିନ୍ତୁ ଯେବେ ଆପଣା ଘରରୁ କେହି କହିଲା, ତେବେ ତା ଉପରେ ରାଗ ! 'କାଣି ବଗଡ ଲୁକ ଅସର୍ପା ଚିପରିକୁ ରକା ।' କଥାରେ କହନ୍ତି, 'ପୁନାମୁଦିଅ ହାତରୁ ଟାକର ଖାଇଲେ ଗଙ୍ଗାସ୍ନାନର ଫଳ ।' ମାଷ୍ଟର ମହାଶୟ କହି ଦେଲେ ବୋଲି ଏତେ ରାଗଣ ! ମୁନ୍‌ସୀଆର ବାବୁ, ଆପଣ ବୁଝନ୍ତୁ ନାହିଁ ଯେ ଆଇନ୍ କାନୁନ୍ ମୁଣିଖା ବଣାସିବ ଆପଣଙ୍କ ଉପରେ ଛାଡ଼ି ଦେଇଛନ୍ତି । କାଲି ଥରେ ସେ ଦିନର ଟିପ୍ପଣୀ ଦେଖିବେ ଓ ଆପଣଙ୍କ ଅପବାଦ ଦଫାଟା ତା ସଙ୍ଗରେ ମିଳାଇବେ । ଆପଣ ପୋଥିରୁ ଯେଉଁ ନଜିର ବାହାର କରି କଥା କହୁଛନ୍ତି, ତାକୁ କାଟିବାର ଅନେକ ବଡ଼ିଆ ନଜିର ଅଛି । ଯେ କାନୁଅରେ ପଶିଥାଏ, ସେ ଚୋର ଧୋଇବା ଉପାୟ ଆଗରୁ କରିଥାଏ । ଅଇନ୍ ଆପଣଙ୍କର ନୁହେଁ ବା ମୋର ନୁହେଁ । ଆଇନର ଉଦ୍ଦେଶ୍ୟ ଖୁବ୍ ମହତ୍ । ଗୁପ୍ତ କ୍ରୋଧ ବା ହିଂସା ଚରିତାର୍ଥ କରିବାକୁ ବ କଣ୍ଟାବାଡ଼ରେ ଲୁଗା ପକାଇ କଳିଅ

କରିବା ଉଚିତ ? (ମାଷ୍ଟରେ ବନେ ମ୍ୟାନେଜରଙ୍କ ସାନ ପୁଅକୁ ପଢ଼ା ନ ଆସିବାରୁ ପାଖରେ ପକାଇ ଥିଲେ । ମ୍ୟାନେଜରେ ଆଜି ସୁଯୋଗ ପାଇ ସୁଦେ ଶୋଧ ନେବାକୁ ବସିଥିଲେ। କିନ୍ତୁ ମର୍ଦ୍ଦସଙ୍କେ ସବୁ ବିଗାଡ଼ି ଦେଲେ)

'All's well that ends well' ମଧୁରେଣ ସମାପୟେତ୍ ଏ ଉକ୍ତିର ଅନୁସରଣ କରି ମୁଁ ଉଭୟ ପକ୍ଷଙ୍କୁ ବୋଧ ସୋଧ କରି ଯାହାଙ୍କ ଆଡ଼ିକୁ ଦ'ପଦ, ତାଙ୍କ ଆଡ଼କୁ ଦ'ପଦ କହି କହିଁ ଆ ମୀମାଂସା (ମ୍ୟାନେଜରେ କହନ୍ତି, ନମାଂସା) କରି ଦେଲି ଓ 'ଏକଥା ବୁଝିବା' ବୋଲି ସ୍ୱାମୀଜୀଙ୍କୁ ସାନ୍ତ୍ୱନା ଦେଲାରୁ, ସମସ୍ତେ ଟୁଙ୍ଗୀରୁ ପ୍ରସ୍ଥାନ କରି ଜମିଦାରଙ୍କ 'ପୂଜା'ଠାରେ ଉପସ୍ଥିତ ହେଲୁଁ । କିନ୍ତୁ ମ୍ୟାନେଜରଙ୍କ 'ମୁଣ୍ଡ ଧରୁଛି ବୋଲି' ମ୍ୟାନେଜରେ ନିଜ ଗୃହକୁ ଗଲେ । (ମୁଁ ମନେ ମନେ ବିଚାରିଲି ଯେ ଗତ ସନ୍ଧ୍ୟାରେ ମାଷ୍ଟରଙ୍କର ସ୍ୱରଟା ଠିକ୍ ଏ ଚଢ଼ା ଥିଲା । ମନ୍ତ୍ରସିଦ୍ଧ ପାଗଳ, ତା କଥା ସ୍ୱତନ୍ତ୍ର । 'ଶନୈଃ ପନ୍ଥା ଶନୈଃ କନ୍ଥା, ଶନୈଃ ପର୍ବତଲଙ୍ଘନଂ ।' କୌଣସି କଥା କହିବାକୁ ହେଲେ ଠିକ୍ ଏ ନମ୍ରଭାବରେ କହିଲେ ତାହାର ଫଳ ଶୀଘ୍ର ଫଳେ । ଗ୍ରାମର ଶାଶୁମାନେ ନେଉଗଲେ ଲାଭ ଏତିକି ହେବ ଯେ ବୋହୂମାନଙ୍କ ଉପରେ ଅତ୍ୟାଚାରର ମାତ୍ରା ବଢ଼ିବ, ଦାଆଁ ଗଡ଼ୁ ଗଡ଼ୁ ମାଙ୍କଡ଼ରେ ପରିଣତ ହେବ । ଉଦ୍ଦେଶ୍ୟ ଉତ୍ତମ ଥିଲେ ମଧ୍ୟ ତାହା ପ୍ରକାଶ କରିବାର ପନ୍ଥା ପ୍ରତି ଦୃଷ୍ଟି ରଖିବା ଉଚିତ ।)

ଶ୍ରୀ ଦୁର୍ମୁଖ ଶର୍ମା ।

---

# ଜଡ଼ ଓ ଶକ୍ତି ।

(ଆଲୋଚନା ସଭାରେ ପଠିତ)

ଜଗତରେ ଯେ ସମସ୍ତ ଘଟଣା ଆମ୍ଭମାନଙ୍କର ଦୃଷ୍ଟିଗୋଚର ହୁଏ, ସେ ଗୁଡ଼ିକର ମୂଳରେ ଆମ୍ଭେମାନେ ଦୁଇଗୋଟି ବିଷୟ ଦେଖୁଁ । ପଦାର୍ଥ ଓ ଶକ୍ତି । ପଦାର୍ଥ ଉପରେ ଶକ୍ତିର କ୍ରିୟା ହେଲେ ନାନା ପ୍ରକାର ଦୃଶ୍ୟ ଦୃଷ୍ଟିଗୋଚର ହୁଏ । ବସ୍ତୁତଃ ଆମ୍ଭମାନଙ୍କର ଯାବତୀୟ ଦୃଶ୍ୟମାନ ବ୍ୟାପାର ଶକ୍ତିର ଲୀଳା ବ୍ୟତିରେକେ ଆଉ କିଛି ନୁହେଁ । ଏ ଦୁଇ ଗୋଟି ଏପରି ଭାବରେ ସମ୍ବଦ୍ଧ ଯେ ଗୋଟିକୁ ଛାଡ଼ି ଅନ୍ୟଟିର ଅସ୍ତିତ୍ୱ କଳ୍ପନା କରାଯାଇ ନ ପାରେ । ସୃଷ୍ଟିର ଆଦିକାଳରୁ ଏମାନେ ବିରାଜିତ । ଫଳତଃ ପରମାତ୍ମା ପରମେଶ୍ୱର କି ଏକ ପଦାର୍ଥ ନିର୍ମାଣ କରିଥିଲେ ଓ ତନ୍ମଧ୍ୟରେ କି ଏକ ଶକ୍ତି ପ୍ରଦାନ କରିଥିଲେ ଯେ ଆଜି ଆମ୍ଭେମାନେ ଏହି ଦୁଇ ଗୋଟିର ଲୀଳାସମ୍ଭୂତ ଏତେ ଅସଂଖ୍ୟ ବିଭିନ୍ନ ପଦାର୍ଥ ଓ ଶକ୍ତିର ପରିଚୟ ପାଉଅଛୁଁ । ଏହି ଦୃଷ୍ଟିରେ ବିଚାର କଲେ ସଂସାର ଗୋଟିଏ ଲୀଳାକ୍ଷେତ୍ର ବୋଲି ସ୍ପଷ୍ଟ ପ୍ରତୀୟମାନ ହେବ । ଏହି ଲୀଳାମୟ ସଂସାରର ରହସ୍ୟ ବୁଝିବା ଅତି ଦୁରୂହ । ଏପରି ଘଟଣା ଗୁଡ଼ିକ ଘଟୁଅଛି, ବୈଜ୍ଞାନିକମାନେ ତାହା କେତେକ ପରିମାଣରେ ବୁଝାଇବାକୁ ସମର୍ଥ ହୋଇଅଛନ୍ତି, କିନ୍ତୁ କାହିଁକି ଏପରି ଘଟୁଅଛି, ଏଥିରେ ପଦେ ମାତ୍ର କହିବାକୁ ସମର୍ଥ ହୋଇ ନାହାନ୍ତି ।

ପଦାର୍ଥ ଓ ଶକ୍ତିର ଲୀଳା କିପରି ହେଉଅଛି ? ଏହା ଭାବିଲେ ଚିତ୍ତ ବିସ୍ମୟରେ ଅଭିଭୂତ ହୋଇଯାଏ । ଏହି ଅନନ୍ତ ବ୍ରହ୍ମାଣ୍ଡରେ ମାନବ ଯେତେ ଯେତେ ଘଟଣାନିଚୟ ସନ୍ଦର୍ଶନ କରେ, ସେ ଗୁଡ଼ିକ ପୁଙ୍ଖାନୁପୁଙ୍ଖରୂପେ ବିଚାର କରିବା ତାହା

ପକ୍ଷରେ ଅତ୍ୟନ୍ତ କଠିନ, ପରନ୍ତୁ ଗୋଟିଏ ଗୋଟିଏ ଘଟଣାର କାରଣ ଓ କାର୍ଯ୍ୟର ତତ୍ତ୍ୱ ଅନ୍ୱେଷଣରେ ତାହାର ସମସ୍ତ ଜୀବନ ଅତିବାହିତ କଲେ ମଧ୍ୟ ତାହା ଆଂଶିକ ସ୍ୱତ୍ୱ ଉପଲବ୍ଧି କରିବାକୁ ସମର୍ଥ ହୋଇପାରିବା ଘୋର ସନ୍ଦେହର ବିଷୟ । ଅତଏବ ସମସ୍ତ ଘଟଣା ଗୁଡ଼ିକର ଯଥୋଚିତ ଅନ୍ୱେଷଣ କରି ତତ୍ତ୍ୱ ନିରୂପଣ କରିବା କି କଠିନ ବ୍ୟାପାର, ତାହା ଶ୍ରମଶୀଳ ବ୍ୟକ୍ତି ମାତ୍ରକେ ଉପଲବ୍ଧି କରିପାରିବେ । ତେବେ ଆଜି ପର୍ଯ୍ୟନ୍ତ ଯେ ସମସ୍ତ ଘଟଣା ଗୁଡ଼ିକର ସବିଶେଷ ଆଲୋଚନା କରା ଯାଇଅଛି, ସେଥିରୁ ଏହା ସ୍ପଷ୍ଟ ଜଣା ଯିବ ଯେ ପ୍ରୋକ୍ତ ଦୁଇଟିର ଲୀଳା ଦୁଇପ୍ରକାରରେ ଅମ୍ଭେମାନେ ଦେଖିପାରୁଁ । ତାହା ଗତି ଓ ସ୍ଥିତି ।

ଗତି ଓ ସ୍ଥିତି ସମ୍ବନ୍ଧରେ ସଂକ୍ଷେପତଃ ଏତିକି ମାତ୍ର କହାଯାଇ ପାରେ ଯେ ଏ ଦୁଇଟି ଶକ୍ତିର ପ୍ରଭାବଜନିତ ପଦାର୍ଥର ଭିନ୍ନ ଭିନ୍ନ ଅବସ୍ଥା । ପ୍ରାକୃତିକ, ରସାୟନିକ ଯେ କୌଣସି ଘଟଣା ପରି-ଦର୍ଶନ କର, ଦେଖି ପାରିବ ଯେ ପଦାର୍ଥ ମଧ୍ୟରେ ଏକ ଶକ୍ତିର ପ୍ରୟୋଗ ହେତୁ ପ୍ରଥମ ଗତି ବା ସ୍ଥିତି ଉତ୍ପନ୍ନ ହୋଇଅଛି । ଗତି ଓ ସ୍ଥିତି ଦୁଇ ପ୍ରକାର । ବାହ୍ୟ ଓ ଅଭ୍ୟନ୍ତରିକ । ଅଭ୍ୟନ୍ତରିକ ଗତିଦ୍ୱାରା ପଦାର୍ଥ ମଧ୍ୟରେ ଗତି ଉତ୍ପନ୍ନ ହୁଏ । ବାହ୍ୟ ଗତିରେ ପଦାର୍ଥଟିର ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଗତି ହୁଏ । ସ୍ଥିତି ମଧ୍ୟ ସେହିପରି ବୁଝିବାକୁ ହେବ । କେଉଁ କେଉଁ ସ୍ଥଳରେ ପଦାର୍ଥର ଏକ ପ୍ରକାର ବା ଦୁଇ ପ୍ରକାର ଗତି ଏକ ସମୟରେ ଦୃଷ୍ଟ ହୁଏ । ବର୍ତ୍ତମାନ ଗତି ଓ ସ୍ଥିତିର ଉତ୍ପତ୍ତି କିପରି ହୁଏ, ତାହା ଦେଖା ଯାଉ ।

ଗତି ଓ ସ୍ଥିତି କହିଲେ ସାଧାରଣତଃ ପଦାର୍ଥର ଗତି ଓ ସ୍ଥିତି ଅମ୍ଭେମାନେ ବୁଝିଥାଉଁ । ଏ ସଂସାର ଗୋଟିଏ ବିଷମ ସମରକ୍ଷେତ୍ର । ଏଠାରେ ନିର୍ଦ୍ୱନ୍ଦ ନିରାପଦରେ ଚଳିବା ଅସମ୍ଭବ । ପ୍ରତି-ମୁହୂର୍ତ୍ତରେ ଶତ୍ରୁ ସର୍ବନାଶର ଚେଷ୍ଟା କରୁଥିବାର ଦେଖି ପାରିବ । ଏହା ଯେ କେବଳ ମାନବଜାତି ପକ୍ଷରେ, ଏପରି ନୁହେ, ପରନ୍ତୁ ପୃଥିବୀର ସମସ୍ତ ପଦାର୍ଥ ପକ୍ଷରେ ଏହା ସ୍ପଷ୍ଟ ସତ୍ୟ । ସମ୍ମୁଖରେ କାଷ୍ଠନିର୍ମିତ ଟେବଲ୍ ବିଦ୍ୟମାନ । ସେ କଣ ଅମ୍ଭମାନଙ୍କ ପରି ଶତ୍ରୁବେଷ୍ଟିତ ନୁହେ ? ଶତ୍ରୁସଙ୍କୁଳ ହେଲେ କଣ ହେବ ଅମ୍ଭମାନଙ୍କର ଉନ୍ନତି ଅମ୍ଭମାନଙ୍କ ଶକ୍ତି ଉପରେ ନିର୍ଭର କରେ; ତାହାର ସୁଖ ଦୁଃଖ କଣ ସେହିପରି ତାହାର ଶକ୍ତି ଉପରେ ନିର୍ଭର କରେ ନାହିଁ ? ସୂକ୍ଷ୍ମ ରୂପେ ଆଲୋଚନା କର, ଦେଖି ପାରିବ ଯେ ଅମ୍ଭ-ମାନଙ୍କ ପରି ତାହାର ଅନେକ ଆପଦ । ତାହାକୁ ଯେ କିଏ କେଉଁଆଡ଼େ ଟାଣୁଅଛି, ତାହା ଥରେ ଭାବ ନିଅ । ତାହାର ଚତୁର୍ଦ୍ଦିଗସ୍ଥ ଯାବତୀୟ ପଦାର୍ଥ ତାହାକୁ ଲୁଟି ନିକିଲାପରି ନିକୁଅଛନ୍ତି । ସମସ୍ତଙ୍କର ଇଚ୍ଛା ତାହାକୁ ନିକଟକୁ ନେଇ ଯାଇ ଆତ୍ମସାତ୍ କରିବେ । ଶତ୍ରୁ ଅନେକ, କିନ୍ତୁ ସେ କାହାର ଅଧୀନ ହେବ ? ଯେଉଁ ଶତ୍ରୁଟିର ସର୍ବାପେକ୍ଷା ବଳ ଅଧିକ, ସେ ତାହାର ଶରଣାପନ୍ନ ହେବ ନାହିଁ କି ? ଏଣୁ ଟେବଲଟି ଭୂପୃଷ୍ଠରେ ସଂଲଗ୍ନ ହୋଇଅଛି । ଚାରିଆଡ଼ୁ ବଳ ପ୍ରଯୁକ୍ତ ଥିଲେ କଣ ହେବ ଯାହାର ବଳ ଅଧିକ, ପଦାର୍ଥଟିର ସେହି ଆଡ଼କୁ ଗତି ହେଲା ବୋଲି ଦେଖି ପାରିବ । ଯଦି ପୃଥିବୀର ବଳ ପ୍ରଯୁକ୍ତ ନ ଥାନ୍ତା, ତେବେ ଟେବଲଟି ଅନ୍ୟ ଆଡ଼କୁ ଛୁଟି ଯାନ୍ତା । ଅର୍ଥାତ୍ ପୃଥିବୀର ମାଧ୍ୟାକର୍ଷଣ ବଳ ତାହାକୁ ଟାଣୁଅଛି । କିନ୍ତୁ ଭୂପୃଷ୍ଠରୁ ଯଥୋଚିତ ବାଧା ପାଇ-ବାରୁ ସେଥିରେ ସଂଲଗ୍ନ ଅଛି । ପୁନଶ୍ଚ, ତୁମ୍ଭେ ଏହାକୁ ଠେଲି ଦିଅ ଦେଖିବ, ଯେ ଏହା କିଛି ସ୍ଥାନାନ୍ତରିତ ହେବ । ତେବେ ଏଥିରୁ ଏହା ସ୍ପଷ୍ଟ ବୁଝା ଯାଉ ନାହିଁ କି ଯେ ଶକ୍ତି ଗତି ଓ ସ୍ଥିତି ଉଭୟ ଉତ୍ପାଦନ କରେ ? ପ୍ରତି ପଦାର୍ଥରେ ଅନେକ ଗୁଡ଼ିଏ ବଳ କାର୍ଯ୍ୟ କରୁଅଛି । କିନ୍ତୁ Might is right, ଯେଉଁଆଡ଼ୁ ସର୍ବାପେକ୍ଷା ଅଧିକ ବଳ ପ୍ରଯୁକ୍ତ, ସେହି ଆଡ଼କୁ ପଦାର୍ଥର ଗତି

ହେଉଅଛି, ପରନ୍ତୁ ଗତିର ବିପରୀତ ଦିଗରେ ତୁଳ୍ୟ ବଳ ପ୍ରଯୁକ୍ତ ହେଲେ ପଦାର୍ଥଟି ସ୍ଥିର ହୋଇଅଛି ।

ଗତି ଓ ସ୍ଥିତି ଦୁଇଟି ଆପେକ୍ଷିକ ଶବ୍ଦ । ପ୍ରକୃତରେ ଜଗତରେ କୌଣସି ବସ୍ତୁ ସ୍ଥିର ନାହିଁ । ସମସ୍ତ ଗତିବିଶିଷ୍ଟ । ଆମ୍ଭେମାନେ ଯେଉଁ ଗୁଡିକୁ ବାହ୍ୟ ସ୍ଥିର ବୋଲି ମନେ କରୁଁ, ବାସ୍ତବିକ ସେଗୁଡିକ ସ୍ଥିର ନାହିଁ । ପୃଥିବୀର ଗତି ସଙ୍ଗେ ସେମାନଙ୍କର ଗତି ହେଉଅଛି । କିନ୍ତୁ ଆମ୍ଭେମାନେ ଏହିଟି ସ୍ଥିର, ସେହିଟି ଗତିବିଶିଷ୍ଟ ବୋଲି ଯାହା କହୁଥାଉଁ, ତାହା କେବଳ ତୁଳନାସାପେକ୍ଷ । ଗୋଟିକର ତୁଳନାରେ ଅନ୍ୟଟି ଗତିବିଶିଷ୍ଟ ବା ସ୍ଥିର ବୋଲି ମନେ କରି ନେଉଁ । ଏ ସମ୍ବନ୍ଧରେ ଗୋଟିଏ ଉଦାହରଣ ଦେଲେ କଥାଟା ବୋଧ ହୁଏ ସ୍ପଷ୍ଟତର ହେବ ।

ଆମ୍ଭେମାନେ ଏଠାରେ ସମସ୍ତେ ବସିଅଛୁଁ । ଏଠାରୁ ଉଠି ଯାଇ ଅନ୍ୟତ୍ର ଉପବେଶନ କଲେ ଆମ୍ଭମାନଙ୍କର ଗତି ହେଲା ବୋଲି କହାଯିବ । ଆମ୍ଭମାନଙ୍କ ସମ୍ମୁଖରେ ଏଠାରେ ଗୋଟାଏ ଟେବଲ ଅଛି । ଯଦି ଏ ଟେବଲଟି ସଙ୍ଗରେ ନେଇ ନ ଯାଇ ଥାଉଁ ତେବେ ଟେବଲଟି ଯେଉଁ ସ୍ଥାନରେ ଥିଲା ସେହି ସ୍ଥାନରେ ଅଛି, କିନ୍ତୁ ଆମ୍ଭମାନଙ୍କର ସ୍ଥାନପରିବର୍ତ୍ତନ ହୋଇଅଛି । ସାଧାରଣତଃ ସ୍ଥାନର ପରିବର୍ତ୍ତନ ଓ ଅପରିବର୍ତ୍ତନ ଅନୁସାରେ ପଦାର୍ଥଟିର ଗତି ହୋଇଅଛି ବା ତାହା ସ୍ଥିର ଅଛି ବୋଲି ଆମ୍ଭେମାନେ କହୁଥାଉଁ । ଯେପରି ପୂର୍ବୋକ୍ତ ଘଟଣାରେ ଆମ୍ଭମାନଙ୍କର ଗତି ହୋଇ ଅଛି, କିନ୍ତୁ ଟେବଲଟି ସ୍ଥିର ଅଛି ବୋଲାଯିବ । କିନ୍ତୁ ଏପରି ହୋଇପାରେ ଯେ ଆମ୍ଭେମାନେ ଯେଉଁ ଗୃହ ମଧ୍ୟରେ ବସିଅଛୁଁ ଓ ଆମ୍ଭମାନଙ୍କ ଚତୁର୍ଦ୍ଦିଗରେ ଗୃହ ମଧ୍ୟରେ ଯେ ସମସ୍ତ ପଦାର୍ଥ ଅଛି, ଠିକ୍ ସେହିପରି ଏକଗୃହକୁ ଯଦି ଆମ୍ଭେମାନେ ଚାଲି ଯାଉଁ ଓ ସେଠାରେ ଯଦି ଚତୁର୍ଦ୍ଦିଗରେ ସେହିପରି ପଦାର୍ଥମାନ ଦେଖୁଁ, ତେବେ ଗୃହ ମଧ୍ୟରେ ବସି ଆମ୍ଭମାନଙ୍କର ଗତି ହୋଇଅଛି ବୋଲି କହାଯାଇ ପାରିବ କି ? ଏହି ପ୍ରଶ୍ନଟି ପଚାରିଲେ ଜଣେ ବାଳକ ଉତ୍ତର ଅତି ସହଜ ଜ୍ଞାନ କରି କହିବ, ଆମ୍ଭେମାନେ ଚାଲି ଆସିଲୁଁ, ଆମ୍ଭମାନଙ୍କର ଗତି ହେଲା ନାହିଁ? ଏହା ପ୍ରକୃତ ଉତ୍ତର ହେଲା କି ? ସେହି ବାଳକଟିକୁ ପ୍ରଶ୍ନ କର, ତୁମ୍ଭେ ଯେଉଁ ସ୍ଥାନରେ ପ୍ରଥମେ ବସିଥିଲ, ସେ ସ୍ଥାନଟି ଯେ ଏହି, ଏହାର ତାହାର କୌଣସି ପ୍ରଭେଦ ଅଛି କି ? ସେ କିଛିକ୍ଷଣ ସ୍ତମ୍ଭିତ ରହି ଘରଭିତରର ଚାରି ଆଡ଼ ନିରୀକ୍ଷଣ କରି ଉତ୍ତର ଦେବ, ସତ, ସେଠି ଯାହା ଏଠି ତାହା । ଆମ୍ଭେମାନେ ସେହିଠାରେ ଅଛୁଁ । ତେବେ ବାଳକଟିର ଜ୍ଞାନ ଯେ ଆମ୍ଭମାନଙ୍କର ଗତି ହୋଇଅଛି, କିନ୍ତୁ କିପରି ଗତି ହେଲା, ତାହା ବୁଝାଇ ପାରୁ ନାହିଁ । ଏହି ସମୟରେ ତାହାକୁ ଗୋଟିଏ ଜିନିଷ ଦେଖାଇ ଦିଅ । ସେ ତୁମ୍ଭକୁ ଠିକ ଯଥାର୍ଥ ଉତ୍ତର ପ୍ରଦାନ କରିବ । ପ୍ରଥମ ଘରର ଦ୍ୱାରସମ୍ମୁଖରେ ଗୋଟାଏ ଆମ୍ବଗଛ, ଏ ଘରର ଦ୍ୱାରସମ୍ମୁଖରେ ଗୋଟାଏ ଶିରୀଷ ଗଛ । ବାଳକଟିକୁ ବର୍ତ୍ତମାନ କହ, କି ରେ ଘର ସାମନାରେ କି ଗଛ ? ଉତ୍ତର, ଶିରୀଷ ଗଛ । ସେଠି ଏ ଗଛ ଦେଖିଥିଲୁ ? ଉତ୍ତର, ନା । ସେଠି କି ଗଛ ଦେଖିଥିଲୁ ? ଉତ୍ତର, ଆମ୍ବଗଛ । ତେବେ ଆମ୍ଭେମାନେ କେଉଁଠାରେ ? ଯେଉଁଠାରେ ଥିଲୁଁ ସେଠାରେ ଅଛୁଁ କି ନା ? ଉତ୍ତର, ନା । କାହିଁକି ? ଉତ୍ତର, ସେ ସ୍ଥାନ ଓ ଏ ସ୍ଥାନ ଏକ ନୁହେଁ, ସେଠି ଆମ୍ବଗଛ ଥିଲା, ଏଠି ଶିରୀଷ ଗଛ ଅଛି । ଏଥିରୁ ଦେଖା ଯାଉଅଛି ଯେ ବାଳକଟି ଗଛ ସାହାଯ୍ୟରେ ଗତି ହୋଇଅଛି କି ନା ପ୍ରକୃତରୂପେ ବୁଝାଇବାକୁ ସକ୍ଷମ ହୋଇଅଛି । ତେବେ ଏଥିରୁ ଏହା ପ୍ରତିପନ୍ନ ହେଲା ଯେ ଆମ୍ଭେମାନେ ଗୋଟିକ ସଙ୍ଗେ ତୁଳନା କରି ଅପର ପଦାର୍ଥଟିର ଗତି ହୋଇଅଛି ବା ତାହା ସ୍ଥିର ଅଛି ଏହା ନିର୍ଣ୍ଣୟ କରିଥାଉଁ । ଯଦି ଆମ୍ବଗଛଟି ଆମ୍ଭମାନଙ୍କ ସଙ୍ଗେ ମୁଣ୍ଡ ଯାଇଥାନ୍ତା ଓ ଶିରୀଷ ଗଛ ସେଠାରେ

ତ ଥାନ୍ତା ତେବେ ଆମ୍ଭେମାନେ ଏ ସିଦ୍ଧାନ୍ତରେ ସହଜରେ ଉପନୀତ ହୋଇ ପାରନ୍ତୁ ନାହିଁ, କିନ୍ତୁ ଆମ୍ବଗଛଟି ସ୍ଥିର ଥିବାର ଜାଣି ତାହାର ଓ ଆମ୍ଭମାନଙ୍କର ଦୂରତ୍ୱ ଅଳ୍ପାଧିକ ହେବାର ଦେଖି ଆମ୍ଭେମାନେ ଗତି କରୁଅଛୁଁ ବୋଲି ସ୍ଥିର କରୁଁ । ଅତଏବ ଗୋଟିକର ସ୍ଥିରତା ଉପରେ ଅନ୍ୟର ଗତିର ନିରୂପଣ ନିର୍ଭର କରେ । ଅର୍ଥାତ୍ ଏକ ସମୟରେ ଦୁଇପଦାର୍ଥ ମଧ୍ୟରେ ଦୂରତ୍ୱର ପରିବର୍ତ୍ତନ ଘଟିଲେ ଗୋଟିଏ ସ୍ଥିର ଓ ଅପରଟି ଗତିବିଶିଷ୍ଟ କୁହାଯାଏ । ତାହା ହେଲେ ଦୁଇ ଗୋଟି ଗତି-ବିଶିଷ୍ଟ ପଦାର୍ଥ ମଧ୍ୟରେ କାହାର ଗତି କେତେ, ଏହା କିପରି କହୁଁ ? ଉଭୟଙ୍କୁ ସ୍ୱତନ୍ତ୍ରଭାବରେ ଗୋଟିଏ ସ୍ଥିର ବସ୍ତୁ ସଙ୍ଗେ ତୁଳନା କରି କାହାର ଗତି ଅଳ୍ପ କାହାର ବେଶି ନିର୍ଣ୍ଣୟ କରଥାଉଁ । ଅଭ୍ୟାସବଶତଃ ଏହା ଏପରି ସ୍ୱାଭାବିକ ହୋଇ ପଡ଼ିଅଛି ଯେ ଗୋଟିଏ ସ୍ଥିର ବସ୍ତୁ ସଙ୍ଗେ ଦୁଇଟିକୁ ତୁଳନା କରୁଅଛୁଁ ବୋଲି ସହଜରେ ମନେ ହୁଏ ନାହିଁ ।

ଗତି ମାର୍ଗବିଶେଷରେ ପ୍ରଧାନତଃ ଦୁଇ ପ୍ରକାର, ଯଥା, ସରଳ ଓ ବକ୍ର । ପୁନଶ୍ଚ, ଏହି ପ୍ରତ୍ୟେକ ନାନା ଉପଭାଗରେ ବିଭକ୍ତ ହୋଇ ପାରନ୍ତି । କଥାରେ କହନ୍ତି, ମନୁଷ୍ୟ ଗୋଟିକେ ଗଢ଼ି ଗୋଟିଏ, ଦେଶ ଗୋଟିକେ ଭାଷା ଗୋଟିଏ। କେବଳ ସମସ୍ତ ମନୁଷ୍ୟଙ୍କର ଗତି ଯେ ସମାନ ନୁହେଁ ଏପରି ନୁହେଁ, ବସ୍ତୁତଃ ଜଗତରେ ଅନ୍ୟାନ୍ୟ ଯେ ସମସ୍ତ ବସ୍ତୁ ଦେଖୁଅଛ, ସେ ସମସ୍ତଙ୍କର ଗତି ସୂକ୍ଷ୍ମରୂପେ ଆଲୋଚନା କଲେ କେବେହେଁ ସମାନ ବୋଲି ପ୍ରମାଣିତ ହୋଇ ପାରିବ ନାହିଁ । ସୃଷ୍ଟିକର୍ତ୍ତାଙ୍କର କି ଉଦ୍ଦେଶ୍ୟ କେଜାଣି, ଦୁଇଗୋଟି ପଦାର୍ଥର ଗତି ସର୍ବତୋଭାବରେ ସମାନ ଦେଖିବା ଅତ୍ୟନ୍ତ ବିରଳ, ଅସମ୍ଭବ କହିଲେ ଚଳେ । ଯେଉଁ-ମାନଙ୍କର ଗତି ପରସ୍ପର ସମାନ ବୋଲି ଆମ୍ଭ-ମାନଙ୍କ ମନରେ ଧାରଣା ଅଛି, ସୂକ୍ଷ୍ମତରରୂପେ ଭାବିଦେଖ, ତାହା ପ୍ରକୃତରେ ଅସମାନ ବୋଲି ବୋଧ ହେବ । 'ଗତି' ଶବ୍ଦଟିର ଅର୍ଥ ଏଠାରେ ଭିନ୍ନ ପ୍ରକାର ବୋଲି କେହି ମନେ କରି ପାରନ୍ତି, କିନ୍ତୁ ମୋ ମତରେ ଶବ୍ଦଟିର ଅର୍ଥ ଯେପରି ଭାବରେ ନିଅ, କଥାଟା ପଦେ ପଦେ ସତ୍ୟ, ଏଥିରେ ସନ୍ଦେହ ନାହିଁ । ପୁନଶ୍ଚ ଗତି ବେଗସମ୍ବନ୍ଧରେ ଦୁଇପ୍ରକାର, ଯଥା, ସମ ଓ ବିଷମ । ମନୁଷ୍ୟ ଯାହା ଦେଖେ ବା ବୋଧ କରେ, ତାହାର ଗୋଟାଏ କଳନା କରିବାକୁ ଛାଡ଼େ ନାହିଁ, ଏଣୁ ଗତିର ପରିମାଣ କରିବା ନିମିତ୍ତ ତାହାର ମାନଦଣ୍ଡ ନିର୍ଦ୍ଧାରିତ ହୋଇଅଛି । ବେଗ ଏହାର ମାନଦଣ୍ଡ । କୌଣସି ନିରୂପିତ ସମୟରେ ପଦାର୍ଥଟି ଯେତେ ପଥ ଅତିକ୍ରମ କରେ, ତାହାକୁ ତାହାର ବେଗ ବୋଲାଯାଏ । ଯଦି ପଦାର୍ଥଟି ସମାନ ସମୟରେ ସମାନ ସମାନ ପଥ ଅତିକ୍ରମ କରେ ତେବେ ଏହାର ଗତିକୁ ସମଗତି କହାଯାଏ । କିନ୍ତୁ ଯଦି ସମାନ ସମୟରେ ଅସମାନ ପଥ ଅତିକ୍ରମ କରେ ତେବେ ଏହାକୁ ବିଷମଗତି ବୋଲାଯାଏ। ପଦାର୍ଥର ଦୁଇ ପ୍ରକାର ବିଷମଗତି ସାଧାରଣତଃ ଆମ୍ଭମାନଙ୍କର ଦୃଷ୍ଟିଗୋଚର ହୁଏ । ନିୟମିତ ଓ ଅନିୟମିତ । ବୃକ୍ଷରୁ ଗୋଟିଏ ଫଳ ତଳେ ପଡ଼ିଲାବେଳେ ଦେଖି ପାରିବ ଯେ ଏହାର ଗତି ସମ ନୁହେଁ, ବିଷମ, କିନ୍ତୁ ନିୟମିତ । ଏହି ନିୟମଟି ଦୃଷ୍ଟ ହେବ । ପ୍ରଥମ ସେକେଣ୍ଡରେ ଯେତେ ପଥ ଅତି-କ୍ରମ କରିବ, ଦ୍ୱିତୀୟ ସେକେଣ୍ଡରେ ତାହାର ୪ଗୁଣ, ତୃତୀୟରେ ତାହାର ୯ ଗୁଣ, ଇତ୍ୟାଦି ଇତ୍ୟାଦି । କିନ୍ତୁ ଅନେକ ସ୍ଥଳରେ ଏହା ଦେଖାଯାଏ ନାହିଁ । ଶେଷୋକ୍ତ ପ୍ରକାର ବିଷମଗତି ଆମ୍ଭେମାନେ ଦେଖିବାକୁ ପାଉଁ । ଏଥିରେ କୌଣସି ନିୟମ ଦୃଷ୍ଟିଗୋଚର ହେବ ନାହିଁ । ପଦାର୍ଥର ଗତି କେତେବେଳେ କଣ, ତାହା କେହି କହି ପାରିବ ନାହିଁ ।

ଅନନ୍ତଙ୍କର ରାଜ୍ୟ ଅନନ୍ତ, ସୃଷ୍ଟି ଅନନ୍ତ । ଏ ଅନନ୍ତ ବ୍ରହ୍ମାଣ୍ଡର ଗୋଟିଏ ଧାରଣା କରିବା ଅତ୍ୟନ୍ତ କଠିନ, କଠିନ ନାହିଁ, ଅସମ୍ଭବ । କାରଣ

ସସୀମ ଅସୀମର ଆଧାର ହୋଇ ପାରେ କି? କିନ୍ତୁ 'କାହିଁ ମାମୁଁଠାରୁ କଣାମାମୁଁ ଭଲ' ଏହି ନ୍ୟାୟରେ ମାନବ ହତାଶ ନ ହୋଇ ତାହାର ଶକ୍ତ୍ୟନୁସାରେ ଯେତେଦୂର ସମ୍ଭବ ସେତେଦୂର ଚେଷ୍ଟା କରିବାକୁ ଛାଡେ ନାହିଁ । ଏଣୁ ଦୂରବୀକ୍ଷଣଯନ୍ତ୍ରସହକାରେ ଅନନ୍ତ ବ୍ରହ୍ମାଣ୍ଡର ମୋଟାମୋଟି ଗୋଟିଏ ମାନଚିତ୍ର ଯାହା ଅଙ୍କିତ କରିବାକୁ ସମର୍ଥ ହୋଇଅଛି, ତାହା ଏହି ।

ଏ ଅନନ୍ତ ଜଗତ ସର୍ବତ୍ର ଦେବମୂଳର ଅଦୃଶ୍ୟ ଅବୋଧ୍ୟ ଏକ ପ୍ରକାର ସୂକ୍ଷ୍ମ ପଦାର୍ଥରେ ପରିବ୍ୟାପ୍ତ । ପଣ୍ଡିତମାନେ ଏହାର ନାମ ଇଥର ଦେଇଅଛନ୍ତି । ଏହି ଇଥର ସମସ୍ତ ଶୂନ୍ୟ ସ୍ଥାନ ଅଧିକାର କରିଅଛି । ଏ ପର୍ଯ୍ୟନ୍ତ ଯେ କୌଣସି ପଦାର୍ଥର ଅଣୁମାନଙ୍କ ମଧ୍ୟରେ ଥିବା କଳ୍ପନାତୀତ ଅପରିମେୟ ଶୂନ୍ୟସ୍ଥାନ ମଧ୍ୟ ଏହାର ଅଧିକାରର ବହିର୍ଭୂତ ନୁହେ । ଏହି ବିଶ୍ୱବ୍ୟାପୀ ବାୟବୀୟ ପଦାର୍ଥକୁ ଅନନ୍ତ ସାଗର ବୋଲି ଗଲେ ତହିଁ ମଧ୍ୟରେ ଦେଖା ଯିବ ଯେ କେତେଗୁଡିଏ ନାକ୍ଷତ୍ରିକ ଜଗତ ଭାସମାନ ହୋଇ ରହିଅଛି । ଏଥି ମଧ୍ୟରୁ ଗୋଟିଏ ସୌର ଜଗତ ନାମରେ ଆମ୍ଭମାନଙ୍କଠାରେ ବିଶେଷ ପରିଚିତ । ପୁନଶ୍ଚ କେତେଗୋଟି ଗ୍ରହଜଗତ ଏହି ସୌର ଜଗତର ଅନ୍ତର୍ଗତ । କେତେଗୋଟି ଉପଗ୍ରହ ମଧ୍ୟ ପ୍ରତ୍ୟେକ ଗ୍ରହଜଗତର ଅନ୍ତର୍ଗତ । ଯେଉଁ ଗ୍ରହ ଓ ଉପଗ୍ରହ ଆମ୍ଭମାନଙ୍କର ବିଶେଷ ପରିଚିତ, ସେହି ଗ୍ରହ ଓ ଉପଗ୍ରହର ନାମ ଯଥାକ୍ରମେ ପୃଥିବୀ ଓ ଚନ୍ଦ୍ର । ଆମ୍ଭେମାନେ ଏହି ଶେଷୋକ୍ତ ଗ୍ରହ-ଜଗତର ପୃଷ୍ଠରେ ବାସ କରୁଁ । ପୃଥିବୀ ଆକାଶର ଏକ କଣ ମାତ୍ର ଅଧିକାର କରି ରହିଅଛି । ଯେଉଁ ପୃଥିବୀର ବ୍ୟାସ ୮୦୦୦ମାଇଲ, ଆମ୍ଭମାନଙ୍କୁ ଅତ୍ୟନ୍ତ ବୃହତ୍ ଜ୍ଞାନ ହେଲେ କଣ ହେବ; ଅନନ୍ତ ବ୍ରହ୍ମାଣ୍ଡର ତୁଳନାରେ ଏହା ଯେ କେତେ ସାମାନ୍ୟ, ତାହା କଳ୍ପନାରେ ଥରେ ସୁଦ୍ଧା ଭାବ ହେବ ନାହିଁ । ପୃଥିବୀ ଓ ତଦପେକ୍ଷା ଅଳ୍ପାଧିକ ପ୍ରକାଣ୍ଡ ଆଉ ଆଠୋଟି ଗ୍ରହ ନେଇ ସୌର ଜଗତ ଗଠିତ । ସୂର୍ଯ୍ୟ ଏହି ଜଗତର କେନ୍ଦ୍ର । ସୂର୍ଯ୍ୟ ପୃଥିବୀ ଅପେକ୍ଷା ତେର ଅୟୁତ ଗୁଣ ବଡ଼ । ଏଥିରୁ ସୌର ଜଗତ କେତେ ବଡ଼, ତାହା ବୋଧ ହୁଏ ବୁଝାଯିବ । କିନ୍ତୁ ରାତ୍ରରେ ଯେଉଁ ଅସଂଖ୍ୟ ନକ୍ଷତ୍ର ଆମ୍ଭମାନଙ୍କର ନୟନ-ଗୋଚର ହୁଏ, ସେଥିରୁ ପ୍ରତ୍ୟେକେ ଗୋଟିଏ ସୂର୍ଯ୍ୟ ବା ସୂର୍ଯ୍ୟାପେକ୍ଷା କିଛି ପ୍ରକାଣ୍ଡତର । ସୌର ଜଗତର ଗୋଟିଏ ଧାରଣା ହେବା ନିମିତ୍ତ ପଣ୍ଡିତମାନେ କେତେ ପ୍ରକାର ଉପାୟ ସ୍ଥିର କରି-ଅଛନ୍ତି । କୌଣସି ବାହ୍ୟ ବସ୍ତୁ ମଧ୍ୟରେ ସମ୍ବନ୍ଧ ଦେଖାଇ ଗୋଟିଏ ଧାରଣା ଜନ୍ମାଇବା ବ୍ୟତୀତ ଉପାୟାନ୍ତର ଆଉ କିଛି ନୁହେ । କିନ୍ତୁ ଏ ବ୍ରହ୍ମାଣ୍ଡ ସମ୍ବନ୍ଧରେ ସେପରି କୌଣସି ଉପାୟ ସ୍ଥିର ହୋଇ ପାରି ନାହିଁ । ତେବେ ବ୍ରହ୍ମାଣ୍ଡ କେତେ ବଡ, ତାହା ଭାବ ହେବ ନାହିଁ । କେବଳ ଅନନ୍ତ, ଅନନ୍ତ, ଅପାର, ଅପାର ଛଡା ଆଉ କିଛି ମୁଖରୁ ନିଃସୃତ ହୁଏ ନାହିଁ ।

ବର୍ତ୍ତମାନ ଦେଖନ୍ତୁ, ପ୍ରଥମୋକ୍ତ ସେହି ବିଶ୍ୱ-ବ୍ୟାପୀ ଇଥରଠାରୁ ଅନନ୍ତ ବ୍ରହ୍ମାଣ୍ଡର ତୁଳନାରେ କ୍ଷୁଦ୍ରାଦପି କ୍ଷୁଦ୍ର ଚନ୍ଦ୍ର ପର୍ଯ୍ୟନ୍ତ ଯାବତୀୟ ଜଡ଼-ଜଗତର ଗତି ହେଉଅଛି । ପ୍ରୋକ୍ତ ଇଥର ନିତ୍ୟ ତରଙ୍ଗାୟିତ । ଦିବସରେ ସୂର୍ଯ୍ୟ ଦେବଙ୍କର ପ୍ରଚଣ୍ଡ ତେଜରେ ଅସ୍ତମିତ ରାଶି ରାଶି ନକ୍ଷତ୍ର ରାତ୍ରରେ ଗତି କରୁଥିବାର ସହଜରେ ଦେଖା ଯିବ । ସୂର୍ଯ୍ୟ ଦେବଙ୍କର ଗତି ହିସାବାନୁସାରେ ବହୁ କାଳରୁ ଉତ୍ତରାୟଣ ଓ ଦକ୍ଷିଣାୟନ ନାମରେ ଅଭିହିତ । ପୃଥିବୀ ଓ ଅନ୍ୟାନ୍ୟ ଗ୍ରହମାନେ ସ୍ୱୀୟ ସ୍ୱୀୟ କକ୍ଷରେ ନିତ୍ୟ ଗତିଶୀଳ । ଚନ୍ଦ୍ରଙ୍କର ଗତି ତ ଆବାଲ୍ୟପରିଚିତ । ପରନ୍ତୁ କୌଣସି ଏକ ସ୍ଥାନରେ ସ୍ଥିରଭାବରେ ବସି ଏ ସମସ୍ତଙ୍କର ଗତି ବିଷୟ ପର୍ଯ୍ୟାଲୋଚନା କଲେ ମନରେ କି ଏକ ଅପୂର୍ବ ଭାବର ଉଦୟ ହୁଏ, ବୋଧ ହୁଏ ଯେପରି ନ ବିଶ୍ୱ-ଅଧ୍ୟାପକ ସେହି ମଙ୍ଗଳମୟ ପରମେଶ୍ୱରଙ୍କ ଅନନ୍ତ ରାଜ୍ୟ ସତତ କି ଏକ ମହଦୁଦ୍ଦେଶ୍ୟରେ ନିୟମିତ ଭାବରେ ଚାଳ

ଗୁଳିତ । ଏ ଉଦ୍ଦେଶ୍ୟ ଓ ନିୟମ ସମ୍ବନ୍ଧରେ ଅମ୍ଭମାନଙ୍କ ପରି କ୍ଷୁଦ୍ର ବ୍ୟକ୍ତିଙ୍କର କଥା କହିବାର କିଛି ଅଧିକାର ନାହିଁ । ତଥାପି କାର୍ଯ୍ୟକାରଣ-ପରମ୍ପରା ପରିଦର୍ଶନ କଲେ ସ୍ୱତଃ ଉଦ୍ଦେଶ୍ୟ-ବିଷୟକ ଜ୍ଞାନ ଉଦିତ ହୁଏ । ଏହି ଅନୁସାରେ ଯାହା କିଛି କହିଲେ ବୋଧ ହୁଏ ଧୃଷ୍ଟତା ହେବ ନାହିଁ ।

ପୃଥିବୀର ଆହ୍ନିକ ଗତି ଯୋଗୁଁ ଏହାର ସମସ୍ତ ଅଂଶ ଆଲୋକିତ ହେଉଅଛି । ପୃଥିବୀ ସ୍ୱୀୟ ମେରୁଦଣ୍ଡର ଚତୁର୍ଦ୍ଦିଗରେ ଘ ୨୩।୫୬ ମିନିଟରେ ଆବର୍ତ୍ତନ କରୁଥିବାରୁ ଅର୍ଦ୍ଧାଂଶ ଦିବସରେ ଆଲୋକିତ ହେଲେ ରାତ୍ରିରେ ଅନ୍ଧକାରାଚ୍ଛନ୍ନ ହୁଏ । ଯଦି ପୃଥିବୀର ଏପ୍ରକାର ଗତି ନ ଥାନ୍ତା, ତେବେ ଏହାର ଏକ ଭାଗ ଅତ୍ୟଧିକ ତେଜ ପ୍ରାପ୍ତ ହୋଇ ଦଗ୍ଧ ହୋଇ ଯାନ୍ତା ଓ ଅପର ଭାଗ ଘୋରତମସାଚ୍ଛନ୍ନ ହୁଅନ୍ତା । ପୁନଶ୍ଚ ସୂର୍ଯ୍ୟ ଦେବଙ୍କର ଗତି ହେଉ ନ ଥିଲେ ପୃଥିବୀର ସମସ୍ତ ଅଂଶ ସମାନ ତେଜ ଓ ଆଲୋକ ପ୍ରାପ୍ତ ହୁଅନ୍ତା ନାହିଁ, କିମ୍ବା ଗ୍ରୀଷ୍ମ ବର୍ଷାଦି ଷଡ଼୍ ଋତୁମାନ ଦୃଷ୍ଟି-ଗୋଚର ହୁଅନ୍ତା ନାହିଁ । ସୂର୍ଯ୍ୟ ଦେବଙ୍କଦ୍ୱାରା ଯେ ପୃଥିବୀର ଅଶେଷ ଉପକାର ସାଧିତ ହେଉଅଛି, ତାହା ଏଥିରୁ ସହଜରେ ଅନୁମିତ ହୋଇ ପାରିବ । ଆଶ୍ରିତକୁ ଗ୍ରାସାଚ୍ଛାଦନ ଦେଲା ପରି ପୃଥିବୀକୁ ଉତ୍ତାପ ଓ ଆଲୋକ ପ୍ରଦାନ କରି ସୂର୍ଯ୍ୟ ଦେବ ସ୍ଥିର ହୋଇ ବସି ନାହାନ୍ତି । ତାହାର ଯଥାସମ୍ଭବ ସୁରକ୍ଷା କରିବାରେ ଟିକିଏ ତ୍ରୁଟି ନାହିଁ । କାଳେ ଉଚ୍ଛୃଙ୍ଖଳ ଭାବରେ ଇତସ୍ତତଃ ଗତି କରି ନିଜର ଉଚ୍ଛେଦ ସାଧନ କରିବ, ଏହି ଭୟରେ ସୂର୍ଯ୍ୟ ଦେବ ତାହାର ପଥ ନିରୂପିତ କରି ଦେଇ ସେହି ନିର୍ଦ୍ଦିଷ୍ଟ ପଥରେ ତାହାକୁ ସତତ ଚଳାଉଅଛନ୍ତି । ପୃଥିବୀର ଏପ୍ରକାର ଗତିକୁ ବାର୍ଷିକ ଗତି କହନ୍ତି । ଏକ ବର୍ଷରେ ଥରେ ଏହା ବୃତ୍ତାଭାସ ଆକାରରେ ଗତି କରି ସୂର୍ଯ୍ୟଙ୍କୁ ପ୍ରଦକ୍ଷିଣ କରେ । ପୃଥିବୀର ଏ ଗତି ନ ଥିଲେ ତାହାର କି ଦଶା ହୁଅନ୍ତା, ତାହା କିଏ କହି ପାରେ ? ଆହୁରି ଆଶ୍ଚର୍ଯ୍ୟର ବିଷୟ ଯେ ଅନ୍ଧକାରର ମୋହ ନିବାରଣ ନିମିତ୍ତ ଚନ୍ଦ୍ରଙ୍କର ସୃଷ୍ଟି । ରାତ୍ରିରେ ସୂର୍ଯ୍ୟଙ୍କର ସ୍ଥାନ କିଞ୍ଚିତ୍ ପରିମାଣରେ ଏ ପୂରଣ କରନ୍ତି । ପୃଥିବୀ ସୂର୍ଯ୍ୟଙ୍କୁ ପ୍ରଦକ୍ଷିଣ କଲା ପରି ଏ ପୃଥିବୀକୁ ପ୍ରଦକ୍ଷିଣ କରୁଅଛନ୍ତି । ଚନ୍ଦ୍ରର ଗତି ହେଉ ନ ଥିଲେ ସମସ୍ତ ରାତ୍ରି କେବଳ ଅନ୍ଧକାରରେ ରହିବାରୁ ମନୁଷ୍ୟର ବର୍ତ୍ତମାନ ମାନସିକ ଅବସ୍ଥାରେ କି ବୈପରୀତ୍ୟ ଦେଖା ଯାଉଥାନ୍ତା, ତାହା ଭାବିବାର ବିଷୟ ! ସୂର୍ଯ୍ୟ, ପୃଥିବୀ ଓ ଚନ୍ଦ୍ରର ପରସ୍ପର ସମ୍ବନ୍ଧ କିପରି, ଭାବିଲେ ଏହା ବୋଧ ହେବ ଯେ ସୂର୍ଯ୍ୟ ରାଜା, ପୃଥିବୀ ପ୍ରଜା, ଚନ୍ଦ୍ର ଶିକିମି ପ୍ରଜା । ପ୍ରାକୃତ ଘଟଣାଗୁଡିକ ଭାବିଲେ ଏମାନଙ୍କ ମଧ୍ୟରେ ଏପରି କିଛି ସମ୍ବନ୍ଧ ଥିବାର ସହଜରେ ପ୍ରତୀୟମାନ ହେବ । କିନ୍ତୁ ପ୍ରକୃତରେ ସେପରି ନୁହେ । କେହି କାହାର ଉପକାର ନିମିତ୍ତ ଏପରି କାର୍ଯ୍ୟ କରୁ ନାହିଁ । କେବଳ ବିଶ୍ୱନିୟନ୍ତାଙ୍କର ଅଲଙ୍ଘନୀୟ ଆଦେଶ ପରିପାଳନ କରି ସ୍ୱ ସ୍ୱ ମାର୍ଗରେ ଧାବମାନ ହେବାରୁ ଏପରି ସମ୍ବନ୍ଧସୂଚକ ଘଟଣା ଘଟୁଅଛି । ବର୍ତ୍ତମାନ କି ଉଦ୍ଦେଶ୍ୟରେ କି ନିୟମରେ ଏ ବ୍ରହ୍ମାଣ୍ଡ ବିଶ୍ୱ ପରିଚାଳିତ ହେଉଅଛି, ତାହା ଦେଖାଯାଉ ।

ପଣ୍ଡିତମାନେ ସ୍ଥିର କରିଅଛନ୍ତି ଯେ ଏ ସଂସାର ଆଦିମ ଅବସ୍ଥାରେ ଉତ୍ତପ୍ତ ଜ୍ୱଳନ୍ତ ବାଷ୍ପରାଶିରେ ପରିପୂରିତ ଥିଲା । ଏଥିରୁ ତାପରାଶି ବିକୀର୍ଣ୍ଣ ହେବାକୁ ଲାଗିଲା । ଏ ହେତୁ କୌଣସି କୌଣସି ଅଂଶ ଅଳ୍ପାଧିକ ଶୀତଳ ଓ କୌଣସି କୌଣସି ଅଂଶ ପୂର୍ବବତ୍ ଅତ୍ୟନ୍ତ ଉତ୍ତପ୍ତ ରହିବାରୁ ସୂର୍ଯ୍ୟ ନକ୍ଷତ୍ର, ପୃଥିବୀ, ମଙ୍ଗଳ, ଚନ୍ଦ୍ର ପ୍ରଭୃତିର ସୂତ୍ରପାତ ହେଲା । ପ୍ରଥମତଃ ସେହି ଜ୍ୱଳନ୍ତ ବାଷ୍ପରାଶି ଅସଂଖ୍ୟ ଅସଂଖ୍ୟ ନାକ୍ଷତ୍ରିକ ଜଗତରେ, ପରେ ବିକୀରଣପ୍ରକ୍ରିୟାର ଆଧିକ୍ୟ ଯୋଗୁ, ପ୍ରତି ନାକ୍ଷତ୍ରିକ ଜଗତ କେତେଗୁଡିଏ ଗ୍ରହଜଗତରେ, ତହିଁରେ ପ୍ରତ୍ୟେକ ଗ୍ରହ କେତେ ଉପଗ୍ରହରେ

ବିଭକ୍ତ ହେଲା । ପ୍ରୋକ୍ତ କ୍ରମରୁ ପ୍ରକାଶିତ ହେବ ଯେ ସୃଷ୍ଟିର କ୍ରମ ଜଟିଳରୁ ଜଟିଳତର ଆଡ଼କୁ ଗଲାଅଛି । Logicianମାନଙ୍କ ମତରେ denotation କମ ହେଲେ କଣ ହେବ connotation ବେଶି ବେଶି ବୃଦ୍ଧି ହେଉଅଛି । ଓ ଅଦ୍ଭୁତ ସୃଷ୍ଟିକୌଶଳ ! ଇଉକ୍ଲିଡ଼ଙ୍କର ଯେ କୌଣସି ପ୍ରତିଜ୍ଞା ପାଠ କର, ତାହା ପ୍ରମାଣିତ ହେବା ନିମିତ୍ତ ଯେପରି ପୂର୍ବବର୍ତ୍ତୀ ପ୍ରତିଜ୍ଞାଗୁଡ଼ିକର ପ୍ରମାଣ ନିତାନ୍ତ ଆବଶ୍ୟକ, ସେହିପରି ଆଲୋଚନା କଲେ ଦେଖାଯିବ ଯେ ତାହା ଏ କ୍ରମ ସମ୍ବନ୍ଧରେ ମଧ୍ୟ ସମ୍ପୂର୍ଣ୍ଣ ସତ୍ୟ । ଏଣୁ ସୂର୍ଯ୍ୟ ବିନା ପୃଥିବୀର ଅସ୍ତିତ୍ୱ ଯେପରି ଅସମ୍ଭବ, ପୃଥିବୀ ବିନା ଚନ୍ଦ୍ରର ଅସ୍ତିତ୍ୱ ସେହିପରି ଅସମ୍ଭବ । ସୃଷ୍ଟ ବସ୍ତୁର ସୁରକ୍ଷା ନ ହେଲେ ସୃଷ୍ଟିର କିଛି ପ୍ରୟୋଜନ ରହେ ନାହିଁ । ଏଣୁ ଏପରି ବିଧାନ ହୋଇଅଛି ।

ଆମ୍ଭେମାନେ ବାଲ୍ୟକାଳରୁ ସୃଷ୍ଟି, ସ୍ଥିତି, ପ୍ରଳୟ, ଏ ତିନୋଟି ଶବ୍ଦ ଶୁଣି ଆସୁଅଛୁଁ । ଏ ତିନୋଟି ମଧ୍ୟରେ କି ସମ୍ବନ୍ଧ କେଜାଣି, ଗୋଟିଏ ମନେ ପଡ଼ିଲେ ଅନ୍ୟ ଦୁଇଟି ତତ୍‌କ୍ଷଣାତ୍ ମନେ ପଡ଼େ । ବୋଧ ହୁଏ ଯେପରି ଏମାନେ ନିତ୍ୟ ସହଚର । ଯେପରି ସୃଷ୍ଟ ବସ୍ତୁର କୌଣସି କାଳେ ପ୍ରଳୟ ହେବା ଅବଶ୍ୟମ୍ଭାବୀ ! ବାସ୍ତବିକ ତାହା ସତ୍ୟ । କେଉଁ କଥାଟା ରେ ଦେଖୁଅଛ ? ସମସ୍ତ ନଶ୍ୱର । ପ୍ରଭେଦ ଏତିକି ମାତ୍ର ଯେ କେହି ଅଳ୍ପକ୍ଷଣସ୍ଥାୟୀ କେହି ବା ବହୁକାଳସ୍ଥାୟୀ । ଏହା ମଧ୍ୟ ଜଡ଼ଜଗତରେ ସ୍ପଷ୍ଟ ଉପଲବ୍ଧ ହେବ । ଅତଏବ ଉପରେ ମୁଁ ଯେଉଁ ସୃଷ୍ଟିରହସ୍ୟ ବିଧାନ ବିଷୟରେ କହୁଥିଲି, ତାହା ଯେ ଚିରଦିନ ସେହିପରି ରହିବ, ଏପରି ନୁହେଁ । ପରନ୍ତୁ ଈଶ୍ୱର ସୃଷ୍ଟିବୀଜ ସଙ୍ଗେ ସଙ୍ଗେ ପ୍ରଳୟର ବୀଜ ରୋପଣ କରିଅଛନ୍ତି । ସୃଷ୍ଟିର କ୍ରମ ଉପରି ଅଭୁ ଭଳ ଆଡ଼କୁ ଆସିଲେ ପ୍ରଳୟର କ୍ରମ ବିପରୀତ ଆଡ଼ୁ ଗଲାଅଛି । ଏହା ଜଗତର ନିୟମ । ବସ୍ତୁତଃ ଚନ୍ଦ୍ରଙ୍କର ଦୁରବସ୍ଥା ଅବଲୋକନ କରି ଜ୍ୟୋତିର୍ବିଦ୍‌ମାନେ ପୃଥିବୀର ସ୍ଥିତି ସମ୍ବନ୍ଧରେ ଏକ ପ୍ରକାର ହତାଶ ହୋଇଅଛନ୍ତି । କିନ୍ତୁ ସେ ଯାହା ହେଉ, ଏ ସମସ୍ତ ବିଷୟ ବର୍ତ୍ତମାନ ଆଲୋଚ୍ୟ ନୁହେଁ । ତେବେ ଆଲୋଚ୍ୟ ବିଷୟଟି ସମ୍ପର୍କରେ ଏତିକି କହିଲେ ଚଳେ ଯେ ସୃଷ୍ଟିରହସ୍ୟର ବିଧାନସ୍ୱରୂପ ଜଡ଼ଜଗତର ଏପରି ଗତି ନିର୍ଦ୍ଧାରିତ ହୋଇଅଛି । ଏଣୁ ଯାବତୀୟ ଜଡ଼ଜଗତ ଗତିବିଶିଷ୍ଟ ଥିବାର ଦୃଷ୍ଟ ହୁଏ । ନିୟମ ନ ଥାଇ କୌଣସି କାର୍ଯ୍ୟ ସୁଚାରୁରୂପେ ସମ୍ପାଦିତ ହୋଇ ନ ପାରେ । ଗତି ଅନିୟମିତ ହେଲେ ତାହା ଦ୍ୱାରା ପ୍ରୋକ୍ତ ଉଦ୍ଦେଶ୍ୟ ସାଧିତ ହେବା ଅସମ୍ଭବ । ଏଣୁ ଜଡ଼ଜଗତର ଗତିର ନିୟମ ଧାର୍ଯ୍ୟ ହୋଇଅଛି । ସେହି ନିୟମାନୁସାରେ ସେମାନେ ବିଚଳିତ ନ ହୋଇ କିପରି ସେମାନଙ୍କର ଗତି ହେଉଅଛି; ତାହା ଭାବିଲେ ଚିତ୍ତ ବିସ୍ମୟସାଗରରେ ବୁଡ଼ି ଯାଏ । ବର୍ତ୍ତମାନ ନିୟମଟି କଣ, ଦେଖାଯାଉ ।

ପୂର୍ବୋକ୍ତ ଜ୍ୱଳନ୍ତ ବାଷ୍ପରାଶି ମଧ୍ୟରେ ସ୍ୱ ଏକ ଶକ୍ତି ନିହିତ ଥିଲା ଯାହା କେନ୍ଦ୍ରବର୍ତ୍ତୀ ହୋଇ ସମସ୍ତ ବାଷ୍ପମଣ୍ଡଳକୁ ଆକର୍ଷଣ କରି ଏକତ୍ର ରଖିଥିଲା । କିନ୍ତୁ ବାଷ୍ପରାଶି ନାନାବିଧ ଭିନ୍ନ ଭିନ୍ନ ଜଡ଼ ଜଗତରେ ବିଭକ୍ତ ହୋଇ ଯିବାରୁ ସେହି ଶକ୍ତି ମଧ୍ୟ ପଦାର୍ଥର ଯଥୋଚିତ ପରିମାଣାନୁସାରେ ସମସ୍ତଙ୍କଠାରେ ନିହିତ ହେଲା । ଚୁମ୍ବକ ପ୍ରସ୍ତର ଖଣ୍ଡିତ ଶତଧା ବିଭକ୍ତ ହେଲେ ମଧ୍ୟ ଯେପରି ପ୍ରତ୍ୟେକ ଭାଗରେ ଲୌହ ଆକର୍ଷଣ କରିବାର ଶକ୍ତି ଦୃଷ୍ଟ ହେବ, ସେହିପରି ଉକ୍ତ ବାଷ୍ପରାଶିରେ ନିହିତ ଶକ୍ତି ଭିନ୍ନ ଭିନ୍ନ ବିଭାଗରେ ମଧ୍ୟ ନିହିତ ବୋଲି ବୁଝାଯିବ ! କିନ୍ତୁ ଯାହାର ଯେପରି ଧର୍ମ, ସେ ସେହିପରି କାର୍ଯ୍ୟ କରେ । ଏହି ହେତୁରୁ ସେହି ଶକ୍ତି ବହୁଧା ସନ୍ନିବିଷ୍ଟ ହେଲେ ମଧ୍ୟ ସେ ତାହାର ଧର୍ମ ଛାଡ଼ି ନ ପାରେ । ଏଣୁକରି ପ୍ରତ୍ୟେକ ପଦାର୍ଥନିହିତ ସେହି ଶକ୍ତି ସମସ୍ତ ବିଶ୍ୱକୁ ଆକର୍ଷଣ କରି କିପରି ଏକତ୍ର ରଖିବ, ଏଥିରେ ସର୍ବଦା ଚେଷ୍ଟିତ । ଏହି

ସୃଷ୍ଟିରେ ବିଚାର କଲେ ଦେଖାଯିବ ଯେ ସମସ୍ତେ ପରସ୍ପରକୁ ଆକର୍ଷଣ କରୁଅଛନ୍ତି । ସମାନ ସମାନ ପଦାର୍ଥ ଦ୍ୱୟର ପରସ୍ପର ଆକର୍ଷଣ ହେଲେ ତାହାର ଗତି ଉତ୍ପାଦନ ହେବ ନାହିଁ । ଅନ୍ୟଥା ଦୁଇ ଗୋଟି ଅସମାନ ବସ୍ତୁ ନିକଟସ୍ଥ ହୋଇ ଯଦି ପରସ୍ପରକୁ ଆକର୍ଷଣ କରନ୍ତି ତେବେ ଲଘୁତର ବସ୍ତୁଟି ଗୁରୁତର ବସ୍ତୁ ସଙ୍ଗେ ଯାଇ ସଲଗ୍ନ ହେବ । ଦୁହିଁଙ୍କର ବଳନ ଗତି ବ୍ୟତିରେକେ ବର୍ତ୍ତମାନ କେବଳ ଗୁରୁତରଟିର ଗତି ହେବ । ଅନ୍ୟଟିର ଗତି ଲୁପ୍ତ ହେବ । ଏହି ହେତୁରୁ ବୋଧ ହୁଏ ଆମ୍ଭେମାନେ ଜଡ଼ଜଗତ ମଧ୍ୟରେ କୌଣସି ଦଉଁଟିକୁ ସମାନ ଦେଖୁ ନାହୁଁ କିମ୍ବା କୌଣସି ଦୁଇ ଗୋଟି ଏତେ ସନ୍ନିକଟସ୍ଥ ନୁହନ୍ତି ଯେ କୌଣସି ଗୋଟିକର ଗତି ଲୋପ ହେବାର ସମ୍ଭାବନା । ଏହିହେତୁରୁ ଆମ୍ଭେମାନେ ସୂର୍ଯ୍ୟଙ୍କୁ ପୃଥିବୀଠାରୁ ଢେର ଅଯୁତ ଗୁଣ ବଡ ଓ ୯୧ ଅଯୁତ ମାଇଲ ଦୂରରେ ଅବସ୍ଥିତ ଥିବାର ଦେଖୁଁ । ଏହି ହେତୁରୁ ଗତିର ବିଷୟ ପର୍ଯ୍ୟାଲୋଚନା କଲେ ଏ ଦୁଇ ଗୋଟି ବୈଚିତ୍ର୍ୟ ସୃଷ୍ଟିପର ଲକ୍ଷିତ ହେବ । ପ୍ରଥମ ଏହି ଯେ ଈଶ୍ୱର ସମସ୍ତଙ୍କୁ ସମ ଆକାର ଓ ସମ ଅବସ୍ଥା ପ୍ରଦାନ କରି ନାହାନ୍ତି । ଦ୍ୱିତୀୟତଃ ଦୁର୍ବଳ ପ୍ରବଳର ନିକଟରେ ରହିଲେ ପଦେ ପଦେ ତାହାର ଆପଦ, ଏଣୁ ଦୁର୍ବଳକୁ ଈଶ୍ୱର ପ୍ରବଳଠାରୁ ଅନେକ ଦୂରରେ ରଖିଅଛନ୍ତି । ଏହେତୁ ମୁଁ ପୂର୍ବେ ଯାହା କହିଅଛି ଈଶ୍ୱର ପ୍ରବଳପ୍ରତାପ ସୂର୍ଯ୍ୟଙ୍କୁ ପୃଥିବୀଠାରୁ ୯୧ନିୟୁତ ମାଇଲ ଦୂରରେ ଚନ୍ଦ୍ରଙ୍କୁ ପୃଥିବୀଠାରୁ ସହସ୍ର ସହସ୍ର ମାଇଲ ଦୂରରେ ରଖିଅଛନ୍ତି । ଏତ ସୌର ଜଗତର କଥା । ନାକ୍ଷତ୍ରିକ ଜଗତ ସମସ୍ତ ସମାନ ନୁହେ । ଏଣୁ ସେମାନଙ୍କର ଦୂରତ୍ୱ ଏତେ ଅଧିକ ଯେ କୌଣସି କୌଣସି ନକ୍ଷତ୍ରଠାରୁ ଆଲୋକ (ଯାହାର ଗତି ପ୍ରତି ସେକେଣ୍ଡରେ ୧୮୬୦୦୦ ମାଇଲ) ପୃଥିବୀକୁ ଆସିବାକୁ ୨୫-୩୦ ବର୍ଷରୁ ଅଧିକ ସମୟ ଲାଗେ । ଆଉ ମଧ୍ୟ ପଣ୍ଡିତମାନେ ଅନୁମାନ କରନ୍ତି ଯେ କୌଣସି କୌଣସି ନକ୍ଷତ୍ରଠାରୁ ସୃଷ୍ଟିର ଆରମ୍ଭରୁ ଏ ପର୍ଯ୍ୟନ୍ତ ଆଲୋକ ପୃଥିବୀକୁ ଆସି ପାରି ନାହିଁ; ଆସିବାକୁ ଅଦ୍ୟାପି ଅସଂଖ୍ୟ ବର୍ଷ ଲାଗିବ ।

ଏଥି ସଙ୍ଗେ ସଙ୍ଗେ ଆମ୍ଭମାନଙ୍କର ଆଉ ଗୋଟିଏ ବିଷୟ ସ୍ମରଣ ରଖିବା ଉଚିତ, ତାହା ଜଡ଼ର ପ୍ରକୃତି । ଏହାକୁ ଜଡ଼ର ସାଧାରଣଗୁଣ ନିଶ୍ଚେଷ୍ଟତା ଗୁଣ ବୋଲାଯାଏ । ଏ ଗୁଣ ଥିବାରୁ ଜଡ଼ ପଦାର୍ଥ ଥରେ ମାତ୍ର ପରିଚାଳିତ ହେଲେ ସରଳରେଖାକ୍ରମେ ସମଭାବରେ ଗତି କରୁଥିବ । ଅନ୍ୟଥା ଗତି ବନ୍ଦ କଲେ ସ୍ଥିର ଭାବରେ ଚିରକାଳ ରହିଥିବ । କି ଏକ ଶକ୍ତିର ଏପରି ପ୍ରୟୋଗ ହୋଇଅଛି ଯେ ଯଦିବା ଜଡ଼ ଜଗତ ସରଳରେଖାକ୍ରମେ ସମଭାବରେ ଗତି କରିବାକୁ ବ୍ୟସ୍ତ; କିନ୍ତୁ ପ୍ରୋକ୍ତ ମାଧ୍ୟାକର୍ଷଣ ଶକ୍ତି ପ୍ରଭାବକୁ କେହି ସ୍ୱେଚ୍ଛାଗତ କରିବାକୁ ସମର୍ଥ ନୁହନ୍ତି । ଏହି ହେତୁ ଆମ୍ଭେମାନେ ସମସ୍ତ ଜଡଜଗତରେ ସରଳ ଗତି ଦେଖି ପାରୁ ନାହୁଁ । ସୂର୍ଯ୍ୟଙ୍କର ମାଧ୍ୟାକର୍ଷଣ ଶକ୍ତି ପ୍ରଭାବରୁ ପୃଥିବୀ ଉଲ୍କାବର୍ଷୀ ଉଷ୍ଣକଣଖଣ୍ଡ ପିଣ୍ଡମାନଙ୍କ ହାତରେ ଘୂରନ୍ତା ପରି ବୃତ୍ତାଭାସ ଆକାରରେ ଗତି କରୁଅଛି । ଚନ୍ଦ୍ରଙ୍କର ଗତି ମଧ୍ୟ ସେହିପରି । ଯଦି ପୃଥିବୀ ପ୍ରତି ସୂର୍ଯ୍ୟଙ୍କର ଓ ଚନ୍ଦ୍ର ପ୍ରତି ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ପ୍ରୟୋଗ ନ ଥାନ୍ତା ତେବେ ପୃଥିବୀ ଓ ଚନ୍ଦ୍ର ଉଭୟେ ସରଳରେଖାକ୍ରମେ କେଉଁ ଆଡେ ଚାଲି ଯାଆନ୍ତେ, ତାହା କିଏ କହି ପାରିବ । କିନ୍ତୁ ଆଶ୍ଚର୍ଯ୍ୟର ବିଷୟ ଏହି ଯେ ଉକ୍ତ ଶକ୍ତି ସତତ ପ୍ରଯୁକ୍ତ ଥିଲେ କ୍ଷଣ ହେବ ସେମାନଙ୍କର ସ୍ୱାତନ୍ତ୍ର୍ୟ ସରଳରୈଖିକ ଗତି ନଷ୍ଟ କରିବାକୁ ସମର୍ଥ ହୋଇ ନାହିଁ । ଯେଉଁ ମୁହୂର୍ତ୍ତରେ ଏହା ଘଟିବ; ସେହି ମୁହୂର୍ତ୍ତରେ ଯେ ପ୍ରଳୟର ସୂତ୍ରପାତ ହେବ ଏହା କହିବା ବାହୁଲ୍ୟ ମାତ୍ର ।

ଏପରି ଅସମାନତା ଦେଖାଇବା ଦ୍ୱାରା ନିରପେକ୍ଷ ଈଶ୍ୱରଙ୍କଠାରେ ପକ୍ଷପାତିତ୍ୱର ଆରୋପ

ହୋଇଅଛୁ ବୋଲି କେହି ମନେ କରିବେ ନାହିଁ, ମୋର ତାହା ଅଭିପ୍ରାୟ ନୁହେ, ବରଂ ଏ ପାପ କେତେବେଳେହେଁ ସ୍ପର୍ଶ ନ କରୁ, ଏହାହିଁ ନିତ୍ୟ ମୋର ପ୍ରାର୍ଥନା । ତେବେ ମୋର ମୁଖ୍ୟ ମତ ଏହି ଯେ ସୃଷ୍ଟିରକ୍ଷାର ଏହା ଗୋଟିଏ ଅତି ଉତ୍କୃଷ୍ଟ ଉପାୟ । ଏହା ଛଡ଼ା ଉତ୍କୃଷ୍ଟତର ଉପାୟ ଆଉ ନାହିଁ କହିଲେ ଚଳେ । ଯେଉଁମାନେ ସମସ୍ତଙ୍କୁ ସମସ୍ତ ବିଷୟରେ ସମାନ ରଖିବାକୁ ଇଚ୍ଛା କରନ୍ତି, ସେମାନଙ୍କୁ ବାତୁଳ ଛଡ଼ା ଆଉ କିଛି କୁହାଯାଇ ନ ପାରେ । ଏ ସମ୍ବନ୍ଧରେ ହସ୍ତ ଓ ଚର୍ମ ତୁଳନା କର । କାହାର ମାହାତ୍ମ୍ୟ ବେଶି, ହସ୍ତର, ନା ଚର୍ମର? ହସ୍ତର ବଳ ଚର୍ମର ବଳ ଅପେକ୍ଷା ଅବଶ୍ୟ ବେଶି । କିନ୍ତୁ ସୂକ୍ଷ୍ମତର କିଏ ? ଅଙ୍ଗୁଳି ମାତ୍ର ଚର୍ମ ମଧ୍ୟରେ ପ୍ରବେଶ କଲେ ଚର୍ମଟି ନଷ୍ଟ ହୋଇଯିବ, କିନ୍ତୁ ହସ୍ତ ଉପରେ କଣ ଚର୍ମର କିଛି ବଡ଼ିମା ନାହିଁ ? ଯେଉଁ ମୁହୂର୍ତ୍ତରେ ଅଙ୍ଗୁଳି ଚର୍ମ ମଧ୍ୟରେ ପ୍ରବେଶ କରିବାକୁ ବ୍ୟସ୍ତ, ସେହି ମୁହୂର୍ତ୍ତରେ ଚର୍ମ କଣ ତାହାର ସହିତ ଲଢ଼ି ପାରିବ ନାହିଁ, କରେ ପାଷଣ୍ଡ! ତୋର ବଡ଼ ଦର୍ପ ହୋଇଅଛି, ଏଣୁ ମୋତେ ବିନଷ୍ଟ କରିବାକୁ ଉଦ୍ୟତ ହୋଇଅଛୁ ! କିନ୍ତୁ ଥରେ ଭାବି ଦେଖ, ମୁଁ ନ ଥିଲେ ତୋର ଦଶା କଣ ହେବ । ଯାହାକୁ ତୁ ବର୍ତ୍ତମାନ ଅତି ହେୟ ପଦାର୍ଥ ବୋଲି ମନେ କରୁଅଛୁ, ତାହା ତୋତେ କ୍ଷଣକୁ କ୍ଷଣ ସ୍ପର୍ଶ କରିବାକୁ ହେବ, କେହି ଆଉ ବାରଣ କରିବେ କି ? ତୁ ତୋର ଯଥେଚ୍ଛା କାର୍ଯ୍ୟ କରିବାକୁ ଯାଇ ବିପଦରେ ପଡ଼ିବୁ ନାହିଁ କି ? ଇତ୍ୟାଦି । ଅତଏବ ସୁମହାନ୍ ପରମେଶ୍ୱର କାହାକୁ କମ କାହାକୁ ବେଶି କରି ନାହାନ୍ତି, ସମସ୍ତଙ୍କୁ କମ ବେଶି ଶକ୍ତି ଦେଇଅଛନ୍ତି । ପ୍ରତ୍ୟେକ ବିଷୟରେ ସମସ୍ତଙ୍କୁ ସମାନ ଶକ୍ତି ପ୍ରଦାନ କରି ନାହାନ୍ତି । କାହାକୁ କେଉଁ ବିଷୟରେ କମ, କେଉଁ ବିଷୟରେ ବେଶି ଶକ୍ତି ପ୍ରଦାନ କରି ସମସ୍ତଙ୍କର ସମସ୍ତଙ୍କ ଉପରେ ପ୍ରାଧାନ୍ୟ ବଜାୟ ରଖିଛନ୍ତି, ଏଣୁ ପୃଥିବୀ ଆଜି ମନୁଷ୍ୟ ପଶୁ ପକ୍ଷୀ ପ୍ରଭୃତିର ବାସଭୂମି ବୋଲି ସୂର୍ଯ୍ୟ ନିକଟରେ ଗର୍ବ କରି ପାରେ । ସୂର୍ଯ୍ୟର ଏପରି ଗର୍ବ ଅଛି କି ? ପରନ୍ତୁ ସୂର୍ଯ୍ୟଙ୍କର ତେଜ ପରି ପୃଥିବୀର ଆଉ ତେଜ ଅଛି କି ?

ମୁଁ ପୂର୍ବେ ଯେଉଁ ଶକ୍ତିର ବିଷୟ ଉଲ୍ଲେଖ କରିଅଛି, ଯାହା ପ୍ରତ୍ୟେକ ପଦାର୍ଥର ଅଣୁମାନଙ୍କ ମଧ୍ୟରେ ବିଦ୍ୟମାନ ଓ ଯାହାକୁ ସ୍ଥିତି ପ୍ରକୃତିର ଏକମାତ୍ର କାରଣ ବୋଲାଯାଇ ପାରେ, ସେହି ଶକ୍ତିକୁ ପଣ୍ଡିତମାନେ ମାଧ୍ୟାକର୍ଷଣ ଆଖ୍ୟା ପ୍ରଦାନ କରିଅଛନ୍ତି । ଏହା ବ୍ରହ୍ମାଣ୍ଡସ୍ଥ ଯାବତୀୟ ପଦାର୍ଥ ମଧ୍ୟରେ ଘୋର ସଂଗ୍ରାମ ଲଗାଇ ଅଛି । ସମସ୍ତେ ପରସ୍ପରକୁ ଆକର୍ଷଣ କରୁଅଛନ୍ତି । ଆମ୍ଭେମାନେ ସୁଦୂରବର୍ତ୍ତୀ ଗ୍ରହ, ନକ୍ଷତ୍ରାଦିମାନଙ୍କ ଆକର୍ଷଣରୁ ବଞ୍ଚିତ ନୋହୁଁ । ଏହି ମହାଶକ୍ତିର ପ୍ରଭାବ ଅନୁଭବ କରି ବହୁ ପ୍ରାଚୀନ କାଳରୁ ଆର୍ଯ୍ୟ ଋଷିମାନେ ପ୍ରକାଣ୍ଡ ଜ୍ୟୋତିଷଶାସ୍ତ୍ର ପ୍ରଣୟନ କରି ଯାଇଅଛନ୍ତି । ଯେଉଁଥିରେ ଆମ୍ଭମାନଙ୍କ ପ୍ରତି ସେମାନଙ୍କର ଆକର୍ଷଣର ଫଳାଫଳ କଡ଼ାଃ ବରକଡ଼ା ପର୍ଯ୍ୟନ୍ତ ସେହି ମହାପୁରୁଷମାନଙ୍କଦ୍ୱାରା ନିର୍ଣ୍ଣୀତ ହୋଇଅଛି ।

ଆଲୋକ ଏକ ପ୍ରକାର ଗତି । ପଣ୍ଡିତମାନେ ସ୍ଥିର କରିଅଛନ୍ତି, ଏହା ପ୍ରୋକ୍ତ ଇଥରର ତରଙ୍ଗ ମାତ୍ର । ପୁନଶ୍ଚ ଉତ୍ତାପ ମଧ୍ୟ ଅଣୁମାନଙ୍କର ସ୍ପନ୍ଦନ ମାତ୍ର। ଏହିପରି ଯାବତୀୟ ବିଷୟ ଗତି ଛଡ଼ା ଆଉ କିଛି ନୁହେ । ପରନ୍ତୁ ସମସ୍ତ ଜଗତର ଗତି ମଧ୍ୟ କହିଲେ ଏକ କଥାରେ ଶେଷ ହେବ । ଏ ଜଗତର ଗୋଟି ଗୋଟିକର ଗତି ବିଷୟ ପର୍ଯ୍ୟାଲୋଚନା କଲେ ଗୋଟିଏ ଗୋଟିଏ ପୁସ୍ତକ ଲିଖିତ ହୋଇ ପାରେ । ଅତଏବ ଏ କ୍ଷୁଦ୍ର ପ୍ରବନ୍ଧରେ ସମସ୍ତଙ୍କର ଗତି ଆଲୋଚନା କରିବା ମୂଢ଼ତା ମାତ୍ର । ତେବେ ଜଡ଼ଜଗତ ସମ୍ବନ୍ଧରେ ଦୁଇ ଚାରି କଥା କହିଅଛି, ବର୍ତ୍ତମାନ କେବଳ

ମନୁଷ୍ୟ ସମ୍ବନ୍ଧରେ ଦୁଇ ଚାରି କଥା କହି କ୍ଷାନ୍ତ ହେବି ।

ଜଗତରେ ମାନବ ଗୋଟିଏ ଯେ ଅଦ୍ଭୁତ ସୃଷ୍ଟି, ଏହା କହିବା ବାହୁଲ୍ୟ ମାତ୍ର । ଏହାର ଏକ ଆଡ଼େ ପ୍ରାଣୀମାନଙ୍କ ଉପରେ ଯେପରି ଚିର ଆସନ, ଅନ୍ୟ ଆଡ଼େ ଜଡ଼ମାନଙ୍କ ଉପରେ ମଧ୍ୟ ସେହିପରି । ଏହାର ଗତି ସର୍ବବ୍ୟାପୀ । ଏହା ପଦାର୍ଥବିଶେଷରେ କିମ୍ବା ପ୍ରାଣୀବିଶେଷରେ ଆବଦ୍ଧ ନୁହେ । ଈଶ୍ୱର ଆଉ ସୃଷ୍ଟ ବସ୍ତୁଗୁଡ଼ିକର ଶାସକସ୍ୱରୂପ ମାନବକୁ ସୃଷ୍ଟି କରିଅଛନ୍ତି କି ? ଜଣେ ମହାତ୍ମା କହିଅଛନ୍ତି 'ଜଗତରେ ମନୁଷ୍ୟ ଶ୍ରେଷ୍ଠ, ମନୁଷ୍ୟ ମଧ୍ୟରେ ମନ ଶ୍ରେଷ୍ଠ' । ଏହାର ଶ୍ରେଷ୍ଠତ୍ୱ କେଉଁଠାରେ ? ଗତି ହିଁ ଏହାର ଜୀବନ, ସ୍ଥିତି ଏହାର ମୃତ୍ୟୁ । ଅତଏବ ଏହାର ଶ୍ରେଷ୍ଠତ୍ୱ ଗତି ଉପରେ ନିର୍ଭର କରେ ନାହିଁ କି ? ପରନ୍ତୁ ଅନ୍ୟାନ୍ୟ ପ୍ରାଣୀମାନଙ୍କର ଗତି ନାହିଁ କି ? ତେବେ ଏହାର ଗତିର ବିଶେଷତ୍ୱ କଣ ? ଯାହା ଯୋଗୁଁ ଏହା କିପରି ଶ୍ରେଷ୍ଠ ବୋଲାଉଅଛି? ଏ ସମସ୍ତ ଆଲୋଚନା କରିବା ନିଷ୍ପ୍ରୟୋଜନ । ତେବେ ପ୍ରକୃତ ମନୁଷ୍ୟତ୍ୱ କେଉଁଠାରେ, ତାହା ଦେଖାଯାଉ ।

ଜଡ଼ର ପ୍ରକୃତି ସମ୍ବନ୍ଧରେ ପୂର୍ବେ ମୁଁ କହିଅଛି । ପ୍ରାଣୀମାନେ ଯେ ଜଡ଼ସମ୍ଭୂତ, ଏଥିରେ ସନ୍ଦେହ ନାହିଁ । ଏହି ହେତୁରୁ ପ୍ରାଣୀରାଜ୍ୟରେ ଜଡ଼ର ସେହି ନିଶ୍ଚେଷ୍ଟତା ଗୁଣ ପରିଦୃଷ୍ଟ ହୁଏ । ସର୍ବ ପ୍ରକାର ଜନ୍ତୁଙ୍କ ବିଷୟ ପର୍ଯ୍ୟାଲୋଚନା କଲେ ଦେଖାଯିବ ଯେ, ସମସ୍ତ ଜନ୍ତୁ ଗୋଟିଏ ଗୋଟିଏ Instinct ଘେନି ଚାଲୁ ହୋଇଥାନ୍ତି । ପ୍ରାଣିଶ୍ରେଷ୍ଠ ମନୁଷ୍ୟ ମଧ୍ୟ ଏ ନିୟମର ବହିର୍ଭୂତ ନୁହେ । କିନ୍ତୁ ପ୍ରଭେଦ ଏହି ଯେ, ସେ ତାହାର ବିପରୀତ ଆଚରଣ କରିବାକୁ ସମର୍ଥ । ତାହାର ଅନ୍ୟାନ୍ୟ ପ୍ରାଣୀଙ୍କ ଅପେକ୍ଷା କେତେ ଗୁଡ଼ାଏ ବିଶେଷତ୍ୱ ଅଛି, ଯାହା ଗୁଣରେ ସେ ପଶୁପକ୍ଷୀବତ୍ ସେହି Instinct ର ବଶବର୍ତ୍ତୀ ନ ହୋଇ ସମସ୍ତ ବୃତ୍ତିମାନଙ୍କର ଯଥୋଚିତ ପରିଚାଳନା କରିବାକୁ ସମର୍ଥ । ଏହି ହେତୁରୁ ମନୁଷ୍ୟ ପ୍ରାଣୀମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଯେ ସେହି ବିଶେଷତ୍ୱଟି ଉପଲବ୍ଧି କରି ତଦନୁସାରେ କାର୍ଯ୍ୟ କରେ ନାହିଁ, ସେ ଯେ ପଶୁ ଅପେକ୍ଷା କୌଣସି ଅଂଶରେ ଉତ୍କୃଷ୍ଟ ନୁହେ ଏହା ନିଃସନ୍ଦେହ । ଏହି ବିଶେଷତ୍ୱଟି କଣ, ତାହା କାହାରିକୁ ବୁଝାଇ ଦେବାକୁ ହେବ ନାହିଁ ।

ମନୁଷ୍ୟର ହସ୍ତ, ପଦ, ଚକ୍ଷୁ ପ୍ରଭୃତି ଗୋଟିଏ ଗୋଟିଏ ଅଙ୍ଗ । ଏହି ଅଙ୍ଗମାନଙ୍କଦ୍ୱାରା ସେ ସଂସାରରେ ତିଷ୍ଠିବାକୁ ସକ୍ଷମ ହୋଇଅଛି । ସବୁ ଅଙ୍ଗଗୁଡ଼ିକର ଅଭାବ ଦୂରେ ଥାଉ, ଏକର ଅଭାବ ହେଲେ ତାହାର ଗୋଟିଏ ମହତ୍ ଅଭାବ ରହିଯାଏ ଏବଂ ସେଥି ଯୋଗୁଁ ସେ ସଂସାରରେ ଗୋଟିଏ ଘୋରତର ଅଭାବ ବୋଧ କରେ, ଯାହା କି ଅନ୍ୟାନ୍ୟ ଅଙ୍ଗମାନଙ୍କଦ୍ୱାରା କେବେହେଁ ଯଥାର୍ଥରୂପେ ପୂରଣ ହୋଇ ନ ପାରେ । ଅଙ୍ଗଗୁଡ଼ିକ ଥାଇ ସେମାନଙ୍କର ଯଥୋଚିତ ପରିଚାଳନା ନ ହେଲେ ଅନ୍ଧର ଚକ୍ଷୁ ପରି ସେ ଗୁଡ଼ିକ ଭାର ବହନ ମାତ୍ର । ହସ୍ତ ସଞ୍ଚାଳନା ନ କରି କେବଳ ଏହାକୁ ଏକ ସ୍ଥାନରେ ରଖିଲେ ହସ୍ତଦ୍ୱାରା କୌଣସି କାର୍ଯ୍ୟ ସମ୍ପାଦିତ ହେବ ନାହିଁ । ସେହିପରି ଚକ୍ଷୁକୁ କେବଳ ଏକ ଆଡ଼େ ନିବଦ୍ଧ କଲେ ଗୋଟିଏ ଆଡ଼ର ପଦାର୍ଥ ଦେଖାଯିବ, ଅନ୍ୟାନ୍ୟ ପଦାର୍ଥଗୁଡ଼ିକର ଆକାର ଓ ବର୍ଣ୍ଣ ସମ୍ବନ୍ଧରେ କୌଣସି ଜ୍ଞାନ ହେବ ନାହିଁ । ପରନ୍ତୁ ମନୁଷ୍ୟର ଅସ୍ତିତ୍ୱ ଲୁପ୍ତ ହେବ । ମୁଁ ଚକ୍ଷୁ ଖୋଲି ସ୍ଥିରଦୃଷ୍ଟିରେ ଏକ ପଦାର୍ଥକୁ ଚାହିଁ ଅଛି, ଏହି ସମୟରେ ଏକ କୀଟ ଆସି ଚକ୍ଷୁ ନିକଟରେ ଉପସ୍ଥିତ ହେଲା । ଯଦି ମୁଁ ଚକ୍ଷୁର ତାରକାଟି ସଞ୍ଚାଳନ ନ କରି ପୂର୍ବ ଭାବରେ ରଖେ, ତେବେ କୀଟଟି ଚକ୍ଷୁ ମଧ୍ୟରେ ପ୍ରବେଶ ଲାଭ କରି ମହା ଅନିଷ୍ଟ ଉପୁଜାଇ ଦେବ । ସେହିପରି ଚକ୍ଷୁ ସଞ୍ଚାଳନ ନ କଲେ ଅନ୍ୟ ଦିଗରୁ ଏକ ସର୍ପ ଆସି ମୋତେ ଦଂଶନ କରି ପାରେ । ମୁଁ ସର୍ପକୁ ନ

ଦେଖିବାକୁ ଟିକିଏ ମାତ୍ର ସତର୍କ ହୋଇ ପାରିବ ନାହିଁ । ଯାହା ଚର୍ମ ସମ୍ବନ୍ଧରେ, ତାହା ଅନ୍ୟାନ୍ୟ ଅଙ୍ଗ ସମ୍ବନ୍ଧରେ ମଧ୍ୟ ସତ୍ୟ । ଗୋଟିଏ ଅଙ୍ଗ କେବଳ ଗୋଟିଏ ଅଚେତ ସନ୍ନିବିଷ୍ଟ ରହିଲେ ଅର୍ଥାତ୍ ତାହାର ଯଥାରୀତି ସଞ୍ଚାଳନ ନ ହେଲେ ଅନ୍ୟାନ୍ୟ ଅଙ୍ଗଗୁଡ଼ିକର ଯଥୋଚିତ ସଞ୍ଚାଳନ ହେଉଥିଲେହେଁ ମନୁଷ୍ୟର ଦଶା ଘୋର ସଙ୍କଟାପନ୍ନ । ତେବେ ଥରେ ମାତ୍ର କଳ୍ପନା କରି ଦେଖ ଯେ ଯଦି ସମସ୍ତ ଅଙ୍ଗଗୁଡ଼ିକ କୌଣସି ଏକ ମାତ୍ର କାର୍ଯ୍ୟରେ ରହି ଆଦୌ ସଞ୍ଚାଳିତ ନ ହୁଅନ୍ତି ତାହା ହେଲେ ମନୁଷ୍ୟର ଦଶା କଣ ହେବ । ସଂକ୍ଷେପରେ ଫଳ ଏହା ହେବ ଯେ ଅଳ୍ପ କାଳ ମଧ୍ୟରେ ତାହାର ମୃତ୍ୟୁ ଅନିବାର୍ଯ୍ୟ ହୋଇ ପଡ଼ିବ । ଫଳତଃ ଅଙ୍ଗଗୁଡ଼ିକର ଯଥୋଚିତ ସଞ୍ଚାଳନରେ ମନୁଷ୍ୟର ଜୀବନ, ସେମାନଙ୍କର ସ୍ଥିରତାରେ ତାହାର ମୃତ୍ୟୁ ।

ଏ ତ ବାହାର ଅଙ୍ଗର କଥା । ଶରୀରର ଭିତର ଅଙ୍ଗକୁ ଟିକିଏ ନିରୀକ୍ଷଣ କର । ସେଠାରେ ଗତି ଅଛି କି ନାହିଁ ? ବସ୍ତୁତଃ ଅଙ୍ଗଗୁଡ଼ିକର ଗତି ଶରୀର ମଧ୍ୟସ୍ଥ ଯନ୍ତ୍ରଗୁଡ଼ିକର ଗତି ଉପରେ ସମ୍ପୂର୍ଣ୍ଣ ନିର୍ଭର କରେ । ଶରୀର ଗୋଟିଏ ରେଲଗାଡ଼ି । ରେଲଗାଡ଼ି ମଧ୍ୟରେ ଯନ୍ତ୍ରଗୁଡ଼ିକର ଯେପରି ଅନବରତ ଗତି ହେଉଅଛି, ଏଠାରେ ମଧ୍ୟ ସେହିପରି । କୋଇଲା, ଜଳ, ପ୍ରଭୃତି ନ ଯୋଗାଇଲେ ରେଲଗାଡ଼ି ଯେପରି ଅଚଳ ହୋଇ ପଡ଼ିବ, ଶରୀର ମଧ୍ୟରେ ଖାଦ୍ୟ ଦ୍ରବ୍ୟର ଅଭାବ ହେଲେ ମନୁଷ୍ୟ-ରଥର ଗତି ବନ୍ଦ ହୋଇଯିବ । ସଂକ୍ଷେପରେ ଏତିକି କହିଲେ ଚଳେ ଯେ ମନୁଷ୍ୟଶରୀରର ସର୍ବାଙ୍ଗ ଗତି-ବିଶିଷ୍ଟ । ଏଠାରେ ଗତି ନିୟମିତ ନୁହେ ଏପରି ନୁହେ, ସାମାନ୍ୟ ଅଜୀର୍ଣ୍ଣ ରୋଗ ଜାତ ହେଲେ କିପରି ଅନିଷ୍ଟ କରେ, ସେଥିରୁ ସମସ୍ତେ ବୁଝି ପାରିବେ ।

ମାନବ ! ତୋର ପ୍ରଥମ କର୍ତ୍ତବ୍ୟ, କିପରି ଶରୀରର ପ୍ରକ୍ରିୟାରେ କୌଣସି ବ୍ୟାଘାତ ନ ହେବ, ଏଥି ପ୍ରତି ସତର୍କ ହେବା । ଶରୀରର ଗତି ବିଷୟରେ ଯଥୋଚିତ ସାବଧାନ ହୋଇ ତୋର ମାନସିକ ବୃତ୍ତିଗୁଡ଼ିକର ସମ୍ୟକ୍ ପରିଚାଳନା କରିବା ଦ୍ୱିତୀୟ କର୍ତ୍ତବ୍ୟ । ଶାରୀରିକ ଓ ମାନସିକ ସକଳ ବୃତ୍ତିଗୁଡିକର ପରିଚାଳନା କରି ନିଜର ଗତିର ସୁବିଧା କରିବା ଛଡ଼ା ତୋର ଆହୁରି ଗୁରୁତର କାର୍ଯ୍ୟ ଅଛି । ତୋ ଉପରେ ତୋର ସମାଜର ଓ ଜାତିର ଗତି ଉନ୍ନତି ନିର୍ଭର କରେ । ସମାଜ ଗୋଟିଏ ଜୀବନ୍ତ ପ୍ରାଣୀ । ବ୍ୟକ୍ତି-ବୃନ୍ଦ ଏହାର ଗୋଟିଏ ଗୋଟିଏ ଅଙ୍ଗ । ସମାଜ ଜାତି ନିକଟରେ ଏହିପରି ସବୁ । ଅତଏବ ସମାଜ ଓ ଜାତିର ଉନ୍ନତିର ମୂଳରେ ତୋର ଉନ୍ନତିର ଅଧିଷ୍ଠାନ । ଅତଏବ ତୋର ଶରୀର ଓ ମନ ସୁସ୍ଥ ରଖି ନିଶ୍ଚିନ୍ତ ରହିବାର ନୁହେ । ଯେଉଁ ଦୟାଳୁ ପରମେଶ୍ୱର ତୋତେ ଜଗତରେ ଶ୍ରେଷ୍ଠ କରି ସୃଷ୍ଟି କରିଅଛନ୍ତି, ସେହି ମହାମହିମ ଅନନ୍ତ ମହାପ୍ରଭୁଙ୍କର କୀର୍ତ୍ତି ଗାନ କରି ତୋର ସମାଜ ଓ ଜାତିର ଉନ୍ନତିବିଧାନ ନିମିତ୍ତ ତୋର ଗତିବିଶିଷ୍ଟ ହେବା ଉଚିତ ନୁହେ କି ? ସମସ୍ତ ଜଡ଼ଜଗତର ଗତି ତତେ ସ୍ଥିର ରହିବାକୁ ଶିକ୍ଷା ଦେଉଅଛି କି ? ବର୍ଷାକାଳୀନ ସ୍ରୋତସ୍ୱିନୀର ଉଚ୍ଛୃଙ୍ଖଳ ପ୍ରବାହ ଓ ପରକାଳରେ ପାପର ପ୍ରାପ୍ତିସ୍ୱରୂପ ତାହାର ଗ୍ରୀଷ୍ମକାଳୀନ ମୃତ ଅବସ୍ଥା ଗତି ନିୟମିତ କରିବାକୁ କଣ ଶିକ୍ଷା ଦେଉ ନାହିଁ ? ଏ ସମସ୍ତ ଭାବି ନିଜକୁ ଓ ନିଜ ସମାଜ ଓ ଜାତିକୁ ଗତିବିଶିଷ୍ଟ ମନେ କରି ଅନ୍ୟକୁ ଓ ଅନ୍ୟର ସମାଜ ଓ ଜାତିକୁ ଅପେକ୍ଷା-କୃତ ସ୍ଥିର ମନେ କରି ବୃଥା ଅହଙ୍କାରରେ ବକ୍ଷ ସ୍ଫୀତ କରି ସ୍ଥିର ନ ହେଲେ ତୋର ଓ ତୋ ସମାଜର ମଙ୍ଗଳ ସାଧିତ ହେବ ନାହିଁ ତ ?

ଶ୍ରୀ ଦାମୋଦର କର ।

## ଧର୍ମବିଜ୍ଞାନ । (୪)

ଇତିପୂର୍ବରେ ଆମ୍ଭେମାନେ ସାଧାରଣଭାବରେ ସ୍ପେନ୍‌ସାରଙ୍କ ମତ ସମାଲୋଚନା କରି ଦେଖାଇଅଛୁଁ ଯେ ତାଙ୍କର ଦର୍ଶନର ଭିତ୍ତି ଅତ୍ୟନ୍ତ ଅସ୍ଥିର ଜମି ଉପରେ ସ୍ଥାପିତ । ବର୍ତ୍ତମାନ ଆମ୍ଭେମାନେ ତାଙ୍କର ମୂଳ ଗୋଟିଏ ବିଶେଷ ବିଶେଷ ମତ ପରୀକ୍ଷା କରି ଦେଖାଉଁ ଯେ ଏହି ଭୂମି ଉପରେ ସ୍ଥାପିତ ତାଙ୍କର ଦର୍ଶନ-ମନ୍ଦିର ଇଣଭଙ୍ଗୁର ।

ଆମ୍ଭେମାନେ ପୂର୍ବରେ କହିଅଛୁଁ ଯେ ସ୍ପେନ୍‌ସାର ଜଗଦନ୍ତର୍ଗତ ଏକ ମହାଶକ୍ତିରେ ବିଶ୍ୱାସୀ । କିନ୍ତୁ ଏହି ଶକ୍ତିକୁ କୌଣସିରୂପେ ଜୀବର ବିଷୟ ବୋଲି କହିବାକୁ ସେ ପ୍ରସ୍ତୁତ ନୁହନ୍ତି । ଏହି ମଧ୍ୟ-ପଥ ଅବଲମ୍ବନ କରିବାରୁ ତାଙ୍କର ଯେ କିରୂପ ଗୁରୁତର ଭ୍ରାନ୍ତିସମୂହ ଉତ୍ପନ୍ନ ହୋଇଅଛି, ତାଙ୍କ ନିଜ ଲେଖାରୁ ତତ୍ସମ୍ବନ୍ଧରେ ଗୋଟିଏ ଦୃଷ୍ଟାନ୍ତ ଦିଆ ଯାଉଅଛି ।

ସେ ଗୋଟିଏ ସ୍ଥାନରେ କହିଅଛନ୍ତି, "There is an infinite and eternal energy from which everything proceeds." କୌଣସି ବ୍ୟକ୍ତି କି ସ୍ପେନ୍‌ସାରଙ୍କ ମୁଖରୁ ତଦ୍‌ବର୍ଣ୍ଣିତ ମହାଶକ୍ତିର ଏହି ପରିଚୟ ପାଇ ଆଉ ତାଙ୍କୁ ଅଜ୍ଞେୟତାବାଦୀ ବୋଲି ମନେ କରି ପାରନ୍ତି ? ଜଣେ ବିଶ୍ୱାସୀ ଭକ୍ତ କି ଏକ ନିଶ୍ୱାସରେ ତାଙ୍କ ଇଷ୍ଟଦେବତାଙ୍କ ଉପରେ ଏହା ଅପେକ୍ଷା ଅଧିକ ଐଶ୍ୱର୍ଯ୍ୟ ଆରୋପ କରି ପାରନ୍ତି? ସେ ଅନାଦି ଓ ଅନନ୍ତ, ସେ ଶକ୍ତିସ୍ୱରୂପ, ତାଙ୍କଠାରୁ ସମୁଦାୟ ଉତ୍ପନ୍ନ ହୋଇଅଛି । ଆଉ କିଛି ବେଶି ପ୍ରୟୋଜନ ନାହିଁ । ସ୍ପେନ୍‌ସାରଙ୍କ ଅଜ୍ଞେୟତାବାଦ ବିନାଶ ଓ ଜ୍ଞେୟବାଦୀ ବୋଲି ତାଙ୍କୁ ପ୍ରମାଣ କରିବା ପକ୍ଷରେ ଏହାହିଁ ଯଥେଷ୍ଟ । ଋଷି ମଧ୍ୟ ବ୍ରହ୍ମଙ୍କ ସମ୍ବନ୍ଧରେ ଠିକ୍ ଏହି କଥା କହିଅଛନ୍ତି । ସେ ସ୍ପଷ୍ଟରେ କହନ୍ତି—"ଯତୋ ବା ଇମାନି ଭୂତାନି ଜାୟନ୍ତେ," "ଯଦିଦଂ କିଞ୍ଚ ଜଗତ୍ ସର୍ବଂ ପ୍ରାଣ ଏଜତି ନିଃସୃତମ୍", ଆଉ ସ୍ପେନ୍‌ସାର କହନ୍ତି ଇଂରାଜୀରେ—'There is an infinite and eternal energy from which everything proceeds." ଏହି ଦୁହିଁ ଯେତିକି, ସେତିକି ଅନ୍ୟ କୌଣସି ବିଭିନ୍ନତା ନାହିଁ । ବରଂ ଆମ୍ଭମାନଙ୍କର ଭୟ ହୁଏ, ଏହିପରି ସାଦୃଶ୍ୟ ଦେଖି କୌଣସି Orientalist କୌଣସି ଦିନ କହି ପକାଇବେ ଯେ ଉପନିଷଦର ଋଷି ସ୍ପେନ୍‌ସାରଙ୍କ ନିକଟରୁ ଏହି ଭାବ ଗ୍ରହଣ କରିଅଛନ୍ତି ! କାରଣ ଋଷିଙ୍କ "ପ୍ରାଣ" ସ୍ପେନ୍‌ସାରଙ୍କ 'energy' ର ଅନୁବାଦ ଛଡ଼ା ଆଉ କିଛି ନୁହେ ଏବଂ ଋଷିଙ୍କ "ନିଃସୃତମ୍" ସ୍ପେନ୍‌ସାରଙ୍କ "proceeds" ଛଡ଼ା ଆଉ କିଛି ନୁହେ !! ଅଜ୍ଞେୟତାବାଦୀ ସ୍ପେନ୍‌ସାରଙ୍କର ଶକ୍ତିର ଜ୍ଞାନ ଏହିଠାରେ ପର୍ଯ୍ୟବସିତ ନୁହେ । ସେ ଆହୁରି କହୁଅଛନ୍ତି, "The power manifested throughout the universe distinguished as material, is the same power which in ourselves wells up under the form of consciousness." ଜାଣୁ ନାହିଁ ଅଜ୍ଞେୟତାବାଦ ଏହି ଉକ୍ତିର କେଉଁ ସ୍ଥାନରେ ବାସ କରେ । ସେ ଆମ୍ଭମାନଙ୍କ ମଧ୍ୟରେ ଜ୍ଞାନରୂପରେ ଆବିର୍ଭୂତ ହୋଇଅଛନ୍ତି । "ପ୍ରଜ୍ଞା ଚ ତସ୍ମାତ୍ ପ୍ରସୃତା ପୁରାଣୀ ।" ଉପନିଷଦର ଋଷି ମଧ୍ୟ ଏହି କଥା କହୁଅଛନ୍ତି । ତାଙ୍କ ମୁଖରୁ ଯଦି ଆମ୍ଭେମାନେ ଜାଣିଥାନ୍ତୁ ଯେ ସେ ଅଜ୍ଞେୟତାବାଦୀ "ବ୍ରହ୍ମଙ୍କୁ ଜାଣିବା ଅସମ୍ଭବ", ଏହି କଥା ଯଦି ସ୍ଥାନାନ୍ତରରେ ତାଙ୍କ ମୁଖରୁ ନ ବାହାରିଥାନ୍ତା, ତେବେ ଆମ୍ଭେମାନେ ସ୍ପେନ୍‌ସାରଙ୍କୁ କେବେହେଁ ଅଜ୍ଞେୟତାବାଦୀ ବୋଲି କହି ପାରନ୍ତୁ ନାହିଁ । ସ୍ପେନ୍‌ସାରଙ୍କ ଏହି ଉକ୍ତିଗୁଡ଼ିକ ଆମ୍ଭମାନଙ୍କ ନିକଟରେ ଅନିର୍ଦ୍ଦିଷ୍ଟ ପ୍ରଶ୍ନପରି

ପ୍ରତୀୟମାନ ହେଉଅଛି । ସେ ତାଙ୍କ ପୋଷକ ନାହିଁ, ତାହାର ଅନେକର କୌଣସି ପ୍ରୟୋଜନୀୟତା ନାହିଁ । ତଦ୍ୱାରା ଅନେକରେ ଅନ୍ୟମାନେ ପଥ ଦେଖି ପାରିବେ ସତ୍ୟ, କିନ୍ତୁ ଅନ୍ଧ 'ଯେଉଁ ତିମିରରେ ସେହି ତିମିରରେ' ରହି ଯିବ । ସେନ୍‌ସାର ଏହି ତିମିର ଅପସୃତ କଲେ କାହିଁକି? ଅମ୍ଭେମାନେ ତାଙ୍କର ମତର ଯେତେଦୂର ସମାଲୋଚନା କରିଅଛୁଁ, ସେଥିରୁ ସ୍ପଷ୍ଟ ପ୍ରତୀୟମାନ ହେଉଅଛି ଯେ ସେ ଯଦି "ବ୍ରହ୍ମଙ୍କୁ ଜାଣିବା ଅସମ୍ଭବ" ଏହି ଦୁରପୋଷିତ ଭ୍ରାନ୍ତତା ପରିତ୍ୟାଗ କରି ବିଚାରରେ ପ୍ରବୃତ୍ତ ହୁଅନ୍ତେ, ତେବେ ସେ ବ୍ରହ୍ମବାଦୀ ହୋଇ ଯାଆନ୍ତେ । କିନ୍ତୁ ସେ ଏତେଦୂର ଆସି ମଧ୍ୟ ବ୍ରହ୍ମଜ୍ଞାନର ଶୀତଳ ଛାୟାର ଆଶ୍ରୟ ଗ୍ରହଣ କରି ପାରୁ ନାହାନ୍ତି କାହିଁକି? ସାକାରବାଦୀ ହିନ୍ଦୁ ଯେପରି "ନିରାକାରଙ୍କ ଧ୍ୟାନ ହୁଏ ନାହିଁ" ଏହି ଭ୍ରାନ୍ତିର ବଶବର୍ତ୍ତୀ ହୋଇ ପ୍ରକୃତ ସମ୍ପଦ୍ ବ୍ରହ୍ମଜ୍ଞାନରୂପ ଅମୃତରସପାନରୁ ବଞ୍ଚିତ ହୋଇ ପୌତ୍ତଳିକତାରେ ନିମଜ୍ଜିତ ହୋଇଅଛନ୍ତି, ସେନ୍‌ସାର ମଧ୍ୟ ସେହିପରି "ଅସୀମର ଜ୍ଞାନ ସମ୍ଭବ ନୁହେଁ" ଏହି ଦାର୍ଶନିକ କୁସଂସ୍କାରର ବଶବର୍ତ୍ତୀ ହୋଇ ବ୍ରହ୍ମଜ୍ଞାନର ନିଚ୍ଛ ଅଧିକାରରୁ ଅପଣାକୁ ବଞ୍ଚିତ କରିଅଛନ୍ତି । ସୁତରାଂ ଦର୍ଶନାଲୋଚନାରେ ସେ ଯେଉଁ ପରିଶ୍ରମ କରିଅଛନ୍ତି, ତାହା ଭସ୍ମରେ ଘୃତାହୁତି ତୁଲ୍ୟ ନିଷ୍ଫଳ ହୋଇଅଛି । ଏହି ପରିଶ୍ରମ ଦେଖି ମନରେ ବଡ଼ କ୍ଷୋଭ ହୁଏ, ସେଥି ପାଇଁ ଋଷିଙ୍କ କଥାର ପୁନରୁକ୍ତି କରିବାକୁ ଇଚ୍ଛା ହୁଏ —"ଯୋ ବା ଏତଦକ୍ଷରଂ ଗାର୍ଗ୍ୟବିଦିତ୍ୱାସ୍ମାଲ୍ଲୋକାତ୍ ପ୍ରୈତି ସ କୃପଣଃ ।"

ଯାହାହେଉ, ଏହି ଯେ ମହାଶକ୍ତି, ଯାହାଠାରୁ ସମସ୍ତ ଜଗତ ଉଦ୍ଭୂତ ହୋଇଅଛି ଏବଂ ଯେ ଆମ୍ଭମାନଙ୍କର ଜ୍ଞାନରୂପରେ ପ୍ରକାଶ ପାଉଅଛନ୍ତି, ସେହି ମହାଶକ୍ତିର ଜ୍ଞାନ ଅମ୍ଭେମାନେ କିପରି ଲାଭ କଲୁଁ? ସେନ୍‌ସାର ଏଠାରେ ମଧ୍ୟ ବୈଦାନ୍ତିକ ଋଷିଙ୍କ ସଙ୍ଗରେ ଏକମତ ହୋଇ କହିଅଛନ୍ତି, "ଆତ୍ମଜ୍ଞାନହିଁ ବ୍ରହ୍ମଜ୍ଞାନର ଭିତ୍ତି ।" ସେ କହୁଅଛନ୍ତି, "*We are disabled from conceiving mechanical force in itself undr a form different from mechanical force as ordinarily presented to consciousness.* The axiom "Action and reaction are equal and opposite", applied as it is not only to the actions of objects on one another, but to our actions on them, implies a conception of the two forces as equivalent, both in quantity and nature; seeing that we cannot conceive a relation of equality between magnitudes that are not connatural......... ....................."Why, then, can we not represent to ourselves the force with which a body resists an effort to move it, as something quite unlike the feeling of muscular tension which constitutes the effort? There are all-sufficient reasons...........................

*There exists no alternative mode of representing this force to consciousness* —no other experience, or combination of experiences, by which we can figure it to our minds.................... To frame a conception of force in the *non-ego* different from the conception we have of force in the ego is utterly beyond our power."

ଏହି ସ୍ଥାନରେ ପଣ୍ଡିତପ୍ରବରଙ୍କୁ ଗୋଟିଏ ପ୍ରଶ୍ନ କରୁଅଛୁଁ—ଅମ୍ଭେମାନେ ଜଗତର ସଂସ୍ପର୍ଶରେ ଯେଉଁ ମହାଶକ୍ତିର ପରିଚୟ ପାଉଁ, ତାହା ଚିତ୍-ଶକ୍ତି ନା (ଯଦି ଜଡ଼ଶକ୍ତି ବୋଲି କହୁଥାଏ) ଜଡ଼ଶକ୍ତି? ଅମ୍ଭେମାନେ ଆତ୍ମାର (Ego) ମଧ୍ୟରେ ଯେଉଁ ଶକ୍ତିର ପରିଚୟ ପାଉଁ, ତାହା ତ ଆତ୍ମ-ଶକ୍ତି, ଇଚ୍ଛା-ଶକ୍ତି । ଅମ୍ଭେମାନେ ଆତ୍ମାରେ ଯେଉଁ ଶକ୍ତିର ପରିଚୟ ପାଉଁ, ତଦ୍ଦ୍ୱାରା ଅନ୍ୟ

କୌଣସି ଶକ୍ତିର ଧାରଣା ଆମ୍ଭମାନଙ୍କ ପକ୍ଷରେ ଯଦି ସମ୍ପୂର୍ଣ୍ଣ ଅସମ୍ଭବ ହୁଏ, ତେବେ ଜଗତରେ ଯେଉଁ ମହାଶକ୍ତି ଆତ୍ମପ୍ରକାଶ କରୁଅଛନ୍ତି, ସେ ଚିତ୍-ଶକ୍ତି, ଇଚ୍ଛା-ଶକ୍ତି ବ୍ୟତୀତ ଆଉ କିଛି ହୋଇ ନ ପାରନ୍ତି । କିନ୍ତୁ ଆଦିକାରଣ ଜ୍ଞାନ-ସ୍ୱରୂପ କି ନା, ଏହି ମହାଶକ୍ତି ଜ୍ଞାନଯୁକ୍ତା କି ନା, ସେ ସମ୍ବନ୍ଧରେ ସ୍ପେନ୍ସାର ସ୍ପଷ୍ଟରୂପେ କିଛି କହିନାହାନ୍ତି । ସେ ସ୍ପଷ୍ଟ ସ୍ୱୀକାର କରନ୍ତୁ ଅବା ନ କରନ୍ତୁ "To frame a conception of force in the non-ego different from the conception we have of the force in the ego is utterly beyond our power." ଏହି ସ୍ୱୀକାରୋକ୍ତିରେ ସେ ନିଜ ହସ୍ତରେ ସ୍ୱୀୟ ଅଜ୍ଞେୟତାବାଦ-ବୃକ୍ଷର ମୂଳରେ କୁଠାରଘାତ କରିଅଛନ୍ତି । ବର୍ତ୍ତମାନ ଆଉ ଆଦିକାରଣରେ ଶକ୍ତି ଆରୋପ କରି ଜ୍ଞାନ ଆରୋପ ନ କଲେ ଚଳିବ ନାହିଁ । ଆମ୍ଭେମାନେ ଆମ୍ଭମାନଙ୍କ ମଧ୍ୟରେ ଯେଉଁ ଶକ୍ତିର ପରିଚୟ ପାଉଁ, ତାହା ଆତ୍ମାଠାରୁ କୌଣସି ବସ୍ତୁ ନୁହେ, ସୁତରାଂ କୌଣସି ବସ୍ତୁରେ ଏତଦନୁରୂପ ଶକ୍ତି ଆରୋପ କଲେ ସଙ୍ଗେ ସଙ୍ଗେ ତାହାକୁ ଆତ୍ମବସ୍ତୁ ବୋଲି ସ୍ୱୀକାର କରିବାକୁ ହେବ, ନତୁବା ଉପରୋକ୍ତ ଉକ୍ତିର କୌଣସି ସାର୍ଥକତା ରହିବ ନାହିଁ । ଆତ୍ମଜ୍ଞାନହିଁ ଯେ ସକଳ ଜ୍ଞାନର ଭିତ୍ତି, ସ୍ପେନ୍ସାର ତାହା ବିଶେଷଭାବରେ ହୃଦୟଙ୍ଗମ କରି ମଧ୍ୟ ଗୋଟିଏ ଦାର୍ଶନିକ କୁସଂସ୍କାର ପ୍ରତି ଅତିରିକ୍ତ ପକ୍ଷପାତିତ୍ୱବଶତଃ ଏହାର ପରିଣତ ଓ ଶୁଭଫଳ ଲାଭରୁ ବଞ୍ଚିତ ହୋଇଅଛନ୍ତି । ଆମ୍ଭେମାନେ ଯେଉଁ ଆଲୋଚନା କଲୁଁ, ସେଥିରୁ ସ୍ପଷ୍ଟ ପ୍ରମାଣିତ ହେଉଅଛି ଯେ ଅତି ଅଳ୍ପାୟାସରେ ସ୍ପେନ୍ସାରଙ୍କ ମତକୁ ବ୍ରହ୍ମ-ବାଦରେ ପରିଣତ କରାଯାଇ ପାରେ । ଯେଉଁ ମତ ସ୍ୱୀକାର କରେ ଯେ ଆଦିକାରଣ ଶକ୍ତିସ୍ୱରୂପ ଓ ଜ୍ଞାନସ୍ୱରୂପ, ଅନାଦି ଓ ଅନନ୍ତ, ତାହାଙ୍କଠାରୁ ସମସ୍ତ ବିଶ୍ୱ ନିଃସୃତ ହୋଇଅଛି ଏବଂ ସେ ଆମ୍ଭ-ମାନଙ୍କ ଜ୍ଞାନରୂପରେ ପ୍ରକାଶ ପାଉଅଛନ୍ତି, ସେ ମତକୁ ଆମ୍ଭେମାନେ କିପରି ଅଜ୍ଞେୟତାବାଦ ବୋଲିବୁଁ ? ବ୍ରହ୍ମବାଦୀଗଣ ବ୍ରହ୍ମଙ୍କ ଦାର୍ଶନିକ ସ୍ୱରୂପ ସମ୍ବନ୍ଧରେ ଏତଦତିରିକ୍ତ ଆଉ ବେଶି କିଛି ନିର୍ଦ୍ଦେଶ କରି ପାରନ୍ତି ନାହିଁ ।

ସ୍ପେନ୍ସାରଙ୍କ ଦର୍ଶନର ଅସଙ୍ଗତି-ଦୋଷ ଏହି-ଠାରେ ପର୍ଯ୍ୟବସିତ ନୁହେ । ସ୍ପେନ୍ସାର ଏହି ଅଜ୍ଞେୟ ଶକ୍ତି ପ୍ରତି ଭକ୍ତି ଶ୍ରଦ୍ଧା ଅର୍ପଣର ବ୍ୟବସ୍ଥା କରି ମନେ କରିଅଛନ୍ତି ଯେ ଏଥିରେ ତାଙ୍କର ଅଜ୍ଞେୟତାବାଦ ଏବଂ ମାନବର ସ୍ୱାଭାବିକ ଧର୍ମ-ପ୍ରବୃତ୍ତିର ଚରିତାର୍ଥତା ଏହି ଦୁଇ କୂଳ ରକ୍ଷା ପାଇଅଛି । କିନ୍ତୁ ସେ ଚେଷ୍ଟା ନିଷ୍ଫଳ ! କୌଣସି ଅଜ୍ଞେୟ ବସ୍ତୁ ପ୍ରତି ଭକ୍ତି ଶ୍ରଦ୍ଧା ସମ୍ଭବ ନୁହେ । ଅବଶ୍ୟ, ଧର୍ମପ୍ରବୃତ୍ତିର ଚରିତାର୍ଥତା ପାଇଁ ଉପାସ୍ୟ ବସ୍ତୁ କିୟତ ପରିମାଣରେ ଅବିଜ୍ଞାତ ହେବା ପ୍ରୟୋଜନ, କିନ୍ତୁ ଏକାନ୍ତ ଅଜ୍ଞେୟ ହେଲେ ଚଳିବ ନାହିଁ । ମୋହର ବର୍ତ୍ତମାନ ଜ୍ଞାନ ତାହାଙ୍କୁ ଆୟତ୍ତ କରି ପାରୁ ନାହିଁ, ଏହି ପର୍ଯ୍ୟନ୍ତ । କିନ୍ତୁ ତାହାଙ୍କର ମୋହର ଜ୍ଞାନ ସଙ୍ଗେ ସମଭାବାପନ୍ନ (allied) ହେବା ଆବଶ୍ୟକ, ନତୁବା ତାହାଙ୍କର ଏହି ଅନାୟତ୍ତୀକରଣୀୟତା ମଧ୍ୟ ମୋ ମଧ୍ୟରେ କୌଣସି ଧର୍ମଭାବ ଉଦ୍ବୁଦ୍ଧ କରିବାକୁ କ୍ଷମ ହେବ ନାହିଁ । ସୁତରାଂ ମାନବର ଯେଉଁ ଧର୍ମଭାବ ଉପାସ୍ୟ ବସ୍ତୁରେ ପ୍ରଯୋଜ୍ୟ, ତାହା କୌଣସି ଅଜ୍ଞେୟ ବସ୍ତୁରେ ଅର୍ପିତ ହୋଇ ନ ପାରେ । ଯେ ମୋ ଅପେକ୍ଷା ଉଚ୍ଚ, ଯେ ମୋ ଅପେକ୍ଷା ଶ୍ରେଷ୍ଠ, ତାଙ୍କର ଅନୁଧ୍ୟାନରେ ମୋର ଅନ୍ତରରେ ଶ୍ରଦ୍ଧା, ଭକ୍ତି, ଭୟ ଓ ବିସ୍ମୟର ଉଦ୍ରେକ ହୋଇ ପାରେ । ଯେ ଅଜ୍ଞେୟ, ସେ ମୋ ଅପେକ୍ଷା ଉଚ୍ଚ କି ନୀଚ, ଶ୍ରେଷ୍ଠ କି ନିକୃଷ୍ଟ, ତାହା ଜଣା ନାହିଁ; ସୁତରାଂ ତାଙ୍କ ସମ୍ବନ୍ଧରେ କୌଣସି ଭାବ ସମ୍ଭବ ନୁହେ, ଧର୍ମଭାବ ତ ଦୂରର କଥା । ବସ୍ତୁଦ୍ୱୟ ମଧ୍ୟରେ ଉଚ୍ଚ ନୀଚ, ଶ୍ରେଷ୍ଠ ନିକୃଷ୍ଟର ସମ୍ବନ୍ଧ ନିର୍ଣ୍ଣୟ କରିବାକୁ ହେଲେ ଉଭୟଙ୍କୁ ସମପ୍ରକୃତିବିଶିଷ୍ଟ (con-natural) ହେବାକୁ ହେବ, ନତୁବା ଉଭୟ ମଧ୍ୟରେ

କୌଣସି ସମ୍ବନ୍ଧ ସ୍ଥିରୀକୃତ ହୋଇ ନ ପାରେ । ଏକ ମାଷ ଓ ଏକ ମହଣ ମଧ୍ୟରେ ଏପରି କୌଣସି ସମ୍ବନ୍ଧ ନାହିଁ, କିନ୍ତୁ ଏକ ମହଣ ଓ ପାଞ୍ଚ ମହଣ ମଧ୍ୟରେ ଅଛି । ଯଦି ଅଜ୍ଞେୟ ବସ୍ତୁର ଧ୍ୟାନରେ ଭକ୍ତିଭାବର ଉଦ୍ରେକ କରିବାକୁ ଇଚ୍ଛା କର, ତେବେ ଧ୍ୟାତା ଓ ଧ୍ୟେୟ ମଧ୍ୟରେ ଉଚିତ ମତ ସମ୍ବନ୍ଧ ନିର୍ଦ୍ଦେଶ କର ଏବଂ ତାହା କରିବାକୁ ଗଲେ ଯେତେବେଳେ ଉଭୟଙ୍କର ସମଭାବାପନ୍ନ ହେବା ପ୍ରୟୋଜନ, ସେତେବେଳେ ଉପାସ୍ୟ ଆଉ ଅଜ୍ଞେୟ ହୋଇ ନ ପାରନ୍ତି । ସୁତରାଂ ସ୍ପେନ୍ସରଙ୍କ ଅଜ୍ଞେୟ ଉପାସ୍ୟ ଅଲୀକ ବୋଲି ପ୍ରତୀୟମାନ ହେଉଅଛି । ବିଶେଷତଃ, ଯେଉଁ ମାନବର ସମଗ୍ର ଜୀବନଟା ଜ୍ଞାନର ବିକାଶ ବ୍ୟତୀତ ଆଉ କିଛି ନୁହେ, ସେହି ମାନବଜୀବନର ସର୍ବଶ୍ରେଷ୍ଠ ବସ୍ତୁ ଧର୍ମଭାବକୁ ଅଜ୍ଞାନତା ଉପରେ ପ୍ରତିଷ୍ଠିତ କରିବାକୁ ଯିବା ପରି ଅସଙ୍ଗତ ବ୍ୟାପାର ଆଉ କଣ ହୋଇ ପାରେ ?

ଯାହାହେଉ, ସ୍ପେନ୍ସରଙ୍କ ଦର୍ଶନ ଆଲୋଚନା କରି ଦେଖିଲୁଁ ଯେ ତାଙ୍କର ଅଜ୍ଞେୟତାବାଦରେ ଅଜ୍ଞେୟ ବସ୍ତୁ ଅନାଦି, ଅନନ୍ତ ଓ ସର୍ବବ୍ୟାପୀ; ଶକ୍ତିସ୍ୱରୂପ ଓ ଜ୍ଞାନସ୍ୱରୂପ; ତାହାଙ୍କଠାରୁ ସମସ୍ତ ଜଗତ ଉଦ୍ଭୂତ ହୋଇଅଛି ଏବଂ ସେ ଆମ୍ଭମାନଙ୍କ ମଧ୍ୟରେ ଜ୍ଞାନରୂପରେ ପ୍ରକାଶ ପାଉଅଛନ୍ତି । ଆମ୍ଭେମାନେ ଆହୁରି ମଧ୍ୟ ଦେଖୁଅଛୁଁ ଯେ ଏହି ଯେ ଶକ୍ତି, ତାହା ଆମ୍ଭମାନଙ୍କ ଆତ୍ମଶକ୍ତିଠାରୁ ଭିନ୍ନପ୍ରକୃତିସମ୍ପନ୍ନ ହୋଇ ନ ପାରେ । ସୁତରାଂ ସ୍ପେନ୍ସରଙ୍କ ଦର୍ଶନର ପରିଣତି ଅଧ୍ୟାତ୍ମବାଦର (Idealism) ଉପରେ ପ୍ରତିଷ୍ଠିତ ବ୍ରହ୍ମବାଦରେ । କିନ୍ତୁ ସେ ଅଧ୍ୟାତ୍ମବାଦ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି । ତାଙ୍କ ମନରେ ଗୋଟିଏ ଭୟ ଅଛି ଯେ ତାହା ହେଲେ କ୍ରମବିକାଶବାଦ (Evolution theory) ଅପ୍ରାମାଣ୍ୟ ହୋଇ ପଡ଼ିବ । ସେ କହିଅଛନ୍ତି—"Should the idealist be right, the doctrine of Evolution is a dream."

ଆମ୍ଭେମାନେ ଯେଉଁ ଦିନ ସ୍ପେନ୍ସରଙ୍କ ଏହି ଉକ୍ତିଟି ପ୍ରଥମରେ ପାଠ କଲୁଁ, ସେତେବେଳେ ଟିକିଏ ମୁସ୍କିଲରେ ପଡ଼ିଥିଲୁଁ । ଅଧ୍ୟାତ୍ମବାଦ ଓ କ୍ରମବିକାଶବାଦ ଉଭୟରେ ଆମ୍ଭେମାନେ ବିଶ୍ୱାସ କରୁଥିଲୁଁ । ମନେ କରୁଥିଲୁଁ ଏହି ଦୁଇ ମତ ମଧ୍ୟରେ କୌଣସି ଅସାମଞ୍ଜସ୍ୟ ନାହିଁ, ଅଥବା ଏ ସମ୍ବନ୍ଧରେ କୌଣସି ପ୍ରଶ୍ନ ମନରେ ଉଦିତ ହୋଇ ନାହିଁ । କିନ୍ତୁ ସ୍ପେନ୍ସର କହି ଦେଲେ, ଗୋଟିଏ ସତ୍ୟ ହେଲେ ଅନ୍ୟଟି ନିଶ୍ଚୟ କଳ୍ପନା ମାତ୍ର । ସେତେବେଳେ ମନରେ ଗୋଟିଏ ମହା ଆନ୍ଦୋଳନ ଉପସ୍ଥିତ ହେଲା । ଜଣେ ମହାତ୍ମା ଆମ୍ଭମାନଙ୍କୁ ଏହି ମାନସିକ ଅଶାନ୍ତିରୁ ମୁକ୍ତ କରି ଦେଲେ । ସେ ସ୍ୱର୍ଗୀୟ ମହାତ୍ମା T.H. Green. ତାଙ୍କର ଉପଦେଶରୁ ବୁଝିଲୁଁ ଯେ ସ୍ପେନ୍ସର ଗୋଟିଏ ମହାଭ୍ରାନ୍ତିରେ ପତିତ ହୋଇଅଛନ୍ତି । ପ୍ରକୃତ ଅଧ୍ୟାତ୍ମବାଦ (Idealism) ସଙ୍ଗରେ କ୍ରମବିକାଶବାଦର (Evolution) କୌଣସି ବିରୋଧ ନାହିଁ । ସ୍ପେନ୍ସରଙ୍କ ଅଧ୍ୟାତ୍ମବାଦର ଦୌଡ଼ ବାର୍କଲି (Berkeley), ହ୍ୟୁମ (Hume) ଏବଂ କାଣ୍ଟଙ୍କ (Kant) Transcendental Æsthetic ପର୍ଯ୍ୟନ୍ତ । ତାଙ୍କର ଗ୍ରନ୍ଥ ପାଠ କଲେ ଦେଖାଯାଏ, ସେଗୁଡ଼ିକ ମଧ୍ୟ ସେ ବିଶେଷ ଭାବରେ ମନୋନିବେଶ ସହ ଆଲୋଚନା କରି ନାହାନ୍ତି । ସୁତରାଂ ସାଧାରଣଙ୍କ ମଧ୍ୟରେ ଅଧ୍ୟାତ୍ମବାଦ (Idealism) ସମ୍ବନ୍ଧରେ ଯେ ଭ୍ରାନ୍ତି ଦେଖାଯାଏ, ତାଙ୍କ ମନରେ ମଧ୍ୟ ସେହି ଭ୍ରାନ୍ତି ସମ୍ପୂର୍ଣ୍ଣରୂପେ ବିଦ୍ୟମାନ । ସେହି ହେତୁରୁ ସେ ଅଧ୍ୟାତ୍ମବାଦର (idealism) ନାମରେ ଭୀତ ହୋଇଅଛନ୍ତି । ସେ ଅଧ୍ୟାତ୍ମବାଦର ମସ୍ତକରେ "ଜଗତଟା ଆମ୍ଭମାନଙ୍କ ବ୍ୟକ୍ତିଗତ ମନର କ୍ରିୟା"—ଏହି ଭ୍ରାନ୍ତ ମତ ଆରୋପ କରି କ୍ରମବିକାଶବାଦର ସଂରକ୍ଷଣ ନିମିତ୍ତ ବ୍ୟସ୍ତ ହୋଇ ପଡ଼ିଅଛନ୍ତି । "ଚିଲ କାନ ନେଇଗଲା" ଶୁଣି ଚିଲର ପଶ୍ଚାତରେ ଦଉଡ଼ିଅଛନ୍ତି, କିନ୍ତୁ କାନରେ ହାତ ଦେଇ ଦେଖି ନାହାନ୍ତି—ବାସ୍ତବିକ କାନ ଚିଲ

ନେଇଅଛି କି ନାହିଁ ! ବସ୍ତୁତଃ ପ୍ରକୃତ ଅଧ୍ୟାତ୍ମବାଦ ସଙ୍ଗରେ କ୍ରମବିକାଶବାଦର କୌଣସି ଅସାମଞ୍ଜସ୍ୟ ନାହିଁ, ବରଂ ସ୍ପେନସାର-ବ୍ୟାଖ୍ୟାତ କ୍ରମବିକାଶବାଦର ବିଶେଷ ସାମଞ୍ଜସ୍ୟ ରହିଅଛି । ସ୍ପେନସାର ତାଙ୍କର କ୍ରମବିକାଶବାଦର ବ୍ୟାଖ୍ୟାରେ କହନ୍ତି ଯେ ମାନବ ମଧ୍ୟରେ ଯେ ସମସ୍ତ ଉଚ୍ଚ ଆଧ୍ୟାତ୍ମିକ ବୃତ୍ତି ବିକଶିତ ହୋଇଅଛି, ତାହା କ୍ରମବିକାଶର ଫଳ । ଧୀରେ ଧୀରେ ବଂଶପରମ୍ପରା ଅନୁସାରେ ତାହା ବିକଶିତ ହୋଇଅଛି । ବର୍ତ୍ତମାନ ପ୍ରଶ୍ନ ଏହି, ମୋହର ମନୋବୃତ୍ତି ଧୀରେ ଧୀରେ ମୋର ମନ ମଧ୍ୟରେ ବିକଶିତ ହୋଇ ପାରେ, ବଂଶପରମ୍ପରାନୁସାରେ ବିକଶିତ ହେବ କିପରି ? ସ୍ପେନସାର ଉତ୍ତର ଦେବେ, ଶରୀର ମଧ୍ୟ ଦେଇ । ଶରୀର ତ ବହିରାବରଣ ମାତ୍ର । ଶରୀରର ଉପରେ ବ୍ୟାଖ୍ୟାରେ ମନୋବୃତ୍ତିର ବ୍ୟାଖ୍ୟା ହୁଏ ନାହିଁ । ମୋହର କୌଣସି ବ୍ୟକ୍ତିଗତ (individual) ମନୋବୃତ୍ତିର ଉନ୍ନତି କେବେହେଁ ମୋହର ମନର ବାହାରେ ହେବା ସମ୍ଭବ ନୁହେ । ଅନ୍ୟ ଜଣକର ମାନସିକ ଉନ୍ନତି ମୋହର ଉପରେ ପ୍ରବାହିତ ହୋଇ ନ ପାରେ । ଏଠାରେ ଆତ୍ମାର ଏକତ୍ୱର ବ୍ୟାଖ୍ୟା ଉପରେ ସକଳ ମୀମାଂସା ନିର୍ଭର କରୁଅଛି । ଯଦି ମୋହର କୌଣସି ମନୋବୃତ୍ତି ବଂଶପରମ୍ପରାକ୍ରମେ ଉଦ୍ଭବ ହୋଇଥାଏ, ତେବେ ମତେ ବଂଶପରମ୍ପରା ସଙ୍ଗରେ ସଂଯୁକ୍ତ କରିବା ପାଇଁ ଜଣେ ପରମାତ୍ମା ସ୍ୱୀକାର କରିବାକୁ ହେବ, ଯେ ମୋହର ଓ ପୂର୍ବବର୍ତ୍ତୀ ସମସ୍ତଙ୍କର ଆତ୍ମାରୂପରେ ପ୍ରକାଶ ପାଉଅଛନ୍ତି । ନତୁବା ବଂଶପରମ୍ପରାନୁଯାୟୀ ମନୋବୃତ୍ତି-ବିକାଶର କୌଣସି ସମ୍ଭାବନା ନାହିଁ । ପ୍ରକୃତ ଅଧ୍ୟାତ୍ମବାଦ ଏହି ପରମାତ୍ମାଙ୍କୁ ନିର୍ଦ୍ଦେଶ କରୁଅଛି । ସୁତରାଂ ଅଧ୍ୟାତ୍ମବାଦ ବ୍ୟତୀତ କ୍ରମବିକାଶର ବ୍ୟାଖ୍ୟା ହୋଇ ନ ପାରେ । ଅତଏବ ଦେଖା ଯାଉଅଛି, କ୍ରମବିକାଶବାଦ ସଙ୍ଗରେ ଅଧ୍ୟାତ୍ମବାଦର କୌଣସି ବିରୋଧ ନାହିଁ । ବରଂ ନିରପେକ୍ଷ ସୁଦୃଢ଼ ବନ୍ଧୁତା-ସୂତ୍ରରେ ଆବଦ୍ଧ । ବର୍ତ୍ତମାନ ସ୍ପଷ୍ଟ ଦେଖା ଯାଉଅଛି, ଯେଉଁମାନେ ଯେ କହିଅଛନ୍ତି, — Should the idealist be right, the doctrine of evolution is a dream." ତାହା ଯଥାର୍ଥ ନୁହେ । ବରଂ ଏହି କଥାହିଁ ଠିକ୍ "The doctrine of Evolution is true because the idealist is right. ଆମ୍ଭମାନଙ୍କର ଆଲୋଚନାରେ ଏହି କଥା ଦୃଢ଼ୀଭୂତ ହେଲା ଯେ ସ୍ପେନସାରଙ୍କ ମତକୁ ବିଶେଷ ଭାବରେ ନିଗାଡ଼ି ତହିଁର ସାର ବାହାର କଲେ ତାହା ଅଧ୍ୟାତ୍ମବାଦରେ ପ୍ରତିଷ୍ଠିତ ବ୍ରହ୍ମବାଦରେ ପରିଣତ ହେବ ।

ଆମ୍ଭେମାନେ ଏ ପର୍ଯ୍ୟନ୍ତ ବିଚାର କରି ଦେଖିଲୁଁ, ଯେଉଁମାନେ କହନ୍ତି, "ବ୍ରହ୍ମଜ୍ଞାନ ସମ୍ଭବ ନୁହେ" ସେମାନଙ୍କ ମତରେ କୌଣସି ସାରବତ୍ତା ନାହିଁ । ସେମାନଙ୍କ ଯୁକ୍ତିପ୍ରଣାଳୀ ଅତ୍ୟନ୍ତ ଭ୍ରାନ୍ତ ଏବଂ ନାନା ପ୍ରକାର ସ୍ୱବିରୋଧିତା-ଦୋଷ-ଦୁଷ୍ଟ । କିନ୍ତୁ ଏଥିରେ ମଧ୍ୟ ଆମ୍ଭମାନଙ୍କର ଅଭୀଷ୍ଟ ପୂର୍ଣ୍ଣ ହେଉ ନାହିଁ । ଏହାଦ୍ୱାରା ବ୍ରହ୍ମଜ୍ଞାନର ପଥ ନିଷ୍କଣ୍ଟକ ହେଲା ସତ୍ୟ, କିନ୍ତୁ ଆମ୍ଭମାନଙ୍କର ଗନ୍ତବ୍ୟ ସ୍ଥାନରେ ପହଞ୍ଚିବା ପକ୍ଷରେ ସକଳ ବିଘ୍ନ ନିରାକୃତ ହେଲା ନାହିଁ । ଏପରି ଏକ ଶ୍ରେଣୀର ଲୋକ ଅଛନ୍ତି, ଯେଉଁମାନେ ମନେ କରନ୍ତି ଯେ ମାନବ ପକ୍ଷରେ ବ୍ରହ୍ମଜ୍ଞାନ ସମ୍ଭବ, କିନ୍ତୁ ସେ ଜ୍ଞାନ ପ୍ରତ୍ୟକ୍ଷସିଦ୍ଧ, ତାହା ବିଚାରଶକ୍ତିର ଅଧିଗମ୍ୟ ନୁହେ । ବ୍ରହ୍ମ ମାନବର ଅଧିଗମ୍ୟ ହେଲେହେଁ ମାନବଜ୍ଞାନ ତତ୍ସମ୍ବନ୍ଧୀୟ କୌଣସି ବିଚାରରେ କ୍ଷମ ନୁହେ । ଯଦି ବ୍ରହ୍ମଜ୍ଞାନ ଲାଭ କରିବାକୁ ହୁଏ, ତେବେ ଜ୍ଞାନର ଅତୀତ କୌଣସି ଇନ୍ଦ୍ରିୟ (organ) ସାହାଯ୍ୟରେ ତାହା ଲାଭ କରିବାକୁ ହେବ । ଜ୍ଞାନର ମୀମାଂସା ସେ ସ୍ଥାନରେ ପହଞ୍ଚି ପାରେ ନାହିଁ । ମାନବଚିନ୍ତା (Reason or rational thought) ସାହାଯ୍ୟରେ ବ୍ରହ୍ମଙ୍କୁ ଧାରଣା କରି-

ଯାଇ ନ ପାରେ । କିନ୍ତୁ ସହଜଜ୍ଞାନ (Intuition) ବା ବିଶ୍ୱାସ (Faith) ସାହାଯ୍ୟରେ ତାହାଙ୍କୁ ଲାଭ କରାଯାଇ ପାରେ । ଅଜ୍ଞେୟବାଦୀଗଣ କହୁଅଛନ୍ତି, ସସୀମ ମାନବର ଏପରି କୌଣସି ଇନ୍ଦ୍ରିୟ ନାହିଁ ଯଦ୍ୱାରା ସେ ଅସୀମ ବ୍ରହ୍ମଙ୍କ ସାକ୍ଷାତ୍ ଲାଭ କରି ପାରେ, କାରଣ ଜ୍ଞାନ (Reason) ବ୍ୟତୀତ ମାନବର ଜାଣିବାର ଅନ୍ୟ କୌଣସି ଶକ୍ତି (Faculty) ନାହିଁ ଏବଂ ଜ୍ଞାନ(Reason) ଦ୍ୱାରା ଜାଣିବା ଅର୍ଥ ଅସୀମଙ୍କୁ ସସୀମ କରିବା । ଏମାନେ କହନ୍ତି, ଜ୍ଞାନ ବ୍ରହ୍ମଙ୍କୁ ଧାରଣା କରିବାକୁ ଅକ୍ଷମ ହେଲେହେଁ ଅନ୍ୟ ଦ୍ୱାରଦେଇ ବ୍ରହ୍ମ ମାନବ ଅନ୍ତରରେ ପ୍ରକାଶିତ ହୁଅନ୍ତି । ଏମାନଙ୍କ ମତରେ ବ୍ରହ୍ମଜ୍ଞାନ (Knowledge of God) ସମ୍ଭବ, କିନ୍ତୁ ବ୍ରହ୍ମଜ୍ଞାନ (Theology or the scientific treatment of relegion) ସମ୍ଭବ ନୁହେଁ । ଯେହେତୁ ମାନବଚିନ୍ତା (Rational thought) ବ୍ରହ୍ମରାଜ୍ୟରେ ପ୍ରବେଶ କରି ପାରେ ନାହିଁ । ଏହି ମତ ପୂର୍ବୋକ୍ତ ଅଜ୍ଞେୟବାଦର ପ୍ରତିବାଦସ୍ୱରୂପ ଅବତୀର୍ଣ୍ଣ ହୋଇଅଛି ବୋଲି ମନେ ହୁଏ । ଯେହେତୁ "ବ୍ରହ୍ମଙ୍କୁ ଜାଣିବା ଅସମ୍ଭବ" ଅଜ୍ଞେୟବାଦର ଧର୍ମବିନାଶକାରୀ ଏହି ମତ ଧର୍ମବିଶ୍ୱାସୀର ମନରେ କେବେହେଁ ସ୍ଥାନ ପାଇ ନ ପାରେ । ହେଥି ନିମନ୍ତେ କୁତାର୍କିକର କୂଟ ତର୍କଜାଲ ଭେଦ କରିବାକୁ ଅସମର୍ଥ ହୋଇ ସ୍ୱୀୟ ସ୍ୱୀୟ ଧର୍ମବିଶ୍ୱାସକୁ ଅକ୍ଷୁଣ୍ଣ ରଖିବା ମାନସରେ ବିଶ୍ୱାସୀଗଣ ଜ୍ଞାନକୁ ଅର୍ଦ୍ଧଚନ୍ଦ୍ର ଦେଇ ଧର୍ମରାଜ୍ୟର ବାହାରକୁ ବିଦାୟ କରି ଦେଲେ । କହିଲେ, ଧର୍ମଜୀବନର ଅଭିଜ୍ଞତାରେ ଯାହା ଲବ୍ଧ ହୁଏ, ଜ୍ଞାନ ତାହାର ଶତାଂଶର ଏକାଂଶ ପ୍ରଦାନ କରେ ନାହିଁ, ବରଂ ଯାହା ପ୍ରତ୍ୟକ୍ଷ ସହଜସିଦ୍ଧ ନିଶ୍ଚିତ ସତ୍ୟ, ତାହା ସମ୍ବନ୍ଧରେ ନାନା ସନ୍ଦେହ ଓ ଅପୂର୍ଣ୍ଣତା ଆଣି ଦିଏ । ସୁତରାଂ ଧର୍ମଜଗତରେ କୌଣସି ମୀମାଂସାପାଇଁ ଜ୍ଞାନର ଆଶ୍ରୟ ଗ୍ରହଣ କରିବା ସୂର୍ଯ୍ୟାଲୋକ ପରିତ୍ୟାଗ ପୂର୍ବକ ଅନ୍ଧକାରମୟ ଗୃହରେ ଦୀପାଲୋକ ସାହାଯ୍ୟରେ ବସ୍ତୁ ନିର୍ଣ୍ଣୟ କରିବାର ଚେଷ୍ଟା ପରି ହାସ୍ୟୋଦ୍ଦୀପକ ! ଉପାସନା କାଳରେ ସାକ୍ଷାତ୍ ଯୋଗରେ ବ୍ରହ୍ମବସ୍ତୁଙ୍କୁ ପ୍ରତ୍ୟକ୍ଷ ଭାବରେ ଲାଭ କରାଯାଏ । ଏହି ସମୟର ବ୍ରହ୍ମସତ୍ତାନୁଭୂତି ଅମୃତାନୁଭୂତି ପରି ଉଜ୍ଜ୍ୱଳ । ସାଧାରଣ ଜ୍ଞାନରେ ବହିର୍ଜଗତର ସତ୍ତା ଯେପରି ସକଳ ସନ୍ଦେହର ଅତୀତ, ଉପାସନା କାଳରେ ବ୍ରହ୍ମସତ୍ତାର ଜ୍ଞାନ ମଧ୍ୟ ସେହିପରି ଅବିସମ୍ବାଦୀ । ଏହି ସମୟରେ ଯେ ବ୍ରହ୍ମସତ୍ତାର ଉପଲବ୍ଧି ହୁଏ, ତାହା କୌଣସି ପ୍ରମାଣସାପେକ୍ଷ ନୁହେଁ, ତାହା ବ୍ରହ୍ମଙ୍କ ସାକ୍ଷାତ୍ ଆବିର୍ଭାବର ଫଳ, ସୁତରାଂ ସେ ସମ୍ବନ୍ଧରେ କୌଣସି ପ୍ରଶ୍ନ ଉତ୍ଥାପିତ ହୋଇ ନ ପାରେ । ଇତି ପୂର୍ବରେ ଯେ ସମସ୍ତ ପ୍ରଶ୍ନର ମୀମାଂସା କରା ହୋଇଅଛି—କିରୂପେ ସସୀମ ଜ୍ଞାନ ଅସୀମଙ୍କୁ ଜାଣେ, କପର ବା ସସୀମ ସ୍ୱୀୟ ମୀମାଂସାକୁ ଅତିକ୍ରମ କରି ବ୍ରହ୍ମବସ୍ତୁଙ୍କୁ ଜାଣିବାକୁ କ୍ଷମ ହୁଏ, ସେ ସକଳ ପ୍ରଶ୍ନର କୌଣସି ଅସ୍ତିତ୍ୱ ସେଠାରେ ନାହିଁ । ବ୍ରହ୍ମବସ୍ତୁ ସାକ୍ଷାତ୍ ଦେଖୁଅଛି ଏବଂ ଏହାଙ୍କ ଅସ୍ତିତ୍ୱଜ୍ଞାନ ଏପରି ସ୍ପଷ୍ଟ ଯେ ଏହା ପ୍ରମାଣ କରିବାର କୌଣସି ପ୍ରୟୋଜନୀୟତା ଅନୁଭୂତ ହୁଏ ନାହିଁ । ସୁତରାଂ ବିଶ୍ୱାସୀ ମନେ କରନ୍ତି ଯେ ସନ୍ଦେହର ଅତୀତ ଏହି ଉଚ୍ଚ ଭୂମି ପରିତ୍ୟାଗ କରି ସନ୍ଦେହର ଭୂମିରେ ଅବତରଣ କରି ସନ୍ଦେହର ନିରାକରଣଦ୍ୱାରା ବ୍ରହ୍ମଜ୍ଞାନ ଲାଭର ଚେଷ୍ଟା ଗୋଟିଏ ମହାଭ୍ରାନ୍ତି ଓ ବୃଥା ଶ୍ରମ ମାତ୍ର । କାରଣ, ସହଜଜ୍ଞାନ (Intuition) ବା ବିଶ୍ୱାସ (Faith) ସାହାଯ୍ୟରେ ଅମ୍ଭେମାନେ ବ୍ରହ୍ମବିଷୟକ ଯେଉଁ ବିଦ୍ୟା ଲାଭ କରୁଁ, ଜ୍ଞାନ (Reason) ଗୁଣରେ (qualitatively) ବା ପରିମାଣରେ (quantitatively) ତାହାର ଶତାଂଶର ଏକାଂଶ ପ୍ରଦାନ କରିବାକୁ ସମର୍ଥ ନୁହେଁ । ଜ୍ଞାନଦ୍ୱାରା ଅମ୍ଭେମାନେ ଈଶ୍ୱରଙ୍କୁ ପାଉ ନାହିଁ, ତାହାଙ୍କ ସମ୍ବନ୍ଧରେ କେବଳ କେତେଗୁଡ଼ିଏ ଶୁଷ୍କ

ସାମାନ୍ୟ (Abstract ideas)ମାତ୍ର ଲାଭ କରୁଁ । ସୁତରାଂ ସେଗୁଡ଼ିକ ଦ୍ୱାରା ମନରେ କୌଣସି ପ୍ରକାର ଶାନ୍ତି ଉତ୍ପନ୍ନ ହେବା ସମ୍ପୂର୍ଣ୍ଣ ଅସମ୍ଭବ । ସେହି ହେତୁରୁ ଧର୍ମପ୍ରବଣ ହୃଦୟରେ ସେଗୁଡ଼ିକ କେବେହେଁ ସ୍ଥାନ ପାଏ ନାହିଁ । ଯେଉଁଠାରେ ଶାନ୍ତିର ପ୍ରୟୋଜନ, ସେଠାରେ ପ୍ରଶ୍ନର ଦ୍ୱାରା କି କାର୍ଯ୍ୟ ହେବ ? ଅନ୍ତରରେ ସହଜଜ୍ଞାନରେ ବା ବିଶ୍ୱାସରେ(intuition or faith)ବସ୍ତୁସମ୍ବନ୍ଧରେ ଯେ ଏକତ୍ୱ ଓ ସମଷ୍ଟିର ଧାରଣା ହୁଏ, ଜ୍ଞାନ (reason)ତାହା କେବେହେଁ ଦେଇ ପାରେ ନାହିଁ। ଜ୍ଞାନ (reason) ବରଂ ସେହି ଏକତ୍ୱକୁ ନାନା ଖଣ୍ଡରେ ବିଭକ୍ତ କରେ, ସେହି ସମଷ୍ଟିକୁ ଭାଙ୍ଗି ଚୂର୍ଣ୍ଣ ଅଂଶ କରି ତାହାର ସମଷ୍ଟିତ୍ୱ ବିନାଶ କରିଦିଏ। ଯଦିବା ଜ୍ଞାନ(reason)ପରେ ପୁଣି ଏହି ଏକତ୍ୱ ଓ ସମଷ୍ଟିତ୍ୱ ପ୍ରଦାନ କରିବାକୁ ଚେଷ୍ଟା କରେ, କିନ୍ତୁ କେବେହେଁ ସମ୍ପୂର୍ଣ୍ଣ କୃତକାର୍ଯ୍ୟ ହୋଇ ପାରେ ନାହିଁ। ବିଶେଷତଃ ମାନବଜ୍ଞାନ(reason)ଯେତେ ଉନ୍ନତ ହେଲେହେଁ ସେ ସସୀମ । ସୁତରାଂ ଅସୀମ ମଧ୍ୟରେ ଯାହା କିଛି ଅଛି, ସବୁଗୁଡ଼ିକୁ ସେ ଗ୍ରହଣ କରିବାକୁ କ୍ଷମ ନୁହେ । ସେଥିପାଇଁ ସେ ଯେତେବେଳେ ସମଷ୍ଟି କରିବାକୁ ଯାଏ, ସେତେବେଳେ ସେହି ପୂର୍ଣ୍ଣ ଅସୀମ ବସ୍ତୁଟିକୁ ଦେଇ ପାରେ ନାହିଁ। କାରଣ ଯେତେବେଳେ ସେ ବିଶ୍ଳେଷଣ (Analyse) କରିଥିଲା, ସେ ସମୟରେ ଯେତେବେଳେ ସମସ୍ତ ବସ୍ତୁଟିର ସକଳ ଅଂଶ ପାଇ ନାହିଁ, ସେତେବେଳେ ତାହାର ସମଷ୍ଟି କିରୂପେ ସମସ୍ତ ବସ୍ତୁଟି ହେବ ? ସୁତରାଂ ସହଜ ଜ୍ଞାନ ବା ବିଶ୍ୱାସ (intuition or faith)ଆମ୍ଭମାନଙ୍କୁ ଯେଉଁ ବସ୍ତୁଟି ପ୍ରଦାନ କରେ, ବିଜ୍ଞାନ ( scientific knowldge ) ଯେତେ ଉନ୍ନତ ହେଉ ପଛକେ ସେ କେବେହେଁ ତାହା ଦେବାକୁ କ୍ଷମ ନୁହେ । ଜଡ଼ବିଜ୍ଞାନ ଏକ ସମୟରେ ସସୀମ ଜଗତର ଗୋଟିଏ ପୂର୍ଣ୍ଣ ଜ୍ଞାନ ମାନବାତ୍ମାର ସମ୍ମୁଖରେ ଉପସ୍ଥିତ କଲେ କରି ପାରେ, କିନ୍ତୁ ବ୍ରହ୍ମବିଷୟକ ପୂର୍ଣ୍ଣ ଜ୍ଞାନ କେବେହେଁ ବିଜ୍ଞାନ ନିକଟରୁ ଆଶା କରାଯାଏ ନାହିଁ । ଜଡ଼ବିଜ୍ଞାନ ସମ୍ଭବ ହେଲେହେଁ ବ୍ରହ୍ମବିଜ୍ଞାନ ସମ୍ଭବ ନୁହେ । ବିଶେଷତଃ, ବିଜ୍ଞାନ ସାହାଯ୍ୟରେ ବ୍ରହ୍ମଙ୍କୁ ଧାରଣା କରିବାକୁ ଯିବାଦ୍ୱାରା ଏହାହିଁ ପ୍ରମାଣ ହୁଏ ଯେ ବ୍ରହ୍ମ ଅପେକ୍ଷା ଉଚ୍ଚ ଓ ଶ୍ରେଷ୍ଠ କିଛି ଅଛି । ଅସୀମ ସସୀମ ନିକଟରେ ଆତ୍ମପ୍ରକାଶ କରି ପାରନ୍ତି, ପରମାତ୍ମା ଜୀବାତ୍ମା ନିକଟରେ ଆତ୍ମପ୍ରକାଶ କରି ପାରନ୍ତି, ପରମାତ୍ମା ଜୀବାତ୍ମା ନିକଟରେ ସ୍ୱୀୟ ସ୍ୱରୂପ ବ୍ୟକ୍ତ କରି ପାରନ୍ତି, କିନ୍ତୁ ଜୀବ ସ୍ୱୀୟ ଜ୍ଞାନ ବଳରେ ବ୍ରହ୍ମବସ୍ତୁକୁ ଧାରଣା କରିବ, ଏହା ଅତି ଅସମ୍ଭବ କଥା । କାରଣ ମାନବର ସସୀମ ଜ୍ଞାନରେ ( reason ) ଅସୀମ ବ୍ରହ୍ମଙ୍କ ଅସ୍ତିତ୍ୱ ଓ ସ୍ୱରୂପର ପ୍ରମାଣ ବର୍ତ୍ତମାନ, ଏ କଥା କହିଲେ ଏହାହିଁ କହା ଗଲା ଯେ ସସୀମ ଅସୀମ ଅପେକ୍ଷା ବଡ଼ । ସୁତରାଂ ଯେଉଁ ବ୍ରହ୍ମଙ୍କୁ ଜ୍ଞାନ ( reason ) ପ୍ରମାଣ କରିବାକୁ କ୍ଷମ, ସେ କେବେହେଁ ବ୍ରହ୍ମ ନୁହନ୍ତି । ସେ ସସୀମ ମାନବଜ୍ଞାନ ଅପେକ୍ଷା ମଧ୍ୟ କ୍ଷୁଦ୍ର । ଏହି ଆଲୋଚନାଦ୍ୱାରା ଏହାହିଁ ପ୍ରମାଣିତ ହେଉଅଛି ଯେ ବ୍ରହ୍ମଲାଭ ପକ୍ଷରେ ଦାର୍ଶନିକ ଜ୍ଞାନ ( reason )ଉପଯୋଗୀ ନୁହେ, କିନ୍ତୁ ସହଜ ଜ୍ଞାନ ବା ବିଶ୍ୱାସ (intuition or faith )ଏକମାତ୍ର ଉପାୟ ।

ବର୍ତ୍ତମାନ ଦେଖାଯାଉ, ବ୍ରହ୍ମବିଜ୍ଞାନର (scientific knowledge of God) ବିରୁଦ୍ଧରେ ଯେଉଁ ସବୁ ଆପତ୍ତି ଉତ୍ଥାପିତ ହୋଇଅଛି, ତାହାର ଯୁକ୍ତିଯୁକ୍ତତା କେତେ ଦୂର ।

ସର୍ବପ୍ରଥମେ ଏହା କହା ଯାଇ ପାରେ ଯେ ଏହି ଆପତ୍ତିଗୁଡ଼ିକର ମୂଳରେ ଗୋଟିଏ ମହାଭ୍ରାନ୍ତି ବର୍ତ୍ତମାନ ଅଛି । ଆପତ୍ତିଗୁଡ଼ିକର ପ୍ରକୃତ ପର୍ଯ୍ୟାଲୋଚନା କଲେ ଦେଖା ଯିବ ଯେ ଆପତ୍ତିକାରଗଣ ଧର୍ମବିଷୟରେ ଜ୍ଞାନର (reason) କାର୍ଯ୍ୟ (function) ସମ୍ବନ୍ଧରେ ଭ୍ରାନ୍ତିରେ ପଡ଼ି ଅଛନ୍ତି । ଉପାସନା ଜ୍ଞାନର ଅଭିଜ୍ଞତା, ଆମ୍ଭ-

ପ୍ରତ୍ୟୟ (intuition) ବା ବିଶ୍ୱାସ (faith) ଏବଂ ଜ୍ଞାନ ଏମାନଙ୍କ ମଧ୍ୟରେ କୌଣସି ବିରୋଧ ନାହିଁ । ଏଗୁଡ଼ିକ ଧର୍ମଜୀବନର ବିଭିନ୍ନ ସୋପାନରେ ଅବସ୍ଥିତ । ବିଶ୍ୱାସହିଁ ଧର୍ମ । କିନ୍ତୁ ପ୍ରକୃତ ବିଶ୍ୱାସରେ ଉପନୀତ ହେବାକୁ ହେଲେ ଜ୍ଞାନର ପ୍ରୟୋଜନ । ବିଶ୍ୱାସୀ ଯୋଗରେ ଅବସ୍ଥିତ ରହି ଯେଉଁ ଭାବ ଉପଲବ୍ଧି କରନ୍ତି, ଧର୍ମବିଜ୍ଞାନ କେବେହେଁ ସେ ଭାବ ମନୁଷ୍ୟକୁ ଦେଇ ପାରେ ନାହିଁ । କିନ୍ତୁ ଏହି ଧର୍ମବିଜ୍ଞାନ ବ୍ୟତୀତ ଏହି ଯୋଗର ପଥ କେବେହେଁ ମାନବାତ୍ମା ନିକଟରେ ପ୍ରକାଶିତ ହୁଏ ନାହିଁ । ସୌନ୍ଦର୍ଯ୍ୟ-ବିଜ୍ଞାନ ଯେପରି ବସ୍ତୁକୁ ସୁନ୍ଦର କରେ ନାହିଁ, ନୀତି-ବିଜ୍ଞାନ ଯେପରି ମନୁଷ୍ୟକୁ ନୈତିକ-ଜୀବନସମ୍ପନ୍ନ କରେ ନାହିଁ, ସେହିପରି ଧର୍ମବିଜ୍ଞାନ ମଧ୍ୟ ମନୁଷ୍ୟକୁ ଧାର୍ମିକ କରେ ନାହିଁ । ଧର୍ମବିଜ୍ଞାନର ଉଦ୍ଦେଶ୍ୟ ତାହା ନୁହେ । ଏହାର ଉଦ୍ଦେଶ୍ୟ ପଥ ପ୍ରଦର୍ଶନ କରିବା । ବିଶ୍ୱାସ ଧର୍ମଜୀବନରୂପ ମହାବୃକ୍ଷର ଫଳ । କିନ୍ତୁ କି ପ୍ରଣାଳୀରେ ପୂର୍ବେ ଏହି ଫଳ ଫଳିଅଛି ଓ ପରେ ଫଳି ପାରେ ଏବଂ ଆମ୍ଭେମାନେ ଯଦି ଆମ୍ଭମାନଙ୍କ ଜୀବନରେ ସେହି ଫଳ ଲାଭ କରିବାକୁ ଇଚ୍ଛା କରୁଁ, ତେବେ ଆମ୍ଭମାନଙ୍କୁ କି ପ୍ରଣାଳୀ ଓ କି କି ଉପାୟ ଅବଲମ୍ବନ କରିବାକୁ ହେବ, ଧର୍ମ-ବିଜ୍ଞାନ ତାହା ନିର୍ଦ୍ଦେଶ କରେ । ସୁତରାଂ ଆତ୍ମପ୍ରତ୍ୟୟ ବା ସହଜ ଜ୍ଞାନ (intuition) ବୋଲ, ପ୍ରତ୍ୟକ୍ଷ ବ୍ରହ୍ମାନୁଭୂତି ବୋଲ, ବା ବିଶ୍ୱାସ (faith) ବୋଲ, ତାହାର ସଙ୍ଗେ ଜ୍ଞାନ (reason) ବା ଧର୍ମବିଜ୍ଞାନର କୌଣସି ବିରୋଧ ନାହିଁ । ଏମାନଙ୍କର କାର୍ଯ୍ୟ-କ୍ଷେତ୍ର ସ୍ୱତନ୍ତ୍ର । ସୁତରାଂ ଏମାନଙ୍କୁ ତୁଳନାଦ୍ୱାରା ସମାଲୋଚନା କରି ଗୋଟିକୁ ଅନ୍ୟଟି ଅପେକ୍ଷା ଶ୍ରେଷ୍ଠ ବା ନିକୃଷ୍ଟ ବୋଲିବା ସଙ୍ଗତ ନୁହେ ।

ପୁଣି ଯେ କହା ହୋଇଅଛି, ଆତ୍ମପ୍ରତ୍ୟୟ, ସହଜ ଜ୍ଞାନ ବା ବିଶ୍ୱାସର ଭୂମିରୁ ଅବତରଣ କରି ଜ୍ଞାନ ବ୍ରହ୍ମବିଷୟକ ଯେଉଁ ସିଦ୍ଧାନ୍ତରେ ଉପନୀତ ହୁଏ, ସେଥିରେ ଆମ୍ଭେମାନେ ବ୍ରହ୍ମବସ୍ତୁକୁ ତାହାର ତତ୍ତ୍ୱସମ୍ବନ୍ଧରେ କେତେଗୁଡ଼ିଏ ଭିନ୍ନ ଭିନ୍ନ ଅସଲଗ୍ନ ମୀମାଂସା ପ୍ରାପ୍ତ ହେଉଁ ଏବଂ ସହଜ ଚକ୍ଷୁରେ ଯାହା ଏକ ଓ ସମଗ୍ର ବୋଲି ପ୍ରତିଭାତ ହେଉଥିଲା, ତାହା ବହୁ ଖଣ୍ଡରେ ବିଭକ୍ତ ହୋଇ ପଡ଼େ—ଏହି ଆପତ୍ତି ମଧ୍ୟ ଯୁକ୍ତିଯୁକ୍ତ ନୁହେ । କାରଣ, ବିଜ୍ଞାନ ଯେଉଁ ଏକତ୍ୱ ସମ୍ପାଦନ କରିବାକୁ ପ୍ରୟାସୀ, ତାହା ସହଜ ଜ୍ଞାନରେ ପ୍ରତିଭାତ ଏକତ୍ୱ ଅପେକ୍ଷା ଅନେକ ଉଚ୍ଚ ସ୍ଥାନରେ ଅବସ୍ଥିତ । ସହଜ ଜ୍ଞାନରେ ପ୍ରତିଭାତ ଏକତ୍ୱ ମଧ୍ୟରେ ଆପାତବିରୁଦ୍ଧ ଏବଂ ପରସ୍ପର ବିଭିନ୍ନ ଭାବ ଗୁଡ଼ିକର କୌଣସି ଯୁକ୍ତିସଙ୍ଗତ ମିଳନ-ଭୂମି ପ୍ରଦର୍ଶିତ ହୁଏ ନାହିଁ । ସବୁଗୁଡ଼ିକୁ ଏକତ୍ର ଗ୍ରହଣ କରା ଯାଏ ସତ୍ୟ, କିନ୍ତୁ ସେମାନେ କିରୂପେ ଏକତ୍ରିତ ହୋଇ ପାରନ୍ତି, ତାହାର କୌଣସି କାରଣ ନିର୍ଦ୍ଦେଶ କରା ହୁଏ ନାହିଁ । ଏହି ଏକତ୍ୱ ପ୍ରକୃତ ଏକତ୍ୱ ନୁହେ । ତାହା ସମ୍ପୂର୍ଣ୍ଣରୂପେ କୃତ୍ରିମ । ଏହା ଏକତ୍ୱର ଛାୟା ମାତ୍ର । ତେଣୁ ଏହି ବାହ୍ୟ (superficial) ଏକତ୍ୱକୁ ଅତିକ୍ରମ କରି ବିଜ୍ଞାନ ଏକ ଉଚ୍ଚତର ଏକତ୍ୱଆଡ଼କୁ ଧାବିତ । ଏହି ଉଦ୍ଦେଶ୍ୟ ସାଧନ ପାଇଁ ବିଜ୍ଞାନ ଏହି ବାହ୍ୟ ଏକତ୍ୱକୁ ବିନଷ୍ଟ କରି ତାହାକୁ ବହୁ ଖଣ୍ଡରେ ବିଭକ୍ତ କରି ପକାଏ ଏବଂ ଦେଖାଇ ଦିଏ ଯେ ଯାହା ସହଜ ଜ୍ଞାନ ନିକଟରେ ଏକତ୍ୱ ବୋଲି ପ୍ରତିଭାତ ହେଉଥିଲା, ତାହା ପ୍ରକୃତ ଏକତ୍ୱ ନୁହେ । କିନ୍ତୁ ଏହି ବହୁତ୍ୱ ମଧ୍ୟରେ ଏକତ୍ୱ ଯେ କେଉଁଠାରେ ଅବସ୍ଥିତ, ସହଜ ଜ୍ଞାନ ତାହା ନିର୍ଣ୍ଣୟ କରିବାକୁ ଅକ୍ଷମ, ସେଥି ପାଇଁ ବିଜ୍ଞାନର ବହୁତ୍ୱ-ପ୍ରଦର୍ଶନକାରୀ ଏହି ପ୍ରାଥମିକ କାର୍ଯ୍ୟ ସହଜ ଜ୍ଞାନ ନିକଟରେ ବଡ଼ ଅପ୍ରୀତିକର । କିନ୍ତୁ ଉଚ୍ଚ ଲକ୍ଷ୍ୟ ସାଧନ ପାଇଁ ବିଜ୍ଞାନ ଯାହା ଭାଙ୍ଗୁଅଛି, ବିଜ୍ଞାନହିଁ ତାହାକୁ ଗଢ଼ିବ । ବିଜ୍ଞାନ ଏହି ବାହାରର ଏକତ୍ୱକୁ ବିନାଶ କରେ ସତ୍ୟ, କିନ୍ତୁ ଅନ୍ତର୍ତମ ପ୍ରଦେଶରେ ପ୍ରବେଶପୂର୍ବକ ସୂକ୍ଷ୍ମ

ଦୃଷ୍ଟି ସାହାଯ୍ୟରେ ଏପରି ଗୋଟିଏ ଯୋଗ-ସୂତ୍ର ଆବିଷ୍କାର କରେ, ଯେଉଁଥିରେ "ସୂତ୍ରେ ମଣିଗଣା ଇବ" ସମସ୍ତ ବିଶ୍ୱ ଗ୍ରଥିତ ରହିଅଛି । ସହଜ ଜ୍ଞାନର ଚକ୍ଷୁରେ ବହୁତ୍ୱପୂର୍ଣ୍ଣ ଏହି ଦୃଷ୍ଟ ଜଗତର ଗୋଟିଏ କୃତ୍ରିମ ଏକତ୍ୱ ପ୍ରତିଫଳିତ ହୁଏ, କିନ୍ତୁ ବିଜ୍ଞାନାବିଷ୍କୃତ ଏହି ଯୋଗସୂତ୍ରଦ୍ୱାରା ଦୃଷ୍ଟ ଓ ଅଦୃଷ୍ଟ ଏହି ସମସ୍ତ ବ୍ରହ୍ମାଣ୍ଡ ସ୍ୱୀୟ ବହୁତ୍ୱ ରକ୍ଷା କରି ମଧ୍ୟ ଏକ ହୋଇ ଯାଆନ୍ତି । ସୁତରାଂ ବିଜ୍ଞାନର ପ୍ରଥମ କାର୍ଯ୍ୟ ଏକତ୍ୱବିରୋଧୀ ବୋଲି ମନେ ହେଲେହେଁ ଗୋଟିଏ ମହତ୍ତର ଏକତ୍ୱର ପଥ ଉନ୍ମୁକ୍ତ କରିବା ବିଜ୍ଞାନର ଉଦ୍ଦେଶ୍ୟ । ବିଜ୍ଞାନର ଏହି କାର୍ଯ୍ୟ ବ୍ରହ୍ମବିଜ୍ଞାନ ବେଳକୁ ଆପତ୍ତିକର ବୋଲି ମନେ ହୁଏ, ଜଡ଼ବିଜ୍ଞାନ ବେଳକୁ ସେ ସମ୍ବନ୍ଧରେ କୌଣସି ଆପତ୍ତି ଉତ୍ଥାପିତ ହୁଏ ନାହିଁ । ଶରୀର-ବିଜ୍ଞାନବିତ୍ ପଣ୍ଡିତ ଛୁରିକାହସ୍ତରେ ଦେହକୁ ଖଣ୍ଡ ବିଖଣ୍ଡ କରି ଯେତେବେଳେ ତାହାର ବାହ୍ୟ ଏକତ୍ୱକୁ ବିନାଶ କରି ତାହାର ଆଭ୍ୟନ୍ତରୀଣ ଏକତ୍ୱ ନିର୍ଣ୍ଣୟ କରନ୍ତି, ସେତେବେଳେ ତାହା କାହାରି ନିକଟରେ ଆପତ୍ତିଜନକ ବୋଲି ମନେ ହୁଏ ନାହିଁ । ସହଜ ଜ୍ଞାନ ନିକଟରେ ଗୋଟିଏ ଶବ୍ଦ କେପରି ମଧୁର, ଗୋଟିଏ ରୂପ କେପରି ସୁନ୍ଦର । କିନ୍ତୁ ଆଲୋକତତ୍ତ୍ୱବିତ୍ ବା ଶବ୍ଦତତ୍ତ୍ୱବିତ୍ ପଣ୍ଡିତ ଏହି ରୂପ ବା ଶବ୍ଦଟିକୁ ବିଶ୍ଳେଷଣ ପୂର୍ବକ ତତ୍ପରି ସ୍ଥାନରେ ଆଲୋକ ବା ଶବ୍ଦର ଉତ୍ପତ୍ତି ବା ଲୟର କେତେଗୁଡ଼ିଏ ନିୟମ ପ୍ରଦାନ କରନ୍ତି । କିନ୍ତୁ ବାହ୍ୟ ଏକତ୍ୱର ଅନୁରୋଧରେ କି ମନୁଷ୍ୟ ବିଜ୍ଞାନବିତ୍‌ଙ୍କ ମୀମାଂସା ଗୁଡ଼ିକୁ ପରିହାର କରିବ ? କଦାପି ନୁହେଁ । ଯେହେତୁ ଏହି ବାହ୍ୟ ଏକତ୍ୱର ସ୍ଥାନରେ ବିଜ୍ଞାନବିତ୍ ଯେଉଁ ଏକତ୍ୱର ଜ୍ଞାନ ପ୍ରଦାନ କରନ୍ତି, ତାହା ଏହି ବାହ୍ୟ ଏକତ୍ୱ ଅପେକ୍ଷା ଲକ୍ଷ ଗୁଣରେ ଅଧିକ ଲୋଭନୀୟ । ଅତ୍ର ବିଜ୍ଞାନର କାର୍ଯ୍ୟ ଆଂଶିକ ବୋଲି ତାହା କେବେହେଁ ପରିତ୍ୟକ୍ତ ହୁଏ ନାହିଁ । ଏ କଥା ଠିକ୍ ଯେ ସହଜ ଜ୍ଞାନ ନିକଟରେ ଯେଉଁ ସ୍ଥୂଳ ଏକତ୍ୱ ଓ ଜଗତର ସମଗ୍ରତ୍ୱ ପ୍ରକାଶିତ ହୁଏ ଏବଂ ବିଜ୍ଞାନର ହାତରେ ଯାହା ବିନଷ୍ଟ ହୁଏ, ତାହା କେବେହେଁ ପୁନଃ ପ୍ରତିଷ୍ଠିତ ହୁଏ ନାହିଁ । ବିଜ୍ଞାନର ନାନା ବିଭାଗର ଫଳ ଏକତ୍ର କଲେ ଗୋଟିଏ ସମଗ୍ର ଜଗତ୍ ମିଳେ ନାହିଁ । ସେଥିପାଇଁ କି ବିଜ୍ଞାନକୁ ପରିତ୍ୟାଗ କରିବାକୁ ହେବ ? କଦାଚ ନୁହେଁ । ଏହି ପ୍ରକାଣ୍ଡ ବ୍ରହ୍ମାଣ୍ଡ-ଗ୍ରନ୍ଥର ଉପରିଭାଗଟା ଦେଖି ସନ୍ତୁଷ୍ଟ ରହିବା ଅପେକ୍ଷା ଗୋଟିଏ ପୃଷ୍ଠାର ତତ୍ତ୍ୱ ସବିଶେଷ ଅବଗତ ହେବା କି ସହସ୍ର ଗୁଣରେ ବାଞ୍ଛନୀୟ ନୁହେଁ ? ଯେ ପ୍ରତ୍ୟହ ଏହି ପ୍ରକାଣ୍ଡ ମହାଭାରତ ଗ୍ରନ୍ଥ ଖଣ୍ଡିକର ଉପରିଭାଗ ଦେଖି ଅତ୍ୟନ୍ତ ଯତ୍ନସହିତ ଫୁଲ ଚନ୍ଦନ ଉପହାର ଦେଇ ଉପରର ଲୁଗାରେ ବାନ୍ଧି ରଖନ୍ତି, କିନ୍ତୁ ତାହା ମଧ୍ୟରେ କି ତତ୍ତ୍ୱ ନିହିତ ଅଛି, ତାହା ଜାଣିବାର କୌଣସି ଆକାଂକ୍ଷା ପୋଷଣ କରନ୍ତି ନାହିଁ, ତାଙ୍କ ଅପେକ୍ଷା ଯେ ମହାଭାରତର ବାହ୍ୟ ସ୍ଥୂଳ ଏକତ୍ୱକୁ ବିନାଶ କରି ପ୍ରତ୍ୟହ ଏକ ଏକ ଅଧ୍ୟାୟ ପାଠ କରିବାକୁ ଚେଷ୍ଟା କରନ୍ତି, ସେ କି ପ୍ରକୃତ ମହାଭାରତର ସଦ୍-ବ୍ୟବହାର କରନ୍ତି ନାହିଁ ? ଆମ୍ଭେମାନେ ଆଶା କରୁ ପାରୁଁ ଯେ ସୃଷ୍ଟି ମଧ୍ୟରେ ଯେଉଁ ଜ୍ଞାନ ନିହିତ ଅଛି, ଏହି ପନ୍ଥା ଅବଲମ୍ବନଦ୍ୱାରା ଦିନେ ମାନବାତ୍ମା ତାହାର ସାକ୍ଷାତ୍କାର ଲାଭ କରିବ ଏବଂ ସେହି ସମୟରେ ପ୍ରକୃତ ଏକତ୍ୱ ଆବିଷ୍କୃତ ହେବ । ଏଥିପାଇଁ ବିଜ୍ଞାନ ଆଦରଣୀୟ । ବିଜ୍ଞାନର ସକଳ ବିଭାଗର କାର୍ଯ୍ୟପ୍ରଣାଳୀ ଯେତେବେଳେ ଏହିପରି, ସେତେବେଳେ ସ୍ଥୂଳ ବାହ୍ୟ ଏକତ୍ୱର ବିନାଶକାରୀ ଆପାତ-ବିରକ୍ତିକର ଏହି କାର୍ଯ୍ୟ ଦେଖି କେବଳ ଧର୍ମବିଜ୍ଞାନକୁ କାହିଁକି ପରିହାର କରିବାକୁ ହେବ ? ପରିହାର କରିବା କେବେହେଁ ଯୁକ୍ତିସିଦ୍ଧ ନୁହେଁ । ପୁଣି ଯେ କହା ହୋଇଅଛି—ବିଜ୍ଞାନ ବ୍ରହ୍ମ ସମ୍ବନ୍ଧରେ କେବଳ କେତେଗୁଡ଼ିଏ ମୀମାଂସା ମାତ୍ର ପ୍ରଦାନ କରେ, ତାହା ଯଥାର୍ଥ ନୁହେ ।

କାରଣ, ସ୍ୱରୂପ ସମ୍ବନ୍ଧରେ ବ୍ରହ୍ମ ବିନ୍ଦୁରେ ପୂର୍ଣ୍ଣ, ସିନ୍ଧୁରେ ପୂର୍ଣ୍ଣ । ସୁତରାଂ ତାହାଙ୍କ ସ୍ୱରୂପବିଷୟକ ମୀମାଂସା ଆଂଶିକ ହୋଇ ନ ପାରେ । ସ୍ୱରୂପ ସର୍ବତ୍ର ସମାନ । ଆମ୍ଭେମାନେ ଯେତେବେଳେ ତାହାଙ୍କର କୌଣସି ସ୍ୱରୂପର ସମ୍ମୁଖୀନ ହେଉଁ, ସେତେବେଳେ ପୂର୍ଣ୍ଣ ବ୍ରହ୍ମଙ୍କର ସମ୍ମୁଖୀନ ହେଉଁ । ଆଉ ତାହାଙ୍କର ସ୍ୱରୂପଗୁଡ଼ିକ ଗୋଟିଏ ଅଖଣ୍ଡ ବସ୍ତୁର ବିଭିନ୍ନ ଦିଗ ମାତ୍ର, ଖଣ୍ଡ ପଦାର୍ଥ ନୁହେ —ଅଦ୍ୱୟ ତତ୍ତ୍ୱ । ସୁତରାଂ ସ୍ୱରୂପ ବିଷୟ ଘେନି ବିଚାର କଲେ ଦେଖାଯିବ ଯେ ଏକ ଅଖଣ୍ଡ ପୂର୍ଣ୍ଣ ବସ୍ତୁହିଁ ଆମ୍ଭମାନଙ୍କ ଜ୍ଞାନ ନିକଟରେ ପ୍ରକାଶିତ ହୁଅନ୍ତି । ତେବେ ରୂପ ସମ୍ବନ୍ଧରେ ଏ କଥା କହା ଯାଇ ନ ପାରେ । ଯେହେତୁ ରୂପ ଦେଶ ଓ କାଳରେ ପ୍ରକାଶିତ; ଦେଶ କାଳରେ ପୂର୍ଣ୍ଣତ୍ୱ ଓ ସମଗ୍ରତ୍ୱ (totality) ନାହିଁ । ସୁତରାଂ ଆମ୍ଭମାନଙ୍କ ନିକଟରେ ରୂପର ପୂର୍ଣ୍ଣ ଜ୍ଞାନ ଅସମ୍ଭବ । ସେଥିରେ କୌଣସି କ୍ଷତି ନାହିଁ । ପିନ୍, ସୂଚିଠାରୁ ଆରମ୍ଭ କରି ବଡ଼ ବଡ଼ ଜାହାଜ ଧରି ପର୍ଯ୍ୟନ୍ତ ଲୌହ-ଦ୍ୱାରା କି କି ବସ୍ତୁ ନିର୍ମିତ ହୁଏ, ତାହା ନ ଜାଣିଲେହେଁ ଲୌହ ଜଳ ଅପେକ୍ଷା ଏତେ ଗୁଣ ଭାରି ଏହାର ଏହି ଆପେକ୍ଷିକ ଗୁରୁତ୍ୱ, ତାହାକୁ ଟାଣି କେତେ ସରୁ ତାର କରିଯାଏ, ଏହାଦ୍ୱାରା କେତେ ସୂକ୍ଷ୍ମ ପତ୍ର ପ୍ରସ୍ତୁତ ହୁଏ, ଏଗୁଡ଼ିକ ଜଣା ଥିଲେ ତାହାଦ୍ୱାରା କି କି ବସ୍ତୁ ପ୍ରସ୍ତୁତ ହେବାର ସମ୍ଭାବନା, ତାହା ପୂର୍ଣ୍ଣରୂପେ ଜଣାଯାଏ । କାରଣ, ରୂପ ସ୍ୱରୂପ ଉପରେ ନିର୍ଭର କରେ । ପକ୍ଷାନ୍ତରେ ସହଜ ଜ୍ଞାନ ଯେପ୍ରକାର ସମଗ୍ରତ୍ୱ ଦେବାକୁ ପ୍ରସ୍ତୁତ, ତାହା ଯେ ସମଗ୍ରତ୍ୱ ଓ ଏକତ୍ୱର ଛାୟା ମାତ୍ର, ତାହା ଆମ୍ଭେମାନେ ପୂର୍ବେ ଦେଖାଇଅଛୁଁ । ଏ ସମ୍ବନ୍ଧରେ ବିସ୍ତୃତ ଆଲୋଚନା ପରେ କରାଯିବ । ଯାହାହେଉ, ଜ୍ଞାନ ଯେ ବ୍ରହ୍ମବିଜ୍ଞାନ ଗଠନ କରିବାକୁ ପ୍ରୟାସୀ ହୁଏ, ତାହାର ଗୋଟିଏ କାରଣ ଅଛି । ସେ କାରଣ ଏହି ଯେ ଜ୍ଞାନ-ପ୍ରଧାନ-ଜୀବନ ମାନବର ଚିନ୍ତା-ପ୍ରବାହର ଅନ୍ୟାନ୍ୟ ବିଭାଗ ପରି ଧର୍ମ ମଧ୍ୟ ଜ୍ଞାନ ଉପରେ ପ୍ରତିଷ୍ଠିତ । ତାହା ନ ହେଲେ ଜ୍ଞାନ (reason) କେବେହେଁ ଧର୍ମ ଘେନି ଆଲୋଚନା କରିବାକୁ ଯାନ୍ତା ନାହିଁ । ସୁତରାଂ ମାନବ-ଚିନ୍ତାର ସର୍ବଶ୍ରେଷ୍ଠ ବିକାଶ ଧର୍ମବିଷୟକ ଆଲୋଚନାରୁ ଜ୍ଞାନକୁ ରୁଦ୍ଧହସ୍ତ କଲେ ଜ୍ଞାନ-ପ୍ରଧାନ-ଜୀବନ ମାନବକୁ ତାହାର ସର୍ବଶ୍ରେଷ୍ଠ ଅଧିକାରରୁ ବଞ୍ଚିତ କରା ହେବ । ସେଥିରେ କୁଫଳ ବ୍ୟତୀତ କୌଣସି ସୁଫଳର ଆଶା ନାହିଁ । ବିଜ୍ଞାନର ସାହାଯ୍ୟରେ ଯେପରି ମାନବ-ଚିନ୍ତାର ଅନ୍ୟାନ୍ୟ ବିଭାଗ ପରିପୁଷ୍ଟ ହୋଇ ବିଶେଷ ଭାବରେ ଉନ୍ନତ ହେଉଅଛି, ଧର୍ମବିଜ୍ଞାନର ସାହାଯ୍ୟରେ ଧର୍ମର ମଧ୍ୟ ସେହିପରି ଉନ୍ନତି ଆଶା କରାଯାଇ ପାରେ । ଅଥବା ଏହି କଥା ଠିକ୍ ଯେ ଧର୍ମବିଜ୍ଞାନ ବ୍ୟତୀତ ଧର୍ମ କେବେହେଁ ପ୍ରକୃତ ପଥରେ ଚାଲି ପାରେ ନାହିଁ । ସୁତରାଂ ଧର୍ମର ପ୍ରକୃତ ଉନ୍ନତି ଧର୍ମବିଜ୍ଞାନର ସାହାଯ୍ୟସାପେକ୍ଷ ।

ତୃତୀୟତଃ, ବ୍ରହ୍ମବିଜ୍ଞାନ ବିରୁଦ୍ଧରେ ଆଉ ଗୋଟିଏ ଆପତ୍ତି ଉତ୍ଥାପିତ ହୋଇଅଛି ଯେ ବୈଜ୍ଞାନିକ ପ୍ରଣାଳୀରେ ବ୍ରହ୍ମସତ୍ତା ପ୍ରତିପାଦନ କରିବାକୁ ଚେଷ୍ଟା କଲେ ଏବଂ ଜ୍ଞାନରେ (rational thought) ବ୍ରହ୍ମ ବସ୍ତୁକୁ ଧାରଣା କଲେ ତାହାଙ୍କୁ ଅତ୍ୟନ୍ତ କ୍ଷୁଦ୍ର କରାହୁଏ । ଏହା ବଡ଼ ସମୀଚୀନ ବୋଲି ବୋଧ ହୁଏ ନାହିଁ । କାରଣ, ଏହି ଆପତ୍ତିରେ ଯେ ଟିକିଏ ସତ୍ୟ ଅଛି, ତାହା ବୈଜ୍ଞାନିକ ଜ୍ଞାନ ଓ ସହଜ ଜ୍ଞାନ, ଆତ୍ମପ୍ରତ୍ୟୟ, ବିଶ୍ୱାସ ବା ପ୍ରତ୍ୟକ୍ଷ ଉପଲବ୍ଧି ସକଳ ସମ୍ବନ୍ଧରେ ସମାନ ପ୍ରଯୋଜ୍ୟ । ଜ୍ଞାନକୁ ଯେତେ ସୂକ୍ଷ୍ମ କର, ତାହାକୁ ଯେଉଁ ନାମରେ ଅଭିହିତ କର, ସେଥିରେ ଜ୍ଞାତା ଓ ଜ୍ଞେୟର ବିଭିନ୍ନତା (distinction) ନିଶ୍ଚିତ ରହିବ । ସୁତରାଂ ସହଜ ଜ୍ଞାନରେ ବ୍ରହ୍ମଙ୍କୁ ଧର ବା ବୈଜ୍ଞାନିକ ଜ୍ଞାନରେ ତାହାଙ୍କୁ ଗ୍ରହଣ କର, ଏ ଆପତ୍ତିର ଯଦି କୌଣସି ବଳ ଥାଏ, ତେବେ ତାହା ଉଭୟତ୍ର କାର୍ଯ୍ୟ କରିବ । ଅତଏବ ବୈଜ୍ଞାନିକ

ଜ୍ଞାନର ବିରୁଦ୍ଧରେ (contrast) ସହଜ ଜ୍ଞାନରେ ବ୍ରହ୍ମଙ୍କ ଉପଲବ୍ଧି-କଳ୍ପନା ମଧ୍ୟ ପରିହାର କରିବାକୁ ହେବ । କିନ୍ତୁ ଯେଉଁ ବୈଜ୍ଞାନିକ ପ୍ରଣାଳୀରେ ବ୍ରହ୍ମତତ୍ତ୍ୱ ଆଲୋଚନା କରିବାର ଫଳ "ଆତ୍ମଜ୍ଞାନହିଁ ବ୍ରହ୍ମଜ୍ଞାନ", ତାହା ବିରୁଦ୍ଧରେ ଏହି ଆପତ୍ତିର ଶକ୍ତି କେବେହେଁ କାର୍ଯ୍ୟକାରୀ ହେବ ନାହିଁ। ଜୀବର ଯେ ବ୍ରହ୍ମଜ୍ଞାନ, ତାହା ବ୍ରହ୍ମଙ୍କ ଆତ୍ମଜ୍ଞାନର ଅନୁପ୍ରକାଶ ବ୍ୟତୀତ ଅନ୍ୟ କିଛି ନୁହେ । ଜୀବ ଯେଉଁ ଜ୍ଞାନଦ୍ୱାରା ବ୍ରହ୍ମଙ୍କୁ ଜାଣେ, ତାହା ବ୍ରହ୍ମ ଯେଉଁ ଜ୍ଞାନଦ୍ୱାରା ନିଜକୁ ଜାଣନ୍ତି, ସେହି ଜ୍ଞାନର ଏକ କଣିକା ମାତ୍ର । ସୁତରାଂ ଜୀବର ବ୍ରହ୍ମଜ୍ଞାନ ଲାଭରେ ବ୍ରହ୍ମ ଯେ ବାହାରର କୌଣସି ଶକ୍ତିର ଆପୃତ୍ତ ହୁଅନ୍ତି, ତାହା ନୁହେ । ଜୀବ ଯେତେବେଳଯାଏ ସ୍ୱୀୟ ଜୀବତ୍ୱରେ ଆବଦ୍ଧ ଥାଏ, ସେ ଯେତେବେଳ-ଯାଏ ସ୍ୱୀୟ ସୀମାକୁ ବ୍ରହ୍ମସାଗରରେ ଲୀନ କରି ନ ଦିଏ, ସେତେବେଳଯାଏ ତାହାର ବ୍ରହ୍ମଜ୍ଞାନ ଲାଭର କୌଣସି ସମ୍ଭାବନା ନାହିଁ । ଜୀବ ଯେଉଁବେଳେ ସ୍ୱୀୟ ଜୀବତ୍ୱ ପରିତ୍ୟାଗ କରି, ସ୍ୱୀୟ ବ୍ୟକ୍ତିଗତ ଅହଙ୍କାରକୁ ବିସର୍ଜନ ଦେଇ ବ୍ରହ୍ମଙ୍କୁ ଆପଣାର ଉଚିତର "ମୁଁ" ରୂପରେ ଗ୍ରହଣ କରେ, ସେତେବେଳେ ତାହା ପକ୍ଷରେ ବ୍ରହ୍ମଜ୍ଞାନ ସମ୍ଭବ ହୁଏ । ସୁତରାଂ ଯେଉଁ ଜ୍ଞାନ ସାହାଯ୍ୟରେ ଜୀବ ବ୍ରହ୍ମଙ୍କୁ ଜାଣେ, ତାହା କେବେହେଁ ବାହାରର ବସ୍ତୁ ନୁହେ । ଯେଉଁ ପ୍ରମାଣର ସାହାଯ୍ୟରେ ସେ ବ୍ରହ୍ମ ବସ୍ତୁକୁ ଜାଣେ, ତାହା ଜୀବର ନୁହେ, ବ୍ରହ୍ମଜ୍ଞାନର ଅନ୍ତର୍ନିହିତ । ଅର୍ଥାତ୍ ଯେଉଁ ଜ୍ଞାନରେ ବ୍ରହ୍ମସତ୍ତା ପ୍ରତିଷ୍ଠିତ, ସେହି ଜ୍ଞାନ ଆମ୍ଭମାନଙ୍କ ମଧ୍ୟରେ ଆବିର୍ଭୂତ ହୋଇ ଆମ୍ଭମାନଙ୍କ ନିକଟରେ ତାହାଙ୍କ ଅସ୍ତିତ୍ୱ ପ୍ରତିପାଦନ କରେ । ଏହି ସକଳ ବିଷୟର ଚୂଡ଼ାନ୍ତ ମୀମାଂସା ଏଠାରେ ସମ୍ଭବ ନୁହେ । ତେବେ ଆମ୍ଭେମାନେ ଯେତେବେଳେ ବ୍ରହ୍ମ-ଜ୍ଞାନରେ ଅବତରଣ କରିବୁଁ, ସେତେବେଳେ ଏହି ସକଳର ବିଶଦ ବ୍ୟାଖ୍ୟା କରିବାକୁ ଚେଷ୍ଟା କରିବୁଁ ।

ବ୍ରହ୍ମବିଜ୍ଞାନ ବିରୁଦ୍ଧରେ ଯେ ସକଳ ଆପତ୍ତି ଉତ୍ଥାପିତ ହୋଇଥିଲା, ଆମ୍ଭେମାନେ ଏ ପର୍ଯ୍ୟନ୍ତ ତାହାର ବିଚାର କଲୁଁ । ବର୍ତ୍ତମାନ ଦେଖାଯାଉ, ସହଜ ଜ୍ଞାନ ବା ଆତ୍ମପ୍ରତ୍ୟୟ ( intuition ), ବିଶ୍ୱାସ ( faith ) ଅଥବା ପ୍ରତ୍ୟକ୍ଷ-ଉପଲବ୍ଧି ( immediate experience ) ବ୍ରହ୍ମତତ୍ତ୍ୱ ବିଷୟରେ ଚୂଡ଼ାନ୍ତ ମୀମାଂସାର ଭାର ଗ୍ରହଣ କରିବା ପକ୍ଷରେ କି ପରିମାଣରେ ଯୋଗ୍ୟ ଏବଂ ବୈଜ୍ଞାନିକ ପ୍ରଣାଳୀରେ ବ୍ରହ୍ମତତ୍ତ୍ୱ ଆଲୋଚନାର ତୁଳନାରେ ଏମାନଙ୍କ ଦାବୀ କେତେ ବଳବତ୍ତର ।

ସହଜଜ୍ଞାନ-ଲବ୍ଧ ସତ୍ୟ, ଏ କଥାଟାର ଅର୍ଥ ଯଦି ଏହା ହୁଏ ଯେ ତାହାହିଁ ଏକ ମାତ୍ର ସତ୍ୟ ବୋଲି ଗୃହୀତ ହୋଇ ପାରେ, ଯାହା ଆମ୍ଭ-ମାନଙ୍କ ଆତ୍ମଜ୍ଞାନଦ୍ୱାରା ଅନୁମୋଦିତ ହୋଇଅଛି, ଅର୍ଥାତ୍ ଆମ୍ଭମାନଙ୍କ ଜ୍ଞାନ ଯାହାକୁ ସତ୍ୟ ବୋଲି ଗ୍ରହଣ କରିଅଛି, ତାହା ହେଲେ ଏ କଥା ସଙ୍ଗରେ ଆମ୍ଭମାନଙ୍କର କୌଣସି ବିବାଦ ନାହିଁ । କାରଣ, ସତ୍ୟର ସତ୍ୟତା ଜ୍ଞାନ ଉପରେ ନିର୍ଭର କରେ । ଯାହା କିଛି ସତ୍ୟ ବୋଲି ମାନିବାକୁ ହେବ, ତାହା ଯେତେବେଳଯାଏ ଜ୍ଞାନ ସତ୍ୟ ବୋଲି ଗ୍ରହଣ କରି ନାହିଁ, ସେତେବେଳଯାଏ ତାହା ସତ୍ୟ ବୋଲି ଗୃହୀତ ହୋଇ ନ ପାରେ। କିନ୍ତୁ ସେଥିପାଇଁ ଏ କଥା ସ୍ୱୀକାର କରା ଯାଇ ନ ପାରେ ଯେ ଯାହା କିଛି ସହଜ ଜ୍ଞାନ ବା ବିଶ୍ୱାସ ନିକଟରେ ସତ୍ୟ ବୋଲି ଆତ୍ମପ୍ରକାଶ କରିବ, ତାହାହିଁ ସତ୍ୟ ବୋଲି ଗ୍ରହଣ କରିବାକୁ ହେବ। ଜ୍ଞାନହିଁ ସତ୍ୟର ପରିମାପକ ସେଥିରେ ସନ୍ଦେହ ନାହିଁ, କିନ୍ତୁ ଯାହା କିଛି ମୋହର ଜ୍ଞାନ ସଙ୍ଗରେ ଜଡ଼ିତ ଏବଂ ବିପରୀତ ତାହା ମୋହର ମନ ମଧ୍ୟରୁ ଆସିଲା ତାହାର କାରଣ ମୁଁ ନିର୍ଦ୍ଦେଶ କରି ପାରେ ନାହିଁ, ମୋହର ମନର ଏରୂପ ପ୍ରତ୍ୟେକ

ଭାବରୁ ସତ୍ୟ ବୋଲି ମୁଁ ଗ୍ରହଣ କରି ନ ପାରେ । କିନ୍ତୁ ଏହାହିଁ ସହଜଜ୍ଞାନବାଦୀଙ୍କର ମତ । ସେ କହନ୍ତି, ମୋହର ନୈତିକ ବା ଆଧ୍ୟାତ୍ମିକ ଜ୍ଞାନ ମଧ୍ୟରେ ଏପରି ଅନେକ ବସ୍ତୁ ଅଛି, ଯାହା ମୁଁ ଯୁକ୍ତି ସାହାଯ୍ୟରେ ଲଭିଥିଲି, କିନ୍ତୁ ଯେତେବେଳେ ମୁଁ ମୋହର ବିଶ୍ୱାସକୁ ତାହାର ମୂଳ ଦେଶକୁ ଘେନି ଗଲି ସେତେବେଳେ ଦେଖିଲି ଯେ ତାହାର ଭିତ୍ତି ଯୁକ୍ତିର ଅତୀତ ସ୍ଥାନରେ ଅବସ୍ଥିତ । ମୋହର ବିଶ୍ୱାସର ମୂଳ ଅନ୍ୱେଷଣ କରିବାକୁ ଯାଇ ମୁଁ ଏପରି କେତେଗୁଡ଼ିଏ ସହଜ-ଜ୍ଞାନସିଦ୍ଧ ସତ୍ୟରେ (Intuitive truths) ଉପନୀତ ହେଲି, ଯେଉଁଗୁଡ଼ିକ ସମ୍ବନ୍ଧରେ ଆଉ ବିଚାର ବିତର୍କ ଚଳେ ନାହିଁ, ମୁଁ ଯଦି ନିରବଚ୍ଛିନ୍ନ ସଂଶୟବାଦରେ ପ୍ରତିଷ୍ଠିତ ହେବାକୁ ଇଚ୍ଛା ନ କରେ, ତେବେ ସେଗୁଡ଼ିକୁ ସତ୍ୟ ବୋଲି ଗ୍ରହଣ କରିବାକୁ ମୁଁ ବାଧ୍ୟ ।

ଏହି ମତର ବିରୁଦ୍ଧରେ ପ୍ରଥମ ଆପତ୍ତି ଏହି ଯେ ଯେ କୌଣସି ବିଷୟରେ ମୁଁ ଯୁକ୍ତି ପ୍ରୟୋଗ କରିବାକୁ ଅକ୍ଷମ ଅଥବା ଯେ କୌଣସି ବିଷୟରେ ମୋହର ଦୃଢ଼ ପ୍ରତୀତି ଜନ୍ମେ, ତାହାହିଁ ଯେ ସହଜଜ୍ଞାନସିଦ୍ଧ ସତ୍ୟ, ତାହା କିଏ ପ୍ରମାଣ କରିବ ? ମୁଁ ଯେ ବାସ୍ତବିକ ଏହିପରି ସତ୍ୟରେ ଉପନୀତ ହୋଇଅଛି, ତାହାର ପ୍ରମାଣ କଣ ? ଅନେକ ସମୟରେ ଦେଖାଯାଏ, ଯାହା ସହଜ-ଜ୍ଞାନସିଦ୍ଧ ସତ୍ୟ ବୋଲି ମନେ ହେଉଅଛି, ତାହା ବିଚାର ବିତର୍କର ଫଳ, ଅଥବା ତାହା ସର୍ବସାଧାରଣଙ୍କ ଗୃହୀତ ମତ ବୋଲି ଅଜ୍ଞାତ ଭାବରେ ମୋହର ମନରେ ଦୃଢ଼ ପ୍ରତିଷ୍ଠା ଲାଭ କରିଅଛି । ଏହିପରି ସର୍ବଦା ଘଟେ ଯେ ଆମ୍ଭେମାନେ ଯେପ୍ରକାର ମତର ବାୟୁରେ (atmosphere) ପରିବର୍ଦ୍ଧିତ ହେଉଁ, ସେହିପରି ମତ ଆମ୍ଭମାନଙ୍କ ମନରେ ଏପରି ଦୃଢ଼ବଦ୍ଧ ହୋଇଯାଏ ଯେ ତାହାର ବିପରୀତ ଭାବ ଆମ୍ଭେମାନେ ମନମଧ୍ୟକୁ ଆଣି ପାରୁ ନାହିଁ । ସେଥିପାଇଁ ସେ ଗୁଡ଼ିକୁ ଆମ୍ଭେମାନେ ସହଜ ସ୍ୱତଃପ୍ରମାଣିତ ସତ୍ୟ ବୋଲି ମନେ କରୁଁ ଏବଂ ସେଗୁଡ଼ିକ ସମ୍ବନ୍ଧରେ କୌଣସି ପ୍ରମାଣର ଅବଶ୍ୟକତାରେ ବିଶ୍ୱାସ କରୁଁ ନାହିଁ । ସୁତରାଂ କୌଣସି ମତ ପ୍ରତି ମୋହର ଦୃଢ଼ ବିଶ୍ୱାସ ଜନ୍ମିଲେ ତାହାକୁ ସହଜ ସ୍ୱତଃସିଦ୍ଧ ସତ୍ୟ ବୋଲି ଗ୍ରହଣ କରାଯାଇ ନ ପାରେ । ବିଶେଷତଃ ଯଦି ଏ କଥା ଠିକ୍ ହୁଏ ଯେ ମୁଁ କୌଣସି ବିଶେଷ ଭାବ ସମ୍ବନ୍ଧରେ ସହଜଜ୍ଞାନସିଦ୍ଧ ସତ୍ୟରେ ଉପନୀତ ହୋଇଅଛି, ତାହା ହେଲେହେଁ ଏହା ସମ୍ବନ୍ଧରେ ମୋହର ଏହି ବ୍ୟକ୍ତିଗତ ଅନୁଭୂତିହିଁ ଏହାର ସତ୍ୟତାର ଯଥେଷ୍ଟ ପ୍ରମାଣ ନୁହେ । କାରଣ, ମୁଁ କୌଣସି ଗୋଟିଏ ବିଷୟକୁ କୌଣସି ବିଶେଷ ଭାବରେ ଦେଖୁଅଛି, ଏହା ସମ୍ପୂର୍ଣ୍ଣ ବ୍ୟକ୍ତିଗତ ବ୍ୟାପାର । ଏହା ଉପରେ କେବେହେଁ ମାନବର ଧର୍ମରୂପ ବୃହତ୍ ଅଟ୍ଟାଳିକା ସଂସ୍ଥାପିତ ହୋଇ ନ ପାରେ । ମୁଁ ଯେଉଁ ବିଷୟରେ "ହଁ" କହୁଅଛି, ଅନ୍ୟ ଏକ ବ୍ୟକ୍ତି ଯଦି ତାହାର ବ୍ୟକ୍ତିଗତ ଅଭିଜ୍ଞତାର ଦୋହାଇ ଦେଇ ସେହି ବିଷୟରେ "ନା" କହେ, ତେବେ ମୋର ବକ୍ତବ୍ୟ କଣ ଅଛି ? ସହଜ-ଜ୍ଞାନବାଦୀ ତାଙ୍କର ମତ ଓ ବିଶ୍ୱାସ ସମ୍ବନ୍ଧରେ ସର୍ବସାଧାରଣଙ୍କ ସମ୍ମତି ଦାବୀ କଲେହେଁ ସେପରି ସମ୍ମତିକୁ ଆମ୍ଭେମାନେ ଉକ୍ତ ମତ ଓ ବିଶ୍ୱାସର ସତ୍ୟତା ସମ୍ବନ୍ଧରେ ନିତାନ୍ତ ପ୍ରମାଣ ବୋଲି ଗ୍ରହଣ କରିବାକୁ ବାଧ୍ୟ ନୋହୁଁ । କାରଣ, ଜଗତର ଇତିହାସ ପର୍ଯ୍ୟାଲୋଚନା କଲେ ଦେଖାଯାଏ ଯେ ଏପରି ଅନେକ ମତ ଅଛି ଯାହା ଏକ ସମୟରେ ସମାଜର ପ୍ରତ୍ୟେକ ଲୋକ ବିଶ୍ୱାସ କରୁଥିଲେ ଏବଂ ଶିକ୍ଷା ଓ ସଭ୍ୟତାର ସେହି ସୋପାନରେ ସକଳ ଦେଶର ଲୋକମାନେ ସେହି ମତରେ ବିଶ୍ୱାସ ସଂସ୍ଥାପନ କରିଅଛନ୍ତି; କିନ୍ତୁ ଶିକ୍ଷା ଓ ସଭ୍ୟତାର ଉନ୍ନତିରେ ପରେ ତାହା ମିଥ୍ୟା ବୋଲି ପରିତ୍ୟକ୍ତ ହୋଇଅଛି । ସକଳ ଲୋକେ ଏକ ସମୟରେ ପ୍ରତ୍ୟକ୍ଷ ଉପ-

ଲିଓର ଦୃଢ଼ ଭିତ୍ତି ଉପରେ ଦଣ୍ଡାୟମାନ ହୋଇ ବିଶ୍ୱାସ କରୁଥିଲେ ଯେ ପୃଥିବୀର ଚାରି ଆଡ଼େ ସୂର୍ଯ୍ୟ ଭ୍ରମଣ କରେ । କିନ୍ତୁ ଜ୍ଞାନର ଉନ୍ନତିରେ ସେ ମତ ଭ୍ରାନ୍ତ ବୋଲି ପରିତ୍ୟକ୍ତ ହୋଇଅଛି । ଯାହା ମୋର ନିକଟରେ ସହଜଜ୍ଞାନ-ସିଦ୍ଧ ସତ୍ୟ ବୋଲି ପ୍ରତୀତ ହୁଏ, ଯାହାକୁ ଏହିପରି ସତ୍ୟ ବୋଲି ଦୃଢ଼ ପ୍ରତୀତ କରେ, ତାହାହିଁ ଯଦି ସତ୍ୟ ହୁଏ, ତେବେ ପୂର୍ବବର୍ତ୍ତୀଗଣଙ୍କ ନିକଟରେ ଯାହା ସହଜଜ୍ଞାନ-ସିଦ୍ଧ ସତ୍ୟ ଥିଲା, ପରବର୍ତ୍ତୀଗଣ ତାହାକୁ ଅସତ୍ୟ ବୋଲି ପରିତ୍ୟାଗ କଲେ କାହିଁକି ? ପୂର୍ବବର୍ତ୍ତୀଗଣ ଯାହାକୁ ସହଜଜ୍ଞାନ-ସିଦ୍ଧ ସତ୍ୟ ବୋଲି ମନେ କରୁଥିଲେ ଏବଂ ଯେଉଁ ସହଜଜ୍ଞାନ-ସିଦ୍ଧ ସତ୍ୟର ସତ୍ୟତା ରକ୍ଷା-ପାଇଁ ସେମାନେ ନରରକ୍ତରେ ମେଦିନୀକୁ କଳଙ୍କିତ କରିବାକୁ ବାଧ୍ୟ ହୋଇଥିଲେ, ପରବର୍ତ୍ତୀଗଣଙ୍କ ନିକଟରେ ତାହାହିଁ ସ୍ପଷ୍ଟ ସହଜ ଅସତ୍ୟ ବୋଲି ପ୍ରତୀତ ହେଲା ଏବଂ ସେଥିରେ ବିଶ୍ୱାସ କରିବାଟା ଅଜ୍ଞାନତା ବୋଲି ପରିଗଣିତ ହେଲା । ବିଶେଷତଃ କୌଣସି ମତ ସମ୍ବନ୍ଧରେ ସର୍ବସାଧାରଣଙ୍କ ସମ୍ମତି ଗ୍ରହଣ କରିବାକୁ ହେଲେ ତାହାକୁ ଏପରି ସୂକ୍ଷ୍ମ କରିବାକୁ ହେବ ଯେ ସେଥିରେ ଉକ୍ତ ମତର ବିଶେଷତ୍ୱ ସମ୍ପୂର୍ଣ୍ଣ ଭାବରେ ବିନଷ୍ଟ ହୋଇଯିବ । ବେଦାନ୍ତ-ଧର୍ମର ଗୌରବ ସମ୍ପୂର୍ଣ୍ଣ ବିନାଶ ନ କରି ତାହା ସଙ୍ଗରେ ଅନ୍ୟଧର୍ମର ଏକତା ସମ୍ପାଦନ କରି ଯାଇ ନ ପାରେ । ଧର୍ମର ମୂଳତତ୍ତ୍ୱ ଈଶ୍ୱରଙ୍କ-ଠାରେ ସମସ୍ତେ ବିଶ୍ୱାସ ସଂସ୍ଥାପନ କରନ୍ତି, ଏହି କଥା ବୋଲି ଯଦି ପୌତ୍ତଳିକତା ଓ ବେଦାନ୍ତ-ଧର୍ମ ମଧ୍ୟରେ ଏକତା-ସୂତ୍ର ବାହାର କରି ହୁଏ, ତାହା ହେଲେ ବେଦାନ୍ତର ବେଦାନ୍ତତ୍ୱ ପରିତ୍ୟକ୍ତ ହେଲା । ବେଦାନ୍ତର ଯାହା ବିଶେଷତ୍ୱ, ତାହା ଛାଡ଼ି ଦେଲେ ଆଉ ତାହାକୁ ବେଦାନ୍ତ-ଧର୍ମ କହିବୁଁ କିପରି ? ସୁତରାଂ ଏ ଏକତାର କୌଣସି ମୂଲ୍ୟ ନାହିଁ । ଯଦି ଏପରି କହା ଯାଏ ଯେ ସର୍ବ-ଦେଶରେ ଓ ସର୍ବକାଳରେ ମନୁଷ୍ୟ ନିକଟରେ ଯାହା ସହଜଜ୍ଞାନ-ସିଦ୍ଧ ସତ୍ୟ ବୋଲି ପ୍ରତୀତ ହୋଇଅଛି, ତାହାକୁହିଁ ସତ୍ୟ ବୋଲି ଗ୍ରହଣ କରିବାକୁ ହେବ, ଏପରି ନୁହେ, କିନ୍ତୁ ଅପେକ୍ଷା-କୃତ ଉନ୍ନତ ଓ ସଭ୍ୟ ଜାତିମାନଙ୍କ ମଧ୍ୟରେ ଉନ୍ନତତର ଅବସ୍ଥାରେ ଯାହା ସତ୍ୟ ବୋଲି ପ୍ରତୀତ ହୋଇଅଛି, ତାହାକୁହିଁ ସତ୍ୟ ବୋଲି ଗ୍ରହଣ କରିବାକୁ ହେବ । ତେବେ ପ୍ରଶ୍ନ ଏହି ଯେ ସତ୍ୟ ମିଥ୍ୟାର ଅର୍ଥ କିଏ ବୁଝାଇ ଦେବ ? କେଉଁଟା ଉଚ୍ଚ କେଉଁଟା ନୀଚ, ତାହା କିଏ କହି ଦେବ? ସହଜ ଜ୍ଞାନର ( intuition ) ମୀମାଂସା ଯଦି ଶିରୋଧାର୍ଯ୍ୟ କର, ତେବେ ସେଠାରେ ଜୁଲୁ ଜର୍ମାନଙ୍କର କୌଣସି ପ୍ରଭେଦ ନାହିଁ । ଜୁଲୁର ସହଜ ଜ୍ଞାନରେ ଯାହା ପ୍ରତୀତ ହୁଏ, ତାହାର ଦାବୀ ଜର୍ମାନର ସହଜ ଜ୍ଞାନର ଦାବୀ ଅପେକ୍ଷା କୌଣସି ଅଂଶରେ ଊଣା ନୁହେ । ସୁତରାଂ ସହଜ ଜ୍ଞାନ ଏଠାରେ ମଧ୍ୟସ୍ଥ ହୋଇ ପାରେ ନାହିଁ । ଅତଏବ ସହଜ ଜ୍ଞାନର ଅତୀତ କୌଣସି ମୀମାଂସକର ପ୍ରୟୋଜନ । ବିଜ୍ଞାନହିଁ ଏହି ମୀମାଂସକ । ସୁତରାଂ ବ୍ରହ୍ମତତ୍ତ୍ୱ ଆଲୋଚନାରେ ବ୍ରହ୍ମବିଜ୍ଞାନ ଅପରିହାର୍ଯ୍ୟ ।

କ୍ରମଶଃ

ଶ୍ରୀ ଧୀରେନ୍ଦ୍ରନାଥ ଚୌଧୁରୀ ।

## ଅମୂଲ୍ୟମଣି ବା ଶୁଭ ସଙ୍ଗାଡ଼ ।

ଏକ ରାଜ୍ୟରେ ଜଣେ ମହାଜନ ଥାଏ । ମହାଜନର ଦୁ'ପୁଅ । ମହାଜନ ଦିନେ ଦୁ'ପୁଅଙ୍କୁ ଡାକି କହିଲା, 'ଅରେ ପିଲାଏ ! ବସି ଖାଇଲେ କେତେଦିନ ସରେ; ତୁମେ କିଛି କିଛି ଉପାୟ କର । ମୁଁ ତୁମକୁ ଶହେ ଲେଖାଏଁ ଟଙ୍କା ଦେଉଛି, ତୁମେ ସେ ଟଙ୍କାରେ ବେପାର ବଣିଜ କର । ବିଦେଶକୁ ଯାଅ, କିଏ କଣ ରୋଜଗାର କରି ଆଣିବ ଦେଖିବା ।' ଏହି କହି ଦୁ'ପୁଅଙ୍କୁ ଶହେ ଲେଖାଏଁ ଟଙ୍କା ଦେଲା । ସାନ ପୁଅ ଶହେ ଟଙ୍କା ନେଇ ଯାଉ ଯାଉ ବାଟରେ ଦେଖିଲା, ଜଣେ ଲୋକ ଗୋଟିଏ ଶୁଆ ନେଇ ବିକିବାକୁ ଯାଉଛି । ମହାଜନ ପୁଅ ପଚାରିଲା, 'କେତେ ଟଙ୍କା ହେଲେ ଏ ଶୁଆ ବିକିବୁ ।' ଲୋକ କହିଲା 'କୋଡ଼ିଏ ଟଙ୍କା ।' ମହାଜନ ପୁଅ କୋଡ଼ିଏ ଟଙ୍କା ଦେଇ ଶୁଆକୁ ରଖିଲା । ଯାଉ ଯାଉ ବାଟରେ ଦେଖିଲା, ଜଣେ ଗୋଟିଏ ବେଉଲ ନେଉଛି ବିକିବାକୁ । ସେ କହିଲା, 'କୋଡ଼ିଏ ଟଙ୍କା ଦେଲେ ବେଉଲଟିକି ଦେବି ।' ମହାଜନ ପୁଅ କୋଡ଼ିଏ ଟଙ୍କା ଦେଇ ବେଉଲଟିକି କିଣିଲା । ଖଣ୍ଡେ ଦୂର ଯାଇଛି ଦେଖିଲା, ଜଣେ ଗୋଟିଏ ଓଧ ନେଉଛି । ମହାଜନ ପୁଅ କୋଡ଼ିଏ ଟଙ୍କାରେ ସେ ଓଧଟିକି କିଣିଲା । ଫେରି ଖଣ୍ଡେ ଦୂର ଯାଇ ଦେଖିଲା, ଜଣେ ଗୋଟିଏ ସାପ ପେଡ଼ିରେ ପୂରେଇ ନେଉଛି । ମହାଜନ ପୁଅ କୋଡ଼ିଏ ଟଙ୍କା ଦେଇ ସାପଟିକି କିଣିଲା । ଏମିତି ଚାରି କୋଡ଼ି ଟଙ୍କା ସରି ଗଲା । ବାକି କୋଡ଼ିଏ ଟଙ୍କା ଖରଚ ସରିଲାରୁ ସାଙ୍ଗରେ ଶୁଆକୁ, ବେଉଲକୁ, ଓଧକୁ ଓ ସାପକୁ ନେଇ ଘରକୁ ଫେରି ଆସିଲା । ଏଣେ ସାନ ଭାଇ ଶହେ ଟଙ୍କା ନେଇ ଯାଇଥିଲା ବିଦେଶକୁ । ସେ ଫେରି ଆସିଲା ବେଳକୁ ଖାଇ ପିଇ ଚାରି ଶହ ଟଙ୍କା ଆଣିଛି । ମହାଜନ ଏହି ଦେଖି ସାନ ପୁଅକୁ ଘରେ ରଖି ସବୁ ସମର୍ପି ଦେଲା । ବଡ଼ ପୁଅକୁ ତାଙ୍କେ ହାତ ଧରି ଛାଡ଼ି ଦେଲା । ବଡ଼ ପୁଅ ଏ ଚାରି ଜନ୍ତୁଙ୍କୁ ସାଙ୍ଗରେ ନେଇ ଗୋଟିଏ ଗଛ ମୂଳେ ବସିଲା । ଏ ଚାରିଙ୍କି କହିଲା , 'ଯେଉଁ ଦେଶକୁ ଯେ ଯାଅ, ମୁଁ ତୁମକୁ କାହୁଁ ପୋଷିବି?' ଶୁଆ, ବେଉଲ, ଓଧ ଓ ସାପ କହିଲେ, 'ତୁ ଆମର ସଙ୍ଗାଡ଼ ହେଲୁ । ବିପତ୍ତି ପଡ଼ିଲେ ଆମକୁ ସୁମରିବୁ । ଆମେ ଦିନେ ହେଲେ ତୋ କାମରେ ଆସିବୁଁ ।' ଏହି କହି ଶୁଆ, ବେଉଲ, ଓଧ ବନସ୍ତକୁ ଗଲେ । ସାପ କହିଲା, "ସଙ୍ଗାଡ଼ ! ଚାଲ ଆମ ରାଜ୍ୟକୁ ଯିବା, ମୋ ମା ବାପ ଅଛନ୍ତି, ତୁମେ ତାଙ୍କୁ ଯାହା ମାଗିବ, ସେ ତା ଦେବେ ।" ମହାଜନ ପୁଅ ମଙ୍ଗିଲା, ସାପ ସାଙ୍ଗେ ସାଙ୍ଗେ ଗଲା, ଯାଇ କରି ନାଗରାଜା ଦେଶରେ ପହଞ୍ଚିଲା । ସାପର ମା ବାପ ସାପକୁ ଦେଖିଲା ମଣି ଆନନ୍ଦରେ ତାଙ୍କୁ ବାଟ ଦିଶିଲା ନାହିଁ । ସାପ କହିଲା, "ମତେ କାହୁଁ ତୁମେ ପାଇଥାନ୍ତ ? ଏ ସଙ୍ଗାଡ଼ କୋଡ଼ିଏ ଟଙ୍କା ଦେଇ ମତେ ମୁକୁଳେଇଛନ୍ତି । ଏହାଙ୍କ କଥା ଆଗ କରି ବୁଝି ସାର, ମୋ କଥା ପଛେ ବୁଝିବ ।" ବାପ ମା ମହାଜନ ପୁଅକୁ ବହୁତ ଆଦର କଲେ । କେତେ ଅପୂରୁବ ଦରବମାନ ଆଣି ଖାଇବାକୁ ଦେଲେ, ରତ୍ନ ପଲଙ୍କ ଦେଲେ ଶୋଇବାକୁ । ବିଦା ହେଲା ବେଳକୁ ସାପର ବାପ ମା ମହାଜନ ପୁଅକୁ ଗୋଟିଏ ମଣି ଆଣି ଦେଲେ । କହିଲେ, ଏ ମଣି ଯାହା ହାତରେ ଥିବ, ତାର । ଏହାକୁ ଯାହା କହିବ, ଏ ତା କରିବ । ଏହି ନା' ଅମୂଲ୍ୟ ମଣି । ମହାଜନ ପୁଅ ମଣିଟିକି ନିନ ଆସିଲା । ଆସୁ ଆସୁ ବାଟରେ ଏକ ରଜା ରାଜ୍ୟରେ ପହଞ୍ଚିଲା । ମଣିକି ପଚାରିଲା 'ହଇ ରେ ମଣି, ତୁ କାହାର ?' ମଣି କହିଲା 'ମୁଁ ଯାହା ହାତରେ ଅଛି, ତାହାର ।' ମହାଜନ ପୁଅ କହିଲା 'ତୁ କଣ କରିବୁ ?' ମଣି କହିଲା 'ଯାହା କହିବ, ତା କରିବ ।' ମହାଜନ

ପୁଅ କହିଲା 'ଘଡ଼କେ ଭିତରେ ଏ ରଜା ନଅର ଆଗରେ ହୀରା, ନୀଳା, ମୋତି, ମାଣିକ୍ୟରେ ଏକ ନଅର ହେବ; ଏ ରଜା ପୋଖରୀ ଆଗରେ ଶଙ୍ଖ ମଲ ମଲ ପଥରର ଏକ ପୋଖରୀ ହେବ; ଏ ରଜାର ବଗିଚା ଆଗରେ ରୁପା ଗଛରେ ସୁନା ଫୁଲର ବଗିଚା ହେବ ।' ସଭକୁ ସଭ ସକାଳୁ ଦେଖିଲା ବେଳକୁ ଉତ୍ତମ ସୁନ୍ଦର ନଅର, ପୋଖରୀ, ବଗିଚା ହୋଇଛି । ରାଇଜଯାକ ସମସ୍ତେ ଆଚମ୍ବିତ ହେଲେ ! ମହାଜନପୁଅ ସେ ନଅରରେ ଥାଏ, ରଜା ଯେତେବେଳେ ବଗିଚାକୁ ଆସନ୍ତି, ମହାଜନ ପୁଅ ସେତିକି ବେଳେ ବଗିଚାକୁ ଆସେ । ରଜା ପାଶାଖେଳ ବସେ କଲା ବେଳେ ମହାଜନ ପୁଅ ତାହାରେ ପାଶଖେଳେ । ରଜା କୋଠା ଉପରକୁ ପବନ ଖାଇବାକୁ ଆସନ୍ତି, ମହାଜନ ପୁଅ ଆସେ କୋଠା ଉପରକୁ । ଏମିତି ଦିନା କେତେ ଗଲା । ଦିନେ ରଜା ଗଲେ ମହାଜନ ପୁଅ ଘରକୁ । ମହାଜନ ପୁଅ ସାଙ୍ଗରେ ବସିକି ଦୁଃଖ ସୁଖ ହେଲେ, କହିଲେ, 'ମୋର ତ ପୁଅ ନାହିଁ, ଗୋଟିଏ ଝିଅ, ସେ ଝିଅଟିକି ତୁମକୁ ବାହା କରି ଦେବି, ମୋ ମୂଳକ ତୁମକୁ ଦେବି । ହେଲେ କଣ ହେବ, ତୁମେ ଏତେ ଧନ ଦଉଲତ କିମିତି ପାଇଲ, ମତେ କହ ।' ମହାଜନ ପୁଅ ତ ଏତେ ଛନ କପଟ ଜାଣେ ନାହିଁ । ସେ ସବୁ କଥା ଯାକ ରଜାକୁ କହି ଦେଲା । କିମିତି ଫନ୍ଦି ଫିକରରେ ମହାଜନ ପୁଅ ଠଉଁ ସେ ମଣିଟି ରଜା ହାତ କରିବେ, ଏହି ଭାବନାରେ ଥାନ୍ତି । ଝିଅକୁ ଆସି କହିଲେ, 'ତୁ ଯା ମହାଜନ ପୁଅ ପାଖକୁ, ସେ ତତେ ବାହା ହବାକୁ କହିବ । ତୁ କହିବୁ, ମୋର ବାର ମାସ ବ୍ରତ ସମ୍ପୂର୍ଣ୍ଣ ନ ହେଲେ ମୁଁ ବାହା ହେବି ନାହିଁ । ଯୃ କହି ସିମିତି ଛଉ ଛଳରେ ବଳରେ ତା ଠଉଁ ସେ ମଣିଟିକ ଆଣି ମତେ ଦବୁ ।' ରଜାଝିଅ ସିମିତି କଲା । ମହାଜନ ପୁଅକୁ କହିଲା, 'ତୁମର ଯେବେ ମୋ ଠେଇଁ ସେନେହ ଅଛି, ତେବେ ସେ ମଣିକ କେଉଁଠେଇଁ ରଖିଛ, ମତେ କହ । ମହାଜନ ପୁଅ କହିଲା 'ମୁଁ ଶୋଇଲା ବେଳେ ଛକଅ ତଳେ ରଖି ଶୁଏ ।' ଏହିଁ ଆର ଦିନ ରଜା ଗୁଡ଼ିଏ ମିଠେଇ ତିଆରି କରି ତା ଭିତରେ ହୁହୁଙ୍କ ମନ୍ତ୍ରି ଦେଇ ଝିଅ କମା ଦେଲେ, କହିଲେ, 'ମହାଜନ ପୁଅକୁ ଯୃକୁ ଖାଇବାକୁ ଦବୁ । ମହାଜନ ପୁଅ ଅଚେତା ହୋଇ ଶୋଇ ପଡ଼ିବ । ତୁ ସେତିକି ବେଳେ ଛକଅ ତଳୁ ମଣିଟିକ କାଢ଼ି ଆଣିବୁ, ମତେ ଦବୁ, ଯୃ ନ କଲେ ତତେ ହ'ଗଡ଼ କରି ହାଣି ପକେଇବ । ରଜାଝିଅ ସିମିତି କଲା । ମଣିକ ଅଣି ବାପ କମା ଦେଲା । ରଜା ସେ ମଣିକ ପଚାରିଲେ 'କି ରେ ମଣି ତୁ କାହାର ?' ମଣି କହିଲା 'ମୁଁ ଯାହା ହାତରେ ଅଛି ତାର ।' ରଜା ସେ ମଣିକ ହୁକୁମ ଦେଲେ 'କାଲି ସକାଳକୁ ଉଠିଲା ବେଳକୁ ଏ ମହାଜନ ପୁଅ ଖଣ୍ଡେ ଦୋ କନା ପିନ୍ଧି ସାତ ସମୁଦ୍ର ଭିତରେ ଏକ ଟାପୁରେ ଏକ ଅମୁହାଁ ଦେଉଳରେ ଶୋଇଥିବ ।' ମହାଜନ ପୁଅ ସଭଲୁ ସଭ ସକାଳୁ ଉଠି ଦେଖେ ଯେ ଏକ ଅମୁହାଁ ଦେଉଳରେ ପଶିଛି; ସବୁ ଅନ୍ଧାର । ମଣିକ ଦରାଣ୍ଡିଲା, ପାଇଲା ନାହିଁ । କେତେ କାନ୍ଦିଲା । ପଛକୁ ତା ଗୁରୁ ସଙ୍ଗାତଙ୍କ କଥା ମନେ ପଡ଼ିଲା । ହଉ, ଗଲା, କେଜାଣି ଅବା ଗୁରୁ ସଙ୍ଗାତଙ୍କୁ ସୁମରିଲେ ସେ ଆସିବେ । ଯୃ ବିପଦରେ ଗୁରୁ ସଙ୍ଗାତଙ୍କୁ ସୁମରଣା କଲା । ଓଧ ପାଣିରେ ପଶିଲା, ତା ଉପରେ ସାପ ଗୁଡ଼େଇ ହେଲା, ସାପ ଫେଣା ଟେକିଲା, ଫେଣା ଉପରେ କେଉଁଲ ବସିଲା । ଏମିତି ସେ ତିନହେଁ ସାତ ସମୁଦ୍ର ପାରି ହେଲେ; ଶୁଆ ଉଡ଼ି ଉଡ଼ି ଆସିଲା । ସମସ୍ତେ ଆସି ସେ ଅମୁହାଁ ଦେଉଳ ପାଖରେ ପହଞ୍ଚିଲେ । ଦେଖିଲା ବେଳକୁ ସେ ଦେଉଳର ଦୁଆର ନାହିଁ । କେଉଁଲ ସେ ଦେଉଳ ତଳୁ ମାଟି ଖୋଳିଲା । ଖୋଳି ଖୋଳି ଦେଉଳ ତଳେ ଏକ ଗାତ କଲା । ଗୁରୁସଙ୍ଗାତ ଯାଇ ଦେଉଳ ଭିତରେ ମହାଜନ ପୁଅ ପାଖରେ ପହଞ୍ଚିଲେ ।

ମହାଜନ ପୁଅ ଏହି ଦେଖି କେତେ କାନ୍ଦିଲା । ମହାଜନ ପୁଅକୁ ପଦାକୁ ଆଣିଲେ । ଶୁଆ ଉଡ଼ ଉଡ଼ ଯାଇ ଭଲ ଭଲ ବଣଫଳ ଆଣି ଦେଲା । ମହାଜନ ପୁଅ ଫଳସବୁ ଖାଇ ଶୁକ ସଙ୍ଗାତଙ୍କୁ ସେ ରଜା କଥାଯାକ ସବୁ କହିଲା । ଶୁକ ସଙ୍ଗାତଯାକ ମହାଜନ ପୁଅ ପାଖରେ ଆଠ ଦିନକୁ ଖାଇବା ଭଲ ପଦାର୍ଥମାନ ଆଣି ଦେଲେ; କହିଲେ, "ତୁମେ ଏଠାରେ ଥାଅ, ଆମେ ଯାଉଛୁଁ, ସେ ମଣିକି ଆଣିବୁଁ ।" ଏହି କହି ଶୁକ ସଙ୍ଗାତଯାକ ଯାଇ ରଜା ନଅରରେ ପହଞ୍ଚିଲେ । ରଜା ତୋଟା ଉପରକୁ ପବନ ଖାଇବାକୁ ଆସିଛନ୍ତି, ଶୁଆ ଉଡ଼ ଯାଇ ରଜାଙ୍କ ପାଖରେ ବସିଲା । ବୋଇଲା, 'ରାଧା, କୃଷ୍ଣ ରାଧା, କୃଷ୍ଣ ରାଧା, କୃଷ୍ଣ କୃଷ୍ଣ ରାମ ରାମ' 'ଗଦାଧର ! ପଶ୍ଚିମକୂଳକୁ ଉଦ୍ଧାର କର ।' ଏମିତ କେତେ ବୋଇଲା, ଗୀତଗୋବିନ୍ଦଯାକ ବୋଲି ଗଲା । ରଜା ଶୁଣି ବଡ଼ ଖୁସି ହେଲେ । ରଜା ହାତରେ ଗୋଟିଏ ପାଚିଲା କଇଞ୍ଚ କାକୁଡି ଧରି ଶୁଆଟିକି ଡାକିଲେ । ଶୁଆ କହିଲା, ତୁମେ ମତେ ପଞ୍ଜୁରିରେ ରଖିବ ନାହିଁ, ଏ କଥା ସତ୍ୟ କର, ମୁଁ ତୁମଠାକୁ ଯିବ, ଦିନ ରାତି ତୁମ ପାଖରେ ଥିବ ।' ରଜା ସତ୍ୟ କଲାରୁ ଶୁଆ ଆସି ରଜାଙ୍କ ହାତରେ ବସିଲା । ରଜା ଯାହା କହନ୍ତି, ସେ ତା ବୋଲେ । ଏଣେ ସେ ମଣିକି ଜଗୁଥାଏ । ଦେଖିଲା ଯେ ରଜା ରାତିରେ ଶୋଇଲା ବେଳେ ସେ ମଣିଟିକି ଜିଭ ତଳେ ଯାକି ଶୋଇଲେ । ଶୁଆ ଆସି ତିନ ସଙ୍ଗାତଙ୍କୁ ଏ କଥା କହିଲା । ରଜା ଶୋଇ ପଡ଼ି ଘୁଙ୍ଗୁଡ଼ି ମାରିଲେ । ସାପ ଯାଇ ରଜାଙ୍କ ନାକ ଭିତରେ ଲାଙ୍ଗୁଡ଼ିଟିକି ପୂରେଇ ଦେଲା । ରଜା ଛିଙ୍କି ଉଠିଲା ବେଳକୁ ପାଟିରୁ ମଣିଟି ଖସି ପଡ଼ିଲା । ଯିମିତ ମଣି ଖସି ପଡ଼ିଲା, ନେଉଳ ତାକୁ ପାଟିରେ ପୂରେଇ ରଖିଲା । ମଣିକି ନେଇ ଶୁକ ସଙ୍ଗାତଯାକ ମହାଜନ ପୁଅ ପାଖକୁ ବାହାରିଲେ । ଓଧ, ଓଧ ଉପରେ ସାପ, ସାପ ଫେଣ ଉପରେ ନେଉଳ ବସିଲା, ଶୁଆଟି ଉଡ଼ି ଗଲା । ନେଉଳ ପାଟିରେ ମଣିଟି ଥାଏ । ସମୁଦ୍ର ପାରି ହଉଥାନ୍ତି, ନେଉଳକୁ ହାଇ ଆସିଲା । ହାଇ ମାରିଲା ବେଳକୁ ମଣିଟି ପାଣିରେ ଖସି ପଡ଼ିଲା । ନେଉଳର ବୁଦ୍ଧି ହଜିଲା । ଏତେ ଦୁଃଖରେ ମଣି ମିଳିଥିଲା, କୁଆଡ଼େ ଗଲା ! ଓଧ ଏ କଥା ଶୁଣିଲା । ଓଧ ମାଛଙ୍କର ରଜା । ମାଛଯାକ ଓଧକୁ ଡରନ୍ତି । ଓଧ ଯାଇ ସମୁଦ୍ରଯାକ ଘାଣ୍ଟି ପକେଇଲା । ମାଛଯାକ ଡରରେ ଥରହର ହେଲେ । ଓଧ ଯାଇ ରାଘବ ମାଛକୁ ଧଇଲା । ରାଘବ ସବୁ ମାଛଙ୍କୁ ଆଣି ରୁଣ୍ଡ କଲା । କହିଲା, ଯେ ମଣିଟିକି ନେଇଛ, ଆଣି ଦିଅ, ନଇଲେ ଓଧ ଆଜି ଆମ ବଂଶ ନିର୍ମୂଳ କରିବ । ଗୋଟିଏ ମାଛ ସେ ମଣିଟିକି ଗିଳିଥିଲା । ଏହା ଶୁଣି ସେ ତା ପେଟ ଭିତରୁ ମଣିଟିକି ବାନ୍ତି କରି ପକେଇଲା । ଶୁକ ସଙ୍ଗାତ ମଣିଟିକି ପାଇ ଆନନ୍ଦରେ ମହାଜନ ପୁଅ ପାଖରେ ଆସି ପହଞ୍ଚିଲେ । ମହାଜନ ପୁଅ ମଣିଟିକି ପାଇବାରୁ ତାକୁ ଆନନ୍ଦରେ ବାଟ ଦିଶିଲା ନାହିଁ । ମଣିକି ହୁକୁମ ଦେଲା, ସେଇକ୍ଷଣି ଏକ ମନପବନ ଡଙ୍ଗା ଆଇଲା । ମହାଜନ ପୁଅ ଶୁକ ସଙ୍ଗାତଙ୍କୁ ନେଇ ସାତ ସମୁଦ୍ର ପାରି ହେଲା । ଆସି ସେ ରଜା ମୂଲକରେ ପହଞ୍ଚିଲା । ମଣିକି ହୁକୁମ ଦେଲା, 'ଏ ରଜାକୁ ଚଉକନା ପିଟେଇ ସାତ ସମୁଦ୍ର ଭିତର ଟାପୁରେ ସେ ଅମୁହାଁ ଦେଉଳରେ ରଖି ଆ ।' ରଜା ଗଲାରୁ ରଜା ଝିଅକୁ ଡାକି ସବୁ କଥା ପଚାରିଲା । ରଜା ଝିଅ ସବୁ କଥା ମାନି ଗଲା । କହିଲା 'ବାପା ମତେ ହାଣି ପକେଇବାକୁ ବସିଲାରୁ ମତେ ଯାହା କହିଲେ, ମୁଁ ତା କଲି । ତୁମେ ଗଲାରୁ ମତେ କେତେ ଜଗର କଲେ ବାହା ହବାକୁ, ମୁଁ ବାହା ହେଲି ନାହିଁ । ମୁଁ ତ ଏତେ କଥା ଜାଣି ନ ଥିଲି । ମୁଁ ତୁମକୁ ଖୋଜୁ ଥାଏଁ । ମତେ କହିଥିଲେ, ଯେବେ ତୁ ମାସକ ଭିତରେ ବାହା ନ ହବୁ, ତତେ ଦ'ଗଡ଼ା କରି ହାଣି ପକେଇବ । ଦଇବ ଯୋଗକୁ ମାସେ କ ପୂରୁଣୁ ତୁମେ ଆସି ପହଞ୍ଚି ଗଲ ।' ମହାଜନ ପୁଅ

ଏ କଥାର ପ୍ରମାଣ ନେଲା । ପଛକୁ ବୁଝିଗଲା ଯେ ଏ କଥା ସତ । ମହାଜନ ପୁଅ ବିଗିଡ଼ିଗଲା, ଯାହା ଉଦ୍ଧାର ହେବାରି, ରଜାଙ୍କୁ ଏ ମୂଳକଥାକୁ ନ ଅଣିଲେ ହେଲା । ଯୁଁ ବିଗିଡ଼ି ମନ୍ତ୍ରୀଙ୍କ ହୁକୁମ ଦେଇ ସାତ ସମୁଦ୍ର ଟାପୁ ଭିତରେ ଦବ୍ୟ ସୁନାର କଅଁର ଛୋଳେଇ ବିଦାୟ କରି ଦେଲା । ସେଦିନଠାରୁ ରଜା ରହିଲେ । ମହାଜନ ପୁଅ ରଜା ଝିଅକୁ ବିଭା ହେଲା । ବାପ ଭାଇଙ୍କି ଅଣି ପାତ୍ର ମନ୍ତ୍ରୀ କରି ଅପଣା ପାଖରେ ରଖିଲା । ରଜା ଝିଅ ମହାଜନ ପୁଅ ସହିତ ଭୋଗ କରି ଆନନ୍ଦରେ ରହିଲେ । ମୁଁ ଗଳାରୁ କଥା କହିଲେ ନାହିଁ ।

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ।

---

## ଭ୍ରମଣକାରୀର ପତ୍ର ।

### (ବୌଦ ।)

ଅମ୍ଭେମାନେ ସୋନପୁର ଛାଡ଼ି ମହାନଦୀ ସ୍ରୋତରେ ଯେମନ୍ତ ପୂର୍ବମୁଖ ହେଲୁଁ, ନାବ ଇଚ୍ଛାମୁକ୍ତ ହୋଇ ଖସି ଅସୁଥିଲା । ସ୍ଥାନେ ସ୍ଥାନେ ଏପରି ବେଗରେ ତଳକୁ ଗଡ଼ି ଅସୁଥିଲା, ଯେମନ୍ତ କି ଗୁମ୍ବଜ ଉପରୁ ଗୋଟା ପଡ଼ି ପଡ଼େ । କର୍ଣ୍ଣଧାର ସୁକାନ ସମ୍ଭାଳି ଧରିବାକୁ ସଙ୍କଟ ମଣୁଥିଲା । ସଲିଳଶାୟୀ ବିଷମ ଶିଳାସଙ୍କଟମାନ ନାବ, ନାବିକ ଏବଂ ଅରୋହୀମାନଙ୍କୁ ସଙ୍କଟରେ ପକାଇବାର ଶଙ୍କା ଜନ୍ମାଉଥିଲା । ମହାନଦୀର ମୋହନ ମୂର୍ତ୍ତି ଦେଖି କିଏ ବିମୋହିତ ନ ହେବ ? ନଦୀକୁ ବିଶ୍ୱାସ ନାହିଁ—ପୁଣି ମହାନଦୀକୁ ! ମହାନଦୀ ମହାବିଶ୍ୱାସଘାତକ । ମୋହନମୂର୍ତ୍ତି ମହାପୁରୁଷମାନେ ମହାନଦୀ ପରି ବିଶ୍ୱାସଘାତକ । ମୁହଁରେ ସୁଧା, ପେଟରେ ବିଷ, ହୃଦୟ ପରଗଳାକଟା କତୁରୀ । ବିଶ୍ୱାସ କରି ଗଳାଟି ପତାଇ ଦିଅ, ଦୟା ନାହିଁ, ମାୟା ନାହିଁ, ବେମାଲୁମ୍ ତୁମ୍ଭ ଗଳାଟି କାଟିଦେବେ । ତୁମ୍ଭେ ମଲଣି, ସେ ଦେଖୁଥିବେ । ତୁମ୍ଭ ମଲା କାନ ମୂଳରେ ମଧୁର ବଚନ ଢାଳି ଦେଉଥିବେ ! ତୁମ୍ଭେ ଶିଳାସଙ୍କଟରେ ଠେକ, ସାତ ତାଳ ଗଭୀର ଜଳରେ ବୁଡ଼, ମର, ପଡ଼, ଜାହାନ୍ନମକୁ ଯାଅ, ମହାନଦୀର ଭ୍ରୂକ୍ଷେପ ନାହିଁ । ସେ କଲ କଲ ମଧୁର ସ୍ୱର ତୁମ୍ଭ କାନରେ ଢାଳି ଦେଇ ବହି ଯାଉଅଛି । ଅନନ୍ତ ପ୍ରଭୁଙ୍କର ଅନନ୍ତ ସୃଷ୍ଟି । ମନୁଷ୍ୟଙ୍କୁ ସାବଧାନତା ଶିଖାଇବା ଲାଗି ମହାନଦୀ ଓ ମୋହନମୂର୍ତ୍ତି ମହାପୁରୁଷଙ୍କର ସୃଷ୍ଟି କି ? ତେଣୁ ମହାଜନମାନେ କହି ଅଛନ୍ତି, ନଦୀ, ନଖୀ, ଶୃଙ୍ଗୀ, ଅସ୍ତ୍ରଧାରୀ, ସ୍ତ୍ରୀ, ରଜା ଓ ଖଳ ଏମାନଙ୍କୁ ବିଶ୍ୱାସ କରିବ ନାହିଁ । ନଦୀ ଓ ଖଳକୁ ଛାଡ଼ି ତୁମ୍ଭେ ଚଳି ପାରିବ କି ? ନଦୀ ଜଳରେ ପଶିବା ବେଳେ ଗୋଡ଼ ଟିପି ଟିପି ଏବଂ ଖଳ ସହିତ ମିଳିବା ବେଳେ—ଅବଶ୍ୟ ପ୍ରୟୋଜନ ଯେନ—ମନ କଳି କଳି ଗତି କରିବ । ମହାନଦୀର କଲ୍ଲୋଳ କେଳି ଦେଖୁଁ ଦେଖୁଁ ପାର୍ବତ୍ୟରୁ ପାର୍ବତ୍ୟକୁ ଓହ୍ଲାଇ ଅଧିକା ପ୍ରାୟ ଉଚ୍ଚ ଦେଶରୁ ନିମ୍ନ ଦେଶକୁ ଓହ୍ଲାଇ ଅସିଲୁଁ । ସିକତା ଓ ଶିଳା ମିଶାମିଶି । ସୁମନ୍ଦ ମାରୁତବିକମ୍ପିତ ସ୍ରୋତରେ ପ୍ରାୟ ୪୦ ମାଇଲ ବାହାର ଅସିଲୁଁ ।

ଅଜ ରାତ୍ର ନଦୀଗର୍ଭରେ ବାସ । ସିକତା ଶଯ୍ୟା । ସୁଧାକର ସୁଧା-କର ସିକତା-ଶଯ୍ୟାରେ ଢାଳି ଦେଉଅଛନ୍ତି । ମନ୍ଦ ମାରୁତ ମନ୍ଦ ମନ୍ଦ ବହି ଦେହ ପ୍ରାଣ ଶୀତଳ କରୁଅଛି । ଜନପ୍ରାଣୀଶୂନ୍ୟ ନିର୍ମଳ ସ୍ଥାନ, ନିର୍ମଳ ଜଳ, ନିର୍ମଳ ପବନ, ନିର୍ମଳ ଅକାଶ ଓ ନିର୍ମଳ ଚନ୍ଦ୍ରିକା ଏକତ୍ର ପାଇ ଏ ମଳିନ ମନ—ପାପମନ ଟିକିଏ ନିର୍ମଳ ହେଲା । ବିଭୁଙ୍କର ପ୍ରକୃତି-ବିଭବ ମନକୁ ବିଭୋର କରି ଦେଲା । ମନେ ହେଉଥିଲା, ମୋର ମନୋ-

୫ମ ଭାଗ ।    ୬ଷ୍ଠ, ୭ମ ସଂଖ୍ୟା ।

ଆଶ୍ୱିନ, କାର୍ତ୍ତିକ, ୧୩୦୯






ମାସିକପତ୍ର ଓ ସମାଲୋଚନ ।

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ ।

—※○※—

ପ୍ରବନ୍ଧମାନଙ୍କ ମତ ନିମନ୍ତେ ଲେଖକମାନେ ଦାୟୀ ।



—:※:—

CUTTACK.
PRINTED BY V. KAR.
AT THE UTKAL SAHITYA PRESS.
1901




ଡାକମାସୁଲ ସମେତ ବାର୍ଷିକ ମୂଲ୍ୟ ୨୲

## ସୁସମ୍ବାଦ ।

'ଉତ୍କଳ ସାହିତ୍ୟ' ଛପା ହେବା ପରେ ଆମ୍ଭମାନଙ୍କ ସମ୍ବଲପୁରବାସୀ ବନ୍ଧୁ ଶ୍ରୀଯୁକ୍ତ ଶ୍ରୀପତି ମିଶ୍ର ମହାଶୟଙ୍କ ପତ୍ରରୁ ଅବଗତ ହେଲୁଁ ଯେ ମାନ୍ୟବର ଚୀଫ୍ କମିଶନର ସାହେବ ସମ୍ବଲପୁରରେ ଉପସ୍ଥିତ ହୋଇ ଓଡ଼ିଆମାନଙ୍କ ଗୁହାରିର ଉପଯୁକ୍ତ ଅନୁସନ୍ଧାନ କରି ଓଡ଼ିଆ ଭାଷାର ପୁନଃ ପ୍ରଚଳନର ଆଦେଶ ଦେଇ ଅଛନ୍ତି ଏବଂ ଲର୍ଡ କର୍ଜନଙ୍କ ମଞ୍ଜୁର ହେଲେ ଜାନୁଆରୀ ମାସଠାରୁ କାର୍ଯ୍ୟାଳୟମାନଙ୍କରେ ଓଡ଼ିଆରେ କାର୍ଯ୍ୟ ହେବାର ଆଶା ଦେଇଅଛନ୍ତି । ଏହି ସୁସମ୍ବାଦ ପ୍ରଚାର କରିବା ସଙ୍ଗେ ସଙ୍ଗେ ଆମ୍ଭେମାନେ ମାନ୍ୟବର ମହୋଦୟଙ୍କଠାରେ ଗଭୀର କୃତଜ୍ଞତା ଅର୍ପଣ କରୁଅଛୁଁ ଓ ସମ୍ବଲପୁରର ଓଡ଼ିଆ ଭାଇମାନଙ୍କୁ ହୃଦୟର ସହିତ ଅଭିନନ୍ଦନ କରୁଅଛୁଁ ।

---

## ନିବେଦନ ।

ପୂର୍ବ ନିର୍ଦ୍ଦେଶାନୁସାରେ ଆମ୍ଭେମାନେ 'ଉତ୍କଳସାହିତ୍ୟ'ର ଷଷ୍ଠ ଓ ସପ୍ତମ ସଂଖ୍ୟା ଉପଯୁକ୍ତ ସମୟରେ ପ୍ରକାଶ କଲୁଁ । ମାତ୍ର ଅନେକ ଗ୍ରାହକ ଆମ୍ଭମାନଙ୍କ ପ୍ରାର୍ଥନା ପ୍ରତି କର୍ଣ୍ଣପାତ କରିବାଟା ଆଦୌ କର୍ତ୍ତବ୍ୟ ମନେ କଲେ ନାହିଁ । ସେମାନଙ୍କ ମତରେ ଆମ୍ଭମାନଙ୍କର କିଛି ଅଭାବ ନାହିଁ ବା ଥାଇ ନ ପାରେ । ଆମ୍ଭେମାନେ କି ଉପାୟରେ ତାହାଙ୍କୁ କଣ ବୁଝାଇବୁଁ, ସ୍ଥିର କରି ନ ପାରି ହତବୁଦ୍ଧି ହୋଇଅଛୁଁ । କେବଳ ନିଜର ବୁଦ୍ଧି ବିବେକକୁ ଦୋଷ ଦେଉଅଛୁଁ ।

ଅନେକ ଗ୍ରାହକଙ୍କ ନାମ କଟା ହେବାରୁ ମଫସଲର ଗ୍ରାହକମାନଙ୍କ 'ନମ୍ବର' ବଦଳି ଯାଇଅଛି । ସମସ୍ତ ସଂଶୋଧନ କରି ବର୍ତ୍ତମାନ ସଂଖ୍ୟା ଉପରେ ସଂଶୋଧିତ 'ନମ୍ବର' ଦେଉଅଛୁଁ । ମୂଲ୍ୟ ପଠାଇବା ବେଳେ ବା ପତ୍ରାଦି ଲେଖିବା ବେଳେ ଏହି 'ନମ୍ବର' ନିର୍ଦ୍ଦେଶ କରିବାକୁ ସମସ୍ତଙ୍କୁ ଅନୁରୋଧ କରୁଅଛୁଁ । ତାହା ନ ହେଲେ ଆମ୍ଭମାନଙ୍କର ଅତ୍ୟନ୍ତ ଅସୁବିଧା ହେବ ।

---

## ପ୍ରାପ୍ତିସ୍ୱୀକାର ।

ଆମ୍ଭେମାନେ ନିମ୍ନଲିଖିତ ପୁସ୍ତକମାନ ସମାଲୋଚନା ନିମିତ୍ତ ପ୍ରାପ୍ତ ହୋଇ ଥିବାର କୃତଜ୍ଞତା ସହକାରେ ସ୍ୱୀକାର କରୁଅଛୁଁ । ନାନା କାରଣରୁ ସମ୍ପୂର୍ଣ୍ଣ ଇଚ୍ଛା ସତ୍ତ୍ୱେ ପୁସ୍ତକଗୁଡ଼ିକର ସମାଲୋଚନା ଏ ସଂଖ୍ୟାରେ ପ୍ରକାଶିତ ହୋଇ ନ ପାରିବାରୁ ଆମ୍ଭେମାନେ ଆନ୍ତରିକ ଦୁଃଖିତ । ଆଗାମୀ ସଂଖ୍ୟାରେ ପ୍ରକାଶ କରିବାର ସମ୍ପୂର୍ଣ୍ଣ ଅଭିଳାଷ ଅଛି । ଆଶା କରୁଁ ଗ୍ରନ୍ଥକାର ମହାଶୟମାନେ କ୍ଷମା କରିବେ ।

(୧) ଶ୍ରୀଯୁକ୍ତ ନନ୍ଦକିଶୋର ବଳ ବି. ଏ. ଙ୍କ ପ୍ରଣୀତ କୃଷ୍ଣକୁମାରୀ (କାବ୍ୟ), (୨) ଶ୍ରୀ ବ୍ରହ୍ମଚାରୀଙ୍କ ପ୍ରଣୀତ ଯତୋଧର୍ମସ୍ତତୋଜୟଃ (ପ୍ରହସନ), (୩) ବ୍ରହ୍ମଚାରୀଙ୍କ ପ୍ରଣୀତ ପାଠପାବଳି (ଇଂରାଜୀ ଶିକ୍ଷକ), (୪) ଶ୍ରୀଯୁକ୍ତ ହରିହର ରଥଙ୍କ ପ୍ରଣୀତ ରାମଜନ୍ମ ନାଟକ, (୫) ଶ୍ରୀଯୁକ୍ତ ନୀଳମଣି ବିଦ୍ୟାରତ୍ନଙ୍କ ନୀତିସାର, (୬) ଶ୍ରୀଯୁକ୍ତ ମଦନମୋହନ ନାୟକଙ୍କ ପ୍ରଣୀତ ବଣଫୁଲ (ପଦ୍ୟ), (୭) ଶ୍ରୀଯୁକ୍ତ ପଦ୍ମନାଭ ନାରାୟଣ ଦେବଙ୍କ ପ୍ରଣୀତ ସଙ୍ଗୀତପ୍ରହ୍ଲାଦ ନାଟକ ।

---



ଶ୍ରୀ ଶ୍ରୀ ଶ୍ରୀ ପଦ୍ମନାଭ ନାରାୟଣ ଦେବ (ପାରଳାଖେମିଣ୍ଡି)

ରାଜ୍ୟରେ ମୁହିଁ ରାଜା । ଏ ରାଜା ଲୁଣ୍ଠନ କରିବାର ଅଧିକାର କାହାରି ନାହିଁ । ଚନ୍ଦ୍ରା ଗଲା, ସୁନଦ୍ରା ହେଲା । ସପ୍ତଶତ ମନନ୍ଦଥା ଶୁଣି ମନେ ମନେ ହସୁଥିଲା । ରାତ ପାହିଲା, ସଯାର-ଚନ୍ଦ୍ର-ସମ୍ପୃକ୍ତ ମନଟ ଯାହା ମତ୍ତ ବଢ଼ିଲା ! ହରି ହରି ! ଗାଲ ଟେଖିଲ ହୋଇ ବୌଦ୍ଧ ରାଜଧାନୀ ଦେଖିବା । ମହାନଦୀର ଦକ୍ଷିଣ ତୀରରେ ବୌଦ୍ଧ ଓ ବାମ ତୀରରେ ସୋନପୁର ରାଜ୍ୟ ଲମ୍ବମାନ । ବୌଦ୍ଧର ନଗର ଓ ସୋନପୁରର ସରସ ବୃକ୍ଷଲତା ଦେଖା ଯାଉଥିଲା । ମହାନଦୀର ଦକ୍ଷିଣ ତୀର ଉଚ୍ଚ ଓ ବାମ ତୀର ନିମ୍ନ ଭୂମି । ତେଣୁ ଏହି ପ୍ରଭେଦ । ବୌଦ୍ଧ ଘାଟ ଛାଡ଼ି ସହରକୁ ଗଲୁଁ । ଦେବାନ ମଧୁସୂଦନ ରାଜଗୁରୁ ମହାଶୟ ନାମ ଶୁଣିବାକ୍ଷଣି ଠାବ ଦେଲେ ଓ ଯଥାବିହିତ ଅଭ୍ୟର୍ଥନା କଲେ ।

ଏ ରାଜ୍ୟର "ବୌଦ୍ଧ" ନାମ କପରି ହେଲା ? ବୁଦ୍ଧଙ୍କ ଧର୍ମର ପ୍ରଧାନ ସ୍ଥାନ ଥିଲା କି ? ସନ୍ଧାନରେ ତାହା ମିଳିଲା । ସୁଦୀର୍ଘ କାଳ ଯାହା ଏକାଳ ପର୍ଯ୍ୟନ୍ତ ତାହା ସମ୍ମାନ ରକ୍ଷି ଅଛି ! ଆମ୍ଭର ବୌଦ୍ଧବନ୍ଧୁ ବାବୁ ଫକୀରଚରଣ ପାଣି ରାଜପ୍ରାସାଦ ନିକଟରେ ପ୍ରକାଣ୍ଡ ପ୍ରସ୍ତରନିର୍ମିତ ବୁଦ୍ଧମୂର୍ତ୍ତି ଦେଖାଇ ଦେଇ ଆମ୍ଭର ଅନୁସନ୍ଧାନକୁ ସାର୍ଥକ କରାଇଲେ । ଅନୁସନ୍ଧାନରୁ ଅଧିକ ଜଣା ଗଲା, ଏଠାରୁ ୫ କ୍ରୋଶ ଦୂରରେ ଦ୍ୱିତୀୟ ମୂର୍ତ୍ତି ଫକୀରପୁର ଗ୍ରାମରେ ପଡ଼ି ରହିଅଛି ।

ରାଜ୍ୟ ମଧ୍ୟରେ ଅନେକ ସ୍ଥାନରେ ଘୋର ଅରଣ୍ୟରେ ସମୃଦ୍ଧିଶାଳୀ ଜନପଦମାନ ଥିବାର ପ୍ରମାଣସ୍ୱରୂପ ପୁଷ୍କରିଣୀ, ପ୍ରସ୍ତର ଓ ଇଷ୍ଟକରେ ନିର୍ମିତ ମନ୍ଦିର ଓ ଅଟ୍ଟାଳିକାମାନଙ୍କର ଭଗ୍ନାବଶେଷ ଅବଧି ରହିଅଛି ।

ପ୍ରାଚୀନ ଇତିହାସରୁ ପ୍ରମାଣ ମିଳଇ ଓଡ଼ ବା ଓଡ୍ର ଦେଶର ସୀମା ବୌଦ୍ଧ ପର୍ଯ୍ୟନ୍ତ ଥିଲା । ଓଡ଼ (ଉଗ୍ର) ଆର୍ଯ୍ୟମାନେ ଆର୍ଯ୍ୟାବର୍ତ୍ତରୁ ଏହି ଅନାର୍ଯ୍ୟ ଭୂମି ଉତ୍କଳକୁ ପ୍ରଥମ କୃଷିଯୁଗ (ସଭ୍ୟ ଯୁଗର ଆରମ୍ଭ) ଆଣି ଥିଲେ । ଏମାନେ କ୍ଷତ୍ରିୟ ଥିଲେ । ବ୍ରାହ୍ମଣ ନ ପାଇ କ୍ରିୟାଭ୍ରଷ୍ଟ—ବୃଷଳତ୍ୱଂ ପତିତ ହେଲେ ।

ଶନକୈସ୍ତୁ କ୍ରିୟାଲୋପାଦିମାଃ କ୍ଷତ୍ରିୟଜାତୟଃ ।
ବୃଷଳତ୍ୱଂ ଗତାଲ୍ଲୋକେ ବ୍ରାହ୍ମଣାଦର୍ଶନେନ ଚ ।

ଅନ୍ୟତ୍ର—ଶୂଦ୍ରାକ୍ଷତ୍ରିୟୟୋରୁଗ୍ରୋ
ମାଗଧଃ କ୍ଷତ୍ରିୟାବଶୋଃ ।

ଶୂଦ୍ରଜାତ ସ୍ତ୍ରୀ, କ୍ଷତ୍ରିୟ ପୁରୁଷ, ଏଥିରୁ ଉଗ୍ର ବା ଓଡ଼ ଜାତି । ଏହି ଉଗ୍ରମାନେ ଆର୍ଯ୍ୟାବର୍ତ୍ତରେ ଅନାଦୃତ ହୋଇ ସ୍ରୋତ ବହିଲା ପରି ଏ ଦେଶକୁ ଆସିଥିଲେ । ନାନା ଦିଗ୍‌ଦେଶ ବ୍ୟାପି ବର୍ତ୍ତମାନରେ ଆଗୁରି, ମଧ୍ୟପ୍ରଦେଶରେ ଅଗ୍ରିଆ ଏବଂ ଉତ୍କଳରେ ଓଡ଼ ବା ଉଡ଼ ନାମରେ ଆଖ୍ୟାତ । କୃଷି ଏମାନଙ୍କର ପ୍ରଧାନ ଜୀବିକା । ତେଣୁ ଏମାନଙ୍କୁ ଚଷା ବୋଲନ୍ତି । ଚଷା ବୋଲି ଗୋଟାଏ ଜାତି ନାହିଁ । ପୂର୍ବ ବଙ୍ଗରେ କୁଳଣ୍ଡା, ମଧ୍ୟ ବଙ୍ଗରେ କୈବର୍ତ୍ତ, ଉତ୍ତର ବଙ୍ଗରେ ସଦ୍‌ଗୋପ, ବେହାରରେ କୁର୍ମି, ପଞ୍ଜାବରେ ଜାଠ, ମଧ୍ୟ-ପ୍ରଦେଶରେ କୋଲଥିଆ, ଉତ୍କଳରେ ଓଡ଼ ଚଷ ନାମରେ ଅଭିହିତ । ଓଡ଼ ଜାତି ଉତ୍କଳରୀ ଉନ୍ନତିର ଆଦିକାରଣ । ଏଣୁ ଏ ଦେଶକୁ ଓଡ଼ ବା ଉଡ୍ର ଦେଶ ବୋଲି । ବାସ୍ତବ ଦେଶଟା ଓଡ଼ଙ୍କର । ଓଡ଼ମାନେ ଜମି ଚଷି ଶସ୍ୟ ଉତ୍ପନ୍ନ କଲେ । ଅନ୍ୟମାନେ ଅନ୍ନ ଖୋଜି ଆସି ଏ ଦେଶରେ ବାସ ବିସ୍ତାର କଲେ ।

କାଳେ ଆର୍ଯ୍ୟ ନୃପକୁଳଙ୍କଦ୍ୱାରା ଉତ୍କଳ ଶାସିତ ଓ ରକ୍ଷିତ ହେଲା । ଆର୍ଯ୍ୟଖଣ୍ଡରେ ଧର୍ମ-ବିପ୍ଳବ ପଡ଼ିଲା । ବୌଦ୍ଧ ଧର୍ମ ବ୍ରାହ୍ମଣ୍ୟ ଧର୍ମକୁ ନିବଳିତ କଲା । ଖ୍ରୀଷ୍ଟାବ୍ଦ ୩୧୮ ସାଲରେ ଶୋଭନ ଦେବଙ୍କ ରାଜତ୍ୱ କାଳରେ ବୌଦ୍ଧ ଧର୍ମାବଲମ୍ବୀ ରାଜା ରକ୍ତବାହୁ ଉତ୍କଳ ବିଜୟ ସଙ୍କାଶେ ସମାଗତ ହେଲେ । ଏ ଦିଗ୍‌ବିଜୟୀ ନରେଶ ଯୁବନ ବା ଯବନ ନାମରେ ଆଖ୍ୟାତ ପତିତ କ୍ଷତ୍ରିୟ ।

"ଶୌଣ୍ଡ୍ରକାଃ ଓଡ୍ର ଦ୍ରବିଡ଼ାଃ
କାମ୍ବୋଜା ଯବନାଃ ଶକାଃ ।

ପ୍ରତ୍ନତତ୍ତ୍ୱବିତ୍ ବଙ୍ଗଳା ଗଭର୍ଣ୍ଣମେଣ୍ଟଙ୍କର ଟାର୍‌ସିଆଲ୍ ସେକ୍ରେଟରି ମହାତ୍ମା ଏଣ୍ଡ୍ରୁ ଷ୍ଟିରଲିଂ ସାହେବ ପ୍ରାୟ ୭୦ ବର୍ଷ ପୂର୍ବେ ଉତ୍କଳର ଇତିବୃତ୍ତ ସଙ୍ଗ୍ରହ କରି ଲେଖି ଅଛନ୍ତି, A Yavana or foreigner named Raktabahu (the Red-armed) having assembled a large army with the intention of invading Orissa embarked his troops on vessels with numerous horses and elephants and having made the coast, anchored at a distance from the town of Jaganath, hoping to take Pooree by surprise. The dung, straw, & of the horses and elephants, happening to float ashore in quantities, attracted the notice of some of the people of the town. They immediately reported the unusual appearance to the Raja, who guessed that some powerful enemy was coming to attack him.

Seized with a panic he took the image of Sri Jeo or Jaganath out of the temple, lodged it in a covered cart with all its jewels and utensils and fled away to SonePur Gopalli, the most remote town on his western frontier! The Yavanas landed, and not finding the prince plundered the town and temple and committed great excesses everywhere.

"A Yavana dynasty then ruled over Orissa for the space of 146 years"

ସାରାର୍ଥ—ରକ୍ତବାହୁନାମକ ଏକ ଯବନ ନୃପତି ସେନା ଘେନି ଓଡ଼ିଶା ଆକ୍ରମଣ କଲେ । ଅସଂଖ୍ୟ ହସ୍ତି, ଅଶ୍ୱ, ଜଳଯାନ ସହିତ ପୁରୀ ନଗରର କିଛି ଦୂରରେ ଅଟକି ରହିଲେ । ଘୋଡ଼ା, ହାତୀମାନଙ୍କ ଲଣ୍ଡି ଏବଂ ଆବର୍ଜ୍ଜନାମାନ ସମୁଦ୍ର ଜଳରେ ଭାସି ଆସି କୂଳରେ ଲାଗିଲା । ଉତ୍କଳ-ନରେଶ ଏହା ଶୁଣି ପ୍ରବଳ ଶତ୍ରୁ ଆସୁଅଛି ବୋଲି ଶ୍ରୀ ଜିଉ ଓ ଧନରତ୍ନାଦି ଗାଡ଼ିରେ ନେଇ ଓରେ ଦେଶ ସୀମା ଅତିକ୍ରମ କରି ସୋନପୁର ଗୋପାଳିକୁ ପଳାଇ ଗଲେ । ବ୍ରାହ୍ମଣ୍ୟ ଧର୍ମ ସୋନପୁରରେ କଣ୍ଠାଗତ ପ୍ରାଣ ଆତ୍ମରକ୍ଷା କଲା । ବୌଦ୍ଧ ଧର୍ମ ବୌଦ ରାଜ୍ୟ ପର୍ଯ୍ୟନ୍ତ ଅଧିକାର ବିସ୍ତାର କଲା ।

ରାଜଚରିତ ଗ୍ରନ୍ଥ ଏବଂ ଜନଶ୍ରୁତିରୁ ଇଂରାଜ ପୁରାତତ୍ତ୍ୱବିତ୍ ଯାହା ପାଇଅଛନ୍ତି, ତାହା ମୂଳରେ ଗୂଢ଼ ସତ୍ୟ ନିହିତ ।

ସୋନପୁରର ସୌଭାଗ୍ୟ, ସୁକୀର୍ତ୍ତି ଏବଂ ଧର୍ମୋନ୍ନତି ଏହି କାଳରେ ହୋଇ ଥିଲା । ସୋନପୁର ବିବରଣ ଲେଖିଲା ବେଳେ ଏହାର ଅତୀତ କାଳର ଘଟଣାବଳୀ ଖୋଜି ପାଇ ନ ଥିଲୁଁ । ଏଠାରେ ସ୍ୱର୍ଗଛଡ଼ା ଦୁର୍ଲ୍ଲଭ ସ୍ଥାନ କାହିଁ ଆସିଲା ? ସନ୍ଦେହ ପିଟିଲା । ଏବେ ମୂଳ ମିଳିଲା । ପ୍ରାୟ ଦେଢ଼ ଶତ ବର୍ଷ କାଳ ସୋନପୁର ପୁଣ୍ୟ— ଜଗନ୍ନାଥକ୍ଷେତ୍ର ହୋଇଥିଲା । ସେହି ପୁଣ୍ୟ-ପ୍ରତାପ ରାଜକୁଳୋଦ୍ଭବ ଧର୍ମାବତାର ଶ୍ରୀ ପ୍ରତାପ-ରୁଦ୍ରଦେବ ଆଜି ସୋନପୁରର ମାହାତ୍ମ୍ୟ ରକ୍ଷା କରୁଅଛନ୍ତି । ଧର୍ମଶକ୍ତିଠାରୁ ବଳ ଶକ୍ତି ନାହିଁ । ଧର୍ମ ଶକ୍ତିର ଜୀବନ ଅକ୍ଷୟ । ରାଜଶକ୍ତି କ୍ଷଣ-ଭଙ୍ଗୁର । ପୁଣି ଦେଖ, ବୌଦ ଓ ସୋନପୁର ମହାନଦୀର ଏପାରି ସେପାରି । ବୌଦ୍ଧ ଧର୍ମ ବୌଦରେ ଏପରି ପ୍ରଭାବ ଜାରି କରିଥିଲା ଯେ ସେ ଧର୍ମ ବହୁ ଶତାବ୍ଦୀ ହେଲା ଭାରତରୁ ବାହାରି ଯାଇ ଥିଲେହେଁ ବୌଦରେ ତାହାର ସତ୍ତା ସ୍ପଷ୍ଟ ଜଣା ପଡ଼ୁଅଛି । କନ୍ଧମାନେ—ଜଣା ନ ପଡ଼ି ଥିଲେହେଁ—ନିଶ୍ଚୟ ବୌଦ୍ଧଧର୍ମାବଲମ୍ବୀ । ଦୁଇଟା ରାଜ୍ୟ ପରସ୍ପରକୁ ଭିଡ଼ି ଥିଲେହେଁ ଯେମନ୍ତ କିଏ ରେଖା କାଟି ଦେଇ ଫଫାଳି ରଖି ଅଛି । ସୋନ-ପୁରରେ ଆର୍ଯ୍ୟ ଭାବ ଓ ଆର୍ଯ୍ୟ ଜାତିର ଆଧିକ୍ୟ । ବୌଦରେ ଅନାର୍ଯ୍ୟ ଭାବ ଓ କନ୍ଧ ଜାତିର ପ୍ରାଧାନ୍ୟ ।

ପ୍ରବନ୍ଧଟା ପଢ଼ି କେହି କେହି ଭାବିବେ ଯେ ଯବନ ଭାରତଛଡ଼ା ଗୋଟାଏ ବିଜାତୀୟ

ଜାତ ହେବେ । ନୋହିଲେ ଅର୍ଣ୍ଣବଯାନ କାହିଁ ପାଇଲେ ସେ ସମୁଦ୍ରବାସୀ ସେନା ସାଗର ଧରି ଘୂରିଲୁ ଥାଉ ଦେଇଥିଲେ । ଏ ସନ୍ଦେହ ଦୂର କରିବାକୁ ଯୁକ୍ତି ଅଛି । ବୌଦ୍ଧ ଯୁଗରେ ଭାରତ ଉନ୍ନତିର ପରାକାଷ୍ଠା ଲଭ ଥିଲା । ବୌଦ୍ଧ ଧର୍ମ ଭାରତକୁ ମନ୍ଥନ କରି ଏକଛତ୍ର କରିଥିଲା—ମହାଶକ୍ତି ସୃଷ୍ଟି କରି ଥିଲା, ହିମଗିରି ଲଂଘନ କରି ତିବ୍ବତରେ ପଶିଥିଲା, ଦୁର୍ଲଂଘ୍ୟ ସାଗର ଲଂଘନ କରି ଚୀନ, ଜାପାନ ଓ ଲଙ୍କାଦ୍ୱୀପରେ ଦୁନ୍ଦୁଭି ବିସ୍ତାର କରି ଥିଲା, ତାମ୍ରଲିପ୍ତ (ତମଲୁକ) ନଗରକୁ ସମୁଦ୍ରବାସୀ ପୋତର ବିଶାଳ ବନ୍ଦର କରିଥିଲା, ସମାଗରା ଧରା ବ୍ୟାପି ବୌଦ୍ଧ ଶକ୍ତିର ପତାକା ଉଡ଼ାଇ ଥିଲା । ତମଲୁକର କନ୍ଦୁଦ୍ଧର ଯୁଗଳ ମୂର୍ତ୍ତି ବୁଦ୍ଧ ମୂର୍ତ୍ତିର ନାମାନ୍ତର ମାତ୍ର । ବୌଦ୍ଧଧର୍ମର ତିରୋଭାବ ଏବଂ ବ୍ରାହ୍ମଣ୍ୟ ଧର୍ମର ଆବିର୍ଭାବ କାଳରେ ଦୁଇ ଗୋଟି ପ୍ରସ୍ତରନିର୍ମିତ ବୁଦ୍ଧଦେବମୂର୍ତ୍ତି ଏକତ୍ର କରିନ ବ୍ରାହ୍ମଣମାନେ କନ୍ଦୁଦ୍ଧର ନାମ ଦେଇ ହରି ମନ୍ଦିରରେ ଅଦ୍ୟାପି ପୂଜା କରୁଅଛନ୍ତି । ଜଗନ୍ନାଥ ବୌଦ୍ଧାବତାର ହୋଇ ପୁରୀରେ ବିରାଜମାନ ଅଛନ୍ତି । ହିନ୍ଦୁମାନଙ୍କ କାନ ଧରି କହୁଅଛନ୍ତି ଜାତିଭେଦ ରଖ ନାହିଁ—ଭାଇଭେଦ କର ନାହିଁ—ଏକପଙ୍କ୍ତିରେ ବସ—ଏକାଠି ପାନ ଭୋଜନ କର—ଏକପ୍ରାଣ ଏକମନ ହୁଅ । ନୋହିଲେ ଏକତା ପାଇବ କି ? ଏକପ୍ରାଣ ନ ହେଲେ ଶକ୍ତି କାହିଁ ଆସିବ ? ଶକ୍ତି ନ ହେଲେ ଜାତୀୟତା କାହିଁ ଆସିବ ? ଜାତୀୟତା ସୃଷ୍ଟି ନ କଲେ ସଭ୍ୟ ଜଗତରେ ସମ୍ମାନ ଜାଗି ହେବ କି ? କିଏ ଶୁଣୁ ଅଛି ସେ କଥା ? ଟିକିଏ ଟିକିଏ ମନୁଷ୍ୟ ଟିକିଏ ଟିକିଏ ସ୍ୱାର୍ଥରେ ପରି ମରୁଅଛନ୍ତି । ଦିବାକ୍ ମନେ ମୂଳରୁ ଯେବେ ଗଙ୍ଗା ବାହାରେ ! ହରିଙ୍କ ଇଚ୍ଛା !

କ୍ରମଶଃ ।

ଶ୍ରୀ ଭୋଳାନାଥ ସାମନ୍ତରାୟ ।

---

## ବୈଦିକ ଉପାଖ୍ୟାନ । (୬)

ପୂର୍ବକାଳରେ ଅରୁଣବଂଶୋଦ୍ଭବ ଶ୍ୱେତକେତୁ ନାମରେ ଏକ ବାଳକ ଥିଲେ । ଏକଦା ତାଙ୍କ ପିତା ତାଙ୍କୁ କହିଲେ, ହେ ବତ୍ସ ! ତୁମ୍ଭେ ବ୍ରହ୍ମଚର୍ଯ୍ୟ ଅବଲମ୍ବନପୂର୍ବକ ବିଦ୍ୟାଭ୍ୟାସ କର; ଯେହେତୁ ଆମ୍ଭ ବଂଶରେ ଜନ୍ମ ଗ୍ରହଣ କରି ଅଦ୍ୟ ପର୍ଯ୍ୟନ୍ତ କେହି ମୂର୍ଖ ହୋଇ ନାହାନ୍ତି ।

ଅନନ୍ତର ସେହି ଶ୍ୱେତକେତୁ ପିତାଙ୍କ ଆଜ୍ଞା ପ୍ରତିପାଳନ କରି ଦ୍ୱାଦଶ ବର୍ଷ ବୟଃକ୍ରମରୁ ଚତୁର୍ବିଂଶ ବର୍ଷ ପର୍ଯ୍ୟନ୍ତ ଯଥାବିଧି ଗୁରୁଗୃହରେ ଅବସ୍ଥାନପୂର୍ବକ ବେଦସମୂହ ଅଧ୍ୟୟନ କରି ବେଦବିଦ୍ୟାଭିମାନୀ ଓ ଗମ୍ଭୀରସ୍ୱଭାବ ହୋଇ ଗୃହକୁ ଫେରି ଆସିଲେ ।

ତହିଁ ତାଙ୍କ ପିତା କହିଲେ, ସୌମ୍ୟ ଶ୍ୱେତକେତୁ ! ଆମ୍ଭେ ଦେଖୁଅଛୁଁ ତୁମ୍ଭେ ବେଦବିଦ୍ୟାଭିମାନୀ ହୋଇ ଗମ୍ଭୀରସ୍ୱଭାବ ହୋଇଅଛ, ମାତ୍ର ଯେଉଁ ଆଦେଶର ଉପଦେଶଦ୍ୱାରା ଅଶ୍ରୁତକୁ ଶୁଣା ଯାଏ, ମନର ଅଗୋଚରକୁ ମନନ କରା ଯାଏ ଓ ଅବିଜ୍ଞାତକୁ ଜାଣିବାକୁ ହୁଏ, ତୁମ୍ଭେ କି ସେ ବିଷୟରେ ଆଚାର୍ଯ୍ୟଙ୍କୁ କୌଣସି ପ୍ରଶ୍ନ ପଚାରିଥିଲ ? ଶ୍ୱେତକେତୁ କହିଲେ, ଭଗବନ୍ ! ସେ ଉପଦେଶ କି ପ୍ରକାର ? ଅନନ୍ତର ପିତା ଉକ୍ତ ବିଷୟ ବିବୃତ କରିବାକୁ ଆରମ୍ଭ କରି କହିଲେ, "ହେ ବତ୍ସ ! ଯେପରି ଗୋଟିଏ ମୃତ୍ପିଣ୍ଡର ବିଷୟ ଅବଗତ ହେଲେ ସକଳ ମୃଣ୍ମୟ ପଦାର୍ଥ ବିଜ୍ଞାତ ହୁଏ, କେବଳ ବିକୃତ ହେତୁରୁ ଆକୃତିଭେଦରେ ପ୍ରଯୋଜକ ବାକ୍ୟର ବଳନୀୟତା ଯୋଗୁଁ ଭିନ୍ନ ଭିନ୍ନ ନାମ ଧାରଣ କରିଥାଏ, କିନ୍ତୁ ମୂଳ ବସ୍ତୁ ସନ୍ନିଠାରେ ଏକମାତ୍ର ମୃତ୍ତିକାସ୍ୱରୂପ, ସେହିପରି ପୂର୍ବୋକ୍ତ-

ଚିତ୍ର ମଧ୍ୟ ଅଳଙ୍କାରର ଭେଦରେ ନାନା ଆକୃତି-ବିଶିଷ୍ଟ ହୋଇ ଭିନ୍ନ ଭିନ୍ନ ନାମ ଧାରଣ କରି ଥାଏ, କିନ୍ତୁ ମୂଳ ବସ୍ତୁ ସବୁ ଅଳଙ୍କାରରେ ଏକ ମାତ୍ର ସୁବର୍ଣ୍ଣସ୍ୱରୂପ ।"

ଅନନ୍ତର ଶ୍ୱେତକେତୁ କହିଲେ, ଭଗବନ୍! ଆଚାର୍ଯ୍ୟ ମହାଶୟ ବୋଧ ହୁଏ ଏ ବିଦ୍ୟା ଜାଣନ୍ତି ନାହିଁ । ସେ ଜାଣିଥିଲେ ଅବଶ୍ୟ ଆମ୍ଭଙ୍କୁ ଶିକ୍ଷା ଦେଇ ଥାନ୍ତେ । ହେ ପିତଃ ! ଆପଣ ଉକ୍ତ ବିଷୟରେ ମତେ ଉପଦେଶ ପ୍ରଦାନ କରନ୍ତୁ । ପିତା 'ତଥାସ୍ତୁ' କହି ଉପଦେଶ ଦେବାକୁ ଆରମ୍ଭ କରି କହିଲେ, ହେ ବତ୍ସ ! ମଧୁକର ଯେପରି ନାନା ପ୍ରକାର ବୃକ୍ଷର ପୁଷ୍ପରୁ ରସ ଆହରଣ କରି ମଧୁ ସଞ୍ଚୟ କରେ, ସେହି ଭିନ୍ନ ଭିନ୍ନ ପୁଷ୍ପର ରସ ଏକତ୍ର ମିଳିତ ହୋଇ ମଧୁ ଆକାରରେ ପରିଣତ ହେଲେ ସେଥିରେ ଯେପରି ଏ ପୁଷ୍ପର ବା ସେ ପୁଷ୍ପର ରସ ବୋଲି ବିଭେଦ-ଜ୍ଞାନ ରହି ନ ପାରେ, ସେହିପରି ଏହି ସକଳ ସୃଷ୍ଟ ପ୍ରାଣୀ ସେହି ସତ୍ୟସ୍ୱରୂପ ପରମବ୍ରହ୍ମରେ ଲୀନ ହେଲେ ଆଉ କିଛି ଜାଣି ପାରନ୍ତି ନାହିଁ । ହେ ବତ୍ସ! ଯାବତ୍ ସେମାନେ ସତ୍ୟସ୍ୱରୂପ ପରମ ବ୍ରହ୍ମରେ ଲୀନ ନ ହୁଅନ୍ତି, ତାବତ୍ କାଳ ଇହ-ଲୋକରେ ସିଂହ, ବ୍ୟାଘ୍ର, ଶୃଗାଳ ଓ ବରାହ ଯାହା ଯାହା ଭାବନ୍ତି, ସେହି ସେହି ଶରୀର ଧାରଣ କରନ୍ତି ।

ଯେ ଏମାନଙ୍କ ମଧ୍ୟରେ ଅତି ସୂକ୍ଷ୍ମ ଭାବରେ ସର୍ବଦା ବିଦ୍ୟମାନ ଓ ଯାହାଙ୍କ ସତ୍ତାରେ ଏହି ବିଶ୍ୱ ସତ୍ତ୍ୱବାନ୍ ସେହି ସତ୍ୟ, ସେହି ଆତ୍ମା ଏବଂ ସେହି ମଧ୍ୟ ତୁମ୍ଭେ ଅଟ ।

ଅନନ୍ତର ଶ୍ୱେତକେତୁ କହିଲେ, ହେ ପିତଃ! ଏ ବିଷୟରେ ମତେ ଆଉ ଅଧିକ ଶିକ୍ଷା ପ୍ରଦାନ କରନ୍ତୁ । ପିତା ଶ୍ରବଣ କରି ସସ୍ପୃହେନାପି ପ୍ରୀତ ହୋଇ କହିଲେ, ପୂର୍ବବାହିନୀ ନଦୀସମୂହ ପୂର୍ବ ଦିଗକୁ ଓ ପଶ୍ଚିମବାହିନୀ ନଦୀସମୂହ ପଶ୍ଚିମ ଦିଗକୁ ପ୍ରବାହିତ ହେଉଅଛନ୍ତି । ସେମାନେ ସମୁଦ୍ରରୁ ବାଷ୍ପରୂପେ ଉତ୍ଥିତ ହୋଇ ପୁନଶ୍ଚ ସମୁଦ୍ରକୁ ଜଳରୂପରେ ଗମନ କରି ସମୁଦ୍ର ହୋଇ ଗଲା ପରେ ଆଉ ଜାଣି ପାରନ୍ତି ନାହିଁ ଯେ ଆମ୍ଭେ ଅମୁକ ନଦୀ ଅଟୁଁ । ହେ ବତ୍ସ ! ସେହିପରି ଏହି ସକଳ ସୃଷ୍ଟ ପ୍ରାଣୀ ସେହି ସତ୍ୟସ୍ୱରୂପ ବ୍ରହ୍ମରୁ ଉତ୍ପନ୍ନ ହୋଇ ଜାଣି ପାରୁ ନାହାନ୍ତି ଯେ ଆମ୍ଭେ ସେହି ବ୍ରହ୍ମରୁ ଆଗତ ହୋଇଅଛୁଁ । ସେହି ଅଜ୍ଞାନତା ନିବନ୍ଧନ ଇହ ଲୋକରେ ସେମାନେ ବ୍ୟାଘ୍ର, ଶୃଗାଳାଦିଙ୍କୁ ଭାବନା କରି କରି ପୁନଃ ପୁନଃ ସେହି ସେହି ରୂପ ଧାରଣ କରୁଅଛନ୍ତି ।

ଏଥି ଉତ୍ତାରୁ ପିତା ଶ୍ୱେତକେତୁଙ୍କୁ ସଙ୍ଗେ ଘେନି ଏକ ବୃହତ୍ ବଟବୃକ୍ଷ ସମୀପରେ ଉପସ୍ଥିତ ହୋଇ କହିଲେ, ଯେବେ କେହି ଏହି ବଟବୃକ୍ଷ ମୂଳରେ ଆଘାତ କରେ, ତେବେ ସେଥିରୁ ରସ ନିର୍ଗତ ହେବ, ମାତ୍ର ବୃକ୍ଷ ଜୀବିତ ରହିବ; ଆଉ ଯେବେ କେହି ଉକ୍ତ ବୃକ୍ଷର ଅଗ୍ର ଭାଗରେ ଆଘାତ କରେ, ତେବେ ସେଥିରୁ ରସ ନିର୍ଗତ ହେବ, ମାତ୍ର ବୃକ୍ଷ ଜୀବିତ ରହିବ । ଏହି ବୃକ୍ଷ ଜୀବାତ୍ମା କର୍ତ୍ତୃକ ଅନୁବ୍ୟାପ୍ତ ଥାଇ ଭୂମିରୁ ରସ ପାନ କରି ଆନନ୍ଦରେ ଦଣ୍ଡାୟମାନ ହୋଇ ଥାଏ ।

ଯେବେ ଦେହ ଜୀବାତ୍ମା ଗୋଟିଏ ଶାଖା ତ୍ୟାଗ କରେ, ତେବେ ଉକ୍ତ ଶାଖାଟି ଶୁଷ୍କ ହୁଏ । ସେହିପରି ସକଳ ଶାଖା ଓ ବୃକ୍ଷଟିକୁ ଜୀବାତ୍ମା ପରିତ୍ୟାଗ କଲେ ଶାଖା ସହିତ ଉକ୍ତ ବୃକ୍ଷ ଶୁଷ୍କ ହୁଏ । ହେ ବତ୍ସ ! ଆତ୍ମାକୁ ସେହିପରି ସର୍ବତ୍ର ଜାଣିବ । ଜୀବାତ୍ମା ଶରୀର ତ୍ୟାଗ କଲେ ଏହି ଧ୍ୱଂସ ପ୍ରାପ୍ତ ହୁଏ, ମାତ୍ର ଜୀବାତ୍ମା ଧ୍ୱଂସ ହୁଅନ୍ତି ନାହିଁ ।

ତତ୍ପରେ ପିତା କହିଲେ, ହେ ଶ୍ୱେତକେତୁ ! ଏହି ବୃକ୍ଷରୁ ଗୋଟିଏ ଫଳ ଆଣି ତାହା ଭଗ୍ନ କରି ଦେଖ । ସେ ତଦନୁସାରେ ଗୋଟିଏ ଫଳ ଆଣି ଭଗ୍ନ କରି ଦେଖିଲେ ତାହା ଭିତରେ ଅତି ସୂକ୍ଷ୍ମ ବୀଜ ସବୁ ଅଛି । ପୁଣି ପିତା କହିଲେ,

ଉକ୍ତ ଫଳରୁ ଗୋଟିଏ ଭାଙ୍ଗି ଦେଖ, ତାହା ଭିତରେ କଣ ଅଛି । ପୁତ୍ର ଭାଙ୍ଗି ଦେଖି କହିଲେ, ଏହା ଭିତରେ କିଛି ନାହିଁ । ପିତା କହିଲେ, ହେ ସୌମ୍ୟ ! ଯେଉଁ ଅତି ସୂକ୍ଷ୍ମ ସୂକ୍ଷ୍ମ ଅଂଶ ତୁମ୍ଭ ଚକ୍ଷୁର୍ଗୋଚର ହେଉ ନାହିଁ, ସେହି ପଦାର୍ଥରୁ ଏହି ସୁମହତ ନ୍ୟଗ୍ରୋଧ ପାଦପ ଜାତ ହୋଇ ଦଣ୍ଡାୟମାନ ରହିଅଛି ।

ପୁନଶ୍ଚ ପିତା ଖଣ୍ଡିଏ ଲବଣପିଣ୍ଡ ଶ୍ୱେତକେତୁ ହସ୍ତରେ ଅର୍ପଣ କରି କହିଲେ, ଏହାକୁ ଅଦ୍ୟ ଏକ ପାତ୍ର ଜଳରେ ନିକ୍ଷେପ କରି କାଲି ଉକ୍ତ ଜଳପାତ୍ର ଆମ୍ଭ ନିକଟକୁ ଆନୟନ କରିବ । ପୁତ୍ର ସେହିପରି କରି ପରଦିବସ ପ୍ରାତଃକାଳରେ ଉକ୍ତ ଜଳପାତ୍ର ଯେବେ ପିତାଙ୍କ ନିକଟରେ ଦଣ୍ଡାୟମାନ ହୋଇ ଦେଖିଲେ, ଲବଣପିଣ୍ଡ ତରଳ ଜଳରେ ମିଶିତ ହୋଇ ଯାଇଅଛି । ପିତା କହିଲେ, ହେ ବତ୍ସ ! ଜଳପାତ୍ରର ଉପର, ମଧ୍ୟ ଓ ସର୍ବଶେଷ ଭାଗରୁ କ୍ରମାନ୍ୱୟରେ ଜଳ ଆସ୍ୱାଦନ କର । ପୁତ୍ର ତଦନୁସାରେ ଆସ୍ୱାଦନ କରି କହିଲେ, ସମସ୍ତ ଲବଣରସବିଶିଷ୍ଟ ବୋଧ ହେଲା । ଏହା ଶ୍ରବଣ କରି ପିତା କହିଲେ, ଏହି ଜଳରେ ଗତକାଲି ଯେଉଁ ଲବଣଖଣ୍ଡ ନିକ୍ଷିପ୍ତ ହୋଇଥିଲା, ତାହା ସମ୍ପ୍ରତି ଦୃଷ୍ଟିଗୋଚର ନ ହେଲେ ମଧ୍ୟ ଆସ୍ୱାଦନଦ୍ୱାରା ଜଣା ଯାଉଅଛି ଯେ ତାହା ନିଶ୍ଚୟ ଉକ୍ତ ଜଳରେ ଅଛି । ହେ ବତ୍ସ ! ସେହିପରି ସତ୍ୟସ୍ୱରୂପ ବ୍ରହ୍ମଙ୍କୁ ଏହି ଚକ୍ଷୁ ଦେଖି ପାରୁ ନାହିଁ ସତ୍ୟ, ମାତ୍ର ସେ ନିଶ୍ଚୟ ଏହି ଦେହ ମଧ୍ୟରେ ବିରାଜମାନ ଅଛନ୍ତି । ହେ ଶ୍ୱେତକେତୁ ! ଯେ ଏମାନଙ୍କ ମଧ୍ୟରେ ଅତି ସୂକ୍ଷ୍ମଭାବରେ ବିଦ୍ୟମାନ ଓ ଯାହାଙ୍କ ସତ୍ତାରେ ଏହି ବିଶ୍ୱ ସତ୍ତାବାନ୍, ସେହି ସତ୍ୟ, ସେହି ଆତ୍ମା ଏବଂ ସେହି ମଧ୍ୟ ତୁମ୍ଭେ ଅଟ ।

ଶ୍ରୀ ରାମଚନ୍ଦ୍ର ନନ୍ଦଶର୍ମା ।

---

# କ୍ଷୁଦ୍ର କ୍ଷୁଦ୍ର କବିତା ।

## ପଦ୍ୟ !

୧

ମଧ୍ୟାହ୍ନେ ମୁଁ ଥିଲି ଦିନେ ନିଦ୍ରାରେ ମଗନ,
ନିଦ୍ରାରେ ଦେଖିଲି ଏକ ମଧୁର ସ୍ୱପନ ।
ଯାଇଛି ମୁଁ ଚାଲି ଅହା କେଉଁ ଦିବ୍ୟ ଦେଶେ,
ଶୁଣୁଛି କି ସୁଧାସ୍ୱନ ମଧୁର ଆବେଶେ !
ଭାଙ୍ଗିଲା ଏମନ୍ତ ବେଳେ ମୋର ନିଦ୍ରାବେଶ,
ମଧୁର ନିସ୍ୱନ କର୍ଣ୍ଣେ ହୋଇଲା ପ୍ରବେଶ ।
ବହନ ତେଜିଣ ଶଯ୍ୟା ଡେରିଣ ଶ୍ରବଣ
ପିଇଲି ସେ ସୁଧାକିଣା ଅଶ୍ରାନ୍ତ ନିସ୍ୱନ ।
କେବଣ ଅଦୃଶ୍ୟ ଦେଶୁଁ ଆସି ସେହି ସ୍ୱର
ଦିବ୍ୟଭାବାବେଶେ ହୃଦ ମୋହିଲା ମୋହର ।
ବିସ୍ତାରିଲ କେଉଁ ପକ୍ଷୀ କେଉଁ ବୃକ୍ଷେ ବସି
ଏମନ୍ତ ଅମୃତ ଧାର ଦେଉଛି ବରଷି !
କିବା ନାମ ବିହଙ୍ଗର, ରୂପ ତା କେସନ,
ଉଦାସ ପରାଣ କିପାଁ ଶୁଣି ତାର ସ୍ୱନ ?

୨

ବିସ୍ତାରିଲ ପକ୍ଷିଶବ୍ଦ ଶୁଣୁ ଶୁଣୁ ସଦ୍ୟ
"ଉତ୍କଳ ସାହିତ୍ୟ" ପାଇଁ ଲେଖିବି ମୁଁ ପଦ୍ୟ !
ଧାଇଁ ଯାଇଁ ଆଣୁଛି ମୁଁ କଲମ ଓ କାଳି,
ଛରଛରେ ଲୁଗାରେ ସେ ହୋଇଗଲା ଗାଳ ।
କଲମ ପକାଇ ଦେଇ ଧରିଣ ପେନ୍‌ସିଲ
କାଗଜ ନେଇଣ ବେଞ୍ଚ ଉପରେ ବସିଲି ।
କାନ ଡେରି ଶୁଣିଲି ସେ ଶବ୍ଦ ଆଉ ଥରେ,
ସ୍ପଷ୍ଟଭାବେ ଆସି ତାହା ପଶିଲା କର୍ଣ୍ଣରେ ।
ଜାଣିଲି ସେ ନୁହେ କେଉଁ ବିହଙ୍ଗମ-ସ୍ୱର,
ଚଢ଼ାଇଲୁଟା ଝିଙ୍କିର "କେଁ କଟର" ନାଦର !!
କଟାକ୍ଷେ ଛାଡିଣ ଗଲା ତାହିଁ ମୋ କବିତା,
ଦେଖିଲି, ଧପୁଛି ଗୃହିଁ ଲୁଗାକୁ ବନିତା !
ଭୁଲିଲି ପ୍ରଥମ ପ୍ରେମେ ଭାବପୂର୍ଣ୍ଣ ପଦ୍ୟ
କାଳେ ହୋଇଗଲା ଅହା କି ନିର୍ଦ୍ଦୟ ଗଦ୍ୟ !

ଶ୍ରୀ ନନ୍ଦକିଶୋର ବଳ ।

ଶୁଭ ଦିନେ ।

୨୯ । ୬ । ୧୯୦୧

ଆଜ ଏହି ସ୍ୱର୍ଗବାସେ
ଅଛିତ ତୁମ୍ଭର ପାଶେ,
ବନ୍ଧୁ-ପ୍ରେମ-ପୁଣ୍ୟ-ନୀରେ ଯଥା ପ୍ରାଣାରାମ
ରାଜୁଛି ତୁମ୍ଭର ପ୍ରାଣ,
ଲଭି ନବ୍ୟ ଦିବ୍ୟ ଜ୍ଞାନ,
ଅଛିତ ମୁଁ ସଙ୍ଗରେ ସେହି ନବ୍ୟ ଧାମ ।
ସଖା ହେ ତୁମ୍ଭର ସନେ
ତବ ପ୍ରିୟ ପୁଣ୍ୟାନନେ
ନିରେଖିବ ପ୍ରାଣ ଭରି ଜଗତ-ଜୀବନ,
ସଂସାରର ବନ୍ଧ—ପତ୍ନୀ
ପତି-ଧନେ ସଦା ଧନୀ,
ନାହିଁ ତାର ଅନ୍ୟ ଗତି, ନାହିଁ ଅନ୍ୟ ଧନ ।
ବନ୍ଧୁ ଦୂରେ—ଅତି ଦୂରେ,
ସଂସାର ଅଦୃଶ୍ୟ ପୁରେ,
ସେହି ଦେବ ଦେଶ, ତୁମ୍ଭେ ଯଥା ବିରାଜିତ,
ସ୍ୱର୍ଗର ଅମୃତ ଧନ,
ଲଭି ଯା ହୋଇଛ ଧନ୍ୟ
କରିବି ତା ଅଧିକାର, ଏ କି ଅନୁଚିତ ?
ତବ ପ୍ରେମ, ପୁଣ୍ୟ, ଜ୍ଞାନ
ଲଭି ଏ ନୀରସ ପ୍ରାଣ,
ଚିଦାନନ୍ଦ-ସିନ୍ଧୁ-ନୀରେ ବନ୍ଧୁ-ପ୍ରେମାନନ୍ଦ,
ଲଭି ସଦା ହେଉ ଧନ୍ୟ,
ନୋହୁ ତାର ବାଞ୍ଛା ଅନ୍ୟ,
ସଦାନନ୍ଦେ ନିରେଖୁ ସେ ଦେ ସଦାନନ୍ଦ ।
ସଂସାର-ସଂକଟଗଣି
ସେହି ପୁଣ୍ୟବଳେ ନାଶି
ଶୁଣାଅ ଅଭୟ ବାଣୀ ବିଶ୍ୱସମ୍ପୂର୍ଣ୍ଣି,
ଦୂରେ ଯାଉ ଦୁଃଖ, ଭ୍ରାନ୍ତି,
ଯାଉ ଏ ଅଶାନ୍ତି, ଶ୍ରାନ୍ତି,
ବିରାଜୁ ହେ ଏ ଜୀବନେ ବନ୍ଧୁ-ପୁଣ୍ୟ-ପ୍ରଭା ।

* * * *

* * * *

ଇହଲୋକ ପରଲୋକ ପରମ ଦେବତା !
ଆଜ ତବ ପ୍ରେମଧାମେ
ଏ ଦୁହିଙ୍କୁ ପ୍ରାଣେ ପ୍ରାଣେ
ସମ୍ମିଳିତ କର ପ୍ରଭୋ ଜୀବନ-ଦେବତା,
ଆଜ ମାଗୁଅଛୁ ଭିକ୍ଷା,
ନବ ବର୍ଷେ ନବ ଦୀକ୍ଷା,
ନବୀନ ଜୀବନ ଦିଅଁ ଦୀନହୀନ ଜନେ,
ତୁମ୍ଭେ ଅନାଥର ନାଥ,
ସ୍ନେହମୟ ତାତ ମାତ,
ତବ ମହାମଙ୍ଗଳମୟ ଅଭୟଚରଣେ
ରଖ ହେ ଅନାଥା ସହ ଅନାଥ ସନ୍ତାନେ ।

ଶ୍ରୀମତୀ ରେବାରାୟ ।

---

ଉଦ୍ଭଟ କବିତା ।

ନ ବସେ ମାଛି ଚନ୍ଦନରେ,
ବିଗଡ଼ି ଖାଏ ନାହିଁ ଗୁଡ଼,
ସାଧୁ ଚାହାନ୍ତି ସାଧୁ ନରେ,
କାହିଁ ଚିହ୍ନିବ ମୂର୍ଖ ମୂଢ଼ !
ଧନ ଜନରେ କେହି ନ ...
କେ ବସି ଭଲେ ପୁତ୍ର ମିତ୍ର,
ଅଳ୍ପ ଅଧିକେ ସର୍ବେ ଦୁଃଖୀ,
ଜଗତେ ଏତିକ ବିଚିତ୍ର !

ମଧୁମକ୍ଷିକା ପିପୀଲିକା
ସମସ୍ତେ ହୋଇ କର୍ମବଶ
କରନ୍ତି ଲୋଡ଼ନ୍ତି ଜୀବିକା,
ଧିକ ଯେ ମାନବ ଅଳସ ।

ଧନ ନାଶ ଗଲା ଯେ ପଦାର୍ଥ
ତା ପାଇଁ କରୁଛ ଭାବନା,
ତାହା କି ତୁମ୍ଭର ଯଥାର୍ଥ ?
କେବେ ହେ କପାଇଁ ଶୋଚନା!

ଶ୍ରୀ ଧୂର୍ଜଟୀ ।

# ନିବେଦନ ।

ବିଶେଷ କାରଣବଶତଃ ୪ର୍ଥ ଓ ୫ମ ସଂଖ୍ୟାଦ୍ୱୟ (ଶ୍ରାବଣ ଓ ଭାଦ୍ର) ଏକତ୍ର ପ୍ରକାଶିତ ହେଲା । ଆଗାମୀ ଅକ୍ଟୋବର ମାସର ଶେଷାଂଶ ଓ ନବେମ୍ବର ମାସର ପ୍ରଥମାଂଶରେ ଦୁର୍ଗାପୂଜା ଉପଲକ୍ଷରେ ସମସ୍ତ କାର୍ଯ୍ୟାଳୟ ବନ୍ଦ ରହିବ । ସୁତରାଂ କାର୍ତ୍ତିକ ମାସର ପତ୍ରିକା ଆଶ୍ୱିନ ସଂଖ୍ୟା ସହିତ ଅକ୍ଟୋବର ମାସର ପ୍ରାରମ୍ଭରେ ବାହାର କରିବାର ସ୍ଥିର କରୁଅଛୁଁ । ଗ୍ରାହକମାନେ ଭାଦ୍ର ମାସର ପତ୍ରିକା ଆଗତୁରା ପାଇଲେ ଏବଂ କାର୍ତ୍ତିକ ମାସର ମଧ ସେହିପରି ଆଗତୁରା ପାଇବେ । ସୁତରାଂ ସେମାନଙ୍କର କିଛି କ୍ଷତି ନାହିଁ । ଆଗତୁରା ପତ୍ରିକା ପାଉଥିବା ହେଲେ ଆଗତୁରା ମୂଲ୍ୟଟା ଦେଇ ପକାଇବା ଉଚିତ ନୁହେଁ କି ? ଯେଉଁମାନେ ଏପର୍ଯ୍ୟନ୍ତ ମୂଲ୍ୟ ପ୍ରଦାନ କରି ନାହାନ୍ତି, ଆଶା କରୁଁ ସେମାନେ ଆଉ ବିଳମ୍ବ କରିବେ ନାହିଁ ।

ମୂଲ୍ୟପ୍ରାପ୍ତି ।

୧୮୯୯ ବାବଦ ।

ଶ୍ରୀଯୁକ୍ତ ନାରାୟଣ ମିଶ୍ର  ବାଲେଶ୍ୱର  ଟ ୨

୧୯୦୦ ବାବଦ ।

„ ନାରାୟଣପ୍ରସାଦ ମହାନ୍ତି  କଟକ  ଟ ୧
„ ଗୋପୀନାଥ ଦାସ  „  ଟ ୧
„ ହରେକୃଷ୍ଣ ମିଶ୍ର  „  ଟ ୧
„ ଭଗବାନ ଦାସ ବାବାଜୀ ହରିପୁଡ଼ି  ଟ ୨
„ କହ୍ନେୟାଲାଲ ଦାସ  କଟକ  ଟ ୧
„ ଶ୍ରୀବତ୍ସ ପଣ୍ଡା  ଛତ୍ରପୁର  ଟ ୨
„ ଗୋପୀନାଥ କାବ୍ୟତୀର୍ଥ  କଟକ  ଟ ୧
„ କପିଳେଶ୍ୱର ମିଶ୍ର  „  ଟ ୨
„ ହରେକୃଷ୍ଣ ମିଶ୍ର  ସୋମେଶ୍ୱରପୁର  ଟ ୧
„ ରମାନାଥ ପରିଡ଼ା  ବାଲେଶ୍ୱର  ଟ ୦୫

ପଞ୍ଚମ ବର୍ଷ ବାବଦ ।

„ ବଂଶୀଧର ଦାସ  କଟକ  ଟ ୧
„ ହେଉ ପଣ୍ଡିତ  ନରସିଂହପୁର  ଟ ୨
„ ମନ୍ମଥ ଦାସ  କଟକ  ଟ ୦୫
„ ରାଜା ବାହାଦୁର  ଖାରକୁଦ  ଟ ୨
„ ବିକ୍ରମଦେବ ବର୍ମା  ଜିକଗାପଟ୍ଟନ  ଟ ୨
„ ଅଦ୍ୱୈତଚରଣ ମହାନ୍ତି  ପିପିଲି  ଟ ୨
„ ବଳଭଦ୍ର ପଣ୍ଡା  ଭବାନୀପାଟଣା  ଟ ୧
„ ବାଞ୍ଛାନିଧି ପଣ୍ଡା  ଜଗତପୁର  ଟ ୦୫
„ ଦୀନବନ୍ଧୁ ଗଡ଼ନାୟକ  କଲିକତା  ଟ ୪
„ କହ୍ନେୟାଲାଲ ବୋଷ  ବାରିପଦା  ଟ ୩
„ ସାହିତ୍ୟ-ସଭା-ସଭାପତି  ଖାଲିକୋଟ  ଟ ୪
„ ମଧୁସୂଦନ ରାଜଗୁରୁ  ବୋଦ  ଟ ୬
„ ଭଗବତୀଚରଣ ଚାଟୁର୍ଯ୍ୟା

ଶ୍ରୀଯୁକ୍ତ ଚୌଧୁରୀ ରାମହରି ଦାସ ରାଙ୍ଗାରପୁର ଟ ୨
„ ବଳରାମ କର  ସମ୍ବଲପୁର  ଟ ୧
„ ନନ୍ଦକିଶୋର ଜଗଦା  ଫକିରବାଦ  ଟ ୨
„ ଗୋବିନ୍ଦପ୍ରସାଦ ଦାସ  ଭାଗପୁର  ଟ ୧
„ ରଘୁନାଥ ଦାସ  ମେଦିନୀପୁର  ଟ ୨
„ କୃଷ୍ଣଚନ୍ଦ୍ର ଦାଶପ୍ରହରାଜ ବାଲିଅବେଡ଼ା ଟ ୨
„ କୃଷ୍ଣଚନ୍ଦ୍ର କର  ଦର୍ପଣ  ଟ ୪
„ ଦାମୋଦର ପଟ୍ଟନାୟକ  ରାୟଗଡ଼  ଟ ୨
„ ଲକ୍ଷ୍ମଣ ପାଢ଼ୀ  ବଡ଼ଗଡ଼  ଟ ୨
„ ବ୍ରଜସୁନ୍ଦର ମର୍ଦ୍ଦରାଜ  କେନ୍ଦ୍ରାପଡ଼ା  ଟ ୨
„ ବ୍ରଜମୋହନ ମହାପାତ୍ର ନରସିଂହପୁର ଟ ୨
„ କୈଳାଶଚନ୍ଦ୍ର ପ୍ରଧାନ  ମୟୂରଭଞ୍ଜ  ଟ ୨
„ ଅର୍ଜ୍ଜୁନ ପଣ୍ଡା  ଭବାନୀପାଟଣା  ଟ ୨
„ ରଘୁବର ଭଞ୍ଜ  କୋକସରା  ଟ ୨
„ ହରପ୍ରସାଦ ଦେ  ମୌଳମିକ  ଟ ୨
„ ରାମପ୍ରସାଦ ସିଂହ  ମୋଗାଙ୍ଗ  ଟ ୨
„ ଲୋକନାଥ ପଟ୍ଟନାୟକ  କଟକ  ଟ ୫
„ ବ୍ରହ୍ମାନନ୍ଦ ଦାସ  „  ଟ ୨
„ ଶିବନାରାୟଣ ଦେବ  ଖଡ଼ିଅଲ  ଟ ୨
„ ଗୋବିନ୍ଦଚନ୍ଦ୍ର ମହାପାତ୍ର ବାରିପଦା  ଟ ୨
„ ଭୂପତିନାଥ ମିତ୍ର  ପୁରୀ  ଟ ୨
„ ଗୋପୀନାଥ ମିଶ୍ର  ବାଲେଶ୍ୱର  ଟ ୧
„ ଲୋକନାଥ କାବ୍ୟତୀର୍ଥ  „  ଟ ୨
„ ରାଜା ସାହେବ  ହିନ୍ଦୋଳ  ଟ ୨

ଷଷ୍ଠ ବର୍ଷ ନିମିତ୍ତ ଅଗ୍ରିମ ।

[redacted] [redacted]



# ଉତ୍କଳ ସାହିତ୍ୟ ।

ଅପୂର୍ବ ମିଳନ ।

(ଐତିହାସିକ ଉପନ୍ୟାସ ।)

୪

## ବିଦେଶିନୀ ।

ପୂର୍ବାହ୍ନ—ଦିବା ଏକ ପ୍ରହର ଅତୀତ ପ୍ରାୟ—ସୂର୍ଯ୍ୟବଂଶୀୟ ଦୁର୍ଗେଶ୍ୱର ଶ୍ରୀ ଶ୍ରୀ ଶ୍ରୀ ମହାରାଜା ଦରବାରରେ ବିଜେ କରିଅଛନ୍ତି, ପାଞ୍ଜିଆ, ପାଇକ, ପଡ଼ିଆରୀ, ଦଳେଇ, ଦଳବେହେରା, ଦଉଡ଼, ଲେଖକକାର, କେବର୍ତ୍ତ ପ୍ରଭୃତି କର୍ମଚାରୀମାନେ ଯଥୋପଯୁକ୍ତ ସ୍ଥାନରେ କେହି ବସି କେହି ଠିଆ ହୋଇ ଅପଣା ଅପଣା କର୍ମରେ ନିଯୁକ୍ତ । ବହୁସଂଖ୍ୟକ ଗୁହାରିଆ ହାତ ଯୋଡ଼ି ଛିଡ଼ା ହୋଇ ଅଛନ୍ତି । ଏମନ୍ତ ସମୟରେ ଭଗରୀ ଡାକ ଦେଲା, ଗୋବିନ୍ଦପୁର ଚୌପାଢ଼ିର ଦମ୍ଭୁଆ ୟାର ପାଇକମାନଙ୍କ ମଜୁରା ଦେଖିବାକୁ ଆଜ୍ଞା ହେଉ ଭୋ ମଣିମା ଭୋ ମଣିମା ! ଏହାର ଜଣ ଢେଣ୍ଡିଆ ପାଇକ ବଳଉ ଖଣ୍ଡା ଟେକି ତିନି ଥର ଖଣ୍ଡାମୂନ ଭୂମିରେ ଛୁଆଇଁ ମଜୁରା କରି ଅଡ଼େଇ ଗଲେ । ସମସ୍ତେ ଅନାଇ ଦେଖିଲେ, ପାଇକମାନଙ୍କ ପଶ୍ଚାଦ୍ଭାଗରେ କିଛି ଦୂରରେ ଧୂଳିକର୍ଦ୍ଦମବିଲିପ୍ତ-ବସନା ମଳିନବଦନା ବିଷାଦମୟୀ ଗୋଟିଏ ଅପୂର୍ବ ଲଳନାମୂର୍ତ୍ତି ବାଡ଼ିକୁ ଆଉଜି ନିସ୍ପନ୍ଦ ନିଷ୍ପନ୍ଦ ଭାବରେ ଠିଆ ହୋଇଅଛି । ଆକୃତି ଏବଂ ପରିଚ୍ଛଦ ଦେଖିଲେ ସହଜରେ ଅନୁମିତ ହୁଏ, ସ୍ତ୍ରୀଲୋକଟି ବିଦେଶିନୀ ଏବଂ ସମ୍ଭ୍ରାନ୍ତକୁଳଜାତା । ସାଧାରଣ ଘରେ ଏପରି ଲାବଣ୍ୟମୟୀ ସୁଗଠନା ସ୍ତ୍ରୀରତ୍ନ ଜାତ ହେବା ଅସମ୍ଭବ । ପ୍ରଭାମୟୀ ପଦ୍ମିନୀ ସ୍ୱଚ୍ଛଜଳ ସରୋବରରେ ପ୍ରସ୍ଫୁଟିତ ହୋଇଥାଏ । ଏହାର ବୟଃକ୍ରମ ସମ୍ବନ୍ଧରେ ସଠିକ ସମ୍ବାଦ ଦେବାକୁ ଆମ୍ଭେମାନେ ଅକ୍ଷମ । ମାତ୍ର ତାହାର କାଞ୍ଚନଗୌର ବଦନମଣ୍ଡଳର ଅପୂର୍ବ ସୌନ୍ଦର୍ଯ୍ୟ, ଅତିଯତ୍ନ ବିଶାଳ ନେତ୍ର, ତୋଳା ଉପରେ ଆକର୍ଣ୍ଣ-ବିସ୍ତୃତ ସୁବଙ୍କିମ ଭ୍ରୂଲତା, ସୁନ୍ଦର ସୁଗଠନ ଉନ୍ନତ ନାସା, ଜବାକୁସୁମସଙ୍କାଶ ରକ୍ତିମ ଅଧରୋଷ୍ଠ ଏବଂ ସ୍ୱଚ୍ଛ ନିର୍ମଳ ଦର୍ପଣଫଳକବତ୍ ଗଣ୍ଡସ୍ଥଳରୁ ଯୌବନସୁଲଭ ଲାବଣ୍ୟ ଚହଟି ଯାଉଅଛି । ଏହାର ବଦନମଣ୍ଡଳ ବିଷାଦକାଳିମାରେ ମଳିନ ହୋଇଥିଲେ ହେଁ ଧୂସରମେଘାବୃତ ଚନ୍ଦ୍ରମଣ୍ଡଳ ପରି ଅପୂର୍ବ ଶ୍ରୀ ଧାରଣ କରିଅଛି । ସ୍ତ୍ରୀଲୋକଟିର ଆକାର କିଞ୍ଚିତ ଦୀର୍ଘ, କିନ୍ତୁ ସୌନ୍ଦର୍ଯ୍ୟବିନାଶୀ ନୁହେ । ହସ୍ତପଦଗୁଡ଼ିକ ସୁଗୋଲ ସୁଗଠିତ ଓ ସୁଖବର୍ଦ୍ଧିତ ପରି ଅନୁମିତ ହୁଏ । ପରିଧାନ ମହାର୍ଘ ଜରୀ-କାରୁକାର୍ଯ୍ୟଯୁକ୍ତ ଘାଗରା ଏବଂ କାଞ୍ଚୁଲି—ତଦୁପରି ପୃଷ୍ଠବ୍ୟାପୀ ନିତମ୍ବବିଲମ୍ବୀ କୁଞ୍ଚିତକାଳିମାଭ ଅବିନ୍ୟସ୍ତ ଅଯତ୍ନ-ବିକ୍ଷିପ୍ତ କେଶରାଶିକୁ ସୂକ୍ଷ୍ମ ନିପୁଣଶିଳ୍ପି-ଚିତ୍ରିତ କୌଶେୟ ଓଢଣା ଘୋଡ଼ାଇ ରଖିଅଛି । ହସ୍ତ-ପଦନାସାକର୍ଣ୍ଣକଣ୍ଠସଲଗ୍ନ ରତ୍ନଖଚିତ ସ୍ୱର୍ଣ୍ଣ ଓ ରୌପ୍ୟର ଅଳଙ୍କାରଗୁଡ଼ିକ ଐଶ୍ୱର୍ଯ୍ୟବତୀର ପରିଚାୟକ । ଶରୀର କେଶ ବାସ ସମସ୍ତ ଧୂଳି-କର୍ଦ୍ଦମବିଲିପ୍ତ, କଣ୍ଟକଦ୍ୱାରା ସଦ୍ୟ ଛିନ୍ନବିଚ୍ଛିନ୍ନ । ଏଡ଼େ ବଡ଼ ଦରବାର, ଏଡ଼େ ଲୋକ ଗହଳ ମୁହୂର୍ତ୍ତକ ମଧ୍ୟରେ ନିସ୍ତବ୍ଧ ହୋଇ ଗଲା । ସମସ୍ତେ ଏକ ଧ୍ୟାନରେ ଅନିମିଷ ଦୃଷ୍ଟିରେ ଚାହିଁ ରହିଅଛନ୍ତି ।

ମାନ୍ଧାତା ଅନ୍ୟାନ୍ୟ ଲୋକଙ୍କ ପରି ସ୍ଥିର ଭାବରେ ସେହି ସ୍ତ୍ରୀଲୋକଟିକୁ ପ୍ରଥମରେ ଚାହିଁ ରହିଲେ, ପରେ କେତେଗୁଡ଼ାଏ କଥା ପଚାରିଲେ । କିନ୍ତୁ ଉତ୍ତର ନାହିଁ । ମାତୃ ସମ୍ବୋଧନ କରି କୋମଳ ଭାବରେ କେତେଗୁଡ଼ାଏ ପ୍ରଶ୍ନ କଲେ—ରମଣୀ ପୂର୍ବବତ୍ ନୀରବ । ବହୁତ ଅଭୟ ଦେଇ ସାନ୍ତ୍ୱନା ଦେଇ ଆଶ୍ୱାସବାକ୍ୟରେ କେତେକ କଥା ପଚାରିଲେ—ବୃଥା ହେଲା । ବୁଢ଼ା ପଡ଼ିଆରୀ ପରୀଆ ପରିଡ଼ା ପାଖକୁ ଧାଇଁ ଆସି ସ୍ତ୍ରୀଲୋକଟିକୁ କହିଲା, ଡର ନାହିଁ ଝିଅ, ଚିନ୍ତା କର ନା, ସାଆନ୍ତ ଯାହା ପଚାରୁଛନ୍ତି, କହି ଯା, ସବୁ କଥାର ଜବାବ ଦେଇ ଯା, ଉଚ୍ଛୁଣି ଉଆସରୁ ସିଧା ଆଣି ଦେବ, ଖାଇ ପିଇ ନିଶ୍ଚିନ୍ତ ରହିବୁ । ମାନ୍ଧାତା ଦାତାକର୍ଣ୍ଣ, କେତେ ଅତିଥି ଅଭ୍ୟାଗତ ଖାଇ ଯାଉଛନ୍ତି; ଛଳଖିଆ କର, ଯେସେଇ କର, ଯାହା କର, ଆଣି ଦେବ । ହାୟ! ଜବାବ ପାଇବ ବୋଲି ପର ବରସ କେତେ ଆଶାରେ ଯାଇଥିଲା, ସବୁ ବୃଥା ହେଲା । ସ୍ତ୍ରୀଲୋକଟି ପ୍ରଶ୍ନର ଉତ୍ତର ଦେଲା ନାହିଁ । କି ସର୍ବନାଶ ? ସେ କି ପ୍ରଶ୍ନକାରୀଙ୍କ ସ୍ୱଦେଶୀୟ ଭାଷା ବୁଝି ପାରିଲା ନାହିଁ ? କିମ୍ବା ଗୋଟିଏ ହିନ୍ଦୁ କୁଳବଧୂ ପୁରୁଷମଣ୍ଡଳୀରେ କଥା କହିବାକୁ ଲଜ୍ଜିତ ହେଲା ? ଅବା ବନସ୍ଥଯୂଥଭ୍ରଷ୍ଟା ଶ୍ୱାପଦହସ୍ତବିମୁକ୍ତା ହରିଣୀ ଯେଉଁମାନଙ୍କ ହସ୍ତରେ ପତିତ ହୋଇଅଛି, ସେମାନେ ବ୍ୟାଧ କି ପାଳନକାରୀ, କିଛି ସ୍ଥିର କରି ନପାରି ଭୟରେ ଉତ୍ତର ଦେଇ ପାରୁ ନାହିଁ ? ମାତ୍ର ଆମ୍ଭେମାନେ ଆକାର ପ୍ରକାରରୁ ସେଥିର କିଛି ଚିହ୍ନ ଦେଖୁ ନାହୁଁ । ସ୍ତ୍ରୀଲୋକଟି ବାଟ ଚାଲିବାକୁ ଅକ୍ଷମ ଥିବାରୁ ପାଇକମାନେ ତାହାକୁ ଡୋଲିରେ ବସାଇ ନେଇ ଆସିଲେ—ଡୋଲିରୁ ଓହ୍ଲାଇ ଯେପରି ଛିଡ଼ା କରାଇ ଦେଇଥିଲେ, ଇବନପ୍ରତିମା ପରି ବାଉଳକୁ ଅନାଇ ସେହିପରି ଛିଡ଼ା ହୋଇ ଅଛି । ମୁଖ ଅବନତ, କେଶରେ ପଲିତ ଅଛି ବା ନାହିଁ, [illegible] ନାସା ପୁଡ଼ା ସ୍ଫୀତ ଓଷ୍ଠକୁଞ୍ଚିତ ହୋଇ ଜୀବନସତ୍ତ୍ୱର ପରିଚୟ ଦେଉଅଛି । ଯେପରି ସ୍ତ୍ରୀଲୋକ ହେଉ, ଯେପରି ଅବସ୍ଥାରେ ପଡ଼ୁ, ବିଶେଷରେ ହିନ୍ଦୁକୁଳବଧୂ ଯୁବତୀ ପୁରୁଷମଣ୍ଡଳୀକୁ ଦେଖା ହେଲେ ସ୍ୱାଭାବିକ ସଙ୍କୋଚ ଏବଂ ଲଜ୍ଜାର ଛାୟା ମୁଖମଣ୍ଡଳକୁ ଆବୃତ କରିପକାଏ । ମାତ୍ର ସ୍ତ୍ରୀଲୋକଟି ଅନାବୃତ ମୁଖରେ ସଭାରେ ଛିଡ଼ା ହୋଇଅଛି । ଆଉ ଭୟ ? ମନୁଷ୍ୟର ଜୀବନାଶା ଥିଲେ ଲଜ୍ଜା ଭୟ ସବୁ ଥାଏ । ଭୟ କଣ ? ବିପଦସଙ୍କୁଳ ସ୍ଥାନରୁ ନିରାପଦ ସ୍ଥାନକୁ ଯିବାର ଏକ ପ୍ରକାର ପ୍ରବୃତ୍ତି । ଅମ୍ଭମାନଙ୍କର ବିଶ୍ୱାସ ଶାରୀରିକ ବା ମାନସିକ କଷ୍ଟର ଚରମ ସୀମା ଉପସ୍ଥିତ ହେଲେ ମାନବର ଇନ୍ଦ୍ରିୟସମୂହ ଅନାୟତ୍ତ ହୋଇ ନିସ୍ତେଜ ହୋଇ ପଡ଼ନ୍ତି, ସୁତରାଂ ଚେତନା ଲୁପ୍ତ ହୋଇ ଯାଏ । ଏଥିକୁ ଲଜ୍ଜା ବା ଭୟ ମନ ମଧ୍ୟରେ ସ୍ଥାନ ପ୍ରାପ୍ତ ହୋଇ ପାରେ ନାହିଁ । ବର୍ତ୍ତମାନ ସ୍ତ୍ରୀଲୋକଟି ଯେ ସଚେତନ ଅବସ୍ଥାରେ ଅଛି, ଆମ୍ଭେମାନେ ବିଶ୍ୱାସ କରି ପାରୁ ନାହୁଁ ।

ମାନ୍ଧାତା ସ୍ତ୍ରୀଲୋକଟିଠାରୁ କୌଣସି ଜବାବ ନ ପାଇ ଅଭ୍ୟାଗତ ପାଇକମାନଙ୍କୁ ଅନାଇଲେ । ପାଇକ କଣ୍ଠୋଇ ଫତେସିଂହ ଶ୍ରୀ ଶ୍ରୀ ଶ୍ରୀ ମାନ୍ଧାତାଙ୍କ ଅଭିପ୍ରାୟ ବୁଝି ପାରି ହାତ ଯୋଡ଼ି ସମସ୍ତ କଥା ଜଣାଇଲା । ପଶ୍ଚିମଦେଶୀୟ ଯାତ୍ରିମାନଙ୍କ କଥା—ଗୋଡ଼ଶାଳଠାରେ ସନ୍ଧ୍ୟାକାଳ, ମରହଟ୍ଟାମାନଙ୍କ ଅତ୍ୟାଚାର, ଯାତ୍ରିମାନଙ୍କ ବିନାଶ ଏବଂ ଗୋବିନ୍ଦପୁରର ପାଇକମାନେ ପାରିଧିକୁ ଯାଇ ସ୍ତ୍ରୀଲୋକଟିକୁ ଯେପରି ମୁମୂର୍ଷୁ ଅବସ୍ଥାରେ ଜଙ୍ଗଲ ମଧ୍ୟରେ ପ୍ରାପ୍ତ ହୋଇଥିଲେ ସମସ୍ତ ବିଷୟ ବିସ୍ତାରିତ ରୂପେ ଜଣାଇଲା । ଶ୍ରୋତାମାନେ ସମସ୍ତ ବିଷୟ ଶୁଣି ଏବଂ ସ୍ତ୍ରୀଲୋକଟିର ଶୋଚନୀୟ ଅବସ୍ଥା ଦେଖି ହାୟ ହାୟ କରିବାକୁ ଲାଗିଲେ । ମରହଟ୍ଟାମାନଙ୍କ ଅତ୍ୟାଚାର ତଥା ଶୁଣି ଖଣ୍ଡାଏତମାନଙ୍କ ଖଣ୍ଡା ବଉଦରେ ବାଜି ଧଡ଼ ଧଡ଼ ଶବ୍ଦ କଲା । ଥୋକେ ବାରନେଣ ଅଣ୍ଟି ଅନନ୍ତା କେଶରେ

ଅନାଇବାକୁ ଲାଗିଲେ । ଉପସ୍ଥିତ ଲୋକମାନେ ସହଜରେ ଅନୁମାନଦ୍ୱାରା ବୁଝିଲେ ଅଶ୍ୱାରୋହୀ ବନସ୍ଥ ସ୍ତ୍ରୀପୁରୁଷମାନେ ସ୍ତ୍ରୀଲୋକଟିର ଆତ୍ମୀୟ ଲୋକ ଅଟନ୍ତି । ପିତା ମାତା ଶାଶୁ ଶ୍ୱଶୁର ସ୍ୱାମୀ କିମ୍ବା ଏହିପରି ଅନ୍ତରଙ୍ଗ ଲୋକମାନଙ୍କୁ ହରାଇ ହତଚେତା ହୋଇ ପଡ଼ିଅଛି । ଅତଃପର ଜନଶ୍ରୁତି ଶ୍ରୋତାମାନଙ୍କ ଅନୁମାନକୁ ଯଥାର୍ଥ୍ୟରୂପରେ ପ୍ରତିପନ୍ନ କରାଇ ଥିଲା ।

ସ୍ୱଦେଶରୁ ବହୁ ଦୂରରେ ଅପ୍ରତ୍ୟାଶିତରୂପେ ଗୁରୁଜନ ଆତ୍ମୀୟ ବନ୍ଧୁବର୍ଗଙ୍କର ଶୋଚନୀୟ ଅବସ୍ଥା ପ୍ରତ୍ୟକ୍ଷ କରି ସର୍ବସ୍ୱାନ୍ତ ଅବସ୍ଥାରେ ଗୋଟିଏ କୁଳବତୀ ବାଳା ନିତାନ୍ତ ଅପରିଚିତ ପୁରୁଷମଣ୍ଡଳୀରେ ପଡ଼ିଲେ ତାହାର କିପରି ଦଶା ଘଟି ପାରେ ବୋଲିବା ବାହୁଲ୍ୟ ମାତ୍ର । ଜନନୀ—କି ଭାଷାରେ କହିବୁଁ, ଜନନୀ କି ପଦାର୍ଥ ? କାହା ସହିତ ଉପମା ଦେବୁଁ, ଜନନୀ କି ପଦାର୍ଥ ? ସ୍ୱର୍ଗାଦପି ଗରୀୟସୀ—ସ୍ୱର୍ଗର ସ୍ତୂପୀକୃତ ସମସ୍ତ ସମ୍ପତ୍ତି ଯାହାଙ୍କ ତୁଳନାରେ ପ୍ରଚୁର ନୁହେଁ, କି ଭାଷାରେ ବୁଝାଇବୁଁ, ସେ ଜନନୀ କି ପଦାର୍ଥ ? ସ୍ନେହ ଦୟା ମାୟା ମମତା ନିଃସ୍ୱାର୍ଥପରତା ସମସ୍ତ ସମବେତ ହୋଇ ମୂର୍ତ୍ତିମତୀ ହେଲେ ମଧ୍ୟ ଜନନୀ ସହିତ ଅତୁଳନୀୟ । ନରପଶୁ ନୃଶଂସ ଲୋକମାନଙ୍କଦ୍ୱାରା ସେହି ଜନନୀର ଶୋଚନୀୟ ପରିଣାମ ପ୍ରତ୍ୟକ୍ଷ କରି କେଉଁ ଯୁବତୀ କନ୍ୟା ଧୈର୍ଯ୍ୟ ଧାରଣ କରି ପାରେ ? ମହାଗୁରୁ ଜୀବନପାଳକ ଜୀବନଦାତା ପୂଜନୀୟ ପିତାର ନିଷ୍ଠୁରରୂପେ ନିପାତ ଦେଖି କନ୍ୟା ମନରେ କିପରି ଭାବ ଜାତ ହୋଇ ପାରେ, ଆମ୍ଭେମାନେ ପ୍ରକାଶ କରିବାକୁ ଅକ୍ଷମ । ବିଶେଷରେ ସତୀ ସ୍ତ୍ରୀର ହୃଦୟାକାଶର ପୂର୍ଣ୍ଣଚନ୍ଦ୍ର, ସମସ୍ତ ଆଶା ସମସ୍ତ ଭରସାର ଏକମାତ୍ର ଆଶ୍ରୟଭୂମି, ସମସ୍ତ ଜୀବନର ଏକମାତ୍ର ଅବଲମ୍ବନ, ସମସ୍ତ ସୁଖୈଶ୍ୱର୍ଯ୍ୟର ଏକ ମାତ୍ର କାରଣ, ପରମ ଦେବତା ସ୍ୱାମିକୁ ହରାଇ ଯୁବତୀ ସ୍ତ୍ରୀ ଯେ ଜୀବିତ ଥାଏ, ତାହା କେବଳ ବିଧାତାର ବୈଚିତ୍ର୍ୟମୟ ବିଧାନ ଅଟେ । ପରମାୟୁ ମନୁଷ୍ୟର ଅନାୟତ୍ତ, ମୃତ୍ୟୁର ଶତସହସ୍ର କାରଣର ବିଦ୍ୟମାନତାରେ ମଧ୍ୟ ମାନବ ଜୀବନ ଧାରଣ କରି ରହିଥାଏ, କର୍ମଫଳଭୋଗ କ୍ଷେତ୍ରରେ ମାନବ ଅନାୟତ୍ତ ହୋଇ ଭ୍ରମଣ କରେ । ବିଧି-ବିଧାନରେ ସ୍ତ୍ରୀଲୋକଟିର ଜୀବନ ଦେହପିଞ୍ଜରରୁ ତ୍ୟାଗ କରି ନାହିଁ ସତ୍ୟ, ମାତ୍ର ତାହାର ଇନ୍ଦ୍ରିୟମାନେ ଜଡ଼ତ୍ୱାବାପନ୍ନ ହୋଇ ପଡ଼ିଅଛନ୍ତି । ପ୍ରବୀଣ ମାହାତ ସହଜରେ ଏ ବିଷୟ ଅନୁଭବ କଲେ । ସ୍ତ୍ରୀଲୋକଟିର ବୟସ ଓ ଅବସ୍ଥା ଦେଖି ତାଙ୍କ ମନରେ କରୁଣାର ସଞ୍ଚାର ହେଲା । ଗୋଟାଏ ଦୀର୍ଘ ନିଶ୍ୱାସ ପକାଇ ତୁନି ହୋଇ ବସିଲେ । ତାଙ୍କ ଆଦେଶରେ ଦୁଇ ଜଣ ପୋଇଲ ଆସି ଅତି ଯତ୍ନରେ ଅତି ସାବଧାନ ଭାବରେ ଯୁବତୀଟିକୁ ଧରାଧରି କରି ଉଆସ ମଧ୍ୟକୁ ନେଇଗଲେ ।

ଶ୍ରୀ ଧୂର୍ଜଟୀ

## ଭାଗବତ ଟୁଙ୍ଗୀରେ ସନ୍ଧ୍ୟା । (୮)

"ଆହା ! ଗୋଟିଏ ଗୋଟିଏ କ୍ଷୁଦ୍ର, ମୃଦୁ, ଘଟଣା ଦେଖିଲେ ବା ଦୁଇ ଏକ ଧାଡ଼ି ପଢ଼ିଲେ ମନରେ କେତେ ପ୍ରକାର ଅତୀତର ସ୍ମୃତି ଜାଗରୂକ ହୁଏ ! ମନୁଷ୍ୟ ପୁନର୍ଜନ୍ମ ଲଭି ଆଉ ଥରେ ବାଲ୍ୟାବସ୍ଥା ଲାଭ କରିବାକୁ ଉତ୍କଣ୍ଠିତ ହୁଏ !"

ଆଜି ମୋର କନିଷ୍ଠ ଗ୍ରନ୍ଥମାଳାରୁ 'ଆମ୍ବ ଭାଙ୍ଗି ରସ ମଧୁର ପିଇ ବାଳକଗଣ ବୁଲନ୍ତି ଚୌଦିଗେ, ହରଷେ ପୂରିଅଛି ବଦନ । ପଢ଼ୁଥିବାର ଶୁଣି ମୋ ମନ ଅତୀତ ସ୍ମୃତିରେ ପୂର୍ଣ୍ଣ ହୋଇଥିଲା । ମହାରାଜଙ୍କର ଏହି ଉକ୍ତିଟି ଶୁଣି ମୁଁ ବିମୋହିତ ହୋଇ ଗଲି ।

ମାଷ୍ଟର ମହାଶୟ କହିଲେ, ମୁଁ ସେଥି ପାଇଁ Cuckoo ( କୋକିଳ ) ବିଷୟରେ Poem (ପଦ୍ୟ)ଟି ଲେଖିଥିଲି, କିନ୍ତୁ ତାକୁ କେହି like ( ଆଦର ) କଲ ନାହିଁ ।

ମୁଁ ମନେ ମନେ ବିଚାରିଲି ଯେ ବାଳସ୍ମୃତି କିମ୍ବା ଅତୀତର ସ୍ମୃତିରେ ପୂର୍ଣ୍ଣ ରଚନା ସିନା ଭଲ ଲାଗିବ; କିନ୍ତୁ ମାଷ୍ଟର ମହାଶୟଙ୍କ ଇଂରାଜୀମିଶା ଓଡ଼ିଆ ଯମକ ବା କିପରି ଭଲ ଲାଗିବ ?

ରାମହରି ମିଶ୍ର କହିଲେ—(ରାମହରି ମିଶ୍ର ଏଥି ପୂର୍ବେ ଅମ୍ଭମାନଙ୍କଠାରୁ ମାଷ୍ଟରଙ୍କ ପଦ୍ୟର ଆନୁସଙ୍ଗିକ ବର୍ଣ୍ଣନା ଶୁଣିଥିଲେ ) ମାଷ୍ଟର ମହାଶୟ !

Full many a flower is born to blush unseen
And waste its sweetness on the desert air.

ଆପଣଙ୍କ ପଦ୍ୟ ଅଦୃଷ୍ଟ ନ ହୋଇ 'ବନର ମାଳତୀ ପରି ବନେ ଫୁଟି ଝଡ଼ିଲା ।' ମାଷ୍ଟର ମହାଶୟ ! ଆପଣ ମନରେ ଦୁଃଖ କରନ୍ତୁ, କିନ୍ତୁ ମତେ ମନଜଣା କଥା ଆସେ ନାହିଁ । ଏପରି ଅନେକ ଲୋକ ଅଛନ୍ତି ଯାହାଙ୍କୁ 'ଅପ୍ରିୟ ସତ୍ୟ' ନ କହିଲେ ସେମାନେ ଆପଣାର ନିର୍ବୁଦ୍ଧିତା ସ୍ୱୀକାର କରିବାକୁ ରାଜି ହୁଅନ୍ତି ନାହିଁ । ଆପଣଙ୍କ ପଦ୍ୟର ଅବତରଣିକାରୁ ଆପଣଙ୍କ ପଦ୍ୟର ମଧୁରତା ପୂର୍ବରୁ ଜଣା ଯିବାରୁ ଆପଣଙ୍କ ପଦ୍ୟ ଟୁଙ୍ଗୀରେ ପ୍ରକାଶିତ ହେଲା ନାହିଁ । ଓଡ଼ିଆ-ମିଶା ଇଂରାଜୀ କବିତା କବିତାପଦବାଚ୍ୟ ନୁହେ । ତା ଉପରେ ପୁଣି ଅନ୍ତ୍ୟ ପ୍ରାନ୍ତ ଯମକ ! ଯାହା କି ଆଧୁନିକ ଇଂରାଜୀ କବିତାରେ ଘୃଣ୍ୟ ଓ ପରିହାର୍ଯ୍ୟ । ଇଂରାଜୀ କବିତା ରଚନା କରିବାକୁ ହେଲେ ପ୍ରଗାଢ଼ ବିଦ୍ୟା ଓ ସ୍ୱରନିୟମରେ ପାଣ୍ଡିତ୍ୟ ଆବଶ୍ୟକ । ଗୋଟିଏ ସାଧାରଣ ନିୟମ ଆପଣ ଜାଣି ରଖନ୍ତୁ ଯେ ଯେତେବେ କୌଣସି ରଚନାରେ କିଛି ବାହାଦୁରୀ ବା କୃତିତ୍ୱ ଥାଏ, ତାହା ପାଞ୍ଚ ଜଣଙ୍କ ଆଗରେ ପଡ଼ିଲେ ଅବଶ୍ୟ ଅନ୍ତତଃ କେହି ତାହା ଅଗ୍ରହ ସହକାରେ ଗ୍ରହଣ କରନ୍ତେ । ଅନେକ ଲୋକ ଦୁଃଖ କରନ୍ତି ଯେ ସେମାନଙ୍କ ରଚନାକୁ ସର୍ବସାଧାରଣ କିମ୍ବା ସମ୍ପାଦକମାନେ ଗ୍ରାହ୍ୟ କଲେ ନାହିଁ । ( ଅବଶ୍ୟ କୈଫାୟତକର ଦୃଷ୍ଟାନ୍ତମାନ ଖୁଡ଼ି ଦିଅ । ) ସେମାନଙ୍କ ମଧ୍ୟରୁ ଅଧିକାଂଶ ଏଡ଼େ ନିର୍ବୋଧ ଯେ ସେମାନେ ଇଙ୍ଗିତରେ କୌଣସି ବିଷୟ ବୁଝି ପାରନ୍ତି ନାହିଁ ଓ ମୁହେଁ ମୁହେଁ ପ୍ରହାର ନ ପାଇବାଯାଏ ଆପଣାର ଦୋଷ ବୁଝି ପାରନ୍ତି ନାହିଁ । କାଲି ଆପଣ ମୋ ନିକଟକୁ ଆପଣଙ୍କ ପଦ୍ୟଟି ଆଣିବେ, ମୁଁ ଆପଣଙ୍କୁ ଉତ୍ତମରୂପେ ବୁଝାଇ ଦେବି ।

ମୁଁ କହିଲି, ଯେ ଆପଣା ନିର୍ବୁଦ୍ଧିତା ବୁଝି ନ ପାରେ, ତାକୁ 'ପ୍ରିୟ ସତ୍ୟ' କହି କି ବୁଝାଇ ହେବ ନାହିଁ ?

ରାମହରି ମିଶ୍ର କହିଲେ , ଅନୁଭବ କରି ନାହାନ୍ତି । ନିର୍ବୋଧଙ୍କୁ ବୁଝାଇ ସମୁଝାଇ ବୋଧ କରିବା ଅନେକ ସ୍ଥଳରେ ଅସମ୍ଭବ ।

ପଣ୍ଡିତ ମହାଶୟ କହିଲେ , 'ଆକାରୈ ରିଙ୍ଗିତୈର୍ଗତ୍ୟା ଚେଷ୍ଟୟା ଭାଷିତେନ ଚ ; ନେତ୍ରବକ୍ତ୍ରବିକାରୈଶ୍ଚ ଗୃହ୍ୟତେଽନ୍ତର୍ଗତଂ ମନଃ ।' ଅମ୍ଭ ମତରେ ଯେଉଁ ଲୋକ ବାକ୍ୟରେ ବୋଧ ନ ହେବ, ତାଦୃଶ ଲୋକ ପ୍ରତି ନେତ୍ର ବକ୍ତ୍ର ବିକାର ଆବଶ୍ୟକୀଭୂତ । କିନ୍ତୁ 'ଭାଷିତ' ଦ୍ୱାରା ପରୀକ୍ଷା ନ କରି 'ନେତ୍ରବକ୍ତ୍ରବିକାର' ଆଦୌ ପ୍ରଯୋଜ୍ୟ ନୁହେ ।

ମର୍ଦ୍ଦରାଜ :—ଆପଣ ଯାହା କହିଲେ, ତାହା ଅନେକ ସ୍ଥଳରେ ସତ୍ୟ, କିନ୍ତୁ କେତେ ପ୍ରଷ୍ଫୁଟନୋ-ନ୍ମୁଖ କବି ଓ ରଚକ ଏହିପରି ଅକାଳ କରକା-ପାତରେ ଶୁଖି ଝଡ଼ି ପଡ଼ି ଅଛନ୍ତି, ଥରେ ବିଚାର କରି ଦେଖନ୍ତୁ । ବିଶେଷତଃ ଯଦି ସେ କରକା-ପାତ ଅସମୟରେ ଓ ସମ୍ୟକ୍ ବିଚାର ବିନା ହୋଇଥାଏ !

ରାମହରି ମିଶ୍ର :—ମର୍ଦ୍ଦରାଜେ ! ସବୁ ନିୟମର ବ୍ୟତିକ୍ରମ ଅଛି । ସେହିପରି ସବୁ ସମତାର

ଅପବ୍ୟବହାର ଅପରିହାର୍ଯ୍ୟ । ଯେଉଁ ଅସ୍ତ୍ରଦ୍ୱାରା ଦୁର୍ବଳ ଓ ବିପଦ୍‌ଗ୍ରସ୍ତ ଲୋକକୁ ନିସ୍ତାର କରାଯାଏ, ସେହି ଅସ୍ତ୍ରଦ୍ୱାରା ନିର୍ଦ୍ଦୋଷ ପ୍ରାଣୀ ମଧ୍ୟ ହତ ହୁଏ। ଅତଏବ ସବୁ କ୍ଷମତା ଓ ନିୟମ ( ବିଶେଷତଃ ଟିପ୍ପଣୀର ନିୟମ ) ଅତି ସାବଧାନତାର ସହିତ ପ୍ରୟୋଗ କରିବା ବିଧେୟ । ନିପାତନ ଅବସ୍ଥାର ଉପସ୍ଥିତିରେ ସାଧାରଣ ନିୟମର ଅସତ୍ୟତା ପ୍ରତିପନ୍ନ ହୋଇ ନ ପାରେ । ତାହା ହେଲେ ଥରେ ବାତୁଳାଶ୍ରମ ବୁଲି ଦେଖି ଆସିଲେ 'Man is a rational being' ( ମନୁଷ୍ୟ ବିବେଚକ ) ଏ ସାଧାରଣ ନିୟମଟିର ସତ୍ୟତା ରହନ୍ତା ନାହିଁ ।

ମର୍ଦ୍ଦରାଜ :—ଆମ୍ଭମାନଙ୍କ କଥାପ୍ରସଙ୍ଗଟି ଭୁଲିଲୁ । ଆଜି ଅତୀତର ସ୍ମୃତି କଥା ପଡ଼ିଥିଲା। ମୁଁ Wordsworth, Shelley, Keats, Goldsmith ଇତ୍ୟାଦିଙ୍କର କବିତା ପଢ଼ି ପଢ଼ି ଅତୀତର ସ୍ୱର୍ଗରେ କ୍ଷଣକାଳ ପାଇଁ ବାସ କରେଁ। ଶକୁନ୍ତଳା, କୁମାରସମ୍ଭବ ଇତ୍ୟାଦିର ଅନେକ ସ୍ଥାନ ଅତୀତର ସ୍ମୃତି ଜାଗରୂକ କରି ଦିଏ।

ରାମହରି ମିଶ୍ର କହିଲେ —ଆପଣଙ୍କ Wordsworth, Shelley, କାଳିଦାସଙ୍କୁ ଛାଡ଼ନ୍ତୁ । Birdseye ସିଗାରେଟ ବାକ୍ସ ଉପରେ ଯେଉଁ ଛବି ମାରିଥାଏ, ଥରେ ଗୋଟିଏ ଛବି ଦେଖି ମୋ ମନରେ କେତେ ଅତୀତ ଚିତ୍ର ଅଙ୍କିତ ହୋଇ ଗଲା । ସେ କାର୍ଡ଼ ଖଣ୍ଡିକରେ ଏହା ଲେଖା ଥିଲା-

"Sometime sweetheart, when beauty's bloom
Shall fade, and sorrow's frost
Shall rest upon the silent tomb
Of joys for ever lost,
Though all the world should seem to shun
Thy glance, and pass thee by,
O, then sweetheart, remember onc
Whose love will never die."

Copy-right by F. A. Mills, 1899

ମୁଁ କହିଲି—ଓଡ଼ିଆ ଭାଷାର ଦାରିଦ୍ର୍ୟ ପ୍ରାୟ ତାକୁ ବଧିଥିବ । ଭଞ୍ଜ କବିଙ୍କ ବୈଦେହୀଶ ବିଳାସ, ପୁଣି ଅନଙ୍ଗରେଖା, ଚିତ୍ରହାର, ପ୍ରେମମାଳା, ପଦ୍ମିନୀ ଓ ନିର୍ଝରିଣୀ ଇତ୍ୟାଦିରେ ଯେତେ ଅତୀତର ସ୍ମୃତି ଉଦ୍ଦୀପିତ ହୁଏ, ବୋଧ ହୁଏ ଅନ୍ୟ ସାହିତ୍ୟ-ଲିପିମାନ ଆମ୍ଭମାନଙ୍କ ମନକୁ ଏତେ ସ୍ମୃତି ଆଣି ପାରିବ ନାହିଁ । ପ୍ରକୃତ କଥା କହିବାକୁ ଗଲେ ଅଧିକାଂଶ ଓଡ଼ିଆ ଘରେ ଅନଙ୍ଗମାଳାର ଭାଷାପରେଇ ଭାଷା ହୋଇ ଯାଇଅଛି । କହିବାକୁ ଲଜ୍ଜା ହୁଏ, ଜଣେ କୃତବିଦ୍ୟ ଯୁବକ, ଗୋଟିଏ ମାଇନର ସ୍କୁଲର ହେଡ୍ ପଣ୍ଡିତ 'ମେଘ ଝଲଝଲ ଝପଲ ଝପଲ କେବଳ ମାଇଲା ଗଲା' ଏହାକୁ ହସରେ ଉଡ଼ାଇ ଦେଲେ । କହିଲେ, 'ଛି ! ଏଗୁଡ଼ାକ ସାହିତ୍ୟର ଆବର୍ଜନା ।' ଅତୀତର ଓ ବିଶେଷତଃ ବାଲ୍ୟ କାଳର ସ୍ମୃତି କି ଆନନ୍ଦମୟ, ଏ କଥା ସେ ଦିନେ ସ୍ୱପ୍ନରେ ସୁଦ୍ଧା ଦେଖି ନାହାନ୍ତି । ମୁଁ ଦିନେ କବିତାବଳୀ ପ୍ରଥମ ଭାଗ ଦେଖୁଥିଲି । ସେ କହିଲେ 'ତୁମେ ବଡ଼ ହେଲଣି, ଆଉ କବିତାବଳୀର 'ଶରତ ପ୍ରଭାତ' କଣ ପଢ଼ୁଛ ?' ଅତୀତ ସ୍ମୃତି ଓ ବାଲ୍ୟସ୍ମୃତି ବୃଦ୍ଧାବସ୍ଥାର ଗୋଟିଏ ପ୍ରାର୍ଥନୀୟ ଓ ଅପରିହାର୍ଯ୍ୟ ସମ୍ବଳ । ଯାହାର ଏହା ନାହିଁ, ସେ, 'ଚିରତ୍ୟସୌ କାନ୍ତ ହଣାନ୍ଧ ତୃଂକ୍ତେ ।' ବିଲଙ୍କର ନିର୍ଝରିଣୀ ଓ ପଲ୍ଲୀଚିତ୍ର ଛନ୍ଦେ ଛନ୍ଦେ ବାଲ୍ୟସ୍ମୃତି, ଗ୍ରାମ୍ୟ ସ୍ମୃତି ଢାଳି ଦେଇଅଛି ।

ରାମହରି ମିଶ୍ରେ—ଅତୀତର ସ୍ମୃତି ଅବଶ୍ୟ ମୂଲ୍ୟବାନ୍, କିନ୍ତୁ ବ୍ୟକ୍ତିବିଶେଷର ଅନୁଭବର ପାର୍ଥକ୍ୟ ହେତୁ ତାହା ବିଭିନ୍ନ ; ଆପଣଙ୍କୁ ଯାହା ଭଲ ଲାଗିବ, ମତେ ତାହା ଭଲ ନ ଲାଗି ପାରେ। ଆପଣଙ୍କର ମୋର ଅନୁଭବ ସମାନ ହୋଇ ନ ଥିଲେ, ଯେଉଁ ପୁସ୍ତକ ପଢ଼ି ଆପଣ ଅତୀତର ସ୍ମୃତିରେ ବୁଡ଼ି ଯିବେ, ମୁଁ ତାକୁ ନୀରସ ମଣିବି

ପଣ୍ଡିତ ମହାଶୟ — ଅହା ! ଆମ୍ଭର ବାଲ୍ୟ ସହଚର, ବାଲ୍ୟ କ୍ରୀଡ଼ା ଇତ୍ୟାଦି ମନେ ପଡ଼ିଲେ କିଂଭୂତ ଆନନ୍ଦୋପଲବ୍ଧି ହୁଏ, ତାହା ରସନାତୀତ । ବାଲ୍ୟକାଳୀନ ସ୍ଥାନ ଓ ବସ୍ତୁମାନ ନୟନଗୋଚରୀ-ଭୂତ ହେଲେ ଅମ୍ଭେ ପ୍ରେମ-ପାରାବାରରେ

ଅନାବିଳ ମଗ୍ନ ହେଉଁ । ବାଲ୍ୟକାଳର ନିଷ୍କାମ ଓ ନିଷ୍କପଟ ଅବସ୍ଥା ସହ ଏ ସମୟର କପଟାଚାର କଳୁଷିତ ପୈଶାଚିକରୂପେ ତୁଳନୀୟ ହୁଏ । ସେ ଦିବସମାନ କେଉଁ ଆଡ଼େ ଗଲୁଁ ଗଲୁଁ ଚାଲି ଗଲା । ମନୁଷ୍ୟ ସମାଜରେ ବୃଦ୍ଧାବସ୍ଥାର ଆକ୍ରମଣର ବଶ୍ୟତା ସ୍ୱୀକାର କରିବାକୁ ନିତାନ୍ତ ଅନିଚ୍ଛୁକ । ନିତାନ୍ତ 'ଅପ୍ରସ୍ତୁତ' ନ ହେଲେ 'ବୃଦ୍ଧୋଽହଂ' ଏବଂଭୂତ ବାକ୍ୟୋଚ୍ଚାରଣ କରିବାକୁ ପ୍ରାୟ ଅଧିକାଂଶ ନାରାଜ ।

ଏହି ସମୟରେ ଗ୍ରାମର ଜମିଦାରଙ୍କ ସରଦାର ରାମ ବେହେରା ଆସି ଟୁଙ୍ଗୀରେ ଉପସ୍ଥିତ ହେଲା । ଜମିଦାରଙ୍କ ନିକଟରେ କିଛି କାର୍ଯ୍ୟ ଥିଲେ ସରଦାରଙ୍କ ଅନୁଗ୍ରହ ନ ହେଲେ ସବୁ ବ୍ୟର୍ଥ । ସରଦାରଙ୍କ କୋପଦୃଷ୍ଟି ହେଲେ ଗ୍ରାମରେ ଦଣ୍ଡେ ରହିବା ଅସମ୍ଭବ । ବିଶେଷତଃ ଆମ୍ଭେମାନେ ମଫସଲର ଗ୍ରାମବାସୀ, ଅଳ୍ପ ବହୁତ ସମସ୍ତେ ଜମିଦାରଙ୍କ ଅନୁଗ୍ରହ ଉପରେ ନିର୍ଭର କରୁଁ ଓ ଅନେକ ବିଷୟର ଅଭାବ ଜମିଦାରଙ୍କ ଅନୁଗ୍ରହରୁ ଦୂରୀଭୂତ ହୁଏ । ( ଯେଉଁମାନେ ସହରରେ ଥାଇଁ ଘର ପାଖ ମୁଦି ଦୋକାନରୁ ଡାଲି, ଚାଉଳ, ତେଲ, ଲୁଣ, କାଠ ଖରିଦ କରି ଚଳନ୍ତି, ସେମାନେ ଉପରଲିଖିତ ପ୍ରତିଜ୍ଞା ସହଜରେ ବୁଝି ପାରିବେ ନାହିଁ । ) ରାମ ବେହେରା ବାର୍ଷିକ ୧୨ ଟଙ୍କା ଦରମା ପାଏ । ତା ମଧ୍ୟ ଗତ ପାଞ୍ଚ ବର୍ଷ ହେଲା ବାକି, ତଥାପି ସେ ପ୍ରାୟ ଦୁଇ ହଜାର ଟଙ୍କାର ବିଷୟ କରିଛି । ସେଥିପାଇଁ କହନ୍ତି, 'ସନ୍ତ୍ୟ ସଦାଽଭିଗନ୍ତବ୍ୟା ଯଦ୍ୟପ୍ୟଫଳଶଙ୍କିନଃ । ଯା ହି ସ୍ୱୈରକଥା ସ୍ତେଷାମୁପଦେଶା ଭବନ୍ତି ତାଃ ।' ଦର୍ମା ପଛକେ ନ ମିଳୁ କିନ୍ତୁ ତେବେ ସୁଦ୍ଧା ଲାଭ । ରାମ ବେହେରା ଜମିଦାରଙ୍କ ଅନୁମତି ପାଇ ଆପଣା ପୁଅଟିକୁ ସ୍କୁଲରେ ପଢ଼ାଇବାର ଆଶା ବାନ୍ଧିଛି । ପୁଅ ମନ୍ତ୍ର୍ୟାପି ଖଣ୍ଡେ ପାଶ କଲେ ଅନ୍ତତଃ ଜମିଦାରଙ୍କ କାର୍ଯ୍ୟ ତାକୁ ତ ସୁରୁଳୁରୂପେ ଚଳାଇବ । ଆଜି ଏତିକି କାର୍ଯ୍ୟ ଅଛି ବୋଲି ରାମ ବେହେରା ଟୁଙ୍ଗୀରେ ଉପସ୍ଥିତ ।

ରାମ ବେହେରା ମାଷ୍ଟର ମହାଶୟଙ୍କୁ କହିଲା—ଆ ମାଷ୍ଟରେ ! ତୁମେ ବାବୁଙ୍କ ପାଖରେ କାଠ ଗଛ ପାଇଁ ଅନୁସରଣ କରିଥିଲ । ମୁଁ ତହସିଲଦାରଙ୍କଠାରୁ ଖଣ୍ଡେ ହୁକୁମନାମା କରେଇ ଦେବି । ମୋ ପିଲାଟିକି ଏଠେଇଁ ଆଣି ତୁମ ପାଖରେ ପକେଇବି । ପିଲାଟି କମିତି ଦି'ଅକ୍ଷର ଶିଖନ୍ତା ।

ମାଷ୍ଟର ମହାଶୟ—( ଭବିଷ୍ୟତର ନେତ୍ର ଚିତ୍ର ମାଷ୍ଟରଙ୍କ ମନରେ ଚିତ୍ରିତ ହୋଇ ଗଲା । ତା ହେଲେ ରାମ ବେହେରା ମାଷ୍ଟରଙ୍କର ନିଜସ୍ୱ ହେବ ଓ ମାଷ୍ଟର ମହାଶୟଙ୍କ ଭାଗ୍ୟରେ ଅନେକ ସିଧା ସାମଗ୍ରୀ, କାଠଗଛ ଓ ଦେଢ଼ୀ ଧାନ ଜୁଟିବ) ବେଶ୍ କଥା, ମୁଁ ତ ତୁମକୁ ସେ thing (ଓଃ ରାମ୍ !) ବିଷୟ କହିବାକୁ ବସିଥିଲି । ତୁମକୁ God ( ଓଃ ! ) ଈଶ୍ୱର କଣ ନ କରିଛନ୍ତି । ତୁମ boy ( ପିଲା ) ନ ପଢ଼ିବ, ଆଉ କିଏ ପଢ଼ିବ ?

ରାମ ବେହେରା— ମୁଁ ନାହାକୁ ଡାକ ଦିନ ଠିକ କରିଛି, ସୁନାୟା ବାସି ଦିନ ମୋ ପୁଅ ଘରୁ ଅନୁକୂଳ କରି ଆସିବ— ଏହା କହି ଟୁଙ୍ଗୀରୁ ପ୍ରସ୍ଥାନ କଲା । ( ରାମ ବେହେରାର ସମୟ ବଡ଼ ମୂଲ୍ୟବାନ୍ । ସେ କହେ ଯେ ତାକୁ ମରିବାକୁ ସୁଦ୍ଧା ଫୁରସତ ନାହିଁ । ବଡ଼ ବଡ଼ ବାରିଷ୍ଟର ବା ଓକିଲମାନଙ୍କର ସମୟର ମୂଲ୍ୟ ନିରୂପିତ ହୋଇଅଛି । କିନ୍ତୁ ରାମ ବେହେରାର ସମୟ ଅମୂଲ୍ୟ ବା ନିର୍ମୂଲ୍ୟ ।)

ମାଷ୍ଟର ମହାଶୟ ଅତି ଦ୍ରୁତବେଗରେ ବସାରୁ ନୂତନ ପଞ୍ଜିକା ଖଣ୍ଡିକ ଆଣିବାକୁ ଗଲେ । ସୁନାୟା କେଉଁ ଦିନ ପଡ଼ିବ, ଏ କଥା ସ୍ଥିର ନ କରିବା ପର୍ଯ୍ୟନ୍ତ ମାଷ୍ଟର ମହାଶୟ ଅସ୍ଥିର ।

ମାଷ୍ଟରଙ୍କ ଅନୁପସ୍ଥିତରେ ମହନ୍ତଜୀ କହିଲେ, ଆଜି Brewer's Dictionary ଦେଖୁଁ ଦେଖୁଁ 'ଜଗନ୍ନାଥ' ଶବ୍ଦର ଅର୍ଥ ଦେଖି ହାସ୍ୟ ସମ୍ବରଣ କରି ପାରିଲି ନାହିଁ ।

ପଣ୍ଡିତ ମହାଶୟ ଚିତ୍କାର କଲେ, 'ବିଦେଶୀୟ-ଭାଷାନଭିଜ୍ଞ ମାନୁଷମାନଙ୍କ ସମ୍ମୁଖରେ କଦାପି

ବଙ୍କାଜୀଙ୍କୁ ଭାଷାସମ୍ବନ୍ଧୀୟ ବାତ୍ [illegible] ଣ ଦେ [illegible] ସୌଜନ୍ୟ [illegible] ନ୍ତ୍ର ବ୍ୟବହାର ନ କର ଅମ୍ଭ [illegible] ହେଲେ ଅମ୍ଭେ ପ୍ରାର୍ଥନୀୟ ବୋଲି ଅମ୍ଭ [illegible] ଅମ୍ଭର ଅବୋଧ- ଏଠାରୁ [illegible] ଗମ୍ୟ [illegible] ନକଟରେ ଚର୍ଚ୍ଚା କର ଅମ୍ଭଙ୍କ [illegible] କଲେ ତୁମ୍ଭେମାନେ କର୍ନ୍ତୁ

ସିଂହେ—ପଣ୍ଡିତ ମହାଶୟ ! ଆପଣ କ୍ଷମା କରିନ୍ତୁ, ମୋର ଯାହା କହିବାର, ତାହା ଓଡ଼ିଆରେ ବୁଝାଇ ଦେଉଛି, ଶୁଣନ୍ତୁ:—ବ୍ରୁସ୍ତର ସାହେବ ଇଂରାଜୀରେ ଖଣ୍ଡିଏ ଅଭିଧାନ କରିଅଛନ୍ତି । ସେ ଅଭିଧାନରେ 'ଜଗନ୍ନାଥ' ଶବ୍ଦର ଜ୍ଞାତବ୍ୟ ବିଷୟ ଏହିପରି ଭାବରେ ବ୍ୟାଖ୍ୟା କରିଅଛନ୍ତି । (ଖଣ୍ଡେ କାଗଜ ବାହାର କରି ମର୍ଦ୍ଦରାଜେ ଓଡ଼ିଆ ତର୍ଜମା କରି କହିଲେ) "ଜଗ୍ଗର୍ଣ୍ଣାଟ୍ ବା ଜାଗ୍ଗର୍ଣ୍ଣାଟ୍—ଏକ ହିନ୍ଦୁ ଦେବତା; ଏ ଶବ୍ଦଟି ସଂସ୍କୃତ ଜଗନ୍ନାଥ (ଜଗତର କର୍ତ୍ତା)ର ଅପଭ୍ରଂଶ । ଏ ଦେବତାଙ୍କର ଦେଉଳ ଓଡ଼ିଶାରେ ଜଗନ୍ନାଥ ନାମକ ଏକ ନଗରରେ ଅବସ୍ଥିତ । ଗୋଟିଏ ଦେବାଳୟ ନିମନ୍ତେ ସ୍ଥାନ ସ୍ଥିର କରିବା ପାଇଁ 'ଅଇନ୍ ଅକବରୀ' ନାମକ ରାଜା ଜଣେ ବିଦ୍ୱାନ୍ ବ୍ରାହ୍ମଣଙ୍କୁ ପଠାଇଲେ । ବ୍ରାହ୍ମଣ ଅନେକ ଦିନ ପର୍ଯ୍ୟନ୍ତ ଏ୍ଣର ଆଡ଼େ ବୁଲିଲେ ଏବଂ ଦେଖିଲେ ଯେ ଗୋଟିଏ କାକ ଜଳରେ ସ୍ନାନ କରି ସାର ଜଳକୁ ନମସ୍କାର କଲା ଓ ସେହି ସ୍ଥାନଟି ଦେବାଳୟର ଉପଯୁକ୍ତ ସ୍ଥାନ ନିର୍ଣ୍ଣୀତ ହେଲା । ଦେବାଳୟ ନିର୍ମିତ ହେବା ସମୟରେ ରାଜା ସ୍ୱପ୍ନ ଦେଖିଲେ ଯେ ପର ଦିନ ପ୍ରାତଃକାଳରେ ବିଷ୍ଣୁଙ୍କର ମୂର୍ତ୍ତି ରାଜାଙ୍କର ନୟନଗୋଚର ହେବ । ପ୍ରାତଃ-କାଳରେ ରାଜା ଦେବାଳୟ ଦେଖିବାକୁ ଯାଇ ଜଳରେ କାଷ୍ଠଖଣ୍ଡ ଦେଖିଲେ ଏବଂ ଏହାକୁ ବିଷ୍ଣୁଙ୍କ ମୂର୍ତ୍ତି ମଣି 'ଜଗନ୍ନାଥ' ନାମରେ ଦେବାଳୟରେ ପ୍ରତିଷ୍ଠିତ କରାଇଲେ । ବ୍ରୁଟନ ସାହେବ ଚର୍ଚ୍ଚିଲ୍ ସାହେବଙ୍କ ସଂଗ୍ରହରୁ ଲେଖିଅଛନ୍ତି ଯେ ଜଗନ୍ନାଥ ମୂର୍ତ୍ତି ସପ୍ତଫେଣୀସର୍ପର ଅଙ୍କିତ ଏବଂ ପ୍ରତ୍ୟେକ ଗଣ୍ଡଦେଶରେ ପକ୍ଷଯୁକ୍ତ । ଯେତେବେଳେ ଜଗନ୍ନାଥ ରଥରେ ଯାନ୍ତି, ଏ ପକ୍ଷମାନ ବନ୍ଦ ହେଉଥାଏ ଓ ଖୋଲି ଯାଉଥାଏ । ଜଗ୍ଗର୍ଣ୍ଣାଟଙ୍କ ରଥ—ସର୍ବ ପ୍ରକାର ପ୍ରତିମୂର୍ତ୍ତିରେ ଅଳଂକୃତ, ଷୋଡ଼ଶଚକ୍ରଯୁକ୍ତ ଏକ ବୃହତ୍ କାଷ୍ଠଯନ୍ତ୍ର । ପ୍ରତି ବର୍ଷ ୫୦ ଜଣ ଲୋକ ଏହାକୁ ଦେଉଳ ନିକଟକୁ ଟାଣି ନିଅନ୍ତି ଏବଂ ଏଥିରେ ଠାକୁରଙ୍କ ନିମନ୍ତେ ଗୋଟିଏ କନ୍ୟାପାତ୍ରୀ ଥିବାର କଥିତ ହୁଏ, ପୂର୍ବେ ଅନେକେ ଏ ରଥଦ୍ୱାରା ଦଳି ହୋଇ ମୃତ ହେଉଥିଲେ । (କେତେକ ଲୋକ ଜନତାର ଭିଡ଼ରେ ରଥ ଆଡ଼କୁ ଠେଲି ହୋଇ ଯାଉଥିଲେ ଓ କେତେକ ଲୋକ ଇଂଲଣ୍ଡରେ ଲୋକମାନେ ରେଲ ଗାଡ଼ି ତଳେ ପଡ଼ିଲା ପରି ନିଜେ ନିଜେ ରଥର ଚକ ତଳେ ଯାଇ ପଡୁଥିଲେ, କେତେକ ଲୋକ ଭକ୍ତିଭାବରେ ପଡୁଥିଲେ ।) ଇଂରାଜ ଗବର୍ଣ୍ଣମେଣ୍ଟଙ୍କ ପୁଲିସ ବନ୍ଦୋବସ୍ତ ହେତୁ ଏପରି ମରଣ ପ୍ରଥା କାର୍ଯ୍ୟତଃ ବନ୍ଦ ହୋଇଅଛି ।"

ପଣ୍ଡିତ ମହାଶୟଙ୍କ ଉଚ୍ଚ ହାସ୍ୟରୁ ବିରତ ହେବାକୁ ଘଡ଼ିଏ ଲାଗିଲା । (ମଫସଲରେ ଯାହାକୁ ଅମ୍ଭେମାନେ ଘଡ଼ିଏ କହୁଁ, ତାହା ସହରରେ ଘଣ୍ଟା କ୍ୱାର୍ଟର ।)

ପଣ୍ଡିତ ମହାଶୟ କହିଲେ—'ଜଗର୍ଣ୍ଣାଟ୍' ନୁହେ; ଜଗନ୍ନଟ ପ୍ରକୃତ କଥା;—ଜଗତର ନାଥ =ଜଗନ୍ନାଥ; ଜଗତର ନଟ=ଜଗନ୍ନଟ; ଜଗନ୍ନାଥ ପ୍ରକୃତରେ ଜଗତର ନଟ ଅଟନ୍ତି । 'ଅଘଟନଘଟନାନାଟକସ୍ୟାଭିନେତା ।' ଅମ୍ଭେ ଏଥି ପାଇଁ କହୁଁ ଆଧୁନିକମାନଙ୍କର କବନକୋ-ଲେଷଣାଳମୀ ପ୍ରତିଭା ବସ୍ତୁଗୋପ୍ୟାଦିକା ।

ମୁଁ କହିଲି—ପଣ୍ଡିତ ମହାଶୟ ! ଏ ଅଭିଧାନ-ଲେଖକ ଆଧୁନିକ ନୁହନ୍ତି । ଏ ଆପଣଙ୍କର ପ୍ରିୟତାମହପଦବାଚ୍ୟ । (ମର୍ଦ୍ଦରାଜଙ୍କୁ ସମ୍ବୋଧନ କରି) ଅନେକ ବିଷୟ ସଂଗ୍ରହ କରିବାକୁ ହେଲେ

ଭ୍ରମ ଅବଶ୍ୟମ୍ଭାବୀ । Brewer ସାହେବ ଯେଉଁ Dictionary ସଙ୍କଳନ କରିଅଛନ୍ତି, ସେପରି ପୁସ୍ତକ ସଙ୍କଳନ କରିବାକୁ ହେଲେ ଅନ୍ୟ ଲୋକଙ୍କ ଲେଖା ଉପରେ ବିଶେଷ ନିର୍ଭର କରିବାକୁ ହୁଏ । ଏପରି ସ୍ଥଳରେ ଏ ଦୋଷ ମାର୍ଜନୀୟ । କିଣ କରାଯିବ ? ଏହା ଜ୍ଞାନକୃତ ଦୋଷ ନୁହେ ।

ମର୍ଦ୍ଦରାଜ—ମୁଁ Brewer ସାହେବଙ୍କ ଦୋଷ ଧରୁ ନାହିଁ । କିନ୍ତୁ ଏହା ପଢ଼ି ଜଣେ ବିଦେଶୀୟ ମନରେ ଜଗନ୍ନାଥଙ୍କର କି ଚିତ୍ର ଅଙ୍କିତ ହେବ, ତାହା କହୁଥିଲି ।

ରାମହରି ମିଶ୍ରେ କହିଲେ—Brewer ସାହେବ ତ ବିଦେଶୀୟ । ସେ ଏ ସ୍ଥାନର କୌଣସି ବିଷୟ ଜାଣନ୍ତି ନାହିଁ । କାହିଁକି, ଆମ୍ଭମାନଙ୍କ ସ୍ୱଦେଶୀୟଙ୍କ କଥା ଧରନ୍ତୁ । 'ଉଡ଼ିଶ୍ୟା ବେହେରା ଓ ମାଲିର ଦେଶ' ଏହା ମୁଁ କଲିକତାରେ ବିଶେଷ ମାନ୍ୟ ଗଣ୍ୟ ଲୋକଙ୍କ ମୁହଁରୁ ଶୁଣି ଆସିଅଛି । ଓଡ଼ିଶାରେ ଶିକ୍ଷିତ ଲୋକ ବା ଭଦ୍ରଲୋକ ଅଛନ୍ତି, ଏ କଥା କଲିକତାର କେତେକ ଲୋକଙ୍କ 'ଆକାଶକୁସୁମ' ପରି ବୋଧ ହେବ । 'ଓଡ଼ିଆ ମେଣ୍ଢା'ର ଅର୍ଥ କଣ ? (ମେଷଙ୍କ ଲୋମ କାଟି ଅନ୍ୟ ଲୋକମାନେ ନିଜ ନିଜ ଦେହ ଆବୃତ କରନ୍ତି ବା ଜୀବିକା ନିର୍ବାହ କରନ୍ତି ଓ କେହି କେହି ମେଷ ମାଂସ ଖାନ୍ତି । ଓଡ଼ିଆଙ୍କ ପ୍ରତି ଏହା କିପରି ଖଟିଲା, ଏହା ସ୍ଥିର କରିବା ନିମନ୍ତେ ଐତିହାସିକ, ସାହିତ୍ୟିକ, ଗାଣିତିକ, ସାମାଜିକ-ମାନଙ୍କର ପ୍ରଗାଢ଼ ଅଧ୍ୟବସାୟ ଆବଶ୍ୟକ ।)

ଏହି ସମୟରେ ମାଷ୍ଟର ମହାଶୟ ନୂତନ ପଞ୍ଜିକା ହସ୍ତରେ ନେଇ ବସାରୁ ଫେରି ଆସିଲେ ଓ କହିଲେ, ଏ ପାଞ୍ଜିରେ Many mistakes (ଅନେକ ଭୁଲ) ଅଛି । ଏଇ ଦେଖନ୍ତୁ, ଆଜି date (ତାରିଖ) ୧୪ ତାରିଖ, ଶୁକ୍ରବାର । କିନ୍ତୁ ଆଜି Saturday (ଶନିବାର) ପାଞ୍ଜିରେ ଲେଖା ଅଛି ।

ରାମ ବେହେରା ମାଷ୍ଟର ମହାଶୟଙ୍କୁ କହିଲା—ପଣ୍ଡିତେ ! ତୁମେ ବାବୁଙ୍କ ପାଖରେ କାଲି 'ଭୁଲ ଅଛି'—ମରଣ କରିଥିଲ । ମୁଁ ଉନହିଲ ଦେଖି ଶନିବାର ତେଲକୁମ୍ଭ ନାମା କରେଇ ଦେବି । ଦିନ ୧୫ ତାରିଖ ହେବ । ଆଜି ତୁମ ପାଞ୍ଜିରେ କିନ୍ତୁ ୧୪ ତାରିଖ ହେ'ଅଛିର ଶିଖନ୍ତି । ପାଞ୍ଜିରେ ଖଣ୍ଡିଏ ଶୁଦ୍ଧିପତ୍ର ବାହାରେ କେତେ ପାଞ୍ଜିରେ ଭୁଲ ହୋଇଅଛି । ସାଧାରଣତଃ ପ୍ରତ୍ୟେକ ଚତୁର୍ଥ ବର୍ଷ ( ଅର୍ଥାତ୍ ଯେଉଁ ବର୍ଷ ଚାରିରେ ହରିଲେ କିଛି ଅଂଶ ରହିବ ନାହିଁ ) Leap year(ଲିପ୍ ଇଅର) ନାମରେ ଖ୍ୟାତ । ସେ ବର୍ଷର ବିଶେଷତ୍ୱ ଏହି ଯେ ଅନ୍ୟ ବର୍ଷମାନଙ୍କରେ ଫେବ୍ରୁଆରି ମାସ ଅଠେଇଶା ହୁଏ, କିନ୍ତୁ ଲିପ୍ ଇଅରମାନଙ୍କରେ ଫେବ୍ରୁଆରି ଅଣତିରିଶା ହୁଏ । ଏ ବର୍ଷର ନୂତନ ପଞ୍ଜିକାକାର ଏହି ନିୟମ ଅନୁସାରେ ଏ ବର୍ଷ ୧୯୦୦ ସାଲ ଥିବାରୁ ଏ ବର୍ଷର ଫେବ୍ରୁଆରି ମାସକୁ ଅଣତିରିଶା କରିଅଛନ୍ତି । କିନ୍ତୁ ତାହାଙ୍କ ଏହି ସାଧାରଣ ନିୟମର ବିଶେଷ ନିୟମ ଜଣା ନ ଥିଲା । ତାହା ଏହି :— ପ୍ରତ୍ୟେକ ଚତୁର୍ଥ ଶତାବ୍ଦିମାନଙ୍କ ଛଡ଼ା ଅନ୍ୟ ଶତାବ୍ଦିମାନଙ୍କ ଶେଷବର୍ଷ ଲିପ୍‌ଇଅର ହେବ ନାହିଁ । ଅର୍ଥାତ୍ ଯେଉଁ ଶତାବ୍ଦିମାନଙ୍କ ମୂଳ ଅଙ୍କକୁ ଚାରିରେ ହରିଲେ ଛିଣ୍ଡି ଯିବ, (ଯଥା ୨୦୦୦, ୨୪୦୦, ୧୬୦୦ ) ସେ ବର୍ଷମାନ ଲିପ୍ ଇଅର ହେବ; କିନ୍ତୁ ଯେଉଁ ଶତାବ୍ଦିର ମୂଳ ଅଙ୍କମାନ ଚାରିରେ ହରିଲେ ଛିଣ୍ଡି ଯିବ ନାହିଁ, ( ଯଥା ୧୫୦୦, ୧୭୦୦, ୧୯୦୦, ୨୧୦୦ ) ସେ ବର୍ଷମାନ ଲିପ୍ ଇଅର ହେବ ନାହିଁ ।

ପଣ୍ଡିତ ମହାଶୟ କହିଲେ—ଏହା ତ ଅତୀବ ବିଷମ ସମସ୍ୟା । ଏହା ଆମ୍ଭର ଅବୋଧଗମ୍ୟ ।

ମର୍ଦ୍ଦରାଜ —ଏହା ଆପଣଙ୍କ ବୋଧଗମ୍ୟ କରିବାକୁ ହେଲେ ଅନେକ ବିଦେଶୀୟ ଐତିହାସିକ ବିଷୟ କହିବାକୁ ହେବ । ଏପରି ସ୍ଥଳରେ ଆପଣଙ୍କର ବୁଝିବାର କଷ୍ଟ ହେବ ।

ହେବେ ଏବେ ମାତ୍ର ଜାଣ [illegible] ଥିବ ଦେଉ ରୋମରେ ଚାନ୍ଦ୍ରମାନ ଓ ସୌର [illegible] ହେଉ ପୂର୍ବର ସାମ୍ୟ ଘଟାଇବାକୁ [illegible] ଦିଗ୍ଭ୍ରାନ୍ତିର ପ୍ରାରମ୍ଭ । ରୋମକମାନଙ୍କ ପରି ଜୁଲିଅସ୍ ସିଜର (Julius Caesar) ବାରେ ସୌରମାନ ବର୍ଷ ଗଣନା [illegible] ପ୍ରତିଷ୍ଠିତ କଲେ ।

ଏକ ସୌରବର୍ଷ=୩୬୫.୨୪୨୨୧୮ ଦିନ [illegible] ଅର୍ଥାତ୍ ୩୬୫ ଦିନ ୫ ଘଣ୍ଟା ୪୮ ମିନିଟ ୪୬ ସେକେଣ୍ଡ । ପଞ୍ଜିକାରେ ବର୍ଷକୁ ୩୬୫ ଦିନ କଲେ ପ୍ରତ୍ୟେକ ବର୍ଷରେ ପ୍ରାୟ ୬ ଘଣ୍ଟା କରି ବଳି ପଡ଼େ । ସେଥି ନିମନ୍ତେ ଚାରି ବର୍ଷରେ ଏହା ୧ ଦିନ ବା ୨୪ ଘଣ୍ଟା ବଳି ପଡ଼ିବାରୁ ପ୍ରତ୍ୟେକ ୪ର୍ଥ ବର୍ଷ ଲିପ୍ ଇଅର ଅର୍ଥାତ୍ ୩୬୬ ଦିନ କରିବାକୁ ହୁଏ । କିନ୍ତୁ ତାହା କଲେ ପ୍ରତି ବର୍ଷକେ ୧୧ ମିନିଟ ଲେଖାଏଁ ବେଶି ରହି ଯାଏ ଓ ତାହା ୧୦୦ ବର୍ଷରେ ପ୍ରାୟ ୧୨୦୦ ମିନିଟ= ପ୍ରାୟ ୧ ଦିନ ବେଶି ରହିଯାଏ । ସେଥି ନିମନ୍ତେ ପ୍ରତ୍ୟେକ ଶତାବ୍ଦିର ଶେଷ ବର୍ଷ ଲିପ୍ଇଅର ହୁଏ ନାହିଁ । କିନ୍ତୁ ୧ ଦିନ=୧୪୪୦ ମିନିଟ । ୧୨୦୦ ମିନିଟକୁ ୧ ଦିନ ଗଣନା କଲେ ଏକ ଶତାବ୍ଦିରେ ୨୪୦ ମିନିଟ ଲେଖାଏଁ ଚାରି ଶତାବ୍ଦିରେ ୧୦୦୦ ମିନିଟ ବା ଏକ ଦିନରୁ କିଛି କମ ବଳି ପଡ଼େ । ଅତଏବ ସେ ଦିନଟା ପୂରଣ କରିବା ନିମନ୍ତେ ପ୍ରତ୍ୟେକ ୪ର୍ଥ ଶତାବ୍ଦିର ଶେଷ ବର୍ଷ ଲିପ୍ ଇଅର ହୁଏ । ଇଂଲଣ୍ଡର ରାଜା George II ଏହା ସ୍ଥିର କଲେ ।

ପଣ୍ଡିତ ମହାଶୟ କହିଲେ—'ଉଦ୍ଭି ଜାନନ୍ତି ଉଦ୍ଭିଦାଃ'—ଏ କିମ୍ଭୂତ ଘଟନା ତାହା ଆମ୍ଭର ବୁଦ୍ଧିର ଅଜ୍ଞେୟ ।

ମର୍ଦ୍ଦରାଜେ—ପଣ୍ଡିତ ମହାଶୟ ! ଆପଣ ଦଶମିକ ବା ଭଗ୍ନାଂଶ ଜାଣିଥିଲେ ସହଜରେ ବୁଝି ପାରନ୍ତେ । (ପଣ୍ଡିତ ମହାଶୟ ହେ ଧୋଁ ପିଛା-ରମ୍ଭଇବାବଡ଼ପ୍ରେ । ମର୍ଦ୍ଦରାଜେ ମାଷ୍ଟର ମହାଶୟଙ୍କ ଆଡ଼କୁ ଲକ୍ଷ କରି କହିଲେ ଓ ଖଡ଼ି ଗୋଟାକରେ ଭୂମିରେ ଅଙ୍କ ଲେଖିଲେ ।)

ଏକ ସୌରମାନ ବର୍ଷ=୩୬୫.୨୪୨୨୧୮ ଦିନ

$$=୩୬୫+\frac{୧}{୪}-\frac{୩}{୪୦୦}$$ ଦିନ ପ୍ରାୟ;

ଏ ଭଗ୍ନାଂଶରୁ ଦେଖା ଯିବ ଯେ ପ୍ରତ୍ୟେକ ୪ର୍ଥ ବର୍ଷରେ ୩୬୫ ଦିନରେ ୧ ଦିନ ଯୋଗ କଲେ ଯାହା ହେବ, ତହିଁରୁ ପ୍ରତି ୪୦୦ ବର୍ଷରେ ୩ ଦିନ କାଟି ଦେଲେ ସୌରମାନ ହାରାହାରି ବର୍ଷ ଠିକ ହେବ । ଏହା ହେଲେ ସୁଦ୍ଧା ୪୦୦୦ ବର୍ଷରେ ୧ ଦିନ ବେଶି ପଡ଼ି ଯିବ । କିନ୍ତୁ ୪୦୦୦ ବର୍ଷ ତୁଳନାରେ ୧ ଦିନ ଅତି ସାମାନ୍ୟ ଥିବାରୁ ତାହା କେହି ଧରନ୍ତି ନାହିଁ ।

ପଣ୍ଡିତ ମହାଶୟ—ଏବଂଭୂତ ସାନ୍ନିପାତିକ ପ୍ରଳାପ ସୃଷ୍ଟ ନ ହେଲେ ଆମ୍ଭେ ଶମନୋନ୍ମୁଖ । ବିଦେଶୀୟ କାଳଗଣନାପ୍ରଣାଳୀ ତ୍ୟାଗ କରି ଅସ୍ମଦ୍ଦେଶପ୍ରଚଳିତ କାଳଗଣନାପଦ୍ଧତ୍ୟନୁସରଣ କରିବାକୁ ପ୍ରାର୍ଥୀ ହେଲେ ଅସ୍ମଦ୍ଦ୍ୱାରା ଅନୁଗୃହୀତ ହୁଅନ୍ତା ।

ମର୍ଦ୍ଦରାଜେ—ପଣ୍ଡିତ ମହାଶୟ, ସେ ବିଷୟରେ ମୋର ସମ୍ୟକ୍ ପ୍ରବେଶ ନାହିଁ । ରାମହରି ମିଶ୍ର ମହାଶୟ କେତେ ଦିନ ଜ୍ୟୋତିଷ ଗ୍ରନ୍ଥ ଇତ୍ୟାଦି ଆଲୋଚନା କରିଥିଲେ । ତାଙ୍କଠାରୁ ଏ ବିଷୟରେ କିଛି ଆଶା କରାଯାଇ ପାରେ । ଆମ୍ଭେମାନେ କେବଳ ଏତିକି ଜାଣୁ ଯେ ସ୍ଥାନବିଶେଷରେ ପ୍ରଚଳିତ ଆଇନର ବ୍ୟବସ୍ଥା ଅନୁସାରେ ଫସଲି, ଅମଲି ଓ ବିଲାୟତି ବର୍ଷ ଗଣନା କରିବାକୁ ହୁଏ ।

ରାମହରି ମିଶ୍ର—ପଞ୍ଜିକା ଇତ୍ୟାଦିରେ ଶାଳିବାହନ ଶକାବ୍ଦ ପ୍ରଚଳିତ ଓ ଜମିଦାରୀ ସେରେସ୍ତାରେ ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟୀ କର୍ଣ୍ଣାଟୋତ୍କଳ କଲବରଗେଶ୍ୱର ପ୍ରତାପ ଶ୍ରୀ——ଦେବ ମହାରାଜଙ୍କ ଅଙ୍କ ଓ ଉତ୍ରାୟଣାଦ ପ୍ରଚଳିତ । ପଞ୍ଜିକାରେ ସୌରମାନ ଶକାବ୍ଦ; ଜମିଦାରୀ ସେରେସ୍ତାରେ ସୌରମାନ ଅଙ୍କ ଓ ସାଲ । ସଂକ୍ରାନ୍ତି ଅନୁସାରେ ସୌରମାନ ମାସର ଗଣନା ଆରମ୍ଭ; ମହାବିଷୁବ ସଂକ୍ରାନ୍ତିଠାରୁ ଶକାବ୍ଦ ଓ ବଙ୍ଗାବ୍ଦର

ଆରମ୍ଭ; ବିକ୍ରମାଦିତ୍ୟଙ୍କ ସମ୍ବତ୍ ଚାନ୍ଦ୍ରମାନ; ଚାନ୍ଦ୍ରମାନ ଅନୁସାରେ କୃଷ୍ଣ ପ୍ରତିପଦରେ ମାସାରମ୍ଭ ଓ ପୂର୍ଣ୍ଣିମାରେ ମାସ ଶେଷ ହୁଏ । ଜମିଦାରୀ ସିରସ୍ତାପ୍ରଚଳିତ ଅଙ୍କ ଯଦିଚ ସୌରମାନ, ତାହା ଭାଦ୍ର ଶୁକ୍ଳ ଦ୍ୱାଦଶୀରେ (ଚାନ୍ଦ୍ରମାନ ଅନୁସାରେ) ଆରମ୍ଭ ହୁଏ । ଓଡ଼ିଶାରେ ସଂକ୍ରାନ୍ତି ସଞ୍ଚାରର ପୂର୍ବ ଦିନ ମାସ ଶେଷ ହୁଏ, କିନ୍ତୁ ବଙ୍ଗଦେଶରେ ସଂକ୍ରାନ୍ତି ଦିନ ମାସ ଶେଷ ହୁଏ । ବିକ୍ରମାଦିତ୍ୟଙ୍କ ସମ୍ବତ୍ ଚୈତ୍ର ଶୁକ୍ଳ ପ୍ରତିପଦରେ ଆରମ୍ଭ ହୁଏ ।

ଗଣନା ତିନି ପ୍ରକାର :—ସୌରମାନ, ଚାନ୍ଦ୍ରମାନ ଓ ନାକ୍ଷତ୍ରମାନ । ନାକ୍ଷତ୍ରମାନଗଣନାକ୍ରମେ ପରମାୟୁଗଣନା ଓ ଦଶାଗଣନା ହୁଏ । ସାବନମାନ (ସୂର୍ଯ୍ୟୋଦୟ ସଙ୍ଗେ ଯହିଁରେ ଦିନର ଆରମ୍ଭ ହୁଏ) ଗଣନାକ୍ରମେ ସୁଥ, ବେତନ, ଅଶୌଚ ଗଣନା ହୁଏ ।

ସୌରମାନଗଣନାକ୍ରମେ ପ୍ରାୟଶ୍ଚିତ୍ତ, ଗର୍ଭାଧାନ, ଯାତ୍ରା, ବିବାହ ହୁଏ । ଚାନ୍ଦ୍ରମାନଗଣନା ଦୁଇ ପ୍ରକାର—ମୁଖ୍ୟ ଓ ଗୌଣ ।

ମୁଖ୍ୟ ଚାନ୍ଦ୍ରମାନରେ ପ୍ରଥମ ଚନ୍ଦ୍ରଦର୍ଶନଠାରୁ ମାସାରମ୍ଭ ହୁଏ । ମୁସଲମାନମାନେ ମୁଖ୍ୟ ଚାନ୍ଦ୍ରମାନ ଅନୁସାରେ ହିଜରି ସାଲର ମାସ ଗଣନା କରନ୍ତି ।

ଗୌଣ ଚାନ୍ଦ୍ରମାନ ( ଯାହା ତି ପ୍ରତିପଦରେ ଆରମ୍ଭ ହୋଇ ପୂର୍ଣ୍ଣିମା କିମ୍ବା ଅମାବସ୍ୟାରେ ଶେଷ ହୁଏ) ଗଣନାକ୍ରମେ ବ୍ରତ ଉପବାସାଦି ଓ ଶ୍ରାଦ୍ଧ କରିବାକୁ ହୁଏ ।

ପଣ୍ଡିତ ମହାଶୟ କହିଲେ—ସୌରମାନ ବର୍ଷରେ ୩୬୫ ଦିନ ୧୫ ଦଣ୍ଡ ୩୦ ପଳ ୨୨। ବିପଳ ଓ ଚାନ୍ଦ୍ରମାନ ବର୍ଷରେ ୩୫୪ ଦିନ ୨୨ ଦଣ୍ଡ ୧ ପଳ । ସୌରମାନ ଓ ଚାନ୍ଦ୍ରମାନ ବର୍ଷ ମଧ୍ୟରେ ୧୦ ଦିନ ୫୩ ଦଣ୍ଡ ୨୯ ପଳ ୨୨। ବିପଳ ପ୍ରଭେଦ ।

ମର୍ଦ୍ଦରାଜ—ପଣ୍ଡିତ ମହାଶୟ ! ପଳ ବିପଳ ଅମ୍ଭେମାନେ ବୁଝି ପାରୁ ନାହୁଁ ।

ରାମ——ଚର୍ଜ୍ୟେର ! ମଧ୍ୟ—'ଶଠେ ଶାଠ୍ୟଂ ସମାଚରେତ୍' ଇତ୍ୟାଦିଦ୍ୱାରି ... ଅମ୍ଭଙ୍କ ଦଶମ ଭଗ୍ନାଂଶେ- ... ଥିଲ; ଅମ୍ଭ ବେଳରୁ ଅମ୍ଭେ ଫିରଙ୍ଗି କି ... ବର୍ଷର ସମୀପରେ ମୂଳକ ଚର୍ବଣ କରୁଥିଁ ... ଅଙ୍କ ସମସ୍ତରେ ପ୍ରଦୀପ ସ୍ଥାପନ କଲୁଁ, ... 'ପରବେଦନା' ସୌରମାନ ଓ ଚାନ୍ଦ୍ରମାନ ବର୍ଷମାନରେ ଯେ ୧୦ ଦିନ ୫୩ ଦଣ୍ଡ ୨୯ ପଳ ୨୨। ବିପଳ ପ୍ରଭେଦ ହୁଏ, ତାହାର ଏକୀକରଣାର୍ଥେ ଚାନ୍ଦ୍ରମାନ ବର୍ଷ ୮ ମାସ ୧୫ ଦିନରେ ଗୋଟିଏ ମଳ ମାସର ଗଣନା ସୃଷ୍ଟି କରିବାକୁ ହୋଇଅଛି । ଏ ଛଡ଼ା ଏ ସ୍ଥଳରେ ଅମ୍ଭର ବକ୍ତବ୍ୟ ଏହି ଯେ ପୁରୁଷୋତ୍ତମ ରାଜାଙ୍କ ଅଙ୍କଗଣନାରେ ୧ମ, ୬ଷ୍ଠ, ୬ଷ୍ଠ, ୧୬ଶ, ୨୬ଶ, ୩୬ଶ, ୪୬ଶ ଇତ୍ୟାଦି ଓ ୨୦ଶ, ୩୦ଶ, ୪୦ଶ, ୫୦ଶ, ଇତ୍ୟାଦି ଅଙ୍କମାନ ଗଣନା କରିବା ଅପ୍ରଚଳିତ, ଅତଏବ ପରିହାର୍ଯ୍ୟ—କିନ୍ତୁ ୧୦ମ ଅଙ୍କଟା ଗଣିତ ହୁଏ ।

ଏହି ସମୟରେ ମନ୍ତୁରାମ୍ ଆସି ପହଞ୍ଚିଲା ।

ମାଷ୍ଟର ମହାଶୟ—ମୁସଲମାନମାନଙ୍କ year (ବର୍ଷ) ଓ month (ମାସ) କିପରି count (ଗଣନା) ହୁଏ, ତାହା ମୁଁ understand କରି (ବୁଝି) ପାରିଲି ନାହିଁ ।

ରାମହରି ମିଶ୍ର—ମୁସଲମାନଙ୍କ ମାସ ପ୍ରଥମ ଚନ୍ଦ୍ରଦର୍ଶନ ଦିନ ସନ୍ଧ୍ୟାରୁ ଆରମ୍ଭ ହୁଏ ।

ମନ୍ତୁରାମ୍ କହିଲା :—ଆରେ ସେ କଥା କଣ କହୁଛ ? ପଠାଣଙ୍କର ତ ସବୁ ଓଲଟା । ଆମର ସକାଳୁଁ ମାସ ଗଣତି ହୁଏ, ତାଙ୍କର ସନ୍ଧ୍ୟାରୁ ମାସ ଗଣତି । ଆମର କଦଳୀପତ୍ର ପେଟରେ ଭାତ ଖାଉଁ, ପଠାଣ ପତ୍ର ପିଠି ବାଗରେ ଭାତ ଖାନ୍ତି । ଆମେ ବୋଦା ପକେଇଲା ବେଳେ ବେକ ଉପରେ ହାଣୁ, ପଠାଣ ତଣ୍ଟିରେ ହଲାଲ କରନ୍ତି । ଆମେ ଗୁହ ହାତ ଖୋସି ଲୁଗା ପିନ୍ଧୁଁ, ପଠାଣଙ୍କର ଗୁହ ହାତ ଫିଟା । ଆମେ ଦାଢ଼ି ଖିଅର ହଉଁ, ପଠାଣ ଦାଢ଼ି ରଖନ୍ତି । ଅମେ

ବସି କରି ପୂଜା କରୁଁ, ପଠାଣ ଠିଆ ହୋଇ ପାଢ଼ଅ କରନ୍ତି । ଆମେ ପୂର୍ବଙ୍କୁ ମୁହଁ କରି ପୂଜା କରୁଁ ; ପଠାଣ ପଶ୍ଚିମକୁ ମୁହଁ କରି ନମାଜ ପଢ଼ନ୍ତି । ଆମେ ପରସ୍ତା କରି ପାଣି ପିଉଁ, ପଠାଣ ବେଙ୍କା ପିଅନ୍ତି । ଆମର ଦ'ହାତିଆ ନମସ୍କାର, ତାଙ୍କର ଏକହାତିଆ ସଲାମ । ଆମେ ବାଁ ଆଡ଼ୁ ଡାହାଣକୁ ଅକ୍ଷର ଲେଖୁଁ, ତାଙ୍କର ଡାହାଣରୁ ବାଁକୁ ହରପ ଲେଖନ୍ତି ।

ଆଜି ଟୁଙ୍ଗୀରେ ବର୍ଣ୍ଣଗଣନା ଯେମନ ଆମ୍ଭମାନଙ୍କ ମନରେ ପୂର୍ଣ୍ଣୀ ବାୟୁ ଜାତ ହୋଇ ଥିବାରୁ ଓ ମସ୍ତିଷ୍କ ଘୂର୍ଣ୍ଣନଭାବରେ ମନ୍ଥିତ ହୋଇ ଥିବାରୁ ମସ୍ତଗମର ତୁଳନା-ଚିତ୍ରଟି ଆମ୍ଭମାନଙ୍କ ହୃଦୟ-ଦର୍ପଣରେ ସମ୍ୟକ୍ ପ୍ରତିଫଳିତ ହେଲା ନାହିଁ ଓ ଅନେକ ରାତ୍ର ହେବାରୁ ଆମ୍ଭେମାନେ ବିଦାୟ ନେଲୁଁ ।

ଗଲା ବେଳେ ମୁଁ ସମସ୍ତଙ୍କୁ କହିଲି, ଟୁଙ୍ଗୀରେ ବସି କ୍ରମଶଃ ଢେଙ୍କିଶାଳରେ ଢେଙ୍କିକାଳର ଚର୍ଚ୍ଚା ବଢ଼ିବାକୁ ଲାଗିଲାଣି । ଏପରି ଅସାଧ ଓ ଅବୋଧଗମ୍ୟ ବିଷୟମାନଙ୍କ ଚର୍ଚ୍ଚା ବଢ଼ିଲେ ଦୁର୍ମୁଖଶର୍ମା ଟୁଙ୍ଗୀର ସମ୍ପାଦକତ୍ୱରେ ଇସ୍ତଫା ଦେବେ । ଏଣିକି ଟୁଙ୍ଗୀକୁ କେହି ଆସିବାକୁ ରାଜି ହେବେ ନାହିଁ ।

ମର୍ଦ୍ଦଗଜେ :—ଯେଉଁ ଦିନ ଯେପରି ଧରଣର ଲୋକ ଥିବେ, ସେ ଦିନ ସେହିପରି ଧରଣର ବିଷୟମାନ ଚର୍ଚ୍ଚା କଲେ କ୍ଷତି ନାହିଁ । ଜମାଦାରେ ବା ମୁଲ୍ଲ୍ୟାରେ ଥିଲେ ତ ଏତେ କଥା ପଡ଼ି ନ ଥାନ୍ତା । (ମସ୍ତଗମଙ୍କୁ କହିଲେ) ଆମର ଓଲଟା କି ମୁସଲମାନଙ୍କର ଓଲଟା, ଏ କଥା କିପରି ଜାଣିବ ?

ଶ୍ରୀ ଦୁର୍ମୁଖ ଶର୍ମା ।

---

## ସ୍ତ୍ରୀଜାତିର ଅଧିକାର—ଭାରତରମଣୀ ।

(କଟକ ଆଲୋଚନା ସଭାରେ ପ୍ରଦତ୍ତ ବକ୍ତୃତାର ସାରାଂଶ ।)

କାଳିଦାସ ତାଙ୍କ 'ରଘୁବଂଶ' ର ପ୍ରାରମ୍ଭରେ କହି ଅଛନ୍ତି,—

ବାଗର୍ଥାବିବ ସମ୍ପୃକ୍ତୌ ବାଗର୍ଥପ୍ରତିପତ୍ତୟେ ।
ଜଗତଃ ପିତରୌ ବନ୍ଦେ ପାର୍ବତୀପରମେଶ୍ୱରୌ ॥

ବାକ୍ୟ ସହିତ ଅର୍ଥ ଯେପରି ଯୁକ୍ତ, ସ୍ତ୍ରୀ ପୁରୁଷ ସେହିପରି ଏକତ୍ରିତ । ବାକ୍ୟ ଏବଂ ଅର୍ଥ ଯେପରି ଦୁଇଟି ସ୍ୱତନ୍ତ୍ର ପଦାର୍ଥ ନୁହନ୍ତି, ଗୋଟିଏ ବସ୍ତୁର ଦୁଇ ଦିଗମାତ୍ର, ସ୍ତ୍ରୀ ପୁରୁଷ ମଧ୍ୟ ସେହିପରି ଗୋଟିଏ ଅଖଣ୍ଡ ବସ୍ତୁର ଯୋଡ଼ିଏ ଦିଗ ଅଟନ୍ତି । ଆମ୍ଭେମାନେ ଏପରି କେବେହେଁ କଳ୍ପନା କରି ନ ପାରୁଁ ଯେ ପ୍ରଥମେ ଗୋଟିଏ ଶବ୍ଦର ଉତ୍ପତ୍ତି ହେଲା, କେତେ ଦିନ ତାହା ଅର୍ଥହୀନ ଭାବରେ ରହିଲା, କାଳକ୍ରମେ ତାହା ସଙ୍ଗରେ ଅର୍ଥ ବା ଭାବ ( idea ) ଆସି ଯୁକ୍ତ ହେଲା । ପକ୍ଷାନ୍ତରେ ଏହା ମଧ୍ୟ ଆମ୍ଭମାନଙ୍କର କଳ୍ପନାର ଅତୀତ ଯେ ପ୍ରଥମେ କେବଳ ମାତ୍ର ଗୋଟିଏ ଅର୍ଥ ଥିଲା, ପରେ ତାହା ସଙ୍ଗରେ ବାକ୍ୟ ଆସି ଯୁକ୍ତ ହୋଇଅଛି । ସେହିପରି ଆମ୍ଭେମାନେ ଏପରି କୌଣସି ସମାଜ କଳ୍ପନା କରି ନ ପାରୁଁ, ଯେଉଁଠାରେ କେବଳ ମାତ୍ର ପୁରୁଷ ଥିଲେ, ପରେ ରମଣୀ ଆସି ଯୋଗ ଦେଇଅଛନ୍ତି, ଅଥବା ପ୍ରଥମେ କେବଳ ମାତ୍ର ରମଣୀ ଥିଲେ, ପରେ ପୁରୁଷ ଆସି ଯୋଗ ଦେଇଅଛନ୍ତି । ସମାଜ କହିଲେ ସ୍ତ୍ରୀ ପୁରୁଷରେ ସମଷ୍ଟି ବୁଝାଏ । ପୁରୁଷ ରମଣୀ ଉଭୟ ଯେମନ ସମାଜ । ଏମାନେ ସମାଜ-ଚିତ୍ରର ଦୁଇ ପିଠି ଅଥବା ସମାଜ-ପତ୍ରର ଦୁଇଟି ପୃଷ୍ଠା । ଉଭୟର ରଙ୍ଗ ଭିନ୍ନ ହୋଇ ପାରେ, କିନ୍ତୁ ଆଦୃତିରେ ଉଭୟର ସମତା ନିଶ୍ଚିତ, ଏବ ପତ୍ରର ଦୁଇ ପୃଷ୍ଠମଧ୍ୟରେ ଗୋଟିଏ ପୃଷ୍ଠ ଅପର ପୃଷ୍ଠ ଅପେକ୍ଷା ବଡ଼ ହୋଇ ନ ପାରେ । ଏପରି

ହେବା ଅସମ୍ଭବ । ସୁତରାଂ ଉଭୟର ଶକ୍ତି ସାମର୍ଥ୍ୟ ମଧ୍ୟ ସମାନ ହେବ, ଅନ୍ୟାଧିକ ହେବା ଯୁକ୍ତି-ବିରୁଦ୍ଧ । କାରଣ, ଏକ ପୃଷ୍ଠ ଅପର ପୃଷ୍ଠଠାରୁ ବଡ଼ ହୋଇ ନ ପାରେ । କିନ୍ତୁ ବସ୍ତୁତଃ ଆମ୍ଭେମାନେ ଦେଖୁଅଛୁଁ ଯେ ଏକ ପୃଷ୍ଠ ଅପର ପୃଷ୍ଠଠାରୁ ଅନେକ ବଡ଼ ହୋଇ ପଡ଼ିଅଛି । ଏହାର କାରଣ କଣ ? ଏବଂ କିରୂପେ ଏହି ସ୍ୱତଃସିଦ୍ଧ ନିୟମଟିର ଏହି ଦୃଶ୍ୟମାନ ବ୍ୟତିକ୍ରମର କାରଣ ନିର୍ଦ୍ଦେଶ କରାଯାଇ ପାରେ ? ଏହାର କାରଣ ନିର୍ଦ୍ଦେଶ କରିବା ପାଇଁ ଅଧିକ ଦୂରକୁ ଯିବାକୁ ହେବ ନାହିଁ । ମୂଳରେ ଆଧ୍ୟାତ୍ମିକ ମାନସିକ ଶାରୀରିକ ସକଳ ବିଷୟ ଯେବେ ସ୍ତ୍ରୀ ପୁରୁଷର ଶକ୍ତି ସମାନ ହେବା ଯୁକ୍ତିସଙ୍ଗତ ହେଲେହେଁ ଗର୍ଭଧାରଣ, ସନ୍ତାନ ପ୍ରସବ ଓ ଲାଳନପାଳନାଦିରେ ନାରୀଜାତିର ଶକ୍ତି ଏତେ କ୍ଷୟ ପ୍ରାପ୍ତ ହେଉଥିବାରୁ ସେ ସ୍ୱାଭାବିକ ନିୟମରେ ପୁରୁଷ ଅପେକ୍ଷା ଶାରୀରିକ ଶକ୍ତିରେ ହୀନ ହୋଇ ପଡ଼ିଅଛି । ଏ ସମସ୍ତ ପ୍ରକୃତିନିର୍ଦ୍ଦିଷ୍ଟ, ଏଥିରୁ କୌଣସି ଗୋଟିକୁ ମଧ୍ୟ ହସ୍ତାନ୍ତର କରିବା ଅସମ୍ଭବ । ଏଠାରେ କେହି କହି ପାରିବେ ନାହିଁ ଯେ ପୁରୁଷମାନେ ପକ୍ଷପାତ କରି ଏହି ସକଳ କାର୍ଯ୍ୟର ଭାର ସ୍ତ୍ରୀ ଜାତିର ମସ୍ତକରେ ସ୍ଥାପନ କରି ତାହାକୁ ହୀନବଳ କରି ପକାଇ ...ଛନ୍ତି । ଏହାହିଁ ଯଦି ହୁଏ, ଏପରିକି ଯଦି ପ୍ର...ନିର୍ଦ୍ଦିଷ୍ଟ ସ୍ୱାଭାବିକ ନିୟମରେ ଘଟେ, ...ବେ ଯେ ଆମ୍ଭେମାନେ ପୂର୍ବପକ୍ଷ କରିଅଛୁଁ, ... ପୁରୁଷ ଉଭୟେ ସମାନ, ତାହା କିରୂପେ ...ଣ କରାଯାଇ ପାରେ ? ପ୍ରକୃତି ଯଦି ଏପରି ...ଣସି ଭାର ନାରୀଜାତି ଉପରେ ସ୍ଥାପନ ...ନ୍ତି, ଯଦ୍ଦ୍ୱାରା ସେ ପୁରୁଷ ଅପେକ୍ଷା ହୀନତର ... ଅନିବାର୍ଯ୍ୟ, ତାହା ହେଲେ ସାମ୍ୟବାଦର ... କେଉଁଠାରେ ? ଆମ୍ଭେମାନେ କହୁଅଛୁଁ, ... ...ର ସମତା ଗୋଟିଏ ସ୍ୱତଃସିଦ୍ଧ ପ୍ରତିଜ୍ଞା । ...ପ୍ରକୃତିର ସମାଜରେ ଏହାର ଅନ୍ୟଥା ଅସମ୍ଭବ । ସୁତରାଂ ସ୍ତ୍ରୀଜାତିର ଏପରି କୌଣସି ଶକ୍ତି ଅବଶ୍ୟ ଥିବ, ଯଦ୍ଦ୍ୱାରା ଏହି କ୍ଷତି ପୂରଣ ହୋଇ ପାରିବ । ପ୍ରକୃତି ଏକ ଅଙ୍ଗରେ ଯେପରି ହରଣ କରିଅଛନ୍ତି, ଅନ୍ୟ ଅଙ୍ଗରେ ସେହିପରି ପୂରଣ କରିବାକୁ ସେ ବାଧ୍ୟ । ତୁଳା-ଯନ୍ତ୍ରର ସମତାପ୍ରାପ୍ତ ଦୁଇଟି ପଲା (Scales) ମଧ୍ୟରୁ ଗୋଟିକରୁ କିଛି କାଢ଼ି ନେଲେ ସମାନ ପରିମାଣ ଆଉ କିଛି ସେଥିରେ ସ୍ଥାପନ କରିବାକୁ ହେବ, ନଚେତ୍ ସେମାନଙ୍କର ସମତା ରକ୍ଷା ହେବ ନାହିଁ । ପ୍ରକୃତି ଏହା କରିବାକୁ ଭୁଲିଯାଇ ନାହାନ୍ତି । ନ୍ୟାୟନିଷ୍ଠ ଜନକ ତୁଲ୍ୟ ଅପକ୍ଷପାତରେ ସେ ଆପଣାର ପୁତ୍ରକନ୍ୟାମାନଙ୍କୁ ସମାନାଂଶରେ ସ୍ୱୀୟ ସମ୍ପତ୍ତି ବିଭାଗ କରି ଦେଇଅଛନ୍ତି । ସମସ୍ତଙ୍କୁ ଏକ ଜାତୀୟ ବସ୍ତୁ ନ ଦେଲେହେଁ ମୂଲ୍ୟର ସମତାରେ କୌଣସି ତାରତମ୍ୟ ଘଟି ନାହିଁ । ନାରୀଜାତିର କ୍ଷତି ପୂରଣ ନିମିତ୍ତ ସେ ତାହାକୁ ଏପରି ଗୋଟିଏ ଶକ୍ତି ପ୍ରଦାନ କରିଅଛନ୍ତି, ଯାହାଦ୍ୱାରା ପୁରୁଷଜାତି ଚିରକାଳ ଶାସିତ ହୋଇ ଆସୁଅଛନ୍ତି । କିନ୍ତୁ ଏହି ଶକ୍ତି ଶାରୀରିକ ନୁହେ, ଆଧ୍ୟାତ୍ମିକ । ଶାରୀରିକ ଓ ଆଧ୍ୟାତ୍ମିକ ଶକ୍ତିର କାର୍ଯ୍ୟପ୍ରଣାଳୀରେ ଏହି ଗୋଟିଏ ବିଶେଷ ଭିନ୍ନତା ଅଛି ଯେ ଶାରୀରିକ ଶକ୍ତିର କାର୍ଯ୍ୟ ଯେପରି ଆଶୁଫଳପ୍ରଦ, ଆଧ୍ୟାତ୍ମିକ ଶକ୍ତିର କାର୍ଯ୍ୟ ସେପରି ନୁହେ । ଶେଷୋକ୍ତଟିର କାର୍ଯ୍ୟର ଗତି ଟିକିଏ ମନ୍ଥର । ସେଥିପାଇଁ ଅନେକ ସମୟରେ ଶାରୀରିକ ଶକ୍ତିଦ୍ୱାରା ଆଧ୍ୟାତ୍ମିକ ଶକ୍ତି ପର୍ଯ୍ୟୁଦସ୍ତ ହୋଇଥାଏ । କିନ୍ତୁ ବିଶେଷ ଭାବରେ ପ୍ରଣିଧାନ କଲେ ଦେଖା ଯିବ ଯେ ଧୀରେ ଧୀରେ ବିଜିତ ଜେତାକୁ ଜୟ କରୁଅଛି । ରୋମ ଶାରୀରିକ ଶକ୍ତିରେ ଗ୍ରୀସକୁ ଜୟ କଲେହେଁ ଆଧ୍ୟାତ୍ମିକ ଶକ୍ତି ବଳରେ ଗ୍ରୀସ ରୋମ ଉପରେ ଜୟଲାଭ କରିଥିଲା । ଭାରତ ଶାରୀରିକ ବଳରେ ଇଉରୋପ ନିକଟରେ ପରାସ୍ତ ହୋଇଅଛି ସତ୍ୟ, କିନ୍ତୁ ତାହାର ଆଧ୍ୟାତ୍ମିକ ଶକ୍ତି ଧୀରେ ଧୀରେ ବିଜେତାଙ୍କ ଉପରେ ପ୍ରତିଷ୍ଠା ଲାଭ କରୁଅଛି ।

ଯାହା ହେଉ, ଶାରୀରିକ ଓ ଆଧ୍ୟାତ୍ମିକ ଶକ୍ତିଦ୍ୱୟର ଏହି ପ୍ରଭେଦଟିର ଅପପ୍ରୟୋଗ ଶାରୀରିକ ଶକ୍ତିରେ ବଳୀୟାନ୍ ପୁରୁଷ ରମଣୀକୁ ନିପୀଡ଼ିତ କରିଅଛି ଓ ତାହାକୁ ତାହାର ପ୍ରକୃତିଦତ୍ତ ଅଧିକାରଗୁଡ଼ିକରୁ ବଞ୍ଚିତ କରିଅଛି । କିନ୍ତୁ ଏହାର ଫଳ କଣ ଘଟିଅଛି ? ଫଳ ଘଟିଅଛି, "ଭାରତପାତଃ ।" ଇତିହାସ—ଭାରତ-ଇତିହାସ—ସାକ୍ଷ୍ୟ ଦେଉଅଛି ଯେ ରମଣୀକୁ ସ୍ୱାଧିକାରରୁ ବିଚ୍ୟୁତ କରିବାରୁ ପୁରୁଷ ପକ୍ଷରେ ଲାଭ ହୋଇ ଅଛି, "ପରଂ ଗୋବଧଃ ।" ଆମ୍ଭେମାନେ ଏ କଥା କହୁ ନାହୁଁ ଯେ ପୁରୁଷ ଯେତେବେଳେ ରମଣୀର ଅଧିକାରଗୁଡ଼ିକ ଗୋଟି ଗୋଟି କରି ଧୀରେ ଧୀରେ ହରଣ କରୁଥିଲେ, ସେତେବେଳେ ସେ ରମଣୀଜାତି ପ୍ରତି ଆକ୍ରୋଶବଶତଃ ସ୍ୱୀୟ ହିଂସାବୃତ୍ତିର ଚରିତାର୍ଥତା ପାଇଁ ଏପରି କରିଅଛନ୍ତି । ବରଂ ଏହାହିଁ ଠିକ ବୋଲି ମନେ ହୁଏ ଯେ ସ୍ତ୍ରୀଜାତିକୁ ଏହି ସକଳ ଅଧିକାରରୁ ବଞ୍ଚିତ କଲେ ସମାଜର ମଙ୍ଗଳ ହେବ, ଏହିପରି ଭାବି ତାହା କରିଅଛନ୍ତି । ରମଣୀ ମଧ୍ୟ ଯେ ନିର୍ବିବାଦରେ ସ୍ୱୀୟ ଅଧିକାରଗୁଡ଼ିକ ଛାଡ଼ି ଦେଇ ଥିଲେ, ତାହା ମନେ ହୁଏ ନାହିଁ । ତେବେ ପୁରୁଷ ଶକ୍ତିରେ ବଳବତ୍ତର ବୋଲି ସଂଗ୍ରାମରେ ହାରି ଯାଇ ପୁରୁଷ ଯାହା ଭଲ ବୁଝିଅଛି, ତାହା ବିକୃତ ହେଲେହେଁ ଅଦୃଷ୍ଟର ଉପରେ ପ୍ରକୃତ ବୋଲି ଗ୍ରହଣ କରି ସ୍ୱୀୟ ଅବସ୍ଥାରେ ସନ୍ତୁଷ୍ଟ ହେବାକୁ ବାଧ୍ୟ ହୋଇଥିଲେ । ଶେଷରେ ବିକୃତିହିଁ ପ୍ରକୃତି ହୋଇଗଲା । କିନ୍ତୁ ଅଧିକାରଗୁଡ଼ିକ ପ୍ରକୃତିପ୍ରଦତ୍ତ, ସେଥିରୁ ରମଣୀକୁ ବଞ୍ଚିତ କଲେ ପ୍ରକୃତି ତାହାର ପ୍ରତିଶୋଧ ଗ୍ରହଣ କରିବ ନାହିଁ କି ? ତୁଳା-ଯନ୍ତ୍ରର ଗୋଟିଏ ପାଖରୁ ଯଦି କିଛି ଭାର କମାଇ ଦିଅ, ତେବେ ଯନ୍ତ୍ରର ସମତା ରକ୍ଷା ପାଇଁ ଅପର ପାଖରୁ ମଧ୍ୟ ଠିକ ସେହି ପରିମାଣରେ ଭାର କମ କରିବାକୁ ପଡ଼ିବ । ସମାଜ-ଯନ୍ତ୍ର ସମ୍ବନ୍ଧରେ ମଧ୍ୟ ଠିକ ସେହି କଥା । ସମାଜ-ପକ୍ଷର ଏକ ପୃଷ୍ଠ ଯଦି କେତେକ ପରିମାଣରେ କାଟିବାକୁ ଯାଅ, ତେବେ ଦେଖିବ ଯେ ଅପର ପୃଷ୍ଠ ମଧ୍ୟ କାଟି ହୋଇ ଯାଉଅଛି । ପୁରୁଷ ରମଣୀ-ପୃଷ୍ଠକୁ ଖଣ୍ଡିତ କରି ମନେ କରିଥିଲା ଯେ ଏଥିରେ ତାହାର ପୂର୍ଣ୍ଣ ସ୍ୱାତନ୍ତ୍ର୍ୟ ବର୍ଦ୍ଧିତ ହେବ, କିନ୍ତୁ "ଉଲଟ ବୁଝିଲୁ ରାମା ।"* ଚୁମ୍ବକ-ଦଣ୍ଡର ( Magnetic bar ) ଠିକ ମଧ୍ୟସ୍ଥଳରେ କେନ୍ଦ୍ର ଏବଂ ଦୁଇଟି ମେରୁ—ଉତ୍ତର ଓ ଦକ୍ଷିଣ—ତାହାଠାରୁ ସମଦୂରବର୍ତ୍ତୀ । ଶତ ଚେଷ୍ଟାରେ ମଧ୍ୟ ମେରୁଦ୍ୱୟ କେନ୍ଦ୍ରଠାରୁ ଆପଣାର ସମଦୂରବର୍ତ୍ତିତ୍ୱ ପରିହାର କରି ପାରନ୍ତି ନାହିଁ । ଏହା ପ୍ରକୃତିର ନିୟମ, ଏହାକୁ ପରିହାର କରିବା ଅସମ୍ଭବ । ଦକ୍ଷିଣ ମେରୁର କିୟଦଂଶ କାଟି ପକାଇଲେ ଦେଖାଯିବ ଯେ କେନ୍ଦ୍ର ଉତ୍ତରମେରୁ ଆଡ଼କୁ କେତେକ ଦୂର ଘୁଞ୍ଚି ଯାଇ ମେରୁଦ୍ୱୟର ସମଦୂରତ୍ୱ ରକ୍ଷା କରିବ । ସମାଜରେ ମଧ୍ୟ ସେହିପରି ଦେଖାଯାଏ । ଯେଉଁଠାରେ ପୁରୁଷ ରମଣୀକୁ ହୀନ କରିଅଛନ୍ତି, ସେଠାରେ ସେ ନିଜେ ମଧ୍ୟ

* ଏକଦା ଜଣେ ସନ୍ନ୍ୟାସୀ ବୃକ୍ଷ ତଳେ ବସି ପ୍ରାର୍ଥନା କରୁଥିଲେ, "ଘୋଡ଼ା ଚଢ଼ା ଦେ ରେ ରାମା ।" ଏହି ସମୟରେ ଜଣେ ପୁଲିସ କର୍ମଚାରୀ ଗୋଟିଏ ଗର୍ଭିଣୀ ଘୋଟକୀ ପୃଷ୍ଠରେ ସେ ସ୍ଥାନରେ ଆସି ଉପସ୍ଥିତ ହେଲେ । ଘୋଟକୀଟି ଅନତିବିଲମ୍ବରେ ସନ୍ତାନ ପ୍ରସବ କଲା । ପୁଲିସ କର୍ମଚାରୀ ବଡ଼ ଆବଶ୍ୟକ କାର୍ଯ୍ୟରେ ଯାଉଅଛନ୍ତି, ସେ ଅପେକ୍ଷା କରି ନ ପାରନ୍ତି । ଅଥଚ ଅଶ୍ୱ-ଶାବକର ମାୟା ମଧ୍ୟ ପରିତ୍ୟାଗ କରିବାକୁ ଅକ୍ଷମ । ସେଥିପାଇଁ ନିକଟବର୍ତ୍ତୀ ବଳିଷ୍ଠ ସନ୍ନ୍ୟାସୀର ସ୍କନ୍ଧଦେଶରେ ଘୋଟକଶାବକକୁ ଚଢ଼ାଇ ଦେଇ ସଙ୍ଗରେ ଘେନି ବାହାରିଲେ । ରାମୋପାସକ ସନ୍ନ୍ୟାସୀ ଅଶ୍ୱଶାବକକୁ ପୃଷ୍ଠରେ ଘେନି ପୁଲିସ କର୍ମଚାରୀର ପଛରେ ଦୌଡ଼ୁ ଦୌଡ଼ୁ ପୂର୍ବ ବୋଲି ବଦଳାଇ କହିବାକୁ ଲାଗିଲେ, "ଉଲଟ ବୁଝିଲୁ ରେ ରାମା ।"

ସ୍ୱାଧୀନତା ପ୍ରାପ୍ତ ହୋଇଅଛନ୍ତି । ଆମ୍ଭେମାନେ ଭାରତ-ନାରୀର ଦୃଷ୍ଟାନ୍ତଦ୍ୱାରା ଏହି ବିଷୟଟି ବହୁପରିମାଣରେ ପ୍ରତିପନ୍ନ କରିବାକୁ ଚେଷ୍ଟା କରିବୁଁ । ଆମ୍ଭେମାନେ ଦେଖାଇବାକୁ ଚେଷ୍ଟା କରିବୁଁ, ରମଣୀକୁ ସ୍ୱାଧିକାର-ବଞ୍ଚିତ କରି ସମାଜ ଉପ୍ଳୃନକ କ୍ଷତିଗ୍ରସ୍ତ ହୋଇଅଛି । ବର୍ତ୍ତମାନ ଦେଖାଯାଉ, ନାରୀଜାତି ଏ ଦେଶରେ କି କି ଅଧିକାରରୁ ବଞ୍ଚିତ ହୋଇ ଅଛନ୍ତି ।

ଆମ୍ଭେମାନେ ସର୍ବପ୍ରଥମେ ସ୍ତ୍ରୀସ୍ୱାଧୀନତା ବା ଅନବରୋଧ ବିଷୟ ଆଲୋଚନା କରିବୁଁ । କାରଣ, ଏହି ସ୍ୱାଧୀନତା ହରାଇ ଭାରତ-ନାରୀସମାଜ ଅନେକଗୁଡ଼ିଏ ଅଧିକାର ହରାଇଅଛନ୍ତି । ଏ କଥା ଠିକ ଯେ ପ୍ରକୃତିନିର୍ଦ୍ଦିଷ୍ଟ ନିୟମାନୁସାରେ ସ୍ତ୍ରୀଜାତିଙ୍କୁ ଅଧିକାଂଶ ସମୟ ଗୃହରେ ଅବଦ୍ଧ ରହିବାକୁ ହୁଏ । ପାରିବାରିକ ଶ୍ରମବିଭାଗରେ ରନ୍ଧନ ଓ ଶିଶୁସନ୍ତାନର ରକ୍ଷଣାବେକ୍ଷଣ ପ୍ରଭୃତି ଗୃହକାର୍ଯ୍ୟ ରମଣୀଙ୍କୁ କରିବାକୁ ହୁଏ ଏବଂ ଅର୍ଥୋପାର୍ଜନ ଓ ପରିବାରସମ୍ବନ୍ଧୀୟ ଅନ୍ୟାନ୍ୟ ବାହାରର କାର୍ଯ୍ୟ ପୁରୁଷଙ୍କୁ କରିବାକୁ ହୁଏ । କିନ୍ତୁ ଗୃହରେ ମଧ୍ୟ ଏପରି ଅନେକ କାର୍ଯ୍ୟ ଅଛି, ଯାହା ସ୍ତ୍ରୀ ପୁରୁଷ ଉଭୟଙ୍କୁ କରିବାକୁ ହୁଏ ଏବଂ ବାହାରେ ମଧ୍ୟ ଏପରି ଅନେକ କାର୍ଯ୍ୟ ଅଛି, ଯାହା ସ୍ତ୍ରୀ ପୁରୁଷ ଉଭୟଙ୍କର ସମବେତ ଚେଷ୍ଟା ବ୍ୟତୀତ ସୁସମ୍ପନ୍ନ ହୋଇ ପାରେ ନାହିଁ । ଗୃହ ରମଣୀର ପ୍ରଧାନ କାର୍ଯ୍ୟକ୍ଷେତ୍ର ବୋଲି ତାହାଙ୍କୁ ଗୃହ ମଧ୍ୟରେ ଅବଦ୍ଧ କଲେ କିରାଣୀ ବାବୁଙ୍କୁ ମଧ୍ୟ ଦପ୍ତରଖାନାର ଚତୁଃସୀମା ମଧ୍ୟରେ ଅବଦ୍ଧ କରିବା ଉଚିତ । ଏ କଥା ଠିକ, ଅନେକ ରମଣୀ ଏପରି ଅଛନ୍ତି ଯେ ଗୃହକାର୍ଯ୍ୟ ସମ୍ପାଦନ କରି ଅନ୍ୟ କୌଣସି କାର୍ଯ୍ୟ କରିବାର ଶକ୍ତି ଓ ସମୟ ସେମାନଙ୍କର ନ ଥାଏ ଅଥବା କଲେ ଗୃହକାର୍ଯ୍ୟର ଅଙ୍ଗହାନି ହୁଏ । କିନ୍ତୁ ଜିଜ୍ଞାସ୍ୟ ଏହି, ଏପରି କିରାଣୀ ବା ଓକିଲ ବାବୁ କି ନାହାନ୍ତି ଯାହାଙ୍କର ଅର୍ଥ ଉପାର୍ଜନର ଅତିରିକ୍ତ କିଛି କରିବାର ଶକ୍ତି ବା ସମୟ ନାହିଁ ? ସେଥିପାଇଁ କଣ ପୁରୁଷ-ଜାତିକୁ ଅର୍ଥୋପାର୍ଜନ ବ୍ୟତୀତ ଆଉ ସକଳ କାର୍ଯ୍ୟରୁ ବରଖାସ୍ତ କରିବାକୁ ହେବ ? ସ୍ତ୍ରୀଜାତି ବେଳକୁ କିନ୍ତୁ ତାହା ହିଁ ହୋଇଅଛି । ଗୃହ ପ୍ରଧାନ କାର୍ଯ୍ୟକ୍ଷେତ୍ର ବୋଲି ଏକ ମାତ୍ର ଗୃହକୁ ତାହାର କାର୍ଯ୍ୟକ୍ଷେତ୍ରରୂପେ ନିର୍ଦ୍ଦେଶ କରା ହୋଇଅଛି । ଯାହା ଅଂଶରେ ଥିଲା, ତାହାକୁ ସମଗ୍ରରେ ପରିବ୍ୟାପ୍ତ କରି ଦିଆ ହୋଇଅଛି । ଫଳ କିନ୍ତୁ ଭଲ ହୋଇ ନାହିଁ । ଗୋଟିଏ ଦୃଷ୍ଟାନ୍ତ ଗ୍ରହଣ କରା ଯାଉ । ସଭା ସମିତିରେ ରମଣୀ-ନେତ୍ରୀର ସହାୟତା ଲାଭ କଲେ ପୁରୁଷର ବିଗ୍ରହର ଯେ, ଅତ୍ୟନ୍ତ ସୁବିଧା ହୁଅନ୍ତା, ସେଥିରେ କୌଣସି ସନ୍ଦେହ ନାହିଁ । ପୁରୁଷ ପୁରୁଷଭାବରେ ନେତା କରେ, ରମଣୀ ଯଦି ତାହାର ନେତା ଯେଉଁ ପୁରୁଷର ସଙ୍ଗରେ ଯୁକ୍ତ ହୁଅନ୍ତା, ତେବେ ଯେ ମଣିକାଞ୍ଚନ ସଂଯୋଗ ହୁଅନ୍ତା, ସେଥିରେ ସନ୍ଦେହ ନାହିଁ । ବିଗ୍ରହରେ ଯୋଗ ନ ଦେଲେହେଁ କେବଳ ରମଣୀର ଉପସ୍ଥିତ ପୁରୁଷଙ୍କୁ ସଂଯତ କରେ । ରମଣୀକୁ ବର୍ଜନ କରି ପୁରୁଷ ଏହି ସୁଯୋଗ ହରାଇ ଅଛନ୍ତି । ପ୍ରାଚୀନ ଭାରତରେ କିନ୍ତୁ ଅନ୍ୟ ପ୍ରକାର ବ୍ୟବସ୍ଥା ଥିଲା । ସେଠାରେ ପୁରୁଷ ରମଣୀକୁ ଅନ୍ତଃପୁର-କାରାଗାରରେ ଅବରୁଦ୍ଧ କରି ଆପଣାକୁ ବିକଳାଙ୍ଗ କରି ପକାଇ ନ ଥିଲେ । ଆମ୍ଭେମାନେ ପ୍ରାଚୀନ ଭାରତର ଦୁଇ ଜଣ ମନସ୍ୱିନୀ ରମଣୀଙ୍କର ଚରିତ୍ର ଏଠାରେ ଆଲୋଚନା କରିବୁଁ । ସେମାନଙ୍କର ଚରିତ୍ର ଅନୁଶୀଳନ କଲେ ପ୍ରତିପନ୍ନ ହେବ ଯେ ସେ ସମୟରେ ଭାରତରେ କେବେହେଁ ଅବରୋଧ ପ୍ରଥା ନ ଥିଲା । ରମଣୀ ପୁରୁଷର ସହଧର୍ମିଣୀ ଓ ପ୍ରତିଦ୍ୱନ୍ଦ୍ୱୀ ଥିଲେ । ସେମାନଙ୍କର ଚରିତ୍ର ଯେଉଁ ଧାତୁରେ ନିର୍ମିତ, ତାହା ପୂର୍ଣ୍ଣ ସ୍ୱାଧୀନତାର ଗଣ୍ଡି ବ୍ୟତୀତ ଆଉ କୌଣସି ସ୍ଥାନରୁ ସଂଗୃହୀତ ହୋଇ ନ ପାରେ । ଏମାନଙ୍କ ମଧ୍ୟରୁ ପ୍ରଥମଟି ଗାର୍ଗୀ, ଦ୍ୱିତୀୟଟି ଦ୍ରୌପଦୀ । ତନ୍ତ୍ରୁ ଲ ସିଦ୍ଧ ହୋଇଅଛି କି ନାହିଁ, ଏହା ଜାଣିବା ପାଇଁ ଯେପରି ସମସ୍ତ ଅନ୍ନ

ଚିପିବାକୁ ହୁଏ ନାହିଁ, ଗୋଟିଏ ବା ଦୁଇଟି ଦେଖିଲେ ଯଥେଷ୍ଟ ହୁଏ, ଆମ୍ଭେମାନେ ମଧ୍ୟ ସେହିପରି ଏହି ଦୁଇଟି ନାରୀଚରିତ୍ର ପରୀକ୍ଷା କରି ସ୍ତ୍ରୀଜାତିର ଅଧିକାର ଓ ଭାରତସମାଜର ତଦାନୀନ୍ତନ ଅବସ୍ଥା ଅବଗତ ହେବାକୁ ଚେଷ୍ଟା କରିବୁଁ । ଉପନିଷଦ୍‌ପାଠକଙ୍କ ନିକଟରେ ଗାର୍ଗୀଙ୍କ ନାମ ସୁପରିଚିତ ଏବଂ ଆମ୍ଭେମାନେ ଯେଉଁ ଘଟଣା ପ୍ରସଙ୍ଗରେ ତାଙ୍କର ନାମ ଉଲ୍ଲେଖ କରିବାକୁ ଯାଉଅଛୁଁ, ତାହା ମଧ୍ୟ ଉପନିଷଦର ଗୋଟିଏ ପ୍ରସିଦ୍ଧ ଘଟଣା । ରାଜର୍ଷି ଜନକ ବୋଧ ହୁଏ ଚିକାଗୋ ( Chicago ) ମହାମେଳାର ଆଦର୍ଶରେ ସ୍ୱୀୟ ରାଜଧାନୀ ମିଥିଳା ନଗରୀରେ ଗୋଟିଏ ମହାଯଜ୍ଞର ଅନୁଷ୍ଠାନ କରିଥିଲେ । ଯଜ୍ଞର ଏକ ଅଂଶରେ ବ୍ରହ୍ମବାଦିମାନଙ୍କର ସମ୍ମିଳନ । ଭାରତର ବ୍ରହ୍ମବାଦୀ ପଣ୍ଡିତମଣ୍ଡଳୀ ଉପସ୍ଥିତ । ରାଜର୍ଷି ସେଠାରେ ସୁବର୍ଣ୍ଣମଣ୍ଡିତ-ଶୃଙ୍ଗ ସହସ୍ର ଧେନୁ ଉପସ୍ଥିତ କରି ପଣ୍ଡିତଗଣଙ୍କୁ ତର୍କ-ଯୁଦ୍ଧରେ ପ୍ରବୃତ୍ତ କରିବା ପାଇଁ କହିଲେ, "ଯେ ଆପଣମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ବ୍ରହ୍ମଜ୍ଞ, ସେ ଏହି ସହସ୍ର ଧେନୁ ଗ୍ରହଣ କରନ୍ତୁ ।" ସଭାରେ ମହର୍ଷି ଯାଜ୍ଞବଲ୍କ୍ୟ ଉପସ୍ଥିତ ଥିଲେ । ବୋଧ ହୁଏ ଧେନୁଗୁଡ଼ିକ ଦେଖି ତାଙ୍କର ରସନା ସିକ୍ତ ହୋଇଥିଲା । ସେଥିପାଇଁ ଜନକଙ୍କ ଅପୂର୍ବ ଆହ୍ୱାନକୌଶଳରେ ପଣ୍ଡିତବର୍ଗ ଯେତେବେଳେ ନିସ୍ତବ୍ଧ, ସେତେବେଳେ ଯାଜ୍ଞବଲ୍କ୍ୟ ଉଠି ତାଙ୍କ ଶିଷ୍ୟବୃନ୍ଦଙ୍କୁ କହିଲେ "ଧେନୁସମୂହ ମୋହର ଆଶ୍ରମକୁ ଘେନି ଯାଅ ।" * ସେତେବେଳେ ଚାରି ଆଡ଼ରୁ ଅସ୍ଫୁଟସ୍ୱରରେ ପ୍ରତିବାଦ ଧ୍ୱନି ଉତ୍ଥିତ ହେଲା । ଯାଜ୍ଞବଲ୍କ୍ୟ ସ୍ୱୀୟ ଦୋଷ ପ୍ରକ୍ଷାଳନ କରିବା ପାଇଁ କହିଲେ, "ବ୍ରହ୍ମବିଦ୍‌ଗଣଙ୍କ ଚରଣରେ ନମସ୍କାର, ମୁଁ ଧେନୁ ଅତ୍ୟନ୍ତ ଭଲ ପାଏ, ସେଥିପାଇଁ ଗ୍ରହଣ କରିଅଛି, ବ୍ରହ୍ମବିଦ୍ ବୋଲି ନୁହେଁ ।' କିନ୍ତୁ ତାହା କିଏ ଶୁଣେ? ତାଙ୍କର ବ୍ରହ୍ମବିଦ୍ୟା ପରୀକ୍ଷା କରିବା ପାଇଁ ପ୍ରଶ୍ନ-ଶର ସକଳ ନିକ୍ଷିପ୍ତ ହେବାକୁ ଲାଗିଲା । କିନ୍ତୁ ଯେତେବେଳେ କୌଣସି ପଣ୍ଡିତ ଯାଜ୍ଞବଲ୍କ୍ୟଙ୍କୁ ପରାସ୍ତ କରି ପାରିଲେ ନାହିଁ, ସେତେବେଳେ ଗାର୍ଗୀ ପଣ୍ଡିତମଣ୍ଡଳୀଙ୍କୁ ସମ୍ବୋଧନ କରି କହିଲେ, " ଆପଣମାନେ ନିବୃତ୍ତ ହୁଅନ୍ତୁ, ମୁଁ ଯାଜ୍ଞବଲ୍କ୍ୟଙ୍କୁ ଦୁଇଟି ପ୍ରଶ୍ନ କରୁଅଛି, ସେ ଯଦି ଏହାର ଉତ୍ତର ଦେଇ ପାରିବେ, ତାହା ହେଲେ ଆପଣମାନେ ପରାଜିତ ହେଲେ ବୋଲି ସ୍ୱୀକାର କରିବେ ।" ଗାର୍ଗୀଙ୍କ ବାକ୍ୟରେ ପଣ୍ଡିତବର୍ଗ ଆଉ ଦ୍ୱିରୁକ୍ତି ନ କରି ନୀରବ ହେଲେ । ଏହି ଘଟଣାଦ୍ୱାରା ପ୍ରାଚୀନ ଆର୍ଯ୍ୟସମାଜରେ ନାରୀଜାତିର ଅଧିକାର ଓ ତାହାର ପ୍ରତିଭାର ବିକାଶ ଅତି ଉଜ୍ଜ୍ୱଳଭାବରେ ପ୍ରକଟିତ ହୋଇଅଛି । ଜାତୀୟ ମହାସମିତିର (National Congress) ଷଷ୍ଠ ଅଧିବେଶନରେ ଜଣେ ମହିଳା ସଭାପତିଙ୍କୁ ଧନ୍ୟବାଦ ଦେଇଥିଲେ—ତାହା ଘେନି କେତେ ପ୍ରତିବାଦ ହେଲା ! ଆଉ ଏହି ଧର୍ମ-ମହାସମିତିରେ ରମଣୀ ସଭାପତିର ଆସନ ପ୍ରାପ୍ତ ହେଲେ । ଚିକାଗୋ ( Chicago ) ଧର୍ମସଭାର ସଭାପତିତ୍ୱ ଯଦି କୌଣସି ରମଣୀ ଦାବି କରିଥାନ୍ତେ, ତେବେ ଇୟୁରୋପ କଥା ଦୂରେ ଥାଉ, ସ୍ୱାଧୀନତାର ଲୀଳାଭୂମି ସୁସଭ୍ୟ ଆମେରିକା ମଧ୍ୟ ରମଣୀର ଏହି ଧୃଷ୍ଟତା ମାର୍ଜନା କରିଥାନ୍ତେ କି ନାହିଁ ସନ୍ଦେହ । ପାଶ୍ଚାତ୍ୟ ଜଗତ ଏ ପର୍ଯ୍ୟନ୍ତ ଏତେ ଉନ୍ନତ ହୋଇ ନାହିଁ ଯେ ଧର୍ମସମ୍ବନ୍ଧୀୟ ବିଚାରର ନିଷ୍ପତ୍ତି ପାଇଁ କୌଣସି ରମଣୀର ମଧ୍ୟସ୍ଥତା ସ୍ୱୀକାର କରି ପାରିବ । ଜଗତରେ ଅନ୍ୟ କୌଣସିଠାରେ ଯାହା ଏ ପର୍ଯ୍ୟନ୍ତ ହୋଇ ନାହିଁ, ଭାରତରେ ତାହା ହୋଇଥିଲା । ମାତ୍ର ଜଗତ ଯେଉଁ ଅନ୍ଧକାରରୁ ଉଠିଅଛି, ଭାରତ ସେହି ଅନ୍ଧକାରରେ ପଡ଼ିଲା ! "କାଳସ୍ୟ କୁଟିଳା ଗତିଃ ।"

* ବୋଧ ହୁଏ ଜନକ ଓ ଯାଜ୍ଞବଲ୍କ୍ୟ ବିଷୟଟି ପୂର୍ବରୁ ଏହିପରି ଠିକ କରି ରଖିଥିଲେ, ନହୁବା ମହର୍ଷି ଯାଜ୍ଞବଲ୍କ୍ୟ ଏପରି କାର୍ଯ୍ୟ କଲେ କାହିଁକି ?

ଆଉ ଗୋଟିଏ କାର୍ଯ୍ୟବତୀ ରମଣୀ ଦ୍ରୌପଦୀ । ପାଞ୍ଚାଳଦେଶ ମହାସ୍ୱୟମ୍ବରସଭା କମ୍ପିତ ହୋଇଅଛି । ଭାରତର ସମଗ୍ର ଯୋଦ୍ଧା ଓ ରାଜନ୍ୟମଣ୍ଡଳୀଦ୍ୱାରା ସଭାସ୍ଥଳ ବିମଣ୍ଡିତ । ଯେ ଲକ୍ଷ୍ୟଭେଦ କରିବେ, ସେ ଦ୍ରୌପଦୀଙ୍କୁ ଲାଭ କରିବେ, ଏହାହିଁ ଦ୍ରୁପଦଙ୍କ ପଣ । ପ୍ରଧାନ ରାଜାଗଣ ଲକ୍ଷ୍ୟଭେଦରେ ବିଫଳକାମ ହେବାରୁ ଶେଷରେ ଦ୍ରୁପଦ ଓ ଧୃଷ୍ଟଦ୍ୟୁମ୍ନଙ୍କ ଆହ୍ୱାନରେ ମହାବୀର କର୍ଣ୍ଣ ଉତ୍ଥିତ ହେଲେ । ଦ୍ରୌପଦୀ କହିଲେ, "ମୁଁ ସୂତପୁତ୍ରକୁ ବିବାହ କରିବି ନାହିଁ ।" ପିତା ଓ ପିତୃତୁଲ୍ୟ ଭ୍ରାତାଙ୍କର ଅପେକ୍ଷା ରଖିଲେ ନାହିଁ । ଏହି ଗୋଟିଏ କଥାଦ୍ୱାରା ଯେ ଚରିତ୍ର ଅଙ୍କିତ ହେଲା, ତାହା ଶତ ପୃଷ୍ଠାରେ ମଧ୍ୟ ବର୍ଣ୍ଣିତ ହେବା ଅସମ୍ଭବ । ସ୍ୱୀୟ ଅଧିକାରର ଜ୍ଞାନ ସୁସ୍ପଷ୍ଟ ନ ଥିଲେ ଏବଂ ଶୈଶବରୁ ସେରୂପ ଶିକ୍ଷା ନ ପାଇଲେ ଏପ୍ରକାର ଅସୀମ ସାହସର କାର୍ଯ୍ୟ ଏକାବେଳକେ ଅସମ୍ଭବ । ଯେଉଁ ମହାସଭାରେ ଦଣ୍ଡାୟମାନ ହୋଇ ପଦେ କଥା କହିବାକୁ ଅତି ବଡ଼ ବାଗ୍ମୀଙ୍କର ମଧ୍ୟ ହୃଦୟ କମ୍ପିତ ହେବାର କଥା, ରମଣୀ ସ୍ୱୀୟ ଅଧିକାର ରକ୍ଷା କରିବା ପାଇଁ ତାହାକୁ ମଧ୍ୟ ଗ୍ରାହ୍ୟ କଲେ ନାହିଁ । ଏହି ସାହସ କେବଳ ସ୍ୱାଧୀନତାର ଜଳବାୟୁରେ ବର୍ଦ୍ଧିତ ହୋଇ ପାରେ । ଯେଉଁ ଦୁର୍ଜ୍ଜୟ ସାହସ ବଳେ ହସ୍ତିନାପୁରର ମହାସଭାରେ—ଯେଉଁ ସଭାରେ ଦ୍ୟୂତକ୍ରୀଡ଼ାରେ ପାଣ୍ଡବ ପରାଜିତ, ଧର୍ମାର୍ଜ୍ଜୁନ କିଂକର୍ତ୍ତବ୍ୟବିମୂଢ଼, ଭୀଷ୍ମ ଦ୍ରୋଣ ନୀରବ ନିସ୍ତବ୍ଧ—ସେହି ସଭାରେ ନିର୍ଭୟରେ ସ୍ୱୀୟ ଅଧିକାର ରକ୍ଷା ପାଇଁ ଯତ୍ନବତୀ ହୋଇ ଭୀଷ୍ମ ଦ୍ରୋଣ ପ୍ରଭୃତି ନୀତିବିଶାରଦ ପଣ୍ଡିତଗଣଙ୍କୁ ବାକ୍ୟ-ଜାଲଦ୍ୱାରା ଅଭିଭୂତ କରିଥିଲା, ଆମ୍ଭେମାନେ ସେହି ସାହସର ବିକାଶ ଏହିଠାରେ ଦେଖିଅଛୁଁ । ପିତୃଗୃହରେ ସ୍ୱାଧୀନତାର ଉନ୍ମୁକ୍ତ ବାୟୁରେ ଏହି ସାହସ ଅର୍ଜ୍ଜିତ କରିଥିଲେ ବୋଲି ଘୋର ଅରଣ୍ୟରେ ମଧ୍ୟ ଏକାକିନୀ ମହାଯୋଦ୍ଧା ଜୟଦ୍ରଥକର୍ତ୍ତୃକ ଆକ୍ରାନ୍ତ ହୋଇ ସିଂହୀପରି ତାଙ୍କୁ ଆକ୍ରମଣ କଲେ ଏବଂ ପଦାଘାତରେ ତାହାଙ୍କୁ ରଥରୁ ଭୂପାତିତ କରି ଦେଲେ । ହାୟ ! ଯେଉଁ ଦେଶର ରମଣୀକାର୍ଯ୍ୟ, ରମଣୀପ୍ରତିଭା ଏତେ ଦୂର ବିକାଶ ପ୍ରାପ୍ତ ହୋଇଥିଲା, ସେହି ଦେଶର ରମଣୀଜାତି ଶୃଙ୍ଖଳିତ ହୋଇ ପିଞ୍ଜରାବଦ୍ଧ ହେଲେ କାହିଁକି, ଏ ରହସ୍ୟ କିଏ ଉଦ୍ଭେଦ କରିବ ? ରହସ୍ୟ କେହି ଉଦ୍ଭେଦ କରନ୍ତୁ ବା ନ କରନ୍ତୁ ରମଣୀକୁ ପିଞ୍ଜରାବଦ୍ଧ କରି ପୁରୁଷ ଯେ ବିଶେଷ କ୍ଷତିଗ୍ରସ୍ତ ହୋଇଅଛନ୍ତି, ତାହା ଆମ୍ଭେମାନେ ମୁକ୍ତକଣ୍ଠରେ କହି ପାରୁଁ । କୌଣସି ଉଚ୍ଚ କାର୍ଯ୍ୟରେ ରମଣୀର ଯୋଗ ନାହିଁ, ଗୃହର ଦୁଇ [illegible] କାର୍ଯ୍ୟ ବ୍ୟତୀତ ଅଉ କୌଣସି କାର୍ଯ୍ୟରେ ଆମ୍ଭେମାନେ ରମଣୀଙ୍କୁ ଦେଖୁ ନାହୁଁ, ସେଥିପାଇଁ ନାରୀଜାତି ସମ୍ବନ୍ଧରେ ଆମ୍ଭମାନଙ୍କ ହୃଦୟର ଭାବ ଅତ୍ୟନ୍ତ ସଙ୍କୀର୍ଣ୍ଣ ହୋଇ ପଡ଼ିଅଛି । ବାହାରର କୌଣସି ସତ୍କାର୍ଯ୍ୟରେ ମଧ୍ୟ ରମଣୀର ଯୋଗ ଦେଖିଲେ ଆମ୍ଭେମାନେ ଆମ୍ଭମାନଙ୍କ ହୃଦୟର କଳୁଷିତ ଭାବ ଗୋପନ କରି ରଖି ପାରୁ ନାହିଁ । ପୁରୁଷର ହୃଦୟ ଏ ବିଷୟରେ କେତେ ଅଧୋଗତି ପ୍ରାପ୍ତ ହୋଇଅଛି, ସେ ବିଷୟରେ ଗୋଟିଏ ପ୍ରତ୍ୟକ୍ଷ ଘଟଣାର ଉଲ୍ଲେଖ (ନ କରି ରହି ପାରୁଁ ନାହିଁ) କରି ଯାଉଅଛୁ । ଏପରି ଘଟଣା ବିରଳ ନୁହେଁ, ଅନେକେ ଏହା ପ୍ରତ୍ୟକ୍ଷ କରିଥିବେ ।

କିଛି ଦିନ ପୂର୍ବରେ କଲିକତାର ବାହାରରେ କୌଣସି ସ୍ଥାନରେ ବ୍ରହ୍ମୋତ୍ସବରେ ଯୋଗ ଦେବା ପାଇଁ ଯାଇଥିଲୁଁ । ଉପାସନା ସମୟରେ ହଠାତ୍ ଗୋଳମାଳ ଉପସ୍ଥିତ ହେଲା । ପୁରାଣରେ ଶୁଣାଯାଏ ଋଷିମାନଙ୍କ ଯଜ୍ଞରେ ବିଘ୍ନ ଉତ୍ପାଦନ କରିବା ପାଇଁ ରାକ୍ଷସଗଣ ଯଜ୍ଞ ସ୍ଥଳରେ ଉପସ୍ଥିତ ହୋଇ ନାନାପ୍ରକାର ଉତ୍ପାତ କରୁଥିଲେ । ଯଜ୍ଞରକ୍ଷା ପାଇଁ ଶ୍ରୀରାମ, ହନୁମାନ ପ୍ରଭୃତି ମହାବୀର-

ମାନଙ୍କ ସହାନୁଭୂତିର ପ୍ରୟୋଜନ ହୋଇଥିଲା । ଚାରିଶତ ବର୍ଷ ପୂର୍ବରେ ଚୈତନ୍ୟ ଦେବଙ୍କୁ ମଧ୍ୟ ସଙ୍କୀର୍ତ୍ତନ-ଯଜ୍ଞ ରକ୍ଷା ନିମନ୍ତେ ନବାବଙ୍କର ସହାନୁଭୂତି ଗ୍ରହଣ କରିବାକୁ ପଡ଼ିଥିଲା । ବର୍ତ୍ତମାନ ସମୟରେ ମଧ୍ୟ ଦେଖାଯାଏ, ବ୍ରହ୍ମୋପାସନା-ଯଜ୍ଞର ବିଘ୍ନୋତ୍ପାଦନ କରିବା ପାଇଁ ରକ୍ଷକଗଣ ସ୍ୱତଃ ଅଗ୍ରେ ଚାଲୁଅଛନ୍ତି । ରକ୍ଷକଗଣଙ୍କ ଅନ୍ତର ବଦଳ ଥିଲେହେଁ ପ୍ରକୃତ ବଦଳ ଅଛି ବୋଲି କହାଯାଇ ନ ପାରେ । ଉକ୍ତ ଉତ୍ସବରେ ମଧ୍ୟ ସେହିପରି ରକ୍ଷକଗଣଙ୍କ ଆବିର୍ଭାବ ହୋଇଥିଲା ଏବଂ ଉପାସନାରେ ବିଘ୍ନ ଜନ୍ମାଇବା ପାଇଁ ସେମାନେ ସ୍ଥିର ଅଗ୍ରେ ଲୋଷ୍ଟ୍ର ନିକ୍ଷେପ କରୁଥିଲେ । ଆମ୍ଭେମାନେ ପାର୍ଶ୍ୱସ୍ଥିତ ବନ୍ଧୁଙ୍କୁ ପଚାରିଲୁଁ, 'କାହିଁକି ଏପରି ହେଉଅଛି ?' ସେ କହିଲେ, 'ଆଉ କାହିଁକି ? ରମଣୀଗଣ ଯେ ଏଥର ଉତ୍ସବରେ ଯୋଗ ଦେଇ ଅଛନ୍ତି ?' ସେ ଆହୁରି ମଧ୍ୟ କହିଲେ ଯେ ରମଣୀଗଣ ଯେତେବେଳେ ରୋଗିମାନଙ୍କୁ ମିଷ୍ଟାନ୍ନ ଓ ଫଳ ମୂଳ ବିତରଣ କରିବାକୁ ଯାଇଥିଲେ, ସେତେବେଳେ ମଧ୍ୟ ସେମାନଙ୍କ ଗାଡ଼ିରେ ଲୋଷ୍ଟ୍ର ପଡ଼ିଥିଲା । ଶୁଣି ଲଜ୍ଜା, କ୍ଷୋଭ ଓ ଘୃଣାରେ ମନ ଅତ୍ୟନ୍ତ ଉତ୍ତେଜିତ ହୋଇ ଉଠିଲା । ଭାବିଲୁଁ, କି ଘୋର ଅଧଃପତନ ଘଟିଅଛି ! ଯେଉଁମାନଙ୍କର ଯତ୍ନ କରିବାର କେହି ନାହିଁ, କୋମଳ ବ୍ୟବହାର ଯେଉଁମାନେ କେବେହେଁ ପାନ୍ତି ନାହିଁ, ଜନନୀ ପରି କୋମଳ ବ୍ୟବହାରଦ୍ୱାରା ରୋଗ-ଯନ୍ତ୍ରଣାରେ ନିପୀଡ଼ିତ ଏହି ହତଭାଗ୍ୟ ଲୋକମାନଙ୍କର ହୃଦୟର ବ୍ୟଥା କ୍ଷଣକାଳପାଇଁ ମଧ୍ୟ ଯେଉଁମାନେ ଉପଶମ କରିବାକୁ ଚେଷ୍ଟା କଲେ, ସେମାନଙ୍କର ପୁରସ୍କାର କଣ ହେଲା ? ଏହି ଲାଞ୍ଛନା ! ଏମାନଙ୍କ ହୃଦୟ ଏପରି ବିକୃତ ହୋଇ ଯାଇ ଅଛି ଯେ ସ୍ତ୍ରୀଲୋକଙ୍କ କର୍ତ୍ତୃକ ସମ୍ପାଦିତ ହୋଇ ଅଛି ବୋଲି ଏମାନେ ଏପରି ସତ୍କାର୍ଯ୍ୟଟି ପ୍ରତି ମଧ୍ୟ ସହାନୁଭୂତି ପ୍ରଦର୍ଶନ କରି ପାରିଲେ ନାହିଁ ।

ପୁରୁଷ ରମଣୀଙ୍କୁ ସ୍ୱାଧୀନତାବଞ୍ଚିତ କରି ଯେ ରମଣୀର କେବଳ ଅନିଷ୍ଟ କରିଅଛନ୍ତି ତାହା ନୁହେଁ, ନିଜେ ମଧ୍ୟ ନାରୀଜାତି ସମ୍ବନ୍ଧରେ ସମ୍ପୂର୍ଣ୍ଣରୂପେ ମନୁଷ୍ୟତ୍ୱହୀନ ହୋଇ ପଡ଼ିଅଛନ୍ତି । ରମଣୀର କୌଣସି କାର୍ଯ୍ୟ ପ୍ରତି ଆଉ ସୁଦୃଷ୍ଟି ନିକ୍ଷେପ କରି ପାରୁ ନାହାନ୍ତି । ଏହାହିଁ ପାପର ପ୍ରାୟଶ୍ଚିତ୍ତ ।

ଦ୍ୱିତୀୟ କଥା ଶିକ୍ଷା—ଏ କଥା ସମସ୍ତେ ସ୍ୱୀକାର କରିବେ ଯେ ଯେଉଁ ବ୍ୟାବହାରିକ ଶିକ୍ଷାରେ ଅର୍ଥୋପାର୍ଜନ ବା ଅନ୍ୟାନ୍ୟ ଶାରୀରିକ ପ୍ରୟୋଜନ ସାଧିତ ହୁଏ, ସେଥିରେ ସ୍ତ୍ରୀ ପୁରୁଷର ବିଭିନ୍ନତା ଥିବ, ଏହା ନିଶ୍ଚିତ । ଆମ୍ଭେମାନେ ଇତପୂର୍ବେ ଯେଉଁ ପାରିବାରିକ ଶ୍ରମବିଭାଗର କଥା କହିଅଛୁଁ, ସେଥିରେ ଏ ପ୍ରକାର ବିଭିନ୍ନତା ଅନିବାର୍ଯ୍ୟ । ପୁରୁଷ ରନ୍ଧନ ଶିକ୍ଷା କରିବେ ନାହିଁ କିମ୍ବା ରମଣୀ କରଣୀଗିରି ଅଭ୍ୟାସ କରିବେ ନାହିଁ । ଏହାହିଁ ସାଧାରଣ ଓ ସ୍ୱାଭାବିକ ନିୟମ । କିନ୍ତୁ ଶିକ୍ଷା କହିଲେ ଯେ କେବଳମାତ୍ର ବ୍ୟାବହାରିକ ଶିକ୍ଷା ବୁଝିବାକୁ ହେବ, ତାହାର କୌଣସି ଅର୍ଥ ନାହିଁ । ସୁତରାଂ ନାରୀଜାତିର ଉଚ୍ଚ ଶିକ୍ଷା ସମର୍ଥନ ପାଇଁ ଉଦ୍ଧୃତ 'କନ୍ୟାପ୍ୟେବଂ ପାଳନୀୟା ଶିକ୍ଷଣୀୟା ଚ ଯତ୍ନତଃ' ଏହି ଶ୍ଲୋକାର୍ଦ୍ଧ ବ୍ୟାବହାରିକ ଶିକ୍ଷା ପକ୍ଷରେ ବ୍ୟାଖ୍ୟା କରି ଯେଉଁମାନେ ମନେ କରନ୍ତି ଗଡ଼ ଜିତିଲୁଁ, ସେମାନଙ୍କ ସଙ୍ଗରେ ଆମ୍ଭମାନଙ୍କର କୌଣସି ସହାନୁଭୂତି ନାହିଁ । ଯେଉଁ ଶିକ୍ଷାରେ ହୃଦୟମନର ଉନ୍ନତି ଓ ବିସ୍ତାର ସାଧିତ ହୁଏ, ସେ ଶିକ୍ଷାରେ ପୁରୁଷନାରୀନିର୍ବିଶେଷରେ ସକଳ ମନୁଷ୍ୟର ଅଧିକାର । ତାହା ସଙ୍କୋଚ କରିବାର କାହାରି ଅଧିକାର ନାହିଁ । ପୁରୁଷ ସ୍ୱୀୟ ପୁରୁଷତ୍ୱ ରକ୍ଷା ପାଇଁ ସଂଗ୍ରାମ କରି ପାରନ୍ତି, ନାରୀ ନିଜ ନାରୀତ୍ୱର ସୀମା ରକ୍ଷା କରିବା ପାଇଁ ଯତ୍ନ-ବତୀ ହୋଇ ପାରନ୍ତି, କିନ୍ତୁ ମନୁଷ୍ୟତ୍ୱ ଉଭୟଙ୍କର ସାଧାରଣ ସମ୍ପତ୍ତି । ଏହା ଉପରେ ହସ୍ତକ୍ଷେପ

କରିବାର ତାହାର ଅଧିକାର ନାହିଁ । ମନୁଷ୍ୟତ୍ୱ ଲାଭ କରିବାରେ ସମସ୍ତଙ୍କର ସମାନ ଅଧିକାର ଅଛି । ଯାହା ମନୁଷ୍ୟତ୍ୱ ଲାଭର ଅନ୍ତରାୟ, ତାହା ସମାଜ ପକ୍ଷରେ ସର୍ବାଗ୍ରେ ବର୍ଜନୀୟ । ଦର୍ଶନ, ବିଜ୍ଞାନ, କାବ୍ୟ, ସାହିତ୍ୟ ପ୍ରଭୃତିର ଆଲୋଚନାରେ ଯେଉଁ ବିମଳାନନ୍ଦ ମିଳେ, ସେଥିରେ ଆତ୍ମାର ଯେଉଁ ବିକାଶ ଓ ଉନ୍ନତି ସାଧିତ ହୁଏ, ତାହାର ଅଧିକାରୀ କେବଳ ପୁରୁଷ, ରମଣୀ ନୁହେ, ଏ ବ୍ୟବସ୍ଥା ପରି ପକ୍ଷପାତଦୁଷ୍ଟ ବ୍ୟବସ୍ଥା ଆଉ କିଛି ହୋଇ ପାରେ କି ନାହିଁ ସନ୍ଦେହ । ଯଦି ଶ୍ରମବିଭାଗ ନ ଥାଏ, ଯଦି ପରସ୍ପର ପରସ୍ପରଙ୍କ କାର୍ଯ୍ୟରେ ହସ୍ତକ୍ଷେପ କରନ୍ତି, ତେବେ କେବେହେଁ ଦେହ-ଯନ୍ତ୍ରର କାର୍ଯ୍ୟ ଚଳି ପାରିବ ନାହିଁ । କିନ୍ତୁ ଯଦି ଏପରି ବ୍ୟବସ୍ଥା କରାଯାଏ ଯେ ଉପଭୋକ୍ତା ଉଦର ସାର ଭାଗ କେବଳ ନିଜର ପୁଷ୍ଟି ସାଧନରେ ବ୍ୟୟ କରିବ, ତାହା ହେଲେ ଶରୀର କେବେହେଁ ସୁସ୍ଥ ଓ ସବଳ ରହି ପାରିବ ନାହିଁ । ଶରୀରର ଅନିଷ୍ଟ ନ କରି କେବେହେଁ ଏପରି ବ୍ୟବସ୍ଥା କରାଯାଇ ନ ପାରେ । ସମାଜସ୍ଥିତି ପାଇଁ ସମାଜର କାର୍ଯ୍ୟଗୁଡିକ ସ୍ତ୍ରୀ ପୁରୁଷ ଉଭୟେ ଭାଗ କରି ନେବେ, ଅଥଚ ସମାଜର ଉନ୍ନତିର ସାର ଭାଗ କେବଳ ପୁରୁଷ ଉପଭୋଗ କରିବେ, ଏହା ଅପେକ୍ଷା କୁବ୍ୟବସ୍ଥା ଆଉ କଣ ହୋଇ ପାରେ ? ପ୍ରାଚୀନ ଭାରତର ଇତିହାସ କିନ୍ତୁ ଅନ୍ୟରୂପ । ଦର୍ଶନ, ବିଜ୍ଞାନ, କାବ୍ୟ, ସାହିତ୍ୟ ଓ ଗଣିତରେ ଅନେକ ରମଣୀ ବିଶେଷ ପ୍ରସିଦ୍ଧି ଲାଭ କରି ଥିଲେ । ଖନା, ଲୀଳାବତୀ, କର୍ଣ୍ଣାଟରାଜପତ୍ନୀ, କାଳିଦାସଙ୍କ ସ୍ତ୍ରୀ ପ୍ରଭୃତି ରମଣୀଙ୍କ ନାମ ପ୍ରବାଦ ବାକ୍ୟ ପରି ପ୍ରଚଳିତ ହୋଇ ଯାଇଅଛି । କେହି କହି ପାରନ୍ତି ଯେ ଏ ତ ଦୁଇ ଚାରିଗୋଟି ନାମ ମାତ୍ର । ଏହା ତ ସମୁଦ୍ରରେ ଶିଶିରବିନ୍ଦୁ । ଆମ୍ଭମାନଙ୍କର ମନେ ହୁଏ ବିନ୍ଦୁହିଁ ସିନ୍ଧୁର ପରିମାପକ । ଯେ ଶିକ୍ଷା ଲାଭ କରିବେ ସେହି ଯେ ପ୍ରସିଦ୍ଧି ଲାଭ କରିବେ, ଏପରି ଆଶା କରାଯାଇ ନ ପାରେ । ଯେ ବିଜ୍ଞାନ ଚର୍ଚ୍ଚା କରିବେ, ସେହି ଯେ ଜଗଦୀଶଚନ୍ଦ୍ର ବସୁ ହେବେ, ଏପରି ଆଶା କରିବା ବୃଥା । ସହସ୍ର ଜଣଙ୍କ ମଧ୍ୟରୁ ଏକ ଜଣଙ୍କର ନାମ ଭବିଷ୍ୟଦ-ବଂଶଧରମାନଙ୍କ ନିକଟକୁ ଯାଏ କି ନାହିଁ ସନ୍ଦେହ । ବର୍ତ୍ତମାନ କୌଣସି କୌଣସି ସମ୍ପ୍ରଦାୟରେ ସ୍ତ୍ରୀଶିକ୍ଷା ବିସ୍ତାରିତ ହୋଇଅଛି । ଯେଉଁମାନେ ଶିକ୍ଷା ଲାଭ କରୁଅଛନ୍ତି, ସେପରି କେତେ ଜଣଙ୍କ ନାମ ଆମ୍ଭେମାନେ ଶୁଣୁ ? ଆଉ ସେମାନଙ୍କ ମଧ୍ୟରୁ କେତେ ଜଣଙ୍କ ନାମ ବା ସୁଦୂର ଭବିଷ୍ୟଦ୍‌ବଂଶୀୟମାନଙ୍କ ସ୍ମୃତିକୋଠରେ ନିବଦ୍ଧ ରହିବ ? ସେଥିପାଇଁ କହୁଅଛୁଁ ଯେ ବିନ୍ଦୁହିଁ ସିନ୍ଧୁର ପରିମାପକ । ନାରୀଶିକ୍ଷା ବିଶେଷ ଭାବରେ ପ୍ରଚଳିତ ନ ଥିଲେ ଏହି କେତୋଟି ରମଣୀଙ୍କ ନାମ ଆମ୍ଭେମାନେ ଆଜି ଉଲ୍ଲେଖ କରି ପାରନ୍ତୁ ନାହିଁ । ମହାକବି ଭବଭୂତି ଯେ ଗୋଟିଏ ନାରୀଚିତ୍ର ଅଙ୍କିତ କରିଅଛନ୍ତି, ତାହା ଦେଖି ପ୍ରାଚୀନ ଭାରତର ସ୍ତ୍ରୀଶିକ୍ଷାର ପ୍ରସାର ଭାବିଲେ ମନ ଅତ୍ୟନ୍ତ ପୁଲକିତ ହୁଏ । ସେଟି ଏହି:—ମହର୍ଷି ବାଲ୍ମୀକିଙ୍କ ଆଶ୍ରମରେ ଲବ କୁଶ ବିଦ୍ୟାର୍ଥୀ ହୋଇ ପ୍ରବେଶ କରିଅଛନ୍ତି, ମହର୍ଷି ଏହି ଦୁଇ ଜଣଙ୍କୁ ନେଇ କିଛି ବ୍ୟସ୍ତ ହୋଇ ପଡିଅଛନ୍ତି । ବୋଧ ହୁଏ ଅନ୍ୟ ଛାତ୍ରଛାତ୍ରୀମାନଙ୍କ ପ୍ରତି ଅମନୋଯୋଗୀ ହୋଇଅଛନ୍ତି । ସେଥିପାଇଁ ଆର୍ଯ୍ୟା ଆତ୍ରେୟୀ ନିବିଡ଼ ଅରଣ୍ୟାନୀ ଭେଦପୂର୍ବକ ଅନ୍ୟ ଗୋଟିଏ ଆଶ୍ରମକୁ ଯାଉଅଛନ୍ତି । ଆମ୍ଭେମାନେ ୟୁରୋପର କୌଣସି ଅନୁରାଗୀ ଛାତ୍ର ସମ୍ବନ୍ଧରେ ଏହା କଳ୍ପନା କରି ପାରୁଁ ଯେ ଲଣ୍ଡନରେ ଭଲ ଶିକ୍ଷା ହୁଏ ନାହିଁ ବୋଲି ସେ ପ୍ୟାରିସ୍ ବା ବର୍ଲିନକୁ ଯାଉଅଛନ୍ତି । ଯଦି କେହି ରେଲପଥ ପ୍ରସ୍ତୁତ ହେବା ପୂର୍ବେ ଏପରି କରି ଥାଆନ୍ତେ, ତେବେ ନିଶ୍ଚୟ ତାଙ୍କ ଅଧ୍ୟବସାୟର ପ୍ରଶଂସା ନ କରି କେହି ରହି ପାରନ୍ତେ ନାହିଁ । କିନ୍ତୁ ଏହି ରମଣୀର ଅଧ୍ୟବସାୟ କି ଏହା

ଅପେକ୍ଷା ସହସ୍ର ଗୁଣରେ ଅଧିକ ପ୍ରଶଂସନୀୟ ନୁହେଁ ? ବିଦ୍ୟା ପ୍ରତି କିରୂପ ଅନୁରାଗ ଜନ୍ମିଲେ ଏବଂ ତଦ୍ଭାବରେ କିରୂପ ଐକାନ୍ତିକ ନିଷ୍ଠା ଥିଲେ ଏପରି ଅଧ୍ୟବସାୟ ସମ୍ଭବେ ? ବ୍ୟକ୍ତି-ବିଶେଷଙ୍କର ଏପରି ଅନୁରାଗ ଓ ନିଷ୍ଠା ସମାଜର ପ୍ରତିବିମ୍ବ ମାତ୍ର । ସମାଜରେ ଯଦି ନାରୀଶିକ୍ଷା ପ୍ରଚଳିତ ନ ଥାନ୍ତା, ତେବେ ନାରୀ-ବିଶେଷର ଏପରି ଅନୁରାଗ ସମ୍ଭବ ହୋଇ ନ ଥାନ୍ତା । ନାରୀର ଉଚ୍ଚ ଶିକ୍ଷା ପ୍ରଚଳିତ ଥିଲା ବୋଲି ମହାକବି ଭବଭୂତି ଏହି ଚିତ୍ର ଅଙ୍କିତ କରିବାକୁ ସକ୍ଷମ ହୋଇଅଛନ୍ତି । ଶିକ୍ଷା ପ୍ରତି ରମଣୀର ଏହି ଅନୁରାଗ କି ସୁନ୍ଦର କି ମନୋରମ ? ପ୍ରସଙ୍ଗକ୍ରମେ ଏଠାରେ ଗୋଟିଏ କଥା ବୋଲି ଯାଇ ପାରେ । ପ୍ରେସିଡେନ୍ସି କଲେଜରେ ଗୋଟିଏ ରମଣୀର ପ୍ରବେଶାଧିକାର ଲାଭରେ ଘୋର କଳିର ଆଗମନ ଭାବି ଯେଉଁ-ମାନେ ଘୋର ଅନ୍ଧକାର ଦେଖୁଥିଲେ, ସେମାନେ ମହର୍ଷି ବାଲ୍ମୀକିଙ୍କ ତପୋବନ ଆଡ଼କୁ ଥରେ ଦୃଷ୍ଟିପାତ କରନ୍ତୁ, ତାହା ହେଲେ ଅନ୍ଧକାର ଦୂର ହେବ, ସେମାନେ ଦିବ୍ୟ ଦୃଷ୍ଟି ଲାଭ କରିବେ । ସେମାନେ ଦେଖିବେ ଯେ ପୁରୁଷ ରମଣୀର ଏକତ୍ର ବିଦ୍ୟାଭ୍ୟାସ ତପୋବନରେ ପ୍ରବର୍ତ୍ତିତ ହୋଇଥିଲା, ବିପ୍ଳବରୁ ଅମଙ୍ଗଳ ହୋଇ ନାହିଁ । ଯାହା ହେଉ, ଏ ଚିତ୍ର ଦେଶରୁ ବିଲୁପ୍ତ ହୋଇଅଛି ! ଯେଉଁ ଦେଶର ରମଣୀ ଶିକ୍ଷା ପ୍ରତି ଏତେ ଦୂର ଅନୁରାଗ ଓ ଦୃଢ଼ତା ପ୍ରଦର୍ଶନ କରିଅଛନ୍ତି, ଯେଉଁ ଦେଶର ରମଣୀଶିକ୍ଷା ଖନା, ଲୀଳାବତୀ ପ୍ରସବ କରିଥିଲା, ସେହି ଦେଶର ରମଣୀ ଶିକ୍ଷାଧିକାରରୁ ବଞ୍ଚିତା, ଏହା ଅପେକ୍ଷା ଶୋଚନୀୟ ବ୍ୟାପାର ଆଉ କଣ ହୋଇ ପାରେ ? ଫଳ ଆଶାତିରିକ୍ତ ଶୋଚନୀୟ ହୋଇଅଛି । ଯାଜ୍ଞବଲ୍କ୍ୟ ଓ ଅଙ୍ଗିରା ଯେଉଁ ଦେଶର ମନ୍ତ୍ରଦ୍ରଷ୍ଟା ଋଷି, ଉପନିଷଦ୍ ଓ ଭଗବଦ୍‌ଗୀତା ଯେଉଁ ଦେଶର ଧର୍ମଶାସ୍ତ୍ର, ବ୍ୟାସ ଓ ବାଲ୍ମୀକି ଯେଉଁ ଦେଶର କବିଗୁରୁ, ସାଂଖ୍ୟ ଓ ବେଦାନ୍ତ ଯେଉଁ ଦେଶର ଦର୍ଶନ, ଗୌତମ ଓ କଣାଦ ଯେଉଁ ଦେଶର ମନୀଷୀ, ରାମାୟଣ ଓ ମହାଭାରତର ଗୌରବରେ ଯେଉଁ ଦେଶ ଗୌରବାନ୍ୱିତ, ସାୟନ ଓ ଭାସ୍କରଙ୍କ ଭାଷ୍ୟର ଦୀପ୍ତିରେ ଯେଉଁ ଦେଶ ଦୀପ୍ତିମାନ୍, ପାଣିନି ଓ ଅମରଙ୍କ ଅମର କୀର୍ତ୍ତି ଯେଉଁ ଦେଶର ଅତୁଳନୀୟ ସମ୍ପତ୍ତି, ଶଙ୍କର ଓ ରାମାନୁଜ ଯେଉଁ ଦେଶର ଆଚାର୍ଯ୍ୟ, ସେ ଦେଶ ଯେ ସକଳ ଗୌରବରୁ ଭ୍ରଷ୍ଟ ହୋଇ ବିଦ୍ୟା ବୁଦ୍ଧିରେ ସଭ୍ୟତାର ଅତି ନିମ୍ନ ସ୍ତରରେ ଅବସ୍ଥାନ କରୁଅଛି, ତାହାର କି କୌଣସି କାରଣ ନାହିଁ ? ଅବଶ୍ୟ ଅଛି । ସେ କାରଣ ପ୍ରକୃତିର ପ୍ରତିଶୋଧ । ରମଣୀଜାତିକୁ ଶିକ୍ଷାହୀନ କରିବାହିଁ ଏହାର କାରଣ । ମନୁଷ୍ୟର ସର୍ବପ୍ରଥମ ଶିକ୍ଷା କେଉଁଠାରେ ଆରମ୍ଭ ହୁଏ ? ରମଣୀର ପଦତଳେ—ମାତୃ-ଚରଣ ପ୍ରାନ୍ତରେ । ମାତା ସୁଶିକ୍ଷିତା ନ ହେଲେ ସନ୍ତାନର ସର୍ବାଙ୍ଗୀନ ଶିକ୍ଷା ଆଶା କରି ଯାଇ ନ ପାରେ । ସେଥିପାଇଁ ପ୍ରାଚୀନ କବିଗଣ ଶିକ୍ଷାର ଅଧିଷ୍ଠାତ୍ରୀ ଦେବତାଙ୍କୁ ପୁରୁଷ ରୂପରେ କଳ୍ପନା ନ କରି ନାରୀ ରୂପରେ—ମିନର୍ଭା ଓ ସରସ୍ୱତୀ ରୂପରେ କଳ୍ପନା କରିଅଛନ୍ତି । ଶିକ୍ଷାରେ ଯେତେବେଳେ ରମଣୀର ଏତେ ପ୍ରଭାବ, ସେତେ-ବେଳେ ରମଣୀକୁ ଶିକ୍ଷାବିହୀନ କରି କେଉଁ ଜାତି ଉନ୍ନତି ଲାଭ କରିବାକୁ ସମର୍ଥ ହୋଇ ପାରେ ? ସେଥିପାଇଁ ରମଣୀକୁ ଶିକ୍ଷାବିହୀନ କରି ପୁରୁଷ ସ୍ୱୀୟ ପଦରେ କୁଠାରଘାତ କରିଅଛି । ତାହାର ନିଜର ଶିକ୍ଷା ମଧ୍ୟ କ୍ଷତିଗ୍ରସ୍ତ ହୋଇଅଛି । ମୂଳ କାଟି ଅଗରେ ଜଳ ସେଚନ କଲେ କଣ ହେବ ? ସେଥିପାଇଁ ସମସ୍ତ ଚେଷ୍ଟା ବ୍ୟର୍ଥ ହୋଇ ଯାଉଅଛି । ନାରୀଶିକ୍ଷାର ଅଭାବରେ ସମାଜ ବିକଳାଙ୍ଗ ହୋଇ ପଡ଼ିଅଛି । ନାରୀର ସହାୟତା ବ୍ୟତୀତ ପୁରୁଷ କି କେବେହେଁ ସଂସାର-ସଂଗ୍ରାମରେ ଜୟୀ ହୋଇ ପାରେ ? ମନୁଷ୍ୟ

ଗୋଟାଏ ଗୋଡ଼ରେ ଅଧିକ କ୍ଷଣ ଦଣ୍ଡାୟମାନ ରହି ପାରେ ନାହିଁ । ସେଥିପାଇଁ ନାରୀ-ପଦହୀନ ଭାରତସମାଜ ଦଣ୍ଡାୟମାନ ରହିବାକୁ ଅକ୍ଷମ ହୋଇ ଭୂପତିତ ହୋଇଅଛି । ଏ ତ ଗଲା ଅପରା ବିଦ୍ୟା ସମ୍ବନ୍ଧରେ, ବର୍ତ୍ତମାନ ପରାବିଦ୍ୟା ସମ୍ବନ୍ଧରେ ଆଲୋଚନା କରା ଯାଉ ।

ପରାବିଦ୍ୟା ବିଷୟରେ ପ୍ରାଚୀନ ଭାରତରମଣୀର ସ୍ଥାନ କେତେ ଊର୍ଦ୍ଧ୍ୱରେ ଥିଲା, ତାହା ଆମ୍ଭେମାନେ ଗାର୍ଗୀ—ଯାଜ୍ଞବଲ୍କ୍ୟ ସମ୍ବାଦରେ ଇତି ପୂର୍ବେ ପ୍ରଦର୍ଶନ କରିଅଛୁଁ । ସେ ବିଷୟର ପୁନରୁଲ୍ଲେଖ ନିଷ୍ପ୍ରୟୋଜନ । ଆମ୍ଭେମାନେ ଆଉ ଦୁଇ ଗୋଟି ରମଣୀଙ୍କ କଥା କହିବୁଁ । ଯାଜ୍ଞବଲ୍କ୍ୟ ପ୍ରବ୍ରଜ୍ୟା ଅବଲମ୍ବନ କରିବେ । ପତ୍ନୀ ମୈତ୍ରେୟୀଙ୍କୁ ସ୍ୱୀୟ ସମ୍ପତ୍ତିର ଏକାଂଶ ପ୍ରଦାନ କଲେ । ମୈତ୍ରେୟୀ ପାର୍ଥିବ ସମ୍ପତ୍ତି ଲାଭ କରିବା ପାଇଁ ଲାଳାୟିତା ନ ଥିଲେ । ସ୍ୱାମୀ ଯେଉଁ ଧନ ଲାଭ କରି କୃତାର୍ଥ ହୋଇଅଛନ୍ତି, ସେ ସେହି ଧନର ପ୍ରତ୍ୟାଶିନୀ ଥିଲେ । ସେଥିପାଇଁ ସେ ସ୍ୱାମୀଙ୍କୁ କହିଲେ—ଏହି ପାର୍ଥିବ ବିଷୟ କି ମୋତେ ଅମର କରି ପାରିବ ? ଯାଜ୍ଞବଲ୍କ୍ୟ କହିଲେ—ନା । ସେତେବେଳେ ମୈତ୍ରେୟୀ ଯାହା କହିଥିଲେ, ତାହା ପ୍ରତ୍ୟେକ ଧର୍ମପିପାସୁ ବ୍ୟକ୍ତିଙ୍କର ହୃଦୟରେ ଗ୍ରଥିତ କରି ରଖିବା କର୍ତ୍ତବ୍ୟ—“ ଯେନାହଂ ନାମୃତା ସ୍ୟାଂ କିମହଂ ତେନ କୁର୍ଯ୍ୟାଂ । ” ତହିଁ ଉତ୍ତାରୁ ଯାଜ୍ଞବଲ୍କ୍ୟ ମୈତ୍ରେୟୀଙ୍କୁ ବ୍ରହ୍ମତତ୍ତ୍ୱବିଷୟକ ଗମ୍ଭୀର ଉପଦେଶ ସକଳ ପ୍ରଦାନ କଲେ ଏବଂ ମୈତ୍ରେୟୀ ତାହା ଲାଭ କରି କୃତାର୍ଥ ହେଲେ । ଏହି ଉପଦେଶଗୁଡ଼ିକ ଉପନିଷଦର ଅତି ଉତ୍କୃଷ୍ଟ ଅଂଶ ।

ଆଉ ଗୋଟିଏ କଥା ଅପେକ୍ଷାକୃତ ଆଧୁନିକ ସମୟର । ଆଚାର୍ଯ୍ୟ ଶଙ୍କର ଦିଗ୍ବିଜୟ କରିବାକୁ ବାହାରିଅଛନ୍ତି । ପଣ୍ଡିତଗଣ ଗୋଟି ଗୋଟି ହୋଇ ପରାସ୍ତ ହୋଇ ପୃଷ୍ଠଭଙ୍ଗ ଦେଉଅଛନ୍ତି । ଏପରି ସମୟରେ ପଣ୍ଡିତବର ମଣ୍ଡନ ମିଶ୍ର ଶଙ୍କରଙ୍କର ପଥ ଅବରୋଧ କଲେ । ଉଭୟେ ବିଚାର-ଯୁଦ୍ଧରେ ପ୍ରବୃତ୍ତ ହେଲେ, କିନ୍ତୁ ମଧ୍ୟସ୍ଥ ହେବେ କିଏ? ମଣ୍ଡନ ମିଶ୍ରଙ୍କ ସ୍ତ୍ରୀ ଉଭୟ ଭାରତୀ ମଧ୍ୟସ୍ଥତାର ଭାର ଗ୍ରହଣ କଲେ । ଭାରତର ଇତିହାସରେ ଏକ ମହାବିପ୍ଳବର ସମୟ—ଶାସ୍ତ୍ର-ପ୍ରତିଷ୍ଠିତ ଓ ଶାସ୍ତ୍ରନିର୍ଦ୍ଦିଷ୍ଟ ବିଚାର, ଏକ ପକ୍ଷରେ ମହା ଦିଗ୍ବିଜୟୀ ପଣ୍ଡିତ ଶଙ୍କର, କିନ୍ତୁ ବିଚାରପତି ଜଣେ ରମଣୀ । ଏ ଦୃଶ୍ୟ ଊନବିଂଶ ଶତାବ୍ଦୀର ସଭ୍ୟତା ଦେଖାଇ ପାରେ ନାହିଁ, ବିଂଶଶତାବ୍ଦୀ ପାରିବ କି ? ରମଣୀ ଜାତି ପ୍ରତି ଏହି ଶ୍ରଦ୍ଧା ଓ ବିଶ୍ୱାସ ପ୍ରାଚୀନ ଭାରତର ଗୌରବ । ଏହି ଶ୍ରଦ୍ଧା ଓ ବିଶ୍ୱାସ ଭାରତରମଣୀ ସ୍ୱୀୟ ପ୍ରତିଭା ବଳରେ ଅର୍ଜ୍ଜନ କରିଥିଲେ—ଅବଳା ବୋଲି ଦୟା କରି ପୁରୁଷ ପ୍ରଦାନ କରି ନ ଥିଲେ । କିନ୍ତୁ ଯେଉଁ ଦେଶରେ ପରା ବିଦ୍ୟା ସମ୍ବନ୍ଧରେ ରମଣୀର ଅଧିକାର ଏତେ ଦୂର ପର୍ଯ୍ୟନ୍ତ ବିସ୍ତୃତ ଓ ସ୍ୱୀକୃତ ହୋଇଥିଲା, ସେହି ଦେଶ ପରବର୍ତ୍ତୀ ସମୟରେ ରମଣୀଙ୍କୁ ପରା ବିଦ୍ୟାରୁ ସମ୍ପୂର୍ଣ୍ଣରୂପେ ବଞ୍ଚିତ କଲା । ଯେଉଁ ଦେଶରେ ଶ୍ରୁତିର ଶିରୋଭୂଷଣ ଉପନିଷଦର ଅନେକ ଉତ୍କୃଷ୍ଟ ଉତ୍କୃଷ୍ଟ ଅଂଶ ନାରୀରଚିତ ଓ ନାରୀର ସାହଚର୍ଯ୍ୟରେ ଗଠିତ, ସେହି ଦେଶରେ ଘୋଷିତ ହେଲା, ଶ୍ରୁତିରେ ନାରୀର ଅଧିକାର ନାହିଁ । ଅଧଃପତନ ଆଉ କାହାକୁ କହନ୍ତି ? ଯେଉଁ ଦିନ “ ସ୍ତ୍ରୀଶୂଦ୍ରଦ୍ୱିଜବନ୍ଧୂନାଂ ତ୍ରୟୀ ନ ଶ୍ରୁତି ଗୋଚରା ” ଘୋଷିତ ହେଲା, ସେହି ଦିନ ଭାରତୀୟ ସାମାଜିକ ଜୀବନ ଓ ଧର୍ମଜୀବନରେ ଗୋଟିଏ ମହା ଅନର୍ଥର ସୂତ୍ରପାତ ହେଲା । ଶ୍ରୁତିରେ ନାରୀ ଜାତିର ଯେ କେବଳ ସ୍ୱାଭାବିକ ଅଧିକାର, ତାହା ନୁହେଁ, ସେଥିରେ ସେମାନଙ୍କର ସ୍ୱୋପାର୍ଜ୍ଜିତ ଅଧିକାର । ସେଥିରୁ ସେମାନଙ୍କୁ ବଞ୍ଚିତ କରିବାର ଅଧିକାର କାହାର ନ ଥିଲା । ଏହା ଯେ କରା ହୋଇଅଛି, ତାହା କେବଳ “ଜୋର ଯାର ମୁଲ୍ଲକ ତାର” ଏହି ନୀତି ଅନୁସାରେ । ତାହାର ପ୍ରତି-ଫଳ ଯେତେ ଦୂର ଶୋଚନୀୟ ହେବାର ହୋଇ

ଅଛି । ବୌଦ୍ଧ ଧର୍ମ ସ୍ୱଦେଶରୁ ନିର୍ବାସିତ ହୋଇ ଅଛି । ଯେଉଁ ଧର୍ମ ଗୃହ ପରିବାରରେ ପ୍ରତିଷ୍ଠିତ ନୁହେ, ତାହାର ସ୍ଥାୟିତ୍ୱର ସମ୍ଭାବନା ଅତି ଅଳ୍ପ । ରମଣୀ-ନିଷ୍ଠାରୁ ବଞ୍ଚିତ ହୋଇ ବ୍ରହ୍ମଜ୍ଞାନ ମଧ୍ୟ ଏ ଦେଶରୁ ସମୂଳରେ ବିନଷ୍ଟ ହେବାର ଉପକ୍ରମ ହୋଇଥିଲା । ସନ୍ନ୍ୟାସିମାନେ ତ ସଂସାରରେ ପ୍ରବାସୀ । ସେମାନଙ୍କ ମଧ୍ୟରେ ଯେ ଧର୍ମ, ତାହା ତ ସଂସାର-ଜଳଧିରେ ଭାସମାନ ମୃଣାଳଭ୍ରଷ୍ଟ ପଦ୍ମ, ଗୋଟିଏ ତରଙ୍ଗରେ ଆସିଅଛି, ଅନ୍ୟ ଗୋଟିଏ ତରଙ୍ଗରେ କେଉଁ ଆଡ଼େ ଭାସି ଯିବ । ସେଥିପାଇଁ ବ୍ରହ୍ମଜ୍ଞାନ ଏ ଦେଶର ସାମାଜିକ ଜୀବନକୁ ପ୍ରଭାବିତ କରି ପାରି ନାହିଁ । ରମଣୀ-ନିଷ୍ଠାରୂପ ମୂଳରୁ ବିଚ୍ୟୁତ ହୋଇ ବ୍ରହ୍ମଜ୍ଞାନ-ବୃକ୍ଷ ଏକ ପ୍ରକାର ମୃତପ୍ରାୟ ହୋଇ ପଡ଼ିଥିଲା । ଯେଉଁଠାରେ ବା ନାମତଃ ଥିଲା, ସେଠାରେ ମଧ୍ୟ ଅତି ବିକୃତ ଆକାର ପ୍ରାପ୍ତ ହୋଇଥିଲା । ରମଣୀକୁ ତାହାର ଅଧିକାରରୁ ବିଚ୍ୟୁତ କରିବାର ଫଳ ହାତେ ହାତେ ଫଳିଲା । ରମଣୀ-ନିଷ୍ଠାର ପ୍ରଭାବ ଆମ୍ଭେ-ମାନେ ବର୍ତ୍ତମାନ ସମୟରେ ବିଶେଷ ଭାବରେ ଉପଲବ୍ଧି କରୁଅଛୁଁ । ଏହି ଯେ ଦେଶରେ ବର୍ତ୍ତମାନ ମହାଧର୍ମବିପ୍ଳବସ୍ରୋତ ପ୍ରବାହିତ, ଏଥିରେ ପ୍ରାଚୀନ ଧର୍ମର ଆଶାସ୍ଥଳ କେଉଁଠାରେ ? ଏହା ରମଣୀର ନିଷ୍ଠା । ଏହି ନିଷ୍ଠାରୁ ବିଚ୍ୟୁତ ହେଲେ ପ୍ରାଚୀନ ଧର୍ମ ବନକରେ ଭୂମିସାତ୍ ହୋଇ ଯିବ । ଇଂଲଣ୍ଡର ରାଜନୀତିଜ୍ଞ ପଣ୍ଡିତଗଣ ଏ କଥାଟା ଉତ୍ତମରୂପେ ବୁଝି-ଅଛନ୍ତି । ସେଥିପାଇଁ ରକ୍ଷଣଶୀଳଗଣ ନାରୀଜାତିକୁ ନିର୍ବାଚନାଧିକାର ଦେବା ପାଇଁ ବ୍ୟସ୍ତ ହୋଇଅଛନ୍ତି । ସେମାନେ ବୁଝିଅଛନ୍ତି, ନାରୀ-ଜାତିର ନିଷ୍ଠା ଦୃଢ଼ । ନାରୀଜାତି ଯାହା ଥରେ ଧରନ୍ତି, ତାହା ସହଜରେ ଛାଡ଼ନ୍ତି ନାହିଁ । ସେ ସ୍ୱଭାବତଃ ରକ୍ଷଣଶୀଳା । ସୁତରାଂ ନାରୀଜାତିକୁ ନିର୍ବାଚନାଧିକାର ଦେଲେ ରକ୍ଷଣଶୀଳ ଦଳର ଆୟୁ ଓ ପ୍ରଭାବ ଶତ ଗୁଣ ବର୍ଦ୍ଧିତ ହେବ । ସେଥିପାଇଁ ଏ ବିଷୟରେ ରକ୍ଷଣଶୀଳଗଣ ଉଦାରଭାବରେ ଉଦାରନୈତିକମାନଙ୍କୁ ଅତିକ୍ରମ କରି ଚାଲିଅଛନ୍ତି । ଯାହା ହେଉ, ରାଜର୍ଷି ରାମ-ମୋହନ ବ୍ରହ୍ମଜ୍ଞାନକୁ ରମଣୀ-ନିଷ୍ଠା ସଙ୍ଗରେ ଯୋଗ କରି ଦେଇଅଛନ୍ତି । ବର୍ତ୍ତମାନ ଏହା ସ୍ଥାୟୀ ହେଲେ ହୋଇ ପାରେ ।

ଦ୍ୱିତୀୟ କଥା ବିବାହ । ପ୍ରାଚୀନ ଭାରତରେ ଆଠ ପ୍ରକାର ବିବାହର ଉଲ୍ଲେଖ ଅଛି । ତାହା ମଧ୍ୟରୁ କୌଣସି କୌଣସି ବିବାହ ଯୌବନ କାଳ ଭିନ୍ନ ଅନ୍ୟ ସମୟରେ ସମ୍ପନ୍ନ ହୋଇ ନ ପାରେ । କିନ୍ତୁ କେବଳ ଗୋଟି ବାଲ୍ୟ କାଳରେ ମଧ୍ୟ ହୋଇ ପାରେ । ପ୍ରାଚୀନ ବିବାହର ନିୟମ ମଧ୍ୟରେ ବାଲ୍ୟ ବିବାହର ସ୍ଥାନ ଥିଲେ ମଧ୍ୟ ପ୍ରାଚୀନ କାଳରେ ଯୌବନ ବିବାହହିଁ ବିବାହର ଆଦର୍ଶ ଥିଲା । ଯେତେ ଆଦର୍ଶ ରମଣୀ ସମସ୍ତେ ଯୌବନ କାଳରେ ବିବାହିତା । ଏପରି କି ବର୍ତ୍ତମାନ ବିବାହ ଆଲୋଚନା କରି ଦେଖିଲେ ସେଥିରେ ଯୌବନ ବିବାହର ଆଦର୍ଶତ୍ୱ ପ୍ରମାଣିତ ହେବ । ପ୍ରାଚୀନ କାଳରେ ଯୌବନ ବିବାହରେ ବିବାହିତା ରମଣୀଗଣ ଯେ ପତିତା ନୁହନ୍ତି, ସେମାନେ ଯେ ଆଦର୍ଶ ରମଣୀ, ତାହା ନବ ବିବାହିତା କନ୍ୟାକୁ "ଦମୟନ୍ତୀ ଯଥା ନଳେ" ବୋଲି ଆଶୀର୍ବାଦ କରିବାଦ୍ୱାରା ସ୍ୱୀକୃତ ହୁଏ । ବାଲ୍ୟ ବିବାହକୁ ଆଦର୍ଶ ଧରି ଉକ୍ତରୂପ ଆଶୀର୍ବାଦ ନିତାନ୍ତ ଅସଙ୍ଗତ ବୋଲି ମନେ ହୁଏ । ସେକ୍ସ-ପିୟରଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଯାଇ ଆମ୍ଭେମାନେ କହୁଁ ଯେ ଆମ୍ଭମାନଙ୍କର ଶକୁନ୍ତଳା ଅଛି । କିନ୍ତୁ ବାଲ୍ୟ ବିବାହର ପକ୍ଷପାତୀ ଭଦ୍ର-ଗଣଙ୍କୁ ପଚାରୁଅଛୁଁ, ଶକୁନ୍ତଳାକୁ ଯୌବନଭ୍ରଷ୍ଟା କରି ଆଠ ବର୍ଷର ଗୋଟିଏ ଗରଦର ପୁତୁଳି କରି ବିବାହ-ସଭାକୁ ଆନୟନ କଲେ "ଅଭିଜ୍ଞାନ ଶକୁନ୍ତଳ" ଯେଉଁ ଗର୍ବ କରିବାର କିଛି ବାଟ ରହିବ କି ? ବାଲ୍ୟ ବିବାହର ସମର୍ଥନ କରିବା ପୁଣି ପ୍ରାଚୀନ ଆର୍ଯ୍ୟ ମହିଳାଗଣଙ୍କୁ ଘୋର ଦଣ୍ଡ

କରିବା ଏହି ଦୁଇ ବସ୍ତୁ କେବେହେଁ ଏକା ସଙ୍ଗରେ ଚାଲି ପାରେ ନାହିଁ । କୌଣସିଟିକୁ ପରିତ୍ୟାଗ କରିବାକୁ ହେବ । ପ୍ରେମହିଁ ବିବାହର ଉପକରଣ, ସ୍ୱାଧୀନତା ପ୍ରେମର ପ୍ରାଣ, ସ୍ୱାଧୀନତା ଛଡ଼ା ପ୍ରେମ ବିକଶିତ ହୋଇ ପାରେ ନାହିଁ । ବାଲ୍ୟ କାଳରେ ଶାରୀରିକ ଓ ମାନସିକ ବୃତ୍ତିସକଳ ସର୍ବାବୟବସମ୍ପନ୍ନ ହୋଇ ନ ଥାଏ, ସୁତରାଂ ଯେତେବେଳେ ଏହି ସ୍ୱାଧୀନତା ପରିଚାଳନାର ସମୟ ମଧ୍ୟ ହୋଇ ନ ଥାଏ । ଅତଏବ ବାଲ୍ୟ ବିବାହରେ ଏହି ସ୍ୱାଧୀନତା ହରଣ କରା ହୁଏ । ସେଥିପାଇଁ ପ୍ରାଚୀନ ଭାରତ ଯୌବନ ବିବାହକୁ ଆଦର୍ଶ କରି ରମଣୀକୁ ସ୍ୱାମି-ନିର୍ବାଚନାଧିକାର ପୂର୍ଣ୍ଣମାତ୍ରାରେ ପ୍ରଦାନ କରିଥିଲେ । ବିବାହ ସମାଜିକ ଜୀବନର ସର୍ବ ପ୍ରଧାନ କାର୍ଯ୍ୟ । ଜୀବନର ସକଳ ସୁଖ ଦୁଃଖ ଏହା ଉପରେ ନିର୍ଭର କରେ । ଏପରି କାର୍ଯ୍ୟରେ ମନୁଷ୍ୟକୁ ସ୍ୱାଧୀନତା-ବର୍ଜିତ କରିବା ଅତ୍ୟନ୍ତ ଗର୍ହିତ କାର୍ଯ୍ୟ । ଆଦର୍ଶ ସମାଜରେ କେବେହେଁ ଏପରି ହୋଇ ନ ପାରେ । ସେଥିପାଇଁ ଯୌବନ ବିବାହହିଁ ବିବାହର ଆଦର୍ଶ । ପ୍ରାଚୀନ ଭାରତରେ ତାହାହିଁ ଥିଲା । କିନ୍ତୁ ବର୍ତ୍ତମାନ ଏକ ଶ୍ରେଣୀର ଲୋକ ଆବିର୍ଭୂତ ହୋଇଅଛନ୍ତି, ଯେଉଁମାନେ ବାଲ୍ୟ ବିବାହର ମହିମା କୀର୍ତ୍ତନ କରିବାକୁ ଯାଇ ଯୌବନ ବିବାହର ଅଯଥା ନିନ୍ଦା କରିବାକୁ କୁଣ୍ଠିତ ନୁହନ୍ତି । ଏମାନଙ୍କ ଧୃଷ୍ଟତା ଏତେ ଦୂର ଅଗ୍ରସର ହୋଇଅଛି ଯେ ଏମାନେ କହୁଅଛନ୍ତି, ଅଧିକ ବର୍ଷ ପର୍ଯ୍ୟନ୍ତ ଅବିବାହିତ ରହିଲେ ନାରୀର ମନ ଅନ୍ୟ ପୁରୁଷରେ ଆସକ୍ତ ହୋଇ କଳୁଷିତ ହୋଇ ଯିବ । ସେଥିପାଇଁ ଅଳ୍ପ ବୟସରେ ଜଣକ ସଙ୍ଗରେ ବାନ୍ଧି ଦେବା କର୍ତ୍ତବ୍ୟ । ଅଥଚ ପ୍ରାଚୀନ ମହିଳାଗଣଙ୍କ ପୁଣ୍ୟକୀର୍ତ୍ତନ କରିବାକୁ ଏମାନେ ପଶ୍ଚାତ୍ପଦ ହୁଅନ୍ତି ନାହିଁ । ଯେପରି କି ବିବାହ ପରେ ନାରୀ ଆଉ ପର ପୁରୁଷରେ ଆସକ୍ତା ହୋଇ ପାରେ ନାହିଁ । ଯେତେବେଳେ ଦେଖୁଁ ବୃହସ୍ପତିଙ୍କ ପରି ସ୍ୱାମୀ ବର୍ତ୍ତମାନ ଥାଉଁ ଥାଉଁ ତାରା ଚନ୍ଦ୍ର ପ୍ରତି ଆସକ୍ତା, ଯେତେବେଳେ ଦେଖୁଁ ଗୌତମଙ୍କ ପରି ସ୍ୱାମୀ ଥିଲେ ମଧ୍ୟ ଅହଲ୍ୟା ଇନ୍ଦ୍ରଙ୍କ ପ୍ରତି ଅନୁରକ୍ତା, ଯେତେବେଳେ ଦେଖୁଁ ପର୍ଶୁରାମଙ୍କ ମାତା ରେଣୁକା ଭୃଗୁଙ୍କ ପରି ସ୍ୱାମିଙ୍କ ବର୍ତ୍ତମାନତାରେ ସୁଦ୍ଧା ପର ପୁରୁଷର ଚିନ୍ତାରେ ନିମଗ୍ନା, ଯେତେବେଳେ କିପରି ବିଶ୍ୱାସ କରିବୁଁ ଯେ ଧରି ବାନ୍ଧି ବାଲ୍ୟ କାଳରେ ବିବାହ ଦେଇ ପକାଇଲା ମାତ୍ରକେ ସବୁ ଆପଦ ଦୂର ହୋଇ ଗଲା । ଅନ୍ୟ ପକ୍ଷରେ ଯେତେବେଳେ ଦେଖୁଁ, ଅଧିକ ବୟସ ପର୍ଯ୍ୟନ୍ତ ଅବିବାହିତ ଥିଲେ ମଧ୍ୟ ସତ୍ୟବାନଙ୍କଠାରେ ସ୍ଥାପିତହୃଦୟା ସାବିତ୍ରୀ ବର୍ଷକ ପରେ ସତ୍ୟବାନଙ୍କ ମୃତ୍ୟୁ ହେବ ଜାଣି—ପିତା ମାତାଙ୍କ ନାନା ଅନୁନୟ ଉପରୋଧ ସତ୍ତ୍ୱେ ଅନ୍ୟ କାହାରିକୁ ହୃଦୟରେ ସ୍ଥାନ ଦେବାକୁ ସମର୍ଥା ହେଲେ ନାହିଁ, ଯେତେବେଳେ ଦେଖୁଁ ଅଧିକ ବୟସ ପର୍ଯ୍ୟନ୍ତ ଅବିବାହିତା ଥିଲେ ମଧ୍ୟ ନଳାର୍ପିତହୃଦୟା ଦମୟନ୍ତୀ ଇନ୍ଦ୍ର ଚନ୍ଦ୍ର ବାୟୁ ବରୁଣ ପ୍ରଭୃତି ଦେବତାଗଣଙ୍କ ପ୍ରତି ମଧ୍ୟ ଭ୍ରୂକ୍ଷେପ କରି ନାହାନ୍ତି, ଯେତେବେଳେ ଦେଖୁଁ କୃଷ୍ଣଗତପ୍ରାଣା ରୁକ୍ମିଣୀ ପିତା ଓ ଭ୍ରାତାଙ୍କ ଜୀବନ ନାଶର ସମ୍ଭାବନା ଦେଖି ମଧ୍ୟ ଆପଣାର ହୃଦୟ ଶ୍ରୀକୃଷ୍ଣଙ୍କଠାରୁ ଆକର୍ଷଣ କରି ଅନ୍ୟଠାରେ ସ୍ଥାପନ କରି ପାରି ନାହାନ୍ତି, ଯେତେବେଳେ କିପରି ବିଶ୍ୱାସ କରିବୁଁ ଯେ ଅଧିକ ବୟସ ପର୍ଯ୍ୟନ୍ତ ଅବିବାହିତ ରହିଲେ ରମଣୀ ଶତ ସ୍ଥାନରେ ଆତ୍ମ-ବିକ୍ରୟ କରିବେ ? ଏହିପରି ରମଣୀଚରିତ୍ରର ଅତି ହୀନ ଆଦର୍ଶ ଲୋକଙ୍କ ସମ୍ମୁଖରେ ଧରା ହେଉଅଛି । ଏହା ଜାତୀୟ ଅବନତିର ପରିଚାୟକ । ସମାଜର ଅର୍ଦ୍ଧାଙ୍ଗସ୍ୱରୂପିଣୀ ରମଣୀଜାତିକୁ ଏପରିଭାବରେ ନିକୃଷ୍ଟ ବର୍ଣ୍ଣରେ ଚିତ୍ରିତ କରି ଏମାନେ ଜନ-ସମାଜରେ କେବଳ ବିକୃତ ରୁଚିର ପରିଚୟ ଦେଉଅଛନ୍ତି । ନାରୀଜାତି ପ୍ରତି ଏମାନଙ୍କର ବ୍ୟବହାର ଏକାନ୍ତ ଅନ୍ୟାୟ ହୋଇଅଛି । ନାରୀ-

ଜାତି ପ୍ରତି ପୂରୁଷ ଶକ୍ତିର ଏପ୍ରକାର ପ୍ରୟୋଗ ଦେଖି ମହର୍ଷି କଣ୍ୱଙ୍କ ଆଶ୍ରମରେ ମୃଗବଧୋଦ୍ୟତ ଦୁଷ୍ମନ୍ତ ପ୍ରତି ଋଷିବାଳକଙ୍କର ସେହି କାତରୋକ୍ତି ପୁନରାବୃତ୍ତି କରିବାକୁ ଇଚ୍ଛା ହେଉଅଛି ।——

"ନ ଖଲୁ ନ ଖଲୁ ବାଣଃ ସନ୍ନିପାତ୍ୟୋଽୟମସ୍ମିନ୍
ମୃଦୁନି ମୃଗଶରୀରେ ତୂଲରାଶାବିବାଗ୍ନିଃ ।
କ୍ୱ ବତ ହରିଣକାନାଂ ଜୀବିତଂ ଚାତିଲୋଲଂ
କ୍ୱ ଚ ନିଶିତନିପାତା ବଜ୍ରସାରାଃ ଶରାସ୍ତେ ।

ପ୍ରକୃତ କଥା, ଶିକ୍ଷା ଓ ସଂସର୍ଗର ଗୁଣରେ ମନୁଷ୍ୟଚରିତ୍ର ଗଠିତ ହୁଏ । ବେଶ୍ୟାପାଳିତା କନ୍ୟା ଦ୍ୱାଦଶ ବର୍ଷରେ ମନ୍ଦାଚାରୀ, ଅଥଚ ଭଦ୍ରଗୃହର କନ୍ୟା ଜୀବନର ସର୍ବପ୍ରକାର ସୁଖସୁବିଧାର ବ୍ୟବସ୍ଥା ଥିଲେହେଁ ନିର୍ବିକାର ଭାବରେ ଚିରକୌମାର୍ଯ୍ୟରେ ଜୀବନ ଅତିବାହିତ କରୁଅଛନ୍ତି । ଯେଉଁ ଦେଶରେ ରମଣୀର ଅବରୋଧ ନାହିଁ, ଯେଉଁ ଦେଶରେ ବାଲ୍ୟ ବିବାହ ନାରୀଜୀବନର ସ୍ୱାଧୀନତା ହରଣ କରି ନାହିଁ, ସେହି ଦେଶ ପ୍ରତି ଦୃଷ୍ଟିପାତ କରନ୍ତୁ । ଦେଖିବେ, ସହସ୍ର ସହସ୍ର ରମଣୀ ରାଜପ୍ରାସାଦକୁ ତୁଚ୍ଛ ଜ୍ଞାନ କରି ବ୍ରହ୍ମଚର୍ଯ୍ୟ ଅବଲମ୍ବନପୂର୍ବକ ଦୁଃସ୍ଥ ଲୋକମାନଙ୍କ ସେବାରେ ଆତ୍ମୋତ୍ସର୍ଗ କରୁଅଛନ୍ତି । ଏହି ସବୁ ପ୍ରତ୍ୟକ୍ଷ ଦୃଷ୍ଟ ଘଟନା ପ୍ରତି ମନୁଷ୍ୟ କପଟ ଅନ୍ଧ ହୁଏ, ତାହାର କାରଣ ନିର୍ଦ୍ଦେଶ କରିବାକୁ ଆମ୍ଭେମାନେ ଅକ୍ଷମ । ଜାଣୁ ନାହିଁ, ଚନ୍ଦ୍ର-ଜଗତର କି ଅନିର୍ବଚନୀୟ ବିଧାନରେ ଯେ ଅଷ୍ଟମବର୍ଷୀୟା ବିଧବା ପ୍ରତି ଚିର ବ୍ରହ୍ମଚର୍ଯ୍ୟର ବଜ୍ରବାଣ ନିକ୍ଷେପ କରିବା ପାଇଁ ବଦ୍ଧପରିକର, ସେହିପୁଣି ଯୌବନ ବିବାହର ନାମରେ କମ୍ପିତକଳେବର ! ଯେପରି କି ବିଧବା ଯୌବନର ପଥ ଅତିକ୍ରମ ନ କରି ମଧ୍ୟ ବାର୍ଦ୍ଧକ୍ୟରେ ଉପନୀତ ହୋଇ ପାରିବ !

ଯାହା ହେଉ, ପ୍ରାଚୀନ ଭାରତର ଆଦର୍ଶ ଯୌବନବିବାହ ହେଲେହେଁ ସମାଜ ଶରୀରରେ ବାଲ୍ୟବିବାହର ବୀଜ ନିହିତ ଥିଲା । ଶରୀର ଯେତେବେଳଯାଏ ସୁସ୍ଥ ଥାଏ, ସେତେବେଳଯାଏ ରୋଗର ବୀଜ ଶରୀରରେ ଥିଲେହେଁ ଶରୀର ଉପରେ ବିଶେଷ ପ୍ରଭାବ ବିସ୍ତାର କରିବାକୁ ସକ୍ଷମ ହୁଏ ନାହିଁ । ଶରୀର ଦୁର୍ବଳ ହେଲା ମାତ୍ରକେ ତାହା ମସ୍ତକୋତ୍ତୋଳନ କରେ । ଦୈବଦୁର୍ବିପାକରୁ ଭାରତ ଯେତେବେଳେ ପରହସ୍ତଗତ ହେଲା, ଅବରୋଧାଦି ପ୍ରଥାର ବିଷଜାଲରେ ଜଡ଼ିତ ହୋଇ ଭାରତରମଣୀ ଯେତେବେଳେ ଶିକ୍ଷାହୀନ ହେଲେ ଏବଂ ଆପଣାର ଅଧିକାର-ଜ୍ଞାନ ହରାଇଲେ, ସେତେବେଳେ ବାଲ୍ୟବିବାହ ଆସି ରମଣୀର ବିବାହବିଷୟକ ଅଧିକାର ସବୁ ହରଣ କଲା । ବର୍ତ୍ତମାନ ସମୟରେ ଯେଉଁମାନେ ବିବାହସଂସ୍କାରରେ ପ୍ରବୃତ୍ତ, ସେମାନଙ୍କ ମସ୍ତକରେ ଅତି ଗୁରୁ କର୍ତ୍ତବ୍ୟ-ଭାର ରହିଅଛି । କେବଳ ଯୌବନ ବିବାହର ଆଦର୍ଶ ପ୍ରଚାର କଲେ ହେବ ନାହିଁ । ସେ ପଥରେ ଯେଉଁ ସମସ୍ତ ବାଧା ଅଛି, ସେ ଗୁଡ଼ିକ ଦୂରୀଭୂତ କରି ପଥ ପରିଷ୍କାର କରିବାକୁ ହେବ । ନତୁବା ଆଇନର ଚଉଦ ବର୍ଷ ବାଲ୍ୟ ବିବାହ ନିବାରଣ କରି ପାରିବ ନାହିଁ । ଭାରତରେ ଯୌବନବିବାହ ଆଦର୍ଶ ବିବାହ ଥିଲା । କାହିଁକି ସେ ଆଦର୍ଶ ଭାଙ୍ଗିଗଲା ? ଜାତୀୟ ଇତିହାସ ପର୍ଯ୍ୟାଲୋଚନା କରି ତାହାର କାରଣ ନିର୍ଦ୍ଦେଶ କରିବାକୁ ହେବ ଏବଂ ସେ କାରଣଗୁଡ଼ିକ ପୁଣି ଯେପରି ଆବିର୍ଭୂତ ହୋଇ ନ ପାରିବ, ସେଥିପାଇଁ ସତର୍କ ରହିବାକୁ ହେବ । ଯେଉଁ ସବୁ କାରଣରୁ ଯୌବନବିବାହ ଉଠି ଯାଇଅଛି, ତନ୍ମଧ୍ୟରେ ଅବରୋଧପ୍ରଥା ଗୋଟିଏ ପ୍ରଧାନ । ପ୍ରେମକୁ ଭିତ୍ତିମୂଳରେ ରଖି ସ୍ୱାଧୀନ ଭାବରେ ପତି-ପତ୍ନୀ-ନିର୍ବାଚନର ଅଧିକାର ଦେବାକୁ ହେଲେ ଅବରୋଧପ୍ରଥା ସର୍ବ ପ୍ରକାରରେ ବର୍ଜ୍ଜନ କରିବାକୁ ହେବ । ସ୍ତ୍ରୀପୁରୁଷର ପରସ୍ପର ସମ୍ମିଳନ-ଦ୍ୱାରା ଭାବର ଆଦାନ ପ୍ରଦାନ ନ ହେଲେ ପ୍ରେମ ଜନ୍ମି ପାରେ ନାହିଁ ଏବଂ ପୂର୍ବରାଗ ବ୍ୟତୀତ ବିବାହ ଆଦର୍ଶ ବିବାହ ନୁହେ । ନ ବୁଝି ନ ଶୁଝି

ଧରି ବାର ବିବାହ ହେଲେ ତା ହେଲେ ଯୌବନ ବିବାହ ଅପେକ୍ଷା ବାଲ୍ୟବିବାହର ପଥ ପ୍ରଶସ୍ତ । ଯେତେବେଳେ ବୟସ ଯେତେ ବଢ଼ିବ, ଭଲ ହେଉ ବା ମନ୍ଦ ହେଉ, ଗୋଟାଏ ଚରିତ୍ର ଗଠିତ ହୋଇ ଥିବ । ସୁତରାଂ ଏପରି ସ୍ଥଳରେ ନ ଜାଣି ନ ଶୁଣି ବିବାହ କରିବାକୁ ହେଲେ ଅଧିକ ବୟସ ଅପେକ୍ଷା ଅଳ୍ପ ବୟସରେ ଅଧିକ ମନୋମତ ହେବ । ସେଥିପାଇଁ କହୁଅଛୁଁ, ଆଇନରେ ନିର୍ଦ୍ଦିଷ୍ଟ ବର୍ଷ ଥିଲେ ମଧ୍ୟ ବାଗ୍‌ଦାନ ତାହାର ବହୁପୂର୍ବରେ ସମ୍ପାଦିତ ହେବ । ଯୌବନ ବିବାହର ପଥରେ ଯେ ସମସ୍ତ ବାଧା ଅଛି, ତାହା ନିରାକୃତ ନ କରି ଯେତେ ଚିତ୍କାର କଲେ ମଧ୍ୟ କିଛି ଫଳ ହେବ ନାହିଁ । ବାଲ୍ୟ ବିବାହକୁ ଗୋଟିଏ ପଥ ଦେଇ ବାହାର କରି ଦେଲେ ତାହା ଅନ୍ୟ ପଥ ଦେଇ ପ୍ରବେଶ କରିବ । କେବଳ ଆଦର୍ଶ ଦେଲେ ଚଳିବ ନାହିଁ । ଆଦର୍ଶକୁ ଅନୁସୃତ କରିବା ପାଇଁ ପ୍ରୟୋଜନୀୟ ପଥ ପ୍ରସ୍ତୁତ କରି ଦେବାକୁ ହେବ । ନତୁବା ଆକାଶର ଆଦର୍ଶ ଆକାଶରେ ରହିବ । ଚିତ୍କାର ଅରଣ୍ୟ-ରୋଦନରେ ପର୍ଯ୍ୟବସିତ ହେବ । ସଂସ୍କାରକଗଣ ଏ ବିଷୟଟି ଥରେ ଚେଷ୍ଟା କରି ଦେଖନ୍ତୁ, ଏହାହିଁ ପ୍ରାର୍ଥନା ।

ଯାହା ହେଉ, ବାଲ୍ୟବିବାହର ନିଷ୍ପେଷଣରେ ଭାରତରମଣୀ ଆପଣାର ବିବାହସମ୍ବନ୍ଧୀୟ ଅଧିକାର ହରାଇଅଛନ୍ତି । ତାହାର ଗୋଟିଏ ଫଳ ହେଲା ଏହି—ଯେଉଁ ଦେଶର କବି ସାବିତ୍ରୀ, ଦମୟନ୍ତୀ, ପାର୍ବତୀ, ରୁକ୍ମିଣୀ ଓ ଶକୁନ୍ତଳା ପ୍ରଭୃତିଙ୍କର ତୀବ୍ର ପୂର୍ବରାଗ ଓ ସରସ ଦାମ୍ପତ୍ୟ ପ୍ରେମ ବର୍ଣ୍ଣନା କରିଅଛନ୍ତି, ସେହି ଦେଶର କବି ପରବର୍ତ୍ତୀ ସମୟରେ ପ୍ରେମର ମହିମା କୀର୍ତ୍ତନ କରିବାକୁ ଯାଇ ଦାମ୍ପତ୍ୟ ସମ୍ବନ୍ଧରେ ପ୍ରେମ ନ ପାଇ ପରକୀୟ ନାୟକ ନାୟିକାର ଆଶ୍ରୟ ଗ୍ରହଣ କଲେ । ସେ ଦେଖିଲେ, ବିବାହ ଯେଉଁ ପରାଧୀନତାର ଆକାର ଧାରଣ କରିଅଛି, ସେଥିରେ ପ୍ରେମର ସ୍ଥାନ ନାହିଁ । ବାଲ୍ୟବିବାହର ନିଷ୍ପେଷଣରେ ପ୍ରେମ ଦାମ୍ପତ୍ୟ ସମ୍ବନ୍ଧକୁ ପରିତ୍ୟାଗ କରିଅଛି । ବାଧ୍ୟବାଧକତାର ପ୍ରେମ ଘେନି କବି କଣ କରିବେ ? ସେଥିପାଇଁ ପ୍ରେମର ପ୍ରାଣ ସ୍ୱାଧୀନତା ଯେଉଁଠାରେ ଅଛି, ସେ ସେହିଠାକୁ ଯାଇ ଅଛନ୍ତି । ସୁତରାଂ ପରକୀୟ ନାୟକ ନାୟିକାର ଅବତାରଣା ହୋଇଅଛି । ଏକ ସମ୍ପ୍ରଦାୟ ଦାମ୍ପତ୍ୟ ପ୍ରେମ ଅପେକ୍ଷା ପରକୀୟ ପ୍ରେମର ଶ୍ରେଷ୍ଠତା ଘୋଷଣା କରୁଅଛନ୍ତି । ବାଲ୍ୟ ବିବାହ ନାରୀଜାତିକୁ ତାହାର ଅଧିକାରରୁ ବଞ୍ଚିତ କରିବାର ବିଷମୟ ଫଳ ଜାତୀୟ ଜୀବନରେ ଫଳିଅଛି । ଜାତୀୟ ଧର୍ମଜୀବନର ଏକ ଭାଗ ଚିରଦିନ ପାଇଁ କଳୁଷିତ ହୋଇ ଯାଇଅଛି ।

ଏହି ତ ଗଲା ଆଧ୍ୟାତ୍ମିକ ଅଧିକାରର କଥା । ବର୍ତ୍ତମାନ ଶାରୀରିକ ଅଧିକାରର କଥା ଆଲୋଚନା କରି ଯାଉ । ବାଲ୍ୟବିବାହର ଯେ ବୟସ ନିର୍ଦ୍ଦିଷ୍ଟ ହୋଇଅଛି, ସେଥିରେ ଶରୀର କେବେହେଁ ପୁଷ୍ଟ ହୋଇ ପାରେ ନାହିଁ । ବାଲ୍ୟ ବିବାହ ରମଣୀକୁ ତାହାର ଶରୀର ପୁଷ୍ଟ କରିବାର ଅଧିକାରରୁ ବଞ୍ଚିତ କରିଅଛି । ତାହାର ଶରୀର ଉପରେ କିପରି ଅମାନୁଷିକ ଅତ୍ୟାଚାର ହୁଏ, ତାହାର ନମୁନା ସମସ୍ତେ ସମ୍ମତି-ଆଇନର ଆନ୍ଦୋଳନ ସମୟରେ ପ୍ରାପ୍ତ ହୋଇଅଛନ୍ତି । ବାଲ୍ୟବିବାହର ମହିମାରେ ରମଣୀ ତାହାର ଶରୀର ପୁଷ୍ଟ କରିବାରେ ମଧ୍ୟ ଅଧିକାରିଣୀ ନୁହେଁ । ଶରୀର ରକ୍ଷାର ଅଧିକାର ମଧ୍ୟ ତାହାର ନାହିଁ । ଏହାର ଫଳ କଣ ହୋଇ ଅଛି ? ଆୟୁର୍ବେଦ କହନ୍ତି—

ଉନଷୋଡ଼ଶବର୍ଷାୟା ମପ୍ରାପ୍ତପଞ୍ଚବିଂଶତିଃ ।
ଯଦ୍ୟାଧତ୍ତେ ପୁମାନ୍ ଗର୍ଭଂ କୁକ୍ଷିସ୍ଥଃ ସ ବିନଶ୍ୟତି ।
ଜାତୋ ବା ନ ଚିରଂ ଜୀବେତ୍ ଜୀବେଦ୍ବା
ଦୁର୍ବଲେନ୍ଦ୍ରିୟଃ ।
ଅତ ଅତ୍ୟନ୍ତବାଲାୟାଂ ଗର୍ଭାଧାନଂ ନ କାରୟେତ୍ ॥

ବର୍ତ୍ତମାନ ଗୋଟିଏ ଜାତି ଉତ୍ପନ୍ନ ହୋଇଅଛି, ଯାହା "ଜାତୋ ବା ନ ଚିରଂ ଜୀବେତ୍ ଜୀବେଦ୍ବା ଦୁର୍ବଲେନ୍ଦ୍ରିୟଃ" ! ଜୀବନସଂଗ୍ରାମରେ ବିନଷ୍ଟ ହେବାର ପଥ ପ୍ରସ୍ତୁତ ହୋଇଅଛି । ଏହାହିଁ ପ୍ରକୃତିର ଅନିବାର୍ଯ୍ୟ ପ୍ରତିଶୋଧ !

ଶ୍ରୀ ଧୀରେନ୍ଦ୍ରନାଥ ଚୌଧୁରୀ ।

---

## ଭ୍ରମଣକାରୀର ପତ୍ର ।

### (ବୌଦ୍ଧ)

ଏ ଗଳ୍ପ ବୌଦ୍ଧ ନୁହେ, "ବୌଦ୍ଧ ।"

"ଶାକ୍ୟସିଂହଶିଷ୍ୟାଗ୍ରଣୀ ନୃପଶିରୋମଣି
ଜନ୍ମିବେ ଅଶୋକ ନାମେ ନୃପ ମହାତେଜା ।"
"ଅନନ୍ତରତନପ୍ରସୂ ହିମାଳୟଠାରୁ
ମୁକ୍ତାପ୍ରସୂ ତାମ୍ରପର୍ଣ୍ଣୀଯାଏ ଦେଶେ ଦେଶେ
ଉଡ଼ିବ ତାଙ୍କର କେତୁ କେବଳ ଭାରତେ,
ସ୍ଥାନେ ସ୍ଥାନେ ଶୈଳଭାଲେ ଅକ୍ଷୟ ଅକ୍ଷରେ
ଶୋଭିବ ଏ ନବ ବାଣୀ କଲୁଷନାଶିନୀ
ଅଶୋକର ଅନଶ୍ୱର ଯଶୋଲିପିରୂପେ ।"

ଯୋଜନପୁରରେ ବ୍ରାହ୍ମଣ୍ୟ ଧର୍ମ ଲୁପ୍ତ ରହିଲା । ବୌଦ୍ଧଯାଏ ବୌଦ୍ଧ ଧର୍ମ ଅଧିକାର ବିସ୍ତାର କଲା ।, ସମଗ୍ର ଓଡ଼ିଶା ବୌଦ୍ଧ ଧର୍ମରେ ଦୀକ୍ଷିତ ହେଲା । ଉତ୍କଳରେ ବୌଦ୍ଧ ବିହାର ଶୈଳଲିପି ସଂଗ୍ରହ କଲେ ଏକ ବୃହତ୍ ଗ୍ରନ୍ଥ ହେବ । ଓଡ଼ (ଓଡ୍ର) କ୍ଷତ୍ରିୟମାନେ ବୌଦ୍ଧଧର୍ମାବଲମ୍ବୀ ଥିଲେ । ବୌଦ୍ଧ ଧର୍ମର ଆବିର୍ଭାବ ପୂର୍ବରୁ ଏମାନେ ଉତ୍କଳ ଭୂମି ଅଧିକାର କରିଥିଲେ । ସାମ୍ୟ-ମୈତ୍ରୀ-ପ୍ରାଣ ନିର୍ମଳ ବୌଦ୍ଧ ଧର୍ମ ବ୍ରାହ୍ମଣ କୂଟ ବୁଦ୍ଧି ଓ କ୍ଷତ୍ରିୟ ବାହୁବଳର ପ୍ରଭାବରେ ଭାରତରୁ ବହିଷ୍କୃତ ହେଲା । କବି-ଉକ୍ତି—

"ଆଦିତ୍ୟପ୍ରତିମତେଜା ଅରିବିକମ୍ପୀ
ବୀରେନ୍ଦ୍ର ବିକ୍ରମାଦିତ୍ୟ ଉଜ୍ଜୟିନୀପତି
ବିଜାତିର ପକ୍ଷ ହୋଇ ପ୍ରଚଣ୍ଡ ବିକ୍ରମେ
ଆକ୍ରମିଲେ ଶାକ୍ୟସିଂହ-ଶିଷ୍ୟ-ରାଜଦଳେ ।"

ଉଜ୍ଜୟିନୀପତି ବୀରେନ୍ଦ୍ର ବିକ୍ରମାଦିତ୍ୟ କ୍ଷତ୍ରିୟ ରାଜାଗଣଙ୍କୁ ଏକତ୍ର କରି ବୌଦ୍ଧ ଧର୍ମର ମୂଳୋତ୍ପାଟନରେ ବଦ୍ଧପରିକର ହେଲେ । ବ୍ରାହ୍ମଣ ବୁଦ୍ଧିବଳ ଓ କ୍ଷତ୍ରିୟ ବାହୁବଳର ସମନ୍ୱୟ ସମଗ୍ର ଭାରତରେ ଜାତୀୟ ବିପ୍ଳବ ଘଟାଇଅଛି । ଚିରକାଳ କ୍ଷତ୍ରିୟର କର୍ଣ୍ଣ ବ୍ରାହ୍ମଣ ହସ୍ତରେ । କ୍ଷତ୍ରିୟମାନେ କିଛି ସ୍ଥୂଳବୁଦ୍ଧି ଜାତି ଏବଂ ଉଗ୍ରସ୍ୱଭାବାପନ୍ନ । ବ୍ରାହ୍ମଣମାନେ କ୍ଷତ୍ରିୟମାନଙ୍କୁ ଚିରକାଳ ମନ୍ତ୍ର ଦେଇ ଆସୁଅଛନ୍ତି । ପୁଣି ସେମାନଙ୍କୁ ଶାନ୍ତ, ଦାନ୍ତ କରାଇବା ଲାଗି ବହୁ ଶ୍ରମ ଓ ଯତ୍ନ କରିଅଛନ୍ତି । ବ୍ରାହ୍ମଣରଚିତ ପୁରାଣାଦି ତାହାର ପ୍ରମାଣ । ଇହଲୋକ ବା ଲୋକାନ୍ତର କି ଧର୍ମାଚରଣ, ସବୁଥିରେ ବ୍ରାହ୍ମଣବୁଦ୍ଧି ଲୋଡ଼ା । କୋପନ-ସ୍ୱଭାବ କ୍ଷତ୍ରିୟଙ୍କୁ ବ୍ରାହ୍ମଣମାନେ ସର୍ବଦା ତୁଷ୍ଟ କରିଥାନ୍ତି । କ୍ଷତ୍ରିୟ କଥାରେ "ତଥାସ୍ତୁ" କଥାଟା ତୁଣ୍ଡରେ ଲଗାଇ ରଖିଥାନ୍ତି । କ୍ଷତ୍ରିୟ କୋପ କଲେ ବ୍ରାହ୍ମଣର ଗତି ନାହିଁ । ବ୍ରାହ୍ମଣ ପିଠିରୁ ଛାଲ କିଏ ? ବ୍ରାହ୍ମଣର ରକ୍ଷଣ ପାଳନ କିଏ କରିବ ? ଏଣୁ ବ୍ରାହ୍ମଣମାନେ ଚତୁର ଚାଟୁ-ବଚନରେ କ୍ଷତ୍ରିୟମାନଙ୍କୁ ଅନ୍ଧ କରି ରଖିଥିଲେ । ପରାପେକ୍ଷୀ ହେଲେ ଲୋକେ ଭୀରୁ ହୁଅନ୍ତି । ସ୍ୱାର୍ଥପରତା ଭୀରୁତାକୁ ତାର ଅତି ସଙ୍ଗୀ କରେ । ସ୍ୱାର୍ଥ ଲୋକଙ୍କୁ ଅନ୍ଧ କରେ । ସତନ୍ତ୍ର ନୀତିବଚନ ସ୍ୱକପୋଳରୁ କଳ୍ପନା କରୁ-

ଥିଲେହେଁ ସ୍ୱାର୍ଥ ତାହାର ମାହାତ୍ମ୍ୟ ଅନୁଭବ କରିବାକୁ ଅକ୍ଷମ ।

ସ୍ୱାର୍ଥପ୍ରଣୋଦିତ ବ୍ରାହ୍ମଣମାନେ କ୍ଷତ୍ରିୟଙ୍କ ସଙ୍ଗରେ ଯୋଗ ସାମ୍ୟପ୍ରାଣ ବୌଦ୍ଧ ଧର୍ମକୁ ଉତ୍କଳରୁ ତଡ଼ି ଦେବାକୁ ବାହାରିଲେ । ଖଡ୍ଗହସ୍ତ କ୍ଷତ୍ରିୟ ଆଗେ ଆଗେ, କୁଶାକୁଶିମନ୍ତ୍ରପୋଥି-ସମ୍ବଳ ମନ୍ତ୍ରଦାତା ବ୍ରାହ୍ମଣ ପଛେ ପଛେ । ଏହି ଦ୍ୱିତୀୟ ଆର୍ଯ୍ୟଜାତି-ସ୍ରୋତ ମଧ୍ୟ ଦେଶ ଦେଇ ଉତ୍ତରପଶ୍ଚିମ ଦିଗରୁ ଉତ୍କଳରେ ପ୍ରବେଶ କଲା । ମହାସଂଗ୍ରାମ ଘଟିଲା । ଯୁଗ ଲେଉଟିଲା—ଧର୍ମ ଲେଉଟିଲା । ଆର୍ଯ୍ୟଲୋକରେ ଉତ୍କଳ ଉଜ୍ଜ୍ୱଳି ଉଠିଲା । ଏତେବେଳେ ଏ ପ୍ରକୃତ ଆର୍ଯ୍ୟଭୂମି ହେଲା । ଅର୍ଦ୍ଧ ସଂଖ୍ୟା ବ୍ରାହ୍ମଣ ଓ ଅର୍ଦ୍ଧସଂଖ୍ୟା କ୍ଷତ୍ରିୟ । ସେହି ତ୍ରିବେଦୀ, ଦ୍ୱିବେଦୀ, ପାଣ୍ଡେ, ହୋତା, ସତ୍ପଥୀ ଓ ଷଡ଼ଙ୍ଗୀମାନେ କ୍ଷତ୍ରିୟ-ଗୋଷ୍ଠୀ, ଧୀର, ଧଳ, ବଳ, ତୁଙ୍ଗ, ମଲ୍ଲ, ଭଞ୍ଜ, ରାୟ, ରାଉତମାନଙ୍କୁ (ଖଣ୍ଡାୟତ ଉପାଧିକ—ଖଣ୍ଡା ଆୟତ୍ତରେ ଯାହାର ବା ଖଣ୍ଡ ଆୟତ୍ତରେ ଯାହାର) ଧରି ବ୍ରାହ୍ମଣ୍ୟ ଧର୍ମ ଏବଂ କ୍ଷତ୍ରିୟ ରାଜତ୍ୱ ଏ ଦେଶରେ ସ୍ଥାପନ କଲେ । ଉତ୍କଳର ପ୍ରତ୍ନତତ୍ତ୍ୱସଂଗ୍ରାହକ ମହାତ୍ମା ଷ୍ଟର୍ଲିଂ ସାହେବ ଲେଖିଅଛନ୍ତି—

"There are eight classes or families who claim to represent the military and regal tribe, known by the affixes or titles of Dhira, Dhal, Tunga, Mal, Bal, Bhanja, Rai, Raut or Khandait"

କବି-ଉକ୍ତି—

"ଧୂପଖଣ୍ଡାୟାସି ଚଣ୍ଡ ରିପୁଦଣ୍ଡଦାତା
କୂଳପିମଣ୍ଡିତଗଣ୍ଡ ଉତ୍କଳପ୍ରକାରେ
ଦ୍ୱିରୁକ୍ତି କେବଳ ଯିନା ଚନ୍ଦ୍ରୋଜ୍ଜ୍ୱଳଭୁଜ
ଯାହାଙ୍କର ଚନ୍ଦ୍ରହାସବ୍ରଣାଙ୍କିତ ଦେହେ"

"ଜୋର ଯାହାର ମୁଲକ ତାହାର ।"

କୂଳପିମଣ୍ଡିତଗଣ୍ଡ, ଜାନୁଖଣ୍ଡାୟାସି, ଶତ୍ରୁ-ଅସ୍ତ୍ରାଘାତ-ବିଭୂଷିତ ବରବପୁ ଖଣ୍ଡାୟତମାନେ ଉତ୍କଳ-ଖଣ୍ଡରେ ଅଖଣ୍ଡ ଆଧିପତ୍ୟ ସ୍ଥାପନ କଲେ । କେହି ପ୍ରଶ୍ନ କରି ପାରନ୍ତି, ସଂସ୍କୃତଭାଷୀ ସଂସ୍କୃତ ଜାତି ଅସଂସ୍କୃତ ଉତ୍କଳରେ ବାସ କରି କେଉଁ ଭାଷା ଅବଲମ୍ବନ କଲେ ? ଉତ୍ତର—ଓଡ଼ ବା ଓଡ଼୍ର ଭାଷା । ଓଡ଼୍ରଙ୍କ ଭାଷା ଓଡ଼ିଆ—ଓଡ଼୍ର ଦେଶ, ଓଡ଼୍ର ଭାଷା । ଏଥିରେ ଦ୍ୱିରୁକ୍ତି କଣ ଅଛି ?

"The language of the Or or (Ordra) nation is a tolerably pure dialect of the Sanscrit," ଓଡ଼୍ର ଗୋରୁ ରଖୁଆଳ ପିଲାମାନେ ପରା ସଂସ୍କୃତମିଶ୍ରିତ ଭାଷାରେ କଥା କହନ୍ତି ? 'ଯୁଟି ଆ'—'ଯୁଟିତ ଆସନ୍ତୁ;' ଏବେ କହ, ଓଡ଼୍ରମାନେ ସଂସ୍କୃତ ଆର୍ଯ୍ୟଜାତିର ଶାଖା କି ନା ? ପୁଣି କହୁଁ, ଓଡ଼୍ରମାନେ ଆର୍ଯ୍ୟାବର୍ତ୍ତରୁ ସର୍ବାଗ୍ରେ ଉତ୍କଳଖଣ୍ଡକୁ ଆସିଥିଲେ । ଓଡ଼୍ର ଏ ଅସଭ୍ୟ ଦେଶକୁ ସାଫ୍ ସୁତରା କଲେ, କୃଷି ବିସ୍ତାର କଲେ—ସଭ୍ୟତା ଆଣିଲେ । ଓଡ଼୍ର ଉତ୍କଳରେ ଆର୍ଯ୍ୟସ୍ଥିତିର ଅବତାରଣ । ସେ ପ୍ରଜାର୍ଦ୍ଧ । ଓଡ଼୍ର ଅନ୍ନ ପ୍ରସ୍ତୁତ କରି ରଖିଥିଲେ । ଦ୍ୱିଜାତି ବ୍ରାହ୍ମଣ ଓ କ୍ଷତ୍ରିୟମାନେ ଆସି ସେହି ଅନ୍ନ ଉଦରସ୍ଥ କରି ବଳ-ବିକ୍ରମ, ତେଜ-ବୀର୍ଯ୍ୟ ପ୍ରକାଶ କଲେ । ବ୍ରାହ୍ମଣଙ୍କ ମନ୍ତ୍ରଣାରେ ପଡ଼ି କ୍ଷତ୍ରିୟମାନେ ଓଡ଼୍ରମାନଙ୍କ ମୁହଁକୁ ଅନାଇଲେ ନାହିଁ । ଓଡ଼୍ରମାନଙ୍କର ସାମ୍ୟ ନୀତିରେ ସୁଖୀକ ହୋଇଥିଲା । ବହୁକାଳ ପରେ ସୁଦୂରସ୍ଥ ଅଗ୍ରଜପ୍ରତିମ ବିକ୍ରମଶାଳୀ କ୍ଷତ୍ରିୟଙ୍କୁ ଦେଖିଲେ—ଗୁରୁପ୍ରତିମ ତେଜସ୍ୱୀ ବ୍ରାହ୍ମଣମାନଙ୍କୁ ଦେଖିଲେ । ସେମାନଙ୍କ ପଦାନତ ହେଲେ । ଶକ୍ତି-ସାମର୍ଥ୍ୟ, ସ୍ନେହ-ଭକ୍ତି ସେମାନଙ୍କ ଚରଣରେ ଢାଳି ଦେଲେ; ନିଜତ୍ୱ ବିସର୍ଜନ ଦେଇ ଆତ୍ମହରା ହେଲେ । ସ୍ୱାର୍ଥବିଜଡ଼ିତ ନବାଗତ ବ୍ରାହ୍ମଣ କ୍ଷତ୍ରିୟମାନେ ଏ ସୁବିଧା ଶୁଭଲକ୍ଷଣ ମନେ କଲେ । ବୌଦ୍ଧ ଜ୍ଞାନ-ଦୀପ ଲିଭି ଗଲା । କବି ଯଥାର୍ଥ କହିଅଛନ୍ତି ।—

"ଲିଭାଇ ଦେବେଟି ବେଗେ ସ୍ୱାର୍ଥାନ୍ଧ ଦ୍ୱିଜାତି
ଅଜ୍ଞାନ-ତିମିରଛନ୍ନ ଭାରତ ମଣ୍ଡଳେ ।"

ଓଡ଼ମାନଙ୍କ ଉପରେ ବଡ଼ ହେଲେ ଖଣ୍ଡାୟତମାନେ । ବ୍ରାହ୍ମଣମାନେ ବୌଦ୍ଧଧର୍ମବିଦ୍ୱେଷୀ ହୋଇ ଓଡ଼ମାନଙ୍କୁ ଘୃଣା-ଚକ୍ଷୁରେ ଦେଖିଲେ । ସୁତରାଂ ଓଡ଼ମାନେ ସମାଜ-ମଧ୍ୟର ନିମ୍ନ ପାବଚ୍ଛରେ ରହିଲେ । ବୁଦ୍ଧିଜୀବୀ ବ୍ରାହ୍ମଣମାନେ ଖଣ୍ଡାୟତମାନଙ୍କୁ ଅପୂତ୍ରରେ ରଖି ଉଚ୍ଚଜାତିର ଉନ୍ନତକଳ୍ପରେ ଯତ୍ନଶୀଳ ହେଲେ । ଖଣ୍ଡାୟତ-ବାହୁବଳାର୍ଜ୍ଜିତ ଉତ୍କଳଖଣ୍ଡ ବହୁ ଖଣ୍ଡରେ ବିଭକ୍ତ ହୋଇ ସାମନ୍ତ ରାଜାମାନଙ୍କଦ୍ୱାରା ଶାସିତ ଓ ରକ୍ଷିତ ହେଲା । ଇତିହାସ ତାହାର ପ୍ରମାଣ ଦେଉଅଛି । ଯଥା;—

They are called simply Khetris from their caste; Khandaits an Orissa name for a branch of the same class, signifying literally persons entitled to wear *khanda* or national sword of Orissa.

The estates or jurisdiction of that class in Orissa were always called by the Hindus Gerhs, and by the Mussalman Killahs or castles. A certain part of the lands under the head officer was parcelled out amongst several military retainers and dependents called Naiks, Dalais, Dalbehras and some times Khandaits, who held of their superior on much the same principle as he did of the supreme Raja, though generally speaking by a more limited and imperfect tenure. Under these again a portion of the lands of each subordinate Gerh, was assigned as service-land to the feudal militia of the country, called paiks who following equally the occupations of soldier and cultivator were obliged at any moment when called on by their leader to take up arms and accompany him to the field. In time of war the Khandaits or nobility of Orissa at the head of their respective contingents of this landed militia ranged themselves under the standard of their sovereign, and formed the main part of his military array. Thus we frequently read of the Gajapati assembling his chiefs to attend on a warlike expedition and we find that the Sunnads, granted by the Mogul government (in cases where they exercised the right of investiture;) always contained a condition that the Khandait should be ready to attened with his contingent, when summoned by the Military officer of his division. The paiks are the local Infantry constantly referred to in the Ayin Akbari. The anthor observes, speaking of the imperial army—The Zamindari troops alone are in number upwards of four million and four hundred thousand as will hereafter be particularized—a fact which shews the extensive prevalence of the military tenure throughout the country even as late as the 16th century. The proportion of landed militia set down for Orissa proper with same work is about one hundred thousand.

ସାରାର୍ଥ—

ଏମାନେ ଏକ ଶ୍ରେଣୀ କ୍ଷତ୍ରିୟ । ଓଡ଼ିଶାରେ ଖଡ୍ଗ ବା ଖଣ୍ଡା ବ୍ୟବହାର କରନ୍ତି ବୋଲି ଏମାନେ ଖଣ୍ଡାୟତ ନାମରେ ଅଭିହିତ । ଓଡ଼ିଶାରେ ଏହି ଖଣ୍ଡାୟତମାନଙ୍କର ଅଧିକୃତ ଖଣ୍ଡମାନଙ୍କୁ ହିନ୍ଦୁମାନେ ଗଡ଼ ଓ ମୁସଲମାନମାନେ କିଲ୍ଲା କହନ୍ତି । ଗଡ଼ ବା କିଲ୍ଲାର ଅନ୍ତର୍ଗତ କୌଣସି ଭୂମିଖଣ୍ଡ ନାୟକ, ଦଳାଇ, ଦଳବେହେରା ପ୍ରଭୃତି ଖଣ୍ଡାୟତ ସୈନ୍ୟାଧ୍ୟକ୍ଷମାନଙ୍କ ମଧ୍ୟରେ ଉପଖଣ୍ଡମାନ ପୃଥକ୍ ରୂପେ ବିଭକ୍ତ କରି ଦିଆ ହୋଇଥିଲା । ଗଡ଼ ବା କିଲ୍ଲାର ଅଧିପତିଗଣ

ଯେଉଁ ସମୟରେ ଉତ୍କଳାଧୀଶ୍ୱରଙ୍କର ଅଧୀନତା ସ୍ୱୀକାର କରୁଥିଲେ, ଉକ୍ତ ସେନାନାୟକମାନେ ସେହି ସମୟରେ ଗଜପତିମାନଙ୍କର ଅଧୀନ ଥାଇ ସୈନିକ କାର୍ଯ୍ୟ କରୁଥିଲେ ଏବଂ ଯତ୍‌-ସାମାନ୍ୟ କର ଦେଉଥିଲେ । ପୁଣି ଏହି ନାୟକ-ମାନଙ୍କ ଅଧୀନରେ ଯେଉଁ ଖଣ୍ଡାୟିତ ଓ ପଦାତିକ ସେନା ଥିଲେ, ସେମାନଙ୍କୁ ବେତନସ୍ୱରୂପ ଯତ୍କିଞ୍ଚିତ ଜମି ଦିଆ ହେଉଥିଲା । ସେମାନେ ଜମି ଚଷି ଜୀବିକା ନିର୍ବାହ କରୁଥିଲେ ଏବଂ ଯୁଦ୍ଧ କାଳରେ ଦଳବଳ ମେଳେ ହାଜର ହୋଇ ସୈନ୍ୟା-ଧ୍ୟକ୍ଷଙ୍କ ହୁକୁମ ତାମିଲ କରୁଥିଲେ । ସୁତରାଂ କୃଷି ଓ ଯୁଦ୍ଧ ଏମାନଙ୍କର ପେସା ବା ଜୀବିକା ଥିଲା । ଏକ ଏକ ଅଧିନାୟକଙ୍କର ସାମରିକ ଖଣ୍ଡାୟିତ ସେନାଦଳ ଶ୍ରେଣୀବଦ୍ଧ ହୋଇ ରଣ କ୍ଷେତ୍ରରେ ଉପସ୍ଥିତ ହେଉଥିଲେ । ଆଇନ ଅକବରରେ (ମୋଗଲସାମ୍ରାଜ୍ୟର ଇତିହାସ) ବର୍ଣ୍ଣିତ ହୋଇଅଛି । ଗଜପତିରାଜଗଣ ଅଧୀନସ୍ଥ ସାମନ୍ତ ରାଜାମାନଙ୍କୁ ଏକତ୍ରିତ କରି ବଙ୍ଗ-ବିଜୟକୁ ଯାତ୍ରା କରୁଥିଲେ । ମୋଗଲ ସମ୍ରାଟ ଏହି ମର୍ମରେ ସନନ୍ଦ ମଞ୍ଜୁର କରୁଥିଲେ ଯେ ଯୁଦ୍ଧ ସଙ୍କାଶେ ଦଳବଳ କଲମତି ଖଣ୍ଡାୟିତମାନେ ଆପଣା ଆପଣା ସେନା ସାମନ୍ତ ଘେନି ଉତ୍କଳାଧି-ପତିଙ୍କ ସମ୍ମୁଖରେ ହାଜର ହେବେ । ଆଇନ ଅକବର ଗ୍ରନ୍ଥକାର ଲେଖିଅଛନ୍ତି, ସମଗ୍ର ସମ୍ରାଜ୍ୟରେ ଖ୍ରୀଷ୍ଟାବ୍ଦ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଦେଶୀୟ ରାଜ୍ୟମାନଙ୍କ ଅଧୀନରେ ଚଉଦ୍ଦଲକ୍ଷ ଲକ୍ଷ ସେନା ଥିଲେ । କେବଳ ଖାସ ଓଡ଼ିଶାରେ ଏକ ଲକ୍ଷ ସେନା ଥିଲେ । ଖଣ୍ଡାୟିତ ଉପାଧିକ କ୍ଷତ୍ରିୟ ମହାନାୟକ, ଭୂୟାଁ, ଦଳପତି-ମାନଙ୍କ ଆବାସର ଅନତିଦୂରରେ ଅସଂଖ୍ୟ ମୃତ୍‌କୂଟ (କାନ୍ତି) ଥିଲା । ଉକ୍ତ ମୃତ୍‌କୂଟ ସମଗ୍ର ଓଡ଼ିଶାରେ—ତମଲୁକଠାରୁ ଗଞ୍ଜାମ ପର୍ଯ୍ୟନ୍ତ ଜନପଦ ଏବଂ କାଳକ୍ରମରେ ବିଧ୍ୱସ୍ତ ପୂର୍ବ ଜନପଦମାନଙ୍କରେ—ଏ କାଳ ପର୍ଯ୍ୟନ୍ତ ବିଦ୍ୟମାନ ଥାଇ ଖଣ୍ଡାୟତମାନଙ୍କର କ୍ଷତ୍ରିୟ-ମୌଳିକତ୍ୱର ପ୍ରମାଣ ଦେଉଅଛି । କାନ୍ତି ସବ୍‌ଡିଭିଜନରେ ଏବମ୍ବିଧ ମୃତ୍ତିକା ସ୍ତୂପରୁ କାନ୍ତି ନାମ ହୋଇଅଛି । କାନ୍ତିର ୧.୨ କ୍ରୋଶ ଉତ୍ତରରେ ପାଦୁକବାଡ଼ ଗ୍ରାମରେ, ନିଜ କାନ୍ତି ସହରରେ ଏବଂ ଘାଟ-ଖେଜୁର ନିକଟରେ ପ୍ରକାଣ୍ଡ ମୃତ୍ତିକାସ୍ତୂପମାନ (କାନ୍ତି) ଲେଖକ ସ୍ୱଚକ୍ଷୁରେ ଦେଖିଅଛି । ପାଦୁକ-ବାଡ଼ ଗ୍ରାମରେ ଭୀମସାଗର ଓ ଖଣ୍ଡାୟତ ଭୀମ ରାଉତରାୟ ଖଣ୍ଡପତିଙ୍କର ୧୬ଶତ ଖ୍ରୀଷ୍ଟାବ୍ଦରେ ନିର୍ମିତ ଭଗ୍ନ ଜଗନ୍ନାଥ ମନ୍ଦିରରେ ଅବସ୍ଥି ଉତ୍କଳାକ୍ଷରାଙ୍କିତ ସଂସ୍କୃତଶ୍ଲୋକ-ଶିଳାଲିପି ଖଣ୍ଡାୟିତ ଆଧିପତ୍ୟର ସାକ୍ଷ୍ୟ ଧରି ବସିଅଛି ।

"ଯାହାଁ ଯାହାଁ ଭୂୟାଁ ତାହାଁ ତାହାଁ କାନ୍ତି ।"

ବର୍ତ୍ତମାନ ଖଣ୍ଡାୟିତମାନଙ୍କ ମଧ୍ୟରେ କୁଳପରିଚୟ କାଳରେ "କେଉଁ କାନ୍ତିର ଖଣ୍ଡାୟିତ" ବୋଲି ସ୍ୱତଃ ପ୍ରଶ୍ନ ଉଠିଥାଏ । ଯେଉଁ ଖଣ୍ଡାୟିତ କାନ୍ତିର ପରିଚୟ ଦେଇ ନ ପାରେ, ସେ ଅକୁଳୀନ ବୋଲାଏ । ମୃତ୍‌କୂଟ (କାନ୍ତି) କ୍ଷତ୍ରିୟପୀଠସ୍ଥାନ-ପରିଚାୟକ ଚିହ୍ନ । ଅତି ପୂର୍ବକାଳରେ କ୍ଷତ୍ରିୟ-ମାନେ ଏ ଚିହ୍ନ ସଯତ୍ନରେ ରକ୍ଷା କରୁଥିଲେ । ଶିଶୁପାଳବଧ କାବ୍ୟର ତୃତୀୟ ସର୍ଗରେ ଏକ ସ୍ଥାନରେ ଏହି ମୃତ୍‌କୂଟର ଉଲ୍ଲେଖ ଦେଖାଯାଏ । ତାହାର ସ୍ଥୂଳ ମର୍ମ ଏହିପରି—ବେଗରେ ଯାବତ ଯେଉଁ ସମୟରେ ପୁରଦ୍ୱାରସ୍ଥ ମୃତ୍‌କୂଟ ଉପରୁ ରଥମାନ ସାରଥିଗଣ ଚଳିଲୁ ଧୀରେ ଧୀରେ ନେଉଥିଲେ, ସେସମୟରେ ପ୍ରଯତ୍ନପୂର୍ବକ ଧୃତ ରଶ୍ମି ଟାଣି ଧରି ଥିବାରୁ ଅଶ୍ୱମାନଙ୍କ ଗ୍ରୀବା ବକ୍ର ହୋଇଥିଲା ଏବଂ ସାବଧାନରେ ଯୁଦ୍ଧ ଦିଆ ହୋଇଥିଲା ।

ଉତ୍କଳ ଖଣ୍ଡାୟିତମୟ—କ୍ଷତ୍ରିୟକୁଳଚିହ୍ନିତ କୂଟ-ମୟ ହୋଇଥିଲା । ଯଥା, ଭାଗକୂଟ, ପକ୍ଷକୂଟ, ଖଲକୂଟ, ଶାଲକୂଟ, ପୂର୍ବକୂଟ, ବ୍ରହ୍ମକୂଟ,

ଯଗନ୍ନୂଟ, ଗଜକୂଟ ଇତ୍ୟାଦି । ପୁଣି ଖଣ୍ଡ—ଆୟତ୍ତ ଖଣ୍ଡାୟତ୍ତ ଯଦି ବୋଲାଯାଏ, ତେବେ ତାହାର ପ୍ରମାଣର ମଧ୍ୟ ଅଭାବ ନାହିଁ । ଯଥା, ଲୁଣଖଣ୍ଡ, ବାଲିଖଣ୍ଡ, କଣ୍ଢାଳଖଣ୍ଡ, ରୂପଖଣ୍ଡ, ଦେବଖଣ୍ଡ ଇତ୍ୟାଦି । ଖଣ୍ଡ ବୋଲି, ଖଣ୍ଡା ବୋଲି, ଖଣ୍ଡାୟତମାନେ ସମଗ୍ର ଓଡ଼ିଶାର ଖଣ୍ଡପତି—ଭୂସ୍ୱାମୀ ଏବଂ ସାମରିକ ଜାତି ଥିବାରୁ ଏ ରାଜ୍ୟ ଖଣ୍ଡାୟତପ୍ରଧାନ ରାଜ୍ୟ ହେଲା । ମାନ୍ ସିଂହ ବା ଛତ୍ର ନାମ ଅମୂଲ୍ୟ ରହିଲା । ହିନ୍ଦୁର ଲୁପ୍ତ ସନ୍ତାନମାନଙ୍କର ଲୁପ୍ତ ଅନୁଭୂତି ଖଣ୍ଡାୟତମାନେ ଲୋପ କରି ପାରିଲେ ନାହିଁ ।

କ୍ରମଶଃ

ଶ୍ରୀ ଭୋଳାନାଥ ସାମନ୍ତରାୟ

---

## ତଡ଼ିତ୍-ରସାୟନ ।

ଯେଉଁ ବିଦ୍ୟାଦ୍ୱାରା ତଡ଼ିତ୍-ବଳରେ ରାସାୟନିକ ପରିବର୍ତ୍ତନ ସଂଘଟନ କରାଯାଏ, ତାହାକୁ ତଡ଼ିତ୍-ରସାୟନ କହନ୍ତି । ବ୍ୟାଟେରି (ତଡ଼ିତ୍-ଉତ୍ପାଦକ ଯନ୍ତ୍ର) ସଂଯୋଗରେ ଗିଲ୍ଟିକରଣ ଅର୍ଥାତ୍ ବୈଦ୍ୟୁତିକ ଶକ୍ତିଦ୍ୱାରା ଗୋଟିଏ ଧାତୁମୟ ଦ୍ରବ୍ୟକୁ ଅନ୍ୟ ଧାତୁରେ ମଣ୍ଡିତକରଣ ଓ କୌଣସି ଖୋଦିତ ଲିପି ବା ଚିତ୍ର ବା ପ୍ରତିମୂର୍ତ୍ତି ଇତ୍ୟାଦି ଉପରେ ତଡ଼ିତ୍-ଶକ୍ତିର ସାହାଯ୍ୟରେ ଧାତୁମୟ ଦ୍ରବ୍ୟର ସ୍ତର ଜମାଇ ତହିଁର ଅବିକଳ ପ୍ରତିରୂପ ପ୍ରସ୍ତୁତ କରିବା ଇତ୍ୟାଦି ପ୍ରକ୍ରିୟାମାନ ତଡ଼ିତ୍-ରସାୟନର ଅନ୍ତର୍ଗତ । ତଡ଼ିତ୍-ରସାୟନ ବିଦ୍ୟାଦ୍ୱାରା ଚିତ୍ରଖୋଦନ, ଗିଲ୍ଟିକରଣ ଇତ୍ୟାଦି ଶିଳ୍ପମାନଙ୍କର ପ୍ରଭୂତ ଉନ୍ନତି ଓ ପାରିପାଟ୍ୟ ସାଧିତ ହୋଇଅଛି । ଇତିପୂର୍ବେ ଏହି ଶିଳ୍ପମାନ ଯେଉଁ ପ୍ରଥାରେ ପରିଚାଳିତ ହେଉଥିଲା, ତାହା ସହିତ ଆଧୁନିକ ତଡ଼ିତ୍-ରସାୟନ-ପ୍ରକ୍ରିୟାର ତୁଳନା କଲେ ଏହି ନବ ବିଦ୍ୟାର ଉତ୍କର୍ଷ ସହଜରେ ଉପଲବ୍ଧ ହେବ ।

ବର୍ତ୍ତମାନ ପ୍ରତିରୂପ-ଗ୍ରହଣ ଶିଳ୍ପ-ବିଦ୍ୟାର ପର୍ଯ୍ୟାଲୋଚନା କରି ଦେଖାଯାଉ । ପୁରାତନ ପ୍ରକ୍ରିୟାରେ ଧାତୁ ବା ଅନ୍ୟ କୌଣସି ଦ୍ରବ୍ୟ ତରଳ ଅବସ୍ଥାରେ ଛାଞ୍ଚ ଉପରେ ଢଳା ହେଉଥିଲା ଓ ତାହା ଜମି ଯାଇ କଠିନ ହେଲାରୁ ଉଠାଇ ନିଆ ଯାଉଥିଲା । ତରଳ ଅବସ୍ଥାରେ ଗଳିତ ଧାତୁ ଛାଞ୍ଚର ସନ୍ଧି, ଫାଟ ଓ ଛିଦ୍ର ମଧ୍ୟରେ ପ୍ରବିଷ୍ଟ ହୋଇଯାଏ ଓ ପରେ କଠିନ ହେବା ସମୟରେ ଛାଞ୍ଚର ଆକାର ଅନୁସାରେ ଛାଞ୍ଚ ମଧ୍ୟସ୍ଥ ଧାତୁର ଆକାର ଗଠିତ ହୋଇ ଛାଞ୍ଚର ନକ୍ସା ପ୍ରସ୍ତୁତ ହୁଏ । ଏଥିରେ ଦୁଇଟି ପ୍ରଧାନ ଅସୁବିଧା ଅଛି ।—(୧) ଧାତୁ ପର୍ଯ୍ୟାପ୍ତ ତରଳତା ପ୍ରାପ୍ତ ହେବା ସକାଶେ ଅତ୍ୟନ୍ତ ଉତ୍ତାପ ଆବଶ୍ୟକ ; ଅନ୍ୟଥା ଧାତୁ ଛାଞ୍ଚ ମଧ୍ୟରେ ପ୍ରବେଶ କରି ପାରିବ ନାହିଁ ଓ ତାହା ହେଲେ ନକ୍ସା ଉଠିବା ଅସମ୍ଭବ । ଅତଏବ ଛାଞ୍ଚ ଓ ଅନ୍ୟାନ୍ୟ ପ୍ରୟୋଜନୀୟ ବାସନ ଇତ୍ୟାଦି ଯଥେଷ୍ଟ ଉତ୍ତାପସହ ହେବା ଆବଶ୍ୟକ । କିନ୍ତୁ ଏପରି ଘଟି ପାରିବା ସର୍ବଦା ସୁକର ନୁହେ । (୨) କୌଣସି ପଦାର୍ଥ ଯଥେଷ୍ଟ ତରଳ ହେଲେ ସୁଦ୍ଧା ପରସ୍ପର ଆକର୍ଷଣ (cohesion) ହେତୁରୁ ତାହାର ଅଣୁମାନ (molecules) (ପିଚ୍ଛିଳ ହେଲେ ମଧ୍ୟ) ସହଜରେ ପୃଥକ୍ ହୋଇ ପାରେ ନାହିଁ । ଅତଏବ ଛାଞ୍ଚ ମଧ୍ୟରେ ଯଦି ଅତ୍ୟନ୍ତ ସୂକ୍ଷ୍ମ-ଫାଟ ବା ଗାର ବା ସରୁ ଛିଦ୍ର ଇତ୍ୟାଦି ଥାଏ, ତାହା ହେଲେ ତରଳ ଧାତୁ ତହିଁ ମଧ୍ୟରେ ପ୍ରବେଶ କରି ନ ପାରି ଫାଟ ଓ ଗାର ମୁହଁରେ ସେତୁ ପ୍ରାୟ ଅବସ୍ଥାନ କରେ । ଯଦି ଧାତୁର କେତେ ଅଂଶ ବିଚ୍ଛିନ୍ନ ହୋଇ ପାରନ୍ତା, ତାହା ହେଲେ ଛିଦ୍ରଗୁଡ଼ିକ ପୂର୍ଣ୍ଣ ହୁଅନ୍ତା । ଆଣବିକ ଆକର୍ଷଣ (cohesion) ନ ଥିଲେ ଗୋଟିଏ ପରମାଣୁ-ପରସ୍ପର ସ୍ଥାନ ସୁଦ୍ଧା

ଅପୂର୍ଣ୍ଣ ରହି ପାରନ୍ତା ନାହିଁ । କିନ୍ତୁ ଏହି ଆକର୍ଷଣ ବଳରେ କୋଟି କୋଟି ପରମାଣୁ ପରସ୍ପର ସ୍ଥାନ ମଧ୍ୟ ଶୂନ୍ୟ ରହି ଯାଏ । ଅଧିକନ୍ତୁ ଅନେକ ସମୟରେ ଛାଞ୍ଚସଂଲଗ୍ନ ବାୟୁ ସ୍ତର ଛାଞ୍ଚରେ ଦୃଢ଼ ଭାବରେ ଲାଗି ରହି ତରଳ ଧାତୁର ତଳ ଦେଶରେ ରହି ଯାଇପାରେ । ଏପରି ଅବସ୍ଥାରେ ଆବଦ୍ଧ ବାୟୁ ତରଳ ଧାତୁ ଓ ଛାଞ୍ଚର ସମ୍ୟକ୍ ସଂସର୍ଗରେ ବାଧା ଦେଇ ପ୍ରତିଲିପି ଉଠିବା ବିଷୟରେ ସମ୍ପୂର୍ଣ୍ଣ ବିଘ୍ନ ଜାତ କରେ ।

ଏହି କାରଣବଶତଃ ତରଳ ଧାତୁ ଢାଳିବା ପ୍ରକ୍ରିୟାରେ ଛାଞ୍ଚର ନକଲ ଅବିକଳ ପ୍ରସ୍ତୁତ କରା ଯାଇ ପାରେ ନାହିଁ । ଅତଏବ ପ୍ରକୃଷ୍ଟ ପ୍ରତିଲିପି ଉଠାଇବା ନିମନ୍ତେ ଅପର କୌଣସି ପ୍ରକୃଷ୍ଟତର ଉପାୟ ଉଦ୍ଭାବନ ନାହିଁ ।

୧୮୩୯ ଖ୍ରୀଷ୍ଟାବ୍ଦରେ ରୁଷିୟା ଦେଶରେ ଯେକବି (Jacobi) ଓ ଇଂଲଣ୍ଡର ସ୍ପେନ୍‌ସର (Spencer) ନାମକ ବୈଜ୍ଞାନିକ ଦ୍ୱୟଙ୍କ ଦ୍ୱାରା ସର୍ବାପେକ୍ଷା ଶ୍ରେଷ୍ଠ ତଡ଼ିତ୍-ରସାୟନିକ ପ୍ରକ୍ରିୟା ଆବିଷ୍କୃତ ହୋଇଅଛି । ଏଥିରେ ପୂର୍ବ ପ୍ରକ୍ରିୟାର ପ୍ରଧାନ ଅସୁବିଧା ଦୁଇଟି ନିରାକୃତ ହୋଇଅଛି । ଯଥାଃ—ଏହି ପ୍ରକ୍ରିୟାରେ ଅଧିକ ଉତ୍ତାପ ଆବଶ୍ୟକ ହୁଏ ନାହିଁ । ଏମନ୍ତ କି ଇଚ୍ଛା କଲେ କୌଣସି ଜ୍ୱଳନଶୀଳ ପଦାର୍ଥଦ୍ୱାରା ମଧ୍ୟ ଛାଞ୍ଚ ପ୍ରସ୍ତୁତ କରାଯିବାରେ କିଛି ମାତ୍ର ବାଧା ନାହିଁ । ଦ୍ୱିତୀୟତଃ ଯେଉଁ ପଦାର୍ଥଦ୍ୱାରା ଛାଞ୍ଚ ଗ୍ରହଣ କରାଯାଏ, ତାହା ସୂକ୍ଷ୍ମତମ ଭାଗରେ ବିଭକ୍ତ ହୋଇ ଛାଞ୍ଚରେ ସଂଲଗ୍ନ ହେବାରୁ ତହିଁର ସୂକ୍ଷ୍ମାତିସୂକ୍ଷ୍ମ ଛିଦ୍ରମାନ ସୁଦ୍ଧା ପୂର୍ଣ୍ଣ ହୁଏ । ଯାହୁ ଏ ପ୍ରକ୍ରିୟାରେ ଛାଞ୍ଚ ଉପରେ ସ୍ତର ବାନ୍ଧିବା ସମୟରେ ପୂର୍ବ ପ୍ରକ୍ରିୟାର ତରଳ ଧାତୁପରି ବିନ୍ଦୁ ବିନ୍ଦୁ ହୋଇ ସଂଲଗ୍ନ ନ ହୋଇ ଗୋଟିଏ ଗୋଟିଏ ପରମାଣୁ ଆକାରରେ ସଂଲଗ୍ନ ହୁଏ । ଅତଏବ ପରମାଣୁପରସ୍ପର ସୂକ୍ଷ୍ମତମ ଛିଦ୍ର ଥିଲେ ମଧ୍ୟ ତାହା ମଧ୍ୟରେ ଧାତ୍ୱଂଶ ପ୍ରବିଷ୍ଟ ହୋଇଥାଏ । ଏହାଦ୍ୱାରା ଯଥାର୍ଥ ପ୍ରତି-ଲିପି ଗ୍ରହଣ କରାଯାଇ ପାରେ । କର୍ଦ୍ଦମ ଓ ବାୟୁ-ଜାତ ଧୂଳିର ଯେ ପରିମାଣରେ ପାର୍ଥକ୍ୟ, ପୂର୍ବ ପ୍ରକ୍ରିୟାର ତରଳ ଧାତୁ ଓ ଏହି ପ୍ରକ୍ରିୟାର ସୂକ୍ଷ୍ମ ପାରମାଣବିକ-ଚୂର୍ଣ୍ଣ-ଧାତୁର ସେହି ପରିମାଣରେ ପାର୍ଥକ୍ୟ । ଏହି ପ୍ରକ୍ରିୟାର ବିଶଦ ବର୍ଣ୍ଣନାଦ୍ୱାରା ତାହା ସମ୍ୟକ୍ ଉପଲବ୍ଧି ହେବ ।

ତଡ଼ିତ୍-ରସାୟନ ପ୍ରକ୍ରିୟାରେ ତଡ଼ିତ୍‌ବଳଦ୍ୱାରା ରସାୟନିକ ପରିବର୍ତ୍ତନ ସଂଘଟିତ କରାଇ ଛାଞ୍ଚ ଉପରେ ସୂକ୍ଷ୍ମ ଧାତୁସ୍ତରମାନ ଗଠିତ କରାଯାଏ । ଏହି ଧାତୁସ୍ତର ଯଥେଷ୍ଟ ଦୃଢ଼ ଓ ସ୍ଥୂଳ ହେଲେ ଉଠାଇ ନିଆଯାଏ । ତହିଁରେ ଛାଞ୍ଚର ଅବିକଳ ନକଲ ଉଠି ଆସେ । ଅତଏବ ଏହି ପ୍ରକ୍ରିୟା ସକାଶେ ଗୋଟିଏ ତଡ଼ିତ୍-ଉତ୍ପାଦକ ଯନ୍ତ୍ର ଆବଶ୍ୟକ । ସାଧାରଣ ତଡ଼ିତ୍-ଉତ୍ପାଦକ ଯନ୍ତ୍ରର ଉପାଦାନ:—(୧) ଦୁଇ ଖଣ୍ଡ ବିସଦୃଶ ଧାତୁ, (୨) ଅମ୍ଳାକ୍ତ ବା ଲବଣାକ୍ତ ଜଳ, (୩) ଗୋଟିଏ ଭାଣ୍ଡ, (୪) ଦୁଇ ଖଣ୍ଡ ତମ୍ବାତାର । ତମ୍ବା ତଡ଼ିତ୍-ପ୍ରବାହର ଉତ୍କୃଷ୍ଟ ପରିଚାଳକ ହେବାରୁ ତମ୍ବା-ତାର ବ୍ୟବହୃତ ହୁଏ । ଦୁଇ ଧାତୁ ମଧ୍ୟରୁ ଗୋଟିଏ ଅପରଟି ଅପେକ୍ଷା ପୂର୍ବୋକ୍ତ ଜଳରେ ଅଧିକ ଦ୍ରବଣୀୟ ହେବା ଆବଶ୍ୟକ । ଏହି ପାର୍ଥକ୍ୟ ଯେତେ ଅଧିକ ରକ୍ଷା କରାଯାଏ, ସେତେ ପରିମାଣରେ ପ୍ରବଳ ତଡ଼ିତ୍ ଉତ୍ପନ୍ନ ହୁଏ । ସାଧାରଣତଃ ଦସ୍ତା ଓ ତାମ୍ର ଏହି ଦୁଇ ଧାତୁ ବ୍ୟବହୃତ ହୁଏ । ଅମ୍ଳାକ୍ତ ବା ଲବଣାକ୍ତ ଜଳ ଦସ୍ତାକୁ ଯେପରି ଶୀଘ୍ରତାସହିତ ଖାଇଯାଏ, ତାମ୍ରକୁ ସେତେ ପ୍ରବଳ ଭାବରେ ଆକ୍ରମଣ କରେ ନାହିଁ । ଦୁଇ ଖଣ୍ଡ ବିସଦୃଶ ଧାତୁ ଉପରେ ଅମ୍ଳାକ୍ତ ବା ଲବଣାକ୍ତ ଜଳର ଏହି ବିସଦୃଶ କ୍ରିୟାରୁ ତଡ଼ିତ୍ ଉଦ୍ଭୂତ ହୁଏ । ପୂର୍ବୋକ୍ତ ଭାଣ୍ଡ ମଧ୍ୟରେ ଉକ୍ତ ଜଳ ରଖି ତହିଁରେ ଧାତୁ ଖଣ୍ଡ ଦ୍ୱୟ ପରସ୍ପର ଅସଂଲଗ୍ନଭାବରେ ନିମଜ୍ଜିତ କରି ଲମ୍ବ ଭାବରେ (ଠିଆ କରାଇ) ରଖାଯାଏ । ଅନନ୍ତର ଦୁଇ ଖଣ୍ଡ ତମ୍ବାତାର ଧାତୁଦ୍ୱୟର

ଅନାମଜ୍ଜିତ ଅଂଶରେ ସଂଲଗ୍ନ କରାଯାଏ । ଏ ପର୍ଯ୍ୟନ୍ତ ଜଳ ଧାତୁଦ୍ୱୟ ଉପରେ କିଛି ବିଶେଷ କ୍ରିୟା ପ୍ରକାଶ କରେ ନାହିଁ । ମାତ୍ର ତାରଦ୍ୱୟର ମୁକ୍ତ ପ୍ରାନ୍ତ ଏକତ୍ର କରିବା ମାତ୍ରକେ ଦସ୍ତା ପ୍ରବଳଭାବରେ ଘର୍ଷିତ ହେବାକୁ ଆରମ୍ଭ କରେ । ଏହି ସମୟରେ ତାରର ମୁକ୍ତ ପ୍ରାନ୍ତଦ୍ୱୟ ପରସ୍ପର ଘର୍ଷିତ ହେଲେ ଅଗ୍ନି ସ୍ଫୁଲିଙ୍ଗ ଦେଖାଯାଏ ଓ ଜିହ୍ୱାରେ ସ୍ପର୍ଶ କରାଇଲେ ଲବଣାସ୍ୱାଦ ଅନୁଭୂତ ହୁଏ । ଏହି ସମସ୍ତ ପରୀକ୍ଷାଦ୍ୱାରା ଜଣାଯାଏ ଯେ ତାର ମଧ୍ୟରେ କୌଣସି ଗୋଟିଏ ନୂତନ ଶକ୍ତିର ଆବିର୍ଭାବ ହୋଇଅଛି । ଏହା ତଡ଼ିତ୍-ଶକ୍ତି । ଅମ୍ଳାକ୍ତ ବା ଲବଣାକ୍ତ ଜଳରେ ଦସ୍ତା ସଂସ୍ପର୍ଶରୁ ରସାୟନିକ କ୍ରିୟା ସଂଘଟିତ ହୁଏ । ତାହାର ଫଳସ୍ୱରୂପ ସଂସ୍ପର୍ଶସ୍ଥାନରେ ଦସ୍ତାଖଣ୍ଡ ଉକ୍ତ ଜଳରେ ଦ୍ରବ ହୋଇ ଯାଏ ଓ ସେହି ଜଳର ଅମ୍ଳତ୍ୱ ବା ଲବଣତ୍ୱ ନଷ୍ଟ ହୁଏ । ନିମଜ୍ଜିତ ତାମ୍ର ସହିତ ବହିର୍ଦେଶରୁ ଧାତବ ସଂଯୋଗ ଘଟିଲେ ଏହି ରସାୟନିକ କ୍ରିୟା ଅତ୍ୟନ୍ତ ପ୍ରବଳ ଭାବରେ ଆରମ୍ଭ ହୁଏ ଓ ତତ୍‌ସହିତ ତଡ଼ିତ୍ ଉତ୍ପନ୍ନ ହୋଇ ଜଳ ମଧ୍ୟରେ ଦସ୍ତା ଓ ଜଳର ସଂସ୍ପର୍ଶସ୍ଥାନରୁ ତାମ୍ରଖଣ୍ଡ ଆଡ଼କୁ ପ୍ରବାହିତ ହୁଏ ଏବଂ ସେହି ତାମ୍ରଖଣ୍ଡ ଅବଲମ୍ବନ କରି ବହିର୍ଦେଶସ୍ଥ ତାର ବାଟେ ଦସ୍ତାଖଣ୍ଡ ଦେଇ ବୁଲି ଆସି ପୁନଶ୍ଚ ସ୍ୱକୀୟ ଉତ୍ପତ୍ତି ସ୍ଥାନକୁ ଫେରି ଆସେ । ଯେତେବେଳଯାଏ ତାରର ପ୍ରାନ୍ତଦ୍ୱୟ ସଂଯୁକ୍ତ ଥାଏ, ସେତେବେଳଯାଏ ଏହି କ୍ରିୟା ଚାଲୁଥାଏ । ତାରର ମୁକ୍ତ ପ୍ରାନ୍ତଦ୍ୱୟ ଘର୍ଷିତ ହେଲା ବେଳେ ଦୁହିଙ୍କ ମଧ୍ୟରେ ପରସ୍ପରର ଅଣୁମାତ୍ର ବ୍ୟବହିତ ସ୍ଥାନମାନଙ୍କରେ ତାମ୍ରଖଣ୍ଡ ଅଭିମୁଖ ପ୍ରବହମାନ ତଡ଼ିତ୍ ତତ୍‌ସଂଲଗ୍ନ ତାରରୁ ଅନ୍ୟ ତାରକୁ ଯିବାର ପ୍ରୟାସ କଲାବେଳେ ଉକ୍ତ ବ୍ୟବଧାନ ହେତୁରୁ ବାଧା ପ୍ରାପ୍ତ ହୁଏ । ସେହି ଯୋଗୁଁ ତାରର ପ୍ରାନ୍ତଦେଶରେ ତାପ ଉତ୍ପନ୍ନ ହୁଏ ଓ ଧାତୁମୟ କଣାମାନ ବିଚ୍ଛିନ୍ନ ହୋଇ ତଡ଼ିତ୍ ପ୍ରବାହ ଯୋଗେ ଅପର ତାର ଉପରେ ସବେଗରେ ନିପତିତ ହୁଏ । ଏହି ହେତୁରୁ ଅଗ୍ନି ସ୍ଫୁଲିଙ୍ଗ ଦୃଷ୍ଟ ହୋଇଥାଏ । ଜିହ୍ୱାରେ ତାରର ପ୍ରାନ୍ତଦ୍ୱୟ ସ୍ପର୍ଶ କରାଇଲେ ଯେଉଁ ଲବଣାସ୍ୱାଦ ଅନୁଭୂତ ହୁଏ, ତାହାର କାରଣ ତଡ଼ିତ୍ ଯୋଗରେ ଜିହ୍ୱାରସର ଲବଣ ଭାଗ ବିଶ୍ଳିଷ୍ଟ ହୋଇ ଯାଏ ।

ଏହି ତଡ଼ିତ୍-ଉତ୍ପାଦକ ଯନ୍ତ୍ରକୁ ତଡ଼ିତ୍-କୋଷ ( cell ) କହାଯାଏ । ଏହିପରି ଦୁଇ ବା ତତୋଽଧିକ କୋଷର ଏକତ୍ର ସମାବେଶ ହେଲେ ତାହାକୁ ବ୍ୟାଟେରି (battery) କହନ୍ତି । ଅନେକ ସମୟରେ ଗୋଟିଏ କୋଷରୁ କାର୍ଯ୍ୟୋପଯୋଗୀ ଯଥେଷ୍ଟ ତଡ଼ିତ୍ ଉତ୍ପନ୍ନ ହୋଇ ପାରେ ନାହିଁ । ଏ ଅବସ୍ଥାରେ ବ୍ୟାଟେରି ବ୍ୟବହୃତ ହୁଏ ।

କୋଷର ବହିଃସ୍ଥିତ ତାରଦ୍ୱୟର ମୁକ୍ତ ପ୍ରାନ୍ତମାନ ଅସଂଲଗ୍ନ ରଖା ଗଲେ ତଡ଼ିତ୍-ପ୍ରବାହ ସ୍ଥଗିତ ହୋଇ ଯାଏ । କିନ୍ତୁ ଯଦି ମୁକ୍ତ ପ୍ରାନ୍ତ ଦ୍ୱୟ କୌଣସି ତଡ଼ିତ୍-ପରିଚାଳକ ବସ୍ତୁ (conductor) ସହିତ ସଂଯୁକ୍ତ କରାଯାଏ, ତାହା ହେଲେ ସେମାନେ ପରସ୍ପର ଅସଂଲଗ୍ନ ଥିଲେ ସୁଦ୍ଧା ତଡ଼ିତ୍-ପ୍ରବାହ ପୁନରାୟ ଆରମ୍ଭ ହୁଏ । ତଡ଼ିତ୍-ପରିଚାଳକ ବସ୍ତୁ ନାନାପ୍ରକାର । ତନ୍ମଧ୍ୟରେ କେତେକ କଠିନ (solid ) ଯଥା, ଧାତବ ପଦାର୍ଥ; କେତେକ ତରଳ (liquid) ଯଥା, ଲବଣାକ୍ତ ବା ଅମ୍ଳାକ୍ତ ଜଳ ଓ କେତେକ ବାଷ୍ପାକାର (gaseous ) ଯଥା, ଜଳଜାନ ବାଷ୍ପ । ଏମାନଙ୍କ ମଧ୍ୟରେ ପୁଣି କେତେକ ମୌଳିକ (elements ) କେତେକ ଯୌଗିକ ( compounds ) ଅର୍ଥାତ୍ କେତେକ ପଦାର୍ଥ ଏକ ପ୍ରକାର ମୂଳ ଭୂତରେ ( elementary substance ) ଗଠିତ ଓ କେତେକ ପଦାର୍ଥ ଦୁଇ ବା ତତୋଽଧିକ ମୂଳ ଭୂତର ( elementary substance ) ରସାୟନିକ ସଂଯୋଗରୁ (chemical combination ) ଜାତ । ତଡ଼ିତ୍-ପରିଚାଳକ (conducting) ତାରଦ୍ୱୟର ପ୍ରାନ୍ତମାନଙ୍କୁ କୌଣସି ତରଳୀଭୂତ ଯୌଗିକ (compound)

ପରିଚାଳକ ସହିତ ପରସ୍ପର ଅସଂଲଗ୍ନ ଭାବରେ ସଂଯୁକ୍ତ କଲେ ଦେଖାଯାଏ ଯେ ଉକ୍ତ ପରିଚାଳକ ମଧ୍ୟରେ ତଡ଼ିତ୍ ପ୍ରବାହିତ ହେବା ସମୟରେ ତାହା ଉପରେ ତଡ଼ିତ୍-ଶକ୍ତିର ରସାୟନିକ କ୍ରିୟା ଦ୍ୱାରା ତାହାର ମୂଳୀଭୂତ ଉପାଦାନମାନ (elementary constituents) ବିଶ୍ଳିଷ୍ଟ ହୋଇ ଯାଏ । ଏହି ମୂଳପଦାର୍ଥମାନଙ୍କ ମଧ୍ୟରୁ କେତେକ (electro-positive) ପ୍ରବହମାନ ତଡ଼ିତ୍ ସହିତ ଦସ୍ତା ଖଣ୍ଡରେ ଲାଗିଥିବା ତାର ଆଡ଼କୁ ଓ କେତେକ (electro-negative) ତଡ଼ିତ୍-ପ୍ରବାହ ବିପରୀତ ଦିଗରେ ତାମ୍ରଖଣ୍ଡଲଗ୍ନ ତାର ଆଡ଼କୁ ଚାଳିତ ହୋଇ ଉକ୍ତ ତାରଦ୍ୱୟର ପ୍ରାନ୍ତ-ଦେଶରେ ଜମା ହୁଏ । ତଡ଼ିତ୍ ସଂଯୋଗରେ ଛାଞ୍ଚର ପ୍ରତିରୂପ ପ୍ରସ୍ତୁତ କରିବା ଓ ଗିଲ୍ଟି କରଣାଦି ପ୍ରକ୍ରିୟାମାନ ତଡ଼ିତ୍-ଶକ୍ତିର ଯୌଗିକ ପଦାର୍ଥମାନଙ୍କ ଏହିପରି ଦୁଇଭାଗରେ ବିଶ୍ଳିଷ୍ଟ କରିବାର କ୍ଷମତାସାପେକ୍ଷ । ମୋହର ପ୍ରତିରୂପ ଧାତୁମୟ ଦ୍ରବ୍ୟରେ ଗ୍ରହଣ କଲେ ତାହା ସ୍ଥାୟୀ ଓ ଦୃଢ଼ ହୁଏ । ଏଥି ପାଇଁ କୌଣସି ଧାତୁମୟ ପଦାର୍ଥକୁ ବିଶ୍ଳିଷ୍ଟ କରି ତାହାର ଧାତ୍ୱଂଶ ପ୍ରବାହିତ ତଡ଼ିତ୍-ଦ୍ୱାରା ଛାଞ୍ଚ ଉପରେ ଜମାଇ ସେହି ଧାତୁ-ସ୍ତର-ଦ୍ୱାରା ପ୍ରତିରୂପ ଗୃହୀତ ହୁଏ । ତାମ୍ର ତଡ଼ିତର ଉତ୍କୃଷ୍ଟ ପରିଚାଳକ । ଏହି ହେତୁରୁ ସାଧାରଣତଃ ଏହି ଧାତୁଘଟିତ ତରଳପଦାର୍ଥ ବିଶ୍ଳିଷ୍ଟ କରି ତାମ୍ର ପରମାଣୁଗୁଡ଼ିକ ଛାଞ୍ଚ ଉପରେ ଜମାଇ ପ୍ରତିରୂପ ଗ୍ରହଣ କରାଯାଏ ।

ତୁତିଆ ଅତି ସହଜପ୍ରାପ୍ୟ ପଦାର୍ଥ । ଗନ୍ଧକ ଦ୍ରାବକରେ (ସଲ୍‌ଫ୍ୟୁରିକ ଏସିଡ୍—sulphuric acid) ତାମ୍ରକୁ ଉତ୍ତାପ ସଂଯୋଗରେ ଦ୍ରବ କଲେ ଗୋଟିଏ ନୀଳବର୍ଣ୍ଣ ଜଳ ଉତ୍ପନ୍ନ ହୁଏ । ଏହି ଜଳକୁ ଶୁଷ୍କ କଲେ ତହିଁରୁ ତୁତିଆ ଦାନା (crystals of copper sulphate or blue vitriol) ମିଳେ । ଅତଏବ ତୁତିଆ ଗୋଟିଏ ତାମ୍ରଘଟିତ ରସାୟନିକ ଯୌଗିକ (a compound of copper) ପଦାର୍ଥ । ତୁତିଆ ଜଳରେ ଲୌହମୟ ପଦାର୍ଥ ନିମଜ୍ଜିତ କଲେ ତାହା କିଛିକ୍ଷଣ ମଧ୍ୟରେ ତାମ୍ର ମଣ୍ଡିତ ହୋଇଯାଏ । ଏହାର କାରଣ ତୁତିଆର ଅମ୍ଳାଂଶ (the acid radical) ସହିତ ଲୌହ ସଂଯୁକ୍ତ ହୋଇ ତାମ୍ରକୁ ବିଶ୍ଳିଷ୍ଟ କରିଦିଏ । ଅତି ସହଜରେ ତାମ୍ରାଂଶ ବିଶ୍ଳିଷ୍ଟ ହୋଇ ଯିବାରୁ ଅଧିକନ୍ତୁ ଅତି ସହଜ ପ୍ରାପ୍ୟ ହେବାରୁ ତାମ୍ରଘଟିତ ଏହି ଯୌଗିକ ପଦାର୍ଥ ବିଶ୍ଳିଷ୍ଟ କରାଯାଇ ଛାଞ୍ଚର ପ୍ରତିରୂପ ପ୍ରସ୍ତୁତ କରାଯାଏ ।

ପୂର୍ବେ କଥିତ ହୋଇଅଛି ଯେ ତଡ଼ିତ୍ ଯୋଗେ ଯୌଗିକ ପଦାର୍ଥମାନ ଦୁଇ ଭାଗରେ ବିଶ୍ଳିଷ୍ଟ ହୋଇ ଦୁଇ ଆଡ଼କୁ ପରିଚାଳିତ ହୁଅନ୍ତି । ତୁତିଆଜଳକୁ ବିଶ୍ଳିଷ୍ଟ କରିବା ସମୟରେ ଦେଖାଯାଏ ଯେ ତହିଁର ଧାତ୍ୱଂଶ (the metalic part ) ତଡ଼ିତ୍-ପ୍ରବାହ ସହ ପରିଚାଳିତ ହୋଇ ଦସ୍ତାଲଗ୍ନ ତାର ଉପରେ ଜମା ହୁଏ ଓ ଅମ୍ଳାଂଶ (the acid radical) ବିପରୀତ ଦିଗର ଅପର ତାର ଆଡ଼କୁ ଚାଳିତ ହୋଇ ଥାଏ ଓ ସେହି ତମ୍ବାତାର ସହିତ ସଂଶ୍ଳିଷ୍ଟ ହୋଇ ଯେଉଁ ପରିମାଣ ତାମ୍ରାଂଶ ତୁତିଆରୁ ବିଶ୍ଳିଷ୍ଟ ହୋଇଅଛି, ଠିକ ସେହି ପରିମାଣ ଅଂଶ ଉକ୍ତ ତମ୍ବାତାରରୁ ବିଚ୍ଛିନ୍ନ କରି ତୁତିଆର ତାମ୍ରାଂଶର କ୍ଷତି ପୂରଣ କରିବାକୁ ଚେଷ୍ଟା କରେ । ଏହି ହେତୁରୁ ଦସ୍ତାଲଗ୍ନ ତାର କ୍ରମେ କ୍ରମେ ସ୍ଥୂଳତର ହୁଏ, କିନ୍ତୁ ତାମ୍ରଲଗ୍ନ ତାର ଅମ୍ଳାଂଶଦ୍ୱାରା କ୍ଷୟିତ ହୋଇ କ୍ରମେ କ୍ରମେ ସୂକ୍ଷ୍ମତର ହୋଇ ଯାଏ । ସୁତରାଂ ତାମ୍ରଲଗ୍ନ ତାରର କ୍ଷୟ ଦ୍ୱାରା ଦସ୍ତାଲଗ୍ନ ତାର ତାମ୍ରମଣ୍ଡିତ ହୁଏ ।

ଏହି ସମୟରେ ଯଦି ଦସ୍ତାଲଗ୍ନ ତାରର ପ୍ରାନ୍ତଦେଶ ତୁତିଆଜଳରେ ନିମଜ୍ଜିତ ନ କରି ତହିଁରେ ଅପର କୌଣସି ତଡ଼ିତ୍-ପରିଚାଳକ କଠିନ ବସ୍ତୁ (a solid conductor) ସଂଲଗ୍ନ କରି ତାହା ଉକ୍ତ ଜଳରେ ନିମଜ୍ଜିତ କରାଯାଏ, ତାହା ହେଲେ ସେହି ପରିଚାଳକ କଠିନ ବସ୍ତୁ

ମଧ୍ୟ ତୁତିଆର ତାମ୍ରାଂଶ ଦ୍ୱାରା ମଣ୍ଡିତ ହୁଏ ଏବଂ ଯଦି ବିଦ୍ୟୁତ୍ ପରିଚାଳକ ଗୋଟିଏ ଛାଞ୍ଚ ହୋଇଥାଏ, ତାହା ହେଲେ ତୁତିଆର ତାମ୍ରାଂଶ ସେହି ଛାଞ୍ଚ ଉପରେ ଜମିଯାଏ ।

ତୁତିଆର ପ୍ରତ୍ୟେକ ଅଣୁ (molecule) କେତେ ଗୁଡ଼ିଏ ମୂଳ ପରମାଣୁର [elementary atoms] ସମଷ୍ଟିରେ ଗଠିତ । ଏହି ପରମାଣୁଗୁଡ଼ିକ ଯୌଗିକ ସଂଶ୍ଳେଷଣ [ chemical affinity ] ଦ୍ୱାରା ଏକତ୍ରୀଭୂତ ହୋଇ ରହେ । ଅତଏବ ତୁତିଆ ବିଶ୍ଳିଷ୍ଟ ହେବା ସମୟରେ ତାହାର ପ୍ରତ୍ୟେକ ଅଣୁର ଉପାଦାନୀଭୂତ ଏହି ବିଭିନ୍ନ ପରମାଣୁଗୁଡ଼ିକ ପୃଥକ୍ ହୋଇ ତଡ଼ିତ୍ ଦ୍ୱାରା ବିଭିନ୍ନ ଦିଗରେ ସଞ୍ଚାରିତ ହୁଏ । ତହିଁ ମଧ୍ୟରେ ଯେତେ ତାମ୍ର ପରମାଣୁ ଥାଏ, ସେ ଗୁଡ଼ିକ ଛାଞ୍ଚ ଉପରେ ଜମି ଯାଏ । ଏହି ଉପାୟରେ ପାରମାଣବିକ ସୂକ୍ଷ୍ମ ତାମ୍ରାଂଶ ଦ୍ୱାରା ଛାଞ୍ଚ ଉପରେ ଧାତୁସ୍ତର ଗଠିତ ହୁଏ । ଏହି କଳ୍ପନାତୀତ ସୂକ୍ଷ୍ମାଦପି ସୂକ୍ଷ୍ମତମ ଚୂର୍ଣ୍ଣାବସ୍ଥାରେ ତାମ୍ରାଂଶ ଛାଞ୍ଚର ପ୍ରତ୍ୟେକ ଅଂଶରେ ବ୍ୟାପ୍ତ ହୋଇଯାଏ ଓ ତହିଁରେ ଯେତେ ସୂକ୍ଷ୍ମ ଛିଦ୍ର ବା ରେଖା ଇତ୍ୟାଦି ଥାଉ ପଛକେ, ସେ ସମସ୍ତ ଛିଦ୍ରାଦି ଧାତ୍ୱଂଶଦ୍ୱାରା ପୂର୍ଣ୍ଣ ହୁଏ; ପରମାଣୁ ପରିସରସ୍ଥାନ ମଧ୍ୟ ଅପୂର୍ଣ୍ଣ ରହି ପାରେ ନାହିଁ । ଏତଦ୍ୱାରା ପ୍ରତିଲିପି ସର୍ବାଙ୍ଗସୁନ୍ଦର ଓ ଅବିକଳ ଅନୁରୂପ ହୋଇଥାଏ ।

ତଡ଼ିତ୍ ଯେତେ ସୁଗମରୂପେ ପରିଚାଳିତ ହୋଇ ପାରେ, ପ୍ରତିରୂପ ସେତେ ଉତ୍କୃଷ୍ଟ ହୁଏ । କିନ୍ତୁ ସାଧାରଣତଃ କାଷ୍ଠ, ଗଟାପର୍ଚ୍ଚା (ରବର), ଲାକ୍ଷା ବା ମହମ ଇତ୍ୟାଦି (ଯେଉଁ ସବୁ ପଦାର୍ଥ ଦ୍ୱାରା ସହଜରେ ଛାଞ୍ଚ ପ୍ରସ୍ତୁତ ହୋଇପାରେ) ତଡ଼ିତର ଉତ୍କୃଷ୍ଟ ପରିଚାଳକ ନୁହନ୍ତି । ଖାଣ୍ଟି ତୁତିଆ ଜଳ ମଧ୍ୟ ତଡ଼ିତର ଉତ୍କୃଷ୍ଟ ପରିଚାଳକ ନୁହେ । ଏହି ଅସୁବିଧାମାନ ଦୂର କରିବା ନିମିତ୍ତ ନିମ୍ନଲିଖିତ [illegible]

ପେନ୍‌ସିଲମାନଙ୍କରେ ଯେଉଁ କୃଷ୍ଣବର୍ଣ୍ଣ ସୀସକପ୍ରାୟ ବସ୍ତୁ ଥାଏ, ତାହା ତଡ଼ିତର ଉତ୍କୃଷ୍ଟ ପରିଚାଳକ । ଏହି ପଦାର୍ଥ 'ଗ୍ରାଫାଇଟ୍,' 'ପ୍ଲମ୍ବେଗୋ,' ବା 'ବ୍ଲାକ୍ ଲେଡ୍' [କୃଷ୍ଣ ସୀସା] ନାମରେ ଅଭିହିତ ହୁଏ । ଗ୍ରାଫାଇଟ୍ ଚୂର୍ଣ୍ଣଦ୍ୱାରା ଛାଞ୍ଚକୁ ମଣ୍ଡିତ କଲେ ତଡ଼ିତ୍-ପରିଚାଳନର ଅତ୍ୟନ୍ତ ସୁବିଧା ହୁଏ । ଗ୍ରାଫାଇଟ୍ ମଧ୍ୟ ଅତି ସହଜରେ ମସୃଣୀୟ । ଅଧିକନ୍ତୁ ଏହାର ଅପର ଗୋଟିଏ ଅସାଧାରଣ ଗୁଣ ଥିବାରୁ ଏହାର ଉପଯୋଗିତା ଅଧିକତର ବୃଦ୍ଧି ପାଏ । ଏହା ସ୍ୱକୀୟ ମସୃଣତାଦ୍ୱାରା ଛାଞ୍ଚ ଓ ତୈଳଲଗ୍ନ ତାମ୍ରର ସଂଘର୍ଷଣରେ (adhesion) ବାଧା ପ୍ରଦାନ କରେ । ଗ୍ରାଫାଇଟ୍ ମଣ୍ଡିତ ଛାଞ୍ଚ ଦେହରେ ତାମ୍ର ଲାଖି ରହି ପାରେ ନାହିଁ ଓ ପ୍ରତିରୂପ ଉଠାଇ ନେଲା ବେଳେ ସାମାନ୍ୟ ତାଡ଼ନାରେ ତାହା ଭାଙ୍ଗି ନ ଯାଇ ଗୋଟାସୁଦ୍ଧା ସମ୍ପୂର୍ଣ୍ଣ ଉଠି ଆସେ । ଦ୍ୱିତୀୟ ଅସୁବିଧା ଦୂରୀକରଣ ନିମିତ୍ତ ତୁତିଆଜଳ ସହିତ ସ୍ୱଳ୍ପ ପରିମାଣ ଗନ୍ଧକ ଦ୍ରାବକ (sulphuric acid) ମିଶ୍ରିତ କରାଯାଏ । ଏହି ଦ୍ରାବକ ତଡ଼ିତର ଉତ୍କୃଷ୍ଟ ପରିଚାଳକ । ଅପରାପର ଅନେକ ଦ୍ରାବକ ମଧ୍ୟ ତଡ଼ିତର ଉତ୍କୃଷ୍ଟ ପରିଚାଳକ । କିନ୍ତୁ ସେମାନଙ୍କ ଦ୍ୱାରା ତୁତିଆର ରାସାୟନିକ ପରିବର୍ତ୍ତନ ଘଟିବା ସମ୍ଭବ । ଗନ୍ଧକ ଦ୍ରାବକ ସଂଯୋଗରୁ ଅମ୍ଳାକ୍ତ ତୁତିଆଜଳ ମଧ୍ୟରେ ତଡ଼ିତ୍ ଅନାୟାସରେ ପରିଚାଳିତ ହୁଏ ।

ତାମ୍ରଖଣ୍ଡନିବଦ୍ଧ ତାରର କ୍ଷୟ ନିବାରଣ ନିମିତ୍ତ ତାହାର ମୁକ୍ତ ପ୍ରାନ୍ତଦେଶରେ ଗୋଟିଏ ଯଥେଷ୍ଟାୟତନ ତାମ୍ରଖଣ୍ଡ ସଂଯୁକ୍ତ କରି ତୁତିଆ-ଜଳରେ ନିମଜ୍ଜିତ କରାଯାଏ । ଏତଦ୍ୱାରା ତୁତିଆ-ଜଳ ମଧ୍ୟ କ୍ଷୀଣବଳ ହୋଇ ପାରେ ନାହିଁ ।

ନାନାପ୍ରକାର ଟେର ଓ ଛାଞ୍ଚର ପ୍ରତିରୂପ ଗ୍ରହଣ କରିବାର ଆବଶ୍ୟକ ହୁଏ । କିନ୍ତୁ ସେଗୁଡ଼ିକୁ ଦୁଇ ଶ୍ରେଣୀରେ ବିଭକ୍ତ କରା ଯାଇ ପାରେ । [illegible]

engraven] ଅର୍ଥାତ୍ ଯେଉଁଥିରେ ଅଭିଲେଖ୍ୟମାନ ଖୋଦିତ [cut] କରାଯାଇ ଗଭୀର ରେଖା-ସମୂହଦ୍ୱାରା ଅଙ୍କିତ ହୋଇଥାଏ । ଅପର ଶ୍ରେଣୀର ଖଣ୍ଡ ଉଚ୍ଚ-ଖୋଦିତ [ engraved in relief] ଅର୍ଥାତ୍ ତାହା ଉପରେ ଅଭିଲେଖ୍ୟମାନ ଖୋଦିତ ନ ହୋଇ ସେହି ଖଣ୍ଡମାନଙ୍କର କେବଳ ଅଂଶ ବର୍ଜନ କରିବାଦ୍ୱାରା ପ୍ରୟୋଜନୀୟ ଅଭିଲେଖ୍ୟ ପ୍ରତିଫଳିତ କରାଯାଇ ଉଚ୍ଚ [embossed] ରେଖାବାଳୀଦ୍ୱାରା ଅଙ୍କିତ ହୋଇଥାଏ ଅତଏବ କୌଣସି ଖଣ୍ଡର ଅବିକଳ ପ୍ରତିରୂପ ପ୍ରସ୍ତୁତ କରିବାକୁ ହେଲେ ତାହାର ପ୍ରଥମ ନକଲର [first impression] ପୁନରାୟ ଗୋଟିଏ ନକଲ [second impression] ପ୍ରସ୍ତୁତ କରିବା ଆବଶ୍ୟକ । କାରଣ, ପ୍ରଥମ ନକଲ [first impression ] ଖଣ୍ଡର ଅନୁରୂପ ହେଲେ ସୁଦ୍ଧା ତାହା ଅବିକଳ ପ୍ରତିରୂପ [copy ] ହୁଏ ନାହିଁ; ପ୍ରଥମ ଶ୍ରେଣୀର ଖଣ୍ଡର ପ୍ରଥମ ନକଲ ଦ୍ୱିତୀୟ ଶ୍ରେଣୀ ପ୍ରାପ୍ତ ହୋଇଯାଏ ଓ ଦ୍ୱିତୀୟ ଶ୍ରେଣୀର ଖଣ୍ଡର ପ୍ରଥମ ନକଲ ପ୍ରଥମ-ଶ୍ରେଣୀ ପ୍ରାପ୍ତ ହୋଇଯାଏ ; ଅର୍ଥାତ୍ ପ୍ରଥମ ନକଲରେ ଖଣ୍ଡର ଉଚ୍ଚ [ raised ] ସ୍ଥାନମାନ ନିମ୍ନ [sunk] ଓ ନିମ୍ନ (sunk ) ସ୍ଥାନମାନ ଉଚ୍ଚ [raised] ହୋଇଯାଏ—କିନ୍ତୁ ପ୍ରଥମ ନକଲର ଅନୁରୂପରେ (second impression of the original) ଏହି ଦୋଷ ସଂଶୋଧିତ ହୁଏ । ଖୋଦିତ ଖଣ୍ଡମାନଙ୍କର ପ୍ରତିରୂପ ଏହିପରି ସୃଷ୍ଟ ହୁଏ । ଏହି ଧାତବ ପ୍ରତିରୂପମାନ କାଷ୍ଠାଦିନିର୍ମିତ ଖଣ୍ଡ ଅପେକ୍ଷା ଅଧିକତର ସ୍ଥିତିଶୀଳ । ଏଣୁ ମୁଦ୍ରାଙ୍କନ କାର୍ଯ୍ୟରେ ଧାତବ ପ୍ରତିରୂପମାନ ତଡ଼ିତ୍-ବଳରେ ପ୍ରସ୍ତୁତ କରାଯାଇ ବ୍ୟବହୃତ ହୁଏ । ଅଧିକନ୍ତୁ ଏହାଦ୍ୱାରା ମୁଦ୍ରାଙ୍କନ ଅଧିକତର ସୁଚାରୁରୂପେ ଓ ଅପେକ୍ଷାକୃତ ଅଳ୍ପ ବ୍ୟୟରେ ମଧ୍ୟ ସମ୍ପନ୍ନ ହୁଏ । ବର୍ତ୍ତମାନ ସଭ୍ୟ ସମାଜରେ ତରଳ-ଧାତୁ-ପ୍ରକ୍ରିୟା ଅପେକ୍ଷା ଉନ୍ନତତର ଆଧୁନିକ ତଡ଼ିତ୍-ରସାୟନିକ ପ୍ରକ୍ରିୟାର ଆଦର ଯଥେଷ୍ଟ ବୃଦ୍ଧି ପାଉଅଛି ଓ ପାଇବାର ମଧ୍ୟ ଯୋଗ୍ୟ । ଆଜି କାଲି ଯେଉଁ ସମସ୍ତ ମୁଦ୍ରିତ ଚିତ୍ରଦ୍ୱାରା ପୁସ୍ତକମାନ ଅଲଙ୍କୃତ ହୋଇଥିବାର ଦେଖାଯାଏ, ତହିଁରୁ ପ୍ରାୟ ଚଉଦ ପଣ ଚିତ୍ର ତଡ଼ିତ୍-ରସାୟନିକ ପ୍ରକ୍ରିୟାରେ ପ୍ରସ୍ତୁତ ତାମ୍ରଫଳକମାନଙ୍କରୁ ମୁଦ୍ରିତ । ଏମନ୍ତ କି ଅନେକ ବଡ଼ ବଡ଼ ପୁସ୍ତକମାନ ଗୋଟା ସୁଦ୍ଧା ଏହି ପ୍ରକ୍ରିୟାଦ୍ୱାରା ପ୍ରସ୍ତୁତ ତାମ୍ରଫଳକମାନଙ୍କରୁ [stereotypes] ମୁଦ୍ରିତ ହୋଇଥାଏ । ଏଥିରେ ମୁଦ୍ରାକର ଅକ୍ଷର ସଂଯୋଜନାରୁ ନିଷ୍କୃତି ପାଏ ; ଭ୍ରମ ପ୍ରମାଦ କିଛି ମାତ୍ର ରହେ ନାହିଁ । ଅତଏବ ପ୍ରୁଫ୍ ସଂଶୋଧନ ବିଶେଷ ଆବଶ୍ୟକ ହୁଏ ନାହିଁ । ମୁଦ୍ରଣ ମଧ୍ୟ ଅତି ସୁଦୃଶ୍ୟ ହୁଏ ଏବଂ ପାଠକର ସୁବିଧା ଯଥେଷ୍ଟ । ଏହି ଅସୁବିଧାମାନ ନ ଥିବାରୁ ପୁନର୍ମୁଦ୍ରଣକାର୍ଯ୍ୟ ଅତି ତତ୍ପରତାସହିତ ସମ୍ପନ୍ନ ହୁଏ । ଏହା ମଧ୍ୟ ନିତାନ୍ତ ଉପେକ୍ଷଣୀୟ ନୁହେ ।

ଶ୍ରୀ ଜଟାଙ୍କବନ୍ଧୁ ବନ୍ଦ୍ୟୋପାଧ୍ୟାୟ ।

---

## ଭାରତୀୟ ଶିକ୍ଷା-ସଂସ୍କାର ।

ମାନବ ଶିକ୍ଷା ଆପେକ୍ଷିକ ଅଟେ । ମାନବ ହୃଦୟରେ ଯେଉଁ ପରିମାଣରେ ବିଶୁଦ୍ଧ ଜ୍ଞାନାଲୋକ ପ୍ରତିଭାତ ହେଉଥିବ, ତାହାର ଶିକ୍ଷା-ପ୍ରଣାଳୀ ମଧ୍ୟ ସେହି ପରିମାଣରେ ପରିମାର୍ଜିତ ହେଉଥିବ । ଭୂମଣ୍ଡଳରେ ଏପରି ଜାତି ଦୁର୍ଲଭ, ଯେଉଁମାନଙ୍କ ମଧ୍ୟରେ କୌଣସି ପ୍ରକାର ଶିକ୍ଷା-ପ୍ରଣାଳୀ ପ୍ରଚଳିତ ନାହିଁ । ଅତି ଅସଭ୍ୟ ଜାତିମାନେ ମଧ୍ୟ ଆପଣା ଆପଣା ସନ୍ତାନଗଣଙ୍କୁ ମୃଗୟା ପ୍ରଭୃତି ଶିକ୍ଷା ଦେଇଥାନ୍ତି । କିନ୍ତୁ ମନୁଷ୍ୟ ଯେତିକି ସଭ୍ୟ ପଦବୀରେ ଆରୂଢ଼ ହୁଏ, ଶିକ୍ଷା ପ୍ରତି ସେତିକି ତାହାର ଯତ୍ନ ଓ ସମାଦର ବୃଦ୍ଧି ପ୍ରାପ୍ତ ହୁଏ । ସଭ୍ୟ ଜାତିମାନଙ୍କର ଇତିହାସ ପାଠ

କଲେ ଏହା ସୁସ୍ପଷ୍ଟ ଉପଲବ୍ଧ ହେବ । ଅତି ପ୍ରାଚୀନ କାଳରୁ ଆଜିପର୍ଯ୍ୟନ୍ତ ଶିକ୍ଷୋନ୍ନତି ବିଷୟରେ ଭିନ୍ନ ଭିନ୍ନ ଜାତି ମଧ୍ୟରେ ଯେଉଁ ସବୁ ଆଲୋଚନା ହୋଇ ଯାଇଅଛି, ତାହାର ଗୋଟିଏ ଧାରାବାହିକ ଇତିହାସ ଲେଖିବାକୁ ଗଲେ ଜୀବନବ୍ୟାପୀ କାଳ ନିଅଣ୍ଟ ହେବ । ଭାରତୀୟ ପ୍ରାଚୀନ ଶିକ୍ଷାପ୍ରଣାଳୀକୁ ପାଶ୍ଚାତ୍ୟ ଜାତିମାନେ ଆଜି କାଲି ଉପହାସ କରିବାକୁ କୁଣ୍ଠିତ ନୁହନ୍ତି । ହିନ୍ଦୁ ଜାତିର ପ୍ରାଚୀନ ସଭ୍ୟତା ଓ ସ୍ୱାଧୀନତା ଅକ୍ଷୁଣ୍ଣ ଥିଲେ ତାହାର ଶିକ୍ଷାପ୍ରଣାଳୀ ଆଜି କି ଆକାର ଧାରଣ କରିଥାନ୍ତା, ତାହା ଚିନ୍ତାର ବିଷୟ । ଇଂରାଜୀ ସଭ୍ୟତା ସଙ୍ଗେ ସଙ୍ଗେ ଇଂରାଜୀ ଶିକ୍ଷା-ପ୍ରଣାଳୀ ମଧ୍ୟ ଆମ୍ଭମାନଙ୍କ ଦେଶକୁ ଆନୀତ ହୋଇଅଛି । କେବଳ ସତୁରି ବର୍ଷ ହେଲା ତାହା ଆମ୍ଭମାନଙ୍କ ଦେଶରେ ପ୍ରଚଳିତ ହୋଇଅଛି । ମାତ୍ର ଏହି ଅଳ୍ପ ସମୟ ମଧ୍ୟରେ ଉକ୍ତ ପ୍ରଣାଳୀ ମଧ୍ୟରେ ନାନାପ୍ରକାର ଦୋଷ ପ୍ରବିଷ୍ଟ ହୋଇ ଥିବାରୁ ସେ ଗୁଡ଼ିକର ସଂସ୍କାର ଓ ପରିହାର ଏକାନ୍ତ ଅବଶ୍ୟକ ହୋଇ ଉଠିଅଛି । ବିଚକ୍ଷଣ ରାଜପ୍ରତିନିଧି ଲର୍ଡ କର୍ଜନ ସଂସ୍କାରପ୍ରୟାସୀ ହୋଇ ଭାରତର ସକଳ ପ୍ରଦେଶର ମୁଖ୍ୟ ଶିକ୍ଷା-କର୍ମଚାରୀମାନଙ୍କୁ ସିମଳା ଶୈଳରେ ଏକତ୍ର କରି ଏ ବିଷୟରେ ଆଲୋଚନା କରିଅଛନ୍ତି । କି ଭାବରେ ଆଲୋଚନା କାର୍ଯ୍ୟ ଚାଲିଥିଲା, ତାହା ସାଧାରଣରେ ପ୍ରକାଶିତ ହୋଇ ନାହିଁ । ମାତ୍ର ସମିତିର କାର୍ଯ୍ୟାରମ୍ଭ ବେଳେ ମହାମାନ୍ୟ ରାଜପ୍ରତିନିଧି ବାହାଦୁର ଯେଉଁ ପ୍ରାରମ୍ଭିକ ବକ୍ତୃତା କରିଥିଲେ, ତହିଁରୁ ତାଙ୍କର ଉଦ୍ଦେଶ୍ୟ ବୁଝା ଯାଇଅଛି । ଉକ୍ତ ବକ୍ତୃତାଟିକୁ ଅବଲମ୍ବନ କରି ଆଜି ଆମ୍ଭେମାନେ ଶୀର୍ଷାଙ୍କିତ ବିଷୟରେ କିଞ୍ଚିତ ଆଲୋଚନା କରିବୁଁ । ବିଷୟଟି ସାମୟିକ ହେଲେହେଁ ଅତ୍ୟନ୍ତ ଗୁରୁତର ଅଟେ । କାରଣ, ସମିତିର ନିର୍ଦ୍ଧାରଣାନୁସାରେ ଆମ୍ଭମାନଙ୍କର ଜୀବନର ମାର୍ଗ ପ୍ରସ୍ତୁତ ହେବ । ତେଣୁ ପାଠକମାନଙ୍କର ଆଲୋଚନାର୍ଥ ଏହାର ଅବତାରଣା ।

ଲର୍ଡ କର୍ଜନଙ୍କ ସଂସ୍କାର-ନୀତିକୁ ଗୋଟିଏ କଥାରେ ପ୍ରକାଶ କରାଯାଇ ପାରେ । ସ୍ୱର୍ଗୀୟ Dr Thring ଇଂଲଣ୍ଡର ଜଣେ ବିଖ୍ୟାତ ଶିକ୍ଷାକର୍ମଚାରୀ ଥିଲେ । ସେ ଏକଦା କହି ଥିଲେ, "Education is the transmission of life from the living, through the living, to the living." ଅର୍ଥାତ୍ ଜୀବିତ ଲୋକ କର୍ତ୍ତୃକ ଜୀବନ ସଞ୍ଚାର କିମ୍ବା ଏକ ଜୀବିତ ଲୋକ କର୍ତ୍ତୃକ ଅନ୍ୟ ଜୀବିତ ଲୋକ ମଧ୍ୟରେ ପ୍ରାଣ ସଞ୍ଚାରର ଅପର ନାମ ଶିକ୍ଷା । ମାତ୍ର ଭାରତବର୍ଷରେ ଶିକ୍ଷାର ଉଦ୍ଦେଶ୍ୟ କି ଆଦର୍ଶ କାହିଁ ? କେବଳ ସ୍ମରଣ ଶକ୍ତି ବଳରେ ବାଲ୍ୟ କାଳଠାରୁ ଆରମ୍ଭ କରି ଯୌବନ କାଳ ପର୍ଯ୍ୟନ୍ତ କେତେଗୁଡ଼ିଏ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ପାରିଲେ ଆମ୍ଭମାନଙ୍କର ଶିକ୍ଷା ସମାପ୍ତ ହେଲା ବୋଲି ବିବେଚିତ ହେଉଅଛି ଏବଂ ତାହାହିଁ ବର୍ତ୍ତମାନ ଆମ୍ଭମାନଙ୍କର ଜୀବନର ସର୍ବ-ଶ୍ରେଷ୍ଠ ଲକ୍ଷ୍ୟ ହୋଇଅଛି । ପ୍ରକୃତ ଜୀବନ ସଞ୍ଚାର ପ୍ରତି ଆମ୍ଭମାନଙ୍କର ଆଦୌ ଲକ୍ଷ୍ୟ ନାହିଁ । କେବଳ ସ୍ମରଣ ଶକ୍ତିର ଚର୍ଚ୍ଚା କରି କୌଣସି ଜାତି ମାନସିକ ଉନ୍ନତିର ମାର୍ଗରେ ଅଗ୍ରସର ହୋଇ ନ ପାରେ । ପ୍ରଚଳିତ ଶିକ୍ଷାପ୍ରଣାଳୀ ଆମ୍ଭମାନଙ୍କର ମାନସିକ ଶକ୍ତିକୁ ନଷ୍ଟ କରି ଆମ୍ଭମାନଙ୍କୁ କେବଳ ସରକାରୀ ଚାକିରି ସନ୍ଧାନେ ପ୍ରସ୍ତୁତ କରୁଥିବାର ଦେଖି ରାଜ-ପ୍ରତିନିଧି ମହୋଦୟ ଅତ୍ୟନ୍ତ ବ୍ୟଥିତ ହୋଇ ଅଛନ୍ତି । ତାଙ୍କର ନିଜର କଥାଗୁଡ଼ିକ ଏଠାରେ ଉଦ୍ଧାର କରୁଁ । "It is of no use to turn out respectable clerks, or munsifs, or vokils, if this is done at the expense of the intellect of the nation." ବିଗତ ସତୁରି ବର୍ଷ ମଧ୍ୟରେ ଇଂରାଜୀ ଶିକ୍ଷା ଆମ୍ଭମାନଙ୍କର କୌଣସି ମଙ୍ଗଳ ସାଧନ କରି ନାହିଁ, ଲର୍ଡ କର୍ଜନ ବାହାଦୁର ତାହା ସ୍ୱୀକାର କରିବାକୁ ରାଜି

ନୁହନ୍ତି । କେଉଁ ବିଚାରଶୀଳ ବ୍ୟକ୍ତି ତାହା କହି ପାରିବ ? ଏହି ଅତ୍ୟଳ୍ପ ସମୟ ମଧ୍ୟରେ ଇଂରାଜୀ ଶିକ୍ଷା ଆମ୍ଭମାନଙ୍କର ଯେଉଁ ଅଶେଷ କଲ୍ୟାଣ ସାଧନ କରିଅଛି, ତାହା ଏକ ମୁଖରେ ବର୍ଣ୍ଣିତ କରା ଯାଇ ପାରିବ ନାହିଁ । ମାତ୍ର ତାହା ବୋଲି ତାହାର ଦୋଷ ପ୍ରତି ଉଦାସୀନ ରହିବା କଦାପି ବାଞ୍ଛନୀୟ ନୁହେଁ । ସେହି ହେତୁରୁ ମହାମାନ୍ୟ ରାଜପ୍ରତିନିଧି ବାହାଦୁର ଆପଣାର ପ୍ରସ୍ତାବିତ ଦ୍ୱାଦଶ ସଂସ୍କାର ମଧ୍ୟରେ ଶିକ୍ଷା-ସଂସ୍କାରକୁ ଶ୍ରେଷ୍ଠ ସ୍ଥାନ ଦାନ କରି କାର୍ଯ୍ୟରେ ପରିଣତ କରିବାକୁ ସଚେଷ୍ଟ ହୋଇ ଅଛନ୍ତି । ଅବଶ୍ୟ, ତାଙ୍କର ଚେଷ୍ଟା ଯେ ବହୁ ପରିମାଣରେ ସୁଫଳପ୍ରଦ ହେବ, ତହିଁରେ ସନ୍ଦେହ ନାହିଁ । ଏଥି ପୂର୍ବରେ ଶିକ୍ଷା-ସଂସ୍କାର ବିଷୟରେ କୌଣସି ଚେଷ୍ଟା ହୋଇ ନାହିଁ, ଏମନ୍ତ ନୁହେଁ । ଭାରତର ଭିନ୍ନ ଭିନ୍ନ ରାଜପ୍ରତିନିଧି-ମାନେ ଆପଣା ଆପଣା ଶାସନକାଳରେ ସେ ବିଷୟରେ ଏକାଧିକ ଥର ଚେଷ୍ଟା କରି ଯାଇ ଅଛନ୍ତି । ୧୮୮୨ ଖ୍ରୀଷ୍ଟାବ୍ଦରେ ଶିକ୍ଷାସମିତି ( Education commission ) ଉକ୍ତ ପ୍ରକାର ଚେଷ୍ଟା ମଧ୍ୟରେ ଅନ୍ୟତମ । ତଦ୍ୱାରା ମଧ୍ୟ ଅନେକ କାର୍ଯ୍ୟ ସାଧିତ ହୋଇଅଛି । ମାତ୍ର ଲର୍ଡ କର୍ଜନଙ୍କର ସଂସ୍କାର-ମତ ଯେପରି ଉକ୍ତ ବିଭାଗର ପ୍ରତ୍ୟେକ ଅଙ୍ଗ ସନ୍ଧି ପର୍ଯ୍ୟନ୍ତ ପହଞ୍ଚିଅଛି, ଅନ୍ୟ ତାହାର ମତ ସେପରି କରି ପାରି ନ ଥିଲା, ଏହା ସ୍ୱୀକାର ନ କଲେ ପ୍ରତ୍ୟବାୟ ଭାଗୀ ହେବାକୁ ହେବ । ଏହିଠାରେ ଲର୍ଡ କର୍ଜନଙ୍କର ବିଶେଷତ୍ୱ ଏବଂ ତାହା ତାଙ୍କର କାର୍ଯ୍ୟ ପ୍ରଣାଳୀରେ ସର୍ବତ୍ର ସୁସ୍ପଷ୍ଟ ପ୍ରତିଭାତ ।

ଲର୍ଡ କର୍ଜନ ମହୋଦୟ ଶିକ୍ଷା ସମ୍ବନ୍ଧରେ ସରକାର ବାହାଦୁରଙ୍କର ଚେଷ୍ଟାର ଫଳ ଆଲୋଚନା କରିବାକୁ ଯାଇ କହିଅଛନ୍ତି କି ଭାରତର ୨୮ କୋଟି ଲୋକଙ୍କ ମଧ୍ୟରେ ଆମ୍ଭେ-ମାନେ କେବଳ ୪୫ ଲକ୍ଷ ମାତ୍ର ଲୋକଙ୍କୁ ଶିକ୍ଷା ଦେଉଅଛୁଁ । ଏହା କୌଣସି ପ୍ରକାରେ ସନ୍ତୋଷ-ଜନକ ନୁହେଁ । ଗତ ବର୍ଷ ଶିକ୍ଷା ନିମିତ୍ତ ସରକାରୀ ତହବିଲରୁ କେବଳ ମାତ୍ର ୧ କୋଟି ୭୯ ଲକ୍ଷ ଟଙ୍କା ଦିଆ ଯାଇଥିଲା । ସମଗ୍ର ରାଜସ୍ୱ ତୁଳନାରେ ଏହା ଯେ ଯଥେଷ୍ଟ ନୁହେଁ, ତାହା ମଧ୍ୟ ସେ କହିବାକୁ ଛାଡି ନାହାନ୍ତି ଏବଂ ଏ ବିଷୟରେ ଗବର୍ଣ୍ଣମେଣ୍ଟଙ୍କର ଦୋଷ ଓ ତ୍ରୁଟି ହୋଇଥିବାର ସେ ସ୍ପଷ୍ଟାକ୍ଷରରେ ନିର୍ଦ୍ଦେଶ କରିଅଛନ୍ତି । ଶିକ୍ଷା ନିମିତ୍ତ ଗବର୍ଣ୍ଣମେଣ୍ଟଙ୍କର ସାହାଯ୍ୟ ବୃଦ୍ଧି କରିବା ଉଚିତ କି ନା, ତାହା ଆଲୋଚନା କରିବା ନିମିତ୍ତ ସମିତିକୁ ପରାମର୍ଶ ଦେଇଅଛନ୍ତି ।

୧୮୫୪ ଖ୍ରୀଷ୍ଟାବ୍ଦର ଶିକ୍ଷାସଂକ୍ରାନ୍ତ ପତ୍ରାନୁସାରେ ( Education Despatch ) ଲଣ୍ଡନ ବିଶ୍ୱ-ବିଦ୍ୟାଳୟର ଆଦର୍ଶରେ କଲିକତା, ମାନ୍ଦ୍ରାଜ ଓ ବମ୍ବାଇର ବିଶ୍ୱବିଦ୍ୟାଳୟମାନ ପ୍ରତିଷ୍ଠିତ ହେଲା । ତତ୍ପରେ ତଦପେକ୍ଷା କିଞ୍ଚିତ ପରିବର୍ତ୍ତିତ ପ୍ରଣାଳୀରେ ଏଲାହାବାଦ ଓ ଲାହୋର ବିଶ୍ୱବିଦ୍ୟାଳୟମାନ ସ୍ଥାପିତ ହୋଇଅଛି । ଏମାନଙ୍କ ସହିତ ଇଂଲଣ୍ଡର କେମ୍ବ୍ରିଜ ଓ ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ-ମାନଙ୍କର ତୁଳନା କରିବାକୁ ଯାଇ ଲର୍ଡ କର୍ଜନ ବାହାଦୁର ଦେଖାଇଅଛନ୍ତି ଯେ ଶେଷୋକ୍ତ ବିଶ୍ୱ-ବିଦ୍ୟାଳୟଗୁଡ଼ିକର ଗଠନପ୍ରଣାଳୀ ଓ ଶିକ୍ଷାଦାନ ବ୍ୟବସ୍ଥା ଉତ୍କୃଷ୍ଟତର ଅଟେ ଏବଂ ସେହି ଆଦର୍ଶରେ ଆମ୍ଭମାନଙ୍କର ବିଶ୍ୱବିଦ୍ୟାଳୟଗୁଡ଼ିକ ଗଠିତ ହୋଇଥିଲେ ଭଲ ହୋଇଥାନ୍ତା । କେତେଗୁଡ଼ିଏ କଲେଜ ନେଇ ଅକ୍ସଫୋର୍ଡ ଓ କେମ୍ବ୍ରିଜର ବିଶ୍ୱବିଦ୍ୟାଳୟମାନ ଗଠିତ ହୋଇ-ଅଛି । ସେଠାକାର ପ୍ରତ୍ୟେକ କଲେଜର ଛାତ୍ର, ଶିକ୍ଷକ ଓ ଫେଲୋ ( fellow ) ପୃଥକ୍ ଏବଂ ପ୍ରତ୍ୟେକ କଲେଜର ସ୍ୱତନ୍ତ୍ର ଗୃହ ଅଛି । କେତେ ଗୁଡ଼ିଏ କଲେଜ ଏକତ୍ରିତ ହୋଇ ଅଧ୍ୟାପନାର ବନ୍ଦୋବସ୍ତ କରଥାନ୍ତି । ଉକ୍ତ ବିଶ୍ୱବିଦ୍ୟାଳୟ-ମାନ ପରୀକ୍ଷା ଗ୍ରହଣ, ଅଧ୍ୟାପକମାନଙ୍କର ବକ୍ତୃତା ଶାସନପ୍ରଣାଳୀ ଓ ଧନ ବ୍ୟୟ ନିୟମିତ କରି ସମୁଦାୟ କଲେଜମାନଙ୍କ ଉପରେ କର୍ତ୍ତୃତ୍ୱ କରନ୍ତି ।

ଛାତ୍ରମାନଙ୍କର ଶାସନ ବିଶ୍ୱବିଦ୍ୟାଳୟମାନଙ୍କ ହସ୍ତରେ ନ୍ୟସ୍ତ ଅଛି । ମାତ୍ର ଭାରତବର୍ଷରେ ଏ ସବୁ କିଛି ନାହିଁ । ଏଠାକାର ବିଶ୍ୱବିଦ୍ୟାଳୟମାନ କଲେଜସମୂହର ଏକତ୍ର ସଂଯୋଗର ଫଳ ନୁହେ । ଏ ଦେଶର କଲେଜସମୂହ ଏକ ସ୍ଥାନରେ ଅବସ୍ଥିତ ନୁହେ । ବିଶ୍ୱବିଦ୍ୟାଳୟ କେବଳ ପାଠ୍ୟ ନିର୍ଦ୍ଧାରଣ ଓ ପରୀକ୍ଷା ଗ୍ରହଣ କରିଥାନ୍ତି । ଏମାନଙ୍କର ଅନ୍ତର୍ଭୁକ୍ତ କଲେଜସମୂହ ଏକ ନଗରରେ ପ୍ରତିଷ୍ଠିତ ନୁହେ । ବିଭିନ୍ନ ପ୍ରଦେଶରେ ମଧ୍ୟ ଏମାନଙ୍କର କଲେଜ ଅବସ୍ଥିତ ଦେଖାଯାଏ । ସୁଦୂରବର୍ତ୍ତୀ ବ୍ରହ୍ମଦେଶ ଓ ଲଙ୍କାଦ୍ୱୀପରେ ମଧ୍ୟ କଲିକତା ବିଶ୍ୱବିଦ୍ୟାଳୟର ଅନ୍ତର୍ଗତ କଲେଜମାନ ଅବସ୍ଥିତ ଅଛି ।

ପୁଣି କଲେଜମାନଙ୍କରେ ଛାତ୍ରମାନଙ୍କର ଅବସ୍ଥାନର କୌଣସି ବନ୍ଦୋବସ୍ତ ନାହିଁ । ଗୌରବର ଉପଯୁକ୍ତ ଏମାନଙ୍କର କୌଣସି ଇତିହାସ ମଧ୍ୟ ନାହିଁ । ଏ ସମସ୍ତ ଅସୁବିଧା ଦୂରୀକରଣ ମାନସରେ ମହାମାନ୍ୟ ଲାଟ ବାହାଦୁର କହିଅଛନ୍ତି କି ବିଲାତି ବିଶ୍ୱବିଦ୍ୟାଳୟମାନଙ୍କର କୌଣସି କୌଣସି ହିତକର ନିୟମମାନ ଏଠାରେ ପ୍ରଚଳିତ କରାଯାଇ ପାରେ କି ନାହିଁ, ସମିତି ବିବେଚନା କରି ଦେଖିବେ । ସମସ୍ତ କଲେଜରେ ନ ହେଉ, ଅନ୍ତତଃ କେତେଗୁଡ଼ାଏ କଲେଜକୁ ଏକତ୍ରିତ କରି ସବୁଠାରେ ଏକ ପ୍ରକାର ଉପଦେଶ ଦିଆଯାଇ ପାରେ କି ନାହିଁ, ତାହା ମଧ୍ୟ ସମ୍ୟକ୍ ଆଲୋଚନା କରି ଦେଖିବାକୁ ହେବ । ବଡ଼ ବଡ଼ ସହରମାନଙ୍କରେ ଛାତ୍ରାବାସ ନିର୍ମାଣ କରି ଉହିଁର ତତ୍ତ୍ୱାବଧାନର ସୁବନ୍ଦୋବସ୍ତ କରିବାକୁ ହେବ । ଏହିଟି ବର୍ତ୍ତମାନ ଅବସ୍ଥାରେ ଆମ୍ଭମାନଙ୍କୁ ସମୀଚୀନ ବୋଲି ବୋଧ ହେଉଅଛି । ଆଶା ହେଉଅଛି ସମିତି ଏହି ବିଷୟଟି ସମ୍ୟକ୍ ଆଲୋଚନା କରି ସୁପରାମର୍ଶ ଦେବେ ।

ବିଶ୍ୱବିଦ୍ୟାଳୟମାନଙ୍କର ଗଠନପ୍ରଣାଳୀ ସମ୍ବନ୍ଧରେ ଲାଟ ମହୋଦୟ ସମିତିକୁ ଜଣାଇ ଅଛନ୍ତି ଯେ ଗବର୍ଣ୍ଣମେଣ୍ଟଙ୍କ କର୍ତ୍ତୃକ ମନୋନୀତ ସଭ୍ୟ, ନିର୍ବାଚିତ ସଭ୍ୟ, ସେନେଟ (Senate) ଓ ସିଣ୍ଡିକେଟର (Sydicate ) ସଭ୍ୟ ନିଯୋଗ କରିବାର ନିୟମ ସମୁଦାୟ ସଂସ୍କୃତ ହେବା ଆବଶ୍ୟକ । ସିନେଟର ସଭ୍ୟସଂଖ୍ୟା ହ୍ରାସ କରିବା ଉଚିତ କି ନା, ସଭ୍ୟମାନଙ୍କୁ ନିର୍ଦ୍ଦିଷ୍ଟ କେତେକ ବର୍ଷ ନିମିତ୍ତ ନିଯୁକ୍ତ କରିବା ଉଚିତ କି ନା ଏବଂ ସଭ୍ୟମାନେ ସଭାରେ ଉପସ୍ଥିତ ନ ହେଲେ ସେମାନଙ୍କର ନାମ କାଟି ଦେବା ଉଚିତ କି ନା, ଏ ସମସ୍ତ ପୁଙ୍ଖାନୁପୁଙ୍ଖରୂପେ ଆଲୋଚନା କରି ଦେଖିବା ଉଚିତ । ବିଶ୍ୱବିଦ୍ୟାଳୟର କାର୍ଯ୍ୟନିର୍ବାହକ ସଭାମାନଙ୍କ ମଧ୍ୟରେ ଯେ ଅନେକ ଦୋଷ ପ୍ରବେଶ କରିଅଛି, ତାହା ବୋଲିବା ବାହୁଲ୍ୟ ମାତ୍ର । ସମିତି ସେ ବିଷୟରେ କି ନିର୍ଦ୍ଧାରଣ କରିବେ, ତାହା ଜାଣିବାକୁ ଆମ୍ଭେମାନେ ଉତ୍ସୁକ ରହିଲୁଁ ।

ବିଶ୍ୱବିଦ୍ୟାଳୟର ପରୀକ୍ଷାବିଭ୍ରାଟର କଥା ଆଜି କାଲି ପ୍ରାୟ ଶୁଣା ଯାଉଥାଏ । ଉକ୍ତ ପରୀକ୍ଷା ଦିନକୁ ଦିନ କଠୋର ହେଉଅଛି କି ସହଜ ହେଉଅଛି, ପାଠ୍ୟ ପୁସ୍ତକମାନ କ୍ରମଶଃ ଉତ୍କୃଷ୍ଟ ହେଉଅଛି କି ନିକୃଷ୍ଟ ହେଉଅଛି, ଏ ସବୁ ପ୍ରଶ୍ନର ସୁମୀମାଂସା କରିବା ନିମିତ୍ତ ସମିତି ଆଦିଷ୍ଟ ହୋଇଅଛନ୍ତି । ଲାଟ ମହୋଦୟ ଦେଖାଇ ଦେଇ ଅଛନ୍ତି ଯେ ଗତ ବର୍ଷ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟରୁ ୭୩୦୦ ଛାତ୍ର ପ୍ରବେଶିକା ପରୀକ୍ଷା ଦେଇଥିଲେ, ତନ୍ମଧ୍ୟରୁ ୫୮୫୦ ଜଣ ଅକୃତକାର୍ଯ୍ୟ ହୋଇଅଛନ୍ତି । ଉକ୍ତ ବର୍ଷ ଉକ୍ତ ପରୀକ୍ଷା ନିମିତ୍ତ କଲିକତା ବିଶ୍ୱବିଦ୍ୟାଳୟରୁ ୭୧୩୪ ଜଣ ଛାତ୍ର ଉପସ୍ଥିତ ହୋଇଥିଲେ, ତନ୍ମଧ୍ୟରୁ କେବଳ ୩୩୦୭ ଜଣ ଅର୍ଥାତ୍ ଶତକଡ଼ା ୪୪ ଜଣ ମାତ୍ର କୃତକାର୍ଯ୍ୟ ହୋଇ ପାରିଅଛନ୍ତି । ଶେଷୋକ୍ତ ବିଶ୍ୱବିଦ୍ୟାଳୟର ୩୭୨୨ ଜଣ ଏଫ୍. ଏ. ପରୀକ୍ଷାର୍ଥୀ ମଧ୍ୟରୁ କେବଳ ୩୭୦ ଜଣ ଅର୍ଥାତ୍ ଶତକଡ଼ା ୧୯ ଜଣ ମାତ୍ର ପାସ୍ ହୋଇଅଛନ୍ତି । ଯେଉଁମାନେ

ବିଶ୍ୱବିଦ୍ୟାଳୟରେ ପ୍ରବେଶ ଲାଭ କରନ୍ତି, ସେମାନଙ୍କ ମଧ୍ୟରୁ ୭୭ ଜଣରେ କେବଳ ଜଣେ ମାତ୍ର ଛାତ୍ର ବି, ଏ, ପରୀକ୍ଷାରେ ଉତ୍ତୀର୍ଣ୍ଣତା ଲାଭ କରିବାକୁ ସମର୍ଥ ହୋଇଥାନ୍ତି । ପରୀକ୍ଷା କଠିନ ହେବାରୁ ଏପ୍ରକାର ଶୋଚନୀୟ ଫଳ ହୋଇଅଛି କିମ୍ବା ପୂର୍ବବର୍ତ୍ତୀ ପରୀକ୍ଷାମାନ ଅପେକ୍ଷାକୃତ ସହଜ ହେବାରୁ ଏପରି ଘଟୁଅଛି ? କୌଣସି କୌଣସି ବିଶ୍ୱବିଦ୍ୟାଳୟରେ ଉପାଧିର ମାନ ବେଶି, କେଉଁଠାରେ ଅବା ଊଣା । ଏଣୁ ସମସ୍ତ ବିଶ୍ୱବିଦ୍ୟାଳୟରେ ଏକ ପ୍ରକାର ପାଠ୍ୟ ଓ ପରୀକ୍ଷା ପ୍ରଣାଳୀ ପ୍ରବର୍ତ୍ତିତ କରି ଉପାଧିର ମାନ ସମାନ କରି ଦେଲେ ସୁଫଳ ଲାଭ ହୋଇ ପାରିବ କି ନାହିଁ, ତାହା ମଧ୍ୟ ସମିତିର ବିବେଚନାଧୀନ କରା ହୋଇଅଛି ।

ମଧ୍ୟ ଶିକ୍ଷା ବିଷୟରେ ଲାଟ ବାହାଦୁର ଠିକ ଏ ଅତିରିକ୍ତ ସନ୍ତୋଷ ପ୍ରକାଶ କରିଥିବାର ବୋଧ ହେଲା । ସେ କହନ୍ତି, କଲେଜ ଓ ପାଠଶାଳାର ଶିକ୍ଷା ଅପେକ୍ଷା ଏହି ଶ୍ରେଣୀର ଶିକ୍ଷାର (Secondary education) ଅବସ୍ଥା ଅନେକ ପରିମାଣରେ ସନ୍ତୋଷଜନକ ଅଟେ । ଯେଉଁ ସବୁ ଛାତ୍ର ବାଣିଜ୍ୟ ଓ ଶିଳ୍ପ ବିଭାଗର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୁଅନ୍ତି, ସେମାନଙ୍କର ଚାକିରିର ବନ୍ଦୋବସ୍ତ ବା ଉଚ୍ଚତର ଶିଳ୍ପବିଦ୍ୟାଳୟରେ ଉଚ୍ଚତର ଶିକ୍ଷାର ବନ୍ଦୋବସ୍ତ କରି ଦେଇ ପାରିଲେ, ଏହି ଶ୍ରେଣୀର ବିଦ୍ୟାଳୟମାନଙ୍କର ଅଧିକ ଉନ୍ନତି ହେବାର ସମ୍ଭାବନା । ଲାଟ ବାହାଦୁରଙ୍କର ଏ ସମ୍ବନ୍ଧୀୟ ସଂକ୍ଷିପ୍ତ ମନ୍ତବ୍ୟ ପାଠ କରି ଗବର୍ଣ୍ଣମେଣ୍ଟ ଯଦ୍ୟପି କ୍ରମେ କ୍ରମେ ଏହି ଶ୍ରେଣୀର ବିଦ୍ୟାଳୟମାନଙ୍କର ସାହାଯ୍ୟ ପରିମାଣ ହ୍ରାସ କରନ୍ତି, ତାହା ହେଲେ ଦେଶର ସମୂହ କ୍ଷତି ହେବ । ୧୮୮୨ ଖ୍ରୀଷ୍ଟାବ୍ଦର ଶିକ୍ଷା କମିଶନ ଏ ବିଷୟରେ ଗବର୍ଣ୍ଣମେଣ୍ଟଙ୍କୁ ଯେଉଁ ପରାମର୍ଶ ଦେଇ ଅଛନ୍ତି, ତାହା ଆମ୍ଭମାନଙ୍କୁ ଅତ୍ୟନ୍ତ ସମୀଚୀନ ବୋଧ ହେଉଅଛି । କମିଶନ କହି ଅଛନ୍ତି ଯେ ଏହି ଶ୍ରେଣୀର ଶିକ୍ଷା ବିସ୍ତାର ପକ୍ଷରେ ସାଧାରଣର ଚେଷ୍ଟାକୁ ସର୍ବତୋଭାବେ ଉତ୍ସାହିତ କରିବା ଗବର୍ଣ୍ଣମେଣ୍ଟଙ୍କର ଏକାନ୍ତ ଉଚିତ । ଆମ୍ଭେମାନେ ମଧ୍ୟ ଏକାନ୍ତ ଆଶା କରୁଁ କି ମହାମାନ୍ୟ ଗବର୍ଣ୍ଣମେଣ୍ଟ ଏହି ପରାମର୍ଶାନୁସାରେ କାର୍ଯ୍ୟ କରିବାକୁ କଦାପି ଉଦାସୀନ ହେବେ ନାହିଁ । ଭାରତ ପକ୍ଷରେ ସେ ଦିନ ବହୁ ଦୂରବର୍ତ୍ତୀ, ଯେଉଁ ଦିନ ଗବର୍ଣ୍ଣମେଣ୍ଟ ଦେଶବାସିଙ୍କ ଉପରେ ଏହି ଶ୍ରେଣୀର ଶିକ୍ଷା-ଭାର ସମ୍ପୂର୍ଣ୍ଣରୂପେ ନ୍ୟସ୍ତ କରି କଳ୍ପିତ ହୋଇ ପାରିବେ । ଯାହା ହେଉ, ଏବିଷୟକ ମନ୍ତବ୍ୟର ଶେଷ ଭାଗରେ ଲାଟ ବାହାଦୁର ଯାହା କହି ଅଛନ୍ତି, ତାହା ସ୍ୱର୍ଣ୍ଣାକ୍ଷରରେ ଲିଖିତ ରହିବା ଉଚିତ । ଆମ୍ଭେମାନେ ତାଙ୍କର ନିଜର କଥା-ଗୁଡିକ ପାଠକମଣ୍ଡଳୀଙ୍କ ସମ୍ମୁଖରେ ଉପସ୍ଥିତ କରୁଅଛୁଁ । ସେ କହିଅଛନ୍ତି :—

"I hold the education of the Indian people to be as much a duty of the Central Government as the Police of our cities or the taxation of our citizens. Indeed more so; for whereas these duties can be safely delegated to Subondinate hands, the Government *can never abrogate* its personal responsibility for the living welfare of the multitudes that have been committed to its care."

ପ୍ରାଥମିକ ବା ପାଠଶାଳାର ଶିକ୍ଷା ସମ୍ବନ୍ଧରେ ଲର୍ଡ ମହୋଦୟ ଯଥାର୍ଥ କହିଅଛନ୍ତି କି ତାହା ଦିନକୁ ଦିନ ମନ୍ଦ ହେଉଅଛି । ଦେଶୀୟ ଭାଷାମାନଙ୍କରେ ଉତ୍କୃଷ୍ଟ ପୁସ୍ତକମାନ ପ୍ରଣୀତ ହୋଇ ଅଛି ଏବଂ ତହିଁରେ ଆଧୁନିକ ଜ୍ଞାନ-ବିଜ୍ଞାନ ସୁନ୍ଦର ରୂପେ ପ୍ରକାଶିତ ହୋଇ ପାରେ । ତଥାପି କାହିଁକି ପ୍ରାଥମିକ ଶିକ୍ଷାର ଉନ୍ନତି ଓ ବହୁଳ ପ୍ରଚାର ହେଉ ନାହିଁ ? ଅଜ୍ଞତା ସର୍ବପ୍ରକାର ଅମଙ୍ଗଳର ହେତୁ । ଅଜ୍ଞତାହିଁ ସନ୍ଦେହ, କୁସଂସ୍କାର, ଦଙ୍ଗା,

ଲୋକ, ଡକାପ୍ତ ପ୍ରଭୃତି ଜନସାଧାରଣଙ୍କୁ ଶିକ୍ଷା ଦେବ । ଏ ଦେଶର ଲୋକେ ଇଂରାଜୀ ଶିଖିବା ପାଇଁ ପାଗଳ । ଦେଶୀୟ ଭାଷାମାନଙ୍କ ଉପରେ ସେମାନଙ୍କର ଛେଡ଼େ ଆସ୍ଥା ନାହିଁ । ସେହି ହେତୁରୁ ଦେଶୀୟ ଭାଷା ଶିକ୍ଷାର ଉନ୍ନତି ହୋଇ ପାରୁ ନାହିଁ । ଯଦ୍ୟପି ରାଜକୋଷର ଅବସ୍ଥା ସ୍ୱଚ୍ଛଳ ହୋଇଥାନ୍ତା, ତାହା ହେଲେ ସେ ଦେଶୀୟ ଭାଷାମାନଙ୍କର ଅନେକ ଉନ୍ନତି ସାଧନ କରି ପାରନ୍ତେ । ପାଠକ, ତାଙ୍କର ଦେଶୀୟ ଭାଷା ସମ୍ବନ୍ଧୀୟ ସୁନ୍ଦର ମନ୍ତବ୍ୟଟି ଇଂରାଜୀରେ ପାଠ କରନ୍ତୁ ଏବଂ ଲଜ୍ଜାରେ ମସ୍ତକ ଅବନତ କରନ୍ତୁ ।

"......................the vernaculars are living languages of this great continent; English is a vehicle of learning and of advancement to a small minority, but for the vast bulk it is a foreign tongue, which they do not speak and rarely hear. If the vernaculars contained no literary models, no classics, I might not be so willing to recommend them but we all know that in them are enshrined famous treasures of literature and art, while even the secrets of modern knowledge are capable of being communicated thereby in an idiom and in phrases which will be understood by millions of people, to whom our English terms and ideas will never be anything but an uuintelligible jargon."

ତତ୍ପରେ ଶିଳ୍ପ ଓ କାର୍ଯ୍ୟକରୀ ଶିକ୍ଷାର ଆଲୋଚନା । ଶିଳ୍ପଶିକ୍ଷା ବୋଇଲେ କି ପ୍ରାଚ୍ୟ କି ପାଶ୍ଚାତ୍ୟ ଉଭୟଦେଶବାସୀ ଲୋକେ ନାନା କଥା ବୁଝିଥାନ୍ତି । ଭାରତବାସୀ ମନେ କରନ୍ତି, କେବଳ ଶିଳ୍ପଶିକ୍ଷା ଉପରେ ଭାରତର ନବ ଜୀବନ ନିର୍ଭର କରେ । ଉଚ୍ଚ ବ୍ୟବସାୟ ବାଣିଜ୍ୟ ଶିକ୍ଷାପାଇଁ ଇଞ୍ଜିନିୟରିଂ କଲେଜ, କୃଷିକଲେଜ, ପଶୁଚିକିତ୍ସାଳୟ, ଆର୍ଟ ସ୍କୁଲ ପ୍ରଭୃତି ଅଛି । କେବଳ ଶ୍ରମଜାତ ଶିଳ୍ପ ଶିକ୍ଷା ନିମିତ୍ତ ବିଶେଷ ବନ୍ଦୋବସ୍ତ କରିବାକୁ ହେବ । ଶ୍ରମଜାତ ଶିଳ୍ପବିଦ୍ୟାଳୟମାନଙ୍କରେ କାଷ୍ଠର ଓ ଲୌହର କାର୍ଯ୍ୟ ଶିକ୍ଷା ଦିଆ ଯାଏ । କିନ୍ତୁ ଯେଉଁମାନେ ସେଥିରେ ଶିକ୍ଷିତ ହୁଅନ୍ତି ସେମାନେ କୌଣସି କାଳେ ସୂତ୍ରଧର ବା କର୍ମକାରର କାର୍ଯ୍ୟରେ ନିଯୁକ୍ତ ହୁଅନ୍ତି ନାହିଁ । ଏହାଦ୍ୱାରା ଶକ୍ତିର ଅପଚୟ ଘଟୁଅଛି । ଆର୍ଟ ସ୍କୁଲରେ ପ୍ରବେଶ ଲାଭ କରି ଅନେକେ ଖୋଦନ କାର୍ଯ୍ୟ, ମୃଣ୍ମୟ ଦ୍ରବ୍ୟ ନିର୍ମାଣ ଓ ଭାସ୍କର ବିଦ୍ୟା ଶିକ୍ଷା କରନ୍ତି । କିନ୍ତୁ ଉକ୍ତ ପ୍ରକାର ବ୍ୟବସାୟରେ କେହି ନିଯୁକ୍ତ ହୁଅନ୍ତି ନାହିଁ । ଶିକ୍ଷାପ୍ରାପ୍ତ ହୋଇ କେବଳ ଚାକିରୀ ଅନ୍ୱେଷଣରେ ବୁଲନ୍ତି । ଆମ୍ଭ ମତରେ ସାଧାରଣ ବିଦ୍ୟାଳୟମାନଙ୍କ ସହିତ ଶିଳ୍ପବିଦ୍ୟାଳୟମାନଙ୍କର ମଧ୍ୟ ତୁଲ୍ୟ ମୂଲ୍ୟ ନିର୍ଦ୍ଧାରଣ କରିବାକୁ ହେବ । ସାଧାରଣ ବିଦ୍ୟାଳୟମାନଙ୍କ ପାଠ୍ୟ ସହିତ ଏମାନଙ୍କର ପାଠ୍ୟ ମିଶାଇ ଦେବା ଉଚିତ ନୁହେ । ଏହି ଶ୍ରେଣୀର ବିଦ୍ୟାଳୟମାନଙ୍କର ଛାତ୍ରମାନେ ଯହିଁରେ ବ୍ୟବସାୟୋପଯୋଗୀ ଶିକ୍ଷା ପ୍ରାପ୍ତ ହୁଅନ୍ତି, ତହିଁର ସୁବନ୍ଦୋବସ୍ତ କରିବାକୁ ହେବ । ମାତ୍ର ଦେଶୀୟ ଲୋକଙ୍କ ଉପଯୁକ୍ତ ସାହାଯ୍ୟ ବ୍ୟତୀତ ଗବର୍ଣ୍ଣମେଣ୍ଟ ଯେ ଏକାକୀ ଏହି ବିଦ୍ୟାଳୟମାନଙ୍କର ସମ୍ପୂର୍ଣ୍ଣ ଉନ୍ନତି କରି ପାରିବେ ନାହିଁ, ଲାଟ ମହୋଦୟଙ୍କର ଏ ଉକ୍ତିରେ ଆମ୍ଭେମାନେ ସମ୍ପୂର୍ଣ୍ଣ ଏକମତ ।

ଅନ୍ୟାନ୍ୟ ଶିକ୍ଷା ମଧ୍ୟରେ ଲାଟ ମହୋଦୟ ସମିତିକୁ ନର୍ମାଲସ୍କୁଲ ଓ ଶିକ୍ଷାବିଭାଗର ଉଚ୍ଚତର ଶିକ୍ଷକ ଓ ଅଧ୍ୟାପକ ନିୟୋଗର ନିୟମାବଳୀ ଆଲୋଚନା କରିବାକୁ ଅନୁରୋଧ କରିଅଛନ୍ତି । ସ୍ତ୍ରୀଶିକ୍ଷାର ଅତ୍ୟନ୍ତ ଦୁରବସ୍ଥା ଦେଖି ସେ ଅତ୍ୟନ୍ତ ବ୍ୟଥିତ ହୋଇଅଛନ୍ତି । କର୍ଜନ ସାହେବ ମହୋଦୟ ଲେଖିଅଛନ୍ତି, ସ୍ତ୍ରୀଶିକ୍ଷାର ଅବସ୍ଥା

ଭାରତର ଶିକ୍ଷାବିଭାଗର ଗୋଟିଏ ମହାକଳଙ୍କ । ସମସ୍ତ ଭାରତରେ କେବଳ ମାତ୍ର ୪ ଲକ୍ଷ ୨୫ ହଜାର ଛାତ୍ରୀ ନାନା ଶ୍ରେଣୀର ବିଦ୍ୟାଳୟରେ ପାଠ କରନ୍ତି । ତନ୍ମଧ୍ୟରେ ଏକ ତୃତୀୟାଂଶ ମାନ୍ଦ୍ରାଜ ପ୍ରଦେଶର ବିଦ୍ୟାଳୟମାନଙ୍କରେ ଅଧ୍ୟୟନ କରନ୍ତି । ଏମାନଙ୍କ ମଧ୍ୟରୁ ଅଧିକାଂଶ ପୁଣି ମାନ୍ଦ୍ରାଜ ପ୍ରଦେଶବାସୀ ଦେଶୀୟ ଖ୍ରୀଷ୍ଟିୟାନ ଓ ୟୁରେସିୟାନ ଅଟନ୍ତି । ତାଙ୍କର ମୂଳ କଥାଗୁଡ଼ିକ ଏହି:—"The third topic is that of female education. Here the figures exhibit a relatively very backwrad state of affairs. Indeed, Mr. Cotton, in the last quinquennial review, described it as "the most conspicuous blot on the educational system of India." In the last year there were only 425,000 girls attending all classes of schools out of the entire population, and of these nearly one-third were in Madras, where the Native Christian and Eurasian populations are unusually large."

ଭାରତୀୟ ଛାତ୍ରବୃନ୍ଦଙ୍କର ଦୁର୍ନୀତିପରାୟଣତାର କଥା ସମୟ ସମୟରେ ଶୁଣା ଯାଉଥାଏ । ନୀତିଶିକ୍ଷା ସମ୍ବନ୍ଧରେ ଲାଟ ମହୋଦୟ କହି ଅଛନ୍ତି—ଆମ୍ଭେ ବିଶ୍ୱାସ କରୁଁ, ଧର୍ମଶିକ୍ଷା ଭିନ୍ନ ସୁଶିକ୍ଷା ଅସମ୍ଭବ । କିନ୍ତୁ ସରକାରୀ ବିଦ୍ୟାଳୟମାନଙ୍କରେ କୌଣସି ପ୍ରକାର ଧର୍ମଶିକ୍ଷା ଦିଆ ହୋଇ ନ ପାରେ । ମାତ୍ର, ତଥାପି ନୀତିଶିକ୍ଷାର ସୁବନ୍ଦୋବସ୍ତ ଅବଶ୍ୟ କରିବାକୁ ହେବ । ପୁସ୍ତକ ପାଠଦ୍ୱାରା କିୟତ୍ ପରିମାଣରେ ନୀତିଶିକ୍ଷା ହୋଇ ପାରେ ସତ୍ୟ, ମାତ୍ର ପ୍ରଧାନମାନଙ୍କ ଉପରେ ପ୍ରକୃତପକ୍ଷେ ନୀତିଶିକ୍ଷା ବିଶେଷ ପରିମାଣରେ ନିର୍ଭର କରେ ।

ପ୍ରତ୍ୟେକ ସଭ୍ୟ ଗବର୍ଣ୍ଣମେଣ୍ଟଙ୍କର ଅନ୍ୟାନ୍ୟ ବିଭାଗପରି ଶିକ୍ଷାବିଭାଗ ମଧ୍ୟ ଗୋଟିଏ ପ୍ରଧାନ ବିଭାଗ ଏବଂ ଉକ୍ତ ବିଭାଗର କାର୍ଯ୍ୟପ୍ରଣାଳୀ ସମ୍ବନ୍ଧରେ ପରାମର୍ଶ ଦେବା ନିମନ୍ତେ ପ୍ରତ୍ୟେକ ଗବର୍ଣ୍ଣମେଣ୍ଟଙ୍କର ଜଣେ ଜଣେ ଉପଯୁକ୍ତ କର୍ମଚାରୀ ଅଛନ୍ତି । ମାତ୍ର ଭାରତ ଗବର୍ଣ୍ଣମେଣ୍ଟଙ୍କର ସେପରି କୌଣସି କର୍ମଚାରୀ ନାହାନ୍ତି । କେବଳ ପ୍ରତି ୫ ବର୍ଷରେ ଥରେ ଲେଖାଏଁ ଶିକ୍ଷା ସମ୍ବନ୍ଧରେ ଯେଉଁ ସାଧାରଣ ରିପୋର୍ଟ (quinquennial review) ସଙ୍କଳିତ ହୁଏ, ସେଥିରୁ ଭାରତ ଗବର୍ଣ୍ଣମେଣ୍ଟ ଏ ବିଭାଗ ସମ୍ବନ୍ଧରେ କେତେକ ତଥ୍ୟ ଜାଣି ପାରନ୍ତି ଏବଂ କୌଣସି ବିଷୟରେ ସଂସ୍କାର ବା ପ୍ରତିକାର ଲୋଡ଼ା ହେଲେ କରଥାନ୍ତି । ଏହା ବାଞ୍ଛନୀୟ ନୁହେ । ଏ ବିଭାଗ ସହିତ ତାଙ୍କର ଘନିଷ୍ଠ ସମ୍ବନ୍ଧ ରହିବା ଏକାନ୍ତ ଆବଶ୍ୟକ । ମାତ୍ର ତାହା କହିବାରୁ ଯାଇଁ ବିଚକ୍ଷଣ ଲାଟ ମହୋଦୟ ବିଶ୍ୱବିଦ୍ୟାଳୟଗୁଡ଼ିକର ସ୍ୱାଧୀନତା ଉପରେ କୌଣସି ପ୍ରକାରେ ହସ୍ତକ୍ଷେପ କରିବାକୁ ଇଚ୍ଛା କରନ୍ତି ନାହିଁ । ଏହି ବିଭାଗ ଉପରେ ସାଧାରଣଭାବରେ କର୍ତ୍ତୃତ୍ୱ କରିବାକୁ ଏବଂ ତାହାଙ୍କୁ ପରାମର୍ଶ ଦେବା ନିମିତ୍ତ ସେ ଆପଣା ନିକଟରେ ଜଣେ ମାତ୍ର ଡାଇରେକ୍ଟର ଜେନରେଲ ରଖିବାକୁ ଇଚ୍ଛୁକ । ଏହା ଅତି ନ୍ୟାଯ୍ୟ ଅଟେ । ଏତଦ୍ୱାରା ଯେ ଶିକ୍ଷାବିଭାଗର ବହୁ ପରିମାଣରେ ସୁବନ୍ଦୋବସ୍ତ ହୋଇ ପାରିବ ଏବଂ ତଦ୍ୱାରା ଯେ ତାହା ଭାରତ ଗବର୍ଣ୍ଣମେଣ୍ଟଙ୍କର ଅଧିକ ଦୃଷ୍ଟି ଆକର୍ଷଣ କରି ପାରିବ, ତାହା ବୋଲିବା ବାହୁଲ୍ୟ ମାତ୍ର । ଅବଶ୍ୟ ଏଥିରେ କିଛି ବ୍ୟୟବୃଦ୍ଧି ହେବ, ମାତ୍ର ତାହା କି ପ୍ରକାରେ ସାଧିତ ହେବ, ସେ ବିଷୟରେ ଲାଟ ମହୋଦୟ କିଛି କହି ନାହାନ୍ତି ।

ଲାଟ ମହୋଦୟଙ୍କ ବକ୍ତୃତା ଅତ୍ୟନ୍ତ ଦୀର୍ଘ ହୋଇଅଛି ଏବଂ ସେ ନିଜେ ତଦ୍ବିଷୟକ କୈଫିୟତ୍ ଏହିପରି ଦେଇଅଛନ୍ତି କି ବିଷୟର ଗୁରୁତ୍ୱ ବିବେଚନାରେ କଥାଟି ଆମ୍ଭେ ଅପେକ୍ଷାକୃତ ଅଳ୍ପ ସ୍ଥାନରେ ଏହାର ଆଲୋଚନା କରି

ଥାନ୍ତି, ବୁଝି ପାରୁ ନାହୁଁ । ସେ ଯାହା ହେଉ, ଏହି ସୁନ୍ଦର ବକ୍ତୃତାଟି ପାଠ କରି ଦେଶବାସୀମାନେ ମୋହିତ ହୋଇଅଛନ୍ତି ଏବଂ ସେଥି ନିମିତ୍ତ ଲର୍ଡ ବାହାଦୁରଙ୍କୁ ଶତ ମୁଖରେ ଧନ୍ୟବାଦ ଦେଉଅଛନ୍ତି । ବକ୍ତୃତାଟିର ଏହି ଅନୁପଯୁକ୍ତ ମର୍ମ-ସଙ୍କଳନ ପାଠ କରି ଅନ୍ତତଃ ପାଠକମଣ୍ଡଳୀ ତାଙ୍କର ଗମ୍ଭୀର ଗବେଷଣା ଶକ୍ତି, ସୂକ୍ଷ୍ମଦର୍ଶିତା, ନ୍ୟାୟ-ପରତା, ଭାରତର ମଙ୍ଗଳେଚ୍ଛା ପ୍ରଭୃତିର ପରିଚୟ ପ୍ରାପ୍ତ ହୋଇ ପାରିବେ ବୋଲି ଆମ୍ଭେମାନେ ଆଶା କରୁଁ । ସେ ଭାରତୀୟ ଶିକ୍ଷାବିଭାଗକୁ ସୁଦୃଢ଼ ଭିତ୍ତି ଉପରେ ସ୍ଥାପନ କରିବେ ବୋଲି ବଦ୍ଧପରିକର ହୋଇଅଛନ୍ତି । ଏ ବକ୍ତୃତାର ଉପସଂହାର ସ୍ଥଳରେ, ବାଗ୍ମିତାପରିପୂର୍ଣ୍ଣ ବାକ୍ୟରେ ସେ ଦେଶବାସୀଙ୍କୁ ଯେଉଁ କେତୋଟି କଥା କହିଅଛନ୍ତି, ତାହା ଇଂରାଜୀରେ ଏଠାରେ ଉଦ୍ଧାର ନ କରି ଲେଖନୀ ବନ୍ଦ କରି ପାରିଲୁଁ ନାହିଁ । ତାଙ୍କର କଥାଗୁଡ଼ିକ ଏହି ଏବଂ ତାହା ଆମ୍ଭମାନଙ୍କର ହୃଦୟରେ ମୁଦ୍ରିତ ହୋଇ ରହିବାର ଯୋଗ୍ୟ ।

"Government desire, with honesty of purpose, that is not open to question, and with aims that few will contest, to place the educational system of this country upon a sounder and firmer basis. It can be done if all parties and persons interested will combine to help us, and in that case it will be done, not by a Government *fiat*, but by common consent only. Let every one of us bear in mind the real magnitude of the issues, and remember that we are not playing with counters, but handling the life pulse of future generations."

ଶ୍ରୀ ଲକ୍ଷ୍ମୀପ୍ରସାଦ ଚୌଧୁରୀ ।

---

## ମେନକା ।

(ଅଭିମନ୍ୟୁ-ଉତ୍ତରା-ସମ୍ବାଦ ।)

ଭାରତ ଯୁଦ୍ଧର ଗାଥା ଅନନ୍ତ,
ଧ୍ୱନି ଯାର ବ୍ୟାପେ ଦିଗଦିଗନ୍ତ,
ଅଦ୍ୟାପି ଯାହାର ପ୍ରାଚୀନ ସ୍ମୃତି
ମୃତ ପ୍ରାଣେ କ୍ଷଣେ ଜନ୍ମାଏ ଧୃତି,
ସ୍ୱଭାବେ ସେ କାଳନେମି,
ଧୈବେ ରଣ-ରଙ୍ଗେ, ଦ୍ରୋଣଗୁରୁ ଆଜି
ରଚିଛନ୍ତି ଚକ୍ରବ୍ୟୂହ । ୧ ।

କେତେଣେ ସଂଶପ୍ତକ-ଛଳସମରେ,
ବଳେ ପାର୍ଥ ବୀର କପିଧ୍ୱଜରେ,
ଏଣେ ଅଟେ ଦ୍ରୋଣ ତ୍ରିଲୋକ୍ୟ ଯମ,
ବ୍ୟୂହଭେଦେ ଭୀମ ଆଦି ଅକ୍ଷମ,
କେବଳ ପାର୍ଥ-ନନ୍ଦନ
ଭେଦ ପାରେ ବ୍ୟୂହ ପିତୃ-ଶିକ୍ଷା ମତ,
ନାହିଁ ଜାଣେ ନିର୍ଗମନ । ୨ ।

ଏ ଘୋର ସଙ୍କଟେ ପାଣ୍ଡବ ସାଇଁ
ଅଭିମନ୍ୟୁ-ପଦ୍ମ-ବଦନ ଚାହିଁ
କହନ୍ତି, ବାବୁ ହେ କର ଉପାୟ,
ଯ ବତ ନ କରେ ଅଉ ଅପାୟ,
ଶୁଣି ଏହା ଧନୁର୍ଦ୍ଧର
ରଥୀ ସଜ୍ଜ ଭାର ସାରଥିଙ୍କି ଦେଲେ
ଜାଣି ବେଳ ଅବସର । ୩ ।

ବରଜିଲେ ଦୂତ ପ୍ରିୟା-ଆବାସେ
ହସ୍ତେ ଦେଇ ମୁଦ୍ରି, ଗଦ୍ଗଦ ଭାଷେ
ପାଠ କାନ୍ତା-କର-କମଳ-ଲିପି
ମୁକ୍ତି ଉଚ୍ଚାଟନ ବଳାଏ ଦେଖି,
ଜଡ଼ ପିଣ୍ଡ ଯେ ରହିଛି,
ପ୍ରେୟସୀ-ପ୍ରଣୟ— ପାଶେ ଲଗ୍ନ ପ୍ରାଣ
ରହିଛି [illegible] । ୪ ।

ମର୍ତ୍ତ୍ୟ-ରଙ୍ଗ-ଶିଳ୍ପ-ଅଞ୍ଚଳତଳ,
ଲାବଣ୍ୟ-ମାଧୁରୀ-ଛଳା ସୁନ୍ଦରୀ,
ସହଜେ ରସିକା-ବାଳା କାମିନୀ,
ପାର୍ଥ ଶିକ୍ଷାବଳେ ପୁଣି ମାନିନୀ,
ଉତ୍ତରା ବିରାଟନନ୍ଦିନୀ,
ଅଭିମନ୍ୟୁ-ହୃଦ— କୁମୁଦ-ଚନ୍ଦ୍ରିକା
କିବା ସେ ସ୍ୱର୍ଗର ମେନା । ୫ ।

ଯତ୍ନ ଭେଦନେ ଚନ୍ଦ୍ର କାନ୍ତି-ମାଧୁରୀ,
ହେମ-ଲତିକାରେ ଲକ୍ଷ୍ମୀ-ଶାଙ୍କୁଳ,
ବଢ଼ାଇ ଦେଉଛି ରୂପ-ଗରିମା,
ନୟନେ କାମ ଯାର ନ ପାଏ ସୀମା,
ଧନ୍ୟ ସେ ଯାହାର ଭୁଜା,
ସକଳ ମାଧୁରୀ ଏକତ୍ର ରଚିଲା,
ଟେକିକ ନ ଗଙ୍ଗ ତୁଳ । ୬ ।

ଯୁବଯାତ୍ରା ଦର୍ଶି ସୁନ୍ଦରୀମଣି
ମନେ ମନେ ତ ଯେ ଅଶଙ୍କା ଗଣି
ମରମବେଦନା ରଖି ଗୋପନେ
ଇତସ୍ତତଃ ହୁଏ ବିଭ୍ରାନ୍ତ ମନେ,
ରମଣୀଲଲାମ ବାଳା,
ଯେଣେ ଗ୍ରନ୍ଥେ ଭେଟଣେ ଫିଟାଇ ଦଏ ସେ
ମାଧୁରୀର ପଦ୍ମଶାଳା । ୭ ।

ଲଳନା-ଲଲାମ ଫିଟାଇ ମୁଦ୍ରା
ଜାଣିଲା ଲଗିଛି ତୁମୂଳ ଯୁଦ୍ଧ,
ଆଉର ଯେତେବେଳେ ଜାଣିବା କଥା
ପଡ଼ି ସାର ଦୁଃଖେ ନୋଇଁଲା ମଥା,
ଖସି ପଡ଼ିଲା ଦ ଜଳ,
ମସ୍ତକ ନୋଇଁଲା ବେଳରେ ସେପର
ଦଶିଲା ବାଳାବଦନ । ୮ ।

କ୍ଷଣେ ମୌନେ ରହି ଚେତ ବସିଲା,
କ୍ଷତ୍ର-ରକ୍ତ-ସ୍ରୋତ ଗାତ୍ରେ ଭସିଲା,
ଲେଖିଲା ଅନନ୍ତେ ରମଣୀମଣି,
ଲେଖି ପାରିବ ତା କେଉଁ ଲେଖନୀ ?
ଏକେତ ଦାମ୍ପତ୍ୟ ଗୀତ,
ହାରବାଳା ତୁଣି ହାରଯୀମନ୍ତ୍ରୀ
ଦୋହଦଲଗଣଦତ୍ତ । ୯ ।

ଲେଖିଲା, 'ହେ ନାଥ ! ପାଦେ ନମଇ',
ପଦ-ବନ୍ଦାପନା ଏଥି କରଇ,
ଦାସୀ-ଦୋଷ ଯେତେ ନ ଘେନ ମନେ,
ଜାଣ ପରା ମୁହିଁ ତବ ଚରଣେ,
ନ ମଣିବ ଏହା ଆନ,
କର୍ମନ ସ୍ୱର୍ଗ୍ରିଣୁ— ଧର୍ମ ଯେଣୁ ନାଥ !
ଯୋଷିତର ପ୍ରାଣ ସମାନ । ୧୦ ।

ଭେଟିବା ଦିନରୁ ବିରାଟପୁର,
ତବ ପ୍ରେମ ନାଥ ! ଭକ୍ତି ପ୍ରଚୁର
ପୁଣି, ସେବି ତବ ପଦଯୁଗଳ,
ଜାଳଇ ପ୍ରବଳ ପ୍ରେମ-ଅନଳ,
ବିଚ୍ଛେଦ ନକ୍ଷତ୍ର ସିନା,
କହିବା ବେଳରେ ବଢ଼ାଇ ଦଅଇ
ପ୍ରେମ-ଭୂଜାର ଗରିମା । ୧୧ ।

ପ୍ରେମ-ସୂତ୍ର ଅବା କେବେଳ କହିବ,
ବୃଥା ଚେଷ୍ଟା କର ଦହି ହୋଇବ,
ସହଜେ ପୁରୁଷ ପରୁଷ-ପ୍ରାଣ,
ନାରୀ ଅନୁରାଗ ନ କରେ ଟାଣ,
ସ୍ମରନ୍ତେ ଫାଟେ ହୃଦୟ,
ଅବଳାର ପ୍ରେମ ପ୍ରମର ଏକାଳେ
କୋହିକ କାଥ ଅଥସୃ । ୧୨ ।

ତବ ତାତ ନାଥ ! ତ୍ରିଦଶଜୟୀ,
ଜନନୀ ସୁଭଦ୍ରା ବିଶ୍ୱଣମୟୀ,
ପ୍ରଭୁ ଭଗବାନ ନିଜେ ମାତୁଳ,
ତବ ବାହୁବଳ ଏଥି ଅତୁଳ
ସୁରପତି ପ୍ରସାଦରୁ,
ପୂତ କୁରୁକ୍ଷେତ୍ର, ବୀର-ପ୍ରସୁବଲୋକ,
ବୀର-ବାଞ୍ଛା-କଳ୍ପତରୁ । ୧୩ ।

ବୃଦ୍ଧ ଦ୍ରୋଣଗୁରୁ ରଣପଣ୍ଡିତ,
ତୁମ୍ଭେ ଯୁବା ବୀର ଲୋକେ ବଦନ୍ତ,
କୁରୁଧାର୍ତ-ସିନ୍ଧୁ ଅତି ଭୀଷଣ,

ପାଣ୍ଡବ-ନାବିକ ମଧୁସୂଦନ,
ଧାଡ଼ି ତାଙ୍କର ଚରଣ,
ସମ୍ମୁଖ ସମରେ　　ଜୟୀ ହୁଅ ନାଥ,
ରଖ ଏ ଦାସୀର ପଣ । ୧୪ ।

ବୀର କନ୍ୟା ମୁଁ ମୋ ବୀରର ସ୍ପୃହା,
କ୍ଷତ୍ରଧର୍ମ ଯାର ମସ୍ତକଭୂଷା,
କେବଣେ ଭାଗ୍ୟବତୀ ନ ମଣେ ଦାସୀ,
ବୀରପୀମନ୍ତିନୀ ବୀରସ୍ବର୍ଗବାସୀ,
ଏଣୁ ସୁଖୀ ନିରନ୍ତର,
ଦାସୀର ଅମୂଲ୍ୟ　　ସମ୍ପଦ ଅଟେ ସେ
ବୀର-ପ୍ରେମ ମନୋହର । ୧୫ ।

ତବ ବୀର ପିତା ମତ୍ସ୍ୟଭବନେ
ବର୍ଷେକ ରହିଲେ ଯେବେ ଗୋପନେ,
ଉତ୍ତର ଗୋଯୁଦ୍ଧ ଲାଗିଲା ଘୋର,
ଦେବ-ଗୀତ-ଗୁରୁ ଥିଲେ ସେ ମୋର,
ଘେନିଲୁଁ ତାଙ୍କ ଶରଣ,
ଯୁଦ୍ଧେ ଜୟୀ ହୋଇ　ମୋତେ ଆଣି ଦେଲେ
ଶତ୍ରୁର ଶିରେଭୂଷଣ । ୧୬ ।

ତୁମ୍ଭେ ଯେ ତାଙ୍କର ପୁତ୍ର-ରତନ,
ଏ ଦୀନ ଦାସୀର ଜୀବନ-ଧନ,
ଏତେକ ମାଗୁଣି ତବ ଚରଣେ,
ବୃଦ୍ଧ ଦ୍ରୋଣ ଶିର ହରବ ରଣେ,
ଆଣିବ ତାହା ଯତନେ,
ଗର୍ଭବେଦନା ଯେ　　ଭୁଲିବଇଁ ମୁହିଁ
ଦେଖି ତାହା ନୟନେ । ୧୭ ।

ଜାଣିବ ହେ ନାଥ ପ୍ରାଣ ଅଥିର,
ସଂସାରେ ମରଣ ଅଟଇ ସ୍ଥିର,
ସମ୍ମୁଖ-ସମର ସ୍ୱରଗ-ବାସ,
ବୀରମାନେ ତହିଁ କୃତେ ନିବାସ,
ଉଭୟ ଠାବ ସମାନ,
ଜୟେ ଯଶୋମୃତ　　ମରଣେ ଅମୃତ,
ଧୀର ନ ପାଏ ଏମାନ । ୧୮ ।

ଧର୍ମରକ୍ଷା ଅଟେ ଯାହାଙ୍କ ପଣ,
ସଧର୍ମ ଯାହାଙ୍କୁ ନିକଟେ ଧରମ,
ଏକାକୁ ଅନେକେ ଧର୍ମ କରମ (୧)
ଚଳନ୍ତି ଘେନିଣ ଯହିଁ ଶରଣ,
ସେହି ରାଜା ଯୁଧିଷ୍ଠିର,
ତବ ଭାଗ୍ୟବଳେ　ବରିଲେ ସେ ଯୁଦ୍ଧେ
ବଧିବାକୁ ଦ୍ରୋଣବୀର, । ୧୯ ।

ଏ ଦାସୀ ଭାସଇ ଦୁଃଖର ସ୍ରୋତେ,
ମୂଢ଼ ରଖି ହୃଦେ ମୃଦବ ମୋତେ,
ମୁହିଁ ପଦ-ଦାସୀ, ତୁମ୍ଭେ ପ୍ରାଣେଶ,
ପ୍ରେମ ସ୍ପୃହା ପ୍ରାଣେ ବାଧେ ବିଶେଷ
କାନ୍ତ, ତବ ପଦ ବିନା ;
ଦାସୀର ସଂସାର—　ସାଗର-ନାବିକ
ତୁମ୍ଭେ ଏକା ଅଟ ସିନା । ୨୦ ।

ନମଇଁ ତୁମ୍ଭର ପଦ-କମଳେ,
ଜୟ-ଦୂର୍ବାକ୍ଷତ ଢ଼ାଳଇ ଭଲେ,
ଦାସୀ ବନ୍ଦାପନା କର ଗ୍ରହଣ
ଜୟୀ ହୁଅ କର ଶତ୍ରୁଦଳନ,
ଇଚ୍ଛା ମୋର ଶ୍ରୀଚରଣେ,
"ପାର୍ଥ-ପୁତ୍ର, କୃଷ୍ଣ— ଭଣିନେୟ ତୁମ୍ଭେ"
ସ୍ମରୁଥିବ ଏହା ରଣେ । ୨୧ ।

ଶ୍ରୀ ଦୈତ୍ୟାରି ହର

(୧) ଯୁଧିଷ୍ଠିରଙ୍କଠାରେ ଧର୍ମ ଓ କର୍ମ ପ୍ରତ୍ୟେକେ ପ୍ରତ୍ୟେକଙ୍କୁ ଅଧିଷ୍ଠ କରି ରହିଥିଲେ ।

## ପାରଳା ଖେମିଣ୍ଡିର ଦ୍ୱିତୀୟ ରାଜକୁମାର
## ଶ୍ରୀ ପଦ୍ମନାଭ ନାରାୟଣ ଦେବ ।

[ "ଉତ୍କଳ-ସାହିତ୍ୟ"ର ଯଥାସାଧ୍ୟ ଉନ୍ନତି ସମ୍ପାଦନ ଅମ୍ଭମାନଙ୍କ ଜୀବନର ପ୍ରଧାନ ଲକ୍ଷ୍ୟ । ଦୁଃଖର ବିଷୟ ଅମ୍ଭେମାନେ ଅବସ୍ଥାପନ୍ନ ଓ ଶିକ୍ଷିତ ଉତ୍କଳବାସିମାନଙ୍କ ନିକଟରୁ ଆଶାନୁରୂପ ସାହାଯ୍ୟ ଓ ସହାନୁଭୂତି ପାଉ ନାହୁଁ । ଉତ୍କଳର ଅଧିକାଂଶ ଖ୍ୟାତନାମା ସାହିତ୍ୟସେବକମାନଙ୍କର ଏବଂ ସ୍ୱଦେଶବତ୍ସଳ ସୁସନ୍ତାନମାନଙ୍କର ଫଟୋଗ୍ରାଫ୍ ନେଇ "ଉତ୍କଳ ସାହିତ୍ୟ"ରେ ପ୍ରକାଶ କରିବା ଅମ୍ଭମାନଙ୍କର ଗୋଟିଏ ବହୁକାଳପୋଷିତ ଆକାଂକ୍ଷା । ମାତ୍ର ଅମ୍ଭମାନଙ୍କର ଅବସ୍ଥା ଏପରି ନୁହେ ଯେ ଅମ୍ଭେମାନେ ନିଜ ବ୍ୟୟରେ ସମସ୍ତଙ୍କର ଫଟୋ ନେଇ ସେଥିରୁ ବ୍ଳକ୍ ପ୍ରସ୍ତୁତ କରାଇ ତାହା "ଉତ୍କଳ ସାହିତ୍ୟ"ରେ ପ୍ରକାଶ କରି ପାରିବୁ । ଅମ୍ଭମାନଙ୍କର ଏହିପରି ଅନେକ ଆକାଂକ୍ଷା କେବଳ ଆକାଂକ୍ଷାମାତ୍ରରେ ପର୍ଯ୍ୟବସିତ ରହିଅଛି । ଏ ଜୀବନରେ କେବେ ପୂର୍ଣ୍ଣ ହେବ କି ନାହିଁ, କହି ନ ପାରୁଁ ! ବିଧାତା ପୁରୁଷଙ୍କ ଇଚ୍ଛା ! ବର୍ତ୍ତମାନ କେବଳ "ଉତ୍ଥାୟ ହୃଦି ଲୀୟନ୍ତେ—"

ଶୀର୍ଷାଙ୍କିତ ବ୍ୟକ୍ତିଙ୍କ ନାମ ଉତ୍କଳ ସାହିତ୍ୟ କ୍ଷେତ୍ରରେ ସୁପରିଚିତ ହୋଇଅଛି । ଅଳ୍ପ ଦିବସ ପୂର୍ବେ ତାଙ୍କ ପ୍ରକାଶିତ ଖଣ୍ଡିଏ ଓଡ଼ିଆ ନାଟକରେ ତାଙ୍କର ପ୍ରତିମୂର୍ତ୍ତି ଦେଖି ତାଙ୍କୁ ବ୍ଳକ୍ ପ୍ରାର୍ଥନା କରିଥିଲୁଁ । ରାଜକୁମାର ମହୋଦୟ ବିନା ଆପତ୍ତିରେ ଅମ୍ଭମାନଙ୍କର ପ୍ରାର୍ଥନା ପୂରଣ କରି ଥିବାରୁ ଅମ୍ଭେମାନେ ହୃଦୟର ଗଭୀର କୃତଜ୍ଞତା ତାଙ୍କୁ ଅର୍ପଣ କରୁଅଛୁଁ । ତାଙ୍କର ପ୍ରତିମୂର୍ତ୍ତି ଏଥିର ପ୍ରଦତ୍ତ ହେଲା । ]

---

ରାଜକୁମାର ମହୋଦୟ ଉତ୍କଳର ବିଖ୍ୟାତ ଗଜପତିବଂଶସମ୍ଭୂତ ପାରଳା ଖେମିଣ୍ଡିର ବର୍ତ୍ତମାନ ବୃଦ୍ଧ ଜମିଦାର ମହୋଦୟଙ୍କର କନିଷ୍ଠ ପୁତ୍ର ଅଟନ୍ତି । ବୃଦ୍ଧ ଜମିଦାର ମହାଶୟ ନାନାକାରଣରୁ ଜମିଦାରୀ କାର୍ଯ୍ୟ ଚଳାଇବାରେ ଅକ୍ଷମ ହେବାରୁ ତାହାଁର ଭାର କୋର୍ଟ ଅବ୍ ୱାର୍ଡସଙ୍କ ହସ୍ତରେ ନ୍ୟସ୍ତ ହୋଇଥିଲା । ଉକ୍ତ କୋର୍ଟ ଅଧୀନରେ ପାରଳା-ଖେମିଣ୍ଡିରେ ଯେଉଁ ବିଦ୍ୟାଳୟ ସ୍ଥାପିତ ହୋଇଥିଲା, ସେଥିରେ ଅନ୍ୟାନ୍ୟ ୱାର୍ଡମାନଙ୍କ ସହିତ ଏ ମହାଶୟ ଓ ତାଙ୍କର ଜ୍ୟେଷ୍ଠ ଭ୍ରାତା (ବର୍ତ୍ତମାନ ରାଜୋପାଧିଭୂଷିତ ଜମିଦାର) କିଛିକାଳ ଅଧ୍ୟୟନ କରିଥିଲେ । ଶିକ୍ଷକମାନେ ଓଡ଼ିଆଭାଷାଭିଜ୍ଞ ନ ଥିବାରୁ ମାତୃଭାଷାର ଶିକ୍ଷା ତାଙ୍କର ସମୁଚିତରୂପେ ହୋଇ ପାରି ନ ଥିଲା । ୧୮୯୦ ଖ୍ରୀଷ୍ଟାବ୍ଦର ମଧ୍ୟଭାଗରେ ତାଙ୍କର ଜ୍ୟେଷ୍ଠ ଭ୍ରାତା ଜମିଦାରୀର ଭାର ପ୍ରାପ୍ତ ହେବାରୁ ଏହାଙ୍କର ଶିକ୍ଷା ଭାର ତାଙ୍କ ଉପରେ ପଡ଼ିଲା । ଏହି ସମୟରେ ଦୁଇ ଜଣ ଉପଯୁକ୍ତ ଶିକ୍ଷକଙ୍କ ଅଧୀନରେ ରହିବାରୁ ଏହାଙ୍କର ଶିକ୍ଷା ଉତ୍ତମରୂପେ ସମ୍ପାଦିତ ହୋଇଥିଲା । ସାହିତ୍ୟ ଛଡ଼ା ଏ ମହାଶୟ ଜ୍ୟୋତିର୍ବିଦ୍ୟା, ଜଡ଼ବିଜ୍ଞାନ ଏବଂ ରସାୟନ ଶାସ୍ତ୍ର ପ୍ରଭୃତିରେ ମଧ୍ୟ ସମୁଚିତ ଆଲୋଚନା କରିଅଛନ୍ତି । ଅମ୍ଭେମାନେ ତାଙ୍କ ସହିତ କଥାବାର୍ତ୍ତା କରି ଏ ସକଳ ଶାସ୍ତ୍ରରେ ତାଙ୍କର ପାଣ୍ଡିତ୍ୟର ପରିଚୟ ପ୍ରାପ୍ତ ହୋଇଅଛୁଁ । ବିଦ୍ୟାଳୟ ପରିତ୍ୟାଗ କରି ଏ ମହୋଦୟ ନାନା ପୁସ୍ତକ ଅଧ୍ୟୟନ ଓ ଭାରତବର୍ଷର ଅଧିକାଂଶ ସ୍ଥଳ ଭ୍ରମଣଦ୍ୱାରା ଆପଣାର ଜ୍ଞାନଭଣ୍ଡାରକୁ ଶତଗୁଣ ବର୍ଦ୍ଧିତ କରିଅଛନ୍ତି । ଏହାଙ୍କର ବୃହତ୍ ପୁସ୍ତକାଗାରରେ ଇଂରାଜୀ, ସଂସ୍କୃତ, ବଙ୍ଗଳା, ଓଡ଼ିଆ ପ୍ରଭୃତି ଭାଷାର ବହୁ ପାଣ୍ଡିତ୍ୟପୂର୍ଣ୍ଣ ଗ୍ରନ୍ଥାବଳୀ ସଯତ୍ନରେ ରକ୍ଷିତ ହୋଇ ଅଛି ଏବଂ ସେ ସମସ୍ତ ତାଙ୍କଦ୍ୱାରା ଉତ୍ତମରୂପେ

ଅଧୀତ ହୋଇଅଛି । ଦେଶ ବିଦେଶର ବହୁବିଧ ସମ୍ବାଦପତ୍ରାଦି ନିୟମିତରୂପେ ଅଧ୍ୟୟନ କରି ଜଗତର ସକଳ ପ୍ରକାର ସମ୍ବାଦ ଅବଗତ ହେବା ବିଷୟରେ ସେ ଅଭ୍ୟସ୍ତ । ଜ୍ଞାନପିପାସା ତାଙ୍କର ଅତ୍ୟନ୍ତ ବଳବତୀ । ପୁସ୍ତକାଦି ଅଧ୍ୟୟନରେ ଏବଂ ବନ୍ଧୁମାନଙ୍କ ସହିତ ବିବିଧ ବିଷୟର ଆଲୋଚନାରେ ତାଙ୍କର ଦିବସର ଅଧିକାଂଶ ସମୟ ଅତିବାହିତ ହୋଇଥାଏ । ମାତୃଭାଷା ପ୍ରତି ଏହାଙ୍କର ପ୍ରଗାଢ଼ ଅନୁରାଗର ଉଦାହରଣ ଉତ୍କଳବାସିଙ୍କୁ ନୂତନ କରି କହି ଦେବାକୁ ହେବ ନାହିଁ । ଗଞ୍ଜାମ ଜିଲ୍ଲାର ଓଡ଼ିଆ ସନ୍ତାନମାନଙ୍କର ଶିକ୍ଷା କମିଟି ସେ 'Madras educational uriya committee' ଙ୍କ ତତ୍ତ୍ୱାବଧାନରେ ଗୋଟିଏ ପାଣ୍ଠି ଖୋଲି ସମସ୍ତ ଭାରତବର୍ଷୀୟ ରଜା ମହାରଜାମାନଙ୍କ ସାହାଯ୍ୟ ଭିକ୍ଷା କରିଥିଲେ । ମାତ୍ର ଆଶାନୁରୂପ ଫଳ ନ ହେବାରୁ ଦୁଃଖିତ ହୋଇ ବର୍ତ୍ତମାନ କେବଳ ପାରଳାଖେମିଡ଼ିର ଓଡ଼ିଆ ସନ୍ତାନମାନଙ୍କର ଶିକ୍ଷା ନିମିତ୍ତ ମାସିକ ୨୦ ଟଙ୍କା ଦାନ କରି ଆସୁଅଛନ୍ତି । ଗଞ୍ଜାମ ଅଞ୍ଚଳର ପ୍ରତ୍ୟେକ ଦେଶ ହିତକର କାର୍ଯ୍ୟ ସହିତରେ ତାଙ୍କର ନାମ ଜଡ଼ିତ ଏବଂ ସେ ପ୍ରାୟ ପ୍ରତ୍ୟେକ ସଭା ସମିତିରେ ଅତି ଆଗ୍ରହ ସହକାରେ ଯୋଗ ଦେଇଥାନ୍ତି । ଏକା ଗଞ୍ଜାମ କାହିଁକି, ସମଗ୍ର ଉତ୍କଳ ଭୂମିରେ ଯେଉଁଠାରେ ଯେଉଁ ସତ୍‌କାର୍ଯ୍ୟ ଅନୁଷ୍ଠିତ ହେଉଅଛି, ସବୁଥିରେ ତାଙ୍କର ପୂର୍ଣ୍ଣ ସହାନୁଭୂତି ଓ ପ୍ରାଣର ଯୋଗ ରହିଅଛି । ରାଜକୁମାର ମହୋଦୟ କଂଗ୍ରେସର ଜଣେ ପରମବନ୍ଧୁ । ଲାହୋର, ପୁନା ଏବଂ ଅମରାବତୀ କଂଗ୍ରେସମାନଙ୍କରେ ପାରଳାବାସିଙ୍କର ପ୍ରତିନିଧିରୂପେ ଉପସ୍ଥିତ ହୋଇଥିଲେ ଏବଂ ଶେଷୋକ୍ତ କଂଗ୍ରେସରେ ବିଷୟ-ନିର୍ବାଚନ କମିଟିରେ ଆସନ ପ୍ରାପ୍ତ ହୋଇଥିଲେ । ଏହି କଂଗ୍ରେସକୁ ଯିବା ବେଳେ କିଛିଦିନ ଏହି କଟକ ନଗରରେ ଅବସ୍ଥାନ କରି ଏଠାକାର କେତେକ ପ୍ରଧାନ ବିଦ୍ୟାଳୟ ପ୍ରଭୃତି ଦେଖିଥିଲେ ଓ ପ୍ରଧାନ ବ୍ୟକ୍ତିମାନଙ୍କ ସହିତ ସାକ୍ଷାତ୍ ଓ ଆଳାପ କରିଥିଲେ । ୧୮୯୬ ଖ୍ରୀଷ୍ଟାବ୍ଦରେ ପାରଳାଖେମିଡ଼ିରେ ଗୋଟିଏ ପ୍ରେସ୍ ସ୍ଥାପିତ ହେବାରୁ ସେ କ୍ରମାନ୍ୱୟେ "ହରିରତ୍ନାବଳୀ" ଗୋପାଳକୃଷ୍ଣଙ୍କ "କୋଇଲି" "ତାଳ ସର୍ବସାରସଂଗ୍ରହ"* "ଗୀତ ସ୍ତବକ"* "ରାଧାଗୋବିନ୍ଦଜଣାଣ"* "କବିତା କଳିକା" "ସାବିତ୍ରୀ ଚରିତ" ଏବଂ ସଙ୍ଗୀତପ୍ରହ୍ଲାଦ ନାଟକ"* ପ୍ରକାଶ କରିଅଛନ୍ତି । ଏଥି ମଧ୍ୟରୁ *ଚିହ୍ନିତ ପୁସ୍ତକଗୁଡ଼ିକ ତାଙ୍କର ସ୍ୱରଚିତ ଅଟେ । ତାଙ୍କର ପ୍ରବର୍ତ୍ତନାରେ "Ganjam News" ନାମକ ଇଂରାଜୀ ସମ୍ବାଦପତ୍ର ଉକ୍ତ ପ୍ରେସରୁ ବାହାରି କ୍ରମାଗତ ପାଞ୍ଚବର୍ଷ କାଳ ଦକ୍ଷତାର ସହିତ ପରିଚାଳିତ ହୋଇଥିଲା । ଯେଉଁମାନେ ଥରେ ପାରଳାଖେମିଡ଼ି ଯାଇଅଛନ୍ତି, ସେମାନେ ଏହାଙ୍କର ଅତିଥେୟତା ସଦାଳାପ, ନମ୍ର ସ୍ୱଭାବ, ଉଦାରତା ପ୍ରଭୃତି ସଦ୍‌ଗୁଣାବଳୀରେ ମୋହିତ ହୋଇଅଛନ୍ତି । ଆମ୍ଭେମାନେ କାର୍ଯ୍ୟୋପଲକ୍ଷରେ ଦୁଇ ଥର ପାରଳାଖେମିଡ଼ି ଯାଇ ତାଙ୍କର ଆତିଥ୍ୟ ଗ୍ରହଣ କରି ବିବିଧ ବିଷୟରେ ତାଙ୍କ ସହିତ ଆଲୋଚନା କରି ପରମ ପ୍ରୀତି ଲାଭ କରିଅଛୁଁ । "ଉତ୍କଳ ସାହିତ୍ୟ" ତାଙ୍କଠାରୁ ଯେଉଁ ଅମୂଲ୍ୟ ସାହାଯ୍ୟ ପ୍ରାପ୍ତ ହୋଇଅଛି, ତାହା ପାଠକମାନଙ୍କୁ ଅବିଦିତ ନାହିଁ । ଆର୍ଥିକ ସାହାଯ୍ୟ ଛଡ଼ା ନାନା ସମୟରେ ଆମ୍ଭେମାନେ ତାଙ୍କଠାରୁ ଯେଉଁ ଅମୂଲ୍ୟ ଉତ୍ସାହପୂର୍ଣ୍ଣ ପତ୍ରମାନ ପାଇଅଛୁଁ ଏବଂ ସାକ୍ଷାତ୍ କାଳରେ ସୁମିଷ୍ଟ ସହୃଦୟ ବାକ୍ୟାବଳୀ ଶୁଣିଅଛୁଁ, ତାହା ଏ ଜୀବନରେ କଦାପି ବିସ୍ମୃତ ହୋଇ ପାରିବୁଁ ନାହିଁ । ଈଶ୍ୱର ଏହାଙ୍କୁ ସୁଦୀର୍ଘ ଜୀବନ ଓ ଅଖଣ୍ଡ ସ୍ୱାସ୍ଥ୍ୟ ପ୍ରଦାନ କରନ୍ତୁ, ଏହାହିଁ ଆମ୍ଭମାନଙ୍କର ହୃଦ୍‌ଗତ ପ୍ରାର୍ଥନା ।

## କ୍ଷୁଦ୍ର କ୍ଷୁଦ୍ର କବିତା ।

### ରାଜା ରାମମୋହନ ରାୟ ।

ପ୍ରାଚୀନ ଭାରତ ପୁଣ୍ୟର ଧାମ,
କୋଟିମୂର୍ତ୍ତି ଯାହାର ନାମ,
ପବିତ୍ର ପୁରାଣ ଭାରତେ ମହତ୍ତ୍ୱ,
ଜ୍ଞାନ କର୍ମ ପ୍ରେମ ଯୋଗ ଅନନ୍ତ,
ଦେଖେ ନୀଳାମ୍ବୁ ହରି
ବ୍ରହ୍ମଜ୍ଞାନ-ରତ୍ନ— ଭର୍ତ୍ତା'ର ସ୍ୱରୂପେ
ବାଣ୍ଟି ଦେଲେ କୃପା କରି । ୧ ।
ଜନକାଦି ଋଷି ଏ ଦେଶେ ଅସି
ଗଲେ ଆଦି ଶାସ୍ତ୍ର ବେଦ ପ୍ରକାଶି,
ରାମାୟଣ ମହାଭାରତ ବ୍ୟାସ
ବାଲ୍ମୀକି ଏ ଦେଶେ କଲେ ପ୍ରକାଶ,
ସାଙ୍ଖ୍ୟାଦି ଷଡ଼ ଦର୍ଶନ
କପିଳାଦି ଋଷି ଏହି ଦେଶେ ଜନ୍ମି
କରିଥିଲେ ପ୍ରଣୟନ । ୨ ।
ମହାକର୍ମ-ଯୋଗୀ ବୁଦ୍ଧ ଗୌତମ
ପ୍ରଚାରି "ଅହିଂସା ପରମ ଧର୍ମ,
ରିପୁନାଶ କର୍ମ-ନିର୍ବାଣ ହେତୁ"
ଉଡ଼ାଇଲେ ସାମ୍ୟ-ଗୌରବ-କେତୁ,
ମହାପ୍ରେମିକ ଚୈତନ୍ୟ
"ନାମେ ଭକ୍ତି ଜୀବେ ଦୟା" ଉପଦେଶି
ଏହି ଦେଶେ କଲେ ଧନ୍ୟ । ୩ ।
ଯୁଗଣୀଗ୍ୟାସ୍କ ଶୁକ ସନକ,
ମନୁ ପରାଶର ସ୍ମୃତିକାରକ,
ଭବଭୂତି କାଳିଦାସାଦି କବି,
ଭୂଷିଲେ ଅତୁଳ ଭାରତ-ଛବି
ରାମ କୃଷ୍ଣ ଯାର ବୀର,
ଜ୍ଞାନ-ଗରିମାରେ ଭାରତ ସମାନ
କେଉଁ ଦେଶ ପୃଥିବୀର । ୪ ।
ନାନକ କବୀର ତୁଳସୀ ଦାସ
ତୁକାରାମ ବା ଜଗନ୍ନାଥ ଦାସ
ନାନା ଯୁଗେ ନାନା ସାଧୁ ସଜ୍ଜନ
ସମାଜ ସଂସ୍କାର କଲେ ସାଧନ,
ଦେଶେ ଘୋର ବିଶୃଙ୍ଖଳା
ଘୋଟେ ଯେବେ ତେବେ ଜନ୍ମନ୍ତି ମହାତ୍ମା
ଘେନି ପରମାତ୍ମା କଳା । ୫ ।
ପୁଣି ଏ ଭାରତ ଦୁର୍ଭାଗ୍ୟବଳେ
ପଡ଼ିଥିଲା ଅବନତି-କବଳେ
ଏମନ୍ତ ସମୟେ ଜଗତଗୁରୁ
ଅଭୟ ଉଚ୍ଚାରି ହିନ୍ଦବ ପ୍ରଭୁ
ମହାପୁରୁଷ-ରତନ
ଅମାନିଶାଧ୍ୱାନ୍ତେ ଭାସ୍କର ସମ ଏ
ଭାରତେ କଲେ ପ୍ରେରଣ । ୬ ।
ଏକେଶ୍ୱରବାଦ-ପୁନଃସ୍ଥାପକ
ସ୍ୱାଧୀନତା-ଚିରପରିପୋଷକ
ମହାନ ପଣ୍ଡିତ ଦରିଦ୍ରମିତ୍ର
ସାମ୍ୟକାନ୍ତିସମାବେଶ-ଚରିତ୍ର
ସତ୍ୟନ୍ୟାୟବିଭୂଷଣ
ଶାସ୍ତ୍ର-ଅନ୍ତର୍ଦର୍ଶୀ ସୂକ୍ଷ୍ମ ସଂସ୍କାରକ
ରାଜା ଶ୍ରୀ ରାମମୋହନ । ୭ ।
ଜ୍ଞାନ କର୍ମ ପ୍ରେମ ଧୀର ନିତାନ୍ତ
ବହ୍ନି ସିନ୍ଧୁ ସମ ତେଜସ୍ୱୀ ଶାନ୍ତ
ସ୍ୱଦେଶବତ୍ସଲ ଉଦାରଚରିତ
ମହାସମନ୍ୱୟ-ଧର୍ମପ୍ରଣେତା
ରମଣୀ-ଚିରସହାୟ
ପ୍ରାଚ୍ୟ ପ୍ରତୀଚ୍ୟର ସମନ୍ୱୟକାରୀ
ଶ୍ରୀ ରାମମୋହନ ରାୟ

ଶ୍ରୀ ନନ୍ଦକିଶୋର ବଳ ।

### ଶୋକୋଚ୍ଛ୍ୱାସ ।

କୁକ୍ଷଣେ ଭାଦ୍ରବଷଷ୍ଠୀ ତ୍ରିଯାମା ପାହିଲା,
'ନୀଳକଣ୍ଠ ବଇକୁଣ୍ଠେ' ଜଗତ ରଟିଲା,
ବିହିର ଏ କି ବିଚାର !
ଅକାଳରେ ହରି ନେଲା ମନୀଷୀଙ୍କ ସାର ।୧।

ଶରତ ନିଶୀଥେ ଚନ୍ଦ୍ରମଣ୍ଡଳ ବଦନେ,
ଶିଶୁ ନିର୍ଝରିଣୀ ଲଭି ବନେ ଧୀର ସ୍ୱନେ,
କର ଦାଏ ଦନୀୟଣି,
ତେବେ କିପାଁ ଅନ୍ଧକାର ଘୋଟିଲା ଧରଣୀ । ୨ ।
ବଙ୍ଗୀୟ ବିଦ୍ୱତ୍-ଗ୍ରହମଣ୍ଡଳୀର ଶଶୀ
ଅସ୍ତମିତ ହେଲେ ନିଜ ଶୋଭା ପରକାଶି;
ଦୀନ ଉତ୍କଳ ଆକାଶେ
ନୀଳକାନ୍ତ ମଣି ପ୍ରଭା ଆଉ ନ ବିକାଶେ । ୩ ।
କଠୋର କାଳ କରାଳ କବଳେ ଧରଣି
ଗ୍ରାସଇ ମାନବକୁଳ ପୁଣି ଅଚେତନ,
ତାର ନାହିଁ ବୃଥାମଣି
କେଳେମାନ ହୃଦେ ସେହୁ ନ ଧରେ କରୁଣା । ୪ ।
କାଳର କୁଟିଳ ଗତି ଅତି ଚମତ୍କାର !
ଧନୀ ମାନୀ ମୂର୍ଖ ଜ୍ଞାନୀ ନ କରେ ବିଚାର;
ସେ ତ ଅତି ବଳଯୁତ
ତାର ଆଜ୍ଞା ଅନୁସରି ଚଳଇ ସଂସାର । ୫ ।
ଧନ୍ୟ ବିଭୋ ଧନ୍ୟ ତୁମ୍ଭ ବିଚିତ୍ର ବିଧାନ !
ସୃଷ୍ଟି ମଧ୍ୟେ ଶ୍ରେଷ୍ଠ କଲ ମାନବ ଜୀବନ,
କିନ୍ତୁ କି ଅଦ୍ଭୁତ ନୀତି
ଜନ୍ମିଲେ ମରଣ ବିନା ନାହିଁ ଅନ୍ୟ ଗତି । ୬ ।
ନଶ୍ୱର ଶରୀର ସିନା ଦେହେ ଲୀନ ହେଲା,
ପ୍ରାଣ-ବିହଙ୍ଗମ ବିଭୁ ପାଶେ ଉଡ଼ିଗଲା,
ଜୀବ ଭବେ ଆସେ ଏକା
ଯିବାବେଳେ ନ ହୁଅଇ କେହି ତାର ସଙ୍ଗୀ । ୭ ।
ନୀଳକଣ୍ଠ ଚାଲିଗଲେ ବୈକୁଣ୍ଠ ଭୁବନେ
କନ୍ଦାଇଣ ଶିଷ୍ୟଗଣ ଆତ୍ମୀୟ ସ୍ୱଜନେ,
ତୁମ୍ଭ ଅନାଥ ସନ୍ତାନ
କାନ୍ଦୁଛନ୍ତି ଅହରହ ଶୁଣ ତ୍ରିଲୋକ ନାଥ । ୮ ।
ସତ୍ୟ ଗୁରୋ ଉଡ଼ିଗଲ ତୁମ୍ଭେ ଜଡ ଧାମ,
ଜ୍ଞାନ ଅଭିଜ୍ଞଣ ମୂର୍ତ୍ତି କଲ ମନସ୍ତାମ,
ତେବେ ଆଉ କି ଭାବନା
'କୀର୍ତ୍ତିର୍ଯସ୍ୟ ସ ଜୀବତି' ଏହି ତ ମନ୍ତ୍ର । ୯ ।
ପ୍ରାଣଠାରୁ ବଳ ବଡ଼ ମନୁଷ୍ୟର ଧନ
ଜଗତରେ ନାହିଁ, ତଥ୍ୟ ଅଟେ ଏ ବଚନ,
ବୀଣାପାଣିଙ୍କ ସେବନେ
ଅଧ୍ୟାପକ ଦେଇଗଲେ ଅମୂଲ୍ୟ ରତନେ । ୧୦ ।
ଶିଖାଇଲେ ସୁଧୀବର ସ୍ୱୀୟ ଜୀବନେ
ବିଦ୍ୟା ଓ ବିନୟ ହୁଏ ଥାନ୍ତି ଏକାସନେ,
ଦୁଃଖୀ ଭାରତ କୁମର,
ଜ୍ଞାନାଲୋକେ ଖଣ୍ଡି ପାରେ ଅଜ୍ଞାନ-ତିମିର । ୧୧ ।
'ବିବାହ ଓ ନାରୀଧର୍ମ' 'ଗୀତାର ରହସ୍ୟ'
କୀର୍ତ୍ତିସ୍ତମ୍ଭ ସମ ହୁଏ ଭାରତେ ପ୍ରକାଶ,
ହିନ୍ଦୁ-କଲ୍ୟାଣ ମାନସେ
ରଚିଛନ୍ତି ବିଜ୍ଞବର ବହୁଳ ଆୟାସେ । ୧୨ ।
ଏକ ପିଣ୍ଡ ତ୍ୟଜି ଅନ୍ୟ ପିଣ୍ଡେ ଯାଏ ପ୍ରାଣ
କୋବିଦେ ବୋଲନ୍ତି ଏହା ଅଟଇ ପ୍ରମାଣ,
ଯଦି ସତ୍ୟ ଏ ବଚନ
ଦିବ୍ୟ ଦେହେ ବିରାଜିବେ ପଣ୍ଡିତ-ରତନ । ୧୩ ।
ଭକ୍ତି-ପୁଷ୍ପାଞ୍ଜଳି ଦେଇ ବିଭୁଙ୍କ ଚରଣେ
ସର୍ବେ ମିଳି ବର ଯାଚୁଁ ଶୋକାକୁଳ ମନେ,
ପ୍ରଭୁ ମଙ୍ଗଳନିଧାନ
ତାଙ୍କ ଆତ୍ମାପରେ ଶାନ୍ତି କରନ୍ତୁ ବିଧାନ । ୧୪ ।

ଅବ୍‌ସର୍ଭର କ୍ଲବର ଜଣେ ସଭ୍ୟ

## ବିବିଧ ପ୍ରସଙ୍ଗ ।

୧ । ସମ୍ବଲପୁର ବାସିଙ୍କ ସାଧୁ ସଙ୍କଳ୍ପ—— ସମ୍ବଲପୁର ଜିଲ୍ଲାରେ ଓଡ଼ିଆ ଭାଷାର—ତଥା ଓଡ଼ିଆଙ୍କର ଲାଞ୍ଛନାର କଥା ପାଠକମାନଙ୍କୁ ନୂତନ ଭାବରେ କହିବାକୁ ହେବ ନାହିଁ । ଏ ସମ୍ବନ୍ଧରେ ଅମ୍ଭେମାନେ ଏକାଧିକ ଥର ଅଭିମତ ବ୍ୟକ୍ତ କରି— ଯଥାର୍ଥରେ ରାଜପୁରୁଷମାନଙ୍କର ବିଚାର-ଭବ କରିବା ସାଧାରଣ ମାନବର କ୍ଷମତାର ବହିର୍ଭୂତ ! ପୃଥକ୍ ଗୋଟିଏ ପ୍ରଦେଶର ଭାଷାକୁ ସରକାରୀ କାର୍ଯ୍ୟାଳୟମାନଙ୍କରୁ ନିର୍ବାସିତ କରି ମୁଷ୍ଟିମେୟ ରାଜକର୍ମଚାରୀଙ୍କ ଭାଷା ପ୍ରବର୍ତ୍ତନ କରିବାର ସପକ୍ଷ ଯୁକ୍ତିଗୁଡ଼ିକ ଅମ୍ଭେମାନେ ଏ ପର୍ଯ୍ୟନ୍ତ ବୁଝି ପାରିଲୁଁ ନାହିଁ — କୌଣସି କାଳେ ବୁଝି ପାରିବୁଁ ନାହିଁ ! ଯେ ଯାହା ହେଉ, ବର୍ତ୍ତମାନ ସମ୍ବଲପୁରର ଓଡ଼ିଆ ଭାଇମାନଙ୍କର ସୁଦୃଢ଼ ସଙ୍କଳ୍ପ,

ଉତ୍ସାହ ଓ ଉଦ୍ୟମ ଦେଖି ଆମ୍ଭେମାନେ ମୋହିତ ହୋଇଅଛୁଁ । ଉତ୍ତର ଭାଷାର ପୁନଃପ୍ରତିଷ୍ଠା ବା ଉତ୍କଳ ପ୍ରଦେଶ ସଙ୍ଗେ ସମ୍ବଲପୁରର ସମ୍ମିଳନ ଏ ଉଭୟରୁ ଗୋଟିଏ ନ ହେବା ପର୍ଯ୍ୟନ୍ତ ସେମାନେ ଆନ୍ଦୋଳନ ପରିତ୍ୟାଗ କରିବେ ନାହିଁ । ଏହାହିଁ ମାତୃବତ୍ସଳ ସନ୍ତାନର କାର୍ଯ୍ୟ । ସର୍ବତ୍ର ଯାକ ସ୍ଥାନ ଓଡ଼ିଆଙ୍କର ଲାଞ୍ଛନା ଦେଖି ନୀରବରେ କେବଳ ଅଶ୍ରୁପାତ କରିବାକୁ ଇଚ୍ଛା ହୁଏ ! ଏତେ ଲାଞ୍ଛନାରେ ସୁଦ୍ଧା ଏ ଅଭାଗା ଜାତିର ଚୈତନ୍ୟୋଦୟ ହେବାକୁ ନାହିଁ । କଥା କଥାକେ ଆତ୍ମକଳହ, ଭାଇର ଅନିଷ୍ଟଚିନ୍ତା, ସ୍ୱଦେଶର ଉନ୍ନତିର ମୂଳରେ କୁଠାରାଘାତ ! ଆତ୍ମସମ୍ମାନ-ଜ୍ଞାନ ନାହିଁ, ଅଗ୍ରୋନ୍ନତିର ଆକାଂକ୍ଷା ନାହିଁ । ସମବେତ ଚେଷ୍ଟା କାହୁଁ ଆସିବ ? ବରଂ ବିଚ୍ଛେଦର ବହ୍ନି ପ୍ରଜ୍ୱଳିତ କରିବାକୁ ଅନେକ ମହାବୀର ! ସର୍ବୋପରି କ୍ଷୁଦ୍ର ସ୍ୱାର୍ଥ ! ତାହାର ମହିମା କିଏ ବୁଝିବ ? ଏହି ପ୍ରକାର ତମସାଚ୍ଛନ୍ନ ଅବସ୍ଥାରେ ସୁଦ୍ଧା ଯେ ଟିକିଏ ଆଶାର ଜ୍ୟୋତି ଦେଖା ଯାଉଅଛି, ଏହାହିଁ ସୌଭାଗ୍ୟ ବୋଲିବାକୁ ହେବ । ଭାଇ ଭାଇର ସାହାଯ୍ୟ ଲୋଡ଼ୁ ଅଛନ୍ତି—ଭାଇ (ଅନ୍ତତଃ କେତେକ) ଭାଇଙ୍କ ଦୁଃଖରେ ସହାନୁଭୂତି ଦେଖାଇ ଅଛନ୍ତି । ଈଶ୍ୱର କରନ୍ତୁ, ଏହାର ମାତ୍ରା ଦିନକୁ ଦିନ ବଢ଼ୁ । ମାନ୍ୟବର ଦାସ ମହୋଦୟ ଓଡ଼ିଶାପକ୍ଷରୁ ଭାରତ ଗବର୍ଣ୍ଣମେଣ୍ଟଙ୍କ ନିକଟକୁ ଯେଉଁ ଟେଲିଗ୍ରାମ୍ ପଠାଇ ଅଛନ୍ତି, ତାହା ସମୟୋଚିତ ହୋଇଅଛି । ଏହା ଅନେକଙ୍କୁ ଜାଗ୍ରତ କରିଥିବ । ବୋଧ ହୁଏ ଏତେ ବେଳକୁ ଉପସ୍ଥିତ ଆବେଦନର ଭାଗ୍ୟର ମୀମାଂସା ହୋଇ ଯାଇଥିବ । ଏତେବେଳେ ଆଉ କୌଣସି କଥା କହିବାର ଆକାଂକ୍ଷା ନାହିଁ । ଆମ୍ଭେମାନେ କେବଳ ସୁସମ୍ବାଦର ପ୍ରତୀକ୍ଷାରେ ରହିଲୁଁ ।

୨ । ଶୋକସଭା—ନବଭାରତର ପିତା ମହାତ୍ମା ରାଜା ରାମମୋହନ ରାୟଙ୍କ ଅଷ୍ଟଷଷ୍ଟିତମ ସାମ୍ବତ୍ସରିକ ଶ୍ରାଦ୍ଧୋପଲକ୍ଷରେ ଭାରତର ନାନା ସ୍ଥାନରେ ଗତ ସେପ୍ଟେମ୍ବର ୨୭ ତାରିଖରେ ସଭା ଅନୁଷ୍ଠିତ ହୋଇଥିଲା । ଆମ୍ଭମାନଙ୍କ ଏ ନଗରୀର ବକ୍ଷରେ କଟକ ପ୍ରିଣ୍ଟିଂକମ୍ପାନୀଙ୍କ ଦ୍ୱିତଳ ଗୃହରେ ଉକ୍ତ ଦିବସ ସାୟଂକାଳରେ ଯେଉଁ ବୃହତ୍ ସଭା ହୋଇଥିଲା, ସେଥିରେ ମାନ୍ୟବର ଜଜ ଶ୍ରୀଯୁକ୍ତ ବରଦାଚରଣ ମିତ୍ର ମହୋଦୟ ସଭାପତି ଆସନ ଗ୍ରହଣ କରିଥିଲେ ଏବଂ ସ୍ଥାନୀୟ କଲେଜର ଅସ୍ଥାୟୀ ଅଧ୍ୟକ୍ଷ ଶ୍ରୀଯୁକ୍ତ କ୍ଷୀରୋଦଚନ୍ଦ୍ର ରାୟ ଚୌଧୁରୀ ଏମ୍. ଏ. ପ୍ରସିଦ୍ଧ ଉକିଲ ଶ୍ରୀଯୁକ୍ତ ଜାନକୀନାଥ ବସୁ ବି. ଏଲ୍. ଭିକ୍ଟୋରିଆ ହାଇ ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀଯୁକ୍ତ ଧୀରେନ୍ଦ୍ରନାଥ ଚୌଧୁରୀ ଏମ୍. ଏ. ଏବଂ ଏ ପତ୍ରିକାର ସମ୍ପାଦକ ରାଜାଙ୍କର ମହତ୍ତ୍ୱ ସମ୍ବନ୍ଧରେ ବକ୍ତୃତା ପ୍ରଦାନ କରିଥିଲେ । ବକ୍ତୃତାର ସାରାଂଶ ପ୍ରକାଶ କରିବାର ସ୍ଥାନ ଆମ୍ଭମାନଙ୍କର ନାହିଁ । ସ୍ଥୂଳରେ ଏତିକି କହାଯାଇ ପାରେ ଯେ ସମସ୍ତେ ରାଜାଙ୍କୁ ନବଭାରତର ପିତା, ପ୍ରାଚ୍ୟ-ପ୍ରତୀଚ୍ୟ ଓ ନୂତନ-ପୁରାତନର ସମନ୍ୱୟକାରୀ ଯୁଗପ୍ରବର୍ତ୍ତକ ମହାପୁରୁଷ ବୋଲି ଘୋଷଣା କରିଥିଲେ । କଟକର ଡେପୁଟୀ ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ ଆଶୁତୋଷ ଦତ୍ତ ମହାଶୟ ରାଜାଙ୍କ ସ୍ମୃତିଚିହ୍ନ ସ୍ୱରୂପ ଉତ୍କଳର ସର୍ବଶ୍ରେଷ୍ଠ ଇଂରାଜୀପ୍ରବନ୍ଧ ଲେଖକଙ୍କୁ ଗୋଟିଏ ପଦକ ପ୍ରଦାନ କରିବାର ଘୋଷଣା କରିଅଛନ୍ତି । ଆଗାମୀ ବର୍ଷ ନିମିତ୍ତ ପ୍ରବନ୍ଧର ବିଷୟ "ଉତ୍କଳର ପ୍ରାଚୀନ ସାହିତ୍ୟ" ସ୍ଥିରୀକୃତ ହୋଇଅଛି । ଆମ୍ଭେମାନେ ଦତ୍ତ ମହୋଦୟଙ୍କୁ ଅନ୍ତରର ସହିତ ଧନ୍ୟବାଦ ଦେଉଅଛୁଁ ।

୩ । ସୁଲକ୍ଷଣା ଦେବୀ—'ପାରିଜାତମାଳା'ର ରଚୟିତ୍ରୀ ସୁଲକ୍ଷଣା ଦେବୀ ଇହ ଧାମରୁ ଅବସୃତ ହୋଇଅଛନ୍ତି । ଆଧୁନିକ ଶିକ୍ଷା ଲାଭ ନ କରି ପ୍ରାଚୀନ ଢଙ୍ଗରେ ଯତ୍‌ସାମାନ୍ୟ ଶିକ୍ଷା ପ୍ରାପ୍ତ ହୋଇ ଉତ୍କଳର ଜଣେ ଗୃହସ୍ଥ ଲଳନା ମାତୃଭାଷାର ଗଳଦେଶରେ ଯେଉଁ ସ୍ୱର୍ଗୀୟ ସୁମନର ମାଳାଟିଏ ପିନ୍ଧାଇ ଦେଇ ଅଛନ୍ତି, ତାହାର ସୌରଭ କୌଣସି କାଳେ ବିଲୁପ୍ତ ହେବ ନାହିଁ । ସୁଲକ୍ଷଣା ଦେବୀଙ୍କ ନଶ୍ୱର ଦେହ ବିନଷ୍ଟ ହେଲା, ମାତ୍ର ଯଶୋଦେହରେ ସେ ଉତ୍କଳ ଭୂମିରେ ଚିର-ବିରାଜମାନ । ଆମ୍ଭେମାନେ ତାଙ୍କ ଆତ୍ମାର କଲ୍ୟାଣ ନିମିତ୍ତ ବିଧାତାଙ୍କ ଚରଣରେ ପ୍ରାର୍ଥନା କରୁଅଛୁଁ ଏବଂ ସେଥି ସଙ୍ଗେ ସଙ୍ଗେ ଏହା ମଧ୍ୟ କାମନା କରୁଅଛୁଁ ଉତ୍କଳ ଜନନୀ ସୁଲକ୍ଷଣାଙ୍କ ତୁଲ୍ୟ ବହୁ କନ୍ୟା-ରତ୍ନ ବକ୍ଷରେ ଧାରଣ କରି ଧନ୍ୟ ହେଉନ୍ତୁ ।

୧୮୯୯

| | | |
|---|---|---|
| ଶ୍ରୀଯୁକ୍ତ ଦଶ୍ରଥ ଦାସ | କଟକ | ଟ ୧୲ |

୧୯୦୦

| | | |
|---|---|---|
| ,, ରମାଚରଣ ଦାସ | କଟକ | ଟ ୧୲ |
| ,, ପ୍ରହ୍ଲାଦ ସାମଲ | କେନ୍ଦ୍ରାପଡ଼ା | ଟ ୧୲ |
| ,, ମହେନ୍ଦ୍ରନାଥ ଦତ୍ତ | କଟକ | ଟ ୨୲ |
| ,, ଭଗବାନ ଖାଡ଼ଙ୍ଗା | ,, | ଟ ୧୲ |
| ,, ରାଧାକୃଷ୍ଣ କାନୁନଗୋ | ,, | ଟ ୧୲ |
| ,, ସୂର୍ଯ୍ୟମଣି ମହାନ୍ତି | ସୋନପୁର | ଟ ୪୲ |
| ,, ଦଶ୍ରଥ ଦାସ | କଟକ | ଟ ୧୲ |

ପଞ୍ଚମବର୍ଷ ।

| | | |
|---|---|---|
| ,, ଅନନ୍ତରାମ ରଥ | ମାନ୍ଦ୍ରାଜ | ଟ ୧୲ |
| ,, ଶ୍ୟାମସୁନ୍ଦର ବାବୁ | ଲକ୍ଷ୍ମୀଗଞ୍ଜ | ଟ ୧୲ |
| ,, ବୈଦ୍ୟନାଥଗର୍ଗଯେଲ | କେନ୍ଦୁଝର | ଟ ୨୲ |
| ,, ଦାଶରଥି ଜେନା | କଟକ | ଟ ୧୲ |
| ,, ରାଜକୁମାର ପି. ଏମ୍. ଦେଓ | ଲକ୍ଷ୍ମୀଗଞ୍ଜ | ଟ ୨୲ |
| ,, ରଘୁନାଥ ପଟ୍ଟନାୟକ | କଟକ | ଟ ୧୲ |
| ,, ମହାରାଜା ବାହାଦୁର | କେନ୍ଦୁଝର | ଟ ୨୲ |
| ,, ବୈକୁଣ୍ଠନାଥ ଦାସ | ,, | ଟ ୨୲ |
| ,, ଦୈତ୍ୟାରି କର | ଜାଜପୁର | ଟ ୨୲ |
| ,, ମଦନମୋହନ ନାୟକ | ବାରିପଦା | ଟ ୧୲ |
| ,, ରଘୁନାଥ କର | ମାଣିକଘର | ଟ ୧୲ |
| ,, ରମାନାଥ ଦାସ | ବାଲେଶ୍ୱର | ଟ ୨୲ |
| ,, ସୁନ୍ଦର ଭୋଇ | ସୈଫଲା | ଟ ୨୲ |
| ,, ଲକ୍ଷ୍ମୀନାରାୟଣ ପଟ୍ଟନାୟକ | ବ୍ରହ୍ମପୁର | ଟ ୧୲ |
| ,, ଚନ୍ଦ୍ରମଣି ସତ୍ପଥୀ | ଅଠମଲ୍ଲିକ | ଟ ୨୲ |
| ,, ଯୁବରାଜ ସାହେବ | ,, | ଟ ୨୲ |
| ,, ଯୁବରାଜ ସାହେବ | ବାମଣ୍ଡା | ଟ ୨୲ |
| ,, ନନ୍ଦକିଶୋର ପଟ୍ଟନାୟକ | ବଲାଙ୍ଗିର | ଟ ୨୲ |
| ,, ଗିରୀଶ ମଲ୍ଲିକ | ,, | ଟ ୨୲ |
| ,, ହରିବନ୍ଧୁ ପଟ୍ଟନାୟକ | ,, | ଟ ୨୲ |
| ,, ଧନଞ୍ଜୟ ସିଂହ | ,, | ଟ ୨୲ |
| ଶ୍ରୀଯୁକ୍ତ ଟିକାୟତ ବଳଭଦ୍ର ଦେଓ | ବାମଣ୍ଡା | ଟ ୨୲ |
| ,, ରାଜାସାହେବ | ମଞ୍ଜୁଷା | ଟ ୪୲ |
| ,, ଫକୀର ମିଶ୍ର | ଅଠମଲ୍ଲିକ | ଟ ୨୲ |
| ,, ବାସୁଦେବ ପଟ୍ଟନାୟକ | ଢେଙ୍କାନାଳ | ଟ ୧୲ |
| ,, ଗୋବର୍ଦ୍ଧନ ଘୋଷାଲ | ହିନ୍ଦୋଳ | ଟ ୨୲ |
| ,, ଦକ୍ଷେଶ୍ୱର ମିଶ୍ର | ଅଠମଲ୍ଲିକ | ଟ ୨୲ |
| ,, ଗୁରୁଚରଣ ଜେନା | କଟକ | ଟ ୦ ୳ |
| ,, ବାମନ ପାହାଣୀ | ଲକ୍ଷ୍ମୀଗଞ୍ଜ | ଟ ୨୲ |
| ,, କୃତ୍ତିବାସ ସିଂହ | ରାମବାଗ | ଟ ୧୲ |
| ,, ଯଶୋବନ୍ତ ସାହୁ | କଟକ | ଟ ୧୲ |
| ଶ୍ରୀମତୀ ରାଣୀସାହେବ, ଢେଙ୍କାନାଳ-କଟକ | | ଟ ୨୲ |
| ଶ୍ରୀଯୁକ୍ତ ରାଜା ବାହାଦୁର | ସୋନପୁର | ଟ ୨୲ |
| ,, ଯୋଗେଶଚନ୍ଦ୍ର ଦାସ | ବାମଣ୍ଡା | ଟ ୨୲ |
| ,, ସୁଦାମଚରଣ ନାୟକ | କଟକ | ଟ ୨୲ |
| ,, ଲକ୍ଷ୍ମୀଧର ମହାନ୍ତି | ବଡ଼ିପଡ଼ା | ଟ ୧୲ |
| ,, ଅଚ୍ୟୁତାନନ୍ଦ ଗୌନ୍ତିଆ | ରାମ୍ପୁଲା | ଟ ୨୲ |
| ,, ଭୋଳାନାଥ ସିଂହ | ଘୋଷେ | ଟ ୨୲ |
| ,, ଜଳଧର ଦେଓ | ବାମଣ୍ଡା | ଟ ୨୲ |
| ,, ହୃଷୀକେଶ ମହାପାତ୍ର | କଟକ | ଟ ୧୲ |
| ,, କାଶୀନାଥ ଧାଙ୍ଗଡ଼ାମାଝି | ଲଡୁଙ୍ଗା | ଟ ୨୲ |
| ,, କୃଷ୍ଣକୃଷ୍ଣ ମିଶ୍ର | ପୁରୀ | ଟ ୧୲ |
| ,, ମହାରାଜା ବାହାଦୁର | ବାମଣ୍ଡା | ଟ ୨୲ |
| ,, ଶ୍ରୀନିବାସ ମେହେର | ନାଗପୁର | ଟ ୧୲ |
| ,, ରାଧାକାନ୍ତ ବହିଦାର | ,, | ଟ ୧୲ |
| ,, ବିଦ୍ୟାଧର ସତ୍ପଥୀ | ସୋନପୁର | ଟ ୨୲ |
| ,, ନୀଳମଣି ଦାସ | ,, | ଟ ୧୲ |
| ,, ବାଳମୁକୁନ୍ଦ ପୂଜାହାରୀ | ,, | ଟ ୨୲ |
| ,, କିଶୋରମୋହନ ଦାସ | ,, | ଟ ୪୲ |
| ,, ନଦିୟାବଲ୍ଲଭ ରାମ୍ଭ | ଯାଜପୁର | ଟ ୨୲ |
| ,, ଭଗବାନ ନନ୍ଦ | ବରଗଡ଼ | ଟ ୧୲ |
| ,, ମହାରାଜ ବାହାଦୁର | ମୟୂରଭଞ୍ଜ | ଟ ୨୲ |
| ,, ରାଜା ସାହେବ | ଖଡ଼ିଆକୋଟ | ଟ ୪୲ |

# ଅଙ୍କପ୍ରଶ୍ନ ସମାଧାନ ।

ମୂଲ୍ୟ ଆଠ ଅଣା ।

ଶ୍ରୀଯୁକ୍ତ ରାୟ ରାଧାନାଥ ରାୟ ବାହାଦୁର ମହୋଦୟ ଏ ପୁସ୍ତକ ସମ୍ବନ୍ଧରେ ଲେଖିଅଛନ୍ତି:—

"ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓଙ୍କ ସଙ୍କଳିତ "ଅଙ୍କପ୍ରଶ୍ନ ସମାଧାନ" ଓଡ଼ିଆ ଭାଷାରେ ଏହି ଶ୍ରେଣୀର ସର୍ବପ୍ରଥମ ପୁସ୍ତକ । ମଧ୍ୟମ ଶ୍ରେଣୀ ଏବଂ ଉଚ୍ଚପ୍ରାଥମିକ ବିଦ୍ୟାଳୟର ଛାତ୍ରମାନଙ୍କର ଗଣିତାନୁଶୀଳନର ସମ୍ୟକ୍ ଉପଯୋଗୀ ଏଭଳି ଗ୍ରନ୍ଥ ଉନ୍ନତ ବଙ୍ଗ ପ୍ରଦେଶରେ ସୁଦ୍ଧା ଦୁର୍ଲଭ, ଓଡ଼ିଶାର ତ କଥା ନାହିଁ । ନମ୍ରପ୍ରାଇମେରୀ ଛାତ୍ରମାନେ ମଧ୍ୟ ଏହାଦ୍ୱାରା ସମଧିକ ଉପକୃତ ହେବେ । ଏ ପୁସ୍ତକର ଅନୁଶୀଳନଦ୍ୱାରା ଶିକ୍ଷକମାନେ ମଧ୍ୟ ଗଣିତାଧ୍ୟାପନାରେ କୁଶଳତା ଲାଭ କରି ପାରିବେ ଫଳତଃ ଜଟିଳ ଗଣିତ ଶାସ୍ତ୍ରରେ ବ୍ୟୁତ୍ପତ୍ତି ଲାଭ ବିଷୟରେ ଉତ୍କଳୀୟ ଛାତ୍ରବୃନ୍ଦଙ୍କ ପକ୍ଷରେ ଏ ପୁସ୍ତକ ଗୋଟିଏ ଅଭିନବ ରାଜପଥ ସ୍ୱରୂପ, ଏହା ମୁଁ ମୁକ୍ତକଣ୍ଠରେ କହିପାରେ ।"

ଯେଉଁମାନେ ୫ଖଣ୍ଡରୁ ୨୫ଖଣ୍ଡ ପର୍ଯ୍ୟନ୍ତ ନେବେ, ସେମାନଙ୍କୁ ଶତକଡ଼ା ୨୦ଟଙ୍କା କମିସନ ଦିଆଯିବ ।

---

( ଦୀର୍ଘକାଳର ପରୀକ୍ଷିତ )

# ଧାତୁର ଅବ୍ୟର୍ଥ ମହୌଷଧ ।

ମୂଲ୍ୟ ପ୍ରତି ଡବା ଟ ୦ ।୵ ଛ ଅଣା, ମାସୁଲ ଚାରି ଅଣା । ନାନାପ୍ରକାର ଶାରୀରିକ ଅଶାନ୍ତିଦାୟକ ଧାତୁ ରୋଗର ଏମନ୍ତ ମହୋପକାରୀ ଔଷଧ ଆଜି ଯାଏ ଆଉ ବାହାରି ନାହିଁ । ସହସ୍ର ସହସ୍ର ଧାତୁବ୍ୟାଧିଗ୍ରସ୍ତ ଲୋକ ଆରୋଗ୍ୟ ଲଭି ମୁକ୍ତକଣ୍ଠରେ ଔଷଧର ଗୁଣର ପ୍ରଶଂସା କରୁଛନ୍ତି । ଶତ ଶତ ଲୋକଙ୍କ ପ୍ରଶଂସାପତ୍ର ଅଛି ।

ପ୍ରାପ୍ତି ସ୍ଥଳ ।

ସ୍ପଷ୍ଟରୂପେ ନାମ, ଧାମ, ଡାକଘର, ଜିଲ୍ଲା ଏବଂ କାହାର କେତୋଟି ଡବା ଆବଶ୍ୟକ, ଗୋଟିଏ ପୋଷ୍ଟକାର୍ଡଦ୍ୱାରା ଜଣାଇବା ମାତ୍ରେ ଔଷଧ ଓ ତାହାର ବ୍ୟବସ୍ଥାପତ୍ର ପ୍ରେରିତ ହୁଏ ।

ଶ୍ରୀ ରାମତାରକ ସେନ,
ଦେଖ ଉତ୍କଳ ପ୍ରେସ, ବାଲେଶ୍ୱର ।

---

## ମୂଳଶବ୍ଦବୋଧିନୀ ।

ଏଥିରେ ପ୍ରାୟ ୨୫୦୦ ପ୍ରଚଳିତ ଓଡ଼ିଆ ଶବ୍ଦର ମୂଳ ସଂସ୍କୃତ ଶବ୍ଦ ଓ ଓଡ଼ିଆ ଭାଷାରେ ପ୍ରଚଳିତ କେତେଗୁଡ଼ିଏ ଅବିକୃତ ସଂସ୍କୃତ ଶବ୍ଦ ପ୍ରଦତ୍ତ ହୋଇଅଛି । ଏହା ଓଡ଼ିଆ ଭାଷା ଶିକ୍ଷାର୍ଥୀମାନଙ୍କ ପକ୍ଷରେ ଅତ୍ୟନ୍ତ ଉପଯୋଗୀ ପୁସ୍ତକ । କାଗଜ, ଛପା ଓ ମଲାଟ ସବୁ ସୁନ୍ଦର । ମୂଲ୍ୟ ଆଠ ଅଣା ମାତ୍ର । କଟକର ପୁସ୍ତକ ଦୋକାନମାନଙ୍କରେ ଏବଂ ଉତ୍କଳ ସାହିତ୍ୟ ଅଫିସରେ ମିଳିବ ।

ଶ୍ରୀମତୀ ରେବା ରାୟଙ୍କ
ସଙ୍କଳିତ ।
ରନ୍ଧନପ୍ରଣାଳୀ । (ଯନ୍ତ୍ରସ୍ଥ)
ଶୀଘ୍ର ପ୍ରକାଶିତ ହେବ ।
ଉତ୍କଳ ସାହିତ୍ୟ ଅଫିସରେ
ଏବଂ
ଅନ୍ୟାନ୍ୟ ପୁସ୍ତକ ଦୋକାନରେ
ମିଳିବ ।

# ନୂତନ ଆୟୋଜନ ।

ସର୍ବସାଧାରଣଙ୍କ ଅବଗତ ନିମିତ୍ତ ପ୍ରକାଶ କରୁଅଛୁଁ ଯେ ଆମ୍ଭେ ସନ ୧୮୯୬ ମସିହାରୁ ଏହି ସହରର ବାଲୁବଜାରରେ ଡାକ୍ତରି ଔଷଧାଳୟ ସ୍ଥାପନ କରି ସୁଖ୍ୟାତି ସହିତ ନିଜେ ବ୍ୟବସାୟ ଚଳାଇ ଆସୁଅଛୁଁ । ଆମ୍ଭ ଔଷଧାଳୟରେ ସର୍ବଦା ନୂତନ ଔଷଧ ଓ ଡାକ୍ତରି ଅସ୍ତ୍ର ବିକ୍ରୟାର୍ଥ ପ୍ରସ୍ତୁତ ଥାଏ, ଅଥଚ ଆମ୍ଭେ ସେ ସମସ୍ତ ଆଶାନୁରୂପ ସୁଲଭ ମୂଲ୍ୟରେ ବିକ୍ରୟ କରିଥାଉଁ । ଯେଉଁମାନେ ଆମ୍ଭ ସହିତ କାରବାର କରି ଅଛନ୍ତି ଓ କରୁଅଛନ୍ତି, ସେମାନେ ଆମ୍ଭର ବ୍ୟବହାର ଯଥା ଉତ୍ତମରୂପେ ଜାଣନ୍ତି । ବୃଥା ବାଗାଡମ୍ବରରେ କିଛି ପ୍ରୟୋଜନ ନାହିଁ ।

ସମ୍ପ୍ରତି ଆମ୍ଭର ହିତାକାଂକ୍ଷୀ କେତେକ ଭଦ୍ରବ୍ୟକ୍ତିଙ୍କ ଅନୁରୋଧରେ ସର୍ବସାଧାରଣଙ୍କୁ ସୁଲଭ ମୂଲ୍ୟରେ ଖାଣ୍ଟି ନୂତନ ଔଷଧ ପ୍ରଚୁର ପରିମାଣରେ ଯୋଗାଇବା ଅଭିପ୍ରାୟରେ ବ୍ୟବସାୟର ପ୍ରସାର ବଢ଼ାଇ ଅଛୁଁ । ପୂର୍ବାପେକ୍ଷା ଅଧିକ ପରିମାଣରେ ସର୍ବପ୍ରକାର ପ୍ରୟୋଜନୀୟ ଔଷଧ ଓ ଡାକ୍ତରି ଅସ୍ତ୍ର ସର୍ବଦା ପ୍ରସ୍ତୁତ ରଖିବାର ବିହିତ ବନ୍ଦୋବସ୍ତ କରିଅଛୁଁ । ଆମ୍ଭ ସହିତ କାରବାର କଲେ କେହି କୌଣସି ପ୍ରକାରେ ପ୍ରତାରିତ ହେବେ ନାହିଁ । ଆମ୍ଭେ ଅନ୍ୟ ବ୍ୟକ୍ତିଠାରେ ଭାର ଦେଇ ନିଶ୍ଚିନ୍ତ ନ ରହି ନିଜେ ସମସ୍ତ ବିଷୟ ପୁଙ୍ଖାନୁପୁଙ୍ଖରୂପେ ଦେଖି ବ୍ୟବସ୍ଥା କରିଥାଉଁ । ଇଚ୍ଛା କଲେ ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କଠାରୁ ପ୍ରଶଂସାପତ୍ର ସଂଗ୍ରହ କରି ସର୍ବସାଧାରଣଙ୍କ ଗୋଚରାର୍ଥ ପ୍ରକାଶ କରିପାରୁଁ । କିନ୍ତୁ ସେଥିରେ ଫଳ କଣ ? କାର୍ଯ୍ୟ କାଳରେ ଭଲ ମନ୍ଦ ସବୁ ଆପେ ପ୍ରକାଶ ପାଏ । ଆମ୍ଭେ ଆଉ ଅଧିକ କିଛି ନ କହି ସର୍ବସାରଣଙ୍କୁ ପ୍ରାର୍ଥନା କରୁଅଛୁଁ, ନିଜେ ନିଜେ ପରୀକ୍ଷା କରି ସତ୍ୟ ମିଥ୍ୟା ନିର୍ଣ୍ଣୟ କରନ୍ତୁ ।

ମଫସଲବାସିମାନଙ୍କଠାରୁ ଆମ୍ଭେ ଭି: ପି: ପାର୍ଶେଲରେ ଔଷଧାଦି ପଠାଇ ଥାଉଁ । ମାତ୍ର ଅପରିଚିତ ସ୍ଥଳମାନଙ୍କରୁ ଚତୁର୍ଥାଂଶ ମୂଲ୍ୟ ଅଗ୍ରିମ ନ ପାଇଲେ ପଠାଇବାର ନିୟମ ନାହିଁ ।

ଶ୍ରୀ ନଗେନ୍ଦ୍ରନାଥ ଘୋଷ, ଡି. ଏଲ୍, ଏମ୍, ଏସ୍,

ସ୍ୱତ୍ୱାଧିକାରୀ

ଘୋଷ ଏଣ୍ଡ ବ୍ରଦର୍ସ ଡ୍ରଗିଷ୍ଟ ହଲ୍, ବାଲୁବଜାର,

କଟକ ।

# ଉତ୍କଳର କାହାଣୀ ।

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ବି. ଏ. ସଂଗୃହୀତ ।

୮୬ ପୃଷ୍ଠାରେ ସମାପ୍ତ—ମୂଲ୍ୟ ଚାରି ଅଣା ।

ଏ ପୁସ୍ତକ, କଟକ ବାଲୁବଜାର ଉତ୍କଳ ସାହିତ୍ୟ ଅଫିସ, କଟକର ଅନ୍ୟାନ୍ୟ ପୁସ୍ତକ ଦୋକାନ, ବାଲେଶ୍ୱର ଟ୍ରେନିଂ ସ୍କୁଲର ଶିକ୍ଷକ ଶ୍ରୀ ନାରାୟଣ ମିଶ୍ର, ପୁରୀ ହରଚଣ୍ଡୀ ସାହି ସ୍କୁଲର ହେଡ୍‌ପଣ୍ଡିତ ଶ୍ରୀ କାଶୀନାଥ ମହାପାତ୍ର, ଯାଜପୁର ହାଇ ସ୍କୁଲର ଦ୍ୱିତୀୟ ପଣ୍ଡିତ ଶ୍ରୀ ଗଦାଧର ରଥ, ଭଦ୍ରଖ ହାଇ ସ୍କୁଲର ଦ୍ୱିତୀୟ ପଣ୍ଡିତ ଶ୍ରୀ ମହାଦେବ ମିଶ୍ର, କାନପଡା—ସମ୍ବଲପୁର ଶ୍ରୀ ବୃନ୍ଦାବନ ମିଶ୍ର ଓ ସିଦ୍ଧେଶ୍ୱର ପୁର ସ୍କୁଲର ହେଡ୍ ପଣ୍ଡିତ (ପୋଃ ବରବାଟୀ, ଜି: କଟକ) ଶ୍ରୀ ଈଶ୍ୱରଚନ୍ଦ୍ର ମିଶ୍ରଙ୍କ ନିକଟରେ ମିଳିବ ।

ଶ୍ରୀଯୁକ୍ତ ରାୟ ରାଧାନାଥ ରାୟ ବାହାଦୁର ଲେଖି ଅଛନ୍ତି—

ଆପଣଙ୍କର ଅନୁଗ୍ରହୋପହାର "ଉତ୍କଳର କାହାଣୀ" ପ୍ରାପ୍ତ ହୋଇ ଆପ୍ୟାୟିତ ହେଲି । ଏ ସଂଗ୍ରହ ଓଡ଼ିଆ ଭାଷାର ଖଣ୍ଡିଏ ଉପାଦେୟ ଗ୍ରନ୍ଥ । ଓଡ଼ିଶାର ସାହିତ୍ୟ ଶିକ୍ଷା କରିବାକୁ ଏବଂ ପ୍ରାଚୀନ ସାମାଜିକ ନୀତି ଜାଣିବାକୁ ଯେଉଁମାନେ ଇଚ୍ଛୁକ ଏ ପୁସ୍ତକ ଅଧ୍ୟୟନଦ୍ୱାରା ସେମାନଙ୍କର ବିଶେଷ ଶ୍ରେୟଃ ଲାଭ ହେବାର ସମ୍ଭାବନା ।

ଶ୍ରୀଯୁକ୍ତ ବାବୁ ଫକୀର ମୋହନ ସେନାପତି ମହାଶୟ ଲେଖି ଅଛନ୍ତି—

ଆପଣଙ୍କ କାହାଣୀ ପାଠ କଲି । ପୂର୍ବେ କେତେକ ଅଂଶ ପଢ଼ିଥିଲି । ଦେଖିଲି ଉପଯୁକ୍ତ ହସ୍ତରେ ଉପଯୁକ୍ତ କାର୍ଯ୍ୟ ହୋଇଅଛି । କାହାଣୀଗତ ଭାବ ଏବଂ ଭାଷା ରକ୍ଷା ବିଷୟରେ ସମ୍ପୂର୍ଣ୍ଣରୂପେ କୃତକାର୍ଯ୍ୟ ହୋଇ ଅଛନ୍ତି । କାଳଧର୍ମାନୁସାରେ ଆମ୍ଭମାନଙ୍କ ପୂର୍ବ ପୂର୍ବ ପିତାମହୀମାନଙ୍କ କଳ୍ପନାପ୍ରସୂତ କାହାଣୀ ପ୍ରତି ନବ୍ୟବାଳକମାନଙ୍କର ଶ୍ରଦ୍ଧା ହ୍ରାସ ହେଉଅଛି । ଲୁପ୍ତ ପ୍ରାୟ ବିଷୟ ଗୁଡ଼ିକ ଆପଣଙ୍କ ନାମ ସହିତ ଯୁଗାନ୍ତର ପର୍ଯ୍ୟନ୍ତ ବିଦ୍ୟମାନ ରହିବ । ଶିକ୍ଷିତ ଯୁବକମାନଙ୍କର ମାତୃଭାଷା ପ୍ରତି ଅନୁରାଗ ଦେଖିଲେ ସ୍ୱତଃ ମନରେ ଆନନ୍ଦ ଜାତ ହୁଏ । ଆପଣ ମୋହର ଆନ୍ତରିକ ଧନ୍ୟବାଦ ଗ୍ରହଣ କରନ୍ତୁ ।

## ବିଜ୍ଞାପନ ।

ଶ୍ରୀ ନନ୍ଦକିଶୋର ବଳ ବି, ଏ, ପ୍ରଣୀତ "ପଲ୍ଲୀଚିତ୍ର" (ମୂଲ୍ୟ ଟ°୧୵) "ନିର୍ଝରିଣୀ" (ମୂଲ୍ୟ ଟ° ।) "ସୀତାବନବାସ" (ମୂଲ୍ୟ ଟ° ୩/] ଓ "କୃଷିକୁମାରୀ" [ମୂଲ୍ୟ ଟ° ୩/] କଟକର ସମସ୍ତ ବଡ଼ ବଡ଼ ପୁସ୍ତକ ଦୋକାନରେ, ସମ୍ବଲପୁର ନନ୍ଦପଡ଼ାର ଶ୍ରୀ ବୃନ୍ଦାବନ ମିଶ୍ରଙ୍କଠାରେ ମିଳେ । ଶ୍ରୀଯୁକ୍ତ ରାୟ ରାଧାନାଥ ରାୟ ବାହାଦୁର ମହୋଦୟ ଲେଖି ଅଛନ୍ତି ।

"His 'Pallichitra' 'Nirjharini' and 'Sitabanabasa' are replete with passages of great beauty and tenderness and as such can challenge comparison with the best poetical compositions extant in the Oriya language."

---

(୧) ନବବିଧାନ ପ୍ରସଙ୍ଗ (ବଙ୍ଗଳା)

(୨) *Faith and Culture in the New Dispensation Brahmo Samaj*

(୩) *The Religion of Keshub Chunder Sen*

(୪) *The Gospel of Love.*

ଏହି ଚାରି ଖଣ୍ଡି ପୁସ୍ତକ ବିତରଣ ନିମିତ୍ତ ପ୍ରସ୍ତୁତ ଅଛି । (ଯୁବାବାଟ, କଟକ ) ବାବୁ ରାଜମୋହନ ବସୁଙ୍କ ନିକଟରେ ମିଳିବ । ଦୁଇ ପଇସାର ଡ଼ାକ ଟିକଟ ପଠାଇଲେ ମଫସଲର ପ୍ରାର୍ଥୀମାନେ ଚାରି ଖଣ୍ଡି ପୁସ୍ତକ ଏକତ୍ର ପାଇ ପାରିବେ ।

---

ଅମ୍ଭେ ସମ୍ପ୍ରତି ଗୋଟିଏ ପୁସ୍ତକ ଦୋକାନ ଫିଟାଇ ନାନା ପ୍ରକାର ପ୍ରୟୋଜନୀୟ ଓଡ଼ିଆ ପୁସ୍ତକ ଉଚିତ ମୂଲ୍ୟରେ ବିକ୍ରୟ କରୁଅଛୁଁ । ଆମ୍ଭଠାରୁ କେହି ଟ ୫୧ ରୁ ଅଧିକ ମୂଲ୍ୟର ପୁସ୍ତକ କ୍ରୟ କଲେ ଶ୍ରୀଯୁକ୍ତ ନନ୍ଦକିଶୋର ବଳ ବି, ଏ, ଙ୍କ ପ୍ରଣୀତ ପଲ୍ଲୀଚିତ୍ର ନାମକ ସୁନ୍ଦର କବିତା ପୁସ୍ତକ ଖଣ୍ଡିଏ ଉପହାର ପାଇ ପାରିବେ ।

ମଫସଲର ଦେହାମାନଙ୍କଠାରୁ ଭିଃ ପିଃ ପୋଷ୍ଟରେ ପୁସ୍ତକ ପଠା ଯାଇ ଥାଏ ।

ଶ୍ରୀ ବୃନ୍ଦାବନ ମିଶ୍ର ।
ନନ୍ଦପଡ଼ା, ସମ୍ବଲପୁର ।



# ଉତ୍କଳ ସାହିତ୍ୟ ।



## ଘଟୀଯନ୍ତ୍ର ।

ମାନବ ସର୍ବଦା ଉନ୍ନତିଶୀଳ । ଆଦିମ ଶୋଚନୀୟ ଅବସ୍ଥାରୁ ଆରମ୍ଭ କରି ତାହାର ଦୈନନ୍ଦିନ ଉନ୍ନତି ହେଉଅଛି । ଉକ୍ତ ଦୁରବସ୍ଥା (ଆହାରାନ୍ବେଷଣ-ଚିନ୍ତା)ରୁ ମୁକ୍ତ ହୋଇ ଯେତେବେଳେ ମାନବ ଭୋଜନ ସମ୍ବନ୍ଧରେ ନିଶ୍ଚିନ୍ତ ହେଲା, ସେତେବେଳେ ସେ ଖାଦ୍ୟାଦିର ଆନୁଷଙ୍ଗିକ ଓ ଅନ୍ୟାନ୍ୟ ସାଂସାରିକ କାର୍ଯ୍ୟ ସାଧନର ସୁବିଧା ନିମିତ୍ତ ନାନାବିଧ କୌଶଳମାନ ଉଦ୍ଭାବନ କରିବାକୁ ବାଧ୍ୟ ହେଲା । ଅନନ୍ତର ତତ୍ସମ୍ବନ୍ଧୀୟ ସୂକ୍ଷ୍ମ ସୂକ୍ଷ୍ମ ବିଷୟର ତତ୍ତ୍ୱ ଆଲୋଚିତ ହେଲା । ସେହି ଉଦ୍ଭାବିତ କୌଶଳମାନଙ୍କ ମଧ୍ୟରୁ ଗୋଟିଏ ସୁକୌଶଳର ବିଷୟ ଏଠାରେ ବର୍ଣ୍ଣିତ ହେବ ।

ଗ୍ରହ ଉପଗ୍ରହାଦିର ନିୟମିତ ଗତି ଦେଖି ଗଣନାର ସୁବିଧା ନିମିତ୍ତ ସମୟକୁ ପ୍ରଥମତଃ ବର୍ଷ, ମାସ ଓ ଦିନ ପ୍ରଭୃତି ବିଭାଗରେ ବିଭକ୍ତ କରା ଯାଇଥିଲା । ତଦନନ୍ତର ଯେତେବେଳେ ଦିନକୁ ଅନ୍ତର ସୂକ୍ଷ୍ମତର ଅଂଶରେ ବିଭକ୍ତ କରିବାର ଆବଶ୍ୟକତା ହେଲା, ସେତେବେଳେ ସୁବିଧା ନିମିତ୍ତ ନାନା କୌଶଳର ଉଦ୍ଭାବନ ହେଲା । ସେହି ସମୟାଂଶ ଅର୍ଥାତ୍ ଘଡ଼ିକା ଯେଉଁ ଯନ୍ତ୍ର ସାହାଯ୍ୟରେ ଜ୍ଞାପିତ ହୁଏ, ତାହାର ନାମ ଘଟୀ-ଯନ୍ତ୍ର ।

ସର୍ବାଦୌ କେଉଁ ଦେଶରେ ଘଟୀଯନ୍ତ୍ରର ଆବିଷ୍କାର ହୋଇଅଛି, ତାହା ସ୍ଥିର କରିବାର କୌଣସି ଯୌକ୍ତିକ ପ୍ରମାଣ ନାହିଁ । ତଥାପି ଅନୁମାନଦ୍ୱାରା ଏହା ସିଦ୍ଧ ହୋଇଅଛି ଯେ, ଯେଉଁ ସମୟରେ ଅନ୍ୟ ଦେଶୀୟ ଲୋକମାନେ କାଳଜ୍ଞାପକ କୌଣସି ଯନ୍ତ୍ରର କଥା କିଛି ଅବଗତ ହୋଇ ନ ଥିଲେ ଏବଂ ଘଟୀଯନ୍ତ୍ର ଆବିଷ୍କୃତ ହୋଇ ନ ଥିଲା, ସେତେବେଳେ ମଧ୍ୟ ଭାରତରେ ତାହାର ପ୍ରଚଳନ ଥିଲା । ଅନେକ ଅନେକ ପ୍ରାଚୀନ ଗ୍ରନ୍ଥରେ ଘଟୀଯନ୍ତ୍ରର ଉଲ୍ଲେଖ ଦେଖାଯାଏ । ପ୍ରାଚୀନ ଭାରତୀୟ ଆର୍ଯ୍ୟଗଣ ସ୍ୱୀୟ ବହୁତୋମୁଖୀ ପ୍ରତିଭା ପ୍ରଭାବରେ କାଳନିର୍ଣ୍ଣାୟକ ବିବିଧ ଯନ୍ତ୍ର ଆବିଷ୍କାର କରିଥିଲେ । ଯଥାଃ— (୧) ଛାୟାଯନ୍ତ୍ର, (୨) କପାଳକଯନ୍ତ୍ର, (୩) ବାଲୁକା-ଯନ୍ତ୍ର, (୪) ମୟୂରଯନ୍ତ୍ର ଓ (୫) ଜଳଯନ୍ତ୍ର ।

ଲମ୍ବଭାବରେ ପ୍ରୋଥିତ ଗୋଟିଏ ବଂଶଶଲାକା ବା କାଷ୍ଠଦଣ୍ଡର ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଛାୟାସପାତକୁ କେତେକ ସମ ଭାଗରେ ବିଭକ୍ତ କରି ଦଣ୍ଡାଦି ନିରୂପଣ କରାଯାଏ; ତାହା ଛାୟାଯନ୍ତ୍ର । ନିମ୍ନଲିଖିତରୂପେ କପାଳକଯନ୍ତ୍ରର ନିର୍ମାଣ ହୁଏ । ଘଟର ଅଧୋଭାଗାକୃତି ସଦୃଶ ଗୋଟିଏ ତାମ୍ରପାତ୍ରର ନିମ୍ନରେ ଏପରି ଏକ ସୂକ୍ଷ୍ମ ଛିଦ୍ର କର ଯଦ୍ଦ୍ୱାରା ଅଭ୍ୟନ୍ତରକୁ ଜଳ ଧୀରେ ଧୀରେ ପ୍ରବେଶ କଲେ ଠିକ ଏକ ଦଣ୍ଡରେ ପାତ୍ରଟି ପୂର୍ଣ୍ଣ ହେବ ଓ ନିମଗ୍ନ ହେବ । ପାତ୍ରରେ ଜଳ ପ୍ରବେଶାରମ୍ଭଠାରୁ ନିମଜ୍ଜନ ପର୍ଯ୍ୟନ୍ତ ସମୟ ଯେପରି ଏକ ଦଣ୍ଡରୁ ଅଧିକ ନ ହୁଏ, ସେଥିପାଇଁ

ବିଶେଷ ଦୃଷ୍ଟି ରଖି କାର୍ଯ୍ୟ କରିବାକୁ ହେବ । ଯେଉଁ ପାତ୍ରଟି ଏକ ଅହୋରାତ୍ରରେ ୬୦ ଥର ନିମଗ୍ନ ହୁଏ, ତାହାକୁ ଶୁଦ୍ଧ ମନେ କରିବାକୁ ହେବ । ତଦନନ୍ତର ଏକ ଜଳପୂର୍ଣ୍ଣ ଭାଣ୍ଡରେ ଉକ୍ତ ପାତ୍ରଟିକୁ ସ୍ଥାପିତ କର, ଜଳରେ ପାତ୍ରର ନିମଜ୍ଜନାନୁସାରେ କାଳପରିମାଣ ସ୍ଥିରୀକୃତ ହୁଏ । *

ଅନ୍ୟ ମତପନ୍ଥୀଙ୍କ ମତରେ ଦଶ ପଲ ତାମ୍ର-ଦ୍ୱାରା ଘଟାର୍ଦ୍ଧଜଳଭାଗ ସଦୃଶ ଏପରି ଗୋଟିଏ ପାତ୍ର ନିର୍ମାଣ କର, ତାହାର ଉଚ୍ଚତା ଯେପରି ୬ ଅଙ୍ଗୁଳ ଏବଂ ମୁଖର ବିସ୍ତାର ଦ୍ୱିଗୁଣ ହେବ । ସାର୍ଦ୍ଧ ତ୍ରି(୩½) ମାଷ ସ୍ୱର୍ଣ୍ଣଦ୍ୱାରା ଚତୁରଙ୍ଗୁଳି ପରିମିତ ଶଲାକା ପ୍ରସ୍ତୁତ କରି ପାତ୍ରରେ ବିଦ୍ଧ କର । ଏହା ମଧ୍ୟ ଗୋଟିଏ ଘଟୀଯନ୍ତ୍ର । ଉକ୍ତ ପାତ୍ରଟିକୁ କୌଣସି ଏକ ଜଳପୂର୍ଣ୍ଣ ପାତ୍ରରେ ରଖିଲେ ତାହା ଏକ ଦଣ୍ଡରେ ଜଳପୂର୍ଣ୍ଣ ହେବ । ଅନ୍ୟ ଏକ ପ୍ରକାର ଘଟୀଯନ୍ତ୍ର ଏଠାରେ ଉଲ୍ଲେଖ ଯୋଗ୍ୟ । ପୂର୍ବୋକ୍ତ ପାତ୍ରବତ୍ ଏକ ସଚ୍ଛିଦ୍ର ପାତ୍ର ନେଇ ଗୋଟିଏ ଜଳପୂର୍ଣ୍ଣ କୁଣ୍ଡରେ ରଖ । ଏ ପାତ୍ରର କୌଣସି ନିର୍ଦ୍ଦିଷ୍ଟ ପରିମାଣ ନାହିଁ । ଇଚ୍ଛାନୁଯାୟୀ କରାଯାଇ ପାରେ । ବିଶେଷରୂପେ ଏହା ଦେଖିବାକୁ ହେବ ଯେ ତାହା ଦିବାରାତ୍ରି ମଧ୍ୟରେ କେତେ ଥର ନିମଗ୍ନ ହୁଏ । ଯେତେ ଥର ନିମଗ୍ନ ହୁଏ, ତାହାର ଅନୁପାତାନୁସାରେ ପ୍ରତ୍ୟେକ ଥରରେ କେତେ ସମୟ ହୁଏ, ଏହା ସ୍ଥିର କରାଯାଏ ।

ତାଦୃଶ ଯେଉଁ ସଚ୍ଛିଦ୍ର ବାଲୁକାପୂର୍ଣ୍ଣ ପାତ୍ର-ଦ୍ୱାରା ସମୟ ଜ୍ଞାପିତ ହୁଏ, ତାହାକୁ ବାଲୁକା-ଯନ୍ତ୍ର କହନ୍ତି । ମୟୂରଯନ୍ତ୍ର ମଧ୍ୟ ଜଳ ସାହାଯ୍ୟରେ ଚାଳିତ ହୁଏ । ଏହିପରି ନାନାପ୍ରକାରେ ପ୍ରାଚୀନ ଆର୍ଯ୍ୟମାନେ କାଳ ନିରୂପଣ କରୁଥିଲେ ।

ପାଶ୍ଚାତ୍ୟଦେଶୀୟ ଲୋକମାନେ ମଧ୍ୟ ଏହି ଉପାୟରେ ଦିବସକୁ କେତେକ ସମ ଭାଗରେ ବିଭକ୍ତ କରିଥିଲେ । ଘଟୀଯନ୍ତ୍ର ପରେ ସୂର୍ଯ୍ୟଘଡ଼ି ବା ରବିଚକ୍ର (Sun-dial) ଜଳଘଡ଼ି ଓ ବାଲୁଘଡ଼ି (Sand-glass) ଉଦ୍ଭାବିତ ହୋଇଥିଲା । ରବିଚକ୍ରରେ ସୂର୍ଯ୍ୟୋଦୟଠାରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ଛାୟାସଂପାତ ଦେଖି ସମୟ ନିରୂପଣ କରାଯାଏ । କିନ୍ତୁ ତାହା ସବୁ ସମୟରେ ପ୍ରକୃତ ସମୟ ଦର୍ଶାଏ ନାହିଁ । ରବିଚକ୍ର-ଦର୍ଶିତ ସମୟ ଓ ସାଧାରଣ ଘଡ଼ିର (Clock) ସମୟ ମଧ୍ୟରେ ପାର୍ଥକ୍ୟ ଲକ୍ଷିତ ହୁଏ । ଯେଉଁବେଳେ ସୂର୍ଯ୍ୟ ପୃଥିବୀର ଅଳ୍ପ ଦୂରରେ ଥାଏ, ସେତେବେଳେ ଅଧିକତର ଗତିହେତୁରୁ ରବିଚକ୍ରର ସମୟ ଘଡ଼ିର ସମୟ ଅପେକ୍ଷା ଚଞ୍ଚଳ (fast) ଏବଂ ସୂର୍ଯ୍ୟ ଦୂରରେ ଥିବାବେଳେ ଗତିର ଅଳ୍ପତା ହେତୁରୁ ସୂର୍ଯ୍ୟଘଡ଼ିର ସମୟ ସାଧାରଣ ଘଡ଼ିର ସମୟାପେକ୍ଷା କିଛି ବିଳମ୍ବୀ (slow) । ଉକ୍ତ ଯନ୍ତ୍ର ୫୫୦ ଖ୍ରୀ: ପୂ: ଅବ୍ଦରେ ମହାତ୍ମା ଅନେକ୍ସାମିଣ୍ଡରଙ୍କଦ୍ୱାରା ଆବିଷ୍କୃତ ହୋଇଥିଲା । ନିମ୍ନରେ ତାଦୃଶ ଯନ୍ତ୍ରର ଗୋଟିଏ ଚିତ୍ର ପ୍ରଦତ୍ତ ହେଲା ।




Sundial ( ସୂର୍ଯ୍ୟଘଡ଼ି )

* ତାମ୍ରପାତ୍ରମଧଶ୍ଛିଦ୍ରଂ ନ୍ୟସ୍ତଂ କୁଣ୍ଡେଽମଲାମ୍ବୁନି । ଷଷ୍ଟିର୍ମଜ୍ଜତ୍ୟହୋରାତ୍ରେ ସ୍ଫୁଟଂ ଯନ୍ତ୍ରଂ କପାଲକଂ । (ସୂର୍ଯ୍ୟସିଦ୍ଧାନ୍ତ)

ଏହା ଛାୟାର ଅନୁଯାୟୀ ଅନୁସାରେ ବିଭକ୍ତ କେତେକ ବର୍ଣ୍ଣାଙ୍କିତ ଗୋଟିଏ ଚତୁଷ୍କୋଣ କ୍ଷେତ୍ର। ମଧ୍ୟାଙ୍କିତ ଅର୍ଦ୍ଧବୃତ୍ତଟି ୧୮ ବିଭାଗ ଏବଂ ୧୮୦ ଉପବିଭାଗରେ ବିଭକ୍ତ। ଏକ ପାର୍ଶ୍ୱରୁ ଅନ୍ୟ ପାର୍ଶ୍ୱପର୍ଯ୍ୟନ୍ତ ୧୮୦ ଅଂଶ ଅତିକ୍ରମ କରିବାକୁ ୧୨ ଘଣ୍ଟା ଲାଗେ। ଅତଏବ ୧୫ ଉପବିଭାଗ ଅତିକ୍ରମ କରିବାକୁ ଏକ ଘଣ୍ଟା ଲାଗିବ। ପ୍ରତ୍ୟେକ ଉପବିଭାଗକୁ ଯଦି ୪ ସମ ଭାଗରେ ବିଭକ୍ତ କରାଯାଏ, ତାହା ହେଲେ ସେହି ଚତୁର୍ଥାଂଶ ମିନଟ୍-ଜ୍ଞାପକ ହେବ। ଉକ୍ତ ଅଂଶାଙ୍କିତ ଚକ୍ରରେ ଛାୟାପାତ ଦେଖି ସମୟ ସ୍ଥିର କରାଯାଏ।

ଜଳଘଡ଼ିରେ ଦୁଇଟି ଆଧାର ଥାଏ। ତନ୍ମଧ୍ୟରେ ଗୋଟିଏ ଜଳପୂର୍ଣ୍ଣ, ଅନ୍ୟଟି ଶୂନ୍ୟଗର୍ଭ। ପାତ୍ରଦ୍ୱୟ ଏପରି ଦୃଢ଼ସଂଲଗ୍ନ ହୋଇଥାଏ ଯେ ତନ୍ମଧ୍ୟରେ ବାହ୍ୟ ବାୟୁ ଓ ଧୂଳ୍ୟାଦି ପ୍ରବେଶ କରି ପାରେ ନାହିଁ। ଉଭୟ ଆଧାରର ସଂଯୋଗ ସ୍ଥଳରେ ଯେଉଁ ସୂକ୍ଷ୍ମ ଛିଦ୍ର ଥାଏ, ତଦ୍ୱାରା ଏକାଧାରର ଜଳ କ୍ରମଶଃ ନ୍ୟସ୍ତ ହୋଇ ଅନ୍ୟଟିରେ ସଞ୍ଚିତ ହୁଏ। ଏକ ପାତ୍ରରୁ ଅନ୍ୟ ପାତ୍ରର ପତନକାଳକୁ ସମୟର କୌଣସି ନିର୍ଦ୍ଦିଷ୍ଟ ଅଂଶ ଧରି ନେବାକୁ ହୁଏ। ବାଲୁଘଡ଼ି ଠିକ୍ ଏହି ପ୍ରଣାଳୀରେ ପ୍ରସ୍ତୁତ ହୁଏ। ପ୍ରଭେଦ ଏହି ଯେ ତହିଁରେ ଜଳ ପରିବର୍ତ୍ତରେ ସୂକ୍ଷ୍ମ ଶୁଷ୍କ ବାଲୁକା। କିନ୍ତୁ ଏଥିରେ ସୂକ୍ଷ୍ମରୂପେ କାଳ ନିରୂପିତ ହୋଇ ନ ପାରେ, କାରଣ ଉକ୍ତ ଘଡ଼ିରେ ଜଳର ଭାର, ବାହ୍ୟ ତାପାଦି ଜଳର ଘନତା ଓ ତାରଲ୍ୟ, ବାଲୁକାର ଶୁଷ୍କତା ଓ ସୂକ୍ଷ୍ମତା ଏବଂ ସଂଯୋଗସ୍ଥଳସ୍ଥ ଛିଦ୍ରଟିର ବେଧର ହ୍ରାସ ବୃଦ୍ଧି ଅନୁସାରେ ଅନେକ ବ୍ୟତ୍ୟୟ ଘଟେ। ଅପର ପାର୍ଶ୍ୱରେ ଗୋଟିଏ ବାଲୁଘଡ଼ିର ଚିତ୍ର ପ୍ରଦତ୍ତ ହେଲା।



Sand-glass ( ବାଲୁଯନ୍ତ୍ର )

ବର୍ତ୍ତମାନ ଘଡ଼ି ବୋଲି କହିଲେ ଆମ୍ଭେମାନେ ଯାହା ବୁଝୁଁ, ତାହା ପାଶ୍ଚାତ୍ୟ ଦେଶପ୍ରସୂତ ଏବଂ ଗତିବିଜ୍ଞାନ ସାହାଯ୍ୟରେ ଗଠିତ। ଉକ୍ତ ପ୍ରକାର ଯନ୍ତ୍ର ଯାବତୀୟ ଉଦ୍ଭାବିତ କାଳଜ୍ଞାପକ ଯନ୍ତ୍ରମାନଙ୍କ ମଧ୍ୟରେ ଶ୍ରେଷ୍ଠ। ସାଧାରଣତଃ ତାହା ତ୍ରିବିଧ। (୧) ଘଡ଼ି (Clock); ଏହାର ଚକ୍ର ଦ୍ୱାଦଶ ସମାନ ଭାଗରେ ଏବଂ ଷଷ୍ଟି ସଂଖ୍ୟକ କ୍ଷୁଦ୍ରତର ଅଂଶରେ ବିଭକ୍ତ। ଯନ୍ତ୍ରମଧ୍ୟସ୍ଥିତ ଶଙ୍କୁଦଣ୍ଡରେ ଦୁଇଟି କ୍ଷୁଦ୍ର ଲୌହଶଲାକା ସଂଲଗ୍ନ ଥାଏ। ତନ୍ମଧ୍ୟରେ ଏକ ଅର୍ଥାତ୍ କ୍ଷୁଦ୍ରଟି ଦ୍ୱାଦଶାଂଶ ଅର୍ଥାତ୍ ଘଣ୍ଟାର ଜ୍ଞାପକ, ଅନ୍ୟଟି ଷଷ୍ଟ୍ୟଂଶ ଅର୍ଥାତ୍ ମିନଟର ଜ୍ଞାପକ। ପ୍ରଥମଟିର ପ୍ରତ୍ୟେକ ଅଂଶ ଏବଂ ଶେଷୋକ୍ତର ପ୍ରତି ଦ୍ୱାଦଶ ଅଂଶ ଉତ୍ତୀର୍ଣ୍ଣ ହେବା ପରେ ଘଣ୍ଟାଧ୍ୱନି ହୁଏ। ଉକ୍ତ ଧ୍ୱନିର ସଂଖ୍ୟା ସମୟ ଜ୍ଞାପନ କରି ଦିଏ। ବୃହତ୍ ଘଡ଼ିମାନଙ୍କରେ ଉକ୍ତ ଶଲାକାଦ୍ୱୟ ବ୍ୟତୀତ ଅନ୍ୟ ଏକ ଦୀର୍ଘତମ ଶଲାକା ଥାଏ; ତାହା ଦକସ-ଜ୍ଞାପକ ଅର୍ଥାତ୍ ଏକ ଅହୋରାତ୍ରରେ ତାହା ଗୋଟିଏ ଭାଗ ଅତିକ୍ରମ କରେ। (୨) ଟାଇମ୍‌ପିସ୍ (Time-piece); ଏଥିରେ ଉକ୍ତ ଏକ ଉପାୟରେ କେବଳ ଦକାଂଶ ନିରୂପିତ ହୁଏ; ଘଣ୍ଟାଧ୍ୱନି ହୁଏ ନାହିଁ। (୩) ପକେଟ୍‌ଘଡ଼ି ( watch ) ଏହାକୁ ଅତି କ୍ଷୁଦ୍ରକାୟ ମନୁଷ୍ୟ ମଧ୍ୟ ବ୍ୟବହାର କରିବାକୁ କ୍ଷମ ହୁଏ। ସେଥିରେ ପୂର୍ବୋକ୍ତ ଉପାୟରେ ଅପେକ୍ଷାକୃତ ଅତି କ୍ଷୁଦ୍ର

ଯନ୍ତ୍ର ସାହାଯ୍ୟରେ ସମସ୍ତ ବଜାଇବା ସ୍ଥାପିତ ହୁଏ; ମାତ୍ର ଘଣ୍ଟାଧ୍ୱନି ହୁଏ ନାହିଁ । କ୍ଷୁଦ୍ର ଘଡିରେ ଘଣ୍ଟାଧ୍ୱନି ନ ଥିଲେହେଁ, ଇଚ୍ଛାନୁସାରେ ତାଦୃଶ-ବ୍ୟବସ୍ଥା କରି ଯାଇ ପାରେ । ସେଥିରେ ଏପରି ଏକପ୍ରକାର କଳର ସଂଯୋଗ କରାଯାଇ ପାରେ, ଯଦ୍ଦ୍ୱାରା ବ୍ୟବହାରକ ବ୍ୟକ୍ତିର କୌଣସି ଏକ ଆବଶ୍ୟକ ସମୟରେ ଏହି ଯନ୍ତ୍ର ବାଦିତ ହୋଇ ପାରିବ । ଏତଦ୍ଦ୍ୱାରା ନିଦ୍ରାଳୁ ଅନ୍ୟମନସ୍କ ଓ ଅଳସ ବ୍ୟକ୍ତିର ବଡ଼ ସୁବିଧା ଓ ଉପକାର ହୁଏ । ଉକ୍ତ ଯନ୍ତ୍ର ସାହାଯ୍ୟରେ ସେମାନେ ପ୍ରୟୋଜନୀୟ ସମୟରେ ତାହାର ଦ୍ରୁତ ଓ କର୍କଶ ଶବ୍ଦ ଶୁଣି ନିଜ ନିଜ କର୍ମରେ ପ୍ରବୃତ୍ତ ହେବାକୁ ଚଞ୍ଚଳ ହୁଅନ୍ତି । ସୁତରାଂ ଏହା ଚୈତନ୍ୟୋତ୍ପାଦକ ( alarm ) ଆଖ୍ୟା ପାଇବାର ଯୋଗ୍ୟ ।

ସର୍ବପ୍ରଥମେ କେଉଁ ବ୍ୟକ୍ତି ଏହାର ଆବିଷ୍କ୍ରିୟା କରିଥିଲେ, ତନ୍ନିରୂପଣର କୌଣସି ଉପାୟ ନାହିଁ । ପୂର୍ବକାଳରେ ୟୁରୋପରେ କ୍ଲକ୍ ଘଡି ପ୍ରଚଳିତ ଥିବାର ପ୍ରମାଣ ମିଳେ । ଏ ଯନ୍ତ୍ର ଘଡି ପୂର୍ବେ ଯେଉଁ ଯେଉଁ ଦେଶରେ ବ୍ୟବହୃତ ହେଉଥିଲା, ତନ୍ମଧ୍ୟରେ ଇଟାଲି ଦେଶର ଇତିହାସରେ ସର୍ବାପେକ୍ଷା ପ୍ରାଚୀନ ତଥ୍ୟ ମିଳେ । ସେଠାରେ ତ୍ରୟୋଦଶ ଶତାବ୍ଦିର ମଧ୍ୟ ଭାଗରେ ଘଡିର ବ୍ୟବହାର ଥିଲା । ଖ୍ରୀଷ୍ଟ ପୂର୍ବ ୧୫୮ ଅବ୍ଦରେ ସିପିଓ ନାସିକାଙ୍କଦ୍ୱାରା ପ୍ରାଚ୍ୟ ଦେଶରୁ ରୋମକୁ ଜଳଘଡି ନିତ ହୋଇଥିଲା । କେହି କେହି କହନ୍ତି, ଭେରୋନାର ଆର୍ଚ୍ଚଡିକନ ପାସିଫିକସ ନବମ ଶତାବ୍ଦିରେ ଏହି କ୍ଲକ୍ ଆବିଷ୍କାର କରିଥିଲେ । ଏକଥା ତାହା ପ୍ରାମାଣିକ ନୁହେ । ୮୦୭ ଖ୍ରୀଷ୍ଟାବ୍ଦରେ ଇଜିପ୍ଟର ସୁଲତାନ୍ ସମ୍ରାଟ ଶାର୍ଲମେନଙ୍କ ନିକଟକୁ ଏକ ପ୍ରକାର ଘଡି ପଠାଇ ଥିଲେ; ତଦ୍ୱିଷୟରେ ଏହା ଲିଖିତ ଅଛି ଯେ ତାହା ଗୋଟିଏ ଖେଳଣାର ସଦୃଶ । ଭାର ଓ ଚକ୍ରଦ୍ୱାରା ଏଥିରେ ସୂର୍ଯ୍ୟ ଚନ୍ଦ୍ର ଓ ଗ୍ରହମାନେ ଚାଳିତ ହେଉଥିଲେ ଏବଂ ତଦ୍ଦ୍ୱାରା ଘଣ୍ଟା, ଦିନ ଓ ରାତି ନିର୍ଦ୍ଦିଷ୍ଟରୂପେ ଜଣାଯାଉଥିଲା । ଇଂଲଣ୍ଡର ଇତିହାସରୁ ଜଣା ଯାଏ ଯେ ୧୨୮୮ ଖ୍ରୀଷ୍ଟାବ୍ଦରେ କିଙ୍ଗ୍ସବେଞ୍ଚ (Kings bench) ନାମକ ଅଦାଲତର ପ୍ରଧାନ ବିଚାରକଙ୍କର ଯେଉଁ ଅର୍ଥଦଣ୍ଡ ହୋଇଥିଲା, ତହିଁରେ ସେ ଓ୍ୱେଷ୍ଟମିନଷ୍ଟର ହଲ୍ ନିକଟସ୍ଥ ବିଖ୍ୟାତ ଘଡିଘରରେ ପ୍ରଥମେ ଗୋଟିଏ ଘଡି ପ୍ରସ୍ତୁତ କରିଥିଲେ । ତାହା ଆଲାର୍ମ ଘଡି ଥିଲା । ଇଂଲଣ୍ଡରାଜ ତୃତୀୟ ହେନେରୀ ସେଣ୍ଟ ଷ୍ଟିଫେନ୍ସ ଚର୍ଚ୍ଚର ପ୍ରଧାନ ଯାଜକ ଉଇଲିୟମ୍ ଓ୍ୱାର୍ବିକ୍ଙ୍କୁ ଏହି ଘଡି ନିମିତ୍ତ ପ୍ରତିଦିନ ୬ ପେନ୍ସ ଖରଚ ଦେଇଥିଲେ । ୧୨୯୨ ଅବ୍ଦରେ କାଣ୍ଟରବରୀର ଧର୍ମାଧିକରଣରେ ୩୦ ପାଉଣ୍ଡ ମୂଲ୍ୟବିଶିଷ୍ଟ ଏକ ଘଡି ସ୍ଥାପିତ ହୋଇଥିବାର କଥା ଲିଖିତ ଅଛି । ସେଣ୍ଟଆଲବାନ୍ସର ଓ୍ୱାଲିଙ୍ଗ୍ଫୋର୍ଡ ୧୩୨୬ ଅବ୍ଦରେ ଏକ କ୍ଲକ୍ ସଂସ୍ଥାପନ କରିଥିଲେ । ୧୩୪୮ ଅବ୍ଦରେ ଡୋଭର ଦୁର୍ଗରେ ନିର୍ମିତ ଏକ ଘଡିର କଥା ଆଡ୍‌ମିରଲ ସ୍ମିଥ ପ୍ରକାଶ କରୁଅଛନ୍ତି । ହେନ୍‌ରି ଡି-ଓ୍ୱାଇକ୍ ନାମକ ଜଣେ ଜର୍ମାନ୍ ଶିଳ୍ପୀ ଫ୍ରାନ୍ସରାଜ ପଞ୍ଚମ ଚାର୍ଲସଙ୍କ ପ୍ରାସାଦରେ ୧୩୬୪ ଅବ୍ଦରେ ଏକଘଡି ସ୍ଥାପିତ କରିଥିଲେ । ଏ ମହାତ୍ମାଙ୍କଦ୍ୱାରା ପୂର୍ବ-ପ୍ରଚଳିତ ଘଡିର ଅନେକାଂଶରେ ଉନ୍ନତି ସାଧିତ ହୋଇଥିଲା ।

ପୂର୍ବବର୍ଣ୍ଣିତ ଘଡିମାନଙ୍କରେ ଗତି ନିମିତ୍ତ ପେଣ୍ଡୁଲମ୍ ( Pendulum ) ବା ଦୋଳକ ନ ଥିଲା । ଗୋଟିଏ ଦୀର୍ଘ ଗୋଲସ୍ତମ୍ଭ (Cylinder ) ମୂଳରେ ଏକ ଦୃଢ଼ ରଜ୍ଜୁ ଜଡିତ କରି ତାହାର ଏକ ମୁଣ୍ଡରେ ଗୋଟିଏ ଭାର ଝୁଲାଇ ଦିଆ ହୋଇଥାଏ । ଗତି ଦାନ ନିମିତ୍ତ ସେଥିରେ ଗୋଟାଏ ଥର ବେଷ୍ଟିତ କରାଯାଏ । ଉକ୍ତ ଭାର-ବଶତଃ ରଜ୍ଜୁଗ୍ରନ୍ଥିରୁ ପାକଗୁଡିକ ଖୋଲି ଯିବା ସମୟରେ ତତ୍‌ସଂଲଗ୍ନ ଅନ୍ୟାନ୍ୟ ଚକ୍ର ସବୁ ଗତି ଉତ୍ପନ୍ନ କରେ । ଦୋଳକଯନ୍ତ୍ରର ଆଦିମ ଆବିଷ୍କାରକ କିଏ, ତାହା ଅଜ୍ଞାତ । ସମ୍ଭବତଃ ଇଟାଲୀର ବୈଜ୍ଞାନିକ ଗ୍ୟାଲିଲିଓ ...

ସଙ୍ଗେ ସଙ୍ଗେ ଅନେକ ଲୋକ ଏକ ସମୟରେ ଏହାର ବ୍ୟବହାର କରିଥିଲେ । ଫ୍ଲରେନ୍ସର ଗିର୍ଜାଘରେ ଗୋଟିଏ ଦୀପ ନିରୂପିତ ସମୟରେ ଏକ ପାଖରୁ ଅନ୍ୟ ପାଖକୁ ଝୁଲୁଥିବାର ଦେଖି ଗାଲିଲିଓ ସର୍ବପ୍ରଥମେ ଏହାର ବ୍ୟବହାର ଜାଣିଥିବାର ଲେଖା ଅଛି । ସମ୍ଭବତଃ ତାଙ୍କର ପୁତ୍ର କ୍ଲକର ଗତି ନିରୂପଣ ନିମନ୍ତେ ସର୍ବପ୍ରଥମେ ଦୋଲକ ତହିଁରେ ସଂଲଗ୍ନ କରିଥିଲେ । ମହାତ୍ମା ଗାଲିଲିଓ ସ୍ଥିର କରିଥିଲେ ଯେ କୌଣସି ଭାର ସମଦୀର୍ଘ ସୂତ୍ରରେ ଲମ୍ବିତ ହୋଇ ଅଗ୍ରପଶ୍ଚାତ ଯେଉଁ ଗତି ଉତ୍ପାଦନ କରେ, ତହିଁରେ ପ୍ରଥମ ଦୋଳନଦ୍ୱାରା ଯେ ପରିମିତ ସମୟ ଅତୀତ ହୁଏ, ଦ୍ୱିତୀୟ ଥର ଦୋଳନରେ କାଳର ପରିମାଣ ମଧ୍ୟ ସେତିକ ଥାଏ । ହାରିସ୍ ନାମକ ଜଣେ ଲଣ୍ଡନର ଶିଳ୍ପୀ ୧୬୪୧ ଅବ୍ଦରେ ଉକ୍ତ ଦୋଳକ ନିର୍ମାଣ କଲେ ଏବଂ ଉକ୍ତ ଅବ୍ଦରେ ତାହାଙ୍କ କର୍ତ୍ତୃକ ଦୋଳକଯୁକ୍ତ ଘଡି ନିର୍ମିତ ହୋଇଥିଲା । ଦୋଳକ ଆବିଷ୍କୃତ ହେବା ଉତ୍ତାରେ ହାଇଗେନ୍ସ ନାମକ ଏକ ବ୍ୟକ୍ତି ଜେମ୍ମା ଫ୍ରିସିୟସଙ୍କ ମତ ଅନୁସରଣ କରି ନାବିକ-ବ୍ୟବହାର ନିମିତ୍ତ ଦେଶାନ୍ତର ନିରୂପକ ଘଡି ନିର୍ମାଣ କଲେ । ସେ ଏହି ଯନ୍ତ୍ର ସାହାଯ୍ୟରେ ପୃଥିବୀର ଆକାର ନିରୂପଣ କରିଥିଲେ । ଏହା ବିଷୁବରେଖାର ଯେତେ ନିକଟବର୍ତ୍ତୀ ହେଉଥିଲା, ତେତେ ଦୋଳକର ଗତି ହ୍ରସ୍ୱ ହୋଇ ଯାଉଥିଲା । ଏହାଦ୍ୱାରା ସେ ସ୍ଥିର କରିଅଛନ୍ତି, ପୃଥିବୀ ଠିକ୍ ବର୍ତ୍ତୁଳାକାର ନୁହେଁ, ତାହା ମେରୁଦଣ୍ଡର ଉତ୍ତର ଓ ଦକ୍ଷିଣ ଦିଗରେ ଈଷତ୍ ଚେପ୍ଟା ।

ଘଡିର ଆବିଷ୍କ୍ରିୟା ସମ୍ବନ୍ଧରେ କେତେକ କଥା ଉପରେ ଲିଖିତ ହେଲା । ବର୍ତ୍ତମାନ ତାହାର ପ୍ରଚଳ ବିଷୟ ଆଲୋଚ୍ୟ । ଅନୁସନ୍ଧାନଦ୍ୱାରା ଜଣା ଯାଏ, ପଞ୍ଚଦଶ ଶତାବ୍ଦିରେ ୟୁରୋପର ପ୍ରାୟ ସମସ୍ତ ଦେଶର ବଡ଼ ଜନାଳୟରେ ଘଡି ବ୍ୟବହୃତ ହେଉଥିଲା । ଏଥିରୁ ଅନୁମିତ ହେଉଅଛି ଯେ ହେନେରି ଦ ଓ୍ୟିକଙ୍କ ଘଡି ପ୍ରସ୍ତୁତ ହେବାର ତେରଶତ ବା ଚଉଦଶତ ବର୍ଷ ଉତ୍ତାରେ କେହି ଘଡିକୁ ବିସ୍ମୟୋତ୍ପାଦକ ଓ ନୂତନ ବସ୍ତୁ ବୋଲି ମନେ କରୁ ନ ଥିଲେ । ସାଧାରଣ ଲୋକଙ୍କ ଗୃହରେ ସୁଦ୍ଧା ଘଡିର ବ୍ୟବହାର ଥିଲା । ପ୍ରଥମେ ଅର୍ଥାତ୍ ତ୍ରୟୋଦଶ ଶତାବ୍ଦିରେ ଯେଉଁ ସ୍ଥାନରେ ଘଡି ସ୍ଥାପନର ପ୍ରୟୋଜନ ହୁଏ, ସେହି ସ୍ଥାନରେ ତାହା ପ୍ରସ୍ତୁତ ହେଉଥିଲା । ଅର୍ଥାତ୍ ଏହା ଏତେ ବୃହତ୍ ଓ ଗୁରୁ ଥିଲା ଯେ ତାହାକୁ ସ୍ଥାନାନ୍ତରିତ କରି ହେଉ ନ ଥିଲା । କିନ୍ତୁ ପଞ୍ଚଦଶ ଶତାବ୍ଦିର ଶେଷ ଭାଗରେ ଯେତେବେଳେ ସାଧାରଣ ବ୍ୟବହାର୍ଯ୍ୟ ହୋଇ ଗଲା, ସମ୍ଭବତଃ ସେତେବେଳେ ଘଡି ସ୍ଥାନାନ୍ତରକରଣୋପଯୋଗୀ ହୋଇଥିଲା । ଜେମ୍ମା ଫ୍ରିସିୟସ୍ ୧୫୩୦ ଖ୍ରୀଷ୍ଟାବ୍ଦରେ ସମୁଦ୍ରରେ ଦେଶାନ୍ତର ନିରୂପଣାର୍ଥ ସ୍ଥାନାନ୍ତରକରଣୋପଯୋଗୀ ଘଡି ନିର୍ମାଣର ପ୍ରସ୍ତାବ କଲେ । ୧୫୬୦ ଅବ୍ଦରେ ଯେ କେତୋଟି ଘଡି ପ୍ରସ୍ତୁତ ହୋଇଥିଲା, ତହିଁରେ ଘଣ୍ଟା, ମିନଟ୍ ଓ ସେକେଣ୍ଡ ଜ୍ଞାପକର ଉପାୟ ଥିଲା । ସୁତରାଂ ୧୬ ଶତାବ୍ଦିରେ ଘଡି କେତେକ ଉନ୍ନତାବସ୍ଥା ପ୍ରାପ୍ତ ହୋଇଥିଲା । ଦ୍ୱିତୀୟ ଶତାବ୍ଦିରେ ରୋମରେ ପୃଥିବୀର ଏକ ମାତ୍ର ଘଟୀ ଥିଲା ବୋଲି କଥିତ ହୁଏ । ପ୍ରଥମ ଶତାବ୍ଦିରେ ମହାବୀର ଜୁଲିୟସ ସିଜର ଇଂଲଣ୍ଡାକ୍ରମଣ କାଳରେ ସେଠାରେ ଗୋଟିଏ ଘଡି ଥିବାର ଦେଖିଥିଲେ । ୧୫ ଶତାବ୍ଦିରେ ୟୁରୋପରେ ଓ୍ୟାଚର ପ୍ରଚାର ହେଲା । ୧୪୭୭ ଅବ୍ଦରେ ନୁରେମ୍ବର୍ଗନାମକ ପ୍ରଦେଶରେ ଏହାର ପ୍ରଥମ ସୃଷ୍ଟି । ପ୍ରକୃତ ଓ୍ୟାଚ୍ ଇଂଲଣ୍ଡରେ ଡାକ୍ତର ହୁକଙ୍କ ଦ୍ୱାରା ଏବଂ ହଲଣ୍ଡରେ ହାଇଗେନ୍ସ ସାହେବଙ୍କ କର୍ତ୍ତୃକ ଆବିଷ୍କୃତ ହୋଇଥିବାର କଥିତ ଅଛି । ଅଧ୍ୟାପକ ହେଟ୍ଷ୍ଟୋନ ୧୮୪୦ ରେ ତାଡିତ ଘଡି ( watch ) ପ୍ରସ୍ତୁତ କରିଥିଲେ । ୧୮୫୧ ଅବ୍ଦର ପ୍ରଦର୍ଶନୀରେ ଅଲେକଜାଣ୍ଡର ବେନ ଓ ସେଫଡ଼ ଉକ୍ତ ବୈଦ୍ୟୁତିକ ଘଡି

ପ୍ରଚଳନ କରିଥିଲେ । ୧୮୫୨ ରେ ତାହା ଲଣ୍ଡନରେ ବ୍ୟବହୃତ ହେଲା । ୧୬ ଶତାବ୍ଦିରେ ଯେଉଁ ଦୋଲକଯୁକ୍ତ ଘଡ଼ିର ପ୍ରଚଳନ ଥିଲା, ତାହା ବିଶୁଦ୍ଧ ନୁହେ । କାରଣ, ଶୈତ୍ୟ ତାପର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଦୋଳକ ଧାତୁର ଆକୁଞ୍ଚନ ଓ ପ୍ରସାରଣ ଦ୍ୱାରା ଗତିର ତାରତମ୍ୟ ଘଟେ । ସୁତରାଂ ସମୟ ବିଶୁଦ୍ଧ ରୂପେ ପ୍ରଦର୍ଶିତ ହୋଇ ପାରେ ନାହିଁ । ଜର୍ଜ ଗ୍ରେହାମ ନାମା ଜଣେ ବୈଜ୍ଞାନିକ ପଣ୍ଡିତ ୧୭୧୫ ରେ ଏହି ମହାଦୋଷ ସଂଶୋଧନ କଲେ; ତଦନନ୍ତର ହ୍ୟାରିସନ୍ ନାମକ ଏକ ବ୍ୟକ୍ତିଙ୍କ କର୍ତ୍ତୃକ ଉକ୍ତ ବ୍ୟବସ୍ଥା ଅଧିକ ସମ୍ପନ୍ନ ହୋଇ ଥିଲା । ସେହି ଦିନଠାରୁ ପ୍ରାୟ ଦେଢ଼ ଶତ ବା ଦୁଇ ଶତ ବର୍ଷ ମଧ୍ୟରେ ତାହା କ୍ରମଶଃ ଉନ୍ନୀତ ହୋଇ ବର୍ତ୍ତମାନ ବନ୍ଦୂଢରେ ଅବସ୍ଥିତ ।

ଶିଳ୍ପ ଓ ବିଜ୍ଞାନର ଭୂୟସୀ ଉନ୍ନତି ସଙ୍ଗେ ସଙ୍ଗେ ନାନାବିଧ ବିସ୍ମୟୋତ୍ପାଦକ ଘଟୀଯନ୍ତ୍ର ପ୍ରତ୍ୟହ ଦୃଷ୍ଟିବିଷୟୀଭୂତ ହେଉଅଛି । ସେଥିରେ ଯେ କେବଳ ଘଣ୍ଟା, ମିନଟ୍ ଜଣା ଯାଏ, ତାହା ନୁହେ; ବୃହତ୍ ଘଡ଼ିରେ ସେକେଣ୍ଡ ଅପେକ୍ଷା ସୂକ୍ଷ୍ମ ସୂକ୍ଷ୍ମ ଅଂଶ ନିରୂପିତ ହୋଇ ପାରେ । ଏତଦ୍ଭିନ୍ନ ଏକ ବର୍ଷ ମଧ୍ୟରେ ଋତୁ, ମାସ, ପକ୍ଷ, ସପ୍ତାହ ଓ ଦିନ ନିରୂପଣର ଉପାୟ ଅଛି । କ୍ଷୁଦ୍ର କ୍ଷୁଦ୍ର ଘଡ଼ିରେ ମଧ୍ୟ ଘଣ୍ଟା, ଦିନ, ସପ୍ତାହ, ମାସ ଜ୍ଞାନର କୌଶଳ ପ୍ରଦର୍ଶିତ ହୋଇଥିବାର ଦେଖାଯାଏ । ବୈଦ୍ୟୁତିକବଳ-ଚାଳିତ ଘଡ଼ି ଟେଲିଗ୍ରାଫ୍ ବିଭାଗ ଓ ଜ୍ୟୋତିର୍ବିଦ୍‌ମାନଙ୍କ ବ୍ୟବହାର ନିମିତ୍ତ ପ୍ରସ୍ତୁତ । ବର୍ତ୍ତମାନ ମଣିବନ୍ଧ ଅବସ୍ଥାପନ୍ନ ଘଡ଼ି ବିବିଧ ଆକାରରେ ଅମ୍ଭମାନଙ୍କ ଦୃଷ୍ଟିପଥାରୂଢ଼ ହେଉଅଛି । ତାହା ନାନା ଦୃଶ୍ୟରେ ବିଭୂଷିତ । କୌଣସି କୌଣସି ଘଡ଼ି ମୁଦ୍ରିକାରୂଢ଼ । କୌଣସି କୌଣସି ଘଡ଼ିରେ ଘଣ୍ଟାବାଦନ କାଳରେ ତାହାର ଏକ ସ୍ଥାନରେ ଗୋଟିଏ କ୍ଷୁଦ୍ର ଗର୍ତ୍ତ ଫିଟି ଯାଏ ଏବଂ ତଦଭ୍ୟନ୍ତରସ୍ଥ ଗୋଟିଏ ପକ୍ଷୀ ବାହାରି ଯଥାସଂଖ୍ୟକ ନିଜର ଜାତିସ୍ୱ ଶବ୍ଦ କରେ । କୌଣସି କୌଣସି ଘଡ଼ିରେ ସେହିପରି ବାନର ବା ମନୁଷ୍ୟ ମୂର୍ତ୍ତି ସଂଲଗ୍ନ ଥାଏ । ୟୁରୋପରେ ସ୍ୱିଜରଲଣ୍ଡ, ଜର୍ମାନ୍ ଓ ଇଂଲଣ୍ଡ ପ୍ରଭୃତି ଦେଶ କଳ ଘଡ଼ିର କେନ୍ଦ୍ରସ୍ଥଳୀ । ସେହି ସବୁ ଘଡ଼ିମାନଙ୍କ ମଧ୍ୟରେ ଲଣ୍ଡନର ଘଡ଼ି ଶ୍ରେଷ୍ଠ । ବର୍ତ୍ତମାନ ପରିବର୍ତ୍ତିତ ସହଜବୋଧ ସୂକ୍ଷ୍ମ ଘଡ଼ିର ନିର୍ମାଣ ଏବଂ ମୂଲ୍ୟଭାର ବୃଦ୍ଧି ହେଉଅଛି । ଭାରତରେ ଇଂରାଜମାନଙ୍କ ବହୁଳ ପ୍ରଚାର କାଳରେ କଳଘଡ଼ିର ବ୍ୟବହାର ଆରମ୍ଭ ହେଲା । ଏହି ଅଳ୍ପକାଳ ମଧ୍ୟରେ ତାହାର ଯେପରି ପ୍ରଚାର ବୃଦ୍ଧି ହୋଇଅଛି, ସେଥିରୁ ସମ୍ଭବ ହେଉଅଛି ଅଳ୍ପ କେତେକ ସମୟ ପରେ ତାହା ଅମ୍ଭମାନଙ୍କ ଦେଶରେ ମଧ୍ୟ ସାଧାରଣ ବ୍ୟବହାର୍ଯ୍ୟ ହୋଇ ଯିବ ।

ପ୍ରଥମ ନିର୍ମିତ ବୃହତ୍ ଘଡ଼ି ସବୁ ମାର୍ଜିତ ଓ ପରିବର୍ତ୍ତିତ ହୋଇ ବର୍ତ୍ତମାନ ଅତି କ୍ଷୁଦ୍ର ଆକାର ଧାରଣ କରିଅଛି । ତାହାର ଯଦି ଏହିପରି ଭୂୟୋଭୂୟଃ ଉଦ୍ଭାବନ ହୁଏ, ତାହା ହେଲେ ଭବିଷ୍ୟତରେ କି ଅଦ୍ଭୁତ ଆକାର ଧାରଣ କରିବ, ତାହା କଳ୍ପନାତୀତ ।

ଘଡ଼ିର ପ୍ରଚାର ଏବଂ ସୃଷ୍ଟି ସମ୍ବନ୍ଧରେ ତାଦୃଶ ପ୍ରାମାଣିକ ଇତିହାସ ମିଳେ ନାହିଁ । ଅନେକ ଅନୁମାନଦ୍ୱାରା ସ୍ଥିରୀକୃତ । ନିମ୍ନରେ ଘଡ଼ିର ପ୍ରଚାର ଓ ସୃଷ୍ଟିର ଗୋଟିଏ କ୍ଷୁଦ୍ର ନିର୍ଘଣ୍ଟ ପ୍ରଦତ୍ତ ହେଲା ।

୧୭୩୫ ରେ ହ୍ୟାରିସନଙ୍କ କର୍ତ୍ତୃକ କ୍ଷୁଦ୍ର ଘଡ଼ି ବା ଟାଇମ୍‌ପିସ୍ ନିର୍ମିତ ;

୧୩୭୦ ରେ ଭିକ୍ ସାହେବଙ୍କ ଦ୍ୱାରା ପାରିସ୍ ନଗରରେ ନିର୍ଦ୍ଦୋଷ ଯନ୍ତ୍ର ଗଠିତ ;

୧୬୭୬ ରେ ବାର୍ଲୋଙ୍କ କର୍ତ୍ତୃକ ଧ୍ୱନିଯୁକ୍ତ ଘଡ଼ି ପ୍ରସ୍ତୁତ ;

୨୯୩ ଖ୍ରୀ: ପ୍ର: ରେ ରୋମରେ ସୂର୍ଯ୍ୟଘଡ଼ି ପ୍ରଥମେ ନିର୍ମିତ ;

୬୧୩ ରେ ଚର୍ଚ୍ଚ (ଗିର୍ଜା) ମାନଙ୍କରେ ତାହା ପ୍ରଚାରିତ ;

ଏବଂ ୧୫୭୭ ରେ ଜର୍ମାନୀରୁ ଇଂଲଣ୍ଡକୁ ସର୍ବ ପ୍ରଥମେ ମୁଦ୍ ଘଡ଼ି ବା ଓ୍ୟାଚ୍ ଆନୀତ ହୋଇଥିଲା ।

ଘଡ଼ିର କାର୍ଯ୍ୟପ୍ରଣାଳୀ ଚିତ୍ରଦ୍ୱାରା ସାଧାରଣଙ୍କର ବୋଧଗମ୍ୟ କରିବା ଦୁଃସାଧ୍ୟ । ସୁତରାଂ ତାହାର ବ୍ୟାଖ୍ୟା ଏଠାରେ ଅନାବଶ୍ୟକ । ତେବେ ସଂକ୍ଷେପରେ ଏତିକି କହାଯାଇ ପାରେ ଯେ କେବଳ ଗୋଟିଏ ଦନ୍ତୁର ଚକ୍ରର ଚଳନ ଅନୁସାରେ ସମସ୍ତ ନିର୍ବାହିତ ହୁଏ । ସ୍ପ୍ରିଙ୍ଗ୍ ବା କୁଣ୍ଡଳୀକୃତ ଗୋଟିଏ ପାତଳ ଲୌହପାତ୍ର ଗୋଟିଏ ମେରୁଦଣ୍ଡର ଚାରି ଅଡ଼େ ବେଢ଼ିଥାଏ । ମେରୁଦଣ୍ଡରେ ଚାବି ଦେଲେ ସେ କୁଣ୍ଡଳୀକୃତ ସ୍ପ୍ରିଙ୍ଗ୍ ସଙ୍କୁଚିତ ହୁଏ । ଉକ୍ତ ମେରୁଦଣ୍ଡରେ ଆଉ ଗୋଟିଏ ଦନ୍ତୁର ଚକ୍ର ସଂଲଗ୍ନ ଥାଏ । ଚାବି କାଢ଼ି ନେଲେ ସେ ସ୍ପ୍ରିଙ୍ଗ୍‌ଟି ଫିଟିବାକୁ ଚେଷ୍ଟା କରିବାରୁ ମେରୁଦଣ୍ଡଟି ଲଘୁ ଭାବରେ ବୁଲେ ଓ ତାହା ସଙ୍ଗେ ସଙ୍ଗେ ତତ୍ସଂଲଗ୍ନ ଦନ୍ତୁର ଚକ୍ରଟି ବୁଲେ । ଏହାର ଗୋଟିଏ ଚିତ୍ର ପ୍ରଦତ୍ତ ହେଲା ।



କ—ସ୍ପ୍ରିଙ୍ଗ୍ ବା କୁଣ୍ଡଳ
ଖ—ତତ୍ସଂଲଗ୍ନ ଚାଳକ ଚକ୍ର

ସେ ଦନ୍ତୁର ଚକ୍ରଟି ଅନ୍ୟ ଚକ୍ରମାନଙ୍କ ଦ୍ୱାରା ଚାଳିତ ହୁଏ । ଏହି ପରିଚାଳନକୁ ସଂଯତ କରିବା ନିମନ୍ତେ [ Escapement ] ର ସୃଷ୍ଟି । ( Escapement ) ହେତୁ ଚକ୍ରମାନଙ୍କ ଗତି ନିୟମିତ ରୂପେ ଚାଳିତ ହୁଏ ଓ ସ୍ପ୍ରିଙ୍ଗଟି ଧୀରେ ଧୀରେ ଫିଟେ । ନିମ୍ନରେ ଏତାଦୃଶ ଚକ୍ରର ଗୋଟିଏ ଚିତ୍ର ପ୍ରଦର୍ଶିତ ହେଲା ।



Escapement ( ନିୟାମକ ଯନ୍ତ୍ର )

ଏହାର ନାମ ନିୟାମକ ଚକ୍ର । ଏହାର ୬୦ ସଂଖ୍ୟକ ଦନ୍ତ । ଉପରେ ଆକୁଞ୍ଚନ-ପ୍ରସାରଣ-ବିଶିଷ୍ଟ ସଦଂଶାକୃତି ଧାତୁଖଣ୍ଡ ସ୍ଥାପିତ । ତାହା ଚକ୍ରର ଦନ୍ତକୁ ଆଘାତ କରୁଥାଏ । ସେହି ଆଘାତ ଶବ୍ଦ (ଟିକ୍ ଟିକ୍) ଆମ୍ଭମାନଙ୍କ ଶ୍ରୁତିଗୋଚର ହୁଏ । ଏକ ଦନ୍ତ ଆଘାତ ସମୟ ଏକ ସେକେଣ୍ଡ । ଏକ ମିନଟରେ ସମଗ୍ର ଚକ୍ରଟି ଉକ୍ତ ସଦଂଶଦ୍ୱାରା ଥରେ ଚାଳିତ ହୁଏ । ସଦଂଶ-ଉପରିସ୍ଥିତ ଶଙ୍କୁ ଦଣ୍ଡରେ ଶଲାକାଦ୍ୱୟ ନିହିତ ଥାଏ ଏବଂ ଉକ୍ତ ଚକ୍ର ଓ ଅନ୍ୟାନ୍ୟ ଚକ୍ରମାନଙ୍କ ଦ୍ୱାରା ଚାଳିତ ହୁଏ । ସେହି ଚକ୍ରମାନଙ୍କ ଗତ୍ୟୁତ୍ପାଦନ ନିମିତ୍ତ ନିର୍ଦ୍ଦିଷ୍ଟ ସମୟରେ ବଳ ପ୍ରଯୁକ୍ତ ହୁଏ ଅର୍ଥାତ୍ ଚାବି ଦିଆଯାଏ ।

ଘଡ଼ିର ଉପକାରିତା ସମ୍ବନ୍ଧ ଶିକ୍ଷିତ ଲୋକମାନଙ୍କୁ ଅଳ୍ପାଧିକ ପରିମାଣରେ ଜଣା ଅଛି । ଅତଏବ ତାହାର ସବିସ୍ତାର ବର୍ଣ୍ଣନ ଅନାବଶ୍ୟକ । ସ୍ଥୂଳତଃ ଆମ୍ଭେମାନେ ଏ । କହି ପାରୁଁ ଯେ ତାହା ଆମ୍ଭମାନଙ୍କର ସମୟ-ସଦ୍ବ୍ୟବହାର-ଶିକ୍ଷକ । ତାହା ଅଳସଙ୍କୁ କାର୍ଯ୍ୟତତ୍ପର, ବିଶୃଙ୍ଖଳଙ୍କୁ ସୁଶୃଙ୍ଖଳବାନ୍ ଏବଂ ଦୀର୍ଘସୂତ୍ରଙ୍କୁ ଚଞ୍ଚଳ କରେ । ସମୟ ବିଭାଜନପୂର୍ବକ ନିର୍ଦ୍ଦିଷ୍ଟ ସମୟରେ କର୍ତ୍ତବ୍ୟ ପାଳନରେ ନିୟମାଧୀନ କରିବା ବିଷୟରେ ଘଟୀଯନ୍ତ୍ର ପ୍ରଧାନ ଶାସ୍ତା । ଘଟିକାଦ୍ବାରା ଆମ୍ଭେମାନେ ଗତିଶୀଳ ପଦାର୍ଥର ନିର୍ଦ୍ଦିଷ୍ଟ ସମୟର ଗତି ନିରୂପଣ, ଶୀତ ଗ୍ରୀଷ୍ମାଦି ଋତୁରେ ଦିବାରାତ୍ରିର ହ୍ରାସବୃଦ୍ଧିଜ୍ଞାନ, ଗ୍ରହାଦିର ଉଦୟାସ୍ତକାଳନିରୂପଣ ଓ ଦିବାରାତ୍ରିର ଅଂଶନିର୍ଣ୍ଣୟ ପ୍ରଭୃତିରେ ସାହାଯ୍ୟ ପ୍ରାପ୍ତ ହେଉଁ । ସୂର୍ଯ୍ୟଘଡ଼ିଦ୍ବାରା ସୂର୍ଯ୍ୟଗତିର ନ୍ୟୂନାଧିକ୍ୟ ଏବଂ ପୃଥିବୀଠାରୁ ତାହାର ଦୂରତ୍ବାଦି ସ୍ଥିରୀକୃତ ହୁଏ । ଅନେକ ଘଡ଼ିରେ ପୃଥିବୀର ଆକାର ମଧ୍ୟ ସ୍ଥିର କରାଯାଏ । ଏତଦ୍ବ୍ୟତୀତ ଆଉ ବିଶେଷ ଉପକାର ଥାଇ ପାରେ, କିନ୍ତୁ ତାହା ଏହି ଅଳ୍ପସ୍ଥାନବ୍ୟାପୀ ପ୍ରସଙ୍ଗର ବହିର୍ଭୂତ ।

ଶ୍ରୀ ମୃତ୍ୟୁଞ୍ଜୟ ରଥ ।

---

## ଦେଶୀୟ ଚିକିତ୍ସକ ।

ସଂସାରରେ ମାନବର ଯେତେ ପ୍ରୟୋଜନୀୟ ପଦାର୍ଥ ଅଛି ତନ୍ମଧ୍ୟରେ ଆରୋଗ୍ୟ ସର୍ବପ୍ରଧାନ । ଆରୋଗ୍ୟ ଧର୍ମ ଏବଂ ଆରୋଗ୍ୟହିଁ ସୁଖ । ରୋଗଗ୍ରସ୍ତ ମନୁଷ୍ୟ କୌଣସି କାର୍ଯ୍ୟ ସାଧନରେ ପୁରା ଅକ୍ଷମ । ଏ ବିଷୟରେ ଅଧିକ ଲେଖିବାର ଆବଶ୍ୟକ ନାହିଁ, କାରଣ ପ୍ରତ୍ୟେକ ପ୍ରାଣୀ ପ୍ରତ୍ୟକ୍ଷରେ ଏହା ଅନୁଭବ କରୁଅଛନ୍ତି । ଅତଏବ ଆରୋଗ୍ୟରକ୍ଷା ସକଳ ମାନବର ସର୍ବପ୍ରଥମ କର୍ତ୍ତବ୍ୟ । ଆରୋଗ୍ୟ ରକ୍ଷା ନିମନ୍ତେ ପବିତ୍ର ଆୟୁର୍ବେଦର ସୃଷ୍ଟି, ଆମ୍ଭମାନଙ୍କର ପ୍ରାଚୀନ ମହର୍ଷିମାନ ଜ୍ଞାନ ଧ୍ୟାନ ବିବେକ ଓ ବୀର୍ଯ୍ୟର ବଳରେ ଆୟୁର୍ବେଦର ଅବତାରଣା କରି ଜଗତର କିପରି ମହୋପକାର କରି ଅଛନ୍ତି ତାହା ଭାବିଲେ ଚିତ୍ତ ଏକାବେଳକେ ବିମୋହିତ ହୋଇଯାଏ । ଋତୁଚର୍ଯ୍ୟା, ଦିନଚର୍ଯ୍ୟା, ଦ୍ରବ୍ୟର ଗୁଣାଗୁଣ ଓ ରୋଗୀର କର୍ତ୍ତବ୍ୟ ପ୍ରଭୃତି ଚିକିତ୍ସାଶାସ୍ତ୍ରର ମୁଖ୍ୟ ମର୍ମ ସକଳ ଆୟୁର୍ବେଦରେ ସୁନ୍ଦରରୂପେ ବିବୃତ ହୋଇଥିବାରୁ ତାହା ସର୍ବଜନାଦରଣୀୟ । ଏହା କହିବାଦ୍ବାରା ଆମ୍ଭର ଏପରି ଅଭିପ୍ରାୟ ନୁହେଁ ଯେ ଅନ୍ୟାନ୍ୟ ବିଦେଶୀୟ ଚିକିତ୍ସା ନିଷ୍ପ୍ରୟୋଜନ । କିନ୍ତୁ ଆପଣାର ବହୁମୂଲ୍ୟ ବିଷୟ ହରାଇ ପରମୁଖାପେକ୍ଷୀ ହେବା ସ୍ବଦେଶହିତୈଷୀର କର୍ତ୍ତବ୍ୟ କି ?

ସେହି ଆୟୁର୍ବେଦ ସମ୍ପ୍ରତି ଆମ୍ଭ ଦେଶରେ କିପରି ଶୋଚନୀୟାବସ୍ଥା ପାଇଅଛି ଏବଂ ତଦ୍ଦ୍ବାରା କିପରି ଅମଙ୍ଗଳ ଘଟୁଅଛି, ସହୃଦୟ ପାଠକବୃନ୍ଦ ଥରେ ବିବେଚନା କରନ୍ତୁ । ଯଦିବା ବଙ୍ଗପ୍ରଭୃତି ପ୍ରଦେଶମାନଙ୍କରେ ଆୟୁର୍ବେଦର ଉପଯୁକ୍ତ ପ୍ରତିଷ୍ଠା ହେବାର ଉପକ୍ରମ ହୋଇଅଛି, ତଥାପି ଦୁର୍ଭାଗ୍ୟ-ଦେବତାପ୍ରସାଦରୁ ଆମ୍ଭ ଦେଶରେ ତାହାର ବହୁଳ ପ୍ରଚାର ହୋଇ ପାରୁ ନାହିଁ ।

ଆମ୍ଭ ଦେଶରେ ଆୟୁର୍ବେଦର ତତ୍ତ୍ବ ନ ଜାଣି ସାଧାରଣ ଅଶିକ୍ଷିତ ଲୋକେ ଚିକିତ୍ସା କରନ୍ତି ଏବଂ ପ୍ରାୟ ସକଳ ଶ୍ରେଣୀର ଲୋକେ ସେମାନଙ୍କଦ୍ବାରା ଚିକିତ୍ସା କରାଉଅଛନ୍ତି । ଭଲ ମନ୍ଦର ବିଚାର ନାହିଁ । ଅତଏବ ଯେତେବେଳେ କୌଣସି ବ୍ୟକ୍ତି ଅନ୍ୟାନ୍ୟ ବୃତ୍ତିରୁ ବଞ୍ଚିତ ହୁଏ, ସେତେବେଳେ ଚିକିତ୍ସକ ବେଶ ଧାରଣ କରି ଏଣୁ ତେଣୁ ଗୃହ ପଇସା କମାଇବାକୁ ପ୍ରୟାସୀ ହେଉଅଛି ; ହେରୁ

ତ ଶାସ୍ତ୍ରଜ୍ଞତାର ଆବଶ୍ୟକତା ନାହିଁ ଏବଂ କୌଣସି ରାଜଦଣ୍ଡ କିମ୍ବା ସମାଜଦଣ୍ଡର ଭୟ ନାହିଁ । ସେଥିରୁ ଚିକିତ୍ସା କରୁ କରୁ ଯଦ୍ୟପି ତାହାର ମୂର୍ଖ ସଙ୍ଗେ, ଚେତନ କପାଳ ଦୋଷ, ବଞ୍ଚିଗଲେ ଆଣ ସେମାନଙ୍କ ! ଶ୍ରମ ଓ ଦାୟିତ୍ୱ ବିନା ଯାହା ଏପରି ଲାଭର ସମ୍ଭାବନା ଥାଏ, ତେବେ ଏତେ କଷ୍ଟ ସ୍ୱୀକାର କରି ଆୟୁର୍ବେଦ ପଢ଼ନ୍ତି କିଏ ?

ଅତଏବ ଆୟୁର୍ବେଦରେ ପାରଦର୍ଶୀ, ପରୀକ୍ଷାରେ ନିପୁଣ, ଔଷଧିବର୍ଗର ଯୋଗ ଓ ଗୁଣ ଦୋଷ ବିବେଚନାରେ ବିଚକ୍ଷଣ, ବୁଦ୍ଧିଶୀଳ, ସଦସ୍ତ୍ର ଓ ଶାନ୍ତାତ୍ମା ଚିକିତ୍ସକ ଦେଖିବାକୁ ଦୁର୍ଲଭ; କିନ୍ତୁ ନଗରରେ କି ଗ୍ରାମ ସର୍ବତ୍ର ଜାଲିଆର ଚିକିତ୍ସକ ମାଲ ମାଲ । ଏହି ବୈଦ୍ୟପୁଙ୍ଗବମାନଙ୍କୁ ପ୍ରଶ୍ନ କର, ଚରକ, ସୁଶ୍ରୁତ, ବାଗ୍‌ଭଟ, ଏ ସବୁ କି ପଦାର୍ଥ ? ଉତ୍ତର ପାଇବ, ଏ ସବୁ କେଉଁ ଜନ୍ତୁ ବା ପକ୍ଷୀଙ୍କର ନାମ, ଆମ୍ଭେ ଜାଣି ନାହୁଁ । ଏ ଦେଶରେ ଆୟୁର୍ବେଦର ମୂଳଗ୍ରନ୍ଥମାନଙ୍କ ପ୍ରଚାର ନାହିଁ, କେବଳ ମାଧବ-ନିଦାନ, ଶାର୍ଙ୍ଗଧର, ଯୋଗମଣି ପ୍ରଭୃତି କେତେକ ସଂଗ୍ରହ ଗ୍ରନ୍ଥର ପ୍ରଚାର । ଏହି ସଂଗ୍ରହ ଗ୍ରନ୍ଥମାନଙ୍କୁ ସମ୍ୟକ ବିଶେଷରୂପେ ଆଲୋଚନା କରିଥିବା ବୈଦ୍ୟକ ଦୃଷ୍ଟିରେ ପଡ଼ନ୍ତି ନାହାନ୍ତି । (କି ଜାଣି କେଉଁ ଅଞ୍ଚଳରେ ଜଣେ ଅଧେ ଥାଇ ପାରନ୍ତି, କିନ୍ତୁ ସେମାନଙ୍କୁ ଆମ୍ଭର ଚର୍ମଚକ୍ଷୁ ଦର୍ଶନ କରି ନାହିଁ ।)

କେତେକ ଚିକିତ୍ସକ ସମ୍ପ୍ରତି ଭାଷାରେ ଲେଖା ଥିଲେ ହେଁ ବା ଛନ୍ଦୋଭଙ୍ଗ କିମ୍ବା ଅପଶବ୍ଦ ଦୋଷ ଉପରେ ଆଦୌ ଦୃଷ୍ଟି ନ ରଖି ଯୋଗମଣି ପ୍ରଭୃତି କେତେକ ପୁସ୍ତକ କଣ୍ଠସ୍ଥ କରି ପକାନ୍ତି, କିନ୍ତୁ ପ୍ରଥମରୁ ସେମାନଙ୍କର ଲେଶ ବିବେକ ଓ ବୁଦ୍ଧି ନ ଥିବାରୁ ପଠିତ ପୁସ୍ତକର ଆଲୋଚନା କରିବାକୁ ସମର୍ଥ ହୁଅନ୍ତି ନାହିଁ । ପ୍ରିୟ ପାଠକେ ! ଏତାଦୃଶ ଚିକିତ୍ସକଙ୍କଠାରୁ ସୁଚିକିତ୍ସାର ଆଶା କରି ଯାଇପାରେ କି ? ଅନ୍ୟ କେତେକ ଚିକିତ୍ସକ ଗ୍ରାମ୍ୟ ଭାଷାରେ ଲିଖିତ ଅପଭ୍ରଂଶପୂର୍ଣ୍ଣ ଦଶ୍ୱେ ଅଧେ ପୁସ୍ତକ (ଯାହାକୁ ସେମାନେ 'ବୈଦ୍ୟଶାସ୍ତ୍ର' ବୋଲନ୍ତି ଏବଂ ଯହିଁରେ ପୀତ, ସନ୍ନିପାତ ପ୍ରଭୃତିର ବିବରଣୀ ଥାଏ) ପଢ଼ି ଚିକିତ୍ସକର କର୍ତ୍ତବ୍ୟ ଶେଷ ହେଲା ବୋଲି ମନେ କରନ୍ତି । ଆମ୍ଭ ଦେଶରେ ଯେଉଁମାନେ ତର୍କ, ବ୍ୟାକରଣ, କାବ୍ୟ ଓ ଅଳଙ୍କାରାଦି ଶାସ୍ତ୍ରମାନଙ୍କରେ ବ୍ୟୁତ୍ପନ୍ନ, ସେମାନେ ଆୟୁର୍ବେଦାଧ୍ୟୟନ ରୂପ ପାପରେ ପଡ଼ିବାକୁ ଆଦୌ ମନ କରନ୍ତି ନାହିଁ; କିନ୍ତୁ ଆଶ୍ଚର୍ଯ୍ୟର ବିଷୟ, ଏହି ପଣ୍ଡିତମାନଙ୍କର କୌଣସି ରୋଗ ହେଲେ ଉକ୍ତ ନିରକ୍ଷର ବୈଦ୍ୟରାଜମାନଙ୍କୁ ହାତ ଦେଖାଇ ସେମାନଙ୍କ ଆଦେଶକ୍ରମେ ଚିକିତ୍ସା କରାଇଥାନ୍ତି ! ସେହିପରି ଅନ୍ୟାନ୍ୟ ଜନ ମଧ୍ୟ ଅନନ୍ୟଗତି ହୋଇ ଏହି ବୈଦ୍ୟମାନଙ୍କୁ ଆଶ୍ରୟ କରୁଅଛନ୍ତି । "ଅଜ୍ଞ ବୈଦ୍ୟକଙ୍କ ଦ୍ୱାରା ଚିକିତ୍ସା କରାଉଥାଆନ୍ତି କାହିଁକି ?" ବୋଲି ଯଦି ସେମାନଙ୍କୁ ପଚାର, ତେବେ ସେମାନଙ୍କ ମଧ୍ୟରୁ ସାମାନ୍ୟବୁଦ୍ଧିବିଶିଷ୍ଟ ଲୋକେ ଉତ୍ତର ଦେବେ, "ସଦ୍‌ବୈଦ୍ୟ ତ ନାହାନ୍ତି, କରିବୁଁ କଣ ? ନାହିଁ ମାମୁଁଠାରୁ କଣା ମାମୁଁ ଭଲ ନୁହେଁ କି ?" ପୁଣି ସେହି ବୈଦ୍ୟଙ୍କ ସଦୃଶ ଅଜ୍ଞ କେତେକ ଲୋକ କହିବେ, "ସାସ୍ତ୍ରକୁ କିଏ ପଚାରେ ? ଅନୁଭବ ହିଁ ମୂଳ ।" ସେମାନେ ମନେ କରନ୍ତି ନାହିଁ ଯେ ବିବେକ ଅଳ୍ପ ସମୟରେ ଯାହା ଅନୁଭବ କରିବ, ମୂଢ଼ ବ୍ୟକ୍ତି ଦଶ ବର୍ଷରେ ମଧ୍ୟ ତାହା କରି ପାରିବ ନାହିଁ ।

ଏଣେ ରୋଗୀ ଧନ ଓ ଅସହାୟ ହୋଇ ଚିକିତ୍ସକଙ୍କୁ ନାରାୟଣ ମଣି ତାହାଙ୍କ ହସ୍ତରେ ନିଜର ବହୁମୂଲ୍ୟ ପ୍ରାଣ ସମର୍ପଣ କରେ; ତେଣେ ଚିକିତ୍ସକ "ଯସ୍ୟ କସ୍ୟ ତରୋର୍ମୂଲଂ ଯେନ କେନାପି ମର୍ଦ୍ଦିତଂ । ଯସ୍ମୈ କସ୍ମୈ ଚ ଦାତବ୍ୟଂ ଯଦ୍ୱା ତଦ୍ୱା ଭବିଷ୍ୟତି ।" ଏହି ଭାବନା କରିଥାନ୍ତି ! କି ଭୟଙ୍କର ବ୍ୟାପାର !

ଅନ୍ୟାନ୍ୟ ଶାସ୍ତ୍ର ଅପେକ୍ଷା ଆୟୁର୍ବେଦରେ ସୂକ୍ଷ୍ମ-ସୂକ୍ଷ୍ମ-ବିବେକ ଓ ସ୍ଥିର ଆଲୋଚନାର ଆବଶ୍ୟକତା

ଅଧିକ ; ଯେଉଁ ଦେଶରେ ଏହା ରୂପ ଆୟୁର୍ବେଦର ସ୍ଥାନ ଜଡ଼ ଓ ଅଜ୍ଞାନ ଜନଙ୍କ ଉପରେ ନ୍ୟସ୍ତ, ଯେ ଦେଶରେ ପଦେ ପଦେ ଅପମୃତ୍ୟୁ ପ୍ରଭୃତି ଅମଙ୍ଗଳପରମ୍ପରା ଘଟିବାରେ ବିଚିତ୍ର କଣ ? ପରିତାପର ବିଷୟ, ଆମ୍ଭ ଦେଶର ରାଜା, ଜମିଦାର, ସର୍ଦ୍ଦାର, ସମ୍ଭ୍ରାନ୍ତ ପ୍ରଭୃତି ଏହି ପ୍ରଧାନ ଅଭାବ ଦୂର କରିବାକୁ ଲବମାତ୍ର ଇଚ୍ଛା କରନ୍ତି ନାହିଁ । ଉଡ଼ିଶାର ପ୍ରତ୍ୟେକ ଟୋଲରେ ଛାତ୍ରମାନଙ୍କୁ ନାନାବିଧ ଶାସ୍ତ୍ର ଶିକ୍ଷା ଦିଆ ଯାଏ, କିନ୍ତୁ କେଉଁଠାରେ ସାଙ୍ଗ ଆୟୁର୍ବେଦର ଶିକ୍ଷା ଦିଆ ଯିବାର ଜଣା ଯାଏ ନାହିଁ । ଆୟୁର୍ବେଦର ମହିମା ଓ ଉପକାରିତା ଭାବିଲେ ପ୍ରତ୍ୟେକରେ ଆୟୁର୍ବେଦ-ବିଦ୍ୟାଳୟ ସ୍ଥାପନ କରିବା ଆବଶ୍ୟକ ବୋଧ ହେଉ ନାହିଁ କି? ଏ ବିଷୟରେ କର୍ତ୍ତୃପକ୍ଷଙ୍କର ସୁବିଚାର କରିବା ଉଚିତ । ଏତଦ୍ଭିନ୍ନ କେଉଁ ଉପାୟରେ ଦେଶରେ ସର୍ବତ୍ର ଆୟୁର୍ବେଦର ପ୍ରଚାର ହେବ, ଦେଶୀୟ ବନୌଷଧିଗଣ ସୁରକ୍ଷିତ ହେବେ, ଉତ୍ତମ ଉତ୍ତମ ଔଷଧ ପ୍ରସ୍ତୁତ ହେବ, ଇତ୍ୟାଦି ବିଷୟ ଅନେକେ କରି ସାଧ୍ୟାନୁସାରେ ସାହାଯ୍ୟ କରିବା ପ୍ରତ୍ୟେକ ଦେଶହିତୈଷିର କର୍ତ୍ତବ୍ୟ ।

(୧) ଉତ୍କଳର ସ୍ଥାନେ ସ୍ଥାନେ ଆୟୁର୍ବେଦ-ବିଦ୍ୟାଳୟ ପ୍ରତିଷ୍ଠିତ ହେବା, (୨) ତତ୍ସଂଲଗ୍ନ ଗୋଟିଏ ଗୋଟିଏ ବୈଦ୍ୟଶାଳା ଓ ଗୋଟିଏ ଗୋଟିଏ ଔଷଧୀ-ବାଟିକା ସ୍ଥାପିତ ହେବା, (୩) ପ୍ରତ୍ୟେକ ବିଦ୍ୟାଳୟରେ ଆୟୁର୍ବେଦ-ବ୍ୟବସାୟୀ ଶିକ୍ଷକଙ୍କୁ ନିଯୁକ୍ତ କରିବା, (୪) ବୈଦ୍ୟଶାଳାମାନଙ୍କରେ ଆୟୁର୍ବେଦୋକ୍ତ ଔଷଧ ସମ୍ୟକ୍ ପ୍ରକାରେ ପ୍ରସ୍ତୁତ ହେବା, (୫) ଔଷଧୀ-ବାଟିକାମାନଙ୍କରେ ଗ୍ରାମ୍ୟ ଓ ବନ୍ୟ ନାନାବିଧ ଔଷଧି ବୃକ୍ଷ ଓ ଲତା ରକ୍ଷିତ ଓ ପରିବର୍ଦ୍ଧିତ ହେବା, (୬) ଉପରୋକ୍ତ ବିଦ୍ୟାଳୟମାନଙ୍କରୁ ଯୋଗ୍ୟତା ସହିତ ପରୀକ୍ଷୋତ୍ତୀର୍ଣ୍ଣ ହେବା ଛାତ୍ରମାନଙ୍କୁ ଯୋଗ୍ୟତାପତ୍ର ଦିଆଯାଇ କେବଳ ସେମାନଙ୍କ ଦ୍ୱାରା ଚିକିତ୍ସାଦି କରାଇବା ବିଷୟରେ ପ୍ରଯତ୍ନ କରିବା, ଇତ୍ୟାଦି ବିଷୟମାନ ଈଶ୍ୱର କୃପାରୁ ଯଦି କାର୍ଯ୍ୟରେ ପରିଣତ ହୁଏ, ତେବେ ଅବଶ୍ୟ ଦେଶର ବହୁବିଧ ମଙ୍ଗଳ ସାଧିତ ହେବ ।

ଶ୍ରୀ ସଦାଶିବ ବିଦ୍ୟାଭୂଷଣ ।

## ଭାଗବତଟୁଙ୍ଗୀରେ ସନ୍ଧ୍ୟା । (୯)

ପଣ୍ଡିତ ମହାଶୟ ଆଜ ସହାସ୍ୟବଦନରେ ଟୁଙ୍ଗୀରେ ଉପସ୍ଥିତ । ପଣ୍ଡିତ ମହାଶୟ—'ଯୁଦ୍ଧକାଳ ଅନିବାର୍ଯ୍ୟପରବଶ ହୋଇ ଆମ୍ଭେ ଚୌମାହାନ୍ତିମାନଙ୍କ ପଦ୍ୟରଚନା ସ୍ତବକ ରଖି ଋତୁସଂହାରର ଅନୁବାଦରେ ନିବିଷ୍ଟ ହୋଇଥିଲୁଁ । କାବ୍ୟମାନଙ୍କୁ ଭାଗ୍ୟ ନିନ୍ଦନୀୟ ବୋଧ ନ ହେଲେହେଁ ଏତଦ୍ଭୂତ ବାସନା ଉପେକ୍ଷଣୀୟ ନୁହେଁ ।'

ଆମ୍ଭେମାନେ ଦେଖିଲୁଁ, ପଣ୍ଡିତମହାଶୟଙ୍କ କଥାଟିକେ ପରିବର୍ତ୍ତିତ ହେବା ଦୁରାଶା । କିନ୍ତୁ ପଣ୍ଡିତମହାଶୟଙ୍କ ଅନୁବାଦଟି କବିତା ହୋଇଅଛି, ଶ୍ରୀଜୀବା ଟୁଙ୍ଗୀରେ ପଣ୍ଡିତମହାଶୟଙ୍କ ଅଭିରୁଚି ନାହିଁ ରହିଲୁଁ ଓ ପଣ୍ଡିତମହାଶୟ ଖଣ୍ଡେ କାଳପତ୍ର କାଢ଼ି ଆରମ୍ଭ କଲେ :—

୧

ଚଣ୍ଡ ରବି; ଇନ୍ଦୁ-କରେ ବାସନା ସତତ ;
ପତଙ୍ଗଶୁଣ୍ଡ ଜଳାଶୟ ଭାଗୁଁ ଅବରତ;
ଦିବା ଅବସାନେ ପ୍ରିୟେ; କାମ ଉପଶାନ୍ତ;—
ନିଦାଘ ସମୟ, ପ୍ରିୟେ ! ହୋଇଲା ଆଗତ ।

୨

ନିଶା (ଯହିଁ ଚନ୍ଦ୍ରକରେ ତମ ପରାହତ) ;
ଯେଉଁ ସ୍ଥାନେ ରମ୍ୟ ଜଳ-ସଦନ ନିର୍ମିତ;
ନାନାବିଧ ମଣି; ଆର୍ଦ୍ର ଚନ୍ଦନ ଲେପିତ;—
ଲୋକେ ସେହି ଏମନ୍ତ ମନ ଅଭିଳଷିତ ।

୩

ସୁବାସିତ ଦର୍ପଣତଳ ଅତି କମନୀୟ;
ପ୍ରିୟାମୁଖ-ମଣ୍ଡଳରେ କଳ୍ପିତ ଯାବନୀୟ;
ବୀଣାସ୍ୱନ (କଳାପିର ସୁରସ ଅମିୟ);—
ଏହିମାନଙ୍କରେ କାମୀ ରକ୍ଷିଥାଏ ଲୟ ।

୪

ସୁବସନ-ମେଖଳାରେ ନିତମ୍ବ ଜଡ଼ିତ,—
ହାରଶୋଭି ପୟୋଧର ଚନ୍ଦନେ ଚର୍ଚ୍ଚିତ,—
ନାନା ଜାତି ବାସେ କେଶଗୁଚ୍ଛ ସୁବାସିତ,—
କର ନାହିଁ ରସିକଙ୍କୁ କରଇ ମୋହିତ ।

୫

ଗାଢ଼ ଅଲକ୍ତକ-ରସ-ରାଗରେ ଶୋହିତ
ନୂପୁର-ଯୁକ୍ତ ପଦ୍ମରେ ନିତମ୍ବିନୀ-ଯୂଥ
ପଦକ୍ଷେପ କାଳେ କରି କଳହଂସ-ରୁତ
କରନ୍ତି ଜନମାନସ ସତତ ମୋହିତ ।

୬

ଚନ୍ଦନ-ପଙ୍କେ ଶୀତଳ ପୀନ ପୟୋଧର
(ତୁଷାର-ଧବଳ; ପୁଣି ଲମ୍ବେ ଯହିଁ ହାର;),
କନକମେଖଳାବାନ୍ଧି ନିତମ୍ବର ଥାର,
କାହା ମନେ ନ କରଇ ଉତ୍କଣ୍ଠା ଅପାର ?

ପଣ୍ଡିତମହାଶୟଙ୍କର ଏହି ଛଟି ଶ୍ଳୋକରେ ତାଳପତ୍ର ଖଣ୍ଡି ଶେଷ ହେଲା ।

ଶ୍ୟାମନେତ ବାବୁ—'ପଣ୍ଡିତମହାଶୟ ! ଅନୁବାଦଟିରେ ସଂସ୍କୃତ-ରଚନା-ଛଟାର ମହାତ୍ମ କିଛିଏ ବେଶି ହୋଇଅଛି ।'

ପଣ୍ଡିତମହାଶୟ— 'ଋତୁସଂହାରସହ ଏ ଅନୁବାଦକୁ ତୁଳନା କଲେ ଅସ୍ମଦୀୟ କୃତିତ୍ୱ ଜ୍ଞାତସାରରେ ଆସିବ । ପ୍ରତ୍ୟେକ ଶ୍ଳୋକରୂଢ଼ ଭାବ ପ୍ରତ୍ୟେକ ଶ୍ଳୋକରେ ସନ୍ନିବେଶିତ କରିବା ପକ୍ଷେ ଆମ୍ଭେ ସମ୍ପୂର୍ଣ୍ଣରୂପେ ଯତ୍ନୀ ହୋଇଅଛୁଁ ।'

ଆମ୍ଭେମାନେ ବୁଝିଲୁଁ ଯେ ବୋଧ ହୁଏ ପଣ୍ଡିତମହାଶୟ ଏଥିମଧ୍ୟରେ ଟିକିଏ ଶିକ୍ଷାଲାଭ କରୁଅଛନ୍ତି । 'କୌମୁଦୀପୂର୍ଣ୍ଣିମା'ପରି ରଚନା-ଚାତୁରୀ ପଟୁଆଣିକର ଅପ୍ରାପ୍ତ ଶ୍ଳୋକାନୁବାଦରେ ବ୍ରତୀ ହେବା ପଣ୍ଡିତମହାଶୟଙ୍କର ନିଜ ବୟୋବୃଦ୍ଧ-ପକ୍ଷରେ ଯଥେଷ୍ଟ ପ୍ରଶଂସାଜନକ । ତେବେ ପଣ୍ଡିତମହାଶୟଙ୍କ ଭଳି ଉପଯୁକ୍ତ ପଥରେ ଚାଲିଲେ ବେଶ୍ ଭଲନ୍ତା; କିନ୍ତୁ 'ପ୍ରାୟେଣ ସାମଗ୍ର୍ୟବିଧୌ ଗୁଣାନାଂ ପରାଙ୍ମୁଖୀ ବିଶ୍ୱସୃଜଃ ପ୍ରବୃତ୍ତିଃ' । ଦେଖିଲୁଁ ଯେ କବିଯଶଃପ୍ରାର୍ଥୀ ଅନେକ ବ୍ୟକ୍ତିଙ୍କ ଅନୁବାଦ ଅପେକ୍ଷା ପଣ୍ଡିତମହାଶୟଙ୍କ ଅନୁବାଦ ନିକୃଷ୍ଟ ନୁହେଁ ।

ମହାରାଜ—'ପଣ୍ଡିତମହାଶୟ, ଏ ଅନୁବାଦରେ ଆପଣଙ୍କୁ ଅପ୍ରିୟ ସତ୍ୟ ଶୁଣିବାକୁ ହେବ ନାହିଁ । ଚେଷ୍ଟା କରି ଏ ଅନୁବାଦଟି ସମାପ୍ତ କରନ୍ତୁ । ଅତ୍ୟୁକ୍ତିପୂର୍ଣ୍ଣ ପ୍ରଶଂସାରେ ଆମ୍ଭେମାନେ ସିଦ୍ଧହସ୍ତ ନୋହୁଁ । କିନ୍ତୁ ଆପଣ ଏତିକି ଜାଣନ୍ତୁ ଯେ ଆପଣଙ୍କର ପ୍ରଥମ ଚେଷ୍ଟା କେତେକ ପରିମାଣରେ ସଫଳ ହେଲାପରି ବୋଧ ହୁଏ ।

ମହାଜନବାବୁ ।—ପାଠ ପଢ଼ି ରୋଜଗାର ନ କଲେ କଣ ହେବ ? ଯେଉଁ ବହି ବେଚି କାଟିଲେ ଦି'ପଇସା ମିଳିବ, ସେ କଥା କହ । ଏଥିରୁ ଗୁଡ଼ାଏ କଲେ କି ଲାଭ ?

ମାଷ୍ଟରମହାଶୟ—ପଣ୍ଡିତମହାଶୟଙ୍କ ପଦ୍ୟଟି ଉଚ୍ଛିଷ୍ଟ—(ପଣ୍ଡିତମହାଶୟ ବର୍ତ୍ତମାନ=ଗବିଙ୍କ; ମାଷ୍ଟରଙ୍କ ଦ୍ୱାରା ଉଚ୍ଛିଷ୍ଟ ଶବ୍ଦ ବ୍ୟବହାର=ଦୋଷ; ଏପରି ସ୍ଥଳରେ ଆମ୍ଭେମାନେ ଦେଖିଲୁଁ ଯେ ମାଷ୍ଟରଙ୍କଠାରୁ ଅଳ୍ପ ପଦେ ଅଧେ କଡ଼ା କଥା=ନୂତନ ଅଙ୍ଗାରବୃଷ୍ଟି ଏଥିରେ ସିଞ୍ଚିଲେ ସର୍ବନାଶ । ପଣ୍ଡିତଙ୍କ ଭାବଭଙ୍ଗୀ ଦେଖି କୁମାରସମ୍ଭବର କାମଦାହୀ ମହାଦେବଙ୍କ ନେତ୍ରଟି ମନେ ପଡ଼ିଗଲା । ମାଷ୍ଟର ମହାଶୟ ମଧ୍ୟ ପଣ୍ଡିତଙ୍କ ଭାବଭଙ୍ଗୀ ବେଶ୍ ବୁଝିପାରିଲେ । ଅସାବଧାନତା-ପ୍ରଯୁକ୍ତ ବ୍ୟବହୃତ ଶବ୍ଦଟି ହଠାତ୍ ବଦଳାଇ ଦେଲେ; ରକ୍ଷା; ନଇଲେ ଆମ୍ଭମାନଙ୍କର ସବୁ ସରସ ଶ୍ଲୋକ ବିରସ ହୋଇ ଯାଇଥାନ୍ତା ।)—ଉଃ ଗମ—ଉଚ୍ଛିଷ୍ଟ ହୋଇଅଛି, ସନ୍ଦେହ ନାହିଁ । (ପଣ୍ଡିତଙ୍କ ଶେଷ ଉକ୍ତିଟା ପ୍ରାୟ ° ସେକେଣ୍ଡ=

ତ୍ୟ ବଦଳ ମଧ୍ୟରେ ପରିବର୍ତ୍ତିତ ହୋଇଗଲା । ଗୋଟାଏ ଅକ୍ଷର ପରିବର୍ତ୍ତନର ଏତେ ମାହାତ୍ମ୍ୟ; ପଣ୍ଡିତମହାଶୟ 'ଜବାନ କଷ୍ଟଣଦୀପ' ଗ୍ରନ୍ଥ ରହିଲେ (ଓ ମାଷ୍ଟର ମହାଶୟ କହିବାକୁ ଲାଗିଲେ) ଏ ବର୍ଷ ପୂଜାହ୍ୟଲିଡେ ଗୋଟିଏ Novodrama (ନାଟକୋପନ୍ୟାସ) compoje (ରଚନା) କରିଥିଲି । (ଏତେ ଦିନେ ମାଷ୍ଟର ମହାଶୟ ଇଂରେଜୀ ଭାଷାରେ ଗୋଟିଏ ଅବଶ୍ୟକ ଶବ୍ଦ ଭର୍ତ୍ତି କଲେ ! ) ଏ work (ପୁସ୍ତକ) କୁ compoje (ପ୍ରକୃତ ଶବ୍ଦ compose = ରଚନା; ମାଷ୍ଟରେ 'S'କୁ ସାଧାରଣତଃ 'ଜ' ବୋଲି ଉଚ୍ଚାରଣ କରନ୍ତି, ଏହା ଧର୍ତ୍ତବ୍ୟ ନୁହେ) କରିବାକୁ ମତେ ଖୁବ୍ labour (ପରିଶ୍ରମ) ଲାଗିଛି । ମୋର English poem (ଇଂରେଜୀ ପଦ୍ୟ)କୁ blame (ନିନ୍ଦା) କରୁଥିଲ ! ବର୍ତ୍ତମାନ lo ! hark ! smell ! Touch ! and Taste ! (ଗନ୍ଧ, ଶୁଣ, ଶୁଂଘ, ଛୁଅଁ ଏବଂ ଚାଖ) ଏହା କହି ବଡ଼ାଏ ପାଣ୍ଡୁଲିପିଗଣ ବାହାର କଲେ । (ପଣ୍ଡିତ କାଗଜର ଅଲେଖା ପାଖରେ ଲେଖି ମାଷ୍ଟର ମହାଶୟ ବ୍ୟସ୍ତତାବଶତ ସଙ୍କୋଚ ଦେଖାଇ ଥାନ୍ତି ।) ମାଷ୍ଟରମହାଶୟ ତାଙ୍କ Novodrama ଆରମ୍ଭ କଲେ ;—

ଦେବାଙ୍କର ସ୍ୱର୍ଗ-ପ୍ରତ୍ୟାଗମନ

ବା

'ଯେଝା ଘଡ଼ିକ ଯେ'

Jejha Ghadika Jay

ପ୍ରଥମ ଅଙ୍କ । ପ୍ରଥମ ଦୃଶ୍ୟ ।

ଆଶ୍ୱିନ ଶୁକ୍ଳ ଚତୁର୍ଦ୍ଦଶୀ, ବେଳ ଦୁଇ ଘଡ଼ି ଅଛି, ତପୋବନର Cook Kelowy ଘଣ୍ଟା ଟାଂ ଟାଂ କରି ବାଜିଲା । ସ୍ଥାନ—କୈଳାଶଶୃଙ୍ଗ, ଭୋଳାନାଥଙ୍କ ତପୋବନ-କୁଟୀର କୁଟୀଦ୍ୱାରରେ ସଙ୍ଗୀନ-ହସ୍ତରେ ଭୃଙ୍ଗୀ ଦଣ୍ଡାୟମାନ, କୁଟୀମଧ୍ୟରେ ଭୋଳାନାଥ ଖଣ୍ଡିଏ canvas chair (ପାଲ-ଚଉକି)ରେ ଅସୀନ; ହାତରେ ଗୋଟିଏ ପାଲସବଙ୍ଗ ହାଡ଼-ହାଡ଼ର ସ୍ୱର୍ଣ୍ଣାଚ୍ଛାଦିତ ରୁଦ୍ରା-ମାଳା; କକଟରେ କଳୀ ଅଗ୍ନିମାତ୍ର pipe (ନଳୀ)ରେ ଗଞ୍ଜା ଭର୍ତ୍ତି କରୁଅଛି । ଏହି ସମୟରେ ସଲାମ କରି ଭୃଙ୍ଗୀ ମହାଦେବଙ୍କ ହସ୍ତରେ ଖଣ୍ଡେ visiting card (ଦର୍ଶନ ପତ୍ରିକା) ପ୍ରଦାନ କଲା । ଭୋଳାନାଥ—(visiting card ପଢ଼ି ଟିକିଏ ଚମତ୍କୃତ ହୋଇ)—ମେମ୍ ସାହେବ୍‌କୋ ହାମ୍‌ରା ସଲାମ୍ ବୋଲୋ । ହାମ୍ ଯାତେ ହେଁ, ବାହାର୍‌ମେ ଥୋଡ଼୍‌କେ ଠହରୁ ଦୋ; ଦୋ ଏକ୍ ମିନଟ୍‌ମେ ହାମ୍ ମୁଲାକାତ୍ କରେଙ୍ଗେ—(ଭୃଙ୍ଗୀ ଏକ ସଲାମ୍ କରି ପ୍ରସ୍ଥାନ) ନନ୍ଦୀ ! ଫୁର୍ତ୍ତି କରୋ । ମେମ୍‌ସାହେବ୍ ଅଭୀ ଆଏଙ୍ଗେ । ଗଞ୍ଜା ଦେଖ୍‌ନେ ବଡ଼ା ଗରମ୍ ହୋଏଙ୍ଗେ ।

[Foot-note—ପାଠକେ ! ମହାଦେବ ଆଉ ସେ ମହାଦେବ ନାହାନ୍ତି । ଯହିଁ ଯହିଁ ବୁଢ଼ା, ତହିଁ ତହିଁ ଫିଟ୍; ଆପଣମାନେ କୁମାରସମ୍ଭବ, ମହାଭାରତ, ଶିବପୁରାଣ ଇତ୍ୟାଦିରେ ମହା-ଦେବଙ୍କର ଯେଉଁ ବର୍ଣ୍ଣନା ଶୁଣିଛନ୍ତି, ସେନୁଉତ୍ତ ମନ୍ତ୍ରିବର ଗୋଟିଏ କାମସ୍କାରେ ଗନ୍ଧ ପକାଇ ଏ Novodrama (ନାଟକୋପନ୍ୟାସ)ଟି ଶେଷ କରିବାଯାଏ ରଖି ଦିଅନ୍ତୁ । ନଚେତ୍ ମତେ Mad (ବାଉଳା) ବୋଲି କହିବେ । ମହା-ଦେବଙ୍କର ଜଟା, ବିଭୂତି, ବ୍ୟାଘ୍ରଚର୍ମ, ଗାତ୍ରାସନ, ସର୍ପ ଇତ୍ୟାଦି ପରିବର୍ତ୍ତେ ଯଥାକ୍ରମେ ଛାଟଛାଣ ଚୁଲିକ ଓ ଟେଢ଼ି, ପାଉଡ଼ର (powder), ସାମ୍ବ ଚର୍ମ (chamois leather), କାନଭାସ୍ ଚଉକି (canvas chair), ଗଳବନ୍ଧ (neck-tie) ପ୍ରଭୃତି ଦେଖାଣି । କୈଳାସରେ ମହାଦେବଙ୍କ କୋଠିରୁ ତପଃକୁଟୀର ୧୦୦ ଗଜ ତଫାତ୍ । ତପଃକୁଟୀରଟି ଭୋଳାନାଥଙ୍କ ଖାସ୍ କାମରା । ବାହାରେ ସୁନାର୍ କାଳରେ ପ୍ରସ୍ତରଫଳକରେ ସ୍ୱର୍ଣ୍ଣାକ୍ଷରରେ No admission (ପ୍ରବେଶ ନିଷେଧ) ବିଜ୍ଞାପନ ମରା ଅଛି । ପାର୍ବତୀଙ୍କ ସଙ୍ଗେ ଏକାକୀ ଥିଲେ ଓଡ଼ିଆରେ କଥାବାର୍ତ୍ତା । କିନ୍ତୁ ଅନ୍ୟ

ସମସ୍ତରେ ଅଧୁନିକ ମତ ଅନୁସାରେ ହିନ୍ଦୀ ଓ ଇଂରାଜୀ କଥାବାର୍ତ୍ତା ଓ Correspondence (ପତ୍ରଲେଖା) । ସେଠାରେ ସବୁ ଆଧୁନିକ କାଇଦା ଚଳନ୍ତି, କିନ୍ତୁ ଗଞ୍ଜା ପାଇବାର୍ଥେ Birds-eye ଚୁରଟ୍ ଟାଣିବା କଥା ହୁଉଛି । ]

ନନ୍ଦୀ—(ମହାଦେବଙ୍କ ମୁଖରେ ଗଞ୍ଜା pipe ପ୍ରଦାନ ଓ pipe ରେ ମୁଖାଗ୍ନି ଦାନ)—ହଜୁର ! ହାମ୍ ଶୁନ୍‌ଲେହେଁ ମେମ୍‌ସାହେବ୍ ହଜୁର୍‌କା ଉପର୍ ବଡ଼ା ଖପ୍ପା ହୁଇ ହେଁ । ଆଜ୍ ସକ୍‌ସ୍ ହୁକମ୍ ଟେଲିଗ୍ରାଫ୍ (telegraph) କୟେଥେ ଯୋ ହାମ୍‌କୁ ବକ୍ସିସ ଶରଧା ହୁଆ—ହାମ୍‌ରା-ବାସ୍ତେ ଏକ୍ କପ୍ପା କଫି (Coffee) ତୈୟାର୍ କରକେ ରଖ୍ଖୋ । ହାମ୍ ଅଭି ହାସପାତାଲ୍ (Hospital) ମେ ପଡ଼ାହୁଁ । ଘଣ୍ଟା ସାଢ଼େ ଚାର ବଜେ ଷ୍ଟେସନ୍‌ପର୍ ଯୋଡ଼ା ଭେଜୋ । ହାମ୍ ଡାକ୍ ଗାଡ଼ିମେ (Mail) ପହୁଞ୍ଚେଗେ ।

(Foot-note)—ପାଠକେ ! ହସ ନ ମିଛ ବୁଝିଲେ ତ ! ମହାଦେବଙ୍କ ମହଲରେ Train (ରେଲ୍) ଅଛି; ଯୋଡ଼ା ଗାଡ଼ି ଅଛି, କାଫି ଅଛି, ସବୁ ଅଛି ! ନନ୍ଦୀର କଥା ଶୁଣି ମହାଦେବଙ୍କର ନିଶା ଛଡ଼ି ଗଲା । କିଣ କରାଯାଏ ? ଅଠ ଦିନ ବିଚ୍ଛେଦ ପରେ ମିଳନ । ତା ଉପରେ ଏ ଦଣ୍ଡ । ମହାଦେବ ବ୍ୟସ୍ତ ସମସ୍ତ ହୋଇ ହିନ୍ଦୀଭାଷା ଭୁଲି ଗଲେ ।)

ମହାଦେବ—ଅରେ ବାବା ନନ୍ଦୀ ! ଅସ କଥା ଶୁଣିଲା । ମୁଁ ଟିକେ ଜାଣେ । ସେ ଗଲା ଦିନ ଆଗରୁ ମୋ କଥରେ ଗୋଟାଏ ହିଟିପିଟି ପଡ଼ି ଥିଲା । ଯା ବାବା ! ତାଙ୍କୁ କହିଁଲେଇ ସଥିଁଲେଇ ଛାଡ଼ ଅଣ; ସେ ତ ଏହିପରି ସଂସାର ରଖିବେ ନାହିଁ । ସଂସାରରେ ଏଥର ସ୍ଥିର କଷ୍ଟ ପାଇ ଅଛନ୍ତି ।

(ନନ୍ଦୀର ପ୍ରସ୍ଥାନ, ମହାଦେବ ଚେନ୍ଦ୍ର ଦରଜାରେ pipe ଉଭୟାଦ ଶୀଘ୍ର ଲୁଚାଇ ଦେଇ ନିକଟରୁ ଖଣ୍ଡେ bent wood chair (ଏକ-ଜାତୀୟ ସୁନ୍ଦର ଚୌକି) ଆନୟନ; ନନ୍ଦୀର ପାର୍ବତୀଙ୍କ ସହ ପ୍ରବେଶ । ପାର୍ବତୀଙ୍କ ଖାସ କାମରାର ଦ୍ୱାର ଦେଇ ନନ୍ଦୀର ବହିର୍ଗମନ ଓ ପାର୍ବତୀଙ୍କ ସହ କରମର୍ଦ୍ଦନ ଅଭିପ୍ରାୟରେ ମହାଦେବଙ୍କ ହସ୍ତ ପ୍ରସାରଣ ।)

ପାର୍ବତୀ—(କିଞ୍ଚିତ ଦୂରରେ ଦଣ୍ଡାୟମାନ)—ଏଣିକି ଦୁହାଙ୍କ ମଧ୍ୟରେ ପଠାଇବାର ଆବଶ୍ୟକ ନାହିଁ । ତୁମ୍ଭର ସଂସାର ତୁମ୍ଭେ ଜାଣ । ମୁଁ ଏଥରକ ଯାହା ଅନୁଭବ କରିଛି, ତହିଁରେ ପ୍ରତିଜ୍ଞା କରିଛି ଯେ ଏ ସଂସାର ସବୁ ପଛରେ ମୁଁ ଏତେ ଅପମାନ ସହି ପାରିବି ନାହିଁ । କିଛି ଦିନ ପରେ ମୋର ଦେହର ସମ୍ପୂର୍ଣ୍ଣ କଷ୍ଟ ହୋଇ ଥିବ । ସଂସାରର ଅନୁଭବ ମନେ ପଡ଼ିଲେ କ୍ରୋଧରେ ମୁଁ ଅସ୍ଥିର ହେଉଅଛି ।

ମହାଦେବ—ଯାହା ହେଲା ହେଲାଣି । ଅସ [ମହାଦେବ ଥାଏଣା Waist coat (ଫତେଇ) ପକେଟରୁ ରେଶମି Essence (ସୁଗନ୍ଧି) ଦିଆ ରୁମାଲ ବାହାର କରି ପାର୍ବତୀଙ୍କ ଅଶ୍ରୁ ପୋଛିବା] ଏତେ ଅବସ୍ଥା ହେଲ କିପରି ? ମୁଁ ସେଥିପାଇଁ କହେଁ ବ'ଗୋଡ଼ଥିଙ୍କୁ ବିଶ୍ୱାସ ନାହିଁ । ତାଙ୍କୁ ସମୂଳେ ନାଶ କରିବାକୁ ମୁଁ ଉଦ୍ୟତ । ଏଥିପାଇଁ ଭଗବାନ୍ ଓ ବ୍ରହ୍ମା ମୋ ସଙ୍ଗେ ବିବାଦ କଲାନ୍ତି । ଭଗବାନଙ୍କର ଗୋଟାଏ casting vote (ଅଧିକା ଭୋଟ) ଥିବାରୁ ସେ କାହାକୁ ମାନୁ ନାହାନ୍ତି । ଅଜି ଦେବୀଙ୍କର ଅବସ୍ଥା ଦେଖି ମନ ଯାହା ହେଉଅଛି, ତାହା ମୁଁ ଜାଣେ । ଏଥର election (ନିର୍ବାଚନ) ବେଳକୁ ଭଗବାନଙ୍କୁ ନ ଛାଡ଼ିଲେ ଆଉ ଉପାୟ ନାହିଁ । (ପାର୍ବତୀଙ୍କୁ ସମ୍ବୋଧନ କରି କୋଳକୁ ଆନୟନ ଓ ସସ୍ନେହ ଆଲିଙ୍ଗନ) ଆହା, ପ୍ରିୟେ ! ଦେହ ପୀଡ଼ିତ ହେଲା କିପରି ? ଅଠ ଦିନ ମୋ ପାଖରୁ ଗଲ, ଏହା ମଧ୍ୟରେ ଏତେ ପରିବର୍ତ୍ତନ ! ସେଥିପାଇଁ ତୁମ୍ଭକୁ ଏକାକୀ କେଉଁ ଥରେ ଛାଡ଼ି ଦେବାକୁ

ମୋ ମନ ଝୁରେ ନାହିଁ । ଅହା ! ଏ ସୁକୁମାର ଦେହ କେବେ କଷ୍ଟ ପାଇଛି !

[Foot-note— ପାଠକମହୋଦୟ ! ଦେଖିଲେ ତ ! waiste coat (ଫତେଇ), essence (ସୁଗନ୍ଧ ଅର୍କ),casting vote (ଅଧିକା ଭୋଟ୍) ସବୁ ଦେବତାଙ୍କଠାରେ ଚଳନ୍ତି । ଅଧୁନାତନ ସଭ୍ୟତା କାହାକୁ ସ୍ପର୍ଶ ନ କରେ ନାହିଁ । ଭୋଳାନାଥ ପୁରୁଣା conservative (ରକ୍ଷଣଶୀଳ) ତାଙ୍କର ତ ଏ ପରିବର୍ତ୍ତନ । ଅନ୍ୟାନ୍ୟଙ୍କ କଥା କଅଣ ?]

ପାର୍ବତୀ—ଦିନକୁ ଦିନ ତାମସିକ ଭକ୍ତିର ମାତ୍ରା ବଢ଼ୁଛି । ମୋର ପର୍ବ, ତହିଁରେ ତୁମ୍ଭଙ୍କୁ ନେଇ ଠିଆ କରାଉଅଛନ୍ତି କାହିଁକି ? ମୋ ପର୍ବରେ ତୁମ୍ଭର ପୂଜା ହେଲେ ମୋର ବିଶେଷ କିଛି ଆପତ୍ତି ନାହିଁ । କିନ୍ତୁ 'ଗଙ୍ଗାରାଣୀ'ଙ୍କର ମଧ୍ୟ ପୂଜା ! ପୂଜା ବା କାହିଁ ? କେବଳ ଘୃଅର୍ଚ୍ଚା । ଏ ସବୁ କେଉଁ ଶାସ୍ତ୍ରରେ ଅଛି, ମୁଁ ବୁଝି ପାରୁ ନାହିଁ । ମତେ 'ମା' 'ମା' ବୋଲି ସମ୍ବୋଧନ କଲେ ଦଣ୍ଡେ ପାଣି ପିଇବେ ନାହିଁ। ମୋର ସ୍ୱାମୀ ନେଇ କେବେ ଏମନ୍ତ ଅପମାନ କରି ନ ଥିଲେ ! ରହୁଁ ରହୁଁ ବାହ୍ୟ ଓ ତାମସିକ ଭକ୍ତି ଅସି ସଦାଚାରକୁ ଗ୍ରାସି ଗଲାଣି । ପ୍ରଭୋ ! ଶାସ୍ତ୍ର ଦୃଷ୍ଟିରେ ଚାହିଁବାକୁ ଚାହିଁ ନାହିଁ । ମୋ ପ୍ରତି କାହାର ଭକ୍ତି ନ ଥାଉ ପଛକେ, ଆଚାରଚାର୍ଯ୍ୟ ଦେଖି ଲୋକେ ପତନ କଲେ ହେଲା !! ଛି ଛି ! ଟିକିଏ ବିବେକଶକ୍ତି ତୁମ୍ଭେ ସେମାନଙ୍କୁ ଦେଇ ନାହିଁ ? କାଉଁରିଆଙ୍କୁ ନେଇ ବଥବାଙ୍କଠାରୁ ଅଳଙ୍କାର କାଢ଼ିନେଇ ପର ମେଡ଼ାରୁ ଲୁଗାପଟା ଅଳଙ୍କାରଠାରୁ ଛଡ଼େଇ ନେଇ ମୁହଁ ମଡ଼େଇ ପାଣିରେ ମାଡ ଦେଲେ, ହାତ ଗୋଡ଼ ଛଣ୍ଡି ଯାଉଛି । ଗୋଡ଼ର କଳାଗଣ୍ଠି ଦରଜରେ ଭୁଇଁ ହେଉ ନାହିଁ । (କ୍ରନ୍ଦନ)

[Foot-note ଅଳଙ୍କାର ଓ ବସ୍ତ୍ର କଥା କହୁଁ କହୁଁ ଦେବୀ କେ ହେ ଭାବ ପକାଉଲେ । ପଣ୍ଡିତ ମହାଶୟ କହନ୍ତି, 'ସଂସର୍ଗଜା ଦୋଷଗୁଣାଭବନ୍ତି ।' ଦେବୀ ମର୍ତ୍ତ୍ୟଙ୍କୁ ଆସି ଲୋଭ ଶିଖିଲେ । Cowper କହୁଅଛନ୍ତି 'No cat is averse to fish,' ଆମ ସାଧାରଣରେ କହନ୍ତି 'ସ୍ୱର୍ଗକୁ ଗଲେ କ ଢ଼ିଙ୍କି ଧାନ କୁଟା ଛାଡ଼ିବ ?' ଦେବୀ ହେଲେ କଣ ହେବ ? ଯେବେ ହେଲେ ତ ମାଇପି ଜାତି ।]

ମହାଦେବ—(କୋପକଷାୟିତ ନୟନରେ) ଅଚ୍ଛା । ହାମ୍ ଠିକ୍ କର୍ ଦେଙ୍ଗେ । ଓଃ ବ୍ରାହ୍ମଣା ମାରୁ ଗିଲଚୁ ! [Foot-note—'ଯଥା ଦେବେ ତଥା ଦେବେ;' ଯେପରି ଆମ୍ଭେମାନେ ରାଗି ଗଲେ କେବେ କେବେ ହିନ୍ଦୁସ୍ଥାନୀ ପଦେ ଅଧେ ମୁହଁରୁ ବାହାରି ଯାଏ, ମହାଦେବ ସେହିପରି ଏ ଦୁ'ପଦ କଥା ହିନ୍ଦୀରେ କହି ପକାଇଲେ । ପାଠକେ ! ଗୋଟାଏ ଖୁବ୍ ଭଲ simile (ଉପମା) ମନେ ପଡ଼ି ଗଲା । ମହାଦେବଙ୍କର କୋପକଷାୟିତ ନିଚମ୍ଭ ବାହା ସଙ୍ଗରେ ତୁଳନୀୟ ? ଟିକିଏ ଭାବନ୍ତୁ । ସେ ବେଳେ ଥରେ ଷ୍ଟେସନରୁ ରେଲ ଗାଡି ଛାଡ଼ି ଦେଲା ବେଳେ ଟିକିଏ ରେଲ ଗାଡ଼ି ପଛ ଅଡ଼କୁ ଚାହିଁଲେ ହଠାତ୍ ମୋ ଉପମାଟାକୁ ଗିରଫ୍ କରି ନେବେ । ରେଲ ଗାଡ଼ିର ଶେଷ ଗାଡ଼ି ( ଯେଉଁଥିରେ guard (ଗାର୍ଡ) ଥାନ୍ତି,) ସେ ଗାଡ଼ିର ମସ୍ତକର ମଧ୍ୟ ଭାଗରେ ଗୋଟିଏ ନାଲି ଆଲୁଅ ଓ ଦୁଇ ପାର୍ଶ୍ୱରେ ଯୋଡ଼ିଏ ନାଲି ଆଲୁଅ । ମହାଦେବଙ୍କ ମୁହଁଟି ସେହିପରି ତ୍ରିନେତ୍ରଯୁକ୍ତ ହୋଇ ଦିଶୁଥାଏ ।) ଅଚ୍ଛା, ପ୍ରିୟେ ! ତାପରେ ତୁମେ ଆସିଲ କେମନ୍ତେ ? ବାଟରେ ତ କିଛି ଅସୁବିଧା ହୋଇ ନାହିଁ ?

ପାର୍ବତୀ—ସେ ଲମ୍ବା କଥା କଣ କହିବି ? ବାଟରେ ଆ ଆ ମୋର ଝାଉଁ ବେଶ ଦେଖି ପଦାରାଣୀ ମତେ 'ବାଘୁଣୀ' ବୋଲି ନେଇ ପାଗଳଖାନାରେ ( Lunatic assylum ) ପୂରେଇଲେ । ବଡ଼ସାହେବ ଆସି ତଦାରଖ କରି ମତେ ସାର୍ଟିଫିକଟ ( certificate ) ଦଣ୍ଡେ ଦେଲାରୁ ମତେ ପାଗଳଖାନାରୁ ଦଣ୍ଡେ ଥାନ-

ଫଟା ଲୁଗା ଓ ଦୁଇ ଅଣା ପଇସା ଦେଇ ବିଦାୟ କରିଦେଲେ । ତୁମ୍ଭେ ଥାଉଁ ଥାଉଁ ମୁଁ ଥାନ-ଫଟା ଲୁଗା ପିନ୍ଧୁଛି କିମିତି ? ପଛକୁ କଣ କରିବ, ଚିନ୍ତା କରି ଅଇଲି । ରେଲ ଷ୍ଟେସନ (station) ରେ ପହଞ୍ଚିଲି । ଗଲା ଦରଜ, ତା ଉପରେ ଅଜୀର୍ଣ୍ଣ ଝାଡ଼ା (diarrhœa); ଡାକ୍ତର ମାଇନାରେ ମୁଁ ଅଟକ ରହିଲି । ଅହି ଦାସପାତାଳ (Hospital)ରେ ପଡ଼ିଲି । ପଛକୁ ଡାକ୍ତରଙ୍କଠାରେ ଅମୃତବସ୍ତୁ ଦେବାରୁ ଡାକ୍ତର ବଡ଼ ବହୁତ ପରିଶ୍ରମ କଲା । (ମହା-ଦେବ ପାର୍ବତୀଙ୍କଠାରୁ ଯେ ଡାକ୍ତରଙ୍କ ନାମ ଧାମ ଓ ଠିକଣା ଆପଣା memorandum (ସ୍ମୃତିପତ୍ର ବହି)ରେ copying pencil (ନାଇଗଣି ପେନ୍‌ସିଲ୍)ରେ ଟିପି ନେଲେ । ) କେତେ tincture କେତେ mixture କେତେ powder କେତେ liniment ଦେବାରୁ ବଞ୍ଚି ଗଲି । ଜ୍ୱର ୧୦୭.୮୦ ହୋଇ ଯାଇଥିଲା । collapse (ସନ୍ନିପାତ) ମଧ୍ୟ ହୋଇଥିଲା । ଏହି ଦିନ sagoo ଆଉ milk (ସାଗୁଦାନା ଓ ଦୁଧ) ଖାଉଛି । ଟିକିଏ ଉଠି ବସି ପାରିଲାରୁ ଡାକ୍ତର ବାବୁ ଦୟା କରି discharge (ଖଲାସ) କରି ଦେଲେ ଏବଂ ନିଜେ ଷ୍ଟେସନକୁ ଆସି ଟିକଟ୍ କିଣି ଦେଇ ଗାଡ଼ିରେ ବସାଇ ଦେଇ ଗଲେ । Hospital (ଡାକ୍ତରଖାନା) ରୁ କନ୍ୟାକୁ telegram (ତାର ଖବର) କରିଥିଲି । ସଂସାରରେ ରହି ମୁଁ ପୂର୍ଣ୍ଣ ସଂସାରୀ ହୋଇ ଗଲି !

ମହାଦେବ—ଅଚ୍ଛା, ପ୍ରିୟେ ! ଥୟ ଧର; ମୁଁ ସମସ୍ତଙ୍କୁ ଠିକେ ଶିକ୍ଷା ଦେଉଅଛି । ଡାକ୍ତର ବାବୁଙ୍କୁ ଅମର ବର ଓ ଅଚଳାଚଳ ସମ୍ପତ୍ତି, ଧନ, ଜନ, ଗୋପ, ଲକ୍ଷ୍ମୀ, ଆୟୁ, ଆରୋଗ୍ୟ, ଐଶ୍ୱର୍ଯ୍ୟ, ଧାନ୍ୟ, ଯଶ, ସବୁ ଦିଆ ହେବ । (ସ୍ୱଗତଃ—ଡାକ୍ତର ବାହାର ନ ଥିଲେ ମତେ ବୃନ୍ଦାବନେ 'ନୃଲେର ଜଳପ୍' ବ୍ୟବହାର କରିବାକୁ ହୋଇ ଥାନ୍ତା ।. ଏ ବୁଢ଼ା ବୟସରେ କେଳେ କନ୍ୟା ଦେବାକୁ ମଙ୍ଗନ୍ତି ନାହିଁ । ଯେବେ ଅବା କେହି ମାଗନ୍ତି, ତେବେ ଦୋଗାଢ଼ ବର ବୋଲି କହୁଛ ଦାମ୍ ହାଙ୍କନ୍ତି । ମୁଁ ଟଙ୍କା ପାନ୍ତ ବାହୁଁ ?)

( Foot-note ଡେବଡା ମହଲରେ ମଧ୍ୟ ଦେଖିଲେ ତ ! ଦୋପାଇ (ମୁତଦାର) ବରକୁ ବେଶି କରସମନ ଦେବାକୁ ପଡ଼େ !! )

ଅଚ୍ଛା ! ପଇଁଗମ୍ବର ନିକଟରେ ବଜ୍ର ଭଗ୍ନ କରି ଦେବ । ତପସ୍ୱୀ ! (ଏହା କହି ଗଣେଶ କାଗଜରେ ଗୋଟିଏ ଚିଠି ଡ୍ରାଫ୍ଟ (draft) କଲେ ।) (ତାହାକୁ 'ହଜୁର' ବୋଲି ଉତ୍ତର ଦେଇ ଏକ ସଲାମ୍ କରି କନ୍ୟାର ପ୍ରବେଶ) କେରାନୀ ବାବୁକୁ ଦାମର ସଲାମ୍ ଠୋକେ । (କନ୍ୟାର ପ୍ରସ୍ଥାନ, ଓ ଦେଢ଼ ମିନିଟରେ କେରାନୀ ବାବୁଙ୍କ ସହ ପୁନଃପ୍ରବେଶ) Well ! ଦେଖୋ, ଏ ଚିଠିକୋ ଏକ fair copy (ସାଫ ନକଲ) କରକେ ଯମ୍ ଦେବକା ପାସ୍ ଅଭ୍ ଡାକ୍‌ମେ ଭେଜୋ । ନେହିଁ ତ ମୁଲ୍‌ତାବି କରକେ ହାମ୍‌ସେ ସଲାମ୍ ଠୋକେ । (କେରାନୀ ବାବୁ ପତ୍ର ଖଣ୍ଡକ ହାତରେ ଧରି ସଲାମ୍ କରି ପ୍ରସ୍ଥାନ)

[Foot-not-କେରାନୀବାବୁ ଅମ ଦେଶୀ କେରାନୀ ବାବୁଙ୍କ ଭଳି ପାଦରେ ଅବଶ୍ୟ ଯୋତା ନାହିଁ ।]

ପତ୍ର ଖଣ୍ଡିକ ଇଂରାଜୀରେ ଲେଖା ଏହି:—

Urgent

My dear Jam, Mrs Mahadev has suffered much from the unfeeling mob below. They must be dealt with under council's order no. 1111 Dt. 1-1- ଝି Depute Plague, Small pox, Cholera and Malaria with armed force to disperse the mob.

Sd. M,

P. S. I have sent an order to H. H. Indra to send his thunderbolt.

ଅନୁବାଦ—ପ୍ରିୟ ଯମ ଦେବ, ପ୍ରିୟା ପୁତ୍ରୀକର ତଳର ନିର୍ଦ୍ଦୟଙ୍କଠାରୁ ବହୁତ ଯନ୍ତ୍ରଣା ଭୋଗ କରୁଅଛନ୍ତି—ସଭାର ପ୍ରସ୍ତାବ ପ୍ରାରମ୍ଭର ୧ମ ଆଦେଶ ଅନୁସାରେ ସେମାନେ ଦଣ୍ଡ୍ୟ । ଅତଏବ

ସେମାନଙ୍କୁ ଦଣ୍ଡ ଦେବା ନିମନ୍ତେ ମହାମାରୀ, ବସନ୍ତ, ବାତ୍ୟାଦିଙ୍କୁ ପଠାଅ । ସେମାନେ ସସୈନ୍ୟରେ ଇତରଲୋକଙ୍କ ମେଳ ଭାଙ୍ଗି ଦିଅନ୍ତୁ ।

(ସ୍ୱଗତ—ମହାଦେବ)

ତଥାସ୍ତୁ—ଇନ୍ଦ୍ରରାଜଙ୍କ ନିକଟକୁ ହୁକୁମନାମା ଯାଉଅଛି ଯେ ସେ ଭେକଙ୍କୁ ପଠାଇ ଦେବେ ।

[Foot-note—ଦଣ୍ଡବିଧି ବ୍ୟବସ୍ଥା ମଧ୍ୟ ସ୍ୱର୍ଗରେ ଚଳେ । ଦେବତାମାନେ ଏଣିକି ଖୁବ୍ liberal (ପରିବର୍ତ୍ତନଶୀଳ) ହେଲେଣି । ]

(ଭୃକୁଟୀର ପ୍ରବେଶ ଓ ମହାଦେବଙ୍କ ହସ୍ତରେ ଗୋଟିଏ visiting card (ଦର୍ଶନକାର୍ଡ) ପ୍ରଦାନ)

ଭୃକୁଟୀ—ବଡ଼ା ସାହେବ୍ ସଲାମ୍ ଦିୟେହେଁ ।

ମହାଦେବ—କାଲ୍ ଫଜର୍ ଆନେକୁ ବୋଲୋ । ମେଜାଜ୍ ଠଣ୍ଡା ନେହିଁ । ମେମ୍ ସାହେବକା ତବିୟତ ଭି ଅଚ୍ଛା ନେହିଁ । ବଡ଼ା ସାହେବକୁ ଏ ଖବରକାଗଜ ଦୋ, ହାମ୍‌ରା ତର୍ଫସେ ବହୁତ ସଲାମ୍ ବୋଲୋ । (ଏହା କହି ଭୃକୁଟୀ ହସ୍ତରେ 'ସ୍ୱର୍ଗଭେରୀ,' ଖବରକାଗଜ ପ୍ରଦାନ)

Foot-note—ସ୍ୱର୍ଗରେ 'ସ୍ୱର୍ଗଭେରୀ' ନାମକ ସମ୍ବାଦପତ୍ର ଚଳେ । ସ୍ୱର୍ଗରେ ଗୋଟିଏ ଛାପାଖାନା ନାହିଁ, ଶୀଘ୍ର ହେବା ସମ୍ଭବ । କିନ୍ତୁ Remington's Type-writer ନାମକ ଯନ୍ତ୍ରରେ ବର୍ତ୍ତମାନ 'ସ୍ୱର୍ଗଭେରୀ' ନାମକ ଖବରକାଗଜ ଲେଖା ହୋଇ ବାହାରେ । ସେ ସମ୍ବାଦପତ୍ର କଥା ଦ୍ୱିତୀୟ ଅଙ୍କରେ ଶୁଣିବେ ।)

ଭୃକୁଟୀର ଓ ନନ୍ଦୀର ପ୍ରସ୍ଥାନ ।

ପଟକ୍ଷେପଣ ।

(ଭିତରୁ concert (ବାଦ୍ୟ) ଓ ଅସ୍ଫୁଟ ଅବ୍ୟକ୍ତ ମଧୁର ହ୍ରେଷାରବ ।)

—○—

ମାଷ୍ଟର ମହାଶୟ Novodrama ଟିର ପ୍ରଥମ ଦୃଶ୍ୟ ଶେଷ କଲେ । ସେ କହିଲେ ଯେ ଏଥିରେ ପଣ୍ଡିତମହାଶୟ ଓ ରାମହରି ମିଶ୍ର ବି. ଏ. ତାଙ୍କୁ ବିଶେଷ ସାହାଯ୍ୟ କରିଅଛନ୍ତି ।

ମୁଁ କହିଲି—ମାଷ୍ଟରମହାଶୟ, ବେଶ୍ ! ଇଂରେଜୀ pome (ପଦ୍ୟ) ଆପଣ ରଚନା କରି ସମସ୍ତ କଷ୍ଟ କରୁଥିଲେ । ଆପଣ ତ ମନ କରି ନାହାନ୍ତି—

ମାଷ୍ଟର—ରାମହରି ମିଶ୍ର ମହୋଦୟଙ୍କ 'ଅପ୍ରିୟ ସତ୍ୟ' ଉପଦେଶ ଓ ସଂଶୋଧନ ନ ପାଇଥିଲେ ମୋର poem (ପଦ୍ୟ) compoje (ରଚନା) କଦାପି leave (ଛାଡ଼) କରି ନ ଥାନ୍ତି ।

ମର୍ହିରଜ—ମାଷ୍ଟରମହାଶୟ! 'ଦେବଗଣଙ୍କର ମର୍ତ୍ତ୍ୟ ଆଗମନ' ଶୀର୍ଷକ ଖଣ୍ଡିଏ ବଙ୍ଗଭାଷାର ଲିଖିତ ପୁସ୍ତକର ଛଟା ସଙ୍ଗେ ଆପଣଙ୍କ ଲେଖା କେତେକ ଅଂଶରେ ତୁଳନୀୟ । ଆପଣ ଏହାକୁ ନାଟକୋପନ୍ୟାସ ଭାବରେ ନ ଲେଖି ଉପନ୍ୟାସ ଢଙ୍ଗରେ ଲେଖିଥିଲେ ବେଶ୍ ହୋଇଥାନ୍ତା । କିନ୍ତୁ ଯାହାହେଉ, ଆପଣ ବେଶ୍ କରିଅଛନ୍ତି । ସ୍ଥାନେ ସ୍ଥାନେ ବ୍ୟଙ୍ଗବିଦ୍ରୂପର ମାତ୍ରାଟା କିଛି ଅଳ୍ପ ହୋଇଥିଲେ ଅଧିକ ମଧୁର ହୋଇଥାନ୍ତା । ଯାହା ହେଉ, ଏ ଖଣ୍ଡିକ ଶେଷ କରି ଆମ୍ଭମାନଙ୍କୁ ଦେଖାଇବେ । ଅବଶ୍ୟ ଜଣକୁ ଦେନ ଜଣ ଦେଖିଲେ ଅନେକ ଭ୍ରମପ୍ରମାଦ ଦୂର ହୋଇ ପାରେ ।

ମନ୍ତ୍ରଗମ୍—ସ୍ୱର୍ଗରେ କିବା କାଣ୍ଡ ଲାଗିଲେଣି ? ଦୁର୍ଗାପୂଜାଟି ବନ୍ଦ ହେଲେ ଅନ୍ନ ଭୋଜନରେ ଧୂଳି ପଡ଼ିବ । ପୂଜାଟି ବନ୍ଦ ହେଲେ ଇସ୍କୁଲ କଚେରି ତ ଆଉ ବନ୍ଦ ହେବ ନାହିଁ । ମୋର ପିଠା ଭୋଜନ ବନ୍ଦ ହେବ, ଗରିବ ଦୁଃଖୀଙ୍କ କଷ୍ଟ ମେଣ୍ଟିବ । କଚେରି ବନ୍ଦ ହେଲେ, ଦୁଃଖୀ ଉକୀଲଙ୍କ ଦଶା ପଡ଼େ । ବାବୁମାନେ ଯେଉଁ ଖର୍ଚ୍ଚରେ ସେ ସହରରୁ ମଫସଲକୁ ଯାନ୍ତି । ଉକିଲମାନଙ୍କ କିଛି ବନ୍ଦ ହୁଏ । ବାଣ ମଫସଲରେ ଟଙ୍କା ମିଳୁଥାଏ । ଦୁଃଖୀ ଉକୀଲ ମରନ୍ତି । ତାହାର ପୁଣ୍ୟମାସ, ତାହାର ଉପବାସ । ଆଉ ଏକ କଥା । ଦଶହରାରେ ଦେବୀଙ୍କ ଆଗରେ ବାଣ୍ଡନାଚ ହୁଏ । ମତେ ଭାରି ଖୁସି ଲାଗେ । ଅଚ୍ଛା, ଦେବୀଙ୍କି ବାଣ୍ଡନାଚ

କମିତ ଲାଗେ, ସେ କଥା ତ ମାଷ୍ଟରେ କେହି ଲେଖିଲେ ନାହିଁ । ଆମ ବାବୁ ଏ ବରଷ ଯେଉଁ ବାଈ ପଞ୍ଚାଙ୍କୁ ଆଣିଥିଲେ, ସେ ବାଈ ଭାରି ସରସ । ଗାଁ ବାବୁ ସେ ବାଈଙ୍କୁ ଅଉଲୁ ନ ଚାହିଁଲେ ବୋଲି ସେ ବାଈଙ୍କ ଭିତରୁ ଜଣେ କହିଲା, 'ଶିଳ ଶିଳପଟା ଗଗନେ ଉଡୁଛି, ସିମିଳ ଭୁଜା କହୁଛି, ମଜା ରଖ ! ଗଣ୍ଡା ଗଣ୍ଡା ବାଛିଆ ବାବୁ ଆମ ଗୋଡ଼ତଳେ ଲୋଟା । ଗାଁ ବାବୁ ଗୋଟାଏ ବାବୁରେ ସୁମାର ?' ବାଈ ଏଠେଁ ଚାରି ଦିନ ରହିଲେ ଯେ ଏ ଗାଁରେ ବାବୁଙ୍କ ଘରେ ଦିନ ରାତ ଦେଖଣାହାରୀ । ବାଈଙ୍କ ଅଲଙ୍କାର ପତ୍ର, ବନାରସୀ ଶାଢ଼ୀ ଦେଖି ମୁଁ ବୁଝିଲେଁ ଯେ ଆମ ମାଇପଙ୍କ କପାଳରେ ଏ ରାଜଭୋଗ ନାହିଁ । ମଣିଷଙ୍କ ତପସ୍ୟା ରଜା ଜନ୍ମରେ ଶେଷ; ମାଇପଙ୍କ ତପସ୍ୟା 'ବାଈ' ଜନ୍ମରେ ଶେଷ ! ଯେଡ଼େ ଗୋଟାଏ କାରଖାନା ହେଲେ କଅଣ ହବ, ବାଈନାଚ ନ ହେଲେ ସବୁ ଅକାରଣ ! ଦେଲେ କଅଣ ହବ, ମୁଁ ଭୋଜନର ମାଲିକ । ପେଟପଟା ଭୋଜନ ମିଳୁଥିଲେ ବାବୁମାନଙ୍କ ଭଳ ମଜା ନାଟ ଫାଟ ଭଲ ଲାଗେ ନାହିଁ ।

ମନ୍ତ୍ରରାମ୍ ଆଜ ଟୁଙ୍ଗୀରେ ନୀରବ ହୋଇ ବସିଥିଲା । ଶେଷକୁ ତା ଧାଡ଼ି ଫିଟିଲା । ଆଉ ସମ୍ଭାଳେ କିଏ ?

ଫେର କହିଲା, 'ସ୍ୱର୍ଗରେ ଅପସରା ଏ ନାଚନ୍ତି । ତାଙ୍କୁ ତ ଆମ ବାଈଙ୍କ ପରି ଖେମଟା ନାଚ ଆସୁ ନ ଥିବ । ମଜା ଜଣାଯାଏ ବୁଢ଼ା ନାରଦ ଦେଖି ଦେବା ଭାଇ ଋଷି ହଉଥିବେ । ସେ ଦିନା ମହାଦେବଙ୍କ ଅଣ୍ଡିରାନାଚ ଦେଖିଛନ୍ତି, ବାଈନାଚ କାହୁଁ ଦେଖିବେ ? ଏ ବାଈନାଚ ଲୋଭ ଛାଡ଼ି ଦେବା ଯେବେଠ ଦଣ୍ଡଗଞ୍ଜି ପାଇଲେ ପୁଣ୍ୟ । ଦଶହଜାର ବର୍ଷ ଦିନ ସ୍ୱର୍ଗରେ ରହି ପାରିବେ, ମଜା ପସନ୍ଦ ଲାଗୁ ନାହିଁ । ଆମ ପାଠରେ ସବୁ ଅଛି । ଉପରେ ନାଚ, ତଳେ ନାଚ, ଭିତରେ ନାଚ ।

ଶେଷ କଥା ଅମ୍ଭେମାନେ ବୁଝି ପାରିଲୁଁ ନାହିଁ ଓ ମସ୍ତରାମ୍ ପ୍ରେମରେ ଟୁଙ୍ଗୀରୁ ଉଠି ଗଲା । ଏକେ ତ ମସ୍ତରାମ୍ ପାଗଳ । ତା ଉପରେ କାହୁଁ କାହୁଁ କଥାମାନ ଆଣେ । ଆଜ ଯାହା କହିଗଲା, ତହିଁରେ ଅମ୍ଭେମାନେ ବାଧା ଦେଲୁଁ ନାହିଁ । ବାଧା ଦେବାର ବିଶେଷ ଆବଶ୍ୟକ ବୋଲି ମନେ କଲୁଁ ନାହିଁ । ପାଠକ ମନେ କରନ୍ତି କି ?

ଶ୍ରୀ ଦୁର୍ମୁଖ ଶର୍ମା ।

---

## ଅପୂର୍ବମିଳନ ।

(ଐତିହାସିକ ଉପନ୍ୟାସ ।)

୫

### ଗଡ଼ ସମ୍ବନ୍ଧରେ ନାନାକଥା ।

ଶ୍ରୀ ଶ୍ରୀ ଶ୍ରୀ ମାନ୍ଧାତାଙ୍କର ସ୍ୱତନ୍ତ୍ର ରିଅସ ନ ଥିଲା, ଘପୁବଣିଆ ଦୁର୍ଗରେ ନଅର । ଉତ୍କଳ ଦେଶର ସମସ୍ତ ଖଣ୍ଡାଧିପତିଙ୍କ ନଅର ଏହିପରି । ଘପୁବଣିଆ ଦୁର୍ଗ ପ୍ରାଚୀନ । ବିଶାଳତା ଏବଂ ଦୃଢ଼ତାରେ ଉତ୍କଳଦେଶର ସମସ୍ତ ଦୁର୍ଗର ଶୀର୍ଷସ୍ଥାନୀୟ । ଦୁର୍ଗ ମଧ୍ୟରେ ପାଞ୍ଚ ହଜାର ପାଇକ ରହି ବାହାର ଶତ୍ରୁ ସହିତ ଯୁଦ୍ଧ କରି ପାରିବେ । ଚତୁର୍ଦ୍ଦିଗରେ ମାଙ୍କଡ଼ାପଥର ଗନ୍ଥା ପ୍ରଶସ୍ତ ଉଚ୍ଚ ପ୍ରାଚୀର, ପ୍ରାଚୀର ଦେହରେ ରଣ୍ଡିକଟା, ସେହି ରଣ୍ଡି ବାଟେ ଭିତର ପାଇକମାନେ ବହୁତ ଶତ୍ରୁ ପ୍ରତି ଅସ୍ତ୍ର ପ୍ରୟୋଗ କରି ପାରନ୍ତି । ବାହାରରୁ କ୍ଷିପ୍ତ ଅସ୍ତ୍ର ସେମାନଙ୍କ ଦେହରେ ଲାଗିବ ନାହିଁ । ଗଡ଼ ବହିର୍ଭାଗ ଚତୁର୍ଦ୍ଦିଗରେ ଭ୍ରମଣ କରିବାପାଇଁ ପ୍ରାଚୀର ମୂଳରେ ପ୍ରଶସ୍ତ ପରିଷ୍କାର ମାର୍ଗ, ମାର୍ଗ ଉତ୍ତରେ ଅନତ୍ୟୁଚ୍ଚ ଅଡ଼ଅ ବା ବାନ୍ଧି, ବାନ୍ଧି ଉପର ଛଳ ବାଉଁଶ ମୂଳୀ, ବାନ୍ଧି ମୂଳରେ

ଗଡ଼ଖାଇ । ଏହି ଗଡ଼ଖାଇ ସର୍ବଦା ଜଳରେ ପୂର୍ଣ୍ଣ ଥାଏ । ଦୁର୍ଗକୁ ପ୍ରବେଶ କରିବା ନିମନ୍ତେ ସିଂହଦ୍ୱାର ସମ୍ମୁଖ କିଛି ଦୂରରେ ପରିଖା ଉପରେ ଗୋଟିଏ କାଷ୍ଠର ସେତୁ ନିର୍ମିତ । ସେହି ସେତୁଟି ଏପରି କୌଶଳରେ ନିର୍ମିତ ଯେ ସହଜରେ ଅପସାରିତ ଏବଂ ପୁନର୍ବାର ସଂଯୋଜିତ ହୋଇ ପାରେ । ପ୍ରାଚୀର ଚାରି କୋଣରେ ଚାରି ଗୋଟି ଗୋଲାକାର ବୁରୁଜ । ବୁରୁଜ ମଧ୍ୟରେ ବାହାର ଦିଗକୁ ମୁହଁ କରି ଦୁଇ ଗୋଟା ଲେଖାଏଁ ତୋପ ସ୍ଥାପିତ ଅଛି । ବୁରୁଜ ମଧ୍ୟରେ କୋଡ଼ିଏ କୋଡ଼ିଏ ଜଣ ଗୋଲନ୍ଦାଜ ରହି ତୋପ ଚଳାଇ ପାରନ୍ତି । ସିଂହଦ୍ୱାର ଦୁଇ ପାଖରେ ବିଶାଳବପୁ ବିକଟାକାର ଶିଳ୍ପ-କୌଶଳର ନିଦର୍ଶନସ୍ୱରୂପ ଦୁଇ ଗୋଟା ପାଷାଣ-ସିଂହ, ସେହି ସିଂହକୁ ଲାଗି ଦୁଇ ପାଖରେ ବିଶାଳକାୟ ଘଡ଼ିଆଳପତ୍ର ଦୁଇ ଗୋଟା ପ୍ରକାଣ୍ଡ ତୋପ ବାହାରକୁ ମୁହଁ କରି ପଡ଼ି ଅଛି । ଚତୁର୍ଦିଗ ପ୍ରାଚୀରରୁ କିଛି ଦୂର ଭିତରକୁ ଛାଡ଼ିଅଛି କାନ୍ଥ । ଏହି କାନ୍ଥ ମଧ୍ୟ ଉଣା ଉଚ୍ଚ ନୁହେଁ । ଦୁର୍ଗ ପ୍ରାଚୀର ଦେହରେ ଅନେକ ସ୍ଥାନରେ ଘାଟି ଅଛି । ପାଳିଆ ପାଇକମାନେ ଦିବାରାତ୍ର ପହରା ଦେଇ ଥାଆନ୍ତି । ସେମାନଙ୍କ ଦୃଷ୍ଟି ଭିତରକୁ ପଡ଼େ ନାହିଁ । ସିଂହଦ୍ୱାରକୁ ଲାଗି ଭିତରକୁ ହିଅଛି ପ୍ରଥମ ପ୍ରସ୍ତ । ସିଂହଦ୍ୱାର ପ୍ରାଚୀରକୁ ଲାଗି ଦୁଇ ଗୋଟା ବଡ଼ ବଡ଼ ଘର । ଏହି ଦୁଇ ଘର ନାନାରୂପ ଅସ୍ତ୍ରରେ ପରିପୂର୍ଣ୍ଣ । ଏହାହିଁ ଦୁର୍ଗର ଅସ୍ତ୍ରାଗାର । ସେହି ଘର ଭିତରେ ଅଗଣା— ଅଗଣା ଚାରି ପାଖରେ ଘର । ଦକ୍ଷିଣ ପାଖ ବଡ଼ ମେଲା ଘରେ ମାନ୍ଧାତାଙ୍କର ବାହାର ବିଜେ ଦରବାର । ଦ୍ୱିତୀୟ ପ୍ରସ୍ତକୁ ଯିବା ଦ୍ୱାରରେ ପାଇକ ପହରା । ଦ୍ୱିତୀୟ ପ୍ରସ୍ତ ମଝି ଅଗଣା ଚତୁର୍ଦିଗରେ ଘର—ଅଧିକାଂଶ ସଜଘର । ଖମ୍ବ ପାନ୍ତିଆ ଓ ଅଣ ପାନ୍ତିଆମାନଙ୍କ କଚେରି ଘର ଏବଂ ପ୍ରଶସ୍ତ ଘରଟି ମାନ୍ଧାତାଙ୍କର ନିଭୋଲ ଦରବାର ଘର । ଏହିଠାରେ ଶାହାସୁଜା ସର୍ବଦା ବିଜେ ଥାଆନ୍ତି । ବିଶେଷ ବିଶେଷ ଦିନ ବିଶେଷ ବିଶେଷ ଘଟଣାରେ ଶାହାସୁଜା ବାହାର ଦରବାରକୁ ବିଜେ କରନ୍ତି । ତୃତୀୟ ପ୍ରସ୍ତ ରାଣୀହଂସପୁର । ଏହି ପ୍ରସ୍ତକୁ ଯିବାକୁ ଦୁଇ ଗୋଟା ଦ୍ୱାର । ପ୍ରଥମ ଦ୍ୱାରରେ ଖୁଡ଼ା ପଡ଼ିଆରି, ଦ୍ୱିତୀୟ ଦ୍ୱାରରେ ପୋଇଲି ପହରା । ରାଣୀହଂସପୁର ମଧ୍ୟରେ ଅନେକ ଘର । ସେଥି ମଧ୍ୟରୁ ଆଗ ଦକ୍ଷିଣିଆ ବଡ଼ ବଡ଼ ଦୁଇ ଗୋଟା ଘରେ ଶାହାସୁଜାଙ୍କ ପଦଭ୍ରୂ, ଠାକୁରଜେ, ଭିତରବିଜେ ସମସ୍ତ କାର୍ଯ୍ୟ ଚଳେ ।

ସପ୍ତୁବଣିଆ ଦୁର୍ଗ ସହିତ ଦୁର୍ଗାଧିପଙ୍କ ଗୌରବ ଉତ୍କଳଖଣ୍ଡରେ ଖ୍ୟାତ ଲାଭ କରିଥିଲା । ଉପଯୁକ୍ତ ଦୁର୍ଗରେ ଉପଯୁକ୍ତ ଲୋକ ଆଧିପତ୍ୟ ସ୍ଥାପନ କରିଥିଲେ । କେବଳ ଗୋଟିଏ ବିଷୟର ଅଭାବ ଥିଲା । ଜଗତ୍-ନିୟନ୍ତା ଜଗଦୀଶ୍ୱର ନିରବଚ୍ଛିନ୍ନ ସୁଖ କାହାର ଅଦୃଷ୍ଟରେ ଲେଖି ନାହାନ୍ତି । ଧନ, ଜନ, ସ୍ୱାସ୍ଥ୍ୟ, ଆଧିପତ୍ୟ, ଖ୍ୟାତି କୌଣସି ଗୋଟାଏ ପ୍ରକାର ଅଭାବରେ ହେଲେ ମାନବ ଦୁଃଖୀ । ଆମ୍ଭମାନଙ୍କ ମାନ୍ଧାତା ଅଦ୍ୱିତୀୟ ଭାଗ୍ୟବନ୍ତ ଲୋକ । ସୁଗଠିତ ବପୁ, ସୁସ୍ଥ ଶରୀର, ସର୍ବ ପ୍ରକାର ଅସ୍ତ୍ର ଚାଳନା ଏବଂ ହସ୍ତୀ ଅଶ୍ୱ ଆରୋହଣ ବିଷୟରେ କଳିବାକୁ ଲୋକ ନାହିଁ । ଅତୁଳ ସମ୍ପତ୍ତି, ନିରଙ୍କୁଶ ଆଧିପତ୍ୟ, ଅନନ୍ୟ ନିଷ୍କଳଙ୍କ ଚରିତ୍ର, ମାନବ-ବାଞ୍ଛିତ ସର୍ବ ପ୍ରକାର ଐଶ୍ୱର୍ଯ୍ୟ ପ୍ରତୁଳ । ଗୋଟିଏ ଦୁଃଖ—ବିଶେଷ ଦୁଃଖ—ବଂଶଧରର ଅଭାବ । ଏହି ଅତୁଳ ସମ୍ପତ୍ତି ଭୋଗ କରିବା ନିମନ୍ତେ ପଛକୁ କେହି ନାହିଁ । ମାନବ ସମସ୍ତ ଜୀବନରେ ବହୁ ଆୟାସୋପାର୍ଜିତ ସମସ୍ତ ସମ୍ପତ୍ତି ଯାହା ହସ୍ତରେ ସମର୍ପଣ କରି ପୃଥିବୀରୁ ବିଦାୟ ଗ୍ରହଣ କରି ଆପଣାକୁ ଧନ୍ୟ ମନେ କରେ, ନିତାନ୍ତ ମାନବ-ଦ୍ୱେଷୀ ପରଶ୍ରୀକାତର ଲୋକ ମଧ୍ୟ ଧନ ମାନ ବିଦ୍ୟା ବୁଦ୍ଧିରେ ଯାହାକୁ ଆପଣାଠାରୁ ଶ୍ରେଷ୍ଠତର ଦେଖିଲେ ଈର୍ଷ୍ୟାର ସ୍ଥଳ ଦୟାମୟ ପ୍ରଭୁଙ୍କ ପ୍ରଦତ୍ତ ପୁଞ୍ଜୀକୃତ କଲ୍ୟାଣ ବୋଲି ଜ୍ଞାନ କରେ, ଅଧିକନ୍ତୁ ଜଣ ଯାହାର ବଦନ ମାତ୍ର ଦର୍ଶନରେ

ମାନବ ସମସ୍ତ ଦୁଃଖ ବିସ୍ମୃତ ହୋଇଯାଏ, ଯାହାପାଇଁ ମାନବ ଆପଣା ପ୍ରିୟତମ ପ୍ରାଣ ମଧ୍ୟ ବିସର୍ଜନ କରିବାକୁ ପ୍ରସ୍ତୁତ, ସେହି ପୁତ୍ର ଯାହାର ନାହିଁ, ମାନବବାଞ୍ଛିତ ସର୍ବୈଶ୍ୱର୍ଯ୍ୟ ଲାଭ କରିଥିଲେ ମଧ୍ୟ ସେ ଦୁଃଖୀ । ଯେଉଁ ଘରେ ପୁତ୍ର ନାହିଁ, ସେ ଘର ଶୂନ୍ୟ । ଯେମନ୍ତ କି ଚନ୍ଦ୍ରହୀନ ଗଗନମଣ୍ଡଳ, ଯେମନ୍ତ କି ପୁଷ୍ପହୀନ ଉଦ୍ୟାନ, ଯେମନ୍ତ କି ଗନ୍ଧହୀନ ପୁଷ୍ପ, ଯେମନ୍ତ କି ଜେବହୀନ ଲବଣ୍ୟ । ବେଦବାକ୍ୟ "ଆତ୍ମାବୈ ପୁତ୍ର ନାମାସି;" ଏହା ଉପରେ ଅନ୍ୟ କଥା ନାହିଁ । ଅନେକ ନରପତି ଆତ୍ମକୃତ ଅପରାଧ ହେତୁ ନିର୍ବଂଶ ହୋଇ ପଡ଼ିବାର ଦେଖାଯାଏ । ମାତ୍ର ଆମ୍ଭମାନଙ୍କ ମାନ୍ଧାତାଙ୍କୁ ସେପରି କିଛି ଦୋଷ ସ୍ପର୍ଶ କରି ନ ଥିଲା । ରାଜନ୍ୟମଣ୍ଡଳୀରେ ଈଦୃଶ ଚରିତ୍ରବାନ, ଏପରି ଏକପତ୍ନୀବ୍ରତ ବ୍ୟକ୍ତି ନିତାନ୍ତ ବିରଳ । ତଥାପି ସେ ନିଃସନ୍ତାନ । ବିଧାତାଙ୍କ ବିଚିତ୍ର ବିଧାନର ମର୍ମ ଭେଦ କରିବା ମାନବର ସାଧ୍ୟାତୀତ । ଲୋକେ ତାହାଙ୍କୁ ଦୁର୍ଭାଗ୍ୟ ଜ୍ଞାନ କରନ୍ତି, ମାତ୍ର ସେ ଆପେ ଆପଣାର ଭାଗ୍ୟନିନ୍ଦକ ନ ଥିଲେ । ସେଥିର କାରଣ, ମହାଦେବୀଙ୍କର ସୁମଧୁର କାର୍ଯ୍ୟକଳାପ ।

ମହାଦେବୀ ମାନ୍ଧାତାଙ୍କର ଏକମାତ୍ର ସହଧର୍ମିଣୀ —ଫୁଲବେଇ ଫଳବେଇ ବୋଲି କେହି ନ ଥିଲେ । ଦୁର୍ଗେଶ୍ୱରୀଙ୍କ ଉପାଧି ମହାଦେବୀ ବା ମହାଦେଈ । ପ୍ରକୃତପକ୍ଷେ ଗୁଣ ଏବଂ କାର୍ଯ୍ୟରେ ସେ ମହାଦେବୀ ଥିଲେ—ଅନେକ ନାମ ପଦ୍ମଲୋଚନ ପରି ତାଙ୍କର ଗୁଣ ସହିତ ନାମର ଅସାମଞ୍ଜସ୍ୟ ନ ଥିଲା । ଗଡ଼ବଣିଆ ଉଆସ ମଧ୍ୟରେ ନାନା ପାଟନ ନାନାଶ୍ରେଣୀ, ନାନାଚରିତ୍ରବିଶିଷ୍ଟା— ନାନାବୟସ୍କା ସ୍ତ୍ରୀପରିଜନ ଅଛାଇ ପଣରୁ ଊଣା ନୁହେ । ମାତ୍ର ମାନ୍ଧାତାଙ୍କ ସହିତ ଏମାନଙ୍କ ସମ୍ପର୍କ ବିରଳ । ସମସ୍ତେ ମହାଦେବୀଙ୍କ ଖଟଣି ପରିଜନ । ମାନନୀୟା ପୂଜନୀୟା ମହାଦେବୀଙ୍କ ସେବକାମାନଙ୍କୁ କ ପୋଇଲି ବୋଲାଯିବ ? ସୁତରାଂ ସେମାନଙ୍କର ଉପାଧି ପରିଜନ । ଆମ୍ଭେମାନେ ମଧ୍ୟ ଏହି ନାମ ବୋଲିବାକୁ ବାଧ୍ୟ । ଆଉ ଗୋଟିଏ କଥା— ସତ୍ୟ କଥା—ନାମରେ ସେମାନେ ଛଟଣା ନିଯୋଗରେ ବିଭକ୍ତ ଥିଲେ, ମାତ୍ର ଏମାନଙ୍କ ସେବାରେ ମହାଦେବୀଙ୍କୁ ସମସ୍ତ ଅପ୍ରତୁଳ ହୁଏ । କିଏ ଖାଇଲା, କିଏ ଉପାସ ରହିଲା, କିଏ ରୁଗ୍ଣ ବସିଛି, କାହାର ଲୁଗା ନାହିଁ, କାହାର ଔଷଧ ଲୋଡ଼ା, କିଏ କାହାସହିତ କଳି କଲା, ଏହି ସମସ୍ତ କଥା ବୁଝୁଁ ବୁଝୁଁ ଦିନ ଯାଏ ।

ମହାଦେବୀ ନଖୋଟଣା ପଦୋଟଣା ସୁନ୍ଦରୀ ଥିଲେ—ଦେଖିଲେ ଦେବୀପ୍ରତିମା ବୋଲି ବିଶ୍ୱାସ ଜନ୍ମେ । ଯେଉଁ ସୌନ୍ଦର୍ଯ୍ୟ ଭକ୍ତି ଶ୍ରଦ୍ଧା ଆକର୍ଷଣ କରେ, ଯେଉଁ ସୌନ୍ଦର୍ଯ୍ୟ ଦେଖିଲେ ମାନବ ପ୍ରଣତ ହେବାକୁ ଇଚ୍ଛା କରେ, ମହାଦେବୀଙ୍କ ସୌନ୍ଦର୍ଯ୍ୟ ସେହିପରି । ତାଙ୍କର ଶାରୀରିକ ସୌନ୍ଦର୍ଯ୍ୟ ସହିତ କାର୍ଯ୍ୟ ଏବଂ ଚରିତ୍ରର ଅସାମଞ୍ଜସ୍ୟ ନ ଥିଲା । ଲୋକରେ ପ୍ରକାଶ, ତାଙ୍କପରି ଦାନଶୀଳା ଦୟାବତୀ ପରୋପକାରିଣୀ ସ୍ତ୍ରୀ ଜଗତରେ ଦୁର୍ଲଭ । ମହାଦେବୀ ସନ୍ତାନସନ୍ତତିବିହୀନା । ହିନ୍ଦୁକୁଳରେ ଚତ୍ୱାରିଂଶଦ୍-ବୟସ୍କା ରମଣୀ ବୃଦ୍ଧାଶ୍ରେଣୀରେ ଗଣନୀୟା । କୌଣସି କୌଣସି ଦୁରାକାଂକ୍ଷିଣୀ ବନ୍ଧ୍ୟା ଏପରି ପରିଣତ ବୟସରେ ମଧ୍ୟ ସନ୍ତାନ-କାମନାରେ ବାରବ୍ରତ ଅନୁଷ୍ଠାନ କରଥାନ୍ତି । ମାତ୍ର ଆମ୍ଭମାନଙ୍କ ମହାଦେବୀଙ୍କ ମନରେ ସେପରି ଭାବ ଉଦିତ ହେବାର କେହି କେବେ ଦେଖି ନାହିଁ । ପରିଜନପରିଚର୍ଯ୍ୟା ଏବଂ ସ୍ୱାମିସେବାକୁ ସେ ଜୀବନର ବ୍ରତ ବୋଲି ମଣୁଥିଲେ । ଓଷା ବ୍ରତ ଅନୁଷ୍ଠାନ ତ ହିନ୍ଦୁକୁଳରେ ନୈମିତ୍ତିକ କାର୍ଯ୍ୟ ମଧ୍ୟରେ ଗଣ୍ୟ । ସାବିତ୍ରୀ ନାମ ବ୍ରତ ଦିନ ସଖି ପ୍ରହରେକ ସମୟରେ ଶ୍ରୀ ଶ୍ରୀ ମାନ୍ଧାତାଙ୍କ ଗମ୍ଭୀରୀ ନିକଟେ ପୂର୍ବେ ଦୁଇ ଅଧ୍ୟାୟ ଶ୍ରୀମଦ୍ଭାଗବତ ଶୁଣାଏ, କେବଳ ଗୁରୁବାର ଦିନ ଗ୍ରହଣାଦିରେ ଭୋଗ ଦେଇ ଅଳତି କରି ଗଲପାଏ ।

ନିମ୍ନଶ୍ରେଣୀ ଦାସୀପଲ ସହିତ ଅନେକ ଏବଂ

ଭଳିଆ କେମନ୍ତ ଗୋଟାଏ ନିଖ୍ୟମାନ ଥିଲାପରି ଜଣାଯାଏ। ମାତ୍ର ମହାଦେବୀଙ୍କ ଶାସନ ଏବଂ ତୀକ୍ଷ୍ଣ ଦୃଷ୍ଟି ହେତୁରୁ ଏହି ସାଧାରଣ ନିୟମ ବ୍ୟର୍ଥ ହୋଇଥିଲା । କଦାଚିତ୍ ପରିଜନମାନଙ୍କ ମଧ୍ୟରେ କଳି କଜିଆ ହୋଇ ପଡେ । ମହା-ଦେବୀଙ୍କ କର୍ଣ୍ଣଗୋଚର ହେବା ମାତ୍ର କାହାକୁ କିଛି ନ କହି କଳସ୍ଥାନରେ ଛିଡ଼ା ହୋଇ ଗଲେ ସବୁ କଳି ମେଣ୍ଟି ଯାଏ । ମହାଦେବୀଙ୍କ ଶ୍ରୀମୁଖରୁ କର୍କଶ କଥା କେହି କେବେ ଶୁଣି ନାହିଁ । କ୍ରୋଧର କାରଣମାନ ବିଦ୍ୟମାନ ଥିଲେ ସୁଦ୍ଧା ତାଙ୍କର କ୍ରୋଧ ଜାତ ହୁଏ ନାହିଁ । ମାତ୍ର ସମସ୍ତେ ତାଙ୍କୁ ଭୟ କରନ୍ତି ଏବଂ ଭୟରେ ଆପଣା ଆପଣା କାର୍ଯ୍ୟରେ ତ୍ରୁଟି କରିବାକୁ ସାହସ କରନ୍ତି ନାହିଁ । ଶ୍ରୀମତୀ ମହାଦେବୀ ପ୍ରତିଦିନ ସକାଳେ ଚଉଆସର ସର୍ବସ୍ଥାନରେ ଭ୍ରମଣ କରି ଦେଖନ୍ତି, କାହାର ଦୁଆରେ ବା କୌଣସି ସ୍ଥାନରେ ଅଳିଆଟିଏ ପଡିଥିଲେ ଆପେ ଝାଡୁଣୀମୂଠାଟା ଧରି ଓଳେଇ ବସନ୍ତି । ତାଙ୍କର ଝାଡୁଣୀଧରା ସାର ହୁଏ, ଆଉ ଘର ଜଣ ପଡି ଝାଡୁଣୀ ଛଡ଼ାଇ ନେଇ ଓଳେଇ ଦିଅନ୍ତି । ତ୍ରୁଟିକାରିଣୀ ଆପଣାକୁ ଆପେ ଶାସ୍ତି ପାଏ କିମ୍ବା ଅନ୍ୟଦ୍ୱାରା ଲାଞ୍ଛିତ ହୁଏ । ପରିଜନମାନଙ୍କର ସ୍ୱତନ୍ତ୍ର ସ୍ୱତନ୍ତ୍ର ଗୃହ ଏବଂ ସ୍ୱତନ୍ତ୍ର ସ୍ୱତନ୍ତ୍ର ସେପେଇ । କେଉଁ ଘରେ ଚାରି ପାଞ୍ଚ ଜଣଙ୍କର ଏକା ସେପେଇ । ସମସ୍ତଙ୍କ ଘର ଲିପା ପୋଛା, ଦୁଆରେ ଝୋଟି । ଗୁରୁବାର ସଂକ୍ରାନ୍ତି ପୂର୍ଣ୍ଣିମାରେ ଲିପାପୋଛା ଏବଂ ଝୋଟି ଦେବା ବାଧ୍ୟ ।

ନିଷ୍କର୍ମା ଲୋକକୁ ସଇତାନ ଆପଣା କର୍ମରେ ଲଗାଏ, ମହାଦେବୀ ଏ କଥାଟା ଭଲରୂପେ ଜାଣିଥିଲେ । ଅପେ ଯେପରି କରନ୍ତି, ସମସ୍ତଙ୍କୁ ସେହିପରି କରିବାକୁ ଇଚ୍ଛା । ସମସ୍ତଙ୍କର ଖଟଣି ବନ୍ଧା ଥିଲା । ପତି ସକାଳେ ଚାଉଳ ବଦଳରେ ଧାନର ବନୋବସ୍ତ କରି ଦେଇଥିଲେ । ସମସ୍ତଙ୍କୁ ଆପଣା ଆପଣା ଧାନ କୁଟି ନେବାର ଆଜ୍ଞା ଥିଲା । ଓପର ଓଳି ବୁଢ଼ୀମାନେ ତୁଳସୀ ଗଣ୍ଡିଟି ଧରି ପୁରାଣ ଶୁଣି ବସନ୍ତି । ପ୍ରତି ମଙ୍ଗଳ ଅଗଣାରେ ପୁରାଣ ପାଠ ହୁଏ । ପୁରାଣ-ପଣ୍ଡିଆଣୀ ନାମୀ ନିଯୁକ୍ତ ଥିଲେ । ଫୁଲ ତୋଳିବା ମାଳ ଗୁନ୍ଥିବା ଫୁଲ ଗଛରେ ପାଣି ଦେବା ଯୁବତୀ ସ୍ତ୍ରୀଲୋକ-ମାନଙ୍କର ସାପ୍ତାହିକ କାର୍ଯ୍ୟ ନିରୂପିତ ଥିଲା । ଦୁଇ ଘଣ୍ଟେ ଟୋକୀ ମାଳ ଗୁନ୍ଥି ବସିଲେ ଗୀତ ଗାଇବା ଗୀତ ଶିଖିବା ଆଉ ଗୋଟିଏ ଅଧିକା କାର୍ଯ୍ୟ ଆସି ପଡ଼େ । ପରିଜନମାନଙ୍କୁ ସୁନିୟମରେ ରଖିବା ନିମନ୍ତେ ମହାଦେବୀଙ୍କର ଶକ୍ତ ଶାସନ ନ ଥିଲା । ତାଙ୍କର ଦୟା ତାଙ୍କର ମାୟା ତାଙ୍କର ସମବେଦନା ସମସ୍ତଙ୍କୁ ଶୃଙ୍ଖଳାବଦ୍ଧ କରି ରଖିଥିଲା । ପରିଜନମାନେ ତାଙ୍କୁ ମାତାରୂପେ ଦେବୀ-ରୂପେ ଭକ୍ତି କରୁଥିଲେ । ତାଙ୍କ ଆଜ୍ଞା ଲଙ୍ଘନ ବା ତାଙ୍କର ଅପ୍ରିୟ କାର୍ଯ୍ୟ କରିବାକୁ କେହି ସାହସ କରୁ ନ ଥିଲେ । ରାଣୀହଂସପୁର ଅଗଣା ମଧ୍ୟରେ ବେଣ୍ଟପୋଖରୀ ଚାରି ପାଖ ମାଙ୍କଡ଼ା ପଥର ବନ୍ଧା, ଚାରିପାଖରେ ପଥରବନ୍ଧା ଘାଟ, ପ୍ରତି ଘାଟ ଦୁଇ ପାଖରେ ଦୁଇ ଗୋଟା କରି ପଥରବନ୍ଧା ତୁଳସୀ ଚଉରା, ଘାଟ ଦୁଇ ପାଖରେ ନାଗେଶ୍ୱର ଗଛ । ପୋଖରୀ ଆଉ ତିନି ପାଖରେ ମଲ୍ଲି, ଜାଇ, ଯୂଇ, ବାଉଳ, କୁରୁଅଳା, ଗଙ୍ଗଶିଉଳି, କନିଅର, ଅଶୋକ, ସେବତୀ, ନଆଳୀ, କୁନ୍ଦ, କାମେଦ ପ୍ରଭୃତି ନାନାପ୍ରକାର ପୁଷ୍ପବୃକ୍ଷ ସୁଶୃଙ୍ଖଳାର ଲଗା ହୋଇଅଛି । ଏହା ଛଡ଼ା ଆଉ ଗୋଟିଏ ତୁଳସୀ ଏବଂ ଫୁଲର କ୍ଷୁଦ୍ର ତୋଟା ଥିଲା । ଦେବ-ପୂଜା ନିମନ୍ତେ ନାରୀମାନେ ସେହି ସ୍ଥାନରୁ ଫୁଲ ତୋଳି ନିଅନ୍ତି । ବୃକ୍ଷଗୁଡିକ ପ୍ରତି ମହାଦେବୀଙ୍କର ବିଶେଷ ଯତ୍ନ । କେହି ପାଣି ପାଇଲା ନ ପାଇଲା, ପ୍ରତିଦିନ ତଦାରଖ କରନ୍ତି, ଗଛ ମୂଳରେ ଅଳିଆ-ଟିଏ ବା ଘାସଟିଏ ରହେ ନାହିଁ । ଗଛଗୁଡିକ ପରିଜନମାନଙ୍କ ମଧ୍ୟରେ ବଣ୍ଟା ଥିଲା । ମହାଦେବୀଙ୍କ ସନ୍ତୋଷ ସାଧନ ନିମନ୍ତେ ସମସ୍ତେ ଆପଣା ଆପଣା ଗଛକୁ ଯତ୍ନରେ ରଖୁଥିଲେ । ବେଣ୍ଟ ପୋଖରୀ ଚାରି ପାଖରେ ଚାରି ଗୋଟି ଦେଉଳ ।

ଦକ୍ଷିଣ ପାଖରେ ଗଡ଼ଚଣ୍ଡୀ; ପୂର୍ବ ପାଖରେ ଗଡ଼େଶ୍ୱର ମହାଦେବ ଉତ୍ତର ପାଖରେ ଦୁର୍ଗା; ଲକ୍ଷ୍ମୀ, ଗଣେଶ, ବ୍ରହ୍ମା, କାର୍ତ୍ତିକ; ପଶ୍ଚିମ ଦିଗରେ ରାଧା କୃଷ୍ଣ ଯୁଗଳ, ଶାଳଗ୍ରାମଶିଳା, ପ୍ରଖ୍ୟାତ-ଅଖ୍ୟାତନାମା ଅନେକ ଦେବବିଗ୍ରହ ବିରାଜିତ । ଦକ୍ଷିଣ ଘାଟରେ ମହାଦେବୀଙ୍କର ମାଜଣା ବଡ଼େ । ଗଡ଼ଚଣ୍ଡୀ ମନ୍ଦିରରେ ବସି ଦେବାର୍ଚ୍ଚନ ସାରନ୍ତି । ଅନ୍ୟ ମନ୍ଦିରରେ ଦେବଦର୍ଶନ ଚରଣୋଦକ-ସେବା ଏବଂ ଘଣ୍ଟା-ଲାଗି ହୋଇ ଆପଣା ସ୍ଥାନକୁ ବିଜେ କରନ୍ତି ।

ନିଜ ମହାଦେବୀଙ୍କର କେତେଗୁଡ଼ିଏ ପକ୍ଷୀ ପୋଷା ଥିଲେ । ପରିଜନ ବିଶେଷରେ ବୃଦ୍ଧାମାନେ ରାଧା-କୃଷ୍ଣ ପଢ଼ାଇବା ସକାଶେ ଶାରୀ ଶୁଆ ବଣି ଅନେକଗୁଡ଼ିଏ ପକ୍ଷୀ ପୋଷିଥିଲେ । ପୋଷା ପକ୍ଷିମାନଙ୍କର ବିବିଧ ପ୍ରକାର ରୋଳ, ସେମାନଙ୍କୁ ରାଧାକୃଷ୍ଣ ପଢ଼ାଇବା ପରିଜନମାନଙ୍କର ପରସ୍ପର ଆଳାପ, ସଙ୍ଗୀତ, ପ୍ରୟୋଜନୀୟ ଅପ୍ରୟୋଜନୀୟ ସାଧାରଣ କଥା ସମସ୍ତ ମିଶି ନିବାସ ମଧ୍ୟରୁ ସର୍ବଦା ତରଙ୍ଗିଣୀ-ବୀଚୀ-ବିକ୍ଷେପଜାତ କଳକଳନାଦବତ୍ ଗୋଟିଏ ବିମିଶ୍ର ନାଦ ବାହାର ସ୍ଥିର ବାୟୁରାଶିକୁ ଆନ୍ଦୋଳିତ କରୁଥାଏ । ନିବାସ ମଧ୍ୟରେ ଅନ୍ୟ ପୁରୁଷ ଲୋକର ସମ୍ପର୍କ ନ ଥିଲା । ହସ୍ତିଭମ-ବସ୍ତୁ ପଡ଼ିଆଣୀମାନେ ଭିତର ବାହାର କାର୍ଯ୍ୟ ସମ୍ପାଦନ କରୁଥିଲେ । ମାନାଭାଙ୍କ ଭିତର ନାଟ ଠାପନା ଶୋଇପଡ଼ା ପ୍ରଭୃତି ସମସ୍ତ କାର୍ଯ୍ୟ ମହାଦେବୀ ସ୍ୱହସ୍ତରେ ସମ୍ପାଦନ କରନ୍ତି । ଅନ୍ୟ ଲୋକର ସେଥିରେ ହସ୍ତକ୍ଷେପ କରିବାର ଅଧିକାର ନ ଥିଲା । ମାନାଭାଙ୍କ ଠା ସମାପ୍ତି ପର୍ଯ୍ୟନ୍ତ ମହାଦେବୀଙ୍କର ଜଳ ସ୍ପର୍ଶ ପର୍ଯ୍ୟନ୍ତ ହୋଇ ନ ଥାଏ । ସ୍ୱାମିଙ୍କ ଭୋଜନ ଉତ୍ତାରେ ସେହି ଠାପନାର ପରିତ୍ୟକ୍ତ ପ୍ରସାଦ ମାତ୍ର ସେବା କରନ୍ତି । ଅଧିକ ମଧ୍ୟ ଦେଖାଯାଏ, ଯେଉଁ ବ୍ୟଞ୍ଜନ ବା ଯେଉଁ ଖାଦ୍ୟରେ ମାନାଭାଙ୍କର ହସ୍ତସ୍ପର୍ଶ ହୋଇ ନ ଥାଏ, ତାହା ପ୍ରାପ୍ତ ଠା-ଗୋଟାଳୀର ଅଧିକାରଭୁକ୍ତ ହୁଏ । ମହାଦେବୀ କୌଣସି ପ୍ରକାରେ ସ୍ୱାମି-ଆଜ୍ଞା ଲଙ୍ଘନ କରୁ ନ ଥିଲେ, କେବଳ ଗୋଟିଏ ବିଷୟରେ ନିତାନ୍ତ ଅବାଧ୍ୟ ଥିଲେ । ମାନାଭାଙ୍କ ବିଶେଷ ନିଷେଧ ସତ୍ତ୍ୱେ ସେ ନୂଆ ନୋ ଦଣ୍ଡ ସ୍ୱାମିପାଦସେବା ନ କରି ପଲ୍ଲଙ୍କକୁ ବିଜେ ହେଉ ନ ଥିଲେ । ମହାଦେବୀଙ୍କର ଦେବତା ବ୍ରାହ୍ମଣଠାରେ ଅଚଳା ଭକ୍ତି ଥିଲା । ଏପରି ସାର୍ବଜନୀନ ପ୍ରେମ ସ୍ନେହ ମଧ୍ୟ ସାଧାରଣ ଲୋକଠାରେ ଲକ୍ଷିତ ହୁଏ ନାହିଁ । ମାତ୍ର ତାଙ୍କର ଅନ୍ତରର ସମସ୍ତ ଭକ୍ତି ସମସ୍ତ ପ୍ରେମ ସମସ୍ତ ସ୍ନେହ ସ୍ୱାମିପ୍ରତି ପ୍ରୟୋଗ କରୁଥିଲେ । ପତି ତାଙ୍କର ଧ୍ୟାନ, ପତି ଜ୍ଞାନ, ପତି ଇଷ୍ଟଦେବତା, ପତି ଜପମନ୍ତ୍ର—ପତିଙ୍କୁ ସର୍ବସ୍ୱ କରି ମଣୁଥିଲେ । ତାଙ୍କର ଦେବସେବା ପତି-ହିତ-କାମନାରେ, ଗାର୍ହସ୍ଥ୍ୟ କାର୍ଯ୍ୟ ସ୍ୱାମିଙ୍କ ସନ୍ତୋଷ ସାଧନ ନିମନ୍ତେ, ପରିଜନମାନଙ୍କୁ ସୁଖ ସ୍ୱଚ୍ଛନ୍ଦରେ ରଖୁଥିଲେ, କାରଣ ସେମାନେ ସ୍ୱାମିଙ୍କ ଦାସୀ, ରାଣୀହଂସପୁର ପରିଷ୍କୃତ ପରିଚ୍ଛନ୍ନ ରଖୁଥିଲେ, ସ୍ୱାମୀ ବିଜେ ହେବା ନିମନ୍ତେ । ସଂକ୍ଷେପରେ ଏତିକି ବୋଲାଯାଇ ପାରେ, ମହାଦେବୀ ଆପଣାର ସ୍ୱାତନ୍ତ୍ର୍ୟ ହୃଦୟଙ୍ଗମ କରୁ ନ ଥିଲେ । ତାଙ୍କର ଧ୍ରୁବ ସିଦ୍ଧାନ୍ତ ଥିଲା ଯେ ମନ ପ୍ରାଣ ଶରୀର କାର୍ଯ୍ୟ ସୁଖ ସ୍ୱାଚ୍ଛନ୍ଦ୍ୟ ଧନ ସମ୍ପତ୍ତି ସମସ୍ତ ଦ୍ରବ୍ୟରେ ସ୍ୱାମୀ ଅଧିକାରୀ । ନିର୍ମଳ ନିଷ୍କଳଙ୍କ ସରଳ ଭାବରେ ସ୍ୱାମିଙ୍କୁ ଅର୍ପଣ କରିବା ତାଙ୍କର ଏକ ମାତ୍ର କାର୍ଯ୍ୟ । ପକ୍ଷାନ୍ତରେ ମାନାଭା ମଧ୍ୟ ସେହିପରି ଗ୍ରାହକ ଥିଲେ । ରାଜନ୍ୟମଣ୍ଡଳୀରେ ଏପରି ଦାମ୍ପତ୍ୟ ପ୍ରେମ ବିରଳ ଦୃଷ୍ଟିଗୋଚର ହୁଏ । ଶାନ୍ତି ଏବଂ ସୁଖ ସାଧନ ନିମନ୍ତେ ପରସ୍ପର ସଯତ୍ନ ଥିବାରୁ ଉଭୟେ ଅପୂର୍ବ ସ୍ୱର୍ଗୀୟ ସୁଖ ଅନୁଭବ କରୁଥିଲେ । ଏତିକି କହିଲେ ପର୍ଯ୍ୟାପ୍ତ ହେବ ଯେ ଏହି ରାଜଦମ୍ପତି ଭିନ୍ନଶରୀର ଏକ-ପ୍ରାଣ ଏକମନ ଥିଲେ । ଏପରି ଶାନ୍ତି ଏପରି ଦେବବାଞ୍ଛିତ ସୁଖ ଏପରି ପବିତ୍ର ଭାବ ଆଧିପତ୍ୟୋନ୍ମତ୍ତ-କାମନାବଳୀ—ସର୍ବ ପ୍ରକାର ଇନ୍ଦ୍ରିୟସେବ୍ୟ

ବିଳାସ-ସାମଗ୍ରୀର ପୂର୍ଣ୍ଣପୁଞ୍ଜ ସର୍ବ ପ୍ରକାର କାମ୍ୟ-ବସ୍ତୁରେ ପରିପୂର୍ଣ୍ଣ ଭଣ୍ଡାର ରାଜ-ଅନ୍ତଃପୁରରେ ସରସ୍ୱତୀର ଦୃଷ୍ଟିଗୋଚର ହୁଏ ନାହିଁ ।

ପୁଣ୍ୟବତୀ ଗୁଣବତୀ ଶାନ୍ତମତୀ ମହାଦେବୀଙ୍କ ଠାରୁ ମାନ୍ଧାତାଙ୍କର ଅନ୍ତଃପୁର ସ୍ୱର୍ଗଧାମ ଥିଲା । ଏହି କାରଣରୁ ଏହି ଦମ୍ପତି ଅପତ୍ୟାଭାବ-ଜନିତ କ୍ଳେଶ ଅନୁଭବ କରିବାକୁ ଅବସର ପାଉ ନ ଥିଲେ ।

---

୭

## ପରିବର୍ତ୍ତନ ।

ଲୋକେ ବୋଲନ୍ତି, ଦିନ ଯାଉଅଛି, ଦିନ ରହୁ ନାହିଁ । ମାତ୍ର ଦିନ କିପରି କାହିଁ ଗଲା ? ଦିନ ଉତ୍ତାରେ ଦିନ, ମାସ ଉତ୍ତାରେ ମାସ, ଋତୁ ଉତ୍ତାରେ ଋତୁ, ବର୍ଷ ଉତ୍ତାରେ ବର୍ଷ, ପରିବର୍ତ୍ତନ ମାତ୍ର । ଯେପରି ସୂର୍ଯ୍ୟ ଆଜି ଅସ୍ତ ଗଲା, କାଲି ପୁନର୍ବାର ଉଦିତ ହେବ; ଏହି ପରିବର୍ତ୍ତନରେ ଦିବା ରାତ୍ରି । ଦିନ ଯାଉ ନାହିଁ-ଦିବା ରାତ୍ରି ପରିବର୍ତ୍ତନ ମାତ୍ର । ସୃଷ୍ଟିର ଆଦିମ କାଳରେ ଯେଉଁ ଦିବା ଯେଉଁ ରାତ୍ରି ଥିଲା, ସେହି ଦିବା, ସେହି ରାତ୍ରି ଆଜି ଅଛି, ଅନନ୍ତ କାଳ ଥିବ । କୁଲାଳର ଚକ୍ର କାହିଁ ଯାଏ ନାହିଁ, ସ୍ୱସ୍ଥାନରେ ରହି ପରିବର୍ତ୍ତନଦ୍ୱାରା ଅସଂଖ୍ୟ ଅସଂଖ୍ୟ ଭାଣ୍ଡ ପ୍ରସ୍ତୁତ କରାଏ । ଦିନ ଯାଉ ନାହିଁ, ଯାଉଅଛୁଁ ଆମ୍ଭେମାନେ, ଯାଉଅଛ ତୁମ୍ଭେମାନେ, ଯାଉଅଛନ୍ତି ଜଗତର ପ୍ରାଣିପ୍ରବାହ । ଆମ୍ଭମାନଙ୍କର ବାଲ୍ୟ କୈଶୋର ଯୌବନ ବାର୍ଦ୍ଧକ୍ୟ ସୁଖ ଦୁଃଖ ଧନ ସମ୍ପତ୍ତି ବ୍ୟାଧି ପ୍ରଭୃତି ଅଧିକ କି ପ୍ରାଣ ପର୍ଯ୍ୟନ୍ତ କ୍ରମଶଃ ପ୍ରଳୟ-ପୟୋଧି ଆଡକୁ ଅବିଶ୍ରାନ୍ତ ଧାବିତ ହେଉଅଛି । ଦିବା ଏବଂ ରାତ୍ରି ଦୁଇ ଗୋଟି ଚକ, ଏହି ଦୁଇ ଚକ ମଧ୍ୟରେ ପଡି ଶସ୍ୟରୂପ ପ୍ରାଣିମାନେ ପିଷ୍ଟ ହୋଇ ଯାଉଅଛନ୍ତି । ପ୍ରତି ମୁହୂର୍ତ୍ତରେ ଅବସ୍ଥାନ୍ତର ଘଟିବା ଅନନ୍ତ ମହାପୁରୁଷଙ୍କର ଅନନ୍ତ ବ୍ରହ୍ମାଣ୍ଡରେ ସନାତନ ବିଧି । ହେ ଧନଗର୍ବିତ କ୍ଷମତାଶାଳୀ ଆତ୍ମପ୍ରତ୍ୟୟାନ୍ୱିତ ପୁରୁଷ ! ଜଗତର ଏହି ଦୁର୍ନିବାର୍ଯ୍ୟ ପ୍ରତ୍ୟକ୍ଷ ନିୟମ ବିସ୍ମୃତ ହୋଇ ଯାଅ ନାହିଁ । ହେ ବିପଦ୍‌ଗ୍ରସ୍ତ ହତାଶ୍ୱାସ ମନୁଷ୍ୟ ! ନିଶ୍ଚୟ ଜାଣ ଅବସ୍ଥାର ପରିବର୍ତ୍ତନ ଘଟେ । ହେ ରୋଗବ୍ୟାକୁଳ ଯନ୍ତ୍ରଣା-ପ୍ରପୀଡିତ ସଂସାରବିରାଗୀ ମାନବ ! ମନେ କର ପୀଡାର ପରିମାଣ ଅଛି । ଆଉ ଗୋଟିଏ କଥା, ଅର୍ଥନାଶ ବନ୍ଧୁବିଚ୍ଛେଦ ସ୍ୱାସ୍ଥ୍ୟହାନି ଶତସହସ୍ରବିଧ ବିପତ୍ତି ଅପ୍ରତ୍ୟାଶିତରୂପେ ଅଲକ୍ଷ୍ୟ ସୂତ୍ର ଅବଲମ୍ବନ ପୂର୍ବକ ଆମ୍ଭମାନଙ୍କ ଉପରେ ନିପତିତ ହେଉଅଛି । ଆକାଶରୁ ଜଳବିନ୍ଦୁ ପତିତ ହୋଇ ସ୍ରୋତରୂପେ ଅନନ୍ତ ସିନ୍ଧୁଗର୍ଭକୁ ଭାସି ଗଲାପରି ସମସ୍ତ ଚାଲି ଯାଉଅଛି । ମାତ୍ର ଯାହା ଗଲା ତାହା ଗଲା, ପୁନର୍ବାର ପ୍ରତ୍ୟାବର୍ତ୍ତନ କରିବ ନାହିଁ । ଆମ୍ଭମାନଙ୍କ ଜୀବନରେ ପ୍ରତିନିୟତ ଯେଉଁ ସମସ୍ତ ଦାରୁଣ ଯନ୍ତ୍ରଣାଦାୟକ ଘଟଣାମାନ ସଂଘଟିତ ହେଉଅଛି, ସେ ସମସ୍ତ ଯେବେ ହୃଦୟରେ ଗ୍ରଥିତ କରି ରଖୁଁ, ତେବେ ଜୀବନ ନିତାନ୍ତ କଷ୍ଟମୟ ନିତାନ୍ତ ଦୁର୍ବହ ଭାରସ୍ୱରୂପ ହୋଇ ପଡିବ । ସୁଖ ଦୁଃଖର ପାର୍ଥକ୍ୟ ଅନୁଭବ ନିମନ୍ତେ ଅନନ୍ତ କୌଶଳୀ ଭଗବାନ୍ ବିସ୍ମୃତିରୂପ ଏକ ଆବରଣ ସୃଷ୍ଟି କରି ରଖିଅଛନ୍ତି । ବିବିଧ କଷ୍ଟକର ଯନ୍ତ୍ରଣାଦ୍ୱାରା ଆମ୍ଭମାନଙ୍କ ହୃଦୟ କ୍ଷତ ବିକ୍ଷତ ହୋଇଯାଏ । ସେହି କ୍ଷତ ସ୍ଥାନରେ ବିସ୍ମୃତିରୂପ ପ୍ରଲେପ ପଡି କ୍ରମଶଃ ସେହି ଯନ୍ତ୍ରଣାକୁ ଲଘୁ କରି ଦିଏ । ଅବଶେଷରେ କ୍ଷତ ସ୍ଥାନରେ ଚିହ୍ନ ସ୍ୱରୂପ ଘଟଣାଟି ମାତ୍ର ସ୍ମରଣ ଥାଏ, ତଜ୍ଜନିତ ଯନ୍ତ୍ରଣା ଅନୁଭୂତ ହୁଏ ନାହିଁ । ଏହି ଯେ ପୁତ୍ରଶୋକାତୁର ଜନନୀ ଅନ୍ନ ଜଳ ବିସର୍ଜନପୂର୍ବକ ମରଣନିଶ୍ଚୟା ହୋଇ ବସିଅଛି, ଦିନେ ହେଲେ ତାହା ମୁଖରେ ହାସ୍ୟର ଚିହ୍ନ ଦେଖିବ । ହୃଦୟର ସର୍ବସମ୍ପତ୍ତି ପତି-ଦେବତାଙ୍କୁ ହରାଇ ବିଧବା ଜୀବନ ଧାରଣ କରି ରହେ, ଏହା ପ୍ରତ୍ୟକ୍ଷୀଭୂତ ବିଷୟ ଅଟେ । ଏହି ପରିବର୍ତ୍ତନଶୀଳ ଜଗତରେ କିଛିହିଁ ସ୍ଥିର ନୁହେ ।

ଅମ୍ଭମାନଙ୍କ ସେହି ବିଦେଶିନୀ ରମଣୀଟିର ଅବସ୍ଥା ବର୍ତ୍ତମାନ ଦେଖନ୍ତୁ, ପ୍ରଥମେ ସେ ଚଳଛକ୍ତିରହିତା ବାକ୍‌ନିରୁଦ୍ଧା ପ୍ରାୟ ସଜ୍ଞାହୀନ ଅବସ୍ଥାରେ ଥିଲା । ଆଜି ଛ ମାସ ମଧ୍ୟରେ ତାହାର ଅବସ୍ଥା ଏ ପ୍ରକାର ପରିବର୍ତ୍ତିତ ହୋଇ ଗଲାଣି । ପ୍ରଥମ ଦିନ ପୋଲିସମାନେ ସେହି ବିଦେଶିନୀକୁ ଉଆସ ମଧ୍ୟକୁ ନେଇ ଗଲେ । ଦୟାବତୀ ମହାଦେବୀ ତାହାର ରୂପ ତାହାର ଅବସ୍ଥା ଦେଖି ଏବଂ ତାହାପ୍ରତି ଘଟିଥିବା କଥା ଶୁଣି କାନ୍ଦି ପକାଇଲେ ଏବଂ ସସ୍ନେହ ଭାବରେ ତାହା ଉପରେ ହାତ ବୁଲାଇ ଅତି କୋମଳ ଅତି ମଧୁରଭାବରେ ସାନ୍ତ୍ୱନା ଦେବାକୁ ଲାଗିଲେ । ପଲକହୀନ ଅଶ୍ରୁହୀନ ନେତ୍ରରେ ସେହି ରମଣୀଟି ମହାଦେବୀଙ୍କ ମୁହଁକୁ ଚାହିଁ ରହିଥାଏ । ହୃଦ୍‌ଗତ ଭାବର ଛାୟା କପରି ମୁଖ-ମୁକୁରରେ ପ୍ରତିବିମ୍ବିତ ହୁଏ । ମହାଦେବୀଙ୍କର ସମବେଦନା ଅନୁଭବ କରି ସେହି ସ୍ତ୍ରୀଲୋକଟି କାନ୍ଦିଲା—କେତେ ଦିନ ପର୍ଯ୍ୟନ୍ତ କିଛି ମାତ୍ର କଥା ନ କହି କେବଳ କାନ୍ଦୁଥାଏ । ସେ କାନ୍ଦିଲେ ମହାଦେବୀ ତାହା ସାଙ୍ଗରେ କାନ୍ଦି ବସନ୍ତି । ବିଦେଶିନୀ ଏହା ଦେଖି କେବଳ ମହାଦେବୀଙ୍କ ମନସ୍ତୁଷ୍ଟି ସକାଶେ ଧୈର୍ଯ୍ୟ ଧରି ରହେ, କଦାଚିତ୍ ମହାଦେବୀଙ୍କ ଅସାକ୍ଷାତରେ ବସି କାନ୍ଦେ । ଏଥି ସକାଶେ ମହାଦେବୀ ତାକୁ କାନଗଣ୍ଡିଲା କରି ରଖିଥାନ୍ତି । ବିଦେଶିନୀ ଆଉ ଏବେ କାନ୍ଦେ ନାହିଁ, ମାତ୍ର ତାହାର ଶରୀରରକ୍ଷା ନିମନ୍ତେ କିଛିମାତ୍ର ଯତ୍ନ ନାହିଁ । ମହାଦେବୀ ପାଖରେ ବସି ଅତି ଯତ୍ନରେ ଭୋଜନ କରାନ୍ତି । କେବଳ ସେ ଅନୁରୋଧରେ ଏବଂ ମହାଦେବୀଙ୍କ ତୁଷ୍ଟି ସାଧନ ନିମନ୍ତେ ଭୋଜନ କରେ । ପରିଚାରକମାନେ ଧରାଧରି କରି ତେଲ ମର୍ଦ୍ଦନ କରି ଦିଅନ୍ତି ଏବଂ ମୁଣ୍ଡ ବାନ୍ଧି ଦିଅନ୍ତି । କେବଳ ସେ ସ୍ୱେଚ୍ଛାରେ ସିନ୍ଦୂର ଟିପାଟି ମୁଣ୍ଡରେ ଲଗାଏ । ମହାଦେବୀ ବର୍ତ୍ତମାନ ସ୍ୱୟଂ କିଛି କାର୍ଯ୍ୟ କରନ୍ତି ନାହିଁ, ସମସ୍ତ କାର୍ଯ୍ୟ ସେହି ବିଦେଶିନୀ ହାତରେ କରାଇ ନିଅନ୍ତି । ବୋଧହୁଏ ତାହାକୁ ଅନ୍ୟମନସ୍କ କରାଇବା ଏଥିର ମୁଖ୍ୟ ଉଦ୍ଦେଶ୍ୟ । ଗନ୍ତାଘର ବାଙ୍ଗାଘର ସରଘର ସମସ୍ତ କର୍ତ୍ତୃତ୍ୱ ବର୍ତ୍ତମାନ ବିଦେଶିନୀ ହାତରେ । ମହାଦେବୀଙ୍କ ଦୃଢ଼ ଆଦେଶ ଅନୁସାରେ ନଅରର ଯାବନ୍ତ ଲୋକ ତାକୁ ହେମାଦେଈ ମହିମାପର ସମ୍ମାନ କରନ୍ତି ଏବଂ ତାହାର ଆଜ୍ଞା ପାଳନ କରନ୍ତି । ସାଧାରଣର ଏପରି ଗୋଟାଏ ଧାରଣା ହୋଇ ଗଲାଣି, ମହାଦେବୀ ତାକୁ ଧର୍ମଝିଅ କରିଛନ୍ତି ବା କରିବେ । ବିଦେଶିନୀ ମହାରାଜା-ଦମ୍ପତିଙ୍କୁ ମା ବାପା ବୋଲି ଡାକେ ।

ଅମ୍ଭେମାନେ ଲୋକମୁଖରେ ଶୁଣିଅଛୁଁ, ବିଦେଶିନୀ ମହାଦେବୀଙ୍କଠାରେ ଏହିପରି ଆତ୍ମ-ପରିଚୟ ଦେଇଥିଲା;—ତାହାର ନାମ ଲଛମା, ଘର ସିହାନ ଗ୍ରାମ—ଜିଲା ରୋହିଲଖଣ୍ଡ, ଜାତିରେ କ୍ଷତ୍ରିୟ । ପିତାର ନାମ ଧେଓଁକଲ ସିଂ । ଧେଓଁକଲ ନିଜ କ୍ଷୁଦ୍ର ଗ୍ରାମର ଜମିଦାର । ପିତା ନିଃସନ୍ତାନ, ଏକ ମାତ୍ର ସେହି ଉତ୍ତରାଧିକାରିଣୀ, ସ୍ୱାମିସହ ପିତୃଗୃହରେ ବାସ କରେ । ପରିଚାରକମାନେ କୌଶଳରେ କେତେ ଥର ତାହାର ସ୍ୱାମୀ ନାମ ପଚାରିଥିଲେ, ଲଛମା ଆକାଶକୁ ହାତ ବଢାଇ ଦେଇ ବସି କାନ୍ଦେ । ତାହାର କାନ୍ଦିବା ଦେଖି ଅଧିକ କିଛି ପଚାରିବାକୁ କେହି ସାହାସ କରନ୍ତି ନାହିଁ । ସମସ୍ତେ ଅନୁମାନରେ ବୁଝିଥିଲେ, ତାହାର ସ୍ୱାମିର ନାମ ଚନ୍ଦ୍ର ସୂର୍ଯ୍ୟ ବା ତାସ୍ତ ଏହିପରି କିଛି ହେବ । ଧେଓଁକଲ ଅପୁତ୍ରିକ । ଉପଯୁକ୍ତ ସମୟରେ କନ୍ୟା ଗର୍ଭରୁ କିଛି ସନ୍ତାନ ସନ୍ତତି ଜାତ ନ ହେବାରୁ କାମନା କରି ସପରିବାର ଜଗନ୍ନାଥ ଦର୍ଶନକୁ ଆସିଥିଲେ । ଗୋଡଖାଲଠାରେ ଯେଉଁ ବିପଦ ଘଟିଥିଲେ, ପାଠକମାନଙ୍କଠାରେ ତାହା ଅବିଦିତ ନାହିଁ ।

ଲଛମା ବର୍ତ୍ତମାନ କାନ୍ଦେ ନାହିଁ ସତ୍ୟ, ମାତ୍ର ଧୂସରମେଘାବୃତ ଚନ୍ଦ୍ରମା ପରି ତାହାର ମୁଖମଣ୍ଡଳ ସର୍ବଦା ମ୍ଳାନ ଦିଶୁଥାଏ । ମହା-

ଦେବୀ ପ୍ରଥମେ ତାହାର ରୂପ ଦେଖି ଅବସ୍ଥା ଶୁଣି ତାହା ପ୍ରତି କରୁଣା ପ୍ରକାଶ କରୁଥିଲେ, ମାତ୍ର ବର୍ତ୍ତମାନ ତାହା ଗୁଣରେ ବାଧ୍ୟ ହୋଇ ଗଲେଣି । ଲଛମା ସୁଶୀଳା ଏବଂ ଅତ୍ୟନ୍ତ ଲଜ୍ଜାବତୀ । ସେ ଉଆସକୁ ଆସିଲା ଦିନଠାରୁ କୌଣସି ଲୋକର କୌଣସି ପ୍ରକାର ଅପ୍ରିୟ କାର୍ଯ୍ୟ କରି ନାହିଁ । ପରିଜନମାନେ ସର୍ବଦା ତାହା ପାଖରେ ଖଟି ରହିଥାନ୍ତି । କୌଣସି କାର୍ଯ୍ୟ ପଡ଼ିଲେ କାହାରିକୁ ଆଦେଶ ନ କରି ସେ ସ୍ୱହସ୍ତରେ କରିବାକୁ ସୁଖ ମଣେ, ମାତ୍ର ତାହାର ବାସନା ପୂର୍ଣ୍ଣ ହୁଏ ନାହିଁ । ତାହା ଆଚରଣରୁ ପରିଜନମାନେ ତାହାକୁ ଏପରି ଭକ୍ତି କରନ୍ତି ଯେ ସମବୟସ୍କା ସ୍ତ୍ରୀମାନେ ମଧ୍ୟ ତାହା ସଙ୍ଗରେ ରହିହସି କଥା କହି ପାରନ୍ତି ନାହିଁ । ଧର୍ମ କାର୍ଯ୍ୟରେ ଲଛମାର ପ୍ରଗାଢ଼ ଅନୁରାଗ । ଏକାଦଶୀ ବ୍ୟତୀତ ସମସ୍ତ ପ୍ରକାର ବାର ବ୍ରତ କରେ, ଗଡ଼ଚଣ୍ଡୀ ମନ୍ଦିରରେ ଧ୍ୟାନ ପୂଜାରେ ତାହାର ଅନେକ ସମୟ ଅତିବାହିତ ହୁଏ ।

ମହାଦେବୀଙ୍କ ସ୍ନେହରେ ଲଛମା ଅନେକ ପରିମାଣରେ ଆତ୍ମ-ଦୁର୍ଦ୍ଦଶା ପାସୋରି ଯାଇଥିବାର ଜଣାଯାଏ । ଦିନେ ମାନ୍ଧାତା ଠାକୁରେ ସମୟରେ କଥାପ୍ରସଙ୍ଗରେ ମହାଦେବୀଙ୍କଠାରେ କହି ପକାଇଥିଲେ, ଗୋଡ଼ଖାଲ ଯୁଦ୍ଧରେ ଯେଉଁ ବୀରମାନେ ପଡ଼ିଥିଲେ, ସେମାନଙ୍କ ମଧ୍ୟରୁ କେହି କେହି ବଞ୍ଚି ରହିଥିବାର ଶୁଣାଯାଏ । ସେମାନଙ୍କ ସନ୍ଧାନ ନିମନ୍ତେ ଆମ୍ଭେ ପାଇକ ବରଗିଅଛୁଁ । ଯେତେ ବ୍ୟୟ ହେଉ, ଯେତେ ପରିଶ୍ରମ ହେଉ, ସେମାନଙ୍କ ସନ୍ଧାନ କରାଇବୁଁ । କଥାଟା ଅବିଳମ୍ବେ ଲଛମାର କର୍ଣ୍ଣଗୋଚର ହେଲା । ସେ କାହାକୁ କିଛି କହିଲା ନାହିଁ, କେବଳ ଦୀର୍ଘ ନିଶ୍ୱାସ ପକାଇଲା । ସାଗର ଗର୍ଭରେ ଭଗ୍ନପୋତ ଯାତ୍ରୀ ସମାନ ନାବିକ ତରଣୀ-ଆଶ୍ରୟର ଆଶା ପାଇଲେ କେବଳ ତହିଁପ୍ରତି ଲକ୍ଷ କରିଥାଏ । ସେହି ଦିନଠାରୁ ଲଛମା କିଛି ଅଧିକ ଅନ୍ୟମନସ୍କ ଏବଂ ଗଡ଼ଚଣ୍ଡୀ ଠାକୁରାଣୀଙ୍କ ନିକଟରେ ଅଧିକ ସମୟ ଧ୍ୟାନସ୍ଥ ଥିବାର ଦେଖାଯାଏ । ମନ୍ଦିର ମଧ୍ୟରେ ଗବୂଣୀ ନାମୀ ତାହା ଲଲାଟରେ ଦେବୀ-ପ୍ରସାଦ ସିନ୍ଦୂର ଟୋପା ଲଗାଇ ଦେଲେ ସେ ଆଗ୍ରହସହିତ ଗ୍ରହଣ କରେ ଏବଂ ନୀହାରପୂର୍ଣ୍ଣ ନୀଳେନ୍ଦୀବରପରି ତାହାର ନେତ୍ରଯୁଗଳ ଛଳ ଛଳ କରୁଥାଏ ।

ପ୍ରୀତିପ୍ରବାହ ଅକ୍ଷୁଣ୍ଣ ରଖିବା ନିମନ୍ତେ ଅନନ୍ତ କୌଶଳୀ ଜଗଦୀଶ ସ୍ତ୍ରୀମାନଙ୍କ ବିଶେଷତଃ ନାରୀଜାତିର ହୃଦୟରେ ଅପତ୍ୟ-ସ୍ନେହବୃତ୍ତି ନିହିତ କରିଅଛନ୍ତି । ମହାଦେବୀଙ୍କ ହୃଦୟରେ ସେହି ଅପତ୍ୟ-ସ୍ନେହବୃତ୍ତିଟି ଅବସର ନ ପାଇ ପ୍ରଚ୍ଛନ୍ନ ଭାବରେ ଥିଲା । ସମ୍ପ୍ରତି ରୁଗ୍ନ ସେତୁମୁଖରୁ ରୁଦ୍ଧ ସଲିଳରାଶି ବହିର୍ଗତ ହେଲାପରି ସମସ୍ତ ଅପତ୍ୟ-ସ୍ନେହ ଲଛମା ଉପରେ ଢାଳି ଦେଇଅଛନ୍ତି । ସେଦିନ ମାନ୍ଧାତାଙ୍କ କଥା ଶୁଣି ମହାଦେବୀ ବିଶ୍ୱାସ କରୁଅଛନ୍ତି, ଲଛମାର ସ୍ୱାମୀ ଜୀବିତ ଅଛି । ତାଙ୍କର ଧ୍ରୁବ ଧାରଣା, ଧାର୍ମିକା ସୁଲକ୍ଷଣା ସଚ୍ଚରିତ୍ରା ନାରୀପ୍ରତି ବୈଧବ୍ୟ ଯୋଗ ଘଟେ ନାହିଁ । ଆମ୍ଭେମାନେ ଅତି ବିଶ୍ୱସ୍ତସୂତ୍ରରେ ଅବଗତ ହୋଇଅଛୁଁ, ମାନ୍ଧାତା-ଦମ୍ପତିଙ୍କର ଇଚ୍ଛା, ଲଛମାର ସ୍ୱାମୀକୁ ଖୋଜି ପାଇଲେ ଲଛମାକୁ ପୋଷ୍ୟା କନ୍ୟା କରି ଜାମାତାକୁ ଉତ୍ତରାଧିକାରୀ କରିବେ ।

ଶ୍ରୀ ଧୂର୍ଜ୍ଜଟୀ ।

—*—

## ଆଲୋକ-ଚିତ୍ର ବା ଫଟୋଗ୍ରାଫି ।

ଜଗତର ଅନ୍ଧକାରନାଶକ, ସୌନ୍ଦର୍ଯ୍ୟର ଅସ୍ତିତ୍ୱପ୍ରକାଶକ, ପ୍ରକୃତିର ପ୍ରଥମ ସୃଷ୍ଟ ପଦାର୍ଥ ଆଲୋକ ମନୁଷ୍ୟଙ୍କୁ ଯେତେ ଯେତେ ଅଦ୍ଭୁତ ବ୍ୟାପାର ସମ୍ପାଦନ କରିବାକୁ କ୍ଷମ କରିଅଛି, ଆଲୋକ-ଚିତ୍ର (ଫଟୋଗ୍ରାଫି) ତାହାର ଅନ୍ୟତମ ଦୃଷ୍ଟାନ୍ତ ସ୍ଥଳ । ଯେପରି ଆଲୋକ ତୁମ୍ଭ ଚକ୍ଷୁର ପୁତ୍ତଳି ମଧ୍ୟ ଦେଇ ପ୍ରବେଶ କରି ସ୍ନାୟୁ-ରଶ୍ମି-ଗୁଳିକାଦ୍ୱାରା ଚକ୍ଷୁ ମଧ୍ୟରେ ପ୍ରକୃତିର ନୟନରଞ୍ଜନ ଚିତ୍ରସମୂହ ପ୍ରେରିତ କରୁଥିବାରୁ ତୁମ୍ଭେ ଦେଖିବାକୁ ସମର୍ଥ ହେଉଅଛ, ପୁଣି ସେହି ଆଲୋକ ସାହାଯ୍ୟରେ ରସାୟନିକ ସଂଯୋଗରେ ତୁମ୍ଭର ଇଚ୍ଛାନୁରୂପ ଚିତ୍ର ବାହାରେ ଅଙ୍କିତ ହେଉଅଛି । ପ୍ରକୃତି ତାହାର 'ପ୍ରଥମ ସନ୍ତାନ' ଆଲୋକଦ୍ୱାରା ଯେଉଁ ଚିତ୍ର ଅଙ୍କିତ କରି ଦିଏ, ତାହା ବନ୍ଧୁହୀନ ପ୍ରବାସ ଉତ୍ତାରୁ ଆପଣାର ପ୍ରିୟଜନମାନଙ୍କର ପ୍ରିୟ ମୂର୍ତ୍ତି ଅଥବା ଜନ୍ମଭୂମିର ପ୍ରୀତିପ୍ରଦ ଦୃଶ୍ୟାବଳୀକୁ ସ୍ମୃତି-ପଥରେ ଜାଗରୂକ କରିବାକୁ ସମର୍ଥ ହୁଏ । କି ପ୍ରକାରରେ ରସାୟନିକ ସଂଯୋଗରେ ଆଲୋକ-ରଶ୍ମିକୁ ନିଯୁକ୍ତ କରି ଫଟୋଗ୍ରାଫ କରିବାକୁ ହୁଏ, ତତ୍ସମ୍ବନ୍ଧରେ କିଛି କହିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ ।

ଆଲୋକ-ଚିତ୍ର ( ଫଟୋଗ୍ରାଫି ) କଣ ? ସୂର୍ଯ୍ୟାଲୋକର ସାହାଯ୍ୟରେ କେତେଗୁଡ଼ିଏ ରସାୟନିକ ଦ୍ରବ୍ୟର ପରସ୍ପର ସମ୍ମିଶ୍ରଣ ଓ ପରିବର୍ତ୍ତନରେ ପଦାର୍ଥର ଅନୁରୂପ ଚିତ୍ରକରଣର ନାମ ଆଲୋକ-ଚିତ୍ର ବା ଫଟୋଗ୍ରାଫି ।

ଅଧୁନା ଆଲୋକ-ଚିତ୍ର ( ଫଟୋଗ୍ରାଫି ) ୟୁରୋପ ଏବଂ ସମସ୍ତ ସଭ୍ୟ ଦେଶରେ ବିଶେଷ ପ୍ରଚଳିତ । ଏହା ଆବାଲବୃଦ୍ଧବନିତା ସମସ୍ତଙ୍କର ଆଦରଣୀୟ ବସ୍ତୁ । ଏହା ଯେ କେବଳ ମନର ତୁଷ୍ଟିସାଧନ ନିମନ୍ତେ ଅବଲମ୍ବିତ, ତାହା ନୁହେଁ, ସମଷ୍ଟିରେ ଏହାଦ୍ୱାରା ଅନେକ ଉପକାର ସାଧିତ ହୁଏ । ଆଲୋକ-ଚିତ୍ର ସାହାଯ୍ୟରେ ସମସ୍ତେ ସେମାନଙ୍କର ପିତା, ମାତା, ଆତ୍ମୀୟ ସ୍ୱଜନ ବନ୍ଧୁ-ବାନ୍ଧବ ପ୍ରଭୃତିଙ୍କ ପ୍ରତିରୂପ ରଖିବା ପାଇଁ ପ୍ରତ୍ୟକ୍ଷୀଭୂତ କରୁଅଛନ୍ତି; ଦେଶ ବିଦେଶର ପ୍ରସିଦ୍ଧ ରାଜା, ପ୍ରଜା, ପଣ୍ଡିତ, ମୂର୍ଖ, ଧାର୍ମିକ, ପାଷଣ୍ଡ ପ୍ରଭୃତିଙ୍କର ପ୍ରତିରୂପ ଅନାୟାସରେ ଦେଖା ଯାଉଅଛି; ମଧ୍ୟ ଦୁର୍ଦ୍ଦାନ୍ତ ଦସ୍ୟୁ ତସ୍କର ପ୍ରଭୃତିଙ୍କୁ ସର୍ବସାଧାରଣଙ୍କ ସମକ୍ଷରେ ଉପସ୍ଥିତ କରାଯାଇ ସାବଧାନ କରାଇ ଦିଆ ଯାଉଅଛି । ରସାୟନିକ ପଣ୍ଡିତମାନେ ଏହାଦ୍ୱାରା ଲବଣର ସଂଶ୍ଳେଷଣ ଓ ବିଶ୍ଳେଷଣ କ୍ରିୟା ଦେଖୁଅଛନ୍ତି । ଜ୍ୟୋତିର୍ବିଦମାନେ ଏହା ସାହାଯ୍ୟରେ ବହୁଦୂରସ୍ଥିତ ଅସଂଖ୍ୟ ସୌର ଜଗତର ସୃଷ୍ଟି ସ୍ଥିତି ପ୍ରଳୟର ଚିତ୍ର ଅଙ୍କିତ କରି ଜଗତକୁ ଦେଖାଉଅଛନ୍ତି । ଚିକିତ୍ସକମାନେ ଏହି ବିଦ୍ୟାର ସାହାଯ୍ୟରେ ଅତି ଗୁହ୍ୟ ଦେହତତ୍ତ୍ୱ ସମ୍ବନ୍ଧୀୟ ନାନାପ୍ରକାର ଚିତ୍ର କରି ପୁସ୍ତକାଦିରେ ସନ୍ନିବେଶିତ କରିବାକୁ ସମର୍ଥ ହେଉଅଛନ୍ତି । ଇଞ୍ଜିନିୟରମାନେ ଫଟୋଗ୍ରାଫି ସାହାଯ୍ୟରେ ପ୍ରତିଦିନର କାର୍ଯ୍ୟ ଲିପିବଦ୍ଧ କରୁଅଛନ୍ତି ଏବଂ ଦୂରଦେଶସ୍ଥ ସେତୁ, ଅଟ୍ଟାଳିକା ଓ ସ୍ଥପତିବିଦ୍ୟାର ପରିଚୟ ପାଉଅଛନ୍ତି । ଭ୍ରମଣକାରୀମାନେ ଦେଶ ବିଦେଶର ଚିତ୍ର ନେଇ ଜନସାଧାରଣରେ ପ୍ରକାଶ କରୁଅଛନ୍ତି । ନାବିକମାନେ ନାନା ଜାତୀୟ ମେଘର ପ୍ରତିରୂପ ନେଇ, କେଉଁ ମେଘ ଅନୁକୂଳ ଏବଂ କେଉଁ ମେଘ ପ୍ରତିକୂଳ ତାହାର ତଥ୍ୟ ନିର୍ଦ୍ଦେଶ କରୁଅଛନ୍ତି । ମେଘ-ନାଦର ବିଭାଗ ଅନୁସାରେ ଝଞ୍ଜା, ଘୂର୍ଣ୍ଣିବାୟୁ ଅଥବା ସୁବାୟୁ ହୋଇଥାଏ । ଯେଉଁ ବିଦ୍ୟୁତକୁ ମାନବଚକ୍ଷୁ ସମ୍ପୂର୍ଣ୍ଣରୂପେ ଉପଲବ୍ଧି କରି ନ ପାରେ, ଫଟୋଗ୍ରାଫି ସେହି ବିଦ୍ୟୁତର ପ୍ରତିରୂପ ମାନବଚକ୍ଷୁସମ୍ମୁଖରେ

ପ୍ରକାଶ କରୁଅଛି । ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଅଦୃଶ୍ୟ ଅଣୁପ୍ରମାଣ ପଦାର୍ଥ ସମୂହରେ ଅନୁରୂପ ଚିତ୍ର ହେଉଅଛି । ଯାବତୀୟ ପାର୍ଥିବ ଦୁଷ୍ପ୍ରାପ୍ୟ ଓ ଦୁର୍ମୂଲ୍ୟ ଦ୍ରବ୍ୟସମୂହର ଅବିକଳ ଫଟୋଦ୍ୱାରା ସାଧାରଣଙ୍କର ପ୍ରଭୂତ ଉପକାର ଓ ଆନନ୍ଦ-ବର୍ଦ୍ଧନ ହେଉଅଛି । ଅଧୁନା ଏହା ଗୋଟିଏ ପ୍ରଧାନ ଅର୍ଥକରୀ ଶିଳ୍ପବିଦ୍ୟାସ୍ୱରୂପ ହୋଇଅଛି । ଏହି ବିଦ୍ୟାପ୍ରଭାବରେ ସମସ୍ତ ଦେଶରେ ଯେ ଗୋଟିଏ ନୂତନ ବ୍ୟବସାୟର ଦ୍ୱାର ଉନ୍ମୁକ୍ତ ହୋଇଅଛି, ଏହା କହିବା ବାହୁଲ୍ୟ । ଆଲୋକ-ଚିତ୍ର ସାହାଯ୍ୟରେ ଶିଳ୍ପସମୂହର ଏତେ ଉନ୍ନତି ସାଧିତ ହୋଇଅଛି ଯେ ତାହାର ଇୟତ୍ତା ନାହିଁ । ଚିତ୍ରକରମାନେ ଏହା ସାହାଯ୍ୟରେ ଚିତ୍ରବିଦ୍ୟାର ଯଥେଷ୍ଟ ଉନ୍ନତି ସାଧନ କରୁଅଛନ୍ତି । ଫଟୋ ଏନ୍‌ଗ୍ରେଭିଂ, ଫଟୋଲିଥଗ୍ରାଫି ଏତେ ଉନ୍ନତି ଲାଭ କରିଅଛି ଯେ କ୍ରମଶଃ ଉଡ୍ ଏନ୍‌ଗ୍ରେଭିଂ ଓ ଲିଥଗ୍ରାଫିର ଆଦର ଊଣା ହେଉଅଛି । ଏପରି ଅତ୍ୟାବଶ୍ୟକ ଓ ଅଦ୍ଭୁତ ବସ୍ତୁ ପ୍ରସ୍ତୁତ କରିବାର ପ୍ରଣାଳୀ ଓ ନିୟମାଦି ଅବଗତ ହେବା ନିମନ୍ତେ କାହାର ଇଚ୍ଛା ନ ହେବ ? ଏହି ପ୍ରଣାଳୀ ମଧ୍ୟ ଅତୀବ ବିସ୍ମୟକର । ଏହି ବିଦ୍ୟାର ଆବିଷ୍କର୍ତ୍ତାଙ୍କୁ ନାନାପ୍ରକାର ଅଯଥା ଉପହାସ ଓ ବିଦ୍ରୂପ ସହ୍ୟ କରିବାକୁ ହୋଇ ଥିଲା । ସୂକ୍ଷ୍ମ ଶିଳ୍ପ ମଧ୍ୟରେ ଏହା ଯେ ସ୍ଥାନ ପାଇବ, ତାହା ସମ୍ବନ୍ଧରେ ସ୍ୱପ୍ନା-ତୀତ ଥିଲା; ଭ୍ରମରେ ମଧ୍ୟ କେହି ଏକଥା ସ୍ୱୀକାର କରୁ ନ ଥିଲେ । ସେ ଦିନ ଆଉ ନାହିଁ, ବର୍ତ୍ତମାନ ଏହାର ଯୁଗାନ୍ତର ଉପସ୍ଥିତ ହୋଇଅଛି ଏବଂ ଏହା ଜାତୀୟ ସୂକ୍ଷ୍ମ-ଶିଳ୍ପର ଶୀର୍ଷସ୍ଥାନୀୟ ହୋଇ-ଅଛି ।

ଫଟୋଗ୍ରାଫି କେତେ ଦିନର ? ଅନ୍ୟାନ୍ୟ ଅଦ୍ଭୁତ ପଦାର୍ଥର ତୁଳନାରେ ଏହା ନୂତନ ଅଟେ । ୧୮୧୪ ଖ୍ରୀଷ୍ଟାବ୍ଦରେ ନିୟପସ (Niepce) ଏବଂ ୧୮୩୯ ଖ୍ରୀଷ୍ଟାବ୍ଦରେ ଡଗର (Daguerre) ସାହେବ ଏହାର ବିଶେଷ ଏବଂ ବହୁବିଧ ଅଂଶ ଆବିଷ୍କାର କରିଅଛନ୍ତି । ତତ୍ପରେ କ୍ରମେ କ୍ରମେ ଏହି ବିଦ୍ୟାର ଏତେ ଉତ୍କର୍ଷ ସାଧିତ ହୋଇ ଅଛି । ବର୍ତ୍ତମାନ ଏହାର ଐତିହାସିକ ବିବରଣ ଲେଖିବାକୁ ଗଲେ ପାଠକଙ୍କର ଧୈର୍ଯ୍ୟଚ୍ୟୁତି ହୋଇ ପାରେ । ସମୟାନ୍ତରେ ତାହା ପ୍ରକାଶିତ ହେବ ।

ପ୍ରିୟ ପାଠକେ ! ପ୍ରାୟ ଅନେକ ସମୟରେ ଦେଖିଥିବେ, କୌଣସି ଗୃହର ସମସ୍ତ ଦ୍ୱାର ଓ ଝରକା ବନ୍ଦ କରି ଦେଲେ ତହିଁରେ ଥିବା ଛିଦ୍ରପଥ ଦେଇ ବହିସ୍ଥ ପଦାର୍ଥର ଛବି ଗୃହର କାନ୍ଥ ଉପରେ ଓଲଟାଭାବରେ ପ୍ରତିଫଳିତ ହୁଏ । ସେହି ଛିଦ୍ରର ସମସୂତ୍ରରେ (କିଛି ଦୂରରେ) ଯେବେ ଖଣ୍ଡିଏ ଧଳା କାଗଜ ଧରାଯାଏ ତେବେ ଦେଖାଯିବ ଯେ ସେହି କାଗଜ ଉପରେ ବହିସ୍ଥ ପଦାର୍ଥର ଓଲଟା ଛବି ସ୍ପଷ୍ଟରୂପେ ପ୍ରତି-ଫଳିତ ହେବ । ପୁଣି ଯେବେ ସେହି ଛିଦ୍ରଟିକୁ କିଛି ବଡ଼ କରାଯାଇ ତହିଁରେ ଦ୍ୱିନ୍ୟୁବ୍ଜ (ବିମ୍ବାକାର) କାଚ ଲଗାଇ ଦିଆଯାଏ, ତେବେ ବହିସ୍ଥ ପଦାର୍ଥର ଛବି ଅଧିକ ସ୍ପଷ୍ଟତରରୂପେ ପ୍ରତିଫଳିତ ହେବ । ଆଲୋକ-ରଶ୍ମି ଯେତେବେଳେ କୌଣସି ସ୍ୱଚ୍ଛ ପଦାର୍ଥ ମଧ୍ୟ ଦେଇ ପ୍ରବେଶ କରେ, ସେତେବେଳେ ଏହାର ଗୋଟିଏ ପ୍ରକୃତି ଲକ୍ଷିତ ହୁଏ; ଏହାର ଗତି ବକ୍ର (refracted) ହୋଇଯାଏ । ରଶ୍ମି ଯେବେ କୌଣସି କାଚ ଉପରେ ପତିତ ହୁଏ, ତେବେ ବାୟୁରୁ କାଚ ମଧ୍ୟରେ ପ୍ରବେଶ କାଳରେ ଏହାର ଗତି ବକ୍ର ହୋଇ ଯାଏ ଏବଂ କାଚ ଭେଦ କରି ଅପର ପାର୍ଶ୍ୱସ୍ଥ ବାୟୁରେ ପ୍ରବେଶ କଲେ ପୁନରପି ଏହାର ଗତିର ବୈଲକ୍ଷଣ୍ୟ ହୁଏ । ରଶ୍ମିର ବକ୍ରତା-(refraction) ବଶତଃ ପୂର୍ବୋକ୍ତ ବିମ୍ବା-କାର କାଚ ଭେଦ କରି ଛବି ବକ୍ରଗାମୀ ହେବାରୁ ଓଲଟା ଭାବରେ କାଗଜ ଉପରେ ପ୍ରତିଫଳିତ ହୁଏ । କିନ୍ତୁ କାଗଜ ଖଣ୍ଡକୁ ଦ୍ୱିନ୍ୟୁବ୍ଜ କାଚର ଅଧିଶ୍ରୟଣ-ବିନ୍ଦୁରେ (focus) ନ ରଖିଲେ ଛବି

ସ୍ପଷ୍ଟ ଜଣାଯାଏ ନାହିଁ । ଏଥିରୁ ଆମ୍ଭେମାନେ ବର୍ତ୍ତମାନ ଏହି ସିଦ୍ଧାନ୍ତରେ ଉପସ୍ଥିତ ହୋଇ ପାରିବୁଁ ଯେ ଗୋଟିଏ ଅନ୍ଧକାରମୟ ବାକ୍ସରେ ଛିଦ୍ର କରି ତହିଁରେ ଖଣ୍ଡିଏ ଦ୍ୱିକୁବ୍ଜ କାଚ ଲଗାଇ ତାହାର ଅଗ୍ନିଗ୍ରହଣ (focus) ବିନ୍ଦୁରେ ବାକ୍ସ ମଧ୍ୟରେ ଖଣ୍ଡିଏ କାଗଜ କିମ୍ବା ଘଷା କାଚ ଲଗାଇ ଦେଲେ ତାହା ଉପରେ ବହିସ୍ଥ ପଦାର୍ଥର ଓଲଟା ଛବି ପ୍ରତିଫଳିତ ହେବ । ବହିସ୍ଥ ଛବିକୁ ଅନ୍ଧକାରମୟ ବାକ୍ସ ମଧ୍ୟରେ ସ୍ପଷ୍ଟତର ପ୍ରତିଫଳିତ କରିବା କାରଣ ଲେନ୍ସ (lense) ବ୍ୟବହୃତ । ଲେନ୍ସ ସାହାଯ୍ୟରେ ପଦାର୍ଥର ଅବିକଳ ପ୍ରତିରୂପ ଉତ୍ପାଦିତ ହୁଏ । ବର୍ତ୍ତମାନ ଏହା ଦେଖିବାକୁ ହେବ ଯେ ପୂର୍ବୋକ୍ତ ବହିସ୍ଥ ପଦାର୍ଥର ପ୍ରତିରୂପ କିପରି ଉତ୍ପନ୍ନ ହୁଏ, ଓଲଟା କାହିଁକି ହୁଏ ଏବଂ ଲେନ୍ସଠାରୁ କେତେ ଦୂରରେ ମୂଳ ପଦାର୍ଥଟି ରଖିବାକୁ ହେବ ।

ଯେଉଁ ପଦାର୍ଥର ପ୍ରତିରୂପ କରିବାକୁ ହୁଏ ତାହାକୁ ବିଶେଷ ପରିମାଣରେ ଆଲୋକିତ କରିବା ଉଚିତ । ଏହାକୁ ରୌଦ୍ର, ତାଡ଼ିତ, ଗ୍ୟାସ୍ ଅଥବା ମ୍ୟାଗ୍ନେସିୟମ୍ ଆଲୋକଦ୍ୱାରା ଆଲୋକିତ କରିବାକୁ ହୁଏ । ଆଲୋକିତ ପଦାର୍ଥର ଆଲୋକ ଚକ୍ଷୁରେ ପ୍ରତିଫଳିତ ହେଲେ ଆମ୍ଭେମାନେ ସେହି ପଦାର୍ଥ ଦେଖିବାକୁ ସମର୍ଥ ହେଉଁ । ଲେନ୍ସ ସହକାରେ ସୂର୍ଯ୍ୟରଶ୍ମି ସଞ୍ଚିତ କରି ବା ଅଗ୍ନିଗ୍ରହଣ-ବିନ୍ଦୁରେ (focus) ରଖି କୌଣସି କୋମଳ ପଦାର୍ଥ (ସୋଲ କିମ୍ବା ତୁଳା ମେଞ୍ଚା) ଉପରେ ପକାଇଲେ ଅଗ୍ନି ଯେପରି ଜାତ ହୁଏ, ସେହିପରି ସୂର୍ଯ୍ୟାଲୋକର ଫୋକସ୍ ଉତ୍ପନ୍ନ କରି ଭଲ କରି ଦେଖିଲେ ସ୍ପଷ୍ଟ ଲକ୍ଷିତ ହେବ ଯେ ଏହି ଫୋକସ୍ ସୂର୍ଯ୍ୟର କ୍ଷୁଦ୍ରତମ ପ୍ରତିରୂପ । ସୌରକରସମୂହ ଲେନ୍ସ ଗୁଣରେ ବିନ୍ଦୁପରିମିତ ସ୍ଥାନରେ ସଞ୍ଚିତ ହୋଇ ସେମାନଙ୍କ ଉତ୍ପତ୍ତି-ମୂଳ ସୂର୍ଯ୍ୟର କେବଳ ଅବିକଳ ପ୍ରତିରୂପ ଉତ୍ପାଦନ କରେ । ଏହିପରି ଯେ କୌଣସି ପଦାର୍ଥରୁ କିମ୍ବା ପଦାର୍ଥର ଅଂଶରୁ ଆଲୋକ ଲେନ୍ସ ମଧ୍ୟ ଦେଇ ଯେଉଁ ସ୍ଥାନରେ ସଞ୍ଚିତ ହେବ ବା ଫୋକସରେ ପଡ଼ିବ, ସେହି ସ୍ଥାନରେ ସେହି ପଦାର୍ଥର ଅଥବା ତାହାର ସେହି ଅଂଶର ଅବିକଳ ପ୍ରତିରୂପ ଅଙ୍କିତ ହେବ । ଆଲୋକିତ ପଦାର୍ଥ ଯେପରି ଆକୃତିର ଓ ଯେତେ ବଡ଼ ହେଲେହେଁ ତାହାର ଯେଉଁ ସମସ୍ତ ସ୍ଥାନରୁ ଆଲୋକ ବିକୀର୍ଣ୍ଣ ହୋଇ ଲେନ୍ସ ଉପରେ ପଡ଼ିବ, ସେହି ଆଲୋକ-ରଶ୍ମିପୁଞ୍ଜ ଲେନ୍ସ ଭେଦ କରି ବିପରୀତ ଦିଗରେ ବାହାର ହୋଇ ଅଗ୍ନିଗ୍ରହଣ-ବିନ୍ଦୁରେ ସେହି ସମସ୍ତ ସ୍ଥାନର ଅବିକଳ କିନ୍ତୁ ଓଲଟା ଛବି ଉତ୍ପନ୍ନ କରିବ । ଲେନ୍ସ-ଆଲୋକର ବକ୍ରତା ଗୁଣ ଥିବାରୁ ପଦାର୍ଥର ଅବିକଳ ଓ ଓଲଟା ଛବି ଉତ୍ପନ୍ନ ହୁଏ ।

ଆଲୋକିତ ପଦାର୍ଥର ସର୍ବ ସ୍ଥାନର ପ୍ରତ୍ୟେକ ଅଂଶରୁ ସର୍ବ ଦିଗରେ ଓ ସରଳ ଭାବରେ ଆଲୋକ-ରଶ୍ମି ବିକୀର୍ଣ୍ଣ ହୁଏ । କିନ୍ତୁ ତାହାର କିୟଦଂଶ ମାତ୍ର ଲେନ୍ସର ଏକ ପାର୍ଶ୍ୱରେ ପଡ଼େ ଏବଂ ସେହି ଆଲୋକ-ରଶ୍ମିସମୂହ ଲେନ୍ସ ମଧ୍ୟରେ ବକ୍ର ହୋଇ ଯାଏ, ପୁଣି ଅପର ଦିଗରେ ବାହାରିବା ମାତ୍ରକେ ବକ୍ର ହୁଏ, ସେ ସମସ୍ତ ଯେଉଁ ଭାବରେ ବକ୍ର ହୋଇ ବିପରୀତ ଦିଗରେ ଅଗ୍ନିଗ୍ରହଣ-ବିନ୍ଦୁରେ ପଡ଼ିବ, ସେହି କାରଣବଶତଃ ପଦାର୍ଥର ଓଲଟା ଏବଂ ବଡ଼ ଅଥବା ଛୋଟ ଛବି ଉତ୍ପନ୍ନ ହେବ । ଲେନ୍ସର ଯୁଗଳ ଫୋକସ୍ ନିୟମାନୁସାରେ ପଦାର୍ଥ ଲେନ୍ସର ଯେତେ ନିକଟରେ ସ୍ଥାପିତ ହେବ, ସେହି ପଦାର୍ଥର ବିକୀର୍ଣ୍ଣ ଆଲୋକାଂଶ ଲେନ୍ସରେ ପଡ଼ି ଲେନ୍ସଠାରୁ ସେହି ପରିମାଣରେ ଦୂରରେ ଫୋକସ୍ ହେବ ଓ ତାହାର ଆକୃତି ବଡ଼ ହେବ । ପଦାର୍ଥକୁ ଲେନ୍ସର ଯେତେ ଦୂରରେ ରଖିବ, ତାହାର ପ୍ରତିବିମ୍ବ ଲେନ୍ସର ସେତେ ନିକଟରେ ସୁତରାଂ ସେହି ପରିମାଣରେ ଛୋଟ ହେବ ।

ଫଳତଃ ଲେନ୍‌ସସନ୍ତକାରେ ପଦାର୍ଥର ବୃହତ୍ ପ୍ରତିରୂପ ନେବାକୁ ହେଲେ ଏହାକୁ ଲେନ୍‌ସର ସେହି ପରିମାଣରେ ନିକଟରେ ରଖିବାକୁ ହେବ, ପୁଣି କ୍ଷୁଦ୍ର ପ୍ରତିରୂପ ନେବାକୁ ହେଲେ ପଦାର୍ଥକୁ ସେହି ପରିମାଣରେ ଲେନ୍‌ସଠାରୁ ଦୂରରେ ରଖିବାକୁ ହେବ ।

ଚକ୍ଷୁ ଈଶ୍ୱରଦତ୍ତ ସ୍ୱାଭାବିକ ଲେନ୍‌ସ୍ ଛଡ଼ା ଆଉ କିଛି ନୁହେ । ପ୍ରକୃତ ପଦାର୍ଥରୁ ବିକୀର୍ଣ୍ଣ ହେଉଥିବା ଆଲୋକ ଯେଉଁ ଆଖିର ପୃଷ୍ଠ-କେନ୍ଦ୍ରରେ ପଡ଼ି ପ୍ରତିରୂପ ଉତ୍ପାଦନ କରେ, ସେହି ସ୍ଥାନରେ ସେହି ପ୍ରତିମୂର୍ତ୍ତିଠାରୁ ପୁଣି ଆଲୋକ ବିକୀର୍ଣ୍ଣ ହୋଇ ଚକ୍ଷୁରେ ପଡ଼େ । ସେତେବେଳେ ଚକ୍ଷୁ-ଲେନ୍‌ସ୍ ସେହି ସମସ୍ତ ପତିତ ରଶ୍ମିକୁ ଫୋକସରେ ରଖି ପୁଣି ସେହିପରି କ୍ଷୁଦ୍ର ଗୋଟିଏ ପ୍ରତିମୂର୍ତ୍ତି ଉତ୍ପାଦନ କରେ ଏବଂ ସେହି ପ୍ରତିରୂପ ଦୃଷ୍ଟି-ଜ୍ଞାପକ ସ୍ନାୟୁଦ୍ୱାରା ମସ୍ତିଷ୍କକୁ ନୀତ ହେଲେ, ଆମ୍ଭେମାନେ ପଦାର୍ଥର ଦର୍ଶନ-ଜ୍ଞାନ ଲାଭ କରୁଁ ।

କ୍ରମଶଃ

ଶ୍ରୀ ଶ୍ୟାମସୁନ୍ଦର ସାହୁ ।

---

## ଭ୍ରମଣକାରୀର ପତ୍ର ।

### ( ବୌଦ୍ଧ । )

ବୌଦ୍ଧାଧିକାର ପୂର୍ବରୁ ଏ ରାଜ୍ୟ ଗୋସିଂହ ଦାନବର ରାଜ୍ୟ ଥିଲା । ଦାନବ ବୋଲନ୍ତେ (ଅସୁର) ଦକ୍ଷକନ୍ୟା ଦନୁଗର୍ଭରୁ କଶ୍ୟପ-ଔରସ-ଜାତ । ପୁରାଣାଦିରେ ୭୧ ସଂଖ୍ୟକ ଦାନବର ଉଲ୍ଲେଖ ଅଛି । ତହିଁ ମଧ୍ୟରେ ଶମ୍ବର, ଧୂମ୍ରକେଶ, ଦୁର୍ଦ୍ଧର୍ଷ, ବିରୂପାକ୍ଷ ପ୍ରଭୃତି ଅଷ୍ଟାଦଶ ଗଣସ ପ୍ରଧାନ । ଏମାନଙ୍କର ବଂଶଧରମାନେ ଅସୁରବୋଲି କଥିତ । ସୁର—ସୂକ୍ଷ୍ମ; ଅସୁର—ବର୍ବର । ବିଶାଳ ଭାରତ-ଖଣ୍ଡ ଅତି ପୂର୍ବକାଳରେ ଆରଣ୍ୟକ ନରନାରୀ ଅନାର୍ଯ୍ୟ ଜାତିର ବାସଭୂମି ଥିଲା । ଉନ୍ନତବପୁ, ଦୀପ୍ତକାନ୍ତି, ସ୍ଥିରଧୀ ଥୋକାଏ ଆର୍ଯ୍ୟ ମଧ୍ୟ ଏସିଆରୁ ଆସି ପଞ୍ଚନଦ ପାର ହୋଇ ଉତ୍ତରପଶ୍ଚିମ ଭାରତରେ ପ୍ରବେଶ କଲେ । ଏମାନଙ୍କର ସମ୍ବଳ ଥିଲା ଧନୁର୍ବାଣ ଓ ଲଙ୍ଗଳ । କୃଷି ଓ ମୃଗୟାଦ୍ୱାରା ଉଦରପାଳନ ହେଲା । ବଂଶବୃଦ୍ଧି ସଙ୍ଗେ କୃଷିର ଉପଯୋଗୀ ଉର୍ବର ଭୂମିଖଣ୍ଡର ଆବଶ୍ୟକତା ହେଲା । ଆଦିମନିବାସୀ ଅସୁରମାନେ ଏହି ଆର୍ଯ୍ୟ-ମାନଙ୍କ କୃଷିବିସ୍ତାରରେ ବାଧା ଜନ୍ମାଇଲେ, କ୍ଷେତ୍ରରୁ ଫଳମୂଳ ଶସ୍ୟ ଚୋରି କଲେ । ଦସ୍ୟୁ—ଦସ୍ୟୁମାନଙ୍କୁ ଦମନ କରିବା ଲାଗି ଆର୍ଯ୍ୟମାନେ ଉଦ୍‌ଯୋଗୀ ହେଲେ । ସେହି ଉଦ୍ୟମ ସୁରାସୁର-ସମରରେ ପରିଣତ ହେଲା । ସହସ୍ର ସହସ୍ର ବର୍ଷ ଜୟ ପରାଜୟ ଅବିରାମଗତିରେ ଚାଲିଲା । ସମସ୍ତ ସମୟରେ ଆର୍ଯ୍ୟନେତା ଦେବତାମାନେ ଅସୁର-ସମରରେ ପରାସ୍ତ ହୋଇ ବନ୍ଦୀ ହେଲେ ଏବଂ ଦସ୍ୟୁରାଜଙ୍କ ଖଟଣିରେ ନିଯୁକ୍ତ ହେଲେ । ଏହି କାଳରେ ଦଳେ ଭୁଜବଳ ସେହି ରକ୍ଷା କରିବା ଲାଗି ଦେହ ବା କ୍ଷତରୁ ଅର୍ଥାତ୍ ଦସ୍ୟୁ-ଆକ୍ରମଣରୁ ତ୍ରାଣ କରିବାଲାଗି ହେଉ, ଆର୍ଯ୍ୟମାନଙ୍କ ମଧ୍ୟରୁ ବଦ୍ଧ ହୋଇ ଉକ୍ତ କର୍ତ୍ତବ୍ୟ ସାଧନରେ ନିଯୁକ୍ତ ହେଲେ । ସେହିମାନେ କ୍ଷତ୍ରିୟ । ଯେଉଁମାନେ ଆର୍ଯ୍ୟମାନଙ୍କ ମଧ୍ୟରେ ଶାନ୍ତ, ସମାହିତ ବିବେକୀ ହେଲେ, ସେହିମାନେ ଶର୍ମ୍ମ—(କଲ୍ୟାଣ) କ୍ଷେତ୍ରରେ ନିଯୋଜିତ ହୋଇ ଶର୍ମ୍ମା ବା ବ୍ରାହ୍ମଣ ନାମରେ ଅଭିହିତ ହେଲେ । ଅବଶିଷ୍ଟ ଆର୍ଯ୍ୟଗଣ ପୂର୍ବୋକ୍ତ ଦୁଇ ଶ୍ରେଣୀର ଅପ୍ରଧାନ (ବଶ) ଥାଇ ବୈଶ୍ୟ (?) ନାମରେ କଥିତ ହେଲେ । ଏମାନଙ୍କର ମୁଖ୍ୟ କର୍ମ ହେଲା କୃଷି । ପରାଜିତ ଅନାର୍ଯ୍ୟ-ଦସ୍ୟୁ ଉକ୍ତ ତିନ

ଶ୍ରେଣୀର ଦାସତ୍ୱ ସ୍ୱୀକାର କରି ଶୂଦ୍ର ଆଖ୍ୟାରେ ଆଖ୍ୟାତ ହେଲେ । ଏହି ସେବାକାରୀ ଜାତିକୁ ବିବିଧ ସେବା ଓ କର୍ମରେ ନିଯୁକ୍ତ କରି ଆର୍ଯ୍ୟମାନେ ଅନେକ ପକ୍ଷରେ ଏମାନଙ୍କୁ କଥଞ୍ଚିତ୍ ଅନୁଗ୍ରହ କରୁଥିଲେ । ଗୁଣ ଓ କର୍ମ ଭେଦ ଜାତିବିଭାଗ ହେଲା । ଯେଉଁ ଦୁର୍ଦ୍ଧାନ୍ତ ଦସ୍ୟୁମାନେ ଆର୍ଯ୍ୟ-ଦାସତ୍ୱ ସ୍ୱୀକାର ନ କଲେ, ସେମାନେ ଏକାଳ ପର୍ଯ୍ୟନ୍ତ ଆର୍ଯ୍ୟସଂସ୍ରବରୁ ପୃଥକ ହୋଇ କନ୍ଧ, ଗଣ୍ଡ, କୋହ୍ଲ, ଶବ଼, ଭୂୟାଁ, ଗାରୋ, ଲେପଚା, ଭୁଟିଆ, ଇତ୍ୟାଦି ନାମରେ ଅଭିହିତ ହେଉଅଛନ୍ତି । ଏତ ଗଲା ସ୍ଥୂଳ କଥା । ଅନ୍ୟରୂପ କଥା ଅଛି । ପର୍ଣ୍ଣକୁଟୀର-ବାସୀ ଆର୍ଯ୍ୟ ଏବଂ ବନଗୃହୀ ଅନାର୍ଯ୍ୟମାନଙ୍କ ମଧ୍ୟରେ ବିସ୍ତର ଶୁକ୍ର-ଶୋଣିତ-ସମ୍ପର୍କ ଘଟିଅଛି । ଆମ୍ଭମାନଙ୍କର ଅନେକ ଠାକୁର ଠାକୁରାଣୀ ଅନାର୍ଯ୍ୟ-ଦେବଦେବୀ । ଏମନ୍ତ କି ଶିବ ଠାକୁର ଏବଂ କାଳୀ ଠାକୁରାଣୀ ଦୁହେଁ ଦିଗମ୍ବର, ଦିଗମ୍ବରୀ—ଢେଙ୍କାନାଳର ପାଣୁଆ ଜାତିର ଉପର ବଂଶ । ଆର୍ଯ୍ୟମାନେ ହିମାଳୟ ଦଣ୍ଡପାଟର ଶିବଙ୍କ ସର୍ବଧ୍ୱଂସକାରୀ ପ୍ରଭାବ ସହି ନ ପାରି ଡରି ମରି ତାଙ୍କୁ ଦେବତା ବୋଲି ମାନିଥିଲେ; ସ୍ତବ ସ୍ତୁତିରେ ଆଶୁତୋଷଙ୍କୁ ତୁଷ୍ଟ କରିଥିଲେ । ହିମାଳୟଠାରୁ କୁମାରିକା ପର୍ଯ୍ୟନ୍ତ 'ଲିଙ୍ଗମ୍' ପୂଜାର ବିରାଟକାଣ୍ଡ ଘଟାଇଥିଲେ । ଧନ୍ୟ ବ୍ରାହ୍ମଣ-ବୁଦ୍ଧି ! ଏତେ ବଡ଼ ଅନାର୍ଯ୍ୟ ଅଶ୍ଳୀଳ ପୂଜାଟା କୌଶଳରେ ଆଧ୍ୟାତ୍ମିକ ଭାବକୁ ଟାଣି ଆଣି ନିର୍ବିକାର କରିଅଛନ୍ତି । ମହାଯୋଗୀ ମହେଶ୍ୱର । ଯୋଗୀ ସଂସାର-ଜ୍ଞାନରହିତ । ସାଧୁ ବ୍ରାହ୍ମଣ ! ତୁମ୍ଭ ବୁଦ୍ଧିର ଇୟତ୍ତା କରିବାକୁ ସାଧ୍ୟ କାହାର ? କଶ୍ୟପଙ୍କ ଔରସରେ ଦକ୍ଷରାଜକନ୍ୟା ଦନୁଗର୍ଭରୁ ଦାନବ ଜାତ — ଆର୍ଯ୍ୟ ଅନାର୍ଯ୍ୟର ଘୋର ମିଶ୍ରଣ । ପ୍ରକୃତରେ ବିଚାର ଉପସ୍ଥିତ ହେଲେ ପାତ୍ରାପାତ୍ରର ପାର୍ଥକ୍ୟ ରହେ ନାହିଁ । ସୁରମାନେ ଅସୁରକନ୍ୟାଙ୍କ ଗର୍ଭରୁ ସନ୍ତାନମାନ ଜାତ କରାଇ ସେମାନଙ୍କୁ ମହାବଳୀ କରାଇଥିଲେ । ସେହି ମହାବଳଙ୍କ ସହିତରେ ଯୁଦ୍ଧ ବିଗ୍ରହ କରି ଶକ୍ତିମନ୍ତ ହୋଇଥିଲେ । ବେଦସଂହିତାର କୃଷି-କଲ୍ୟାଣ-ମନ୍ତ୍ର ଓ କୃଷି-ଅପହାରୀ ଦସ୍ୟୁଦଳର ଉତ୍ପାଟନକାମନାର କାହାଣୀ । ଭାରତବର୍ଷର ଆର୍ଯ୍ୟମାନେ ଅନାର୍ଯ୍ୟଜାତିଦ୍ୱାରା ପ୍ରପୀଡ଼ିତ ନ ହୋଇଥିଲେ ଅଦୌ ଉନ୍ନତି କରି ନ ଥାନ୍ତେ; ଠିକ୍ କାବୁଲିଙ୍କ ପରି ଅନୁନ୍ନତ ଅବସ୍ଥାରେ ଅଦ୍ୟ ରହିଥାନ୍ତେ । କଳହରୁ ପ୍ରତିଦ୍ୱନ୍ଦ୍ୱୀର ପ୍ରବଳ ପ୍ରତିଯୋଗିତାରୁ ଉନ୍ନତି ହୋଇଯାଏ । ଦୈତ୍ୟ ଦାନବଙ୍କ ଅଧିକୃତ ସ୍ଥାନଗୁଡ଼ାକ କାଳକ୍ରମେ ବୀର୍ଯ୍ୟବାନ୍ ଆର୍ଯ୍ୟଗଣ ଅଧିକାର କଲେ । ଗୋହିନ୍ଦ ଦୈତ୍ୟର ରାଜ୍ୟଟା ଅମୃତ ଗବମାଦନ ଦେବ ୭୦ ପୁରୁଷ—ଅନ୍ୟୂନ ଦୁଇ ହଜାର ବର୍ଷ ପୂର୍ବରୁ ଅଧିକାର କରିଥିଲେ । ସେହି ବଂଶର ଅବିଚ୍ଛିନ୍ନ ଅଧିକାର ଅଦ୍ୟ ରହିଅଛି । ବର୍ତ୍ତମାନ ରାଜା ଶ୍ରୀମାନ୍ ଯୋଗେନ୍ଦ୍ର ଦେବ ଏହି ରାଜ୍ୟର ନରେଶ । ଏ ରାଜବଂଶ ପରି ପ୍ରାଚୀନ ରାଜବଂଶ ବିରଳରେ ବିରଳ ।

ଏହି ରାଜ୍ୟର ଉତ୍ତର ଦିଗରେ ମହାନଦୀ ଆଠମଲ୍ଲିକ ଓ ସୋନପୁରକୁ ପୃଥକ୍ କରିଅଛି; ପୂର୍ବରେ ଦଶପଲ୍ଲା; ଦକ୍ଷିଣରେ ମାନ୍ଦ୍ରାଜ ପ୍ରେସିଡେନ୍ସିର ଅନ୍ତର୍ଗତ ଗଞ୍ଜାମର ଓ ଖିମିଡି ରାଜ୍ୟ; ପଶ୍ଚିମରେ ମଧ୍ୟପ୍ରଦେଶାନ୍ତର୍ଗତ ସୋନପୁର ଏବଂ ପାଟନା ରାଜ୍ୟ । ଫଳତଃ ମାନ୍ଦ୍ରାଜ, ବୋମ୍ବାଇ ଏବଂ ବଙ୍ଗଳା ତିନି ପ୍ରେସିଡେନ୍ସି ଏ ରାଜ୍ୟର ତିନି ଦିଗରେ ସଲଗ୍ନ । ପୂର୍ବେ ଏ ରାଜ୍ୟର ପରିମାଣ ଥିଲା ୨୦୬୪ ବର୍ଗମାଇଲ । କନ୍ଧମାନେ ଅଶାସିତ ହେବାରୁ କନ୍ଧମାଳ ଖଣ୍ଡ ୮୦୦ ବର୍ଗ-ମାଇଲ ଏ ରାଜ୍ୟରୁ ପୃଥକ୍ ହୋଇ ବଙ୍ଗଳା ଗଭର୍ଣ୍ଣମେଣ୍ଟଙ୍କ ଖାସ୍ ଦଖଲକୁ ଆସିଅଛି । ବୌଦର ଲୋକ ସଂଖ୍ୟା ୧୮୭୨ ଖ୍ରୀଷ୍ଟାବ୍ଦରେ ୬୬୦୫୫ ଥିଲା । ବିଗତ ଲୋକସଂଖ୍ୟାରେ ୮୮୨୫୩ ହୋଇଅଛି । ଏ ରାଜ୍ୟର ରାଜଗଣ ମୋଗଲ, ମହାରାଷ୍ଟ୍ର ଏବଂ ଇଂରାଜ ଦରବାରକର୍ତ୍ତୃକ ହେଜା-

ଗଣେଶ ପ୍ରତି ସମ୍ମାନ ଓ ଅଦେୟପୂର୍ବ ଦେଖାଇ ସୁଖ୍ୟାତି ଅର୍ଜନ କରିଅଛନ୍ତି । ଇଂରାଜ ସେନା ଏହି ରାଜ୍ୟ ଭେଦ କରି ପୁରୀ ଯାତ୍ରା କରୁଥିବା ବେଳେ ବୌଦରାଜ ସେନାମାନଙ୍କର ସାହାଯ୍ୟ ଓ ସତ୍କାର କରିଥିଲେ । ତେଣୁ ଇଂରାଜରାଜ ଏହାଙ୍କୁ "ସ୍ୱସ୍ତି ଶ୍ରୀ ଦେଓ ଲକ୍ଷଦୁର୍ଗାଧିପତି ଷ୍ଟାଡ଼ଶଖଣ୍ଡମଣ୍ଡଳେଶ୍ୱର" ଉପାଧିରେ ସମ୍ମାନିତ କରିଥିଲେ । ମହାରାଷ୍ଟ୍ରୀୟମାନେ ନାଗପୁରରୁ ସୋନପୁରକୁ ଚୌଥ ଆଦାୟ କରିବାକୁ ଆସିଥିଲେ । ସୋନପୁର ପ୍ରଜାମାନେ ବିଦ୍ରୋହୀ ହୋଇ ସେମାନଙ୍କୁ ଆକ୍ରମଣ କରିବାରେ ସେମାନେ ବୌଦକୁ ପଳାଇ ଆସିଥିଲେ । ବିଦ୍ରୋହୀମାନେ ସେମାନଙ୍କୁ ହତ୍ୟା କରିବା ସଙ୍କାଶେ ପଶ୍ଚାଦ୍ଧାବିତ ହୋଇ ବୌଦ ରାଜ୍ୟରେ ପ୍ରବେଶ କଲେ । ବୌଦାଧିପତି ବିଦ୍ରୋହୀମାନଙ୍କୁ ଗିରଫ୍ତାର କରି ନାଗପୁର ଭୋଁସଲାଣ ଦେଲେ । ଶରଣାଗତ ମହାରାଷ୍ଟ୍ରୀମାନଙ୍କୁ ରକ୍ଷା କଲେ । ମହାରାଷ୍ଟ୍ରାଧିପତି ସନ୍ତୁଷ୍ଟ ହୋଇ ବୌଦରାଜଙ୍କୁ "ସ୍ୱସ୍ତି ଶ୍ରୀ ପ୍ରବଳପ୍ରତାପାଦିତ୍ୟପ୍ରତାପ ଦାନଦକ୍ଷ ଷ୍ଟାଡ଼ଶଖଣ୍ଡବାଦସାହ" ଉପାଧି ଦାନ କରି କର-ପ୍ରଦାନରୁ ସମ୍ପୂର୍ଣ୍ଣ ମୁକ୍ତି ଦେଇଥିଲେ ।

ମୋଗଲ ଶକ୍ତିର ପତନ ଉତ୍ତାରେ ଭାରତରେ ଗୋଟାଏ ପ୍ରକାଣ୍ଡ ବିପ୍ଳବ ଘଟିଥିଲା । ଏମନ୍ତ ସମୟରେ ଲୁଟିଆରାମାନଙ୍କୁ ସୁଯୋଗ ପଡ଼ି ଗଲା । ଅଫଗାନ, ମହାରାଷ୍ଟ୍ରୀ ଏବଂ ଜାଠ ପ୍ରଭୃତି ସାମରିକ ଜାତି ବିରାଟ ସେନା ସାଜି ନାନା ଦେଶ ଲୁଣ୍ଠନ କଲେ; ଲୁଣ୍ଠିତ ଧନରେ ଦଳ ବଳ ବଢ଼ାଇଲେ । ଚାରି ଆଡ଼େ ଚହଳ ପଡ଼ି ଗଲା । ଧନ ପ୍ରାଣ ରକ୍ଷା ଲାଗି ଉତ୍ତରପଶ୍ଚିମ ପ୍ରଦେଶ ଓ ମଧ୍ୟପ୍ରଦେଶରେ ଆତଙ୍କ ପଡ଼ିଲା । ବୌଦ ରାଜ୍ୟରେ "ପିଣ୍ଡାରୀ ଭାଗୁଡ଼ି" କଥାଟା ଅବଶ୍ୟ ଲୋକମୁଖରୁ ଶ୍ରୁତ ହୁଏ । ପିଣ୍ଡାରିମାନେ ଆସୁଅଛନ୍ତି ଶୁଣିଲେ ରାଜା ପ୍ରଜା ଧନ ପ୍ରାଣ ଘେନି ପଳାଇ ଗଭୀର ଅରଣ୍ୟ ବା ପର୍ବତ କନ୍ଦରରେ ଲୁଚି ରହୁଥିଲେ । ଏପରି କେତେ କାଳ ଗଲା । ପିଣ୍ଡାରୀମାନଙ୍କର ଜୁଲମ୍ କ୍ରମରେ ଇଂରାଜ ଶକ୍ତି ଓ ନବୋପାର୍ଜିତ ଇଂରାଜ ରାଜ୍ୟକୁ ବାଧିଲା । ୧୮୧୭ ଖ୍ରୀଷ୍ଟାବ୍ଦରେ ଗବର୍ଣ୍ଣରଜେନେରାଲ ମହାମତି ଲର୍ଡ଼ ହେଷ୍ଟିଂ ଏକ ଲକ୍ଷ ଚଉଦ ହଜାର ସୈନ୍ୟ ସଂଗ୍ରହ କରି ଏମାନଙ୍କୁ ପରାସ୍ତ, ହତ, ଏବଂ ଅନାହାରରେ ଅରଣ୍ୟ ମଧ୍ୟରେ ମୃତ୍ୟୁମୁଖରେ ପତିତ କରାଇ ଛିନ୍ନ ଭିନ୍ନ କରାଇ ଦେଲେ । ଶାନ୍ତିରକ୍ଷା ହେଲା, ବ୍ରିଟିଶର ଜୟ ପ୍ରତିଷ୍ଠିତ ହେଲା । ଲୋକେ ନିଶ୍ଚିନ୍ତ ହେଲେ । ପିଣ୍ଡାରି ଲୁଟିଆରମାନଙ୍କର ଅତର୍କିତ ଆକ୍ରମଣରୁ ରକ୍ଷା ପାଇବାଲାଗି ରେଢ଼ାଖୋଲ ଓ ବୌଦର ନୃପତିଙ୍କ ଆବାସ ଚତୁଃପାର୍ଶ୍ୱ ବାଉଁଶ ବଣଦ୍ୱାରା ଆବୃତ କରା ହୋଇଥିଲା । ଏବେ ସେ ଗୁଡ଼ାକ ଫୁଲି ମରୁଅଛି । ବୌଦ ଅତି ପ୍ରାଚୀନ ହିନ୍ଦୁରାଜାଧିକୃତ ରାଜ୍ୟ ହେଲେହେଁ ଏହାର ଶ୍ରୀ ଓ ସଭ୍ୟତାର ଅଭାବର ହେତୁ କଣ ? ହେତୁ ଆଉ କିଛି ନୁହେ, ବହୁ ଅନାର୍ଯ୍ୟଙ୍କ ସଂସ୍ରବ । ଏ ଦେଶଟା ଅନାର୍ଯ୍ୟ ଅକର୍ମା ଲୋକରେ ପରିପୂର୍ଣ୍ଣ । ଭଲ ଜାତିର ସଂଖ୍ୟା ଅତି ଅଳ୍ପ । ନିଜ ବୌଦରାଜ-ସ୍ଥାନରେ ନିଷ୍କର୍ମା ଜାତି ଅଧିକ । ବଙ୍ଗରା-ଲୟର ଅଦୂରରେ ସ୍ତୁପାକୃତ ଗବାସ୍ଥି ଦେଖିଲେ ହାଡ଼ପଡ଼ାର ପରିଚୟ ମିଳେ । ରାଜଧାନୀ ଦେଶର ମୁଖ । ମୁଖ ଦେଖିଲେ ଦେହସୌଷ୍ଠବ ଜଣା ପଡ଼େ । କେବଳ ରାଜଧାନୀ ଦେଖି ନାହିଁ, ଦେଖିଛୁଁ ପାଟନା ରାଜ୍ୟରୁ ଦଶପଲ୍ଲା ପର୍ଯ୍ୟନ୍ତ ପ୍ରାୟ ୭୦।୮୦ ମାଇଲ ପୂର୍ବ ପଶ୍ଚିମ ତେଲ ଓ ମହାନଦୀର ଦକ୍ଷିଣ ତୀରରେ ଏ ରାଜ୍ୟ ଲମ୍ବମାନ । ନଦୀର ଆନୁକୂଲ୍ୟ ପାଇ ମଧ୍ୟ ଏ ରାଜ୍ୟର କୃଷିର ଉନ୍ନତି ଯେ ହୋଇ ନାହିଁ, ଏହାର କାରଣ କୃଷିକର୍ମା ପ୍ରଜାର ଅଳ୍ପତା । ଏ ଦେଶର ଅଧିକାଂଶ ଅଧିବାସୀ ପାଣ ବା ଗଣ୍ଡା ଓ କନ୍ଧ । ଗଣ୍ଡା ଅତି ହୀନ ଜାତି । ଚୋରି ଏମାନଙ୍କର ଆଦରଣୀୟ ପେସା । କାରାଗାର ଗଣ୍ଡା ଓ ପାଣରେ ପୂର୍ଣ୍ଣ । ଦେବାନ୍ ଶ୍ରୀଯୁକ୍ତ ମଧୁସୂଦନ ରାଉତରାୟଙ୍କ

ବୌଦ୍ଧ-ହସ୍ତରେ ଏ ଦେଶ ଶାସିତ ହୋଇ ଥିବାରୁ ରକ୍ଷା ଅଛି । ରାଜା ଯୋଗେନ୍ଦ୍ର ଦେବ ଶାନ୍ତିପ୍ରିୟ ସୁଧୀର ଓ ଧାର୍ମିକ । ସ୍ୱତନ୍ତ୍ର ସନ୍ତାନାଭାବରୁ ଭଗ୍ନ ଉତ୍ତରାକାଂକ୍ଷୀ ସକାଶେ ଚିନ୍ତିତ । ଏକା, କ୍ରୋଧ ଜେମାଦେଶମାନଙ୍କର ଉଚ୍ଚ ଜାନକୁଳରେ ପରିଣୟସମ୍ବନ୍ଧ । କେବଳ କ୍ରୋଧ ପରମ ଶତ୍ରୁ, ଜୀବନ-ଦାହର ଅଗ୍ନି । କାର୍ଯ୍ୟସାଧନର ମୂଳନାଶ ପଦସ୍ଖଳନଣି କ୍ରୋଧ ଅସିଲା । ଧର୍ମ ସଙ୍ଗେ ସଙ୍ଗେ କ୍ରୋଧକୁ ବଦାୟ କରିଦେଲେ ପ୍ରାଣରେ ଆଖ ଲାଗେ ନାହିଁ । କନ୍ମଦାତା କର୍ମଦାତା ନୁହେ । "ଉଦ୍ୟମେ ନ ହି ସିଦ୍ଧ୍ୟନ୍ତି କାର୍ଯ୍ୟାଣି ନ ମନୋରଥୈଃ । ନ ହି ସୁପ୍ତସ୍ୟ ସିଂହସ୍ୟ ପ୍ରବିଶନ୍ତି ମୁଖେ ମୃଗାଃ ।" ଦେବାନ ସାହେବ ଅଶେଷ କାର୍ଯ୍ୟମାନ ସାଧନ କରି ରାଜା ମହୋଦୟଙ୍କୁ ନିଶ୍ଚିନ୍ତ କରାଇବେ । ଏଠା ପ୍ରାଚୀନ କୀର୍ତ୍ତି ରାମନାଥମନ୍ଦିର । ଏକ ବେଢ଼ାରେ ତିନି ଶିବାଳୟ । ଭୁବନେଶ୍ୱର ମନ୍ଦିରର ଅନୁକରଣରେ କାରୁକାର୍ଯ୍ୟଖଚିତ ଡ଼ାଲୀପଥରରେ ନିର୍ମିତ । ଶକ୍ତି ଓ ଶିବଲିଙ୍ଗମାନ ସେଠାରେ ମୁକୁନ୍ଦପ୍ରସ୍ତର । ନବପ୍ରାସାଦ ନିର୍ମାଣରେ ରାଜା ବିଶେଷ ମନୋଯୋଗୀ ହୋଇଅଛନ୍ତି । ସ୍ୱୟଂ କାର୍ଯ୍ୟ ଦେଖୁଅଛନ୍ତି—ସମସ୍ତର ତତ୍ତ୍ୱାବଧାନ କରୁ-ଅଛନ୍ତି । ବସିଲାଠାରୁ କାମିକା ବଡ଼ ।

ବୌଦ୍ଧ ବନପ୍ରଧାନ ଦେଶ । ମହାନଦୀର ସବ-ଶର ଦକ୍ଷିଣ ଭାଗ ବନ ଦଣ୍ଡପାଟ । ବନମାନେ ଅବହମାନ କାଳ ଏ ଦେଶର ଅଧିବାସୀ । ବନମାଳରେ ପ୍ରାୟ ଅର୍ଦ୍ଧ ଲକ୍ଷ ବନଙ୍କ ବାସ । ବନର ବଳକାରକ ଆହାର ପେଜ । ଗରମ ଟାଳ ଗରମ ପେଜ ଅଗ ଫୁଙ୍କି ଫୁଙ୍କି ଖାନ୍ତି । ତହିଁ ଉପରୁ ଭାତଟା ଭୋଜନ ହୁଏ । ମହୁଲମଦ ଅମୋଦକର ପାନୀୟ । ମହୁଲଟା ବାସ୍ତବିକ ତେଜସ୍କର ଓ କାର୍ଯ୍ୟକାରକ । ବଲିହଡା ବ୍ରିକ୍‌ଗେର ଏଣ୍ଡ୍ ଲୋଭିଣ୍ଡ୍ରିପ୍ଲାନ୍ ଅନୁଯାୟୀ ଅଙ୍ଗନାମାନେ ବନସ୍ତ୍ରୀ ବପୁ ଓ ରକ୍ତର କାନ୍ତି ପାଇବାନିମିତ୍ତ ହାଣ୍ଡି ହାଣ୍ଡି ମହୁଲ ପଚାଇ ଉଦରସ୍ଥ କରନ୍ତି । ଏପରି କରିବାର କାରଣ, ସେମାନେ ସ୍ୱକୀୟ ହେଲେ ସୁପୁରୁଷଙ୍କ ବରଣୀୟା ହେବେ । ମହୁଲରେ ଏତେ ମଜା ଅଛି । ଆମ୍ଭେମାନେ ମହୁଲ ବଣରେ ବାସ କରି ତାହାର ଗୁଣ କଣ ବୁଝିନୁ ? ବୁଝିଛନ୍ତି ଏଙ୍ଗ୍ଲୋଇଣ୍ଡିଆନ୍ ଆଉ ବୁଝିଛନ୍ତି ବନେ ! ବନେ ମହୁଲମଦ ପ୍ରସାଦରୁ ଗୋପିତ ହୈତ୍ୟ ରାଜ୍ୟରେ ନିରସିଦ୍ଧ ! ଏମାନଙ୍କୁ ଲୋକେ ବନସିଦ୍ଧ ବୋଲନ୍ତି । ବନମାନେ ନିର୍ଭୀକ—ଦୃଢ଼କାୟ, ବଳଶାଳୀ । ଏମାନଙ୍କର ଅସ୍ତ୍ର, ଟାଙ୍ଗି ଓ ଧନୁବାଣ । ଶୁଣ୍ଡି ମାଗିଆ, ବନ୍ଧୁ, ଓ ଗଣ୍ଡା ଏମାନଙ୍କର । ଗଣ୍ଡାମାନେ ମଲା ଗୋରୁ ଖାଇ ଥାନ୍ତି । ବନେ ଜୀଅନ୍ତା ବଧ କରି ଖାନ୍ତି । ବନମାନେ ଗଣ୍ଡାଙ୍କ ପରି ଚୋର ନୁହନ୍ତି, ସ୍ୱଳ୍ପସ୍ୱଭାବ ନୁହନ୍ତି । ବନ୍ଧୁଣୀମାନେ ମୁଣ୍ଡିଆନ ଟଙ୍କା କୁଟାନ୍ତି, କଟିଠାରୁ ଜଳ ଭାଗ ବସନାବୃତ କରନ୍ତି । ବକ୍ଷ ଅନାବୃତ । ସତ୍ୟ-ଯୁଗରେ ସନ୍ତାନର ଅଧିକାର । ପୁରୁଷକୁ ଲୁଚାଇବାର କଣ ଅଛି ? ଆଦମ ଜାକୁଚିଠାରେ ଆଦମ ଭାବ । ସଭ୍ୟ ସମାଜରେ ଲୋଭ ଅଧିକ, ଲଜ୍ଜା ଛଳି ଅଧିକ । ବନପଥ, ସଦର ଲୋକ ଦେଖିଲେ ବନ୍ଧୁଣୀମାନେ କୁଚଯୁଗଳ ଖଣ୍ଡିଏ କନାରେ ଘାଙ୍କି ରଖନ୍ତି । ଅଜ୍ଞାନଠାରେ ଲୋଭ ନାହିଁ । ଜ୍ଞାନଠାରେ ଲୋଭ ନାହିଁ । ମନୁଷ୍ୟ-ସ୍ୱଭାବର ଦୁଇ ସୀମାରେ ଲୋଭ ନାହିଁ । ଜ୍ଞାନ ଅଜ୍ଞାନର ମିଶାମିଶି ମଧ୍ୟ ଭାଗଟା ଲୋଭର ଘର ।

ବନେ ମୃତଦେହ ପୋଡନ୍ତି, ମୃତର ସମାଧି-ଠାରେ—ପ୍ରୟୋଜନ ହେଲେ—ମଦ କୁକୁଡ଼ା ଭୋଗ ଦେଇ ପିତର ଜଗାନ୍ତି, ଅର୍ଥାତ୍ ପିତୃଲୋକଙ୍କୁ ଜାଗ୍ରତ କରନ୍ତି । ଦୂରରେ ଅତୀତ କାଳରୁ ଏମାନେ ଦଳବଦ୍ଧ ହୋଇ ବନପର୍ବତ-ସମାକୀର୍ଣ୍ଣ ପ୍ରଦେଶରେ ବାସ କରୁଅଛନ୍ତି । ଏମାନଙ୍କର ବନ୍ୟ ସ୍ୱଭାବ ବଦଳାଇ ନଗର ସେନାଦଳରେ ସୁଶିକ୍ଷା ଦେଲେ ଏମାନେ ଆମ ଇଂରାଜ ସମ୍ରାଟଙ୍କର ଗୋରଖା ସେନାପରି କର୍ମଠ ସେନା ହୁଅନ୍ତେ ।

ଆମ୍ଭମାନଙ୍କ ଏହି ଭାରତବର୍ଷ ପର-ପ୍ରୀତି-ସମ୍ପନ୍ନ ନରପତିର ! ତେଣୁ କୋଟି ସେବକ— ତାମସା କଥା କି ! ଦଳ ଦଳ କରି ଏମାନଙ୍କୁ ପ୍ରସ୍ତୁତ କରାଇଲେ ବହିଃଶତ୍ରୁ-ହସ୍ତରୁ ଇଂରାଜ ଶାସନ ତଳେ ଅଚ୍ୟୁତ ରଖିବା ବିଚିତ୍ର କଣ ? ଭଗବାନ୍ କରନ୍ତୁ ଭାରତ ଓ ଇଂଲଣ୍ଡର ହୃଦୟ ଏକ ହେଉ । ଭାରତ ବିନା ଇଂଲଣ୍ଡର ଗତି ନାହିଁ, ଇଂଲଣ୍ଡ ବିନା ଭାରତର ଗତି ନାହିଁ । ତୁମ୍ଭ ଆମ୍ଭ କଥାରେ କଣ ହେବ ? ଏକା କାଳ ଏ ସମ୍ବନ୍ଧ ଭାବ ଶିଖାଇ ଦେବ । ହରି, ହରି ! "କାଳଃ କ୍ରୀଡତି ଗଚ୍ଛତ୍ୟାୟୁସ୍ତଦପି ନ ମୁଞ୍ଚତ୍ୟାଶାବାୟୁଃ ।"

ଶ୍ରୀ ଭୋଳାନାଥ ସାମନ୍ତରାୟ ।

---

## ବେଙ୍ଗୁଲି କଥା ।

ଏକ ଦେଶରେ ଗୋଟିଏ ପଣ୍ଡା ଥାଏ । ସେ ପଣ୍ଡା ଏକ ବାଇଗଣ ବାଡ଼ି କରିଥାଏ । ହାଟପାଳକୁ ହାଟପାଳ ବାଇଗଣ ତୋଳେ ନେଇ ବିକେ, ପେଟ ପୋଷେ । ଗୋଟିଏ ବାଇଗଣ ଗଛରେ ଭଲା ମୁର୍ ମୁର୍ ବାଇଗଣଟିଏ ହୋଇଥାଏ । ସେ ବାଇଗଣଟିକୁ ଛିଣ୍ଡାଇବାକୁ ପଣ୍ଡାର ହାତ ଗଲା ନାହିଁ । ସେ ବାଇଗଣକୁ ଲୁଗା ଖଣ୍ଡେ ବାନ୍ଧି ଦେଲା ମଞ୍ଜି ରଖିବ ବୋଲି । ଏଣେ ହେଉଥାଏ କଅଣ ? ପଣ୍ଡିଆଣୀର ମାସ ଗଡ଼ୁଥାଏ । ପଣ୍ଡିଆଣୀର ଖାଇ ମନ ହେଲା । ସେ ବାଇଗଣଟି ଉପରେ ପଣ୍ଡିଆଣୀର ଲୋଭ ଅଛି ଥାଏ । ଏ କଥା ପଣ୍ଡାଙ୍କୁ କହିବ ବୋଲି ନିଜ ମାଡ଼ିଲା । ଦିନେ ପଣ୍ଡା ଯାଇଛି ହାଟକୁ, ପଣ୍ଡିଆଣୀ କଅଣ କଲା—ସେ ବାଇଗଣଟିକୁ ତୋଳେଇ ନେଇ ଭରତା କରି ଖାଇଲା । ପଣ୍ଡା ଆସିଲା ହାଟରୁ; ଦେଖିଲା ମଞ୍ଜି ବାଇଗଣଟି ନାହିଁ । ବାଛି ବାଛି ଆଉ କରିଥିଲୁ ମଞ୍ଜି ବାଇଗଣଟିକୁ ରଖିଥିଲା, ତାକୁ କିଏ ତୋଳେଇ ନେଲା । ହେତେ ବାନ୍ଧିଲି ଦେବେଇଲି, ଧରମକୁ ସାକ୍ଷୀ ଦେଲା, କହିଲା 'ହେ ଧରମ, ତୁ ଥେଲେ କହିବୁ । ବାଇଗଣଟିକୁ ଯେ ତୋଳେଇଲା, ତାର ଗୋଟିଏ ବେଙ୍ଗୁଲି ହଉ ।' ଯା କହି ପଣ୍ଡା ଗଲା ତା ଦୁଃଖରେ । ପଣ୍ଡିଆଣୀର ଗଣ୍ଡି ଗଣ୍ଡି ଖସି ଦଶ ମାସ ପୂରିଲା । ଶେଷକୁ ସବୁ ପଣ୍ଡିଆଣୀ ଗୋଟିଏ ମଇ ବେଙ୍ଗୁଲି ଝିଅ ଜନମ କଲା । ପଣ୍ଡିଆଣୀ କଅଣ କରିବ । ମୁଣ୍ଡ ପୋତି ରହିଲା । 'ଆପଣା ହସ୍ତେ କୃତ୍ୟା ଛେଦ, କେ ତାର ଅଛି ପ୍ରତିବାଦ ।' ପଣ୍ଡାଙ୍କୁ ତ ଆଗରୁ ବାଇଗଣ କଥା କହି ଦେଇଥେଲେ ଏଣ୍ଡାକଟକେ ଯାଇଥାନ୍ତା । ପଣ୍ଡା ସେ ବେଙ୍ଗୁଲିଟିକୁ ଦେଖି କେତେ ମୁଣ୍ଡ କୋଡ଼ିଲା । ତାଏ ଯା ଜାଣିଥିଲି ପଣ୍ଡାର ଅପଣା ଗାଳି ଆପଣା ଉପରେ ପଡ଼ିବ ବୋଲି । ପଡ଼ାକୁ ସିନା ବେଙ୍ଗୁଲି । ହେଲେ କଅଣ ହେବ ପଣ୍ଡିଆଣୀର ତ ଆପଣା ପେଟର ପିଲା । ଲକ୍ଷେ ଅପ୍ରିୟ ହେଲେ ପଣ୍ଡିଆଣୀକୁ ଗ୍ରାହ୍ୟନର ହେଉଥାଏ । ପଣ୍ଡିଆଣୀ ନିତି ବେଙ୍ଗୁଲିକୁ ହଳଦି ଲଗେଇ ଦିଏ, ମାଲପା ଘସି ଦିଏ, କେତେ ସୁହାଗ କରେ । ବେଙ୍ଗୁଲିଟି ବଡ଼ ହେଲା । ଦିନେ ସେ ଗାଁ ପାଖରେ ଯାଇ ବସିଥାଏ । ବେଙ୍ଗୁଲି ମାକୁ ଲଗେଇଲା । ଯତ ଦେଖି ଯିବ ବୋଲି । ମା କେତେ ବୁଝେଇଲା 'ତୁ ଏତେ ବଙ୍କଟେ, ଦିଏ ଯାଉରେ ଛତେ ମାଡ଼ ପଡ଼େଇବ, ପଦାରେ ଗଲେ ଛତେ କୁଅ ନେଇ ଯିବ, ତୁ ଯାଅ ନା ।' ବେଙ୍ଗୁଲି ନ ବୁଝିବା କଲା । ପଛକୁ ଏକା ଜିଦ କଲା । କଅଣ କରିବ ? ବେଙ୍ଗୁଲିକୁ ପଣ୍ଡିଆଣୀ ହଳଦି ଲଗେଇ ଦେଲା, ମାଲପା ଲଗେଇ ଦେଲା, ନଳା ଖଣ୍ଡକରେ କଉଡ଼ି ଗୁନ୍ଥା ବାଡ଼ା ବାନ୍ଧି ବେଙ୍ଗୁଲି ଅଣ୍ଟାରେ ଗୁନ୍ଥେଇ ଦେଲା ।

ବେଙ୍ଗୁଲି ବାହାରିଲା ଯାଉଛନ୍ତି । ଯାଉଁ ଯାଉଁ ବାଟରେ ଏକ ପୋଖରୀ ପଡ଼ିଲା । ଗାଈ ଅଡ଼ାକୁ ରହିଲା କେହି ନାହିଁ । ବେଙ୍ଗୁଲି ଖୋଲ ଭିତରୁ ଗୋଟିଏ ଉତ୍ତମ ସୁନ୍ଦର ମାଇପିଟିଏ ବାହାରିଲା, ସେ ପୋଖରୀରେ ଗାଧୋଇଲା ପାଧୋଇଲା । ଏହି ବେଳେ ଜଣେ ବ୍ରାହ୍ମଣ ଟୋକା ଆସି ପୋଖରୀ କୂଳରେ ପହଞ୍ଚିଲା । ସେ ମାଇପିଟି ଟୋକାକୁ ଦେଖିଲାକ୍ଷଣି ତରବର ହୋଇ ସେ ବେଙ୍ଗୁଲି-ଖୋଲ ଭିତରେ ପଶିଗଲା । ଦେଖିଲା ବେଳକୁ ସେଠାରେ କେହି ନାହିଁ, ବେଙ୍ଗୁଲିଟିଏ । ବ୍ରାହ୍ମଣ ଟୋକା ଦେଖି ଭାରି ଆଚମ୍ବିତ ହେଲା । ମନ କଥା ମନେ ଥାଏ, ପାଖ ଆଖ ଲୋକଙ୍କୁ ପଚାରିଲା, ସେ ବେଙ୍ଗୁଲିଟି କିଏ ? ସମସ୍ତେ କହିଲେ ସେ ଅମୁକ ଗାଁ ପଣ୍ଡାର ଝିଅ । ସେ ଟୋକା ଆପଣା ଘରକୁ ଫେରିଗଲା, ଖାଇଲା ନାହିଁ, ପିଇଲା ନାହିଁ, ଏକା ଜିଦ ଧଇଲା ସେ ବେଙ୍ଗୁଲିକି ବାହା ହେବ ବୋଲି । ମରମ କଥା ତ ପଦାଲୋକ କେହି ଜାଣି ନ ଥାନ୍ତି । ଯେ ଶୁଣିଲା ସେ ହସିଲା । ସମସ୍ତେ ଛି ଛି କଲେ । ହେଲେ କଅଣ ହେବ, ଟୋକାର ଏକା କଥା । ପଣ୍ଡା ପଣ୍ଡିଆଣୀଙ୍କ ପାଖକୁ ମଣିଷ ଗଲା । ପଣ୍ଡିଆଣୀ ଆଗ କରି ମଙ୍ଗିଲା । ବାହାଘର ହେଲା । ଘାଟମଙ୍ଗଳା ସଇଲାରୁ ପଣ୍ଡା ବୋହୂ ଭାର ଦେଇ ବେଙ୍ଗୁଲିଟିକି ତା ଶାଶୁଘରକୁ ବିଦା କରି ଦେଲା । ବେଙ୍ଗୁଲି ଶାଶୁ ବେଙ୍ଗୁଲିକି ଦେଖିଲା, କେତେ ରଡ଼ି ଛାଡ଼ି ହେଲା, 'କଅଁଣିଘର ଝିଅ, ପୁତଖାଇଘର ଝିଅ, ମୋ ପୁଅକୁ ପାଇଲା,' ଇମିତି କେତେ ଗାଳି ହେଲା । ଏଣେ ବ୍ରାହ୍ମଣ-ଟୋକା ତା ପାଖରେ ଥାଏ, କାହାକୁ କିଛି କହେ ନାହିଁ । କଅଣ ମନେ ମନେ ବିଚାର ଭାବି ଆନନ୍ଦରେ ଥାଏ । ମାକୁ କଡ଼ କେତେ କେତେ ନେହୁରା ହୁଏ, କେତେ ଗୋଡ଼ତଳେ ପଡ଼େ;—'ମା ଲୋ ମା ! ବେଙ୍ଗୁଲିକି ଗାଳି ଦବୁ ନାହିଁଟି, ବେଙ୍ଗୁଲିକି ମାରବୁ ନାହିଁଟି' । ଶାଶୁ କ୍ୟା ଶୁଣି ଥମ୍ଭ ହୁଏ ? କାହିଁ ପୁଅ ଜନମ କରିଥିଲା, ବୋହୂଟିଏ ଆସିଥିଲେ କେଡ଼େ ଆଉ ସେବା କରିଥାଆନ୍ତା, କେତେବେଳେ ଟିକିଏ ଗୋଡ଼ ଘଷି ଦେଉଥାଆନ୍ତା, କେତେବେଳେ ଅବା ମାଳପା ଟିକିଏ ମାରି ଦେଉଥାଆନ୍ତା, କାହିଁ ଦେଖିଲାବେଳକୁ ଏକ ଫରକଟା ଗୋଡ଼, ହାତିଆ ପାଟିଆ ବେଙ୍ଗୁଲି ! ସାଇ ମାଇପେ ଦଣ୍ଡେ ନ ଲେଉ ହଡ଼ିକାହାନ୍ତି । ମନେ ମନେ ହେଉଥାଏ । ଏଣେ ପୁଅମୁହଁକୁ ତ ଚେଷ୍ଟ କହି ପାରୁ ନ ଥାଏ । ଦିନେ ଟୋକା ଯାଉଥାଏ କୁଆଡ଼େକୁ । ଶାଶୁ ବେଙ୍ଗୁଲିକି ନମୁନ ଟାଙ୍କେ ଝୋଟିଲା । ମୁଠାଏ ଖଡ଼କା ତା ଉପରେ ଜଳେଇଦେଲା, ପଛକୁ ବେକ-ରେ ହାବୁକା ଦେଇ ପଦାକୁ ଗଡ଼ଦେଲା । ବେଙ୍ଗୁଲି ଯାଇ ବାଡ଼ିଅଡ଼େ ଗୋଟିଏ ସାରୁ ଗଛ ମୂଳେ ପାଣ୍ଡେଇ ପାଡ଼ି ବସିଥାଏ । ଟୋକା ସନ୍ଧ୍ୟାବେଳକୁ ବୁଲି ବୁଲି ଘରକୁ ଆଇଲା । ଦେଖିଲା ଘରେ ବେଙ୍ଗୁଲି ନାହିଁ । ମାକୁ ପଚାରିଲା, ମା କହିଲା କେଜାଣି । ଟୋକା କେତେଆଡ଼େ ଖୋଜିଲା । ଆଉ ପାଇଲା ନାହିଁ । ପଛକୁ ଦେଖିଲାବେଳକୁ ବେଙ୍ଗୁଲି ବାଡ଼ିଅଡ଼େ ସାରୁଗଛ ମୂଳେ ବସିଛି । ଟୋକା ଡାକିଲା 'ହଇଲୋ ବେଙ୍ଗୁଲି ଘରକୁ ଆ' । ବେଙ୍ଗୁଲି ଆଉ ସେଠଉଁ ଉଠିବାକୁ ନାହିଁ । କହିଲା "ତୋ ମା ମତେ ଘଟ କଲା, ପାଟ କଲା, ଖଣ୍ଡୁଣି ବାଡ଼ରେ ପଣେ ମାଇଲା । ବେକ ଧରି କରି ବାହାର କଲା । ଆଉ କି ବେଙ୍ଗୁଲି ଘରକୁ ଯାଏ ?" ଶାଶୁ ଆସିଲା ବେଙ୍ଗୁଲିକି ଡାକିବାକୁ 'କି ଲୋ ବେଙ୍ଗୁଲି, ଘରକୁ ଆ ।' ବେଙ୍ଗୁଲି କହିଲା "ତୁ ପରା ମତେ ଘଟ କଲୁ, ପାଟ କଲୁ, ଖଣ୍ଡୁଣି ବାଡ଼ରେ ପଣେ ମାଇଲୁ, ବେକ ଧରି କରି ବାହାର କଲୁ; ଆଉ କି ବେଙ୍ଗୁଲି ଘରକୁ ଯାଏ ?" ଫେର ପଛକୁ ଟୋକା କେତେ ନେହୁରା ହେଲା, ଶାଶୁ ଦାନ୍ତରେ କୁଟା ଦେଲାରୁ ବେଙ୍ଗୁଲି କହିଲା "ସାରୁପତ୍ର ହ'ଖଣ୍ଡ ପେଣ୍ଡାଳ ହେବ, ଶବଡ଼ାଙ୍ଗ ହ'ଖଣ୍ଡ ଖଟିଆ ହେବ, ଝିଙ୍କର ହ'ଖଣ୍ଡ ବାଇଦ ହେବ, ଯାଉଯାଉ ପିଲା ରୁଣ୍ଡ

ହେବେ, 'ବେଙ୍ଗୁଲି ଅଇଲାବୋଲି' ଡେକା ପଡ଼ିବ, ତେବେ ଯାଇଁ ବେଙ୍ଗୁଲି ଘରକୁ ଯିବ ।' ପଛକୁ ଶାଶୁ କ'ଣ କରିବ ? 'ଜୋଇଁ ତ କ'ଣ ଖୋଉଛନ୍ତି ସେ, ଘରେ ରହିବେ ନାହିଁ ସେ ।' ଶାଶୁ ଯାଇ ସାତଗାଁ ଉପିଲିଙ୍କୁ ଲୁଣ୍ଡ କଲା, ଜର-ଢ଼ାଙ୍କ ବାଂଶ ଏକାଠି କଲା, ସାତୁଳ ଗ୍ରା ବାଂଶୁ ପେଁକାନ କଲା, ଛୋଟର ବାଂଶୁ ବାଉଦ ହେଲା । ବେଙ୍ଗୁଲି ଅଇଲା ବୋଲି ଡେକା ପଡ଼ିଲା, ବେଙ୍ଗୁଲି ଯାଇ ଘରକୁ ଅଇଲା । ପରେ ଥାଏ । ବେଙ୍ଗୁଲି କ'ଣ କରେ :—ଦିନଯାକ ବାଣ୍ଡିଆଳି କୋଣରେ ପଶିଥାଏ । ଦେଖେ କେହି ନାହାନ୍ତି, ସେତେବେଳେ ସେ ମାଇପିଟି ବେଙ୍ଗୁଲି-ଖୋଳରୁ ପଦାକୁ ଅସି ବାଣ୍ଡି ଲୁଗେଇ ଥୁଏ, ଭାତ ତ'ଣ ରନ୍ଧା ଥୁଏ, ସାଗ ତ'ଣ ଆଠ ରନ୍ଧା କରି ରଖି ଦିଏ, ଦୁଧ ଆଣି ଦିଏ, ପଛକୁ ଟୋପିଏ ଦୁଧ ପିଇ ଫେର ତିଏ ଅଇଲା ବେଳକୁ ଖୋଳରେ ପଶିଯାଏ । ସମସ୍ତେ ଦେଖି ଚାହିଁ ରହନ୍ତି । ଏଏ କେତେ କଥା କହିଲେ, ଘରେ ଟୋକା ଯୋଉଁ ଘରେ ଶୁଏ ବେଙ୍ଗୁଲି ସେଇ ଘରେ ଶୁଏ । ଟୋକା ଶୋଇପଡ଼ିଲାରୁ ବେଙ୍ଗୁଲି-ଖୋଳରୁ ସେ ଛୋଟି ବାହାରି ପଦାକୁ ମୁଢ଼ି ଯାଏ, ଫେର ଅସି ଖୋଳରେ ପଶିଯାଏ । ଦିନେ ସେ ଟୋକା କ'ଣ କଲା, ବେଙ୍ଗୁଲି ଘରେ ଶୋଇଲାଘରକୁ ନ ଆଉଣୁ ସେ ଟୋକା ଏକ ବାଣ୍ଡି ତଳେ ଗୋଟିଏ ଧାସ ଗୋଡ଼ଉକଣ୍ଟା ରଖି ଥାଏ । ବେଙ୍ଗୁଲି ଅଇଲାବେଳକୁ ଟୋକା ମିଛରେ ମିଛରେ ଘୁଙ୍ଗୁଡ଼ି ମାରୁଥାଏ । ବେଙ୍ଗୁଲି ବିଚାରିଲା ଅବା ଟୋକା ଶୋଇଲାଣି । ସ୍ତ୍ରୀ ବିଚାରି ସେ ଖୋଳରୁ ବାହାରି ପଦାକୁ ମୁଢ଼ିବାକୁ ଗଲା । ଟୋକା ତ ଚେଇଁକରି ଶୋଇଥିଲା । ସେହିକ୍ଷଣି ଉଠିଅସି ବେଙ୍ଗୁଲି-ଚର୍ମ-ଖୋଳରେ ନିଆଁ ଲଗେଇ ଦେଲା । ସେମାନଙ୍କ ପୂର୍ବ କର୍ମ ପୋଡ଼ି ଗଲା । ସେ ମାଇପିଟି ଅସି ଦେଖିଲାବେଳକୁ କଥା ସରିଲାଣି । ଟୋକାକୁ କହିଲା 'ଅହା ! କି କଲ ! କି କଲ ! ମୋ ଖୋଳଟିକ ପୋଡ଼ିଦେଲ ! ମୁଁ କେମିତି ବଞ୍ଚିବି ? ମୋ ଦେହ ଜାଳ ପୋଡ଼ୁଛି ।' ଟୋକା କହିଲା 'ସେ କା' ଗୋଟାଏ କଥା ! ମୁଁ ଆଉ ଯାକେ ନଗରେ ପଶିଲଣି, ଯେ ଦେଖୁଛି ସେ ଛି ଛି କରୁଛି । ମୁଁ ସେ ଦିନ ପୋଖରୀକୂଳେ ତତେ ଦେଖିଥିଲି ବୋଲି ବାହା ହେଲି । ଏଣିକି ତୁ ମୁଁ ଆନନ୍ଦରେ ଘର ଦୁଆର କରିବା । ଦେହ ଜାଳ ପୋଡ଼ିଲେ ହଳଦୀ, ଘିଅ, ଚନ୍ଦନ ଲଗା ।' ଟୋକାଟା ଭାରିଯା ଦେହଯାକ ହଳଦୀ ଘିଅ ବୋଳି ଦେଇ ରାତି ପାହିଗଲା । ସକାଳକୁ ଏ ଦିନେ ଘର ଅଗଣାରେ ଶୋଇ ପଡ଼ିଲେ—ଦିନ ଅଧି ଦ'ପହର ହେଲାଣି; ଶୋଇଲା ଘର କବାଟ ବନ୍ଦ ହୋଇଛି । ଯେତେ କବାଟରେ ମାଇଲେ କବାଟ ଫିଟିଲା ନାହିଁ । ପଛକୁ ଶାଶୁ କଣା କରି ଘରେ ପଶିଲେ, ଦେଖିଲାବେଳକୁ ପୁଅ ସଙ୍ଗେ ଏକ ଦିବ୍ୟସୁନ୍ଦର ଝୋଟବରୀ ମାଇପିଟିଏ ଶୋଇଛି । କବାଟ ଫିଟେଇ ଟୋକା ଦାଣ୍ଡଅଡ଼କୁ ଗଲା ବାହାରି । ବୋହୂ କବାଟକଣରେ ଲୁଚି ଗଲା । ସମସ୍ତେ ଦେଖି ଆଚମ୍ବିତ ହେଲେ । ଡହଳ ପଡ଼ିଲା, ସାତଗାଁର ଲୋକ ଲୁଣ୍ଡ ହେଲେ । ଏ ଟୋକା ଆଗ କଥାଯାକ ସବୁ କହିଲା । ଶାଶୁଶ୍ୱଶୁର ତ ଆନନ୍ଦରେ ତଳେ ଠିଆ ହେବାକୁ ନାହିଁ, ଗାଁଯାକ ମାଇପଙ୍କୁ ଡାକି ଆଣି ଆପଣା ବୋହୂକୁ ତାଙ୍କୁ ଦେଖଉଛନ୍ତି । ଦେହୈଯାକ ଘର ଦୁଆର କଲେ, ମୁଁ ଜାଣିଲୁ କଥା ସରିଲେ ନାହିଁ ।

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ।

## ଜରା-ଆକ୍ରମଣ ।

(୧)

ଶାନ୍ତିମୟ ଜରା ତୂର୍ଣ୍ଣ ନେଣି ଦେହପୁର
ଅଲକ୍ଷିତେ ବଳେ ମୋର କରୁଅଛ ଜୁର ।
ଯୌବନ-ପ୍ରାସାଦ-ଭିତ୍ତି ମୂଳ ଅଘାତରେ
ଭାଙ୍ଗି ପଡୁଅଛି କାଟେ କମ୍ପି ଥର ଥରେ ।
ଲୋପ ଯାଉଅଛି କ୍ରମେ ଦୀପ୍ତି ନୟନର
ସାମର୍ଥ୍ୟ ଯାଉଛି ଛୁଟି ଏ ମୋ ଚରଣର ।
ମସ୍ତକର କେଶ ଏବେ ହେଲାଣି ପଳିତ
ଦୁର୍ବଳ କଣ୍ଠର ସ୍ୱର, ସବୁ ବିକଳିତ ।
ଅପ୍ରସନ୍ନା ଏବେ ନିଦ୍ରାଦେବୀ ଶାନ୍ତିମୟ
ବେଗେ ମାତ୍ର ଆସୁଅଛି କଶାଚର୍ଯ୍ୟ ଜୟ ।
ଏହି ଲଗ୍ନ ଦେହ ଘରେ ରହିଅଛି ପଡ଼ି
ଆସୁଛି ମରଣ, ମୋତେ ଭକ୍ଷି ଦେବ ଝଡ଼ି ।
ବାଧୁଅଛି ବାସନାକୁ ଯୌବନବିରହ
ବିହଳେ ଛାଡୁଛି ଯେହ୍ନେ ଛେଳି ଅଜଗର ।

(୨)

ଜରା-ଆକ୍ରମଣେ ତେବେ ହେବ କି ନିରାଶ,
ଚାହିଁବ କି ଅନ୍ତର୍ନାଦେ ବିଷାଦର ଶ୍ୱାସ ?
ନରସ୍ଥାର କଥା, ଛି ଛି, କହିବ କେମନ୍ତେ
ଅନ୍ତରରେ ଅନୁଭବ ଅନନ୍ତ ବସନ୍ତେ ?
ଜୀବନ-ବିଧାତା ପ୍ରଭୋ କରୁଣାସାଗର !
ଅନନ୍ତ ବସନ୍ତ ତୁମ୍ଭେ ଏ ମୋ ଜୀବନର ।
ନାଚି ନାଚି ଆସୁ ଜରା ଘୋର ବ୍ୟାଘ୍ରୀପର ।
ତା କ୍ରୂର ନଖାଗ୍ରଘାତେ ଯାଉ ଦେହ ଜର ।
ବିକଟ ଭ୍ରୂକୁଟୀ କରି ଆସୁ ଆଧି ବ୍ୟାଧି
ଯେତେ ସାଧିବାର ଯେତେ, ସାଧୁ ଦାଉ ସାଧି ।
ଅନନ୍ତ ଅଭୟ, ପ୍ରଭୋ, ଦେଇଛ ଅନ୍ତରେ,
ଅନନ୍ତ ଜୀବନ ଯାଏ ଛାଲ ମହାଦରେ ।
ଅନ୍ତିମ ଉତ୍ସାହ ଦେଣ୍ଡ, ଅନନ୍ତ ଅମୃତ
ହୀର ନର ପ୍ରାପ୍ୟେ ପ୍ରାଣ ହେଉଛି ନିଃସ୍ପୃହ ।

ଶ୍ରୀ ମଧୁସୂଦନ ରାଓ ।

---

## ଶିଶୁ ଓ ପକ୍ଷୀ ।

(ଶିଶୁପାଠ୍ୟ ଇଂରାଜୀ କବିତା ଅବଲମ୍ବନରେ ଲିଖିତ ।)

(୧) ଶିଶୁ ।

ସାନ ଚଢ଼େଇ ରେ ସାନ ଚଢ଼େଇ ତୁ
ମୋ ପାଖକୁ ଆସ ଧାଇଁ,
ସବୁଜ ବରଣ ପିଞ୍ଜରାଟିଏ ମୁଁ
ରଖିଛି ତୋହର ପାଇଁ ।
ଅନେକ ସୁନ୍ଦର ତୋଷ ଫୁଲମାନ
ଦେବି ମୁହିଁ ତୋତେ ଆଣି,
ସୁପକ୍ୱ ଜାଲମ୍ବ ଦେବି ଲାଗିଥିବ
ଯହିଁ ଶିଶିରର ପାଣି ।

(୨) ପକ୍ଷୀ ।

ଧନ୍ୟ ଧନ୍ୟ ମୋର ସାନ ବାଳକ ଗୋ
ତୁମର ଯତନପାଇଁ,
ନିର୍ମଳ ଶୀତଳ ପବନ ସମାନ
ମୋର ଆଉ ପ୍ରିୟ ନାହିଁ ।
ସୁରଭିତ ବନ— ଗଛେ ଯେଉଁ ସାନ
ବିଜନ ବସା ଅଛଇ,
ସୁବର୍ଣ୍ଣ-ନିର୍ମିତ ପିଞ୍ଜରାଠାରୁ ସେ
ଅନେକ ଭଲ ଅଟଇ ।

(୩) ଶିଶୁ ।

ସାନ ଚଢ଼େଇ ରେ ସାନ ଚଢ଼େଇ ତୁ
କେଉଁଠାକୁ ଯିବୁ ଉଡ଼ି,
ଯେତେବେଳେ ସବୁ ବିଲ ବାଡ଼ି ଯିବ
ବରଷା ଜଳରେ ବୁଡ଼ି ?
ଓଦା ହୋଇଯିବ ପୁଲକିତ ବର-
ଗଛ ବରଷା-ଜଳରେ.
ସାନ ଚଢ଼େଇ ରେ ସାନ ଚଢ଼େଇ ତୁ
ରହ ମୋହର ସଙ୍ଗରେ ।

(୪) ପକ୍ଷୀ ।

ନାହିଁ ନାହିଁ ନାହିଁ ସାନ ବାଳକା ଗୋ
ଉଡ଼ି ପଳାଇ ଯିବ ମୁହିଁ,
ସବୁଜ ବରଣ ବିଲ ଅଛୁ, ଅଛୁ
ନିର୍ମଳ ଆକାଶ ଯହିଁ ।
ଯେତେବେଳେ ନବ ବସନ୍ତ ଫେରିବ
ଦକ୍ଷିଣା ପବନ ସଙ୍ଗେ,
ସେତେବେଳେ ମୋର ଆନନ୍ଦ-ସଙ୍ଗୀତ
ପୁଣି ଗାଇବି ମୁଁ ରଙ୍ଗେ ।

(୫) ଶିଶୁ ।

ସାନ ଚଢ଼େଇ ରେ ସାନ ଚଢ଼େଇ ହୋ
କିଏ ଦେଖାଇବ ପଥ ?
ନିର୍ଜନ ପର୍ବତ- ପଥ ଭୟଙ୍କର
ବିଜନ ସମୁଦ୍ର-ପଥ ।
ନିର୍ବୁଦ୍ଧିଆ ପକ୍ଷୀ ଆ ଆ ରେ ମୋ ଘରେ
ମୋହର ସଙ୍ଗେ ରହିବୁ,
ନ ମାନି ମୋ ବୋଲ ପଳାଇଲେ ନିଶ୍ଚେ
ଜାଣିଆ ପଥ ହୁଡ଼ିବୁ ।

(୬) ପକ୍ଷୀ ।

ସାନ ବାଳକା ଗୋ ସାନ ବାଳକା ମୋ
ପଥ ଦେଖାନ୍ତି ଈଶ୍ୱର,
ବିଜନ ପର୍ବତ କିବା ଜନପ୍ରାଣି-
ଶୂନ୍ୟ ସମୁଦ୍ର ଉପର ।
ପ୍ରଭାତ-ପବନ ସମାନ ସ୍ୱାଧୀନ
ହୋଇ ମୁହିଁ ଉଡ଼ିଯିବି,
ସୂର୍ଯ୍ୟ କିରଣର ପଛେ ପଛେ ଯିବି
କେବେ ପଥ ନ ହୁଡ଼ିବି ।

ଶ୍ରୀ ନନ୍ଦକିଶୋର ବଳ ।

---

ଭ୍ରାତୃଦ୍ୱିତୀୟା ।*

ଆଜି ଏହି ଶୁଭ ଦିନେ ଶୁଭ ସମାଚାର,
ପବିତ୍ର, ସ୍ୱାର୍ଥଶୂନ୍ୟ,
ସୁପବିତ୍ର, ସ୍ନେହପୂର୍ଣ୍ଣ,
ଭଗିନୀର ନିମନ୍ତ୍ରଣ, ଭ୍ରାତୃ ଦ୍ୱିତୀୟାର ।
ଭୁଲି ଦୁଃଖ, ଭୁଲି ବାଧା,
ସୁବିମଳ ସ୍ନେହ-ସୁଧା,
ଭାଇଙ୍କୁ ଭଗିନୀ ଆଜି କରିବେ ଅର୍ପଣ,
ଭଗିନୀର ଏ ସମ୍ମାନ,
ବିଶ୍ୱବିଧାତାଙ୍କ ଦାନ,
ଭ୍ରାତାଙ୍କ ମଙ୍ଗଳଲାଗି ଭଗିନୀଜୀବନ ।

ଜଗତେ ଯାହାଙ୍କ ନାମ,
ପ୍ରେମସିନ୍ଧୁ ଶାନ୍ତିଧାମ,
ଯାହାଙ୍କ ସୌନ୍ଦର୍ଯ୍ୟ ପ୍ରେମେ ପୂର୍ଣ୍ଣ ବିଶ୍ୱଧାମ
ମଧୁର ମିଳନପୂର୍ଣ୍ଣ
ଯାହାଙ୍କର ଏ ଭୁବନ,
ତାଙ୍କର କରୁଣାବଳେ ସ୍ମର ସେହି ନାମ,—
ମଧୁର ସୁନ୍ଦର ଅତି,
ହୃଦୟ-ପବିତ୍ର-ପ୍ରୀତି,
ସାଦରେ ଅର୍ପୁଛି ଭାଇ ! କର ହେ ଗ୍ରହଣ;

* ଭ୍ରାତୃଦ୍ୱିତୀୟା ବଙ୍ଗଭୂମିର ଗୋଟିଏ ଅତି ଆଦରଣୀୟ ସାମାଜିକ ଅନୁଷ୍ଠାନ । ଏହା କାର୍ତ୍ତିକ ଶୁକ୍ଳ ଦ୍ୱିତୀୟା ଦିନ ଅନୁଷ୍ଠିତ ହୁଏ । ଏହି ଦିବସ ଭଗିନୀ ଭ୍ରାତାଙ୍କୁ ନିମନ୍ତ୍ରଣ କରି ତାହାର କଲ୍ୟାଣ କାମନା କରି ମସ୍ତକରେ ଟିପା ଦିଏ ଏବଂ ସ୍ୱହସ୍ତରେ ପରିବେଷଣ କରି ଆହାର କରାଏ ।

ଭାଇ ଭଗ୍ନୀ ପ୍ରାଣେ ପ୍ରାଣେ,
ମିଳି ମିଶି ଏକସଙ୍ଗେ,
ସ୍ୱର୍ଗୀୟ କରିବୁଁ ଆଜି ପ୍ରାଣର ବନ୍ଧନ ।
ସହର୍ଷେ ସାଦରେ ଭଗ୍ନୀ,
ଭ୍ରାତାଙ୍କ ମଙ୍ଗଳ ଗାଇ,
ଅର୍ପିବେ ମିଷ୍ଟାନ୍ନ ମୁଖେ, ଲଲାଟେ ଚନ୍ଦନ,
ସ୍ନେହର ପବିତ୍ର ପ୍ରୀତେ,
ସୁମଧୁର ସ୍ନେହସ୍ମୃତି
ଯେ ମହାନ୍ ସ୍ନେହ ମନ୍ତ୍ରେ "ଶମନ ଦମନ" ।
ଅନ୍ୟର ନାହିଁ ଏ ଶକ୍ତି,
ଅପାର୍ଥିବ ଅନୁରକ୍ତି,
ଭ୍ରାତା ଭିନ୍ନ କେ ଘେନିବ ଭଗ୍ନୀ-ସ୍ନେହ-ଦାନ ?
ଭ୍ରାତାଙ୍କ ମହୋଚ୍ଚ ପ୍ରାଣ
ଭଗିନୀର କ୍ଷୁଦ୍ର ଦାନ
ଘେନିବ କି ନାହିଁ ଆଜି ଭୁଲି ଆତ୍ମ-ଜ୍ଞାନ ।
ଭଗିନୀର କ୍ଷୁଦ୍ର ଶକ୍ତି,
ଭଗିନୀର ସ୍ନେହଭକ୍ତି,
ଯାଚେ ରେ ଜାଣି ଦିନ ଭ୍ରାତାଙ୍କ କଲ୍ୟାଣ;
ଜଗତର ନାରୀଗଣ,
ସହୋଦରା ସହୋଦର,
ଜାଗୁଅଛି ପ୍ରାଣେ ଆଜି ଏହି ଦିବ୍ୟ ଜ୍ଞାନ ।
ଭଗିନୀର ଭ୍ରାତା ଆଜି,
ଚନ୍ଦନ କୁସୁମେ ସାଜି,
ନବ ବର୍ଷେ ନବ ପ୍ରୀତି କରନ୍ତୁ ଗ୍ରହଣ,
ବଣମା'ର ଆଶୀର୍ବାଦେ,
ଶୁଭଦବେ ନିର୍ବାଦେ,
ସ୍ନେହର ଚନ୍ଦନ ବିନ୍ଦୁ, ପ୍ରୀତିର ମିଷ୍ଟାନ୍ନ,
ସ୍ମୃତି-ଥାଳୀ ପୂର୍ଣ୍ଣ କରି,
ବନ୍ଧୁର ହସ୍ତେ ଧରି,
ଦେବ ଗୋ ମୁଁ କିଏ ନେବ ଆସ ଭ୍ରାତା ଯାର,
ଭଗିନୀର ନିମନ୍ତ୍ରଣ—ଭ୍ରାତୃଦ୍ୱିତୀୟାର ।

ଶ୍ରୀମତୀ ରେବା ରାୟ ।

---

## ସଂକ୍ଷିପ୍ତ ସମାଲୋଚନା ।

୧ । କୃଷ୍ଣକୁମାରୀ—ଶ୍ରୀ ନନ୍ଦକିଶୋରବଳ ବି. ଏ. ପ୍ରଣୀତ; ମୂଲ୍ୟ ତିନି ଅଣା । ଇତିହାସ ପ୍ରସିଦ୍ଧା ମିବାରରାଜକନ୍ୟା କୃଷ୍ଣକୁମାରୀଙ୍କ ହୃଦୟ-ଦ୍ରବକର ଆଖ୍ୟାନ ଅବଲମ୍ବନରେ ଏ କ୍ଷୁଦ୍ର କାବ୍ୟ ଖଣ୍ଡି ଲିଖିତ । ରାଜପୁତ ଜାତିର ଇତିହାସ ବିଚିତ୍ର ଓ ବିସ୍ମୟକର ଘଟଣାବଳୀରେ ପରିପୂର୍ଣ୍ଣ—ଦେହ-ବଳ ଅପେକ୍ଷା ମନର ବଳରେ ଏ ଜାତି ଅଧିକ ଗୌରବାନ୍ୱିତ । ଏପରି ଜାତୀୟତା, ଏପରି ସ୍ୱଦେଶବାତ୍ସଲ୍ୟ, ଏପରି ଆତ୍ମମର୍ଯ୍ୟାଦାଜ୍ଞାନ, ଏପରି ଆତ୍ମତ୍ୟାଗ ପୃଥିବୀର ଇତିହାସରେ ବିରଳ ଲକ୍ଷିତ ହୁଏ । କୁସୁମକୋମଳା ରମଣୀ ହୃଦୟର ପ୍ରଭାବରେ କିପରି ଅଦ୍ଭୁତ କର୍ମ ସାଧନ କରିପାରେ, ତାହାର ଜ୍ୱଳନ୍ତ ଦୃଷ୍ଟାନ୍ତ ରାଜପୁତ-ପୁରାଙ୍ଗନା-ଗଣ ନିଜ ଜୀବନରେ ଦେଖାଇ ଯାଇଅଛନ୍ତି । କୃଷ୍ଣକୁମାରୀ-ଚରିତ ତାହାର ଅନ୍ୟତମ । ଏହି ମନୋହର ଚରିତକୁ ନବ୍ୟ ନନ୍ଦକିଶୋର ଅତି ମନୋହର ଭାଷାରେ ବର୍ଣ୍ଣନ କରି ଧନ୍ୟ ହୋଇଅଛନ୍ତି ଏବଂ ଉତ୍କଳ-ସାହିତ୍ୟର ଗୌରବ ବଢ଼ାଇ ଅଛନ୍ତି । କାବ୍ୟର ପ୍ରଥମ ସର୍ଗରେ କବି ରାଜପୁତ-ଗୌରବର ଯେ ଗୋଟିଏ ସଂକ୍ଷିପ୍ତ ଅଥଚ ଉଜ୍ଜ୍ୱଳ ଚିତ୍ର ପ୍ରଦର୍ଶନ କରିଅଛନ୍ତି, ତାହା ଅତି ସୁନ୍ଦର ଓ ପ୍ରୀତିକର ହୋଇଅଛି । କେବଳ ଏହି ସର୍ଗଟି କବିଙ୍କ ପ୍ରତିଷ୍ଠାବର୍ଦ୍ଧନ ପକ୍ଷରେ ଯଥେଷ୍ଟ । ଦ୍ୱିତୀୟ ସର୍ଗରେ ଭାରତୀୟ ବୀରବୃନ୍ଦଙ୍କ ମଧ୍ୟରେ ଆତ୍ମକଳହ, ଜାତୀୟତାର ଅଧୋଗତି ପ୍ରଭୃତି ଅତି ଅଳ୍ପ କଥାରେ ଅଥଚ ମର୍ମଭେଦୀ ଭାଷାରେ ବର୍ଣ୍ଣିତ ହୋଇଅଛି । ତୃତୀୟ ସର୍ଗରେ କୃଷ୍ଣକୁମାରୀଙ୍କ ପରିଚୟ । କିପରି ସରସ ଭାଷାରେ କବି ନାୟିକାର ପରିଚୟ ଦେଇଅଛନ୍ତି, ପାଠକ ଦେଖନ୍ତୁ :—

ପାଶେ ହେମଗୋରୀ   ସେ ନବ କିଶୋରୀ
ବିଶ୍ୱକୁ କାଞ୍ଚନ-ମୂର୍ତ୍ତି ଯେମନ,
କାଞ୍ଚନ-ମୃଣାଳେ   କାଞ୍ଚନ-କମଳ
ଫୁଟି ଉଠେ ଅବା ଦର୍ଶନୀୟନ,
ଶିରୁ ଅପଗତ   ଶୋଭନ ଅଞ୍ଚଳ
ଲଜ୍ଜା-ଲାବଣ୍ୟ କି ପ୍ରୀତି-ପ୍ରସୂନ,
ଲାବଣ୍ୟ ଲଳିତ   ବଧୂ ପାଶେ କବି—
ମାନସୀ ମୂରତି ହେବ କଉଣ।
ପ୍ରବେଶୁଁ ଯୌବନ   ଉନ୍ନ ସୁଶୋଭନ
ଖେଳଇ କି ଶୋଭା-ସରେ କଲ୍ଲୋଳ,
ବିଶ୍ୱ-ଶିଳ୍ପୀମା   ତନୁ-ଅଙ୍ଗୀ ଶ୍ୟାମା—
ଗାଲ ନେତ୍ରପରେ ଭୂରୁ ବିଲୋଳ।

ଚତୁର୍ଥ ସର୍ଗରେ କୃଷ୍ଣକୁମାରୀଙ୍କ ପାଣିଗ୍ରହଣ ନିମିତ୍ତ ଜୟପୁରପତି ଓ ଯୋଧପୁରପତିଙ୍କ ମଧ୍ୟରେ ବିବାଦ, ଅମିର ଖାଁର ଚକ୍ରାନ୍ତ ଓ ଶେଷରେ ନିରୁପାୟ ପିତୃ ରାଣାଙ୍କ କର୍ତ୍ତୃକ କନ୍ୟାବଧ ସ୍ଥିରୀକରଣ ବର୍ଣ୍ଣିତ ହୋଇଅଛି। ଏ ସର୍ଗର ଭାଷା ଓ ଭାବ ଅଧିକାଂଶ ସ୍ଥଳରେ ଗଦ୍ୟାତ୍ମକ।

ପଞ୍ଚମ ସର୍ଗରେ କୃଷ୍ଣକୁମାରୀଙ୍କ ବିଷପାନ ଓ ବିଷପାନରେ ତାଙ୍କର ମୃତ୍ୟୁ। ଏ ସର୍ଗଟି ଅତ୍ୟନ୍ତ ହୃଦୟସ୍ପର୍ଶୀ। ଆରମ୍ଭ ଓ ଶେଷ କେହି କାହାକୁ ଊଣା ନୁହେଁ। ଜନନୀଙ୍କ ବିଳାପ, କନ୍ୟାର ଧୈର୍ଯ୍ୟ ଓ ଆତ୍ମତ୍ୟାଗ ଅତି ସ୍ୱାଭାବିକ ଓ ଉପଯୋଗୀ ଭାବରେ ବର୍ଣ୍ଣିତ ହୋଇଅଛି। ଆମ୍ଭେମାନେ ଅଧିକ କିଛି ନ କହି କେବଳ ଦୁଇ ଗୋଟି ପଂକ୍ତି ଉଦ୍ଧାର କରି ଦେଉଅଛୁଁ :—

ଅଗ୍ନି ଲୁହା ଘଟ   ପଥର କଟାଣ
କେମନ୍ତେ ବଞ୍ଚିବ ଝିଅ ଲୋ ମାଆ ?
* * * *
ଶୁଭ ସ୍ୱପ୍ନରେ   ନୃପତିଗଳାରେ
ଲମ୍ବାଇ ଥାଆନ୍ତୁ ବରଣମାଳା,
ଦେଖି ତା ସଘଣ   ତୃପତ ହୁଅନ୍ତା
ପାସୋର ପଡ଼ାନ୍ତା ସକଳ ଜ୍ୱାଳା।
ଗୁପ୍ତର ଯେଉଁ ଜନ   ପାଳି ଥିଲି ମୋତେ
ତାଙ୍କ ଉର ଜଳି ଦେବ ମାନବେ;
ମୋ ସୁଖ-ଚନ୍ଦ୍ରମା-   ଉଦୟ ବେଳରେ
ଘୋର ମେଘ କାହିଁ ଘୋଟିଲା ନଭେ।
* * * *
ଯେଉଁ ଦଶା ଘଟିଲି   ପଥେ ପଥେ ବୁଲି
ଭିକ୍ଷା ମାଗି ପଛେ କାଟିବି ଦିନ,
ପୂଜ୍ୟପିତୃପ୍ରାଣ   ଲଭକାରନ୍ତୁ
ବଞ୍ଚର ବଜର ଭୂମି ଛିନ୍ନ।

କୃଷ୍ଣକୁମାରୀଙ୍କ ଉକ୍ତି—

"ଭଙ୍ଗୁର ଏ ଭବ-   ଭଙ୍ଗିମା ମାଆଲୋ
ସଂସାରର ମାୟା ତୁଛ ଦିନର,
ଘୋର ଦୁଃଖଶୋକେ   ପୂର୍ତ୍ତି, ତାହା ପୁଣି
ନଶ୍ୱର ଭାଗ୍ୟ କର୍ମାଧୀନର।
ନୁହେଁ କି ମୁଁ ତୋର   ତନୟା ଜନନି
ଉଠିବି କି ମୁହିଁ ଯିବ ମରଣେ ?
ଶାନ୍ତିରେ ରହିବୁ ଲୋ   ଏ ମୋର ସ୍ୱଦେଶ
ଥାଅ ତୁମ୍ଭେମାନେ ଆନନ୍ଦ-ମନେ।"

ରାଜପୁତ ବାଳାର ଉପଯୁକ୍ତ ଭାଷା। ଏହା ଉପରେ ଅନ୍ୟ କଥା ନାହିଁ।

ଶେଷରେ—

ଶୁଭ ସ୍ୱପ୍ନର—   ଅନ୍ତେ ଯେ କରନ୍ତେ
ନବକାନ୍ତ-ସ୍ନିଗ୍ଧ ଗଣ୍ଡ ଚୁମ୍ବନ,
ହଳାହଳ ପାନେ   ଦାରୁଣ ଶ୍ମଶାନ-
କୋଳେ କଲେ ଆହା ! ଚିରଶୟନ !

ଯଥାର୍ଥରେ ବିଯୋଗାନ୍ତ ବିଷୟ ଚିତ୍ରଣରେ କବି ବିଶେଷ ନିପୁଣତା ଦେଖାଇ ଅଛନ୍ତି। ମାତ୍ର ସୀତାବନବାସପରି କୃଷ୍ଣକୁମାରୀର ମଧ୍ୟ ପ୍ରଧାନ ଦୋଷ ସଂକ୍ଷିପ୍ତତା। ଆଉ ଗୋଟିଏ ଦୋଷର କଥା ଆମ୍ଭେମାନେ ପୂର୍ବେ କହିଅଛୁଁ। ଏ ସବୁ ଦୋଷସତ୍ତ୍ୱେ କୃଷ୍ଣକୁମାରୀ ସରସ, ସୁଖପାଠ୍ୟ ଓ ଚିତ୍ତାକର୍ଷକ ହୋଇଅଛି, ଏଥିରେ ସନ୍ଦେହ ନାହିଁ।

୧ । ସତୋଽର୍ଥସ୍ତୁ ଭୋଜସ୍ୟଃ—ବ୍ରହ୍ମଗୃହ

ପ୍ରଣୀତ; ମୂଲ୍ୟ ଆଠ ଅଣା । ଏ ପୁସ୍ତକ ଖଣ୍ଡି ଐତିହାସିକ ପ୍ରହସନ ନାମରେ ପ୍ରକାଶିତ । ଗ୍ରନ୍ଥକାର (Comedy)କୁ ପ୍ରହସନ ଆଖ୍ୟା ଦେଇ ଅଛନ୍ତି । ମାତ୍ର ବର୍ତ୍ତମାନ (Farce)କୁ ସାଧାରଣତଃ ପ୍ରହସନ ବୋଲି ଯାଉଥାଏ । ( Comedy ) ଓ (Tragedy) ଉଭୟେ ନାଟକ ନାମରେ ପ୍ରଚଳିତ । ସେ ଯାହା ହେଉ, ଏଥିରେ ଉତ୍କଳର ପୂର୍ବତନ ରାଜା ଭାଗୀରଥି ଭାଉବର ହରଚନ୍ଦନଙ୍କ ଶାସନକୌଶଳ, ଚତୁରତା, ନିର୍ଭୀକତା, ଓ ଧାର୍ମିକତା ବିଶେଷ ଭାବରେ ପ୍ରଦର୍ଶିତ ହୋଇ ଅଛି । ଅନୁଗୋଳ-ବିଦ୍ରୋହର ପ୍ରସଙ୍ଗ ମଧ୍ୟ ସ୍ଥଳବିଶେଷରେ ସନ୍ନିବେଶିତ ହୋଇଅଛି । ବୋଧହୁଏ ଅନୁଗୋଳ-ପ୍ରସଙ୍ଗ ଥିବାରୁ ଏହା 'ଐତିହାସିକ' ହୋଇଅଛି । କଳୁଷା ପ୍ରଧାନ ବିଷୟ ସେଲ ବିଚାର କଲେ ଏହା ଇତିହାସର ଯୋଗ୍ୟ ବୋଲି ବିବେଚିତ ହେବ ନାହିଁ । ସର୍ବାଂଶରେ ବିଚାର କରିବାକୁ ଗଲେ ଉତ୍କଳ-ଚେରିଥିପତିଙ୍କ ଚରିତ୍ର ସୁନ୍ଦର ଓ ସ୍ୱାଭାବିକ ହୋଇଅଛି । ସୁତରାଂ ପ୍ରଧାନ ବିଷୟରେ ଗ୍ରନ୍ଥକାର କେତେକ ପରିମାଣରେ କୃତକାର୍ଯ୍ୟ ହୋଇ ଥିବାର ବୋଧ ହେଲା । ଅନ୍ୟାନ୍ୟ ଚିତ୍ରମାନଙ୍କ ମଧ୍ୟରୁ ଅଧିକାଂଶ ଅସମ୍ପୂର୍ଣ୍ଣ ଓ ଅସଲଗ୍ନ । ଇତସ୍ତମାନ, ଅର୍ଥାତ ଟାପଗିର ମାହାତ୍ମ୍ୟ ଅନେକ ପରିମାଣରେ ବଳ ପଡ଼ିଅଛି । ପ୍ରକୃତପକ୍ଷେ ଅନେକ ସ୍ଥଳରେ କଥାଗୁଡ଼ାକ ଏଥଅଙ୍ଗପରି ହୋଇଅଛି । କୌଣସି କୌଣସି ଦୃଶ୍ୟ ଯେ ଆମୋଦଜନକ ହୋଇଅଛି, ଏହା ଅବଶ୍ୟ କହିବାକୁ ହେବ । ପୁସ୍ତକର ଭାଷା ଅନେକ ସ୍ଥଳରେ ଅବିଶୁଦ୍ଧ, ବଙ୍ଗଳାମିଶା । ଗ୍ରନ୍ଥକାର ଉଦ୍‌ରୁଚିବିରୁଦ୍ଧ ଶବ୍ଦମାନ ପ୍ରୟୋଗ କରିବାକୁ ମଧ୍ୟ କୁଣ୍ଠିତ ହୋଇ ନାହାନ୍ତି ।

୩ । ନୀତିପଥ—ଶ୍ରୀ ନୀଳମଣି ବିଦ୍ୟାରତ୍ନଙ୍କ କର୍ତ୍ତୃକ ସଙ୍କଳିତ । ପୁସ୍ତକ ଖଣ୍ଡି ସୁନ୍ଦର କାଗଜରେ ଓ ସୁନ୍ଦର ଅକ୍ଷରରେ ଛପା ହୋଇ ଅଛି । ବିଦ୍ୟାରତ୍ନ ମହାଶୟ ଅନେକଗୁଡ଼ିଏ ସୁନୀତି ଓ ସଦୁପଦେଶ ସଂଗ୍ରହ କରି ସରଳ ପଦ୍ୟରେ, ପ୍ରକାଶ କରିଅଛନ୍ତି । ପ୍ରଣେତା ସାଧାରଣଙ୍କ ପ୍ରୟୋଜନୀୟ ପୁସ୍ତକାଦି ପ୍ରକାଶରେ ସର୍ବଦା ଯତ୍ନବାନ୍ । ଏ ଖଣ୍ଡି ତାହାର ଅନ୍ୟତମ ଦୃଷ୍ଟାନ୍ତ ।

୪ । ବନଫୁଲ--ଶ୍ରୀ ମଦନମୋହନ ନାୟକଙ୍କ-ଦ୍ୱାରା ପ୍ରଣୀତ, ମୂଲ୍ୟ ଏକ ଅଣା । ଏ କ୍ଷୁଦ୍ର ପୁସ୍ତକରେ ଭିନ୍ନ ଭିନ୍ନ ବିଷୟରେ ୧୩ ଗୋଟି ପଦ୍ୟ ଅଛି । ପ୍ରାୟ ସବୁଗୁଡ଼ିକରେ ବୈରାଗ୍ୟର ଅଂଶ ରହିଅଛି । ସ୍ଥାନେ ସ୍ଥାନେ ପ୍ରକୃତି ବର୍ଣ୍ଣନା ଉତ୍ତମ ହୋଇଅଛି । ଭାଷା ପ୍ରାଞ୍ଜଳ ଓ ନିର୍ଦ୍ଦୋଷ ।

ରାମଚନ୍ଦ୍ର ନାଟକ—ଶ୍ରୀ ହରିହର ରଥଙ୍କଦ୍ୱାରା ପ୍ରଣୀତ, ମୂଲ୍ୟ ତିନି ଅଣା । ପୁସ୍ତକର ନାମରୁ ବିଷୟ ଅନୁମିତ ହେଉଥିବ । ରାମଚନ୍ଦ୍ର ପୁଷ୍ପବାର ସାହାଯ୍ୟରେ ଗୋଟିଏ ଅଭିନ୍ନ ପରମାନନ୍ଦର ହେ । ଗ୍ରନ୍ଥକାର ତାହାର କଳ୍ପ ଦୃଷ୍ଟାନ୍ତ ମାତ୍ର ଏ ନାଟକରେ ବିବୃତ କରିଅଛନ୍ତି । ସୁତରାଂ ଏଥିରେ ସେହି ମନୋହର ଚରିତ୍ରର ସୌନ୍ଦର୍ଯ୍ୟ ଦେଖାଇବାର ଅବସର ନାହିଁ । ଅପରାପର ଚରିତ୍ରଗୁଡ଼ିକ ଅତି ସାଧାରଣ—ବିଶେଷତ୍ୱ କାହିଁରେ ନାହିଁ । ତେବେ ସାଧାରଣ ଲୋକମାନେ ଏହା ପାଠ କରି ଏବଂ ଏହାର ଅଭିନୟ ଦର୍ଶନ କରି ଆନନ୍ଦ ଲାଭ କରି ପାରିବେ । ରଥ ମହାଶୟ ନାଟକ-ରଚନାରେ ବିଶେଷ ମନୋଯୋଗୀ—ସଂସ୍କୃତ ନାଟକାଦି ଅନୁଶୀଳନ ମଧ୍ୟ କରିଥାନ୍ତି । ନାଟକର ପ୍ରଧାନ ବିଷୟ ଚରିତ୍ରଚିତ୍ରଣ ପ୍ରତି ଲକ୍ଷ ରଖିବାପାଇଁ ଆମ୍ଭେମାନେ ତାଙ୍କୁ ଅନୁରୋଧ କରୁଅଛୁଁ । ଅତି ପୁସ୍ତକାନ୍ତର୍ଗତ ଗରୁଡ଼ ଗରୁଡ଼ଗୃହିଣୀଙ୍କ କଥାବାର୍ତ୍ତା ପରି ଅପ୍ରାସଙ୍ଗିକ ଓ ସୁରୁଚିବିରୁଦ୍ଧ ବିଷୟମାନ ପରିହାର କରିବାକୁ ମଧ୍ୟ ଅନୁରୋଧ କରୁଅଛୁଁ । ଏ ପୁସ୍ତକର ଭାଷା ସରଳ ଓ ଶୁଦ୍ଧ । ଆମ୍ଭମାନଙ୍କର ପରମ ବନ୍ଧୁ ପୁରୀର ମୁକ୍ତାର ସରଳପ୍ରକୃତି ଉଦାର-ଚେତା ଶ୍ରୀଯୁକ୍ତ ରାମଚନ୍ଦ୍ର ଦାସ ମହାଶୟ ନିଜ ବ୍ୟୟରେ ଏ ପୁସ୍ତକ ପ୍ରକାଶ କରିଅଛନ୍ତି । ଏହା କେବଳ ତାଙ୍କର ସତ୍କର୍ମପ୍ରିୟତା ଓ ମାତୃଭାଷାନୁରାଗର ଏକତମ ଦୃଷ୍ଟାନ୍ତ ।

୭ । ସଙ୍ଗୀତପ୍ରହ୍ଲାଦ ନାଟକ—ଶ୍ରୀ ପଦ୍ମନାଭ-ନାରାୟଣ ଦେବଙ୍କ ଦ୍ୱାରା ବିରଚିତ । ରାଜକୁମାର ମହୋଦୟ ଉତ୍କଳ ସାହିତ୍ୟ କ୍ଷେତ୍ରରେ ସୁପରିଚିତ ହୋଇଅଛନ୍ତି । ସେ କେବଳ ଅନ୍ୟକୁ ଉତ୍ସାହ ଦେଇ ନିବୃତ୍ତ ହୁଅନ୍ତି, ସ୍ୱୟଂ ପରମ ଉତ୍ସାହରେ

ଓ ପ୍ରଗାଢ଼ ଅନୁରାଗରେ ସାହିତ୍ୟସେବାରେ ପ୍ରବୃତ୍ତ ହୋଇଅଛନ୍ତି । ପୂର୍ବେ ସେ କେତେ ଖଣ୍ଡି ପୁସ୍ତକ ପ୍ରକାଶ କରି ଉତ୍କଳୀୟ ପାଠକ ସାଧାରଣଙ୍କୁ ଉପହାର ଦେଇଥିଲେ । ବର୍ତ୍ତମାନ ପାରଲାଖେମିଣ୍ଡି ରାଜ୍ୟାଙ୍ଗରେ ଗୋଟିଏ ରଙ୍ଗଭୂମି ପ୍ରତିଷ୍ଠିତ କରି ଅଭିନୟୋପଯୋଗୀ ନାଟକ ପ୍ରଣୟନରେ ମନୋନିବେଶ କରି ଅଛନ୍ତି । ରାଜକୁମାର ମହୋଦୟ ପ୍ରଥମରେ ପୌରାଣିକ ବିଷୟ ଅବଲମ୍ବନରେ ନାଟକ ରଚନା କରି ନିଜର ପରିଚୟ ଦେଇଅଛନ୍ତି । ସମାଲୋଚ୍ୟ ନାଟକର ବିଷୟ ସର୍ବଜନବିଦିତ । ପୁସ୍ତକ ଖଣ୍ଡି ଆଶାନୁରୂପ ନିର୍ଦ୍ଦୋଷ ଓ ସୁନ୍ଦର ନ ହୋଇଥିଲେହେଁ ଏଥିରେ ରାଜକୁମାର ମହୋଦୟଙ୍କ ପକ୍ଷରେ କୃତିତ୍ୱର ପରିଚୟ ଯଥେଷ୍ଟ ଅଛି । ନାଟକଗତ ଚରିତ୍ରଗୁଡ଼ିକ ଅତି ସ୍ୱାଭାବିକ ଭାବରେ ଚିତ୍ରିତ ହୋଇଅଛି । ଅବଶ୍ୟ ପୌରାଣିକ ଆଉ ପ୍ରାକୃତ ବିଷୟର କଥା ସ୍ୱତନ୍ତ୍ର । ଏ ନାଟକର ହିରଣ୍ୟକଶିପୁ ଯଥାର୍ଥ ବୀର—ବହୁ ସଦ୍‌ଗୁଣରେ ଭୂଷିତ—ହିରଣ୍ୟକଶିପୁ ପ୍ରତି ଘୃଣାର ଉଦ୍ରେକ ନ ହୋଇ ବରଂ ଶ୍ରଦ୍ଧାର ସଞ୍ଚାର ହୁଏ । ଭକ୍ତି, ନିଷ୍ଠା ରାକ୍ଷସରାଜଠାରେ ଊଣା ନ ଥିଲା, ମାତ୍ର ସବୁ ସକାମ—ଯୋଗ ତପସ୍ୟା ସବୁ ଐଶ୍ୱର୍ଯ୍ୟକାମନାରେ । ପ୍ରହ୍ଲାଦ ହିଁ ଉପଯୁକ୍ତ ଜନକର ଉପଯୁକ୍ତ ବଂଶଧର । ପ୍ରହ୍ଲାଦର ଭକ୍ତି ଅହେତୁକୀ—ଭକ୍ତବାଳକ ପ୍ରହ୍ଲାଦର କେଡ଼େ କି ମନୋହର କି ହୃଦୟଗ୍ରାହୀ ! ପ୍ରହ୍ଲାଦଜନନୀ ଲୀଳାବତୀଙ୍କ ଚରିତ୍ର ଆଶାନୁରୂପ ହୋଇଅଛି । ଭକ୍ତପ୍ରବରମାନଙ୍କର ସରଳତା ଓ ମହତ୍ତ୍ୱ ତାଙ୍କ ଚରିତରେ ସର୍ବତ୍ର ପ୍ରସ୍ଫୁଟିତ ହୋଇଅଛି । ଅପରାପର ଚରିତ୍ରଗୁଡ଼ିକ ମଧ୍ୟ ସ୍ଥଳରେ ମନ୍ଦ ହୋଇ ନାହିଁ । ପ୍ରସଙ୍ଗକ୍ରମେ ଗ୍ରନ୍ଥକାର ମହୋଦୟ ରାଜନୀତି ପ୍ରଭୃତି ବିଷୟରେ ଯେଉଁସବୁ ଉଚ୍ଚ ଭାବମାନ ବ୍ୟକ୍ତ କରିଅଛନ୍ତି, ସେଥିରୁ ତାଙ୍କର ଉନ୍ନତ ଓ ଉଦାରହୃଦୟର ସୁନ୍ଦର ପରିଚୟ ମିଳୁଅଛି । ପୁସ୍ତକର ଭାଷା ନିର୍ଦ୍ଦୋଷ ହୋଇ ନାହିଁ । ତଥାପି ଅନେକ ସ୍ଥଳରେ ସୁନ୍ଦର ହୋଇଅଛି । ଦୃଷ୍ଟାନ୍ତ ଦେଖନ୍ତୁ:—

"ମହାରାଜଙ୍କୁ ଏପରି ଦୁଃଖ ଆସି ଉପସ୍ଥିତ ହେବା ସମୟରେ ସିନା ତୁମ୍ଭେ ଧୈର୍ଯ୍ୟ ଧରି ତାଙ୍କୁ ସାନ୍ତ୍ୱନା କଲେ ଭଲ ହେବ । ନା ତୁମ୍ଭେ କାନ୍ଦି ମହାରାଜାଙ୍କୁ ଅଧିକ କନାଉଚ !" "ମୁଁ କିଛି ଜାଣି ପାରୁ ନାହିଁ । ତାକୁ ଏ ପାଠ କିଏ ଶିଖାଇଲା ? ... ତାଙ୍କ ସଙ୍ଗେ ବିବାଦ କଲେ ଅନିଷ୍ଟ ଘଟିବ ବୋଲି ତ ମହାରାଜ ଶୁଣୁ ନାହାନ୍ତି ।" ପୁସ୍ତକରେ ଅନେକଗୁଡ଼ିଏ ସଙ୍ଗୀତ ସନ୍ନିବେଶିତ ହୋଇଅଛି । ଅନେକ ସ୍ଥଳରେ ସଙ୍ଗୀତର ଭାଷା ସରଳ ଓ ସୁନ୍ଦର । ଦୃଷ୍ଟାନ୍ତ ଦେଖନ୍ତୁ :—

କହିଲେ ଯେତେକ ପର   ହୋଇ ବାରଣ ପର
ଯେନୁ ନାହିଁ ତୁ କଷ୍ଟରେ ।
କେ ତୋତେ ଶିଖାଇଲା ଅରେ ମୋ ଗଳାମାଳା
ନିରତେ ଭଜ ରମାପତିକି ରେ ।

ଅନ୍ୟତ୍ର—

ଦେଲଣି କେତେ ଦଣ୍ଡ   କେଡ଼େ କର୍କଶ ପିଣ୍ଡ
ଆହୁରି ସେହି କଥା କହୁଛୁ ମୋ ଆଗରେ ।
ଛାଡ଼ିବା ଥାଉ ଦୂରେ   ଛଳାଇବା ଭଙ୍ଗୀରେ
ସ୍ମରଣ କର ବୋଲି ମୋତେ ଫେର ଥରେ ।

ସଙ୍ଗୀତଗୁଡ଼ିକର ଅଧିକାଂଶ ସ୍ଥଳ ଏହିପରି । ଭାଷାର ଗୁଣର କଥା କହିଲୁଁ—ଦୋଷ ମଧ୍ୟ ଅଳ୍ପ ନୁହେ । ପ୍ରଥମ କଥା, କେତେକ ସ୍ଥଳରେ ନିତାନ୍ତ ସଂସ୍କୃତଆ ପଣ୍ଡିତଙ୍କ ଭାଷା ବ୍ୟବହୃତ ହୋଇଅଛି । ପୁସ୍ତକାରମ୍ଭରେ ଦୀର୍ଘସମାସଯୁକ୍ତ କଡ଼ମଡିଆ ଶବ୍ଦଗୁଡ଼ିକ ତାହାର ଜ୍ୱଳନ୍ତ ଦୃଷ୍ଟାନ୍ତ । ଦ୍ୱିତୀୟ କଥା, ପ୍ରାଦେଶିକତା । 'ଅମ୍ଭେ-ମାନେ ଯେ କଷ୍ଟ ପଡୁଅଛୁଁ,' 'ତୁ ତାକୁ ଡାକି ଆଣେ' 'ଶୀଘ୍ରେ ଦୂର ହୁଅ,' 'ହେଉ,' 'କୋପର ମୂର୍ତ୍ତି,' 'କୋଅଡ଼େ' ଇତ୍ୟାଦି । 'ଯେ ଆଜ୍ଞା;' 'ଏକବାରେ,' 'କେ ଜାଣେ,' 'ଏପରି ସ୍ଥଳେ,' ଏପରି ପ୍ରୟୋଗମାନ ବିଶୁଦ୍ଧ ଓଡ଼ିଆ ନୁହେଁ । 'ଭ୍ରାତୃହତଦୁଃଖରେ' 'ରଜା ଅନ୍ତଃପୁର ଅଡ଼େ ଗମନ,' 'ଦାର୍ଢ୍ୟତା,' 'ନିକ୍ଷିପ୍ତ କରିବା' ଇତ୍ୟାଦି ବ୍ୟାକରଣ-ନିୟମବିରୁଦ୍ଧ । ତଦୁପରି ମୁଦ୍ରାକର-ପ୍ରମାଦ ଅତ୍ୟନ୍ତ ଅଧିକ । ଏହା ଗଡ଼ଜାତ ପ୍ରେସ୍ ପକ୍ଷରେ ନିତାନ୍ତ ନିନ୍ଦାର କଥା । ଅମ୍ଭେମାନେ ଏକାନ୍ତ ଆଶା କରୁଁ ରାଜକୁମାର ମହୋଦୟ କ୍ରମେ ଏ ସମସ୍ତ ଦୋଷ ପରିହାର କରି ପାରିବେ ଏବଂ ସରଳ ଶୁଦ୍ଧ ଭାଷାରେ ସୁରୁଚିସମ୍ପନ୍ନ ନାଟକମାନ ପ୍ରଣୟନ କରି ସାହିତ୍ୟସଂସାରରେ ଅକ୍ଷୟ କୀର୍ତ୍ତି ସ୍ଥାପନ କରିବେ ।

# ନୂତନ ଆୟୋଜନ ।

ସର୍ବସାଧାରଣଙ୍କ ଅବଗତ ନିମିତ୍ତ ପ୍ରକାଶ କରୁଅଛୁଁ ଯେ ଆମ୍ଭେ ସନ ୧୮୯୭ ମସିହାରୁ ଏହି ସଦରର ବାଲୁବଜାରରେ ଡାକ୍ତରୀ ଔଷଧାଳୟ ସ୍ଥାପନ କରି ସୁଖ୍ୟାତି ସହିତ ଚିକିତ୍ସା ବ୍ୟବସାୟ ଚଳାଇ ଆସୁଅଛୁଁ । ଆମ୍ଭ ଔଷଧାଳୟରେ ସର୍ବଦା ନୂତନ ଔଷଧ ଓ ଡାକ୍ତରୀ ଅସ୍ତ୍ର ବିକ୍ରୟାର୍ଥେ ପ୍ରସ୍ତୁତ ଥାଏ, ଅଥଚ ଆମ୍ଭେ ସେ ସମସ୍ତ ଆଶାନୁରୂପ ସୁଲଭ ମୂଲ୍ୟରେ ବିକ୍ରୟ କରିଥାଉଁ । ଯେଉଁମାନେ ଆମ୍ଭ ସହିତ କାରବାର କରିଅଛନ୍ତି ଓ କରୁଅଛନ୍ତି, ସେମାନେ ଆମ୍ଭର ବ୍ୟବହାର କଥା ଉତ୍ତମରୂପେ ଜାଣନ୍ତି । ବୃଥା ବାଗାଡମ୍ବରରେ କିଛି ପ୍ରୟୋଜନ ନାହିଁ ।

ସମ୍ପ୍ରତି ଆମ୍ଭର ହିତାକାଙ୍କ୍ଷୀ କେତେକ ଭଦ୍ରବ୍ୟକ୍ତିଙ୍କ ଅନୁରୋଧରେ ସର୍ବସାଧାରଣଙ୍କୁ ସୁଲଭ ମୂଲ୍ୟରେ ଖାଣ୍ଟି ନୂତନ ଔଷଧ ପ୍ରଚୁର ପରିମାଣରେ ଯୋଗାଇବା ଅଭିପ୍ରାୟରେ ବ୍ୟବସାୟର ପ୍ରସାର ବଢ଼ାଇଅଛୁଁ । ପୂର୍ବାପେକ୍ଷା ଅଧିକ ପରିମାଣରେ ସର୍ବପ୍ରକାର ପ୍ରୟୋଜନୀୟ ଔଷଧ ଓ ଡାକ୍ତରୀ ଅସ୍ତ୍ର ସର୍ବଦା ପ୍ରସ୍ତୁତ ରଖିବାର ବିହିତ ବନ୍ଦୋବସ୍ତ କରିଅଛୁଁ । ଆମ୍ଭ ସହିତ କାରବାର କଲେ କେହି କୌଣସି ପ୍ରକାରେ ପ୍ରତାରିତ ହେବେ ନାହିଁ । ଆମ୍ଭେ ଅନ୍ୟ ବ୍ୟକ୍ତିଠାରେ ଭାର ଦେଇ ନିଶ୍ଚିନ୍ତ ନ ରହି ନିଜେ ସମସ୍ତ ବିଷୟ ପୁଙ୍ଖାନୁପୁଙ୍ଖରୂପେ ଦେଖି ବ୍ୟବସ୍ଥା କରିଥାଉଁ । ଇଚ୍ଛା କଲେ ବହୁମାନ୍ୟଗଣ୍ୟ ବ୍ୟକ୍ତିଙ୍କଠାରୁ ପ୍ରଶଂସାପତ୍ରସଂଗ୍ରହ କରି ସର୍ବସାଧାରଣଙ୍କ ଗୋଚରାର୍ଥ ପ୍ରକାଶ କରିପାରୁଁ । କିନ୍ତୁ ସେଥିର ଫଳ କଣ ? କାର୍ଯ୍ୟକାଳରେ ଭଲ ମନ୍ଦ ସବୁ ଆପେ ପ୍ରକାଶ ପାଏ । ଆମ୍ଭେ ଆଉ ଅଧିକ କିଛି ନ କହି ସର୍ବସାଧାରଣଙ୍କୁ ପ୍ରାର୍ଥନା କରୁଅଛୁଁ, ଥରେ ନିଜେ ପରୀକ୍ଷା କରି ସତ୍ୟ ମିଥ୍ୟା ନିର୍ଣ୍ଣୟ କରନ୍ତୁ ।

ମଫସଲବାସୀମାନଙ୍କଠାରୁ ଆମ୍ଭେ ଭି: ପି: ପାର୍ଶେଲରେ ଔଷଧାଦି ପଠାଇ ଥାଉଁ । ମାତ୍ର ଅପରିଚିତ ଲୋକମାନଙ୍କଠାରୁ ଚତୁର୍ଥାଂଶ ମୂଲ୍ୟ ଅଗ୍ରୀମ ନ ପାଇଲେ ପଠାଇବାର ନିୟମ ନାହିଁ ।

ଶ୍ରୀ ନଗେନ୍ଦ୍ରନାଥ ଘୋଷ, ବି, ଏଲ୍, ଏମ୍, ଏସ୍,
ସ୍ୱତ୍ୱାଧିକାରୀ

ଘୋଷ ଏଣ୍ଡ ବ୍ରଦର୍ସ ଡ୍ରଗିଷ୍ଟ ହଲ୍, ବାଲୁବଜାର,
କଟକ ।

ରକ୍ଷା କରିପାରିଲେ ମାନବ ନୀରୋଗୀ ଓ ଦୀର୍ଘାୟୁ ହେବେହିଁ ସ୍ୱଭାବିକ । ମାତ୍ର ଔଷଧ ଓ ମନ୍ତ୍ରଦ୍ୱାରା ଯେ ଶରୀରର ସମସ୍ତ ରକ୍ଷା ହୋଇ ନ ପାରେ । ନାନାପ୍ରକାର ଶକ୍ତି ସଂଯୋଗ ବ୍ୟତୀତ କୌଣସି ଔଷଧରେ ସେ ଅଭାବ ସମ୍ପୂର୍ଣ୍ଣ ମୋଚନ ହୋଇ ନ ପାରେ, ସେଥିପାଇଁ ପାଶ୍ଚାତ୍ୟ ବୈଜ୍ଞାନିକମାନେ ବହୁ ଗବେଷଣାରେ ପ୍ରଥମେ ଗ୍ୟାଲ୍-ଭ୍ୟାନିକ ବ୍ୟାଟେରୀ ବା ତାଡ଼ିତଯନ୍ତ୍ର ଆବିଷ୍କାର କଲେ ଏବଂ ରୋଗୀ ଦେହରେ ତାହାର ବାହ୍ୟିକ ପ୍ରୟୋଗ କରାଇ ବାତ, ପକ୍ଷାଘାତ, ସ୍ନାୟୁ-ଦୁର୍ବଳତା ପ୍ରଭୃତି କେତୋଟି କଠିନ ରୋଗ ଆଶୁ ଦମନ କରିବାକୁ ସମର୍ଥ ହୋଇଛନ୍ତି ; ଫଳରେ ଉକ୍ତ କ୍ରିୟା ମଧ୍ୟ ଯେ ଅସ୍ଥାୟୀ ଏ କଥା ଶିକ୍ଷିତ ସମାଜକୁ ଏବେ ଆଉ ବୁଝାଇ ଦେବାକୁ ହେବ ନାହିଁ । ଆଉ ଏହି ବିଂଶଶତାବ୍ଦୀର ପ୍ରାରମ୍ଭରେ ବଙ୍ଗଳାର ମହାପୁରୁଷ ଋଷିସଭା-ଦ୍ୱାରା ଡାକ୍ତର ମେଜର ତାଡ଼ିତଶକ୍ତିର ଆଭ୍ୟନ୍ତରିକ ପ୍ରୟୋଗାର୍ଥ ତାହାକୁ ବିବିଧ ଭେଷଜକାର୍ଯ୍ୟରେ ସଂଯୋଗ କରି ଏହି ଅମୋଘ ଔଷଧକୁ ସଜୀବ କରି ଦେଇଅଛନ୍ତି ଏବଂ ଶୁକ୍ର ଓ ରକ୍ତ ସମ୍ବନ୍ଧୀୟ ପୀଡ଼ାର ଅବ୍ୟର୍ଥ ଆରୋଗ୍ୟ ବିଧାନରେ ଚିକିତ୍ସା ଜଗତରେ ନୂତନ ଯୁଗ ଆଣି ଦେଇଅଛନ୍ତି !!!

ଆଉ ବାଜାରୁ ହିଁ ସସ୍ତା ଓ ଅସ୍ଥାୟୀଗୁଣବିଶିଷ୍ଟ କୃତ୍ରିମ ସାଲସା ବା କୌଣସି ପ୍ରକାର ଔଷଧ ସେବନ କରିବାକୁ ହେବ ନାହିଁ ଆଉ ବାରମ୍ବାର ହିଁ ରୋଗ ଯନ୍ତ୍ରଣା ଭୋଗିବାକୁ ହେବ ନାହିଁ, ଥରେ ଏହି ମହୌଷଧକୁ, ଏହି ମହାଶକ୍ତିକୁ, ଏହି ବୈଦ୍ୟୁତିକ ସମ୍ମତ "ଇଲେକ୍ଟ୍ରୋ ସାଲସା"କୁ ପରୀକ୍ଷା କରି ଦେଖନ୍ତୁ ସଙ୍ଗେ ସଙ୍ଗେ ଶୁଭଫଳ ଫଳିବ, ଅକର୍ମଣ୍ୟ ଦେହ ପୁଣି କର୍ମକ୍ଷମ ହେବ, ଯୌବନକାଳୋଚିତ ବଳବୀର୍ଯ୍ୟ ଓ କାନ୍ତିସ୍ୱାସ୍ଥ୍ୟ ପୁଣି ଫେରି ପାଇବ ।

ଇଲେକ୍ଟ୍ରୋ ସାଲସା;—ଯେଉଁ ଯେଉଁ ୨୨ ଗୋଟି ଉପାଦାନରେ ପ୍ରସ୍ତୁତ ହୋଇଅଛି ସେ ସବୁ ଏଣ୍ଡିସ୍ ଏବଂ ହିମାଳୟ ପର୍ବତରୁ ଜାତ ଲତା ଓ ବୃକ୍ଷ । ବହୁ-କାଳର ଶ୍ରମରେ ବହୁଦିନର ବୈଜ୍ଞାନିକ ପରୀକ୍ଷାରେ ଓ ବହୁ ଅର୍ଥ ବ୍ୟୟରେ ସେହି ଉଦ୍ଭିଦବୃନ୍ଦଙ୍କ ସଂଗ୍ରହ ଓ ତାହାର ସାରାଂଶ ସହିତ ନାନାପ୍ରକାର ଶକ୍ତି ସଂଯୋଜିତ କରି ମହାନୁଭବ ଡାକ୍ତର ଶ୍ରେଷ୍ଠ ମେଜର ସାହେବ ଏହି ସାଲସା ପ୍ରସ୍ତୁତ କରିଅଛନ୍ତି ଏବଂ ପରୀକ୍ଷାଦ୍ୱାରା ପୃଥିବୀର ସମସ୍ତ ରାଜ୍ୟରେ ହିଁ ଏହାର ପ୍ରକୃତଗୁଣାବଳୀ ପ୍ରକାଶପାଇ ଏହା ଚିକିତ୍ସା ଜଗତରେ ପରମଶରଣରୂପେ ବରଣିତ ହେଉଅଛି । ଏହାର କାର୍ଯ୍ୟ ଅମୋଘ ବିସ୍ମୟାସ୍ପଦ !! ଏବଂ ଗୁଣରେ ଅମୃତତୁଲ୍ୟ !!!

ଇଲେକ୍ଟ୍ରୋ ସାଲସା—ଦୂଷିତରକ୍ତ ଶୋଧନ କରିବାକୁ, ନୂତନରକ୍ତ ଉତ୍ପତ୍ତି ବୃଦ୍ଧି କରିବାକୁ, ଦୁର୍ବଳ ଦେହ ସବଳ ଓ ଦୃଢ଼ କରିବାକୁ ଅଦ୍ୱିତୀୟ । ସର୍ବ-ପ୍ରକାର ବାତ ବ୍ୟାଧି, ପକ୍ଷାଘାତ, ଆମବାତ ଉପଦଂଶ, କୁଷ୍ଠ, ଗ୍ରହଣୀ, ନାଳିଘା, ଖାକ୍ତି, ଭଣ୍ଡିପ୍ରାଣ, ପାରା ଗର୍ମିର ରେସ୍ (ଚମଡ଼ାରେ ଚକା ଚକା ଦାଗ) ହସ୍ତପାଦ ଓ ସନ୍ଧି ସବୁର ଫୁଲିବା ଓ ବେଦନା ହସ୍ତ ଓ ପାଦ ତଳରେ ଧଳା ବା କଳା ଦାଗ, ଗାତ୍ରଦେଳ ଜଳିଯିବା, ମଥାରୁ ବାଳ ଝଡ଼ିବା, କୃଶତା, ରକ୍ତହୀନତା, ଶରୀର ଝାଳାଳିଆ ପ୍ରଭୃତି ଯାବତୀୟ ରକ୍ତ ସମ୍ବନ୍ଧୀୟ ପୀଡ଼ା ଓ ତଜ୍ଜାତ ଅନ୍ୟାନ୍ୟ ବିବିଧ ଉପସର୍ଗ ଆମୂଳ ଧ୍ୱଂସ କରିବାକୁ ଏମନ୍ତ ଔଷଧ ଆଉ ନାହିଁ ।

ଇଲେକ୍ଟ୍ରୋ ସାଲସା—ସର୍ବବିଧ ଶୁକ୍ର ପୀଡାର ଏକମାତ୍ର ଅମୋଘ ଔଷଧ । ଅନିୟମ ବା ଅତ୍ୟଧିକ ଇନ୍ଦ୍ରିୟସେବାଜନିତ ଧାତୁ ଦୌର୍ବଲ୍ୟ, ପୁରୁଷତ୍ୱ ହାନି, ଶୁକ୍ର ତାରଲ୍ୟ ନିବନ୍ଧନ ଓ ସ୍ୱପ୍ନଦୋଷ ଜନିତ ମେହ, ସ୍ନାୟୁଦୋଷ, ପ୍ରସ୍ରାବ ଜ୍ୱାଳା, ମୂତ୍ରସହ ଅଲକ୍ଷରେ ବା ପ୍ରସ୍ରାବରେ ବୀର୍ଯ୍ୟପତନ, ଅଜୀର୍ଣ୍ଣ ପ୍ରଭୃତି, ଶରୀରର ଅକାଳପକ୍ୱତା, ରତିଶକ୍ତି-ହୀନତା, ଧାରଣାଶକ୍ତିର ଅଭାବ, ଶୁକ୍ରମିଶ୍ରିତ ମୂତ୍ର ଯିବା, କୋଷ୍ଠବଦ୍ଧତା, ପ୍ରଭୃତି ସର୍ବବିଧ ଶୁକ୍ରଜ ରୋଗ ଓ ଉପସର୍ଗାଦି ଆରୋଗ୍ୟ କରିବାରେ ବ୍ରହ୍ମାସ୍ତ୍ରସ୍ୱରୂପ ।

ଏହାର କେତେକ ମାତ୍ରା ସେବନରେ ଶରୀରରେ ବିଶେଷ ସ୍ଫୂର୍ତ୍ତି ଓ ଶକ୍ତିର ଆଧିକ୍ୟ ଅନୁଭବ କରାଯାଏ । ଅଧିକ ଦିନ ବ୍ୟବହାରରେ ରତିଶକ୍ତିର ସମ୍ପୂର୍ଣ୍ଣ ବିକାଶ ହୁଏ, ଶରୀର ହୃଷ୍ଟପୁଷ୍ଟ ଓ ବଳିଷ୍ଠ ହୁଏ, ଅହିଫେନାଦି ସେବନଜନିତ ଅବସାଦ ଦୂରୀଭୂତ ହୁଏ ।

ଶୁକ୍ର ବା ରକ୍ତ ସମ୍ବନ୍ଧୀୟ ପୀଡ଼ା । ଯେତେ ପୁରାତନ ଯେତେ କଠିନ, ବା କଷ୍ଟିଲ ହେଉ ଏହି ମହୌଷଧରେ ତାହା ଆରୋଗ୍ୟ ହେବହିଁ । ଏତେ ଶୀଘ୍ର ଏତେ ସହଜରେ ଓ ମୂଳରୁ ସ୍ଥାୟୀ ଆରୋଗ୍ୟ କରିବ ଏମନ୍ତ ଶକ୍ତିଶାଳୀ ଔଷଧ ଆଉ ନାହିଁ ।

ଇଲେକ୍ଟ୍ରୋ ସାଲସାର ପ୍ରତ୍ୟେକ ମାତ୍ରାହିଁ ବିଶେଷ ଫଳପ୍ରଦ ଓ ହିତକର । ସବଳ-ସୁସ୍ଥ ଶରୀରରେ ସେବନ କଲେ କ୍ଷୁଧା ବୃଦ୍ଧି ହୁଏ, କୋଷ୍ଠ ପରିଷ୍କାର ହୁଏ, ଲାବଣ୍ୟ ବଢ଼େ, ଧାତୁ ବୃଦ୍ଧି ହୁଏ ଏବଂ ଶରୀରସ୍ଥ ପ୍ରତ୍ୟଙ୍ଗର ଉତ୍କର୍ଷ ସାଧିତ ହୁଏ ।

ବାସ୍ତବରେ ଏମନ୍ତ ଫଳପ୍ରଦ, ଏକାଧାରରେ ଏତେ ଅଧିକ ଗୁଣସମ୍ପନ୍ନ ଔଷଧ ଜଗତରେ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନାହିଁ ।

ମୂଲ୍ୟ—ଇଂରାଜୀ, ବଙ୍ଗଳା, ଓଡ଼ିଆଭାଷାରେ ବ୍ୟବସ୍ଥାପତ୍ର ସହିତ ୧ ସପ୍ତାହ ସେବନୋପଯୋଗୀ ପ୍ରତ୍ୟେକ ଶିଶିର ମୂଲ୍ୟ ଟ୨ ଙ୍କା; ୨ ଶିଶି ଟ୩୷; ୬ ଶିଶି ୧୦୷ ; ଡ଼ଜନ ଟ୨୦ ଙ୍କା; ୨ ଡ଼ଜନ ଟ ୪୦ ଙ୍କା । ପ୍ୟାକିଂ ଓ ଡାକ ମାଶୁଲ ପ୍ରତ୍ୟେକ ଶିଶି ଟ° ୫ ଅଣା; ୨ ଶିଶିକୁ ଟ° ୬ ଅଣା; ୬ ଶିଶି ଟ୧ଙ୍କା; ଡ଼ଜନ ଟ୧୷ ଅଣା; ୨ ଡ଼ଜନ ଟ ୪ ଙ୍କା ।

ମଫସ୍ୱଲବାସୀମାନେ—ଯେ କୌଣସି ଭାଷାରେ ନିଜେ ପତ୍ରଦ୍ୱାରା ଆପଣା ଆପଣା ନାମ, ଗ୍ରାମ, ଡାକଘର, ଜିଲା ଏବଂ କେତେ ଶିଶି ଔଷଧ ଆବଶ୍ୟକ ଲେଖି ପଠାଇଲେ ଭି, ପି, ପାର୍ଶଲ ଯୋଗେ ଔଷଧ ପଠାଇ ନିର୍ଦ୍ଦିଷ୍ଟ ମୂଲ୍ୟ ଆଦାୟ କରୁଁ ।

ଭାରତବର୍ଷର ଏକମାତ୍ର ଏଜେଣ୍ଟ ଓ ପ୍ରତିଷ୍ଠାତା—

W. MAJOR & Co.
Calcutta.

ଡବଲିଉ, ମେଜର ଏଣ୍ଡ କୋ,
କଲିକତା ।

TELEGRAPHIC ADDRESS.—"*MAJOR*" *CALCUTTA.*

# ଉତ୍କଳର କାହାଣୀ ।

—୦୦—

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ବି. ଏ. ସଙ୍ଗୃହୀତ ।

୮୨ ପୃଷ୍ଠାରେ ସମାପ୍ତ—ମୂଲ୍ୟ ୮/୦ ଅଣା ।

ଏ ପୁସ୍ତକ କଟକ ବାଲୁବଜାର ଉତ୍କଳ ସାହିତ୍ୟ ଅଫିସ, କଟକର ଅନ୍ୟାନ୍ୟ ପୁସ୍ତକ ଦୋକାନ, ବାଲେଶ୍ୱର ଟ୍ରେନିଂ ସ୍କୁଲର ଶିକ୍ଷକ ଶ୍ରୀ ନାରାୟଣ ମିଶ୍ର, ପୁରୀ ହରଚଣ୍ଡୀ ସାହି ସ୍କୁଲର ହେଡପଣ୍ଡିତ ଶ୍ରୀ କାଶୀନାଥ ମହାପାତ୍ର, ଯାଜପୁର ହାଇ ସ୍କୁଲର ଦ୍ୱିତୀୟ ପଣ୍ଡିତ ଶ୍ରୀ ଗଦାଧର ରଥ, ଭଦ୍ରକ ହାଇ ସ୍କୁଲର ଦ୍ୱିତୀୟ ପଣ୍ଡିତ ଶ୍ରୀ ମହାଦେବ ମିଶ୍ର, କେନ୍ଦ୍ରାପଡ଼ା—ସାଲିପୁର ଶ୍ରୀ ବୃନ୍ଦାବନ ମିଶ୍ରଙ୍କ ନିକଟରେ ମିଳିବ ।

ଏହି ପୁସ୍ତକ ସମ୍ବନ୍ଧରେ ମତ :—

"ପୁସ୍ତକର ଭାଷା ସରଳ ଏବଂ ହାଟବାଟର ବାଳକମାନେ ସହଜରେ ପଢ଼ି ବୁଝି ପାରିବାର କୌଣସି କଷ୍ଟ ନାହିଁ ।" ଉତ୍କଳଦୀପିକା ।

"ପୁସ୍ତକ ଖଣ୍ଡି ସରଳ ଭାଷାରେ ଲିଖିତ ହୋଇ ଥିବାରୁ ବାଳକ ବାଳିକା-ମାନଙ୍କ ପକ୍ଷରେ ବିଶେଷ ଉପଯୋଗୀ ହୋଇଅଛି ।" ସମ୍ବଲପୁର୍‌ହିତୈଷିଣୀ

"Your labours in this direction seem to have borne good fruit. You have done the Uriyas a distinct service."

ଶ୍ରୀଯୁକ୍ତ ପଦ୍ମନାଭ ନାରାୟଣ ଦେବ ସେକ୍‌ଣ୍ଡପ୍ରିନ୍ସ ପାରଳାଖେମିଡି ।

"ଏ ସଙ୍ଗ୍ରହ ଉତ୍ତମ ଭାଷାର ଖଣ୍ଡେ ଉପାଦେୟ ଗ୍ରନ୍ଥ"

ଶ୍ରୀଯୁକ୍ତ ରାୟ ରାଧାନାଥ ରାୟ ବାହାଦୁର, ସ୍କୁଲ ସମୂହର ଇନସ୍‌ପେକ୍ଟର, ବର୍ଦ୍ଧମାନ ।

"ଦେଶୀୟ ଉପଯୁକ୍ତ ବସ୍ତୁରେ ଉପଯୁକ୍ତ କାର୍ଯ୍ୟ ହୋଇଅଛି । କାହାଣୀଗତ ଭାବ ଏବଂ ଭାଷା ଉଭୟ ବିଷୟରେ ସମ୍ପୂର୍ଣ୍ଣରୂପେ କୃତକାର୍ଯ୍ୟ ହୋଇଅଛନ୍ତି" ।

ଶ୍ରୀଯୁକ୍ତ ଫକୀରମୋହନ ସେନାପତି, କଟକ ।

"I am of openion that you have very highly obliged the whole Oria-speaking population by preserving from oblivion a useful branch of traditional literature" ଶ୍ରୀଯୁକ୍ତ ଅଭିରାମଭଞ୍ଜ ଏମ୍. ଏ.

"ଉତ୍କଳ ସାହିତ୍ୟ କ୍ଷେତ୍ରରେ ତୁମ୍ଭଦ୍ୱାରା ଗୋଟିଏ ନୂତନ କ୍ଷେତ୍ରକୁ ବାଟ ଫିଟିଲା । ତୁମ୍ଭର ଲେଖା ନୂତନ ପଦ୍ଧତି ଅବଲମ୍ବନ କଲେହେଁ ସେଥିରେ ସର୍ବାଙ୍ଗ ଲୁଟି ଭଳ ଲକ୍ଷଣ ବିଦ୍ୟମାନ ।" ଶ୍ରୀଯୁକ୍ତ ଚନ୍ଦ୍ରମୋହନମହାରଣା ବି, ଏ, ଡେପୁଟୀଇନସ୍ପେକ୍ଟର ପୁରୀ

"ଏହା ଉତ୍କଳ ସାହିତ୍ୟ ଭଣ୍ଡାରରେ ଗୋଟିଏ ରତ୍ନ ହୋଇ ରହିଲା ।"

ଶ୍ରୀଯୁକ୍ତ ନନ୍ଦକିଶୋର ବଲ ବି, ଏ, କଟକ ।

"ଏତାଦୃଶ ଭାଷାର ପୁସ୍ତକ ଉତ୍କଳରେ ସର୍ବତ୍ର ପ୍ରଚାରିତ ଓ ଆଦୃତ ହେବା ଅବଶ୍ୟକ । ଏହାଦ୍ୱାରା ଉତ୍କଳରେ ଗୋଟିଏ ଅଭାବ ଦୂର ହୋଇଅଛି ।"

ଶ୍ରୀଯୁକ୍ତ ସଦାଶିବ ବିଦ୍ୟାଭୂଷଣ, ବ୍ରହ୍ମପୁର ଗଞ୍ଜାମ ।

—୦—

# ଉତ୍କଳ ସାହିତ୍ୟ ।

—+:o:+—

## ଅପୂର୍ବମିଳନ ।

( ଐତିହାସିକ ଉପନ୍ୟାସ )

୧

### ପଣ୍ଡିତ ଶିତଶଙ୍କର ମାଲଷାର ।

ପଣ୍ଡିତ ଶିତଶଙ୍କର ମାଲଷାର ମହାରାଷ୍ଟ୍ରୀୟ ବ୍ରାହ୍ମଣ । ସଂସ୍କୃତ ଏବଂ ଦେଶୀୟ ଭାଷାରେ ଏହାଙ୍କର ଅସାଧାରଣ ବ୍ୟୁତ୍ପତ୍ତି । କାବ୍ୟ ନାଟକ ଅଳଙ୍କାର ପ୍ରାଚୀନ ଆର୍ଯ୍ୟ ଷଡ଼୍‌ଦର୍ଶନ ଶାସ୍ତ୍ର କଣ୍ଠସ୍ଥ । ବିଶେଷତଃ ଦୌତ୍ୟ-ନୈପୁଣ୍ୟରେ ତାଙ୍କ ସହିତ ତୁଳନାକୁ ଲୋକ ନାହାନ୍ତି । ଉତ୍କଳ ଖଣ୍ଡର ଦୁର୍ଗପତିମାନଙ୍କ ସହିତ ମହାରାଷ୍ଟ୍ରପତିଙ୍କ ସନ୍ଧିବନ୍ଧନ କାର୍ଯ୍ୟ ସାଧନ ନିମନ୍ତେ ନିଜ ବେରରର ଉଚ୍ଚତମ ଦରବାରରୁ ନିଯୁକ୍ତ ହୋଇ ଆସି ଅଛନ୍ତି । ଦଶପଲ୍ଲାର ଭଞ୍ଜେ, ବାଙ୍କିର ଶ୍ରୀଚନ୍ଦନେ, ତିଗିରିଆର ତୁଙ୍ଗ, ନୀଳଗିରିର ହରିଚନ୍ଦନେ ପ୍ରଭୃତି ଦୁର୍ଗପତିମାନେ ଏହାଙ୍କ ଜ୍ଞାନ ଏବଂ ବାକ୍ୟ-କୌଶଳରେ ବେରରପତି ରଘୁଜୀ ଭୋଁସଲାଙ୍କଠାରେ ବଶ୍ୟତା ସ୍ୱୀକାର କରି ସନ୍ଧିପତ୍ରରେ ସ୍ୱାକ୍ଷର କରିଅଛନ୍ତି । ଫୌଜଦାର ଭାସ୍କର ପଣ୍ଡିତ ଅସ୍ତ୍ରବଳରେ ଢେଙ୍କାନାଳ ମହୀନ୍ଦ୍ରଙ୍କୁ ଆୟତ୍ତ କରି ପାରି ନ ଥିଲେ, ପ୍ରତ୍ୟୁତ ଆପେ ଯୁଦ୍ଧରେ ପରାସ୍ତ ଓ ଲଜ୍ଜିତ ହୋଇ ମହାରାଷ୍ଟ୍ର-ଗୌରବ-ଚନ୍ଦ୍ରକୁ କଳଙ୍କ-କାଳିମାରେ କଳଙ୍କିତ କରିଥିଲେ । ମାତ୍ର ପଣ୍ଡିତ ଶିତଶଙ୍କର ମାଲଷାରଙ୍କ ବାକ୍ୟ-କୌଶଳରେ ଢେଙ୍କାନାଳ ଦୁର୍ଗେଶ୍ୱର ଇଚ୍ଛାପୂର୍ବକ ସନ୍ଧିପତ୍ରରେ ସ୍ୱାକ୍ଷର କରିଅଛନ୍ତି । ରାୟବଣିଆ ଦୁର୍ଗେଶ୍ୱର ଶ୍ରୀ ଶ୍ରୀ ଶ୍ରୀ ରାୟ ରାଘବ ରାୟସିଂହ ଜଗଦ୍ଦେବ ବୈରିଗଞ୍ଜନ ମାନ୍ଧାତା ଏ ପର୍ଯ୍ୟନ୍ତ ବେରର ଦରବାରଠାରେ ବଶ୍ୟତା ସ୍ୱୀକାର କରି ନାହାନ୍ତି, ପ୍ରତ୍ୟୁତ ବିପକ୍ଷପକ୍ଷ ଅବଲମ୍ବନଦ୍ୱାରା ତାହାଙ୍କର ଅତଙ୍କର କାରଣ ହୋଇ ରହିଅଛନ୍ତି । ଉତ୍କଳ ଦେଶରୁ ବଙ୍ଗ-ଦେଶକୁ ପ୍ରବେଶ କରିବା ନିମନ୍ତେ ରାୟବଣିଆ ଦୁର୍ଗ ଦ୍ୱାରସ୍ୱରୂପ ଅଟେ । ବିଶେଷରେ ଦୁର୍ଗେଶ୍ୱର ମାନ୍ଧାତା ଜଣେ ବିଶେଷ କ୍ଷମତା-ଶାଳୀ ଏବଂ ରଣକୌଶଳୀ, ତାଙ୍କ ଅଧୀନସ୍ଥ ପଞ୍ଚଦଶ ସହସ୍ର ଖଣ୍ଡାଏତ ପାଇକ ସାହସୀ ରଣ-ନିପୁଣ ଏବଂ ଅନୁଗତ ଅଟନ୍ତି । ଶୀର୍ଷ ଭାଗରେ ପ୍ରବଳ ଶତ୍ରୁର ବର୍ତ୍ତମାନତାରେ ବେରରପତି ଉତ୍କଳଖଣ୍ଡ ସମ୍ପୂର୍ଣ୍ଣରୂପେ ଆୟତ୍ତ କରି ମଧ୍ୟ ନିଶ୍ଚିନ୍ତ ହୋଇ ପାରୁ ନ ଥିଲେ । ସନ୍ଧିବନ୍ଧନ ବିଶେଷ ଚିନ୍ତିତ । ଫୌଜଦାର ଭାସ୍କର ପଣ୍ଡିତ ଉଦ୍ଦେଶ୍ୟ ସାଧନରେ ଅକୃତକାର୍ଯ୍ୟ ହେବାରୁ ଦୂତଶ୍ରେଷ୍ଠ ପଣ୍ଡିତ ଶିତଶଙ୍କର ମାଲଷାର ଆଗମନ କରିଅଛନ୍ତି ।

ସାୟାହ୍ନ ସମୟରେ ଦୂତବର ଶିତଶଙ୍କର ମାଲଷାର ରାୟବଣିଆ ଦୁର୍ଗର ସିଂହଦ୍ୱାରଠାରେ ଉପସ୍ଥିତ ହେଲେ । ରାଜଗୁରୁ ବନମାଳୀ ବାଚସ୍ପତି, ପୁରୋହିତ ପୁରୁଷୋତ୍ତମ ରଥ, ଦଳବେହେରା ଗୋପାଳ ମହାରାଜ ପ୍ରଭୃତି ରାଜକାର୍ଯ୍ୟ ପ୍ରଧାନ ପୁରୁଷମାନେ ପାଛୋଟି ଯାଇ ତାଙ୍କୁ ସମର୍ଯ୍ୟାଦାରେ ସଙ୍ଗୋଳ ସଭାକୁ ନେଇ ଗଲେ । ଶ୍ରୀ ଶ୍ରୀ ଶ୍ରୀ ମାନ୍ଧାତା ଦରବାରରେ ବିଜେ କରିଅଛନ୍ତି, ତାଙ୍କ ସମ୍ମୁଖଭାଗ ବାମ ପାର୍ଶ୍ୱରେ ଦେଲେଇ, [illegible]-

ବେଦବେତ୍ତା, ଆଟବେହେରା, ଆଟନାୟକ, ପାଞ୍ଜିଆ, କରଣ, ଲେଖକକାର ପ୍ରଭୃତି କର୍ମଚାରୀମାନେ ଆପଣା ଆପଣା ପଦମର୍ଯ୍ୟାଦାନୁସାରେ ଯଥୋପଯୁକ୍ତ ଆସନ ଅଧିକାର କରି ବସି ଅଛନ୍ତି । ଦକ୍ଷିଣ ଶ୍ରେଣୀରେ ପୁରୋହିତ, ରାଜଗୁରୁ, ରାଜ୍ୟଗୁରୁ, ସଭାପଣ୍ଡିତ, ସଦସ୍ୟ, ଶାସନପାଣିଗ୍ରାହୀ ପ୍ରଭୃତି ବ୍ରାହ୍ମଣମାନଙ୍କ ଆସନ ନିରୂପିତ ହୋଇଅଛି । ସେହି ଶ୍ରେଣୀରେ ଶୀର୍ଷସ୍ଥାନୀୟ ଆସନ ବୃଦ୍ଧଙ୍କୁ ପ୍ରଦତ୍ତ ହେଲା । ବୃଦ୍ଧ ନମସ୍କରଣୀୟ ବ୍ରାହ୍ମଣ, ମାନ୍ଧାତା ଓଲଗି ହେଲେ, ବୃଦ୍ଧ ଦୁଇ ହସ୍ତ ଅଞ୍ଜଳିବଦ୍ଧ କରି ଆଶୀର୍ବାଦ କଲେ :—

କଣ୍ଠେ ଯସ୍ୟ ବିରାଜିତଂ ହି ଗରଳଂ
ଶୀର୍ଷେ ଚ ମନ୍ଦାକିନୀ
ବାମାଙ୍ଗେ ଗିରିଜାନନଂ କଟିତଟେ
ଶାର୍ଦ୍ଦୂଳଚର୍ମାମ୍ବରଂ ।
ମାୟା ଯସ୍ୟ ରୁଣଦ୍ଧି ବିଶ୍ୱମଖିଳଂ ପାୟାତ୍
ଶିବଃ ଶଙ୍କରୋ
ଜମ୍ବୂବଜ୍ଜଳବିନ୍ଦୁବଜ୍ଜଳଜବଜ୍ଜମ୍ବାଳବଜ୍ଜାଳବତ୍ ।

ବୋଇଲେ—ଯେଉଁ ଶିବଙ୍କ କଣ୍ଠରେ ଗରଳ ଜମ୍ବୁଫଳରୂପେ, ମସ୍ତକରେ ମନ୍ଦାକିନୀ ଜଳବିନ୍ଦୁରୂପେ, ବାମାଙ୍ଗରେ ଗିରିଜା—ନ ପାର୍ବତୀଙ୍କ ମୁଖ ପଦ୍ମପୁଷ୍ପରୂପେ ଏବଂ କଟିତଟରେ ବ୍ୟାଘ୍ରଚର୍ମ କର୍ଦ୍ଦମରୂପେ ବିରାଜିତ—ଏବଂ ଯାହାଙ୍କର ମାୟା ଜାଲରୂପେ ବିଶ୍ୱ ସଂସାରକୁ ଆବରଣ କରି ରଖି ଅଛି, ଏବମ୍ଭୂତ ଯେ ଶିବ ସେ ଆପଣଙ୍କୁ ରକ୍ଷା କରନ୍ତୁ ।

ବୃଦ୍ଧ ଆସନ ଗ୍ରହଣ କଲେ, ସଭା ନିସ୍ତବ୍ଧ, ସମସ୍ତେ ତାହାଙ୍କ ମୁଖକୁ ଚାହିଁ ରହି ଅଛନ୍ତି । ବୃଦ୍ଧ ଆସନ ଗ୍ରହଣ କରି ଥରେ ଶ୍ରୀ ଶ୍ରୀ ଶ୍ରୀ ମାନ୍ଧାତାଙ୍କୁ ଅନାଇ ତହିଁ ଉତ୍ତାରେ ସଭାସ୍ଥ ସମସ୍ତଙ୍କୁ ଥରେ ଥରେ ଅନାଇଲେ । ସଭାଗୃହ ସର୍ବସ୍ଥାନ ଥରେ ନିରୀକ୍ଷଣ କରି ମସ୍ତକ ଅବନତ କରି ତୁନି ହୋଇ ବସିଲେ । ଉଭୟ ପକ୍ଷରୁ ପରସ୍ପର ଶାରୀରିକ ବୈଷୟିକ ଉଭୟ ପକ୍ଷର ରାଜ୍ୟ ଏବଂ ରାଜନୀତିର ମଙ୍ଗଳ ସମ୍ବାଦର ଆଲୋଚନା ଶେଷ ହେଲା ଉତ୍ତାରେ ବୃଦ୍ଧବର ମାନ୍ଧାତାଙ୍କୁ ଅନାଇ ଏହି ଶ୍ଳୋକ ପାଠ କଲେ—

"ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ ।
ଅଭ୍ୟୁତ୍ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହଂ ।"

ହେ ଦୁର୍ଗେଶ୍ୱର ଅବଧାନ, ହେ ସଭାସ୍ଥ ଜ୍ଞାନବର୍ଗ, ପ୍ରଣିଧାନ କରିବାକୁ ଆଜ୍ଞା ହେଉ—ଏହି ସଂସାରସ୍ଥ ପ୍ରାଣିମାନଙ୍କର ଶାନ୍ତିଦାୟକ ଏବଂ ଶ୍ରେୟଃସାଧନକାରୀ ଧର୍ମର ଯେତେବେଳେ ଗ୍ଲାନି ଉପସ୍ଥିତ ହୁଏ—ବୋଇଲା ଅଧର୍ମବାହୁଲ୍ୟ ଯୋଗୁଁ ଧର୍ମର ହାନି ହୁଏ, ସେତେବେଳେ ଆମ୍ଭେ ଆପଣାକୁ ସୃଜନ କରୁଁ ଅର୍ଥାତ୍ କ ନା ଆମ୍ଭେ ଅବତାରରୂପେ ଜନ୍ମଗ୍ରହଣ କରୁଁ । ଏହା ଭଗବାନଙ୍କ ଶ୍ରୀମୁଖବାକ୍ୟ । ଆହୁରି ମଧ ମହାପ୍ରଭୁ କହି ଅଛନ୍ତି:—

"ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାଂ ।
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।"

ଅର୍ଥାତ୍ କ ନା ଧର୍ମନିରତ ସାଧୁମାନଙ୍କ ପରିତ୍ରାଣ ଏବଂ ଦୁଷ୍କୃତକାରୀ ପାପିମାନଙ୍କ ବିନାଶ ନିମନ୍ତେ ଏବଂ ସତ୍ୟଧର୍ମର ସଂସ୍ଥାପନ ସକାଶେ ଆମ୍ଭ ଯୁଗେ ଯୁଗେ ଜନ୍ମଗ୍ରହଣ କରୁଁ ।

ଦେଖିବା ହେଉନ୍ତୁ, ମହାପ୍ରଭୁଙ୍କ ଶ୍ରୀମୁଖବାକ୍ୟ ବ୍ୟର୍ଥ ହେବାର ନୁହେ । ଏହି ପୁଣ୍ୟଭୂମି ଭାରତଖଣ୍ଡ ମଧ୍ୟରେ ଯେତେ ଥର ଦୁର୍ବୃତ୍ତ ରାକ୍ଷସମାନେ ପ୍ରବଳ ହୋଇ ଯାଗଯଜ୍ଞ ପ୍ରଭୃତି ବୈଦିକ କ୍ରିୟାକଳାପ ବିନାଶପୂର୍ବକ ଧାର୍ମିକ ସାଧୁ ଲୋକଙ୍କ ପ୍ରତି ଅତ୍ୟାଚାର କରିଅଛନ୍ତି, ସେତେ ଥର ମହାପ୍ରଭୁ ସ୍ୱୟଂ ପୃଥିବୀରେ ଅବତୀର୍ଣ୍ଣ ହୋଇ ଅଛନ୍ତି । ରାମରୂପେ—ଜଗତରେ ଅତ୍ୟାଚାରୀ ରାବଣକୁ ବିନାଶ କରିଅଛନ୍ତି । କଂସ, ଶିଶୁପାଳ, ଜରାସନ୍ଧ ପ୍ରଭୃତିଙ୍କ ଦ୍ୱାରା ଧର୍ମ ପ୍ରତି ଧାର୍ମିକମାନଙ୍କ ପ୍ରତି ଅତ୍ୟାଚାର ଘଟିଥିଲା, ମହାପ୍ରଭୁ ସ୍ୱୟଂ ଶ୍ରୀକୃଷ୍ଣରୂପେ ଅବତୀର୍ଣ୍ଣ ହେଲେ । ମହାପ୍ରଭୁ ଆଜ୍ଞା କରିଅଛନ୍ତି, ଯେତେ-

ଯେବେଳେ ଧର୍ମର ଗ୍ଲାନି ଉପସ୍ଥିତ ହେବ, ସେତେବେଳେ ସେ ଅବତାର ରୂପ ଧାରଣ କରିବେ ।

ମାନ୍ୟବର ଅବଧାନ, ଏହି ପୁଣ୍ୟଭୂମି ଉତ୍କଳଖଣ୍ଡର ରାଜନ୍ୟମଣ୍ଡଳୀରେ ଆପଣ ସର୍ବବିଷୟରେ ଅଗ୍ରଗଣ୍ୟ, ଆପଣଙ୍କ ସାହସ ପାଣ୍ଡିତ୍ୟ ଧାର୍ମିକତା ସର୍ବତ୍ର ବିଦିତ । ବେହାରର ଶ୍ରେଷ୍ଠତମ ଦରବାରରେ ଉତ୍କଳଦେଶର କଥା ଉତ୍ଥାପିତ ହେଲେ ପ୍ରଥମେ ଆପଣଙ୍କ ନାମର ଉଲ୍ଲେଖ ହୁଏ । ଆପଣ ଖଣ୍ଡାୟତକୁଳର ଚୂଡ଼ାମଣି ଅଟନ୍ତି । ବିଶେଷତଃରେ ମହାପ୍ରଭୁ ସ୍ୱୟଂ ବୋଲିଅଛନ୍ତି, "ମାନବ ମଧ୍ୟେ ମୁଁ ରାଜନ ।" ରାଜାମାନେ ଭଗବାନ୍ ବିଷ୍ଣୁଙ୍କ ଅଂଶରୁ ଜାତ । ଆପଣ ଜଣେ ନରପତି, ଏଥିକୁ ବିଷ୍ଣୁତୁଲ୍ୟ ପୂଜ୍ୟ । ଆପଣଙ୍କ ସଭାସ୍ଥ ଜ୍ଞାନୀମାନଙ୍କ ନାମ ଯେତେଥର ଶ୍ରବଣ କରିଥିଲୁଁ, ଅଦ୍ୟ ନେତ୍ର କର୍ଣ୍ଣ ଉଭୟ ଇନ୍ଦ୍ରିୟର କ୍ରିୟା ସଫଳ ହେଲା । ଆପଣଙ୍କ ସଭାସ୍ଥ ସଦସ୍ୟମାନେ ବିଶେଷ ଜ୍ଞାନସମ୍ପନ୍ନ ଏବଂ ସର୍ବଶାସ୍ତ୍ରଦର୍ଶୀ, ଏଥିକୁ ଜ୍ଞାନମଣ୍ଡଳୀପୂର୍ଣ୍ଣ ଏହି ରାଜସଭାରେ ବିଶେଷ କିଛି ବ୍ୟାଖ୍ୟାନ କରିବା ମାଦୃଶ କ୍ଷୁଦ୍ରଲୋକ ପକ୍ଷରେ ଧୃଷ୍ଟତାର କାର୍ଯ୍ୟ ଅଟେ । ମାତ୍ର ପ୍ରୟୋଜନସାଧନର ଅନୁରୋଧରେ କିଛି କଥା କହିବାକୁ ବାଧ୍ୟ ହେଉଅଛୁଁ । ଏହି ପୁଣ୍ୟକ୍ଷେତ୍ର ଭାରତଖଣ୍ଡରେ ମ୍ଲେଚ୍ଛପ୍ରାବଲ୍ୟରେ ଦେବତା ବ୍ରାହ୍ମଣଙ୍କ ମର୍ଯ୍ୟାଦା ଏବଂ ସନାତନ ଆର୍ଯ୍ୟ ବୈଦିକ ଧର୍ମର କ୍ରିୟାକାଣ୍ଡ ବିଲୁପ୍ତପ୍ରାୟ ହୋଇଥିଲା ।

"ମ୍ଲେଚ୍ଛନିବହନିଧନେ କଳୟସି କରବାଲଂ ।
ଧୂମକେତୁମିବ କିମପି କରାଳଂ ।
କେଶବ ଧୃତକଳ୍କିଶରୀର—"

ମହାତ୍ମା ଶିବଜୀ ବିଷ୍ଣୁଙ୍କ କଳ୍କୀ ଅବତାର, ମ୍ଲେଚ୍ଛନିବହନିଧନ ଏବଂ ସନାତନ ବୈଦିକ ଧର୍ମ ଉଦ୍ଧାର କରି ଲୀଳା ସମ୍ବରଣ କରିଅଛନ୍ତି । ଉକ୍ତ ମହାତ୍ମାଙ୍କ ଆବିର୍ଭାବ ହୋଇ ନ ଥିଲେ ପୁଣ୍ୟକ୍ଷେତ୍ର ଭାରତଖଣ୍ଡର ହିମାଚଳଠାରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ସମସ୍ତ ସ୍ଥାନରେ ଯବନାଧିକାର ନିରଙ୍କୁଶରୂପେ ବିସ୍ତୃତ ଥାନ୍ତା, ସନାତନ ହିନ୍ଦୁ ଧର୍ମର ଚିହ୍ନ ମାତ୍ର ଥାନ୍ତା ନାହିଁ । ମହାତ୍ମା ଶିବଜୀ ଧର୍ମବିଦ୍ୱେଷୀ ପ୍ରଜ୍ୱଳିତଭୁଜଙ୍ଗରୂପୀ ଦିଲ୍ଲୀ ବାଦଶାହଙ୍କ କଟିଦେଶରେ ଏପରି କୁଠାରାଘାତ କରି ଯାଇ ଅଛନ୍ତି ଯେ ତନ୍ନିବନ୍ଧନ ସେ କ୍ରମଶଃ ହୀନବୀର୍ଯ୍ୟ ହୋଇ ପଡ଼ିଅଛି, ତାହାର ପତନ ଅନିବାର୍ଯ୍ୟ । ବୃକ୍ଷମୂଳ ଭଗ୍ନ ହେଲେ ଶାଖାପ୍ରଶାଖା ସହଜରେ ବିନଷ୍ଟ ହୋଇଥାଏ । ଦିଲ୍ଲୀସିଂହାସନ ସହିତ ତାହାର ଶାଖାସ୍ୱରୂପ ସୁବା ସମସ୍ତ ଯେ ଧ୍ୱଂସପ୍ରାପ୍ତ ହେବ, ଏହା ଧ୍ରୁବ ସତ୍ୟ ଜାଣିବା ହେବେ । ବର୍ତ୍ତମାନ ମ୍ଲେଚ୍ଛାଧିକାରର ଅବସାନ ଓ ସନାତନ ଆର୍ଯ୍ୟଧର୍ମର ସମୁତ୍ଥାନର ସମୟ ସମ୍ପ୍ରତି ସମୁପସ୍ଥିତ । ଯେପରି ଆର୍ଯ୍ୟ ଆଧିପତ୍ୟ ଆର୍ଯ୍ୟଧର୍ମ ଅକ୍ଷୁଣ୍ଣଭାବରେ ବୃଦ୍ଧି ପାଏ ସେଥି ସକାଶେ ପ୍ରତ୍ୟେକ ହିନ୍ଦୁ ଅଧିପତିଙ୍କ ପକ୍ଷରେ ସଯତ୍ନ ରହିବା କର୍ତ୍ତବ୍ୟ ଅଟେ । ଆପଣ ଉତ୍କଳଖଣ୍ଡର ଖଣ୍ଡାଏତ କୁଳର ଅଗ୍ରଣୀ । ଭାରତବର୍ଷ ମଧ୍ୟରେ ତୀର୍ଥପ୍ରଧାନ ପୁଣ୍ୟକ୍ଷେତ୍ରସମ୍ପନ୍ନ ପତିତପାବନୀ ସର୍ବପାପବିନାଶିନୀ ମହାନଦୀ ବୈତରଣୀ ବିଧୌତ ଉତ୍କଳଖଣ୍ଡରେ ଯବନାଧିକାର ବିଲୁପ୍ତ ହୋଇ ଆର୍ଯ୍ୟ ଆଧିପତ୍ୟ ବଦ୍ଧମୂଳ ହେବା ବିଷୟ ଆପଣଙ୍କ ପ୍ରତି ନିର୍ଭର କରୁଅଛି । ବେହାରେଶ୍ୱର ଦକ୍ଷମନ୍ତ୍ରୀରୂପେ ଆଶା କରିଅଛନ୍ତି, ଆପଣ ଉତ୍କଳଖଣ୍ଡରୁ ଯବନାଧିକାରର ବିଲୋପସାଧନ ବିଷୟରେ ତାଙ୍କର ସହାୟ ହେବେ । ଉତ୍କଳର ସମସ୍ତ ଦୁର୍ଗେଶର ବର୍ତ୍ତମାନ ବେହାର ଦରବାର ସହିତ ସନ୍ଧିସୂତ୍ରରେ ଆବଦ୍ଧ । ଉତ୍କଳର ସ୍ୱଜାତୀୟ ସମସ୍ତ ଖଣ୍ଡାଧିପତି ତାଙ୍କ ପକ୍ଷ ପରିତ୍ୟାଗ କରି ଯବନପକ୍ଷପାତୀ ହେବେ, ବେହାରପତି ଏହା ବିଶ୍ୱାସ କରନ୍ତି ନାହିଁ । ଆପଣ ପୃଥୁରାଜ—ଜୟଚାନ୍ଦ ଏବଂ ପ୍ରତାପ—ଶକ୍ତସିଂହଠାରୁ ଅଦ୍ୟାବଧି ସମସ୍ତ ରାଜ୍ୟାଧିକାର ବିଷୟ ପର୍ଯ୍ୟାଲୋଚନା କରି ଦେଖନ୍ତୁ, ଶୌର୍ଯ୍ୟ ବୀର୍ଯ୍ୟର ଅଭାବ ହିନ୍ଦୁ ଜାତିର ପତନର କାରଣ ନୁହେ । ଆର୍ଯ୍ୟ ଜାତିର ଶୌର୍ଯ୍ୟ, ଆର୍ଯ୍ୟ ରଣପାଣ୍ଡିତ୍ୟ

ଜଗତରେ ଅତୁଳନୀୟ । ଗୃହବିବାଦ ଆର୍ଯ୍ୟଜାତିର ପତନର ଏକମାତ୍ର କାରଣ ଅଟେ । କୁରୁକ୍ଷେତ୍ର ସମର ଅନ୍ତର୍ବିଦ୍ରୋହର ପୌରାଣିକ ଜାଜ୍ୱଲ୍ୟମାନ ପ୍ରମାଣ । ଏହି ପ୍ରତ୍ୟକ୍ଷୀଭୂତ ବିଷୟର ବାହୁଲ୍ୟ ବର୍ଣ୍ଣନା ଅନାବଶ୍ୟକ । ସମ୍ପ୍ରତି ବିଧିଦତ୍ତ ବିଶେଷ ସୁଯୋଗ ଉପସ୍ଥିତ । ଆସନ୍ତୁ, ଅମ୍ଭେମାନେ ମିଳିତ ହୋଇ ବିଧର୍ମୀ ମ୍ଳେଚ୍ଛମାନଙ୍କୁ ଦୂରୀଭୂତ କରି ସ୍ୱର୍ଗାଦପି ଗରୀୟସୀ ମାତୃଭୂମିରେ ବିଲୁପ୍ତ ରତ୍ନ ସ୍ୱାଧୀନତାର ପୁନଃସ୍ଥାପନ ବିଷୟରେ ସଚେଷ୍ଟ ହେବା । ବେଗରପତିଙ୍କ ସ୍ୱାର୍ଥ ସହିତ ଭାରତ ଭୂମିର ପ୍ରତ୍ୟେକ ହିନ୍ଦୁ ସନ୍ତାନର ସ୍ୱାର୍ଥ ଜଡ଼ିତ । ସମସ୍ତଙ୍କର ଏକମାତ୍ର ଲକ୍ଷ୍ୟ; ତାହାରେ ଅବା ଅବହେଳାରେ ଲକ୍ଷ୍ୟଭ୍ରଷ୍ଟ ହେବା ଉଚିତ ନୁହେ । ବେଗରପତି ବିଶେଷ ଆଶା କରି ଅମ୍ଭକୁ ଆପଣଙ୍କ ନିକଟକୁ ପ୍ରେରଣ କରିଅଛନ୍ତି । ଅମ୍ଭେ ସମ୍ପୂର୍ଣ୍ଣରୂପେ ଆଶା କରୁଁ, ଏହି ସମ୍ମନ୍ତର ସୌହାର୍ଦ୍ଦ୍ୟ ସ୍ଥାପନ ବିଷୟରେ ଆପଣ ଅସମ୍ମତ ହେବେ ନାହିଁ ।

ଦୂତ ଏହି ସମସ୍ତ କଥା ସ୍ପଷ୍ଟ ପ୍ରାଞ୍ଜଳ ଭାଷାରେ ପ୍ରକାଶ କରି ଉତ୍ତର ପାଇବା ଆଶାରେ ମହାତ୍ମାଙ୍କ ଶ୍ରୀମୁଖକୁ ଲକ୍ଷ କରି ରହିଲେ ।

ଦୂତଙ୍କ କଥାର ଉତ୍ତର ଦେବା ନିମନ୍ତେ ଦୁର୍ଗେଶର ସଦ୍ଗୁରୁ ବନମାଳୀ ବାବାଜୀଙ୍କ ମୁଖକୁ ଦୃଷ୍ଟିପାତ କରିବାରୁ ବାବାଜୀ ତାହାଙ୍କ ଅଭିପ୍ରାୟ ହୃଦୟଙ୍ଗମ କରି କର୍ଣ୍ଣପରସରଣ-ସୂଚକ ଦୁଇ ତେନ ଥର ଅନୁଚ୍ଚ ଶବ୍ଦ କରି ଧୀର ଗମ୍ଭୀର ଭାବରେ କହିବାକୁ ଆରମ୍ଭ କଲେ ।—

ଦୂତବର, ବର୍ତ୍ତମାନ ସମୟରେ ବେଗର ଦରବାର ଭାରତଖଣ୍ଡ ମଧ୍ୟରେ ବିଶେଷ ଗୌରବାନ୍ୱିତ । ଏହି କ୍ଷମତାଶାଳୀ ନରପତିଙ୍କ ସହିତ ସୌହାର୍ଦ୍ଦ୍ୟ ସ୍ଥାପନ କରିବା ସୌଭାଗ୍ୟର ବିଷୟ ଅଟେ । ବିଶେଷରେ ବେଗରପତି ସ୍ୱେଚ୍ଛାଗ୍ରଳିତ ହୋଇ ଏହି ଦୁର୍ଗେଶଙ୍କ ସହିତ ମୈତ୍ରୀ ସ୍ଥାପନର ଅଭିପ୍ରାୟ ପ୍ରକାଶ କରି ସୁଯୋଗ୍ୟ ଲୋକହସ୍ତରେ କାର୍ଯ୍ୟ ସମ୍ପାଦନର ଭାର ଅର୍ପଣ କରିଅଛନ୍ତି । ଆପଣ ଯେ ସମସ୍ତ ବାକ୍ୟ ପ୍ରୟୋଗ କଲେ ସେ ସମସ୍ତ ଅତିବ ସତ୍ୟ, ଧ୍ରୁବ ସତ୍ୟ ଏବଂ ଯୁକ୍ତିଯୁକ୍ତ ଅଟେ । ମହାତ୍ମା ଶିବଜୀଙ୍କ ଆବିର୍ଭାବ ହୋଇ ନ ଥିଲେ ଆଜି ଭାରତ ଭୂମିରେ ହିନ୍ଦୁ ଧର୍ମର ନିଦର୍ଶନ ପର୍ଯ୍ୟନ୍ତ ବିଲୁପ୍ତ ହୋଇ ଥାନ୍ତା । ମ୍ଳେଚ୍ଛନିବହ ନିଧନ ସାଧନ ନିମନ୍ତେ ସ୍ୱୟଂ ବିଷ୍ଣୁ ଯେ କଳ୍କୀ ଅବତାର-ରୂପେ ଅବତୀର୍ଣ୍ଣ ହୋଇଥିଲେ, ଏ କଥାକୁ ଅପ୍ରତ୍ୟୟ କରି କେଉଁ ଜ୍ଞାନୀ ଲୋକ ପ୍ରତ୍ୟବାୟଭାଗୀ ହେବାକୁ ସାହସ କରିବେ ? ଉହୁପ୍ରଭୁ, କମଳାଙ୍କ ବିଳାସନିକେତନ ସମସ୍ତ ଭାରତବର୍ଷରେ ଯାହାର ଅଖଣ୍ଡ ଆଧିପତ୍ୟ, ବହୁଲକ୍ଷ ସୁଶିକ୍ଷିତ କୃପାଣହସ୍ତ ପଦାତିକ, ଲକ୍ଷ ଲକ୍ଷ ଅଶ୍ୱାରୋହୀ, ବହୁ ସହସ୍ର ଗଜାରୋହୀ ଯାହାର ଇଙ୍ଗିତମାତ୍ରକେ ଚାଳିତ, ସୂର୍ଯ୍ୟଚନ୍ଦ୍ରବଂଶୀୟ ମହାବୀର ନୃପତିବୃନ୍ଦ ଯାହାର ଆଜ୍ଞାବହ, ଭାରତବର୍ଷର ରାଜନ୍ୟମଣ୍ଡଳୀ ଯାହାର ସିଂହାସନ ତଳେ ଅବନତମସ୍ତକ, କୁବେରଭଣ୍ଡାରତୁଲ୍ୟ ଯାହାର କୋଷାଗାର, ଏପରି 'ଦିଲ୍ଲୀଶ୍ୱରୋ ବା ଜଗଦୀଶ୍ୱରୋ ବା' ଦୁର୍ଦ୍ଦଣ୍ଡ ସମ୍ରାଟଙ୍କୁ ଗୋଟିଏ କ୍ଷୁଦ୍ର ଜମିଦାରର ପୁତ୍ର ସାମାନ୍ୟ ଦସ୍ୟୁଦଳ ସହାୟତାରେ ପରାସ୍ତ କଲେ, ଏହା ପ୍ରତ୍ୟକ୍ଷୀଭୂତ ବିଷୟ ହୋଇ ନ ଥିଲେ ବିଶ୍ୱାସର ଯୋଗ୍ୟ ହୁଅନ୍ତା ନାହିଁ । ଶିବଜୀଙ୍କ ଚରିତ୍ରବଳ ବାହୁବଳ ସାଧାରଣ ମାନବମସ୍ତିଷ୍କର ଅଗୋଚର ବିଷୟ ଅଟେ । ତାଙ୍କର ସମରସାମର୍ଥ୍ୟ, ଧର୍ମପ୍ରାଣତା, ସ୍ୱଦେଶବାତ୍ସଲ୍ୟ ଜଗତରେ ଦୁର୍ଲ୍ଲଭ । ଦୂତବର, ଅଧିକ କଣ କହିବି, ସେହି ମହାତ୍ମାଙ୍କ ସହିତ ଆର୍ଯ୍ୟଗୌରବ ବିଲୁପ୍ତ ହୋଇଅଛି । ମହାତ୍ମା ଶିବଜୀଙ୍କ ନିର୍ମିତ କୀର୍ତ୍ତି-ସୌଧର ପତନ ଅନିବାର୍ଯ୍ୟ !

ଦୂତ—ବାଚସ୍ପତି ଅବଧାନ, ସମସ୍ତ ଆର୍ଯ୍ୟ ନୃପତି ସମବେତ ହେଲେ ସେହି କୀର୍ତ୍ତି-ସୌଧ-ରକ୍ଷା ସମ୍ଭବ ନୁହେ କି ?

ରାଜଗୁରୁ—ହୁଁ—ଐକ୍ୟ—ଐକ୍ୟ—ମହାତ୍ମା ଏକଥା ଆର୍ଯ୍ୟ ଅଦୃଷ୍ଟରେ ଲେଖି ନାହାନ୍ତି । ଦୂତରାଜ !

'ଯଦ୍ୟଦାଚରତି ଶ୍ରେଷ୍ଠସ୍ତତ୍ତଦେବେତରେ ଜନାଃ'

ଶ୍ରେଷ୍ଠ ଲୋକର ଆଚରଣକୁ ଇତର ଲୋକେ ଅନୁକରଣ କରି ଥାନ୍ତି । ଦୂତରାଜ, ଆପଣ ତ ଉତ୍କଳର ଖଣ୍ଡାୟିତମାନଙ୍କୁ ଆପଣାର କରିବାକୁ ଇଚ୍ଛୁକ, ତେବେ ଆପଣା ଘରକଥା ଚିହ୍ନନ୍ତୁ ତ ! ସିନ୍ଧିଆ, ହୁଲକାର, ଗୁଇକୁମାର, କାହା ସହିତ କାହାର ଐକ୍ୟ ?

ଦୂତ—ଏମାନଙ୍କ ମଧ୍ୟରେ ବର୍ତ୍ତମାନ ବିବାଦ ବିସମ୍ବାଦ କିଛି ନାହିଁ—ପରସ୍ପର ସମ୍ପ୍ରୀତିରେ ରହି ଅଛନ୍ତି ।

ରାଜଗୁରୁ—ଆପଣଙ୍କ ତୁଲ୍ୟ ବ୍ୟକ୍ତିଙ୍କ ମୁଖରେ ଏପରି କଥା ଶୋଭା ପାଏ କି ? ଏପରି କଥା ରାଜଦରବାରରେ ପ୍ରକାଶ କରିବା ଅଯୋଗ୍ୟ ଅଟେ ।

"ତୁଲ୍‌ସୀ ହଲ୍ ସମଜ୍ଜଲିଅ ବାତକହୋତେ ନକାଳ,
ଖିସ ଯେଟେସ ମିଲ୍ ରହେ ଭତର ଫାଙ୍କେ ତକେ ।"

ଦୂତ—ଗୃହ ମଧ୍ୟରେ ଭାଇ ଭାଇ ବିବାଦ ଥିଲେ ମଧ୍ୟ ଗୃହପ୍ରବିଷ୍ଟ ତସ୍କରକୁ ଦୂରୀଭୂତ କରିବା ନିମନ୍ତେ ଯତ୍ନଶୀଳ ହେବା କି ଜ୍ଞାନୀ ଲୋକ ପକ୍ଷରେ କର୍ତ୍ତବ୍ୟ ନୁହେ ? ବର୍ତ୍ତମାନ ବିଦେଶୀୟ ବିଧର୍ମୀ ଯବନର ଯେପରି ପ୍ରାଦୁର୍ଭାବ, ହିନ୍ଦୁରାଜନ୍ୟବର୍ଗ ପରସ୍ପର ବିବାଦ ବିସମ୍ବାଦ ବିସର୍ଜ୍ଜନ, ବିସ୍ମରଣ, ବଳିଦାନ ନ କଲେ ଧର୍ମ-ରକ୍ଷା ମାନସମ୍ଭ୍ରମ ରକ୍ଷା ଏମନ୍ତ କି ପ୍ରାଣ ପର୍ଯ୍ୟନ୍ତ ରକ୍ଷା ଆଶା କରିବା ବିଡ଼ମ୍ବନା ମାତ୍ର ।

ରାଜଗୁରୁ—ମୁହୂର୍ତ୍ତ ପୂର୍ବେ ଯେଉଁ କଥା ବୋଲିଅଛନ୍ତି, ତାହା ବିସ୍ମୃତ ହୋଇ ଗଲେ । ଆପଣ ଯେ ଆମ୍ଭକଥିତ ବାକ୍ୟ ଖଣ୍ଡନ କରୁ ଅଛନ୍ତି । ଭ୍ରାତୃବିରୋଧରୂପ ସୁଯୋଗ ପ୍ରାପ୍ତ ହୋଇ ଯବନ ଆର୍ଯ୍ୟ ଭୂମିରେ ଆଧିପତ୍ୟ ବିସ୍ତାର କରି-ବାକୁ ସୁଯୋଗ ପ୍ରାପ୍ତ ହୋଇଅଛି ତ ? ରୋଗୋ-ତ୍ପତ୍ତିର କାରଣ ଦୂର ନ କରି ଔଷଧ ପ୍ରୟୋଗ କରିବା ବିଡ଼ମ୍ବନା ମାତ୍ର ।

ଦୂତ—ଅନ୍ତତଃ ଉତ୍କଳ ଦେଶରୁ ଯବନାଧିକାର ବିଲୋପ ନିମନ୍ତେ ସମସ୍ତ ଖଣ୍ଡାୟିତ ଏକତା ଅବଲମ୍ବନ ପୂର୍ବକ ବେରାରପତିଙ୍କର ସହାୟ ହେବା ଉଚିତ ନୁହେ କି ?

ରାଜଗୁରୁ—ଦୂତବର ! ବେରାର ଅଧିପତି ଉପଯାଚକ ହୋଇ ଯେଉଁ ଅନୁଗ୍ରହ ବିସ୍ତାର କରିବାକୁ ବସିଅଛନ୍ତି, ସେହି ଅନୁଗ୍ରହ ସ୍ମରଣ କଲେ ଉତ୍କଳ ଦେଶ ଆପଣାକୁ ସୌଭାଗ୍ୟବାନ୍ ଜ୍ଞାନ କରିବ !

ଦୂତ—ରାଜଗୁରୁ ଅବଧାନ ! ମହାରାଜ ରଘୁଜୀ ଭୋଁସଲା ଏପରି କି ଅନ୍ୟାୟ କାର୍ଯ୍ୟ କରିଅଛନ୍ତି ଯେ ଆପଣ ତାହାଙ୍କ ପ୍ରତି ଏପରି ବିମୁଖ ? ତେବେ ମୀର କାଶିମକୁ ବାଲେଶ୍ୱର ବନ୍ଦରରୁ ତଡ଼ି ଦେବା ଯେବେ ଦୋଷାବହ କାର୍ଯ୍ୟ ହୋଇ ଥାଏ, ତେବେ ଆମ୍ଭର ବକ୍ତବ୍ୟ କିଛି ନାହିଁ ।

ରାଜଗୁରୁ— ଦୂତବର ! ଆପଣ ବିଦେଶୀୟ ହେଲେ ମଧ୍ୟ ଉତ୍କଳର ଇତିବୃତ୍ତ ଅବଗତ ଅଛନ୍ତି । ତଥାପି ବାକ୍ୟର ଶୃଙ୍ଖଳା ରକ୍ଷା ନିମନ୍ତେ ସଂକ୍ଷେପରେ କିଛି କଥା ବୋଲିବା ପ୍ରୟୋଜନ । ଅତି ପ୍ରାଚୀନ ବଟବୃକ୍ଷର ଜୀର୍ଣ୍ଣ କାଣ୍ଡ ବିନଷ୍ଟ ହେଲେ ଶାଖାମାନ ଯେପରି ସ୍ୱଦେହଲମ୍ବିତ ଓରକୁ ଆଶ୍ରୟ କରି ସ୍ୱତନ୍ତ୍ର ବୃକ୍ଷରୂପେ ପରିଣତ ହୁଅନ୍ତି, ସେହିପରି ଉତ୍କଳର ରାଜରାଜେଶ୍ୱର ଗଜପତି ବଂଶ ବିଲୁପ୍ତପ୍ରାୟ ହେବାରୁ ତାହାଙ୍କର କେତେକ ବଂଶଧର ଜ୍ଞାତିପୁଅ ଏବଂ ଖଣ୍ଡାୟତ ସେନାପତିମାନେ ବିଶାଖାପତ୍ତନ ବନ୍ଦର-ଠାରୁ ତାମ୍ରଲିପ୍ତ ବନ୍ଦର ପର୍ଯ୍ୟନ୍ତ ଏବଂ ପୂର୍ବ-ପଶ୍ଚିମ ଆସମୁଦ୍ର ସୁବର୍ଣ୍ଣପୁର ମଧ୍ୟବର୍ତ୍ତୀ ସ୍ଥାନରେ ଅଧୀନସ୍ଥ ପାଇକମାନଙ୍କ ସହିତ ଆପଣା ଆପଣା ଅଧିକାର ମଧ୍ୟରେ ଦୀର୍ଘକାଳଯାବତ୍ ପରମ ସୁଖରେ ବାସ କରୁଥିଲେ । ହିନ୍ଦୁମୁସଲମାନ-ସମଦର୍ଶୀ ଦିଲ୍ଲୀଶ୍ୱର ଅକବରଙ୍କ ସୁଯୋଗ୍ୟ

ହିନ୍ଦୁ ସେନାପତି ଅମ୍ବରେଶ୍ୱର ମାନସିଂହ ଏବଂ ରାଜା ତୋଡ଼ରମଲ୍ଲଙ୍କ ଅନୁରୋଧରେ ତଥା ମାତୃଭୂମିର ଶାନ୍ତିରକ୍ଷା ନିମନ୍ତେ ଉତ୍କଳର ଖଣ୍ଡାଧିପତିମାନେ ନାମମାତ୍ର ମୋଗଲଠାରେ ବଶ୍ୟତା ସ୍ୱୀକାର କରିଥିଲେ । ତାହା ମଧ୍ୟ ପାର୍ବତ୍ୟ ଅରଣ୍ୟ ଖଣ୍ଡାଏତମାନଙ୍କ ସ୍ୱାଧୀନତାରେ ମୋଗଲ ହସ୍ତକ୍ଷେପ କରି ନାହାନ୍ତି । ସମୁଦ୍ର ଉପକୂଳ ସମତଳ ଭୂମିରେ ମୋଗଲାଧିକାର ସ୍ୱୀକୃତ ହୋଇଥିଲା—ସେହି ସ୍ଥାନ ମୋଗଲବନ୍ଦି ନାମରେ କଥିତ ହେଉଅଛି । ବର୍ତ୍ତମାନ ଉତ୍କଳ ପ୍ରତି ଦୃଷ୍ଟିପାତ କରି ଦେଖନ୍ତୁ, ଦେଶ ମଧ୍ୟରୁ ଶାନ୍ତିଦେବୀ ଏକାବେଳକେ ପ୍ରସ୍ଥାନ କରିଅଛନ୍ତି । ସର୍ବତ୍ର ଆତଙ୍କ, ସର୍ବତ୍ର ହାହାକାର, ସର୍ବତ୍ର ଦାରିଦ୍ର୍ୟର ପୂର୍ଣ୍ଣାବସ୍ଥା ! ଶତ ସହସ୍ର ଖଣ୍ଡାଏତଙ୍କର ଚୌପାଢ଼ୀ ଜାଗୀର ଆଜି ମାତ୍ର ବିଲୁପ୍ତ ହୋଇଅଛି । ଏହି ସମସ୍ତ ଅମଙ୍ଗଳର କାରଣ କିଏ ? ଅଥବା କାହାପ୍ରତି ଦୋଷାରୋପ କରିବା ଉଚିତ ନୁହେଁ, ଉତ୍କଳର ଭାଗ୍ୟଦୋଷ ! ଦେଖନ୍ତୁ, ହରିଶପୁରଠାରୁ ତାମ୍ରଲିପ୍ତ ପର୍ଯ୍ୟନ୍ତ ସମୁଦ୍ର ଉପକୂଳମାନ ବାଣିଜ୍ୟ ବୋଇତରେ ପରିପୂର୍ଣ୍ଣ ଥିଲା, ଉତ୍କଳ ନାବିକମାନେ ଯବ, ବ୍ରହ୍ମ, ସୁମାତ୍ରା, ଲକ୍ଷଦ୍ୱୀପ ପ୍ରଭୃତି ସ୍ଥାନକୁ ଗମନ କରି ବାଣିଜ୍ୟ ବିସ୍ତାର କରୁଥିଲେ, ଓଲନ୍ଦାଜ ଦସ୍ୟୁ ଗୋଷ୍ଠାଲିଶ ସମସ୍ତ ବିନଷ୍ଟ କରିଅଛି । ବର୍ତ୍ତମାନ ଉତ୍କଳର ବାଣିଜ୍ୟଧନ ସାଗରମଧ୍ୟଗତ । ଅବଶିଷ୍ଟ ଥିଲା ମୂଳଭାଗ । ହିନ୍ଦୁରାଜ ! ମହାରାଷ୍ଟ୍ରପତିଙ୍କଠାରେ ଖଣ୍ଡାଏତମାନଙ୍କ ପକ୍ଷରୁ ଏତିକି ମାତ୍ର ପ୍ରାର୍ଥନା କରୁଅଛୁଁ, ତାହାଙ୍କର ଉପଯାଚିତ ଅନୁଗ୍ରହ ସମ୍ବରଣ କରନ୍ତୁ । ସହସ୍ର ବର୍ଷରେ ଉତ୍କଳର କ୍ଷତି ପୂର୍ଣ୍ଣ ହେବ ନାହିଁ । ପରନ୍ତୁ ଆପଣ ବିଚାର କରନ୍ତୁ, ମୋଗଲ ଅଧିକାର ବିଲୋପ ନିମନ୍ତେ ମହାରାଷ୍ଟ୍ରଙ୍କ ସହାୟ ହେବୁଁ, ମୋଗଲ ଯିବେ, ମହାରାଷ୍ଟ୍ର ଆଧିପତ୍ୟ ବିସ୍ତାର କରିବେ, ଉତ୍କଳର ଲାଭ ?

ଦୂତ—ହେଉ, ମହାରାଷ୍ଟ୍ରପତିଙ୍କ ଅନୁଗ୍ରହକୁ ଯେବେ ଏତେ ଅମଙ୍ଗଳକର ଏତେ ତୁଚ୍ଛପଦାର୍ଥ ଜ୍ଞାନ କରନ୍ତି, ନ ହେଲା, ସେହି ଅନୁଗ୍ରହ ସମ୍ବରଣ କରିବେ । ଶତସହସ୍ର ଖଣ୍ଡାଧିପତି ବେରର ସିଂହଦ୍ୱାରଠାରେ ପ୍ରାର୍ଥୀ ହୋଇ ଠିଆ ହୋଇଅଛନ୍ତି । ମହାରାଷ୍ଟ୍ରପତିଙ୍କ ସହିତ ସନ୍ଧି କରିବା ନ କରିବା ସ୍ୱତନ୍ତ୍ର କଥା, ମାତ୍ର ପରିତାପର ବିଷୟ, ଆପଣ ଅକାରଣ ମହାମାନ୍ୟ ରାଜେଶ୍ୱରଙ୍କ ପ୍ରତି ଅଳୀକ ଦୋଷାରୋପ କରିବାକୁ ସଙ୍କୁଚିତ ହେଲେ ନାହିଁ । ଆପଣ ବୁଝନ୍ତୁ, ଖଣ୍ଡାଏତମାନଙ୍କ ବିନାଶର କାରଣ ମହାରାଷ୍ଟ୍ର ନୁହନ୍ତି, ସେମାନେ ସ୍ୱକୃତ ଅପରାଧର ଫଳଭୋଗ କରୁଅଛନ୍ତି । ବିଧର୍ମୀ ମ୍ଳେଚ୍ଛର ପକ୍ଷାବଲମ୍ବନ କରିବା କି ସେମାନଙ୍କ କର୍ତ୍ତବ୍ୟ ଥିଲା ? ଶତ୍ରୁ ବା ଶତ୍ରୁପକ୍ଷପାତୀ ଲୋକଙ୍କୁ ଶାସନ କରିବା କି ରାଜଧର୍ମାନୁମୋଦିତ ନୁହେଁ ? ରାଜସମ୍ମାନ ଓ ରାଜଧର୍ମ ରକ୍ଷା କରିବା ରାଜାମାନଙ୍କର ନିତ୍ୟ ବ୍ରତ ଅଟେ । ଆଚ୍ଛା, ହରିଶପୁର, ମରିଚପୁର, ବିସନପୁର, କୁଜଙ୍ଗ, ଆଳୀ, କନିକା, ମଧୁପୁର ଜମିଦାରମାନେ କି ଖଣ୍ଡାଏତ ?

ରାଜଗୁରୁ—ସବୁ କଥା ଜଣା ଅଛି, ଆପଣାର ପଦମର୍ଯ୍ୟାଦା ଆପଣାର ଆଧିପତ୍ୟ ପିତୃପିତାମହଙ୍କ ଅର୍ଜିତ ମାନସମ୍ଭ୍ରମ ହରାଇ ବର୍ଗୀ ଫୌଜଦାରଠାରେ ପଥାଳୀ କରିବାଠାରୁ ବିନଷ୍ଟ ଖଣ୍ଡାଏତମାନଙ୍କ ପନ୍ଥାନୁସରଣ କରିବା ସେମାନଙ୍କ ପକ୍ଷରେ ସହସ୍ର ଥର ଉଚିତ ଥିଲା । ଏମାନେ ଖଣ୍ଡାଏତ କୁଳର କଳଙ୍କ, ଏମାନଙ୍କ ସହାୟତାରେ ବର୍ଗୀ ଅନ୍ୟ ଖଣ୍ଡାଏତମାନଙ୍କ ବିନାଶ ସାଧନରେ ସମର୍ଥ ହେଲେ ।

ଦୂତ ଉତ୍ତେଜିତ ହୋଇ କହିଲେ, ହିଁ, ରାଜଗୁରୁ ଅବଧାନ ! ମହାରାଷ୍ଟ୍ରପତିଙ୍କର ସୈନ୍ୟବଳ ନ ଥିଲେ ! ଓଡ଼ିଆ ବାଉଁଶମୂଳୀ ପାଞ୍ଚଣମୁଠା ଧରି ଯୁଦ୍ଧ କରିବାକୁ ଶିଖି ଅଛନ୍ତି !

ଫତଆବାଦ କାନ୍ତି ଦଲବେହେରା ବନମାଳୀ ବଳିଆରସିଂହ ନିତାନ୍ତ ଉତ୍ତେଜିତ ହୋଇ ଖଣ୍ଡା-

ମୂର୍ତ୍ତି ବୃଦ୍ଧରୂପେ ଧରି ଛିଡ଼ା ହୋଇ କହିଲେ—ଏଁ—ହିଁ ହେ ଗୋସେଇଁ, କଣ ବୋଇଲେ କଣ ବୋଇଲେ? ଓଡ଼ିଆ ବାର୍ତ୍ତାଶମ୍ଭୁଳୀ ? ଆପଣ ପୋଥି ଚୋର ବାହାନ୍ତୁ । ବାର୍ତ୍ତାଶମ୍ଭୁଳୀ ମହିମା କଣ ବୁଝିବେ ? ଢେଙ୍କାନାଳର ପର୍ଯ୍ୟନ୍ତ ବିଶେଷ ହେଲେଇ, ବାମ ବୈଶିଗନ୍ତ୍ରନ, ସୌଖିନ ବିଶେଷ ହନବେହେଗ, ଦଧି ଦକ୍ଷିଣକପାଳଙ୍କ ପାଖଣ ମୂର୍ତ୍ତି-ବଳ ଭୂମି ଫୌଜଦାର ଭାସ୍କର ପଣ୍ଡିତ କହୁ ବୁଝି ଥିଲେ ! ଆପଣ କୃଣିଆପଣରେ ଅଧି ବାଘ ପାଳ ଗାନ୍ତି ଛନ୍ତି କି ?

ଅନ୍ୟାନ୍ୟ ହଳେଇ ଦଳବେହେଗମାନେ ଉତ୍ତେଜିତ ହୋଇ କଥା କହିବାକୁ ଚାହାନ୍ତି ଥିଲେ, ମାତ୍ର ମାଳାଭା ନିଷେଧସୂଚକ ଦୃଷ୍ଟିକ୍ଷେପ କରିବାରୁ ସମସ୍ତେ ନିବୃତ୍ତ ହେଲେ ।

ରପ୍ପୁଗୁରୁ ଦୂତଙ୍କୁ ଅନାଇ କହିଲେ, ମାଲବାର ଅବଧାନ ! ଏମାନଙ୍କ କଥା ଗ୍ରହଣ କରିବେ ନାହିଁ । ଏମାନେ ଛିଡ଼ଗ୍ରସ୍ତ ହୋଇ ଉତ୍ତେଜିତ ହୋଇ ପଡ଼ିଅଛନ୍ତି ।

ଦୂତ—ବର୍ଗୀବଗେଯ଼ ଖଣ୍ଡାଏତମାନଙ୍କ କଥା ଯାହା ହେଉ, ମାତ୍ର ଏହି ବ୍ୟକ୍ତିମାନଙ୍କର ଏପରି ଅସମ୍ଭ୍ରମଜନକ କଥା କହିବାର କି ଅଧିକାର ଅଛି ?

ରପ୍ପୁଗୁରୁ—ଦୂତରାଜ ! "ସତ୍ୟଂ ବ୍ରୂୟାତ୍ ପ୍ରିୟଂ ବ୍ରୂୟାତ୍—" ଅମ୍ଭେ ଅନିଚ୍ଛାରେ ଆପଣଙ୍କ କଥାରେ ସତ୍ୟ ଉତ୍ତର ଦେବାକୁ ବାଧ୍ୟ ହେଉ ଅଛୁଁ । ଆପଣ ଉତ୍କଳଖଣ୍ଡର ବର୍ତ୍ତମାନ ଅବସ୍ଥା ଅବଗତ ନୁହନ୍ତି, ଅଥବା ଅମୃପକ୍ଷ ସମର୍ଥନ ନିମନ୍ତେ ଏପରି କଥା କହୁଅଛନ୍ତି । ଉତ୍କଳ ଖଣ୍ଡାଏତମାନେ ସହସ୍ର ବର୍ଷ ଯାବତ୍ କାଳ ସ୍ୱାଧୀନତାର ଅମୃତମୟ ଫଳ ଭୋଗ କରି ଆସୁ ଥିଲେ । ଆନନ୍ଦୋତ୍ସବପୂର୍ଣ୍ଣ ଶତଶତ ଖଣ୍ଡାଏତ ଗ୍ରାମ ବର୍ତ୍ତମାନ ଶ୍ମଶାନକ୍ଷେତ୍ରରେ ପରିଣତ ହୋଇ ପଡ଼ିଅଛି ! ବର୍ତ୍ତମାନ ଉତ୍କଳୀୟମାନେ ମରହଟ୍ଟା ମାନଙ୍କୁ ନରମାଂସାଶୀ ବ୍ୟାଘ୍ର ଭଲ୍ଲୁକଠାରୁ ଅଧିକ ଭୟ କରୁଅଛନ୍ତି । ଯେଉଁ ଜାତି ପ୍ରତି ଲୋକ ସାଧାରଣର ଏପରି ଅବିଶ୍ୱାସ, ଏପରି ଭୟ, ସେ ଜାତି ପକ୍ଷରେ ରାଜସିଂହାସନ ଅଧିକାର କରିବା ବିଡ଼ମ୍ବନା ମାତ୍ର । ପାଶବ ବଳରେ ରାଜ୍ୟାଧିକାର କଦାଚ ସ୍ଥାୟୀ ହୋଇ ନ ପାରେ । ରାଜାପ୍ରଜାଙ୍କ ମଧ୍ୟରେ ପିତାପୁତ୍ର ସମ୍ବନ୍ଧ । "ସ ପିତା ପିତର-ସ୍ତେଷାଂ କେବଲଂ ଜନ୍ମହେତବଃ" ଆପଣ ବୋଲନ୍ତୁ, ଆପଣମାନଙ୍କ ଅଧିପତ୍ୟକୁ ରାଜ୍ୟ-ଶାସନ କି ଲୁଣ୍ଠନ, କଣ ବୋଲିବେ ? ଫୌଜ-ଦାରମାନଙ୍କ ଜୁଲମରେ ଗ୍ରାମକୁ ଗ୍ରାମ ଅରଣ୍ୟମୟ ହୋଇ ଗଲାଣି ।

ଦୂତ—ଅଚ୍ଛା, ରପ୍ପୁଗୁରୁ ଅବଧାନ, ଆପଣ ମୋତେ ବୁଝାଇ ଦେଲନ୍ତୁ ତ ମାଳାଭାଙ୍କର କୌଣସି ଚାକର ଯେବେ ଦୋଷ କରେ, ସେଥି ସକାଶେ ସ୍ୱୟଂ ମାଳାଭା ଦୋଷୀ ହେବେ କି ? ଦୂରବର୍ତ୍ତୀ ସ୍ଥାନରେ ଜଣେ ଫୌଜଦାରର ଦୋଷରେ ସ୍ୱୟଂ ରଘୁଜୀ ଭୋଁସଲା ଦୋଷୀ ହେବା ସେହିପରି କଥା !

ରପ୍ପୁଗୁରୁ—ଆପଣ ଯେବେ ଚାକରକୁ ଚୋରି କରିବାକୁ ଉପଦେଶ ଦେବେ, ସୁଯୋଗ ଦେବେ, ତେବେ ସେହି ଚୋରି ଚାକର ସକାଶେ କିଏ ଦାୟୀ ହେବ ? ବେରାର ଦରବାରରେ ଉତ୍କଳ ଦେଶଟା ନିଲାମରେ ବିକି ହୁଏ; ଯେ ବେଶି କନ୍ତ୍ରାତ ଗଣି ପାରେ, ସେହି ଫୌଜଦାରୀ ପ୍ରାପ୍ତ ହୁଏ । ଫୌଜଦାର ଯେତେ କାହାଣ କନ୍ତ୍ରାତ ଗଣି ଦେଇଅଛି, ମୂଳ କନ୍ତ୍ରାତର ଦେନ ଅଣ୍ଟାଇ କରିବ ତ ? ପ୍ରଜା ମଲେ ବା ଗଲେ ତାହାଙ୍କ ତ କେହି ଲଗା ଥାଏ ନାହିଁ । ପୁଣି ସେହି ଫୌଜଦାର ପ୍ରଜା ଘରୁ ବେଶି ବେଶି ଟଙ୍କା ଅସୁଲ କରିବାକୁ ଚେଷ୍ଟା କରେ । କାରଣ, ଦରବାର ପ୍ରତି ତାହାର ପ୍ରତ୍ୟୟ ନାହିଁ । ହନନ ଯେନ ଆସିଲା ବେଳେ ଆଉ କେହି ସନନ ଯେନ ଆସିଲା ପରା, ଏହି ଭୟରେ ପଛକୁ ଅନାଉଥାଏ । ବାଧର୍ମୀ ଭୂର୍କ ଅଧିକାରରେ ବରଂ ପ୍ରଜାମାନେ କଷ୍ଟ ସୁଖରେ ଅଛନ୍ତି ।

ଦୂତ—ଆପଣ ଯେ ସମସ୍ତ କଥା ବୋଇଲେ ପ୍ରକୃତରେ ସେ ସମସ୍ତ ସତ୍ୟ ବୋଲି ବିଶ୍ୱାସ କରିବାକୁ ଆମ୍ଭେ ପ୍ରସ୍ତୁତ ନୋହୁଁ । ଅଚ୍ଛା, ଉକ୍ତ କ୍ଷେତ୍ରରେ ସତ୍ୟ ବୋଲି ସ୍ୱୀକାର କଲୁଁ । ସେଥି ପାଇଁ କ ସ୍ୱଧର୍ମାବଲମ୍ବୀଙ୍କୁ ତ୍ୟାଗ କରି ବିଧର୍ମୀ ମ୍ଳେଚ୍ଛ ଗୋଖାଦକ ପକ୍ଷ ଅବଲମ୍ବନ କରିବା ଧର୍ମପରାୟଣ ହିନ୍ଦୁସନ୍ତାନ ପକ୍ଷରେ ଉଚିତ ?

ରାଜଗୁରୁ—ଆପଣ ଜଣେ ଅସାଧାରଣ ପଣ୍ଡିତ ବୋଲି ସର୍ବତ୍ର ବିଦିତ । ଆପଣଙ୍କୁ କ ରାଜନୀତି ପ୍ରସଙ୍ଗ ବୋଲିବାକୁ ହେବ ? ନୀତିବେତ୍ତାମାନେ କହିଅଛନ୍ତି "ଉପକର୍ତ୍ତ୍ରା ସମଂ ସନ୍ଧିର୍ନମିତ୍ରେଣାପକାରଣା" ବୋଇଲା, ଉପକାରୀ ଲୋକ ସହିତ ସନ୍ଧି କରିବ, ମିତ୍ର ହେଲେ ମଧ୍ୟ ଅପକାରୀ ବ୍ୟକ୍ତି ସହିତ ସନ୍ଧି ଅକର୍ତ୍ତବ୍ୟ ।

ରାଜଗୁରୁଙ୍କ କଥାରେ ମାଳଶ୍ରୀ ବାଧା ଦେଇ ବୋଇଲେ, ରାଜଗୁରୁ ଅବଧାନ ! ସେ ସମସ୍ତ କଥା ପରିତ୍ୟାଗ କରନ୍ତୁ । ରାଜକାର୍ଯ୍ୟରେ ଯେବେ କୌଣସିଠାରେ କିଛି ଦୋଷ ଥାଏ, ତାହା ସହଜରେ ସଂଶୋଧିତ ହୋଇ ପାରେ । ମାତ୍ର ମହାରହି ସନାତନ ଧର୍ମ ନଷ୍ଟ ହେଲେ ତାହା ତ ପୁନର୍ବାର ପ୍ରାପ୍ତ ହେବେ ନାହିଁ । ହିନ୍ଦୁ ଧର୍ମ ଯେପରି ସ୍ୱଚ୍ଛ ନିର୍ମଳ, ସେହିପରି ଭଙ୍ଗପ୍ରବଣ, ମ୍ଳେଚ୍ଛ ସହିତ ସଂସର୍ଗ ମାତ୍ରକେ ବିନଷ୍ଟ ହୁଏ । ଥରେ ବିନଷ୍ଟ ହେଲେ ପୁନଃପ୍ରାପ୍ତ ହେବା କଠିନ । ଆପଣ ଥରେ ସନାତନ ଆର୍ଯ୍ୟ ଧର୍ମ ପ୍ରତି ଦୃଷ୍ଟିପାତ କରନ୍ତୁ । ପୁଣ୍ୟକ୍ଷେତ୍ର ଉତ୍କଳଖଣ୍ଡ ଦେବପ୍ରଧାନ ଦେଶ, ପବିତ୍ର ଦେବାଳୟରେ ପରିପୂର୍ଣ୍ଣ । ଦେଖନ୍ତୁ, କାଶୀ ବିଶ୍ୱେଶ୍ୱର ମନ୍ଦିର ଗଲା, ବୃନ୍ଦାବନ ଗୋବିନ୍ଦଜୀ ମନ୍ଦିର ଗଲା, କାଳଞ୍ଜର, ଚିତୋର, ଅନହିଲବାର, ଅବନ୍ତୀ, ପ୍ରାଚୀନଧାରା ପ୍ରଭୃତି ପବିତ୍ର ସ୍ଥାନମାନ ଦେବାଳୟଶୂନ୍ୟ । ରାଜଗୁରୁ ଅବଧାନ ! ସନାତନ ଆର୍ଯ୍ୟଧର୍ମ ନାମରେ ଆମ୍ଭେ ଅନୁରୋଧ କରୁଅଛୁଁ, ଉତ୍କଳଖଣ୍ଡର ଦେବମନ୍ଦିରମାନଙ୍କ ପ୍ରତି ଯେପରି ଅତ୍ୟାଚାର ନ ଘଟେ ଏବଂ ଭଗବତୀ ଗୋମାତା ଶୋଣିତରେ ଉତ୍କଳ ଦେବଭୂମି ଯେପରି ଅପବିତ୍ର ନ ହୁଏ, ସେଥି ସକାଶେ ଆପଣଙ୍କର ସହାୟ ହେବାର ଉଚିତ ।

ରାଜଗୁରୁ—ଦୂତରାଜ ! ଉଭୟ କିମ୍ବା ସ୍ୱାର୍ଥର ଅନୁରୋଧରେ ଏକ ନରପତି ଅନ୍ୟ ନରପତି ସହିତ ସନ୍ଧି କରିଥାନ୍ତି । ଉପସ୍ଥିତ କ୍ଷେତ୍ରରେ ଉଭୟ କାରଣର ଅଭାବ ଜାଣିବେ । ଆଉ ଯେ ଉତ୍କଳ ଦେବାଳୟ ରକ୍ଷା ବିଷୟ କହିଲେ, ଶତ ଆଲବର୍ଦ୍ଦି ବା ସହସ୍ର ଆରଙ୍ଗଜେବ ଭୁବନେଶ୍ୱର ବା ଜଗନ୍ନାଥ ମନ୍ଦିରର ପ୍ରସ୍ତରଖଣ୍ଡର ରେଣୁ ମାତ୍ର ସ୍ପର୍ଶ କରି ପାରିବେ ନାହିଁ । ସମସ୍ତ ଭାରତବର୍ଷ ଏହି ଦୁଇ ମନ୍ଦିରର ପ୍ରହରୀ । ବର୍ତ୍ତମାନ ବା ଭାବୀ କାଳରେ ଯେଉଁ ରାଜା ଏହି ମନ୍ଦିରମାନଙ୍କ ବିନାଶ ସାଧନରେ ହସ୍ତକ୍ଷେପ କରିବ, ତାହାର ପତନ ଅବଶ୍ୟମ୍ଭାବୀ । ପଞ୍ଚଶତ ବର୍ଷବ୍ୟାପୀ ଭାରତ ଅଧିକାର କାଳରେ ଯବନ କୌଣସି ପ୍ରକାର ଅନିଷ୍ଟ ସାଧନରେ ସମର୍ଥ ହୋଇ ନାହିଁ । ଆମ୍ଭଙ୍କୁ ଅତି କଷ୍ଟରେ ଏବଂ ସଙ୍କୁଚିତ ଭାବରେ ବୋଲିବାକୁ ହେଉଅଛି, ଉତ୍କଳ ମହାତୀର୍ଥ କ୍ଷେତ୍ରର ବର୍ତ୍ତମାନ ଯେବେ କୌଣସି ବୈରି ଉପସ୍ଥିତ ଥାଏ, ସେ କେବଳ ହିନ୍ଦୁକୁଳସନ୍ତାନ ମହାରାଷ୍ଟ୍ର-ବଂଶଧରମାନେ ! ଅଠରନଳା ଘାଟର ମଙ୍ଗି ଜୁଲମରେ ଗରିବ ଦୁଃଖୀଲୋକେ ତୀର୍ଥ ଦର୍ଶନରୂପ ମହାପୁଣ୍ୟରୁ ବଞ୍ଚିତ ହେଲେଣି । ବୋଲନ୍ତୁ ଦେଖି, ଆରଙ୍ଗଜେବର-ଜଜିଆଠାରୁ ଏହାର ପାର୍ଥକ୍ୟ କଣ ଅଛି ? ସେଥିରେ ବରଞ୍ଚ ରକ୍ଷା ଥିଲା । ସେ ଦିନ ଗୋଡଖାଲଠାରେ ଘଟିଥିବା ଘଟଣା ଲୋକେ ଚିରକାଳ ସ୍ମରଣ କରିବେ । ଆପଣ ତ ପ୍ରତ୍ୟେକ କଥାରେ ହିନ୍ଦୁଧର୍ମ ହିନ୍ଦୁ ଜାତିର କଥା ଉଲ୍ଲେଖ କରୁଅଛନ୍ତି; ଶାନ୍ତ, ଶିଷ୍ଟ, ସମ୍ଭ୍ରାନ୍ତ, ଧର୍ମକାମୀ, ତୀର୍ଥଯାତ୍ରିମାନଙ୍କ ଧନ ପ୍ରାଣ ହରଣ କରି ସେମାନଙ୍କ ଲକ୍ଷ୍ମୀରୂପା କୁଳବତୀ ରମଣୀମାନଙ୍କ ଲଜ୍ଜାଶୀଳତା ପ୍ରତି ହସ୍ତକ୍ଷେପ କରିବା କ

ଜୀବିତ ହୋଇଅଛି ? ବିଧର୍ମୀ ଯବନ ମଧ୍ୟ ଏପରି ଜଘନ୍ୟ କର୍ମ କରିବାକୁ ସଙ୍କୁଚିତ ହୁଅନ୍ତି । ଯେଉଁ ମହାତ୍ମା ଶିବଜୀ ବନ୍ଦୀକୃତା ଅପୂର୍ବ ସୁନ୍ଦରୀ ଯୁବତୀ କଲ୍ୟାଣପୁତ୍ରୀଙ୍କୁ ମାତୃସମ୍ବୋଧନ କରି ସମର୍ଯ୍ୟାଦାରେ ବିଦାୟ ପ୍ରଦାନ କରିଥିଲେ, ସେହି ମହାତ୍ମାଙ୍କ ବଂଶଧରମାନଙ୍କ ହସ୍ତରେ ସ୍ୱଜାତୀୟ କୁଳବତୀମାନଙ୍କ ଅସମ୍ମାନ ବିନିପାତର ପୂର୍ବ ଲକ୍ଷଣ ଜାଣିବେ । ଆପଣ ଯଦି ଏଥିରେ ପ୍ରତି-ବାଦ କରନ୍ତି, ଉତ୍ତର ଦେବାକୁ ଆମ୍ଭର ଭାଷା ନାହିଁ । ମହାକବି ମାଘକାର କହିଅଛନ୍ତି, ପୁନଃ-ପୁନଃ ଅପରାଧକାରୀ ଲୋକ କ୍ଷମାର ଅଯୋଗ୍ୟ ।

ଦୂତ ଶିଓଶଙ୍କର ମାଳବୀର ବକ୍ଷରୁ ଅପ୍ରତିଭ ଲଜ୍ଜିତ ହେଲା ପରି ଗୋଟିଏ ଦୀର୍ଘ ନିଶ୍ୱାସ ପକାଇ କହିଲେ, ରାଜଗୁରୁ ଅବଧାନ ! ଆମ୍ଭେ ଦୂତ-ରୂପେ ବୋଲି ପାରୁଁ, ଭାସ୍କର ପଣ୍ଡିତଙ୍କ ଅଗୋଚରରେ ଏହି ଦୁର୍ଯୋଗ ଘଟିଅଛି । ମାତ୍ର ସେହି ସ୍ତ୍ରୀଲୋକମାନେ ସାବଧାନରେ ରକ୍ଷିତ ଅଛନ୍ତି ।

ରାଜଗୁରୁ—କେଉଁ ଦରବାରକୁ ସମ୍ଭ୍ରାନ୍ତ ଅତିଥି ଆସିଲେ ସେମାନଙ୍କ ସଙ୍ଗରେ ଦିଆଯିବା କମ୍ବା ବ୍ରାହ୍ମଣମାନଙ୍କୁ ଦାନ କରାଯିବା ଉଚିତ ପରି ? ସଙ୍ଗରେ ଖାଦ୍ୟଦ୍ରବ୍ୟ ସହିତ ସ୍ତ୍ରୀଲୋକ ଦିଆଯିବ, କେଉଁ ଦରବାରର ଏ କି ଗର୍ହିତ ପ୍ରଥା, ଦୂତରାଜ ?

ଦୂତ—ଆପଣ ପୁରାଣଜ୍ଞ, ସମସ୍ତ ବିଷୟ ବିଦିତ ଅଛନ୍ତି । ଭଗବାନ୍ କୃଷ୍ଣଦ୍ୱୈପାୟନକୃତ ମହା-ଭାରତ ଉଦ୍ଘାଟନ କରି ଦେଖନ୍ତୁ, କୁରୁପାଣ୍ଡବ-ବଂଶୀୟ ରାଜାମାନେ ଅତିଥି ଏବଂ ବ୍ରାହ୍ମଣମାନଙ୍କୁ କୁମାରୀ କନ୍ୟା ଦାନ କରୁଥିଲେ । ସେମାନେ କି ପରର କୁଳକନ୍ୟାମାନଙ୍କୁ ଦାନ କରୁଥିଲେ ? ସ୍ୱରାଜ୍ୟ ମଧ୍ୟରୁ ସଂଗ୍ରହ କରୁଥିଲେ କି ? ଶ୍ରୀକୃଷ୍ଣ ଦୂତରୂପେ ହସ୍ତିନାକୁ ଯିବା ସମୟରେ ଦୁର୍ଯ୍ୟୋଧନ ତାହାଙ୍କୁ ସହସ୍ର କନ୍ୟା ଉପହାର ଦେଇଥିଲେ, ଆପଣ କି ଏହା ଅସ୍ୱୀକାର କରନ୍ତି ?

ରାଜଗୁରୁ—ହୋଇଥିବ, ଆମ୍ଭେ ସେ ପୁରାଣ କଥା ଜଣା ନାହିଁ । କଣ ପ୍ରଜାଏ ଚୌଥ ସରଦେଶମୁଖୀ ଦେବାକୁ ଅସମର୍ଥ ହେଲେ ପାଣ୍ଡବ ପାଞ୍ଚ ଭାଇ ଦୁର୍ଯ୍ୟୋଧନ ଶଏ ଭାଇ ଘୋଡ଼ା ଚଢ଼ି ଯାଇ ପ୍ରଜାମାନଙ୍କ ସ୍ତ୍ରୀକନ୍ୟାମାନଙ୍କୁ ଧରି ଆଣି ବାନ୍ଧୁଥିଲେ !

ଦୂତ—ଆମ୍ଭେ ଦେଖୁଅଛୁଁ, ଆପଣ ମହାରାଷ୍ଟ୍ର ଦ୍ରୋହ ବର୍ଣ୍ଣନାରେ ବିଶେଷ ନିପୁଣତା ଲାଭ କରି ଅଛନ୍ତି । ଆପଣ ଜଣେ ସତ୍କୁଳଜାତ ବୈଷ୍ଣବ ବ୍ରାହ୍ମଣ । ଉତ୍କଳଶ୍ରେଣୀ କୌଣସି ବ୍ରାହ୍ମଣ ମୁଖରୁ ଏପରି ଅକୃତଜ୍ଞ କଥା ବାହାରିବ, ଆମ୍ଭର ବିଶ୍ୱାସ ନ ଥିଲା । ଉତ୍କଳଖଣ୍ଡରେ କିଏ ସହସ୍ର ସହସ୍ର ବ୍ରାହ୍ମଣଶାସନ ସ୍ଥାପନ କରିଅଛି, କାହା ଅନୁଗ୍ରହରୁ ଲକ୍ଷ ଲକ୍ଷ ବ୍ରାହ୍ମଣ ପ୍ରତିପାଳିତ ହେଉଅଛନ୍ତି ଏବଂ ଯାବଚ୍ଚନ୍ଦ୍ରାର୍କ ଜୀବନ ଧାରଣ କରି ତ୍ରିସନ୍ଧ୍ୟାରେ ଆଶୀର୍ବାଦ କରିବେ ? ମହାରାଷ୍ଟ୍ର ଭୂମି ଦାନ କରି ନ ଥିଲେ ଉତ୍କଳଖଣ୍ଡରୁ ବ୍ରାହ୍ମଣ୍ୟ ଧର୍ମ ବିଲୁପ୍ତ ହୋଇ ଥାନ୍ତା, ବ୍ରାହ୍ମଣମାନେ ଉଦରପୋଷଣ ନିମନ୍ତେ ଶୂଦ୍ର ଘରେ ଦାସତ୍ୱ ସ୍ୱୀକାର କରି ଥାନ୍ତେ । କେଉଁ ଦିନ କେଉଁ ବିଧର୍ମୀ ରାଜା ବ୍ରାହ୍ମଣଶାସନ ବସାଇ ଅଛି ? ଆପଣ ଯେପରି ଯବନପକ୍ଷପାତୀ ଦେଖୁଅଛୁଁ, କିଛି କାଳ ଇନାମ୍ ପାଇବା ପ୍ରତ୍ୟାଶା କରନ୍ତି ।

ରାଜଗୁରୁ— ଶାସନସ୍ଥାପନକାରୀ ମହାତ୍ମା ଶିବଜୀଙ୍କୁ ଅନନ୍ତ କାଳ ପର୍ଯ୍ୟନ୍ତ ଉତ୍କଳ ବ୍ରାହ୍ମଣ-ମାନେ ତ୍ରିସନ୍ଧ୍ୟାରେ ଅବଶ୍ୟ ଆଶୀର୍ବାଦ କରିବେ । ଆଉ କୌଣସି କୌଣସି ଫୌଜଦାର ଛୋଟ ଛୋଟ ଶାସନ ବସାଇଅଛନ୍ତି ସତ୍ୟ, ପ୍ରଜାଙ୍କ ଦୁଗ୍ଧବତୀ ଧେନୁକୁ ହତ୍ୟା କରି ତାହାର ଚର୍ମରେ ନିର୍ମିତ ପାଦୁକା ବ୍ରାହ୍ମଣକୁ ଦାନ କଲେ ସେଥିରେ ଯଦି ପୁଣ୍ୟ ସଞ୍ଚିତ ହୁଏ, ତେବେ ନିଶ୍ଚୟ ସେମାନେ ଘୋଡ଼ା ଚଢ଼ି ସଳଖେ ସଳଖେ ସ୍ୱର୍ଗରାଜ୍ୟକୁ ଚାଲି ଯିବେ, ସନ୍ଦେହ ନାହିଁ । ଦୂତରାଜ ! ଆମ୍ଭେ ପୂର୍ବାପର ସମସ୍ତ ବିଷୟ ପର୍ଯ୍ୟାଲୋଚନା କରି

ଦେଖୁଅଛୁଁ, ମରହଟ୍ଟା ସହିତ ସନ୍ଧି ଏକପ୍ରକାର ଇସ୍ତଫାର ପ୍ରଶସ୍ତ ଦେବା ସଙ୍ଗେ ସମାନ ।

ଦୂତ—ବ୍ରାହ୍ମଣମାନଙ୍କ ମୁଖ ଅବାରିତ ସତ୍ୟ, ମାତ୍ର ଆପଣ ବିସ୍ମିତ ହେବେ ନାହିଁ, କାହାର ପ୍ରତେ୍ୟକ ହୋଇ କଥା କହୁଅଛନ୍ତି, କାହାର ଭାବ ଅଶୁଭମାର୍ଗ ପରିଷ୍କାର କରିବାକୁ ଉଦ୍ୟତ ହେଉ ଅଛନ୍ତି । ବେଗର ଦରବାରରେ ଏ କଥା ଅଗୋଚର ରହିବ ନାହିଁ । ଭୀମକାନ୍ତ ଶାଣିତ-ଅସ୍ତ୍ରଧାରୀ ଲକ୍ଷ ଲକ୍ଷ ପଦାତିକ ଲକ୍ଷ ଲକ୍ଷ ଅଶ୍ୱାରୋହୀ ଯେଉଁ ଦରବାର ସିଂହଦ୍ୱାରରେ ଆଜ୍ଞାପେକ୍ଷୀ ହୋଇ ଠିଆ ହୋଇଅଛନ୍ତି, ସେହି ଦରବାରରେ ଏହି ଅପମାନସୂଚକ କଥା ଅବଶ୍ୟ ହିଁ ଆଲୋଚିତ ହେବ ।

ରାଜଗୁରୁ ଈଷତ୍ ହାସ୍ୟ କରି କହିଲେ—ଦୂତରାଜ ! ଭୟ ପ୍ରଦର୍ଶନଦ୍ୱାରା କାର୍ଯ୍ୟୋଦ୍ଧାର କରିବାର ବାସନା ଯେବେ ମନ ମଧ୍ୟରେ ପୋଷଣ କରି ଥାନ୍ତି, ସେ ଚେଷ୍ଟା ବିଡ଼ମ୍ବନା ବୋଲି ଜାଣିବେ । ଗୌରବାନ୍ୱିତ ବେଗର ଦରବାରର ଗ୍ଲାନି ରଟନା କରିବା କଦାଚ ଏହି ଦରବାରର ଉଦ୍ଦେଶ୍ୟ ନୁହେଁ । ତେବେ ଆପଣଙ୍କ କଥାର ଯଥାଯୋଗ୍ୟ ଉତ୍ତର ଦେବାକୁ ଯେବେ ଅହିତକର ବିବେଚନା କରନ୍ତି, ଆମ୍ଭେ ନିରୁତ୍ତର ।

ମାଳଖାର ଈଷତ୍ ଶାନ୍ତଭାବରେ କହିଲେ, ଅମ୍ଭର ଇଚ୍ଛା, ସହଜରେ ସମସ୍ତ ବିଷୟ ନିଷ୍ପତ୍ତି ହୋଇ ଯାଉ । ଅମ୍ଭେ ବନ୍ଧୁଭାବରେ ବୋଲୁ ଅଛୁଁ, ମାହାତା ଯେଉଁ ଯବନର ପକ୍ଷପାତୀ, ତାହାର ପତନ କାଳ ଦୂରବର୍ତ୍ତୀ ନୁହେ । ଅଳି-ବର୍ଦ୍ଦିର ଅସନ୍ନ କାଳ ଉପସ୍ଥିତ ।

ରାଜଗୁରୁ—ହିନ୍ଦୁ ବା ତୁର୍କ କାହାର ଆଧିପତ୍ୟ ଭାରତଖଣ୍ଡରେ ରହିବ ନାହିଁ । ଏମାନେ ଧର୍ମ-ତ୍ୟାଗୀ, କର୍ତ୍ତବ୍ୟପାଳନରେ ଅମନୋଯୋଗୀ । ବିଧାତା ଏମାନଙ୍କ ପ୍ରତି ବିମୁଖ । ସାର୍ବଭୌମ ପ୍ରେମ, ନ୍ୟାୟପରତା, ପ୍ରଜାହିତୈଷଣା, ଅପକ୍ଷ-ପାତିତା, ସତ୍ୟନିଷ୍ଠା ପ୍ରଭୃତି ରାଜକୀୟ ଗୁଣରୁ ଏମାନେ ବର୍ଜିତ । ନ୍ୟାୟପର ଆକବର ଓ ଧର୍ମ-ପ୍ରାଣ ଶିବଜୀଙ୍କ ସହିତ ପ୍ରକୃତ ରାଜଧର୍ମ ଦୁଇ ଜାତି ମଧ୍ୟରୁ ବିଲୁପ୍ତ ହୋଇଅଛି ବୋଲି ଜାଣିବେ ।

ମାଳଖାର—ଆପଣ ଅଦ୍ଭୁତ କଥା କହୁଅଛନ୍ତି, ପୃଥିବୀ କି ଅରାଜକ ହେବ ?

ରାଜଗୁରୁ—ବୈବସ୍ୱତ ମନ୍ୱନ୍ତରଠାରୁ ଅଦ୍ୟା-ବଧି ପୃଥିବୀ କେବେ ଅରାଜକ ହୋଇ ନାହିଁ, ସମୟ ସମୟରେ ରାଜପରିବର୍ତ୍ତନ ଘଟିଅଛି । ଈଶ୍ୱରଶୂନ୍ୟ ବ୍ରହ୍ମାଣ୍ଡ ରାଜହୀନ ରାଜ୍ୟ ମୁହୂର୍ତ୍ତେ ତିଷ୍ଠିବା ଅସମ୍ଭବ । ଆମ୍ଭେ ଶୁଣୁଅଛୁଁ, ସାଗର-ଗର୍ଭସ୍ଥିତ ଶ୍ୱେତଦ୍ୱୀପରୁ ଶ୍ୱେତକାନ୍ତ କେତେଗୁଡ଼ିଏ ବଣିକ୍ ଆସି ସୂତାନୁଟି ଗୋବିନ୍ଦପୁରଠାରେ ବାଣିଜ୍ୟ ଦୋକାନ ମେଲି ଅଛନ୍ତି । ସେମାନେ ଯେପରି ଶୁକ୍ଳବର୍ଣ୍ଣ, ସେହିପରି ଶୁକ୍ଳକର୍ମା ଅଟନ୍ତି । ଦେଖିବା ହେଉ, ହିନ୍ଦୁସନ୍ତାନ ହିନ୍ଦୁରାଜାଙ୍କୁ ଅବିଶ୍ୱାସ କରି—ମୁସଲମାନ ମୁସଲମାନରାଜାଙ୍କୁ ଅବିଶ୍ୱାସ କରି ଅଜ୍ଞାତକୁଳଶୀଳ ଅନତିଦୀର୍ଘବାସସ୍ଥାନ ଭିନ୍ନଧର୍ମୀ ସେହି ଶ୍ୱେତଦ୍ୱୀପବାସିଙ୍କ ଆଶ୍ରୟରେ ନିର୍ଭୟରେ ସ୍ୱଚ୍ଛନ୍ଦରେ ବାସ କରୁଅଛନ୍ତି । ସେହି ଶୁକ୍ଳବର୍ଣ୍ଣ ଲୋକେ ନ୍ୟାୟପର, ଶରଣାଗତପ୍ରତି-ପାଳକ, ବିପନ୍ନର ବନ୍ଧୁ, ନିରାଶ୍ରୟର ଆଶ୍ରୟ । କୁଟିଳତା-ସ୍ୱାର୍ଥପରତା-ପୂର୍ଣ୍ଣ ବଣିକ୍ ବ୍ୟବସାୟରେ ଯେଉଁମାନେ ଏପରି ନ୍ୟାୟପର, ରାଜ୍ୟେଶ୍ୱର ହେଲେ ସେମାନଙ୍କ ଅଧୀନରେ ପ୍ରଜାମାନେ ଯେ ସୁଖରେ ଦିନଯାପନ କରିବେ, ଏଥିରେ ସନ୍ଦେହ ମାତ୍ର ନାହିଁ । ତେ ଦିନ ସମାନ ଥାଏ ନାହିଁ । ଭାରତଭୂମି ଯଥେଷ୍ଟ ଅତ୍ୟାଚାର ଭୋଗ କଲାଣି, ଅବଶ୍ୟ ଦୁଃଖଦିନର ଅବସାନ ହେବ । ହିନ୍ଦୁ ବା ତୁର୍କ ରାଜଶକ୍ତିର ଯଥେଷ୍ଟ ଅପବ୍ୟବହାର କଲେଣି, ଭଗବାନ୍ ନୂତନ ରାଜା ପ୍ରେରଣ କରିବେ । ଅନ୍ୟଥା ହିନ୍ଦୁ ବା ତୁର୍କ କାହାରି ହାତରେ ଆଧିପତ୍ୟ ରହିଲେ ପରସ୍ପର ବିରୋଧରେ ମହାପ୍ରାଣିଶୋଣିତ ତରଙ୍ଗ ପ୍ରବାହିତ ହେବ । ଅମ୍ଭେ ଗତ ସମ୍ବତ୍ସର ମକର ବାରୁଣୀ ଉପଲକ୍ଷରେ

ଶିଙ୍ଗାପାନଙ୍କୁ ଯାଉଥିଲୁ । କାଳୀଘାଟ ନିକଟରେ ଗୋଟିଏ ଶ୍ୱେତବର୍ଣ୍ଣ ଲୋକ ସହିତ ସାକ୍ଷାତ ହୋଇଥିଲା । ତାହାର ନାମ ପାଦ୍ରୁତ, ସେ ଶ୍ୱେତବର୍ଣ୍ଣ ଲୋକମାନଙ୍କ ପୁରୋହିତ ଅଟେ । ସେ ପାଦ୍ରୁତ ଦେଶୀୟ ଭାଷା ଭଲ ବୁଝି ପାରେ, କହି-ପାରେ । ଅନେକ ବେଳଯାଏ ତାହା ସହିତ କଥାବାର୍ତ୍ତା ହେଲା । ସେ ଯେ ସମସ୍ତ କଥା କହିଲା, ସେଥିର ସାର ମର୍ମ ଏହି :— "ଏକମାତ୍ର ମହାନ୍ ପ୍ରଭୁ ପରମେଶ୍ୱର ବିଶ୍ୱବ୍ରହ୍ମାଣ୍ଡର ଅଧିପତି ଅଟନ୍ତି, ମାନବଜାତି ତାହାଙ୍କ ପୁତ୍ର, ତୁମ୍ଭର ସାମର୍ଥ୍ୟ, ତୁମ୍ଭର ଜ୍ଞାନ ମାନବଜାତିର ଉନ୍ନତିକଳ୍ପେ ଉତ୍ସର୍ଗ କର । ପୁତ୍ର ପ୍ରତି ଅତ୍ୟାଚାରୀ ଲୋକ ପିତାଙ୍କର ବିରାଗ-ଭାଜନ ହୁଅନ୍ତି, ସେହିପରି ମାନବଜାତିର ହିଂସା-କାରୀ ମାନବଜାତିର ଅପ୍ରେମକାରୀ ଲୋକ କରୁଣା-ମୟ ପିତା ପରମେଶ୍ୱରଙ୍କର ଅପ୍ରିୟପାତ୍ର ଜାଣିବ । ତୁମ୍ଭେ ଯେଉଁ ଦୟା ଯେଉଁ କ୍ଷମା ପ୍ରଭୁ ପରମେ-ଶ୍ୱରଙ୍କଠାରୁ ପ୍ରାର୍ଥନା କର, ଅନ୍ୟ ମାନବକୁ ସେହି ଦୟା ସେହି କ୍ଷମା ପ୍ରଦାନ କର । ତୁମ୍ଭର ସମସ୍ତ ମନ ସମସ୍ତ ପ୍ରାଣ ପ୍ରଭୁଙ୍କ ପଦରେ ଅର୍ପଣ କର, ସର୍ବଦା ତାହାଙ୍କୁ ସ୍ମରଣ କର ।"

ମାଳଶ୍ରୀର ଅବଧାନ ! ଆପଣ ତ ଜଣେ ଅସାଧାରଣ ଶାସ୍ତ୍ରବ୍ୟବସାୟୀ, ବୋଲିବା ହେଉନ୍ତୁ, ସେ ପୁରୋହିତ ପାଦ୍ରୁତ ଯାହା କହିଲା, ତାହା କି ଦର୍ଶନଶାସ୍ତ୍ରର ଅନୁଶାସନ ନୁହେଁ ? ଆମ୍ଭେ ସେହି ପାଦ୍ରୁତର କଥା ଶୁଣି ସ୍ଥିର କରିଅଛୁ, ଧୃଷ୍ଟ ସତ୍ୟ-ଧର୍ମବର୍ଜ୍ଜିତ ଜାତି ରାଜପଦର ଅଯୋଗ୍ୟ । ଦେଖିବା ହେଉନ୍ତୁ "ଏକ ଏବପୁରା ଦେବଃ ପ୍ରଣବଃ ସର୍ବ-ବାଙ୍ମୟଃ" ହିନ୍ଦୁଜାତି ଯେଉଁ ଦିବସରୁ ଏହି ବୈଦିକ ବୀଜମନ୍ତ୍ର ବିସ୍ମୃତ ହୋଇ ନାନା ପ୍ରକାର କାଳ୍ପନିକ ଜପଧର୍ମର ଅନୁଷ୍ଠାନରେ ପ୍ରବୃତ୍ତ ହୋଇ ଅଛନ୍ତି, ସେହି ଦିବସରୁ ଏମାନଙ୍କର ପତନର ଆରମ୍ଭ ହୋଇଅଛି । "ବସୁଧୈବ କୁଟୁମ୍ବକଂ" ହିନ୍ଦୁମାନଙ୍କ ପକ୍ଷରେ ବର୍ତ୍ତମାନ ଏହା ପୁସ୍ତକଗତ ବିଦ୍ୟା ଅଟେ । ଆମ୍ଭେ ଅନୁମାନ କରୁଅଛୁ, ଭାରତଖଣ୍ଡବାସୀ ଲୋକମାନଙ୍କ ମଙ୍ଗଳକାମନାରେ ଦୟାମୟ ପରମେଶ୍ୱର ଶ୍ୱେତଦ୍ୱୀପରୁ ଏହି ଶ୍ୱେତକାନ୍ତି ଲୋକମାନଙ୍କୁ ପ୍ରେରଣ କରିଅଛନ୍ତି ।

ବୃଦ୍ଧ ସେନ୍ଦୁହିଆଲ ମୌନାବଲମ୍ବନପୂର୍ବକ ଗୋଟିଏ ଦୀର୍ଘ ନିଶ୍ୱାସ ତ୍ୟାଗ କରି କହିଲେ, ଜଗତରେ ଭଗବାନଙ୍କ ଲୀଳା ଦୁର୍ଜ୍ଞେୟ । ତାହାଙ୍କର ଇଚ୍ଛା ସଫଳ ହେବ । ତେବେ ମନୁଷ୍ୟମାନଙ୍କର ଗୋଟାଏ କର୍ତ୍ତବ୍ୟ ଅଛି । ଆମ୍ଭେମାନେ ଅମୃତକର୍ତ୍ତବ୍ୟରୁ ବଞ୍ଚିତ ନ ହେଉଁ, ସେଥି ସକାଶେ ସର୍ବାନ୍ତର୍ଯ୍ୟାମୀ ପ୍ରଭୁ ଅମ୍ଭମାନଙ୍କ ହୃଦୟରେ ବିବେକରୂପ ପ୍ରହରୀ ନିଯୁକ୍ତ କରି ଅଛନ୍ତି । ଯାହା ହେଉ, "ସହସା ବିଦଧୀତ ନ କ୍ରିୟାଂ ।" ଆମ୍ଭେ ଆଶା କରୁଁ, ମାନ୍ଧାତା ଆପଣେ ସ୍ୱଦେଶର ଶାନ୍ତି, ସ୍ୱଧର୍ମର ଗୌରବ, ସ୍ୱଜାତି ଏବଂ ଅନୁଗତ ଲୋକର ଧନପ୍ରାଣ ନିରୁଦ୍‌ବେଗରେ ରକ୍ଷା କରିବା ଅଭିପ୍ରାୟରେ ସନ୍ଧି ସ୍ଥାପନ କରିବା ଉଚିତ କି ନା, ଏ ବିଷୟ ପୁନର୍ବାର ସ୍ଥିର-ଚିତ୍ତରେ ବିଚାର କରିବେ ।

ଗୟୁଗୁରୁ—ବିଜ୍ଞ ବୃଦ୍ଧବର ! ଏ ବିପତ୍ତିରେ ଆଉ କଣ ଆଶା କରନ୍ତି ?

ମାଳଶ୍ରୀ—ଏହା କି ଶେଷ ସିଦ୍ଧାନ୍ତ ?

ଗୟୁଗୁରୁ—ଅନ୍ତତଃ ଏ ପକ୍ଷରୁ ।

ବୃଦ୍ଧ ଦୀର୍ଘ ନିଶ୍ୱାସ ପକାଇ କହିଲେ, ହିନ୍ଦୁ ହିନ୍ଦୁ ବିପକ୍ଷରେ ଅସ୍ତ୍ର ଧାରଣ କରିବ, ଏ ଦୃଶ୍ୟ ଯେପରି ଭୀଷଣ, ସେହିପରି ଗ୍ଲାନିକର । ହିନ୍ଦୁର ଅସ୍ତ୍ରାଘାତରେ ହିନ୍ଦୁଶୋଣିତଦ୍ୱାରା ପବିତ୍ର ଆର୍ଯ୍ୟ-ଭୂମି କଳଙ୍କିତ ହେବ, ଏ କଥାର ସ୍ମରଣ ଆହୁରି ଅସହନୀୟ । ଏହାର ପ୍ରତୀକାର କି ସାଧ୍ୟାତୀତ ?

ଗୟୁଗୁରୁ—ମାନବ ଯେତେ ଯତ୍ନ କରୁ ଯେତେ ବ୍ୟାକୁଳ ହେଉ, ବିଧିର ବିଧାନ ଅବଶ୍ୟମ୍ଭାବୀ । *

ଶ୍ରୀ ଧୂର୍ଜ୍ଜଟୀ ।

---

* ପ୍ରବନ୍ଧର ଆରମ୍ଭରେ ଏବଂ ମଧ୍ୟରେ କେତେ ସ୍ଥାନରେ ଭ୍ରମରେ 'ଶିଉଶଙ୍କର' ସ୍ଥାନରେ 'ଶିବଶଙ୍କର' ହୋଇ ଯାଇଅଛି । ପାଠକମାନେ 'ଶିଉଶଙ୍କର' ପାଠ କରିବେ । ସଂ

## ଭଗବତଟୁଙ୍ଗୀରେ ସନ୍ଧ୍ୟା । (୧୦)

ମସ୍ତରାମ୍ ଆଜ ସମସ୍ତଙ୍କ ଆସିବା ପୂର୍ବରୁ ଟୁଙ୍ଗୀରେ ଉପସ୍ଥିତ । କିଛିକ୍ଷଣ ପରେ ମୁଁ, ମର୍ଦ୍ଦରାଜ, ଶ୍ୟାମସୁନ୍ଦର ବାବୁ, ପଣ୍ଡିତ ମହାଶୟ ଆସି ପହଞ୍ଚିଲୁଁ, ସମସ୍ତେ ବସିଲୁଁ । ଆଜ ଦେଖିଲୁଁ ଯେ ମସ୍ତରାମ୍ ଅପେକ୍ଷାକୃତ ପ୍ରକୃତିସ୍ଥ ଓ ଦୁଃଖଭାରାକ୍ରାନ୍ତ । ମସ୍ତରାମଙ୍କୁ ଆମ୍ଭେମାନେ ଜାଣୁଁ ପ୍ରେମର ଅବତାର—ଆତ୍ମାରାମ୍, ସବୁବେଳେ ଆନନ୍ଦମୟ; ସେ ଯେ ଆଜ ବିମର୍ଷ, ଏ ବଡ ଆଶ୍ଚର୍ଯ୍ୟ! ଆମ୍ଭେମାନେ ସମସ୍ତେ ମସ୍ତରାମଙ୍କୁ କାରଣ ପଚାରିଲୁଁ । ମସ୍ତରାମଆଖିରୁ ଟୋପାଏ ଲୁହ ଗଡ଼ି ପଡ଼ିଲା ଓ ମସ୍ତରାମ୍ କହିଲା 'ମୁଁ ଭାବୁଥିଲି, ଏ ସଂସାର କେଡେ ଆନନ୍ଦଧାମ! ଏହି କଥା ଭାବୁଁ ଭାବୁଁ ପନ୍ଦର ବର୍ଷ ତଳର କଥା ମନେ ପଡ଼ିଗଲା ।' ଏହା କହି ପୁନର୍ବାର ନୀରବ ହେଲା! ଆମ୍ଭେମାନେ କିଛି ବୁଝି ପାରିଲୁଁ ନାହିଁ । ତାଙ୍କୁ ମନା କଲେ ସେ କି ମାନିବା ଲୋକ? ଅବଶ୍ୟ କହିଲା:—

"ମତେ ଆଜ ୫୮ ବର୍ଷ ପୂରିଲା; ଆଉ ବେଶି ଦିନ ରହିବାର ଇଚ୍ଛା ନାହିଁ । ମୋର ପାଗଳ ହେବାର କାହାଣୀ ଶୁଣିଥାଅ । ପୂର୍ବେ ମତେ ଅନେକ ଲୋକ ପଚାରିଥିଲେ, ମୁଁ କିଛି କହି ନାହିଁ । ଏ ଘଟଣା ଅନେକ ଦିନ ତଳର । ମତେ ସେତେବେଳେ ବୟସ ୨୬ ବର୍ଷ; ପୂର୍ବରୁ ୭ ବର୍ଷ ତଳେ ମୁଁ ବିଭା ହୋଇଥିଲି । ମୁଁ ଯେଉଁବେଳର କଥା କହୁଛି, ସେ ସମୟକୁ ମୁଁ ମୋ ସ୍ତ୍ରୀ ସଙ୍ଗରେ ଅତି ସୁଖରେ—ଅତି ଆନନ୍ଦରେ ୭ ବର୍ଷ କଟାଇଥିଲି । ଆମ୍ଭମାନଙ୍କ ମଧ୍ୟରେ ଦିନେ ହେଲେ କଳହ ଲାଗି ନ ଥିଲା । ଈଶ୍ୱର ମୁଠାଏ ଖାଇବା ପାଇଁ ଯୋଗାଇ ଦେଉଥାନ୍ତି । ଆପଣା ବିଲବାଡ଼ି ଯତ୍ନ କରି ମୋ ହାତରେ ମୁଁ ଥାଏଁ । ମୋ ସ୍ତ୍ରୀ ମତେ ଦଣ୍ଡେ ନ ଦେଖିଲେ ପାଣି ପିଉ ନ ଥିଲା । ମୁଁ ଏଣେ ତେଣେ ବୁଲି ଘରକୁ ଆସେଁ, ଘର ମତେ ସ୍ୱର୍ଗପରି ଲାଗୁଥିଲା । ମୁଁ ଜାଣୁଥିଲି ମୋ ଘର ସ୍ୱର୍ଗ, ମୋ ସ୍ତ୍ରୀର ପ୍ରାଣ ମୁଁ—ମୋ ପ୍ରାଣ ମୋ ସ୍ତ୍ରୀ; ଜଣକ ପ୍ରାଣରେ ଆଘାତ ଲାଗୁଥିଲେ ଆଉ ଜଣକୁ କାନ୍ଦୁଥିଲା—ଆଖିରୁ ଲୁହ ବୋହୁଥିଲା । ଏହିପରି ୭ ବର୍ଷ ଗଲା । ମୁଁ ପିଲାଦିନେ କିଛି ପାଠ ପଢିଥିଲି । କିନ୍ତୁ ମୋର ଗୋଟିଏ ଦୋଷ ଥିଲା; ମୁଁ ବେଳେ ବେଳେ କିଛି ନିଶା ଖାଉଥିଲି । ଈଶ୍ୱରଙ୍କ କୃପାରୁ ସେ ନିଶା ମୁଁ ୩୦ ବର୍ଷ ହେଲା ଛାଡ଼ିଲିଣି । ସେ ନିଶା ଖାଇ ମୁଁ ବାଉଳ ହୋଇ ହୋଇଯାଏଁ, କଣ କରି ପକାଏଁ, ବେଳେ ବେଳେ ଠିକ ନ ଥାଏ । ସେ ନିଶା ଯୋଗରେ ବେଳେ ବେଳେ ମୁଁ ଗୋଟିଏ ଗୋଟିଏ କାମ କରି ପକାଏଁ, ପଛେ ମୁଣ୍ଡ କୋଡ଼ି ହୁଏଁ, ମୋର ଭୃକ୍ଷ ନ ଥାଏ; ପଛକୁ ଭାବି ହୁଏଁ; ଗଲା କାମ କି ଆଉ ଫେରି ଆସେ? (କ୍ରମଶଃ ମସ୍ତରାମର ସ୍ୱର ଗମ୍ଭୀରତର ହେଲା । ଆମ୍ଭେମାନେ ସମସ୍ତେ ଏକାଗ୍ରଚିତ୍ତରେ ମସ୍ତରାମର ମୁହଁକୁ ଚାହିଁଥାଉଁ । ପଣ୍ଡିତ ମହାଶୟ କହିଲେ, ଅହା! ଏହିଭଳି ଅନେକ ଲୋକ ପାଗଳ ହୋଇ ସଂସାରବିରାଗୀ ହୋଇ ଯାଉଅଛନ୍ତି!)

"ଦିନକର ଅସାବଧାନତାରେ କଣ ହେଲା, ଶୁଣ:—ମୁଁ ପରେ ଜାଣିଲି । କ୍ରମେ କ୍ରମେ ମୋ ସ୍ତ୍ରୀଠାରେ ଟିକିଏ ଟିକିଏ ପରିବର୍ତ୍ତନ ଦେଖିଲି । ମୁଁ ପ୍ରଥମେ ମନେ କଲି, ମୋ ସ୍ତ୍ରୀର ଶରୀର ଅସୁସ୍ଥ ଅଛି; କିନ୍ତୁ କିଛି ଦିନ ପରେ ଦେଖିଲି ସେ ସବୁବେଳେ ଚିନ୍ତା କଲାପରି ବୋଧ ହେଲା । ଆଜ ଘର ସଜାଉଛି, କାଲି କେତେକ ପଦାର୍ଥ ସଂଗ୍ରହ କରୁଛି, ମୋ ଆଡ଼କୁ ତାର ପୂର୍ବେ ଯେଉଁପରି ଦୃଷ୍ଟି ଥିଲା, ତାହା କ୍ରମେ କ୍ରମେ ବଦଳିଲା ପରି ମତେ ଜଣାଗଲା । ଏହିପରି ପ୍ରାୟ ୮।୧୦ ମାସ ଗଲା । ମତେ କୌଣସି ବିଷୟ ମନ ଖୋଲି କହେ ନାହିଁ । ମୁଁ ମଧ୍ୟ ତା ଯୋଗୁଁ କ୍ରୋଧ ହେଲି । ଦିନେ ଅତି ଘୋର କରି ପଚାରିଲି ।

ସେ କହିଲା ଯେ 'ତୁମେ ଯେଉଁ ଅଭ୍ୟାଗତଙ୍କୁ ଆସିବାକୁ ଅନୁମତି ଦେଇଅଛ, ତାଙ୍କର କପଟ ଚର୍ଚ୍ଚା ହେବ, ମୁଁ ଏହି ୮।୧୦ ମାସ ସେହି ବିଷୟ ଚିନ୍ତା କରୁଅଛି ଓ ତାଙ୍କ ଚର୍ଚ୍ଚା ନିମନ୍ତେ ପ୍ରସ୍ତୁତ ହେଉଅଛି।' କେବେ ଆସିବେ? ସେ କିଏ? ମୁଁ ତ କାହାକୁ ମୋ ଘରକୁ ଆସିବାକୁ ଅନୁମତି ଦେଇ ନାହିଁ। ଏପରି ନାନା କଥା ମୋ ମନରେ ଉଦୟ ହେଲା, କିନ୍ତୁ ସ୍ତ୍ରୀଠାରୁ କିଛି ଉତ୍ତର ପାଇଲି ନାହିଁ। ବୋଧହୁଏ ସେ ଲଜ୍ଜା କଲା। ମୁଁ ମଧ୍ୟ ବିଚାରିଲି ଯେ ନିଶା ଘୋରରେ କେତେବେଳେ କିଣ କହି ପକାଇଥିବି, ମୋ ସ୍ତ୍ରୀ ସେହି କଥାକୁ ସତ ମଣି ଏପରି ବ୍ୟସ୍ତ। ମତେ ଏହା ଅଦ୍ଭୁତ ବୋଧ ହେଲା। ମୁଁ ପ୍ରଥମେ ପ୍ରଥମେ ତା କଥାକୁ ଥଟ୍ଟା ବୁଝିଲି—ଏହିପରି ଆଉ କେତେ ଦିନ ଗଲା। ଦିନେ ମୋ ସ୍ତ୍ରୀ ଅତ୍ୟନ୍ତ ପୀଡ଼ିତା ହେଲାପରି ବୋଧ ହେଲା, ଅନେକ ଲୋକ ତାକୁ ଦେଖିବାକୁ ଆସିଲେ। ପ୍ରାୟ ତିନିଏ ଦିନପର୍ଯ୍ୟନ୍ତ କିଏ କେତେବେଳେ କି ସମ୍ବାଦ ଆଣି ଦେଲେ, ତହିଁରୁ ମୁଁ କିଛି ତଥ୍ୟ ପାଇଲି ନାହିଁ। କିଏ ଆସି ଏ କ୍ଷଣରେ କହିଲା, ମୋ ସ୍ତ୍ରୀର ଜୀବନର ଆଶା ନାହିଁ। ପର କ୍ଷଣରେ ଆଉ ଜଣେ ଆସି କହିଲା, ସମସ୍ତ ମଙ୍ଗଳ। ଏହିପରି ପ୍ରାୟ ୫।୬ ଘଣ୍ଟା ବିତିଗଲା। ପରେ ଜଣେ ବୃଦ୍ଧା (ସମ୍ପର୍କରେ ମୋର ପିତାଙ୍କର ଜ୍ୟେଷ୍ଠପିତୃବ୍ୟପତ୍ନୀ ଅଟନ୍ତି) ଆସି କହିଲେ ଯେ ଜଣେ ଅତି ବୃଦ୍ଧ ଅତିଥି ଆସି ଅନ୍ତଃପୁରରେ ସହସା ଉପସ୍ଥିତ। ମୋ ସ୍ତ୍ରୀର ଏପରି ମୁମୂର୍ଷୁ ଅବସ୍ଥା, ତହିଁରେ ପୁଣି ବହିର୍ଦ୍ୱାରରେ ନ ରହି ହଠାତ୍ ଅନ୍ତଃପୁରରେ ଅତିଥି ଉପସ୍ଥିତ। ମତେ ଏହା ପ୍ରଥମେ ଅଦ୍ଭୁତ ବୋଧ ହେଲା। କିନ୍ତୁ କଣ କରିବି, ଇତସ୍ତତଃ ହୋଇ ନବାଗତ ଅତିଥିଙ୍କର ଉପଯୁକ୍ତ ରୂପେ ଚର୍ଚ୍ଚା କରିବାକୁ ସେ ବୃଦ୍ଧାଙ୍କୁ ଅନୁରୋଧ କଲି ଓ ମୁହୂର୍ତ୍ତକପରେ ମୁଁ ସେ ଅତିଥିଙ୍କୁ ଦେଖିବାକୁ ଗଲି। ଅତିଥିଙ୍କୁ ପ୍ରଥମେ ଦେଖି ମୁଁ ଚମକି ପଡ଼ିଲି। ଅତିଶୟ ବୃଦ୍ଧ ଓ ଖର୍ବାଙ୍ଗ (ତାଙ୍କ ପରି ଏତେ ଊର୍ଦ୍ଧ୍ୱବୟସ୍କ କ୍ଷୀଣାଙ୍ଗ ବୃଦ୍ଧ ମୁଁ ଆଉ ଯାହାକୁ ଦେଖି ନାହିଁ); ପାଟିର ଦାନ୍ତଯାକ ସମସ୍ତ ପଡ଼ି ଯାଇଅଛି; ମସ୍ତକରୁ ସମସ୍ତ କେଶ ଉପୁଡ଼ି ଯାଇଅଛି; ନିତାନ୍ତ ଜରାଗ୍ରସ୍ତ ଅବସ୍ଥା, ଉଠି ବସିବାର ଶକ୍ତି ନାହିଁ; ତାଙ୍କର ଭାଷା ଆମ୍ଭେମାନେ ବୁଝି ପାରିଲୁଁ ନାହିଁ, କିନ୍ତୁ ବେଳେ ବେଳେ ତାଙ୍କର ଆର୍ତ୍ତସ୍ୱରରୁ ଜଣାଗଲା ଯେ ସେ ବହୁ ଦୂରରୁ ଆଗତ, କ୍ଷୁଧା ତୃଷାରେ ମୁଖ ଶୁଖି ଯାଇଅଛି; ଚକ୍ଷୁ ଦୁଇଟି ଭିତରକୁ ପଶି ଯାଇଅଛି। ପରକୁ ମୀମାଂସା କଲି, ସେ ବୃଦ୍ଧ ବହୁ ଶତାବ୍ଦୀର ଓ ବହୁ ଦୂରରୁ ଆଗତ ଓ ଅତିଶୟ କ୍ଳାନ୍ତ ଓ ଅନାବୃତଶରୀର; ନିଜ ଭୋଜନ ଦ୍ରବ୍ୟ ଉଦରସ୍ଥ କରିବାର କ୍ଷମତା ମଧ୍ୟ ଲୁପ୍ତ ହୋଇ ଯାଇଅଛି। ଅତିଥିଙ୍କୁ କକ୍ଷ ଶୁଆଇ ସେ ଘରେ ଅଗ୍ନି ଜାଳି, ତୈଳ ମର୍ଦ୍ଦନ କରି ତାଙ୍କୁ ସୁସ୍ଥ କରାଇବାକୁ ମୋର ଦାସୀକୁ କହି ଆସିଲି ଓ ଅତିଥି ଅପେକ୍ଷାକୃତ ସବଳ ହେଲେ ତାଙ୍କର ପରିଚୟ ମିଳିପାରେ, ଏହି ଆଶାରେ ରହିଲି। କିନ୍ତୁ ମତେ ଏହା ଅଦ୍ଭୁତ ବୋଧ ହେଲା। ପରେ ଶୁଣିଲି ଯେ ମୋ ସ୍ତ୍ରୀ ଆରୋଗ୍ୟ ଲାଭ କରିଅଛି, କିନ୍ତୁ ଆରୋଗ୍ୟ ଲାଭ କରି ମୋ ସଙ୍ଗରେ ଦେଖା ହେବା କଥା ଦୂରେ ଥାଉ, ସେ ପ୍ରାଣପଣରେ ଅତିଥିଙ୍କର ସେବାରେ ଲାଗିଅଛି। ମୁଁ ଏହା ଶୁଣି ଅତି ଆନନ୍ଦିତ ହେଲି ଓ ମନେ ମନେ ସ୍ତ୍ରୀକୁ କେତେ ଆଶୀର୍ବାଦ କଲି। ଈଶ୍ୱର ତାକୁ ଚିରଦିନ ଅତିଥିସେବାରେ ନିଯୁକ୍ତ କରନ୍ତୁ ଓ ମୈତ୍ରୀବ୍ରତ ଶିକ୍ଷା ଦିଅନ୍ତୁ। ସ୍ତ୍ରୀର ଏପରି ଅତିଥିଚର୍ଯ୍ୟା ଦେଖି ମୋ ମନରେ ଅତିଥିଚର୍ଯ୍ୟାର ଉଦ୍ରେକ ହେଲା। ମୁଁ ଯଥାସାଧ୍ୟ ଅତିଥିଙ୍କର ଅଭାବ ଦୂର କରିବାରେ ଯତ୍ନଶୀଳ ହେଲି। ଅତିଥି କିଛିଏ ସବଳ ଓ ସୁସ୍ଥ ହେଲାରୁ ମୋ ସ୍ତ୍ରୀ ନିକଟକୁ (ପ୍ରାୟ ୧ ମାସ ପରେ) ପ୍ରଥମ ଦେଖା କରିବାକୁ ଆସିଲି; କିନ୍ତୁ କି ଅଦ୍ଭୁତ ପରିବର୍ତ୍ତନ! ସେ ପ୍ରେମ ନାହିଁ, ସେ ମମତା ନାହିଁ, ସେ କଟାକ୍ଷଭଙ୍ଗୀ ନାହିଁ।

ମୋ ନିକଟରେ ଦଣ୍ଡେ ବସିଛି, ସେ ଅତିଥିଙ୍କ କଥା ମନେ ପଡ଼ିବାରୁ ହଠାତ୍ ମୋଠାରୁ ବିଦାୟ ନ ନେଇ ଉଠିଗଲା । ମତେ ଟିକିଏ ଅଭୁଆ ବୋଧ ହେଲା। ମୁଁ ଦିନେ ଅତିଥିଙ୍କୁ ନିକଟକୁ ଆଣି ତାଙ୍କର ସବିଶେଷ ବୃତ୍ତାନ୍ତ ପଚାରିଲାରୁ ସେ ଯାହା ଉତ୍ତର କଲେ, ମୁଁ ତହିଁରୁ କିଛି ବୁଝି ପାରିଲି ନାହିଁ । ତାଙ୍କ ଭାଷା ଆମ ଦେଶର ଭାଷା ନୁହେ । ପରେ ଯତ୍ନରେ ତାଙ୍କର ଭାଷା ଶିକ୍ଷା କରିବାକୁ ଚେଷ୍ଟିତ ହେଲୁଁ ଓ ପ୍ରାୟ ୧୨ ବର୍ଷରେ ତାଙ୍କ ଭାଷାରେ କଥାଭାଷା କରି ପାରିଲୁଁ । ଏଣେ ଅତିଥି ୩ ବର୍ଷ ମଧ୍ୟରେ ଆମ୍ଭମାନଙ୍କ ଭାଷା ବେଶ ଶିଖିଗଲେ । ଅତିଥି କ୍ରମଶଃ ବଳିଷ୍ଠ ହୋଇ ଚାଲି ପାରିଲେ । ଅତିଥି ମୋ ଗୃହରୁ ଯିବାର ଇଚ୍ଛା ପ୍ରକାଶ କଲେ ନାହିଁ । ମୋର ସୁଖର ଦିନ ବୁଡ଼ିଲା । ଆସି ସନ୍ଦେହ ମନକୁ ଛୁଇଁଲା । ଅତିଥିଙ୍କ ସଙ୍ଗେ ମୋ ସ୍ତ୍ରୀର ଘନିଷ୍ଠତା ବଢ଼ିଲା । ମତେ ଟିକିଏ ଅଭୁଆ ବୋଧ ହେଲା । ଆଜି କାଲି ମୋ ନିମନ୍ତେ ସ୍ତ୍ରୀର ଚେଷ୍ଟା ନାହିଁ, ଯତ୍ନ ନାହିଁ, ସବୁ ଯତ୍ନ ସବୁ ଚେଷ୍ଟା ଅତିଥିଙ୍କଠାରେ; ଅତିଥିଙ୍କ ହେତୁ ସମୟ ସମୟରେ ବିବାଦ ମଧ୍ୟ ଆରମ୍ଭ ହେଲା । ଜାଣିଲି ଯେ ଅତିଥିଙ୍କଠାରେ ମୋ ସ୍ତ୍ରୀ ମନପ୍ରାଣ ଢାଳି ଦେଇଅଛି । ମନେ ମନେ ଅତିଥିଙ୍କ ପ୍ରତି ଟିକିଏ ଈର୍ଷା ହେଲା । କିନ୍ତୁ ତାଙ୍କର ତ କିଛି ଦୋଷ ନାହିଁ । ଦୋଷ ମୋ ସ୍ତ୍ରୀର । ମୋ ସ୍ତ୍ରୀର ବା କେଉଁ ଦୋଷ ? ମୁଁ ଅନୁମତି ଦେଇ ନ ଥିଲେ ଅତିଥି ବା କାହିଁକି ମୋ ଘରେ ସ୍ଥାନ ପାଇ ଥାନ୍ତେ । ମୁଁ ବା କଣ କରିବି ? ନିଶା ଯୋଗରେ କେତେବେଳେ ଅନୁମତି ଦେଇ ପକାଇଛି । ଜାଣିଥିଲି କି ଅତିଥି ମୋର ଉପଗାର ହେବ? ଅଚ୍ଛା, ଦେଖାଯାଉ । ଦିନେ ମୁଁ ଦର୍ପଣରେ ମୁହଁ ଦେଖୁଛି, ମୋର ମସ୍ତକରେ ୨୪ ଟି ପକ୍ୱକେଶ ଦେଖାଗଲା । ଏ ସମୟରେ ଅତିଥି ଆମ ଗୃହକୁ ଆସିବାର ପ୍ରାୟ ୩୪ ବର୍ଷ ହେଲା । ପକ୍ୱକେଶ ଦେଖି ବୃଦ୍ଧ ହୋଇଗଲି ବୋଲି ମନରେ କ୍ଷୋଭ ହେଲା । ପଛକୁ ଚାହିଁ ଦେଖେଁ—କି ଅଦ୍ଭୁତ, ଅତ୍ୟନ୍ତ ଅପୂର୍ବ ଦୃଶ୍ୟ !!! ଅତିଥି ଓ ମୋ ସ୍ତ୍ରୀ ପରସ୍ପର ପରସ୍ପରକୁ ଆଲିଙ୍ଗନ କରି ଚୁମ୍ବନ ଦେଉଅଛନ୍ତି ! କି ଧୃଷ୍ଟତା ! କି ଅଯଥା ଅଧିକାର ! ସ୍ୱାଧୀନତାର କି ଅପବ୍ୟବହାର ! ଧନ୍ୟ ରେ କାଳ ! ଧନ୍ୟ ଈଶ୍ୱର ! ( ମନ୍ତ୍ରଗମ୍ ଏହା କହୁଁ କହୁଁ ପ୍ରେମରେ ଢଳି ଯାଉଥାଏ ଓ ଆମ୍ଭେମାନେ ଅବାକ୍ ହୋଇ ତା ମୁହଁକୁ ଚାହିଁ ଥାଉଁ ) ଏତେ ନୁହେ—ମୋ ଉପସ୍ଥିତିରେ ଏପରି ଅଭିନୟ ! ମୁଁ ଚାହିଁଦେଲାରୁ ଦୁହେଁଯାକ ମତେ ଚାହିଁ ହୋ ହୋ କରି ହସି ଉଠିଲେ ଓ ମୋ ସ୍ତ୍ରୀ ଟିକିଏ ଲଜ୍ଜିତା ହେଲାପରି ବୋଧ ହେଲା । ପ୍ରଥମେ ପ୍ରଥମେ କୌଣସି ଅନଭ୍ୟସ୍ତ କାର୍ଯ୍ୟ କଲେ ସମୟ ସମୟରେ ଏହି-ପରି ଲଜ୍ଜା ଆସେ । କିନ୍ତୁ କ୍ରମଶଃ ସେ ଲଜ୍ଜା କେଉଁ ଆଡ଼େ ଗଲା । ମତେ ଡାକି ସେମାନେ ମୋ ସମ୍ମୁଖରେ ଏହିପରି ଅଯଥା ସ୍ୱାଧୀନ ବ୍ୟବହାର କରିବାକୁ ଲାଗିଲେ; ମୁଁ କ୍ରୋଧରେ, ଲଜ୍ଜାରେ, ଆନନ୍ଦରେ, ପ୍ରେମରେ ଅସ୍ଥିର ! ସେତେବେଳକୁ ମୋର ବୁଦ୍ଧି ହଜିଲାଣି ଓ ମୋ ମତି କ୍ରମଶଃ ଅସ୍ଥିର ହେଲାଣି । ଅତିଥି ସଙ୍ଗେ ଏହିପରି ବ୍ୟବହାର କଲାବେଳେ ମୁଁ ଦେଖିଲି ଯେ ୧୦ ବର୍ଷ ତଳେ ମୋ ସ୍ତ୍ରୀର ଯେଉଁ ଲାବଣ୍ୟ ଥିଲା, ତାହା ପୁନର୍ବାର ଫୁଟିଅଛି, ତାହାର ରସିକତା ଉଚ୍ଛୁଳୁଅଛି, ସେ ନବ ଯୁବତୀ ହୋଇଅଛି ଓ ମୁଁ କେବଳ ବୃଦ୍ଧ, ଅରସିକ ଓ ବିରୂପ ହୋଇଅଛି । ମୋର ବୟସ, ରସିକତା ଓ ସ୍ୱରୂପକୁ ଏ ଅତିଥି ଭୋଗ କରିଅଛନ୍ତି । ମୁଁ ଯେତେ ଯେତେ ବୃଦ୍ଧ ହେଉଅଛି, ଅତିଥି ସେତିକି ସେତିକି ଯୁବା ହେଲାପରି ଦେଖା ଯାଉଅଛନ୍ତି । ମୋ ମସ୍ତକରେ ଶୁକ୍ଳ କେଶର ଆବିର୍ଭାବ ସଙ୍ଗେ ସଙ୍ଗେ ଅତିଥିଙ୍କର ମସ୍ତକ ଘନ କୃଷ୍ଣ କେଶରେ ପରିପୂର୍ଣ୍ଣ । ମୋର ଯୌବନ ଚୋରି କରି ତା ଉପରେ ମୋ ସ୍ତ୍ରୀ ସଙ୍ଗେ ଏପରି ଅଯଥା ସ୍ୱାଧୀନ ବ୍ୟବହାର । ମୋ ଦେହ କମ୍ପନ-ମୟ ପ୍ରେମମୟ ହୋଇଗଲା ।। କଣ କରିବି,

ମୁହୂର୍ତ୍ତକ କଥା ଭିତରେ ଏହି ଘଟଣା । ସୃଷ୍ଟି-ଛିଦ୍ର ବା ବାହାରେ କାହାକୁ କହିବି ? ଯେ ଶୁଣିବ ସେ ହସିବ, ଯେ ଶୁଣିଲା ସେ ହସିଲା । ଏତିକରେ ସନ୍ତୁଷ୍ଟ ନ ହୋଇ ସେ ଅତିଥି ମୋ ଉପରେ ଅତ୍ୟାଚାର ଆରମ୍ଭ କରିବାକୁ ବସିଲେ । ମୋର ଯେଉଁ ଯେଉଁ ବସ୍ତୁରେ ବିଶେଷ ସ୍ନେହ, ଅତିଥି ସେ ସବୁ ବସ୍ତୁ ମୋ ବିନା ଅନୁମତିରେ ନଷ୍ଟ କଲେ । ମୋର ଫୁଲ ବଗିଚାରେ ପଶି ମୋର ଅଜ୍ଞାତରେ ଫୁଲ ଛିଣ୍ଡାଇବାକୁ ଲାଗିଲେ । ମୋ ଲୁଗାପଟା କଲମ ଇତ୍ୟାଦି ଅପହରଣ କଲେ । ମନୁଷ୍ୟର ଧୈର୍ଯ୍ୟର ତ ସୀମା ଅଛି । ମୁଁ ଯେବେ ଅତିଥିଙ୍କ ଉପରେ ଅସନ୍ତୋଷ ପ୍ରକାଶ କରିବାରୁ ମୋ ସ୍ତ୍ରୀ ଅତିଥିଙ୍କ ପକ୍ଷ ସମର୍ଥନ କରି ମୋର ମସ୍ତିଷ୍କର ବିକୃତ ହୋଇଅଛି ବୋଲି ବିଦ୍ରୂପ କଲା । ଏହା ଦେଖି ମୁଁ ଅବାକ୍ । ଅତିଥି ମଧ୍ୟ ଲଜ୍ଜିତ ନ ହୋଇ ଖୋଲାରେ କରି ହସି ଉଠିଲେ । ହାଡ ପଣୁ ପଣୁ ହାହା ପଶିଲା ।

(ପାଠକ ! ବର୍ତ୍ତମାନ ମସ୍ତିଷ୍କର ଭାଷା ପୂର୍ବ ମସ୍ତିଷ୍କର ଭାଷା ନୁହେଁ, ଦେଖୁଛନ୍ତି ତ ? ଆମ୍ଭେମାନେ ସମସ୍ତେ କ୍ରୋଧରେ ଅସ୍ଥିର । ପଣ୍ଡିତ ମହାଶୟ କହିଲେ, 'ଅଜ୍ଞାତକୁଳଶୀଳସ୍ୟ ବାସୋ ଦେୟୋ ନ କସ୍ୟଚିତ୍ ।' ଧିକ୍ ସେ ଅତିଥିର କୃତଘ୍ନତା ! ଏପରି ଅତିଥି ଅଦୌ ଦୟାର ପାତ୍ର ନୁହେଁ । ଆଜି କାଲି ସ୍ତ୍ରୀମାନଙ୍କର କାଳ ହେଲା । ସ୍ୱାମୀ ଥାଉଁ ଥାଉଁ ଏପରି ଅବୈଧ ଆଚରଣ !)

ଦେଖୁଁ ଦେଖୁଁ ଅତିଥି ଆସି ଆମ ଗୃହରେ ରହିବାର ୨୦ ବର୍ଷ ହେଲା; ପୁଣି ଅତିଥିଙ୍କ କାମରେ ଗୋଟିଏ ସ୍ତ୍ରୀ-ଅତିଥି ଆଣିବାକୁ ହେଲା । ଅତିଥି କ୍ରମଶଃ ସଂସାରରେ ବେଶ୍ ବ୍ୟସ୍ତ ହେଲେ । ଯେବେ ମୁଁ ବିଲରେ କୋଡ ହାଣୁଛି, ଦିନ ବୁଡ଼ି ଅନ୍ଧାର ଆସି ହେଲାଣି । ଏହି ସମୟରେ ହଠାତ୍ ଅତିଥି ଆସି ବିଲରେ ଉପସ୍ଥିତ ହେଲେ ଓ ମୋଠାରୁ କୋଡ ଛଡ଼ାଇ ନେଇ କହିଲେ, "ମୁଁ କାର୍ଯ୍ୟ କରିବି, ଆପଣଙ୍କର ଆଉ ବ୍ୟସ୍ତ ହେବାର ଆବଶ୍ୟକ ନାହିଁ; ଆପଣ ଯାଆନ୍ତୁ ।" ମୁଁ କହିଲି, "ହଁ ! ମୋର ଜୀବନର ସବୁ ନେଇଅଛ । ମୋର ବାଲ୍ୟ, ଯୌବନ, ପ୍ରେମ, ସ୍ତ୍ରୀ ସମସ୍ତ ନେଇଅଛ, ବାକି ମୋର ଏହି ଅଳ୍ପ ଦିନ ଥିଲା, ତାହାକୁ ମଧ୍ୟ ନିଅ, ମୁଁ ଯାଉଛି ।" ସେ ବିଲ ମୋ ଘରର ପଛ ଅଟେ । ମୋ ସ୍ତ୍ରୀ ବାଡ଼ିପଟରେ ଠିଆ ହୋଇଥିଲା, ଏହି ସମୟରେ ଡାକ ଦେଲା, 'ତୁମେ ଆସ, ରାତି ଦି ଘଡ଼ି ହେଲାଣି, ପୁଅ ଖାଇ ପିଇ ସାରି ବିଲକୁ ଯାଉଛି, ସେ କାମ କରୁଥାଉ, ତୁମେ ଘରକୁ ଆସ । ଆଉ କେବେ ଦିନଯାକ ବିଲବାଡ଼ି ଧନ୍ଦା ବୁଝିଥିବ ?' ମୁଁ ଚାହିଁଲି, ମୋ ସ୍ତ୍ରୀର ମୁଖ ହର୍ଷଯୁକ୍ତ, 'ପୁଅ'ର ମୁଖ ହର୍ଷଯୁକ୍ତ, ଅତଏବ ବାଧ୍ୟ ହୋଇ ମୁଁ ଟିକିଏ ହସି ଦେଇ ଘରକୁ ଆସିଲି । ତହିଁ ଆରଦିନ ସକାଳୁ 'ପୁଅ' କୁ ମୋ ସବୁ କାମ ଓ ଧନ୍ଦା ଲଗାଇ ଦେଇ ଘରୁ ବାହାରିଲି—ସଂସାର ଲୀଳା ଦେଖିବି; ପୁରୁଣା ଯାଉଛନ୍ତି; ନୂଆ ଆସୁଛନ୍ତି । ସେହି ଦିନଠାରୁ ୮ ବର୍ଷ ଏପରି ସଂସାର ଦେଖି ଦେଖି ବୁଲିଲଣି । ଆଜି ୮ ବର୍ଷ ତପସ୍ୟା ପୂର୍ଣ୍ଣ ହେଲା । ମୋର ସଂସାର ଦେଖା ଶେଷ ହେଲା । ଅନେକ ଦେଖିଲି, ଅନେକ ଶିଖିଲି, ଅନେକ ଶିଖାଇଲି, ମୁଁ ଯାଉଛି ।" ଏହା କହି ହଠାତ୍ ମସ୍ତିଷ୍କ ହସି ହସି ଟୁଙ୍ଗୀରୁ ପ୍ରସ୍ଥାନ କଲା ।

ଆମ୍ଭେମାନେ ବୁଝିଲୁଁ ଯେ Holmes ଯାହା କହିଅଛନ୍ତି, "Insanity is often the logic of an accurate mind overtasked." ଅଧିକାଂଶ ବାତୁଳମାନେ କବିର ଉପାଦାନରେ ଗଠିତ । ଧନ୍ୟ ମସ୍ତିଷ୍କ, ତୋ ଜୀବନ ସାର୍ଥକ । ତୁ ଧନ୍ୟ । ତୁ ପ୍ରେମବାତୁଳ ।

ଆମ୍ଭେମାନେ ଭାବିଲୁଁ ଯେ ଦୃଢ଼ ଭାବରେ ସଂସାରର କୌଣସି ବିଷୟ ଦଶ ଦିନ ଭାବିଲେ ଲୋକ ପାଗଳ ନ ହୋଇ ଆଉ କଣ ହେବ ? ଲୋକେ ଯେ ପାଗଳ ନ ହୁଅନ୍ତି, ଏହାହିଁ ଆଶ୍ଚର୍ଯ୍ୟର ବିଷୟ । ପୃଥିବୀର ପନର ପଣ ଉଣେଇଶ ଗଣ୍ଡା

ନେଳବା ଲୋକଙ୍କର ମୃତ୍ୟୁ ହେଉ। ନାହିଁ, ଥିଲେ ସଂସାର ବାତୁଳାଶ୍ରମରେ ପରିଣତ ହୋଇଥାନ୍ତା ଓ ସଂସାର ସ୍ୱର୍ଗ ହୋଇଥାନ୍ତା । ପ୍ରକୃତରେ ମନୁଷ୍ୟ ଅନେକ ସମୟରେ ବାତୁଳଠାରୁ ହେୟ, ଘୃଣ୍ୟ, ଅପଦାର୍ଥ । ପାଠକ ! ଥରେ ଭାବି ଦେଖନ୍ତୁ, ମନ୍ତ୍ରୀମ୍ ଯେଉଁ ଶ୍ରେଷ୍ଠ ଦେଖାଇଲା, ତାହା କେମନ୍ତ ସ୍ୱାଭାବିକ ଓ ନିତ୍ୟପ୍ରତ୍ୟକ୍ଷ ।

ମନ୍ତ୍ରୀମ୍ ଯିବା ପରେ ଆମ୍ଭମାନେ କ୍ଷଣକାଳ ନିର୍ଜୀବ ପ୍ରତିମା ପରି ବସି ରହିଲୁଁ । ପରେ ପଣ୍ଡିତ ମହାଶୟ ପ୍ରଥମେ ଶାନ୍ତି ଭଙ୍ଗ କଲେ—

ଓଃ ହୋ ! ଆମ୍ଭଙ୍କୁ କ ଘୋର ଭ୍ରାନ୍ତି-ସାଗରରେ ଅନାୟିକ ମଗ୍ନ କରିଦେଲା ! ଏଥି ନିମନ୍ତେ ଗୋଟିଏ ଶ୍ଳୋକ ରଚନା କରି ଦେଲେ କେଡ଼େ ଉତ୍କୃଷ୍ଟ ହୁଅନ୍ତା । ସମୟାନୁସାରେ ଏହି ବିଷୟରେ ଗୋଟିଏ ଶ୍ଳୋକରଚନା କରିବାରେ ପ୍ରୟାସୀ ହେବି । ଏପରି ବହ୍ୱାରମ୍ଭ ଲଘୁକ୍ରିୟା କରି ଦେବ ବୋଲି କିଏ ଜାଣିଥିଲା ?

ମର୍ଦ୍ଦରାଜ—ମୁଁ ତ ଅନେକ ଦିନରୁ କହୁଛି, ମନ୍ତ୍ରୀମର ଯଥେଷ୍ଟ ଚିନ୍ତାଶୀଳତା, ଯଥେଷ୍ଟ ଅନୁଭବ ଅଛି; ତା ପରି ଜଣେ ଲୋକ ଟ୍ରେନୀରେ ପାଇବା ଆମ୍ଭମାନଙ୍କ ଭାଗ୍ୟ । ତାର ମନ୍ତ୍ରୀ-ସ୍ରୋତ ଟିକିଏ ସ୍ଥିରତର ଭାବରେ ବହୁଥିଲେ ସେ ଜଣେ ଉତ୍କୃଷ୍ଟ କବି ହୋଇଥାନ୍ତା ।

ମୁଁ ବିଚାରିଲି, ଈଶ୍ୱର ମୋ ପରେ ତ ଆଉ ଅଳ୍ପ ଦିନ ଗଲେ ଗୋଟିଏ ଅଦ୍ଭୁତ ପଦାର୍ଥ ଅଛନ୍ତି, କେଜାଣି ମୋର ଭବିଷ୍ୟତରେ କଣ ଲେଖାଅଛି ।

ବିଶେଷ କିଛି କାର୍ଯ୍ୟ ଥିବାରୁ ପଣ୍ଡିତ ମହାଶୟ ଟ୍ରେନୀରୁ ପ୍ରସ୍ଥାନ କରିବାକୁ ବସିଲେ । ଏହି ସମୟରେ ମାଷ୍ଟର ମହାଶୟ ହାତରେ ଖଣ୍ଡେ ପୁସ୍ତିକା ଧରି ଉପସ୍ଥିତ ହେଲେ । ଶ୍ୟାମସୁନ୍ଦର ବାବୁ ସେ ବହିକୁ ଦେଖିବାକୁ ଆଗ୍ରହ ପ୍ରକାଶ କରିବାରୁ ମାଷ୍ଟର ମହାଶୟ କହିଲେ, ଏ ପୁସ୍ତକର ନାମ 'କଂଗ୍ରେସ ବା ଜାତୀୟ ମହାସମିତି ।' ଏ pamphlet (ପୁସ୍ତିକା) ଅଳ୍ପ ଦିନ ହେଲା ଉତ୍ତମ type (ଅକ୍ଷର)ରେ print (ଛାପା) ହୋଇଅଛି ଓ ତାହା କଟକର ଉତ୍କଳ ସାହିତ୍ୟ ଯନ୍ତ୍ରାଳୟରେ ମିଳେ । ତାହା ଟ୍ରେନୀରେ ପଢ଼ା ହେବ ବୋଲି ମୁଁ ୧୦।୧୨ ଜଣଙ୍କୁ ଡାକି ଆଣିଛି ।' ଏହା କହି ସେ ପୁସ୍ତକଟିକୁ ଶ୍ୟାମସୁନ୍ଦର ବାବୁଙ୍କ ହାତକୁ ଦେଇ ତାହା ଆଦ୍ୟୋପାନ୍ତ ପଢ଼ି ଯିବାକୁ ଅନୁରୋଧ କଲେ । ଶ୍ୟାମସୁନ୍ଦର ବାବୁ ଜଳଦ-ଗମ୍ଭୀରସ୍ୱରରେ ତାହା ପଢ଼ିବାକୁ ଆରମ୍ଭ କଲେ ଓ ଅର୍ଦ୍ଧ ଘଣ୍ଟା ମଧ୍ୟରେ ଶେଷ କଲେ । ଟ୍ରେନୀରେ ଉପସ୍ଥିତ ଜନଠାରୁ ନାଚ ପର୍ଯ୍ୟନ୍ତ ସମସ୍ତେ ଉଚ୍ଚୈଃସ୍ୱର କରି ଉଠିଲେ, 'ଜୟ ମହାରାଜା-ଧିରାଜଙ୍କ ଜୟ । ଜୟ କଂଗ୍ରେସର ଜୟ ।'

ମର୍ଦ୍ଦରାଜ—ଭାଇମାନେ ! ଆଜି ଆମ୍ଭମାନଙ୍କର କି ସୁଦିନ ! ଓଡ଼ିଶାର ମଫସଲର ପଲ୍ଲୀଗ୍ରାମରେ କଂଗ୍ରେସ ବିଷୟ ପଢ଼ାଗଲା, ଏହା କମ୍ ସୌଭାଗ୍ୟର ବିଷୟ ନୁହେ । ଇଂରେଜ ରାଜାଙ୍କ ରାଜତ୍ୱରେ ଆମ୍ଭେମାନେ ପୂର୍ବ ଅପେକ୍ଷା ଅନେକ ସୁଖରେ ଅଛୁଁ । ଆମ୍ଭମାନଙ୍କୁ ସୁଖରେ ପାଳିବା ଆମ୍ଭମାନଙ୍କ ରାଜାଙ୍କର ଏକାନ୍ତ ଇଚ୍ଛା । କିନ୍ତୁ ଅନେକ ସ୍ଥଳରେ କର୍ମଚାରୀମାନଙ୍କର ଓ ପ୍ରଜାମାନଙ୍କର ଦୋଷରୁ ରାଜାଙ୍କର ଇଚ୍ଛା ପାଳିତ ହେଉ ନାହିଁ । ଆମ୍ଭମାନଙ୍କର ଅନେକ ଗୁହାରି ଅଛି । ଆମ୍ଭ-ମାନଙ୍କ ଅଭାବ ଓ ଅଭିଯୋଗ ରାଜାଙ୍କ କାନରେ ପଡ଼ିଲେ ରାଜା ଅବଶ୍ୟ ତାଙ୍କ ପୁତ୍ରମାନଙ୍କ ଗୁହାରି ଶୁଣିବେ । ଶୁଭକ୍ଷଣରେ ଆମ୍ଭେମାନେ ଇଂରାଜ ରାଜାଙ୍କୁ ପାଇଅଛୁଁ । ଇଂରାଜରାଜ ଆମ୍ଭମାନଙ୍କୁ ସଭ୍ୟତା ଦେଇଅଛନ୍ତି, ଶିକ୍ଷା ଦେଇଅଛନ୍ତି, ବଳ ଦେଇଅଛନ୍ତି, ଅଭାବ ବୁଝିବାର କ୍ଷମତା ଦେଇଅଛନ୍ତି । କେବେ କେବେ ଲୋକ କହନ୍ତି ଯେ ଏପରି ଯେତେ ପାଟି କର, କିଛି ହେବ ନାହିଁ । କିନ୍ତୁ ଆମ୍ଭେମାନେ କହୁଁ ଯେ ରାଜା ପ୍ରଜାଙ୍କର ପିତା; ପୁଅର କାନ୍ଦ ଶୁଣି କି ବାପ ଥୟ ହୋଇ ପାରେ ? ଆମ୍ଭେମାନେ ହୃଦୟର ସହିତ

କାନ୍ଦି ପାରୁ ନାହୁଁ ବୋଲି ଆମ୍ଭମାନଙ୍କ ରାଜାଙ୍କ ହୃଦୟ ତରଳାଇ ପାରୁ ନାହୁଁ । ଇଂରେଜ ରାଜ ଆମ୍ଭମାନଙ୍କ ନମସ୍ୟ—ପୂଜ୍ୟ । ଯାହା ଆମ୍ଭମାନଙ୍କର ଗୁହାରି ଅଛି, ସମସ୍ତେ ହୃଦୟର ସହିତ ମିଳି ରାଜାଙ୍କଠାରେ ଜଣାଇଲେ ରାଜା ଅବଶ୍ୟ ଶୁଣିବେ । ଆମ୍ଭମାନଙ୍କ ଦେଶର ପୁରାତନ ପ୍ରଥା ରାଜାଙ୍କଠାରେ ଅଟଳ ଭକ୍ତି । ଆମ୍ଭମାନଙ୍କୁ ଆମ୍ଭମାନଙ୍କ ରାଜାଙ୍କଠାରୁ ଦୂରରେ ରଖାଇଲେ ଯେଉଁମାନଙ୍କର ଲାଭ ଅଛି, ସେମାନେ ଆମ୍ଭମାନଙ୍କ ଭକ୍ତିପୂର୍ଣ୍ଣ କ୍ରନ୍ଦନଧ୍ୱନିକୁ ରାଜାଙ୍କଠାରୁ ଲୁଚାଇ ରଖୁଅଛନ୍ତି ଓ କ୍ରନ୍ଦନଧ୍ୱନିକୁ ବିଦ୍ରୋହୀମାନଙ୍କ ହାସ୍ୟତରଙ୍ଗ ବୋଲି ପ୍ରଚାର କରୁଅଛନ୍ତି । ଆମ୍ଭମାନଙ୍କର ସ୍ୱର୍ଗୀୟା ମହାରାଣୀ ଯେଉଁ ଘୋଷଣା ପତ୍ର ଦେଇଥିଲେ, ତାହା ଆମ୍ଭମାନଙ୍କ ଆଶ୍ରୟ ଓ ସେହି ଆଶ୍ୱାସନା ବାକ୍ୟ ଉପରେ ନିର୍ଭର କରି ରାଜାଙ୍କ ନିକଟରେ ପଡ଼ନ୍ତୁ, ପଡ଼ନ୍ତୁ ଓ ପଡ଼ନ୍ତୁ । ତାଙ୍କ ପୁତ୍ର ଆମ୍ଭମାନଙ୍କର ବର୍ତ୍ତମାନ ରାଜା ଆମ୍ଭମାନଙ୍କର ସବୁ ଗୁହାରି ଶୁଣିବେ ବୋଲି ଲୋକେ ନିଶ୍ଚୟ ହୋଇଅଛନ୍ତି । ଆମ୍ଭେମାନେ ଅଳି କରିବାକୁ ଶିଖି ନ ଥିଲୁଁ । ରାଜା ଆମ୍ଭମାନଙ୍କୁ ସଭ୍ୟତା ଦେଇ ଆମ୍ଭମାନଙ୍କ ଅଭାବ ଆମ୍ଭେମାନେ କିପରି ବୁଝି ପାରିବୁଁ, ତାହା କରି ଅଛନ୍ତି ଓ କରୁଅଛନ୍ତି । ଆମ୍ଭମାନଙ୍କର ସମସ୍ତ ଗୁହାରିର ରାଜା ପ୍ରତିକାର କରୁ ନାହାନ୍ତି ବୋଲି ଅନେକ ଲୋକ ବ୍ୟସ୍ତ । କିନ୍ତୁ ଆଉ କେତେଗୋଟିଏ ଗୁହାରି ନ କରି (ଭୋକିଲା ମନୁଷ୍ୟ ଦୁଇ ହାତରେ ଭାତ ଖାଇଲା ପରି) ଆମ୍ଭେମାନେ ଏକା ଥରକେ ରାଜାଙ୍କ ନିକଟରେ ହଜାରେ ଗୁହାରି ନେଇ ପହଞ୍ଚୁଛୁଁ । ଏଥିରେ ସମ୍ୟକ୍ ଫଳ ବା ହେବ କିପରି ? ଭକ୍ତିର ସହିତ ହୃଦୟର ସହିତ ଯଦି ପୁତ୍ର ପିତାଙ୍କ ଆଗରେ ମନୋବେଦନା ଜଣାଇ ସ୍ଥିର ଭାବରେ ଅଳି କରିବ, ନିଶ୍ଚୟ ଦିନେ ପିତାଙ୍କ ମନ ତରଳିବ । କଂଗ୍ରେସ ଅବଶ୍ୟ ଦିନେ ରାଜାଙ୍କ ହୃଦୟରେ ଦୟା ସଞ୍ଚାର କରାଇବ । ସବୁ ବିଷୟରେ ଧୈର୍ଯ୍ୟ ଆବଶ୍ୟକ । ଯାହା ଆଜି ନ ହେଲା, ତାହା କାଲି ହେବ । ଯାହା ମୁଁ ନ କରି ପାରିବି, ତାହା ମୋର ସନ୍ତାନମାନେ କରିବେ । କେବଳ ଯେ ରାଜାଙ୍କୁ ଦୁଃଖ ଜଣାଇଲେ ଯଥେଷ୍ଟ ହେବ, ଏପରି ମନେ କରିବା ଭୁଲ । ଆମ୍ଭମାନଙ୍କ ନିଜ ନିଜ ମଧ୍ୟରେ, ନିଜ ନିଜ ଘରେ ଅନେକ ଦୁର୍ଗୁଣ, ଅଭାବ ଓ ଦୋଷ ରହିଛି, ତାହା ଆଗେ ସଂଶୋଧନ କରିବା । 'ଆପଣା ପୁଆ ଦେଖି' ଥିବାଯାଏ ଫଳ କେବେହେଁ ଆଶାନୁରୂପ ହେବ ନାହିଁ । ରାଜାଙ୍କୁ ଦେଖାଇବା ଯେ ଆମ୍ଭେମାନେ ତାଙ୍କର ଦୟାର ଯୋଗ୍ୟ । ଆମ୍ଭେମାନେ କେବେହେଁ ରାଜାଙ୍କ ବିପକ୍ଷ ନୋହୁଁ । 'ଶ୍ରୀମତୀ ମହାରାଣୀଙ୍କ ଜୟ,' 'ଶ୍ରୀ ମହାରାଜଙ୍କ ଜୟ' ବୋଲି ତୁମେ ମଫସଲର ବାଳୁତ କଣ୍ଡରା ପିଲାଙ୍କ ମୁହଁରୁ ଶୁଣିବ । ଯେବେ ପୁଅ ଭକ୍ତି ଓ ସମ୍ମାନର ସହିତ କାନ୍ଦି ବାପକୁ ଆପଣା ଦୁଃଖର ଗୁହାରି କରେ; ତେବେ କେଉଁ ହୀନ ମୂର୍ଖ କହିବ ଯେ ଏପରି ପୁଅ ପିତୃଦ୍ରୋହୀ । ବାପ ପୁଅଙ୍କୁ ଭିନ୍ନ ଭିନ୍ନ କଲେ ଯାହାଙ୍କ ପେଟ ପୋଷା ହେବ, ତାଙ୍କ ଛଡ଼ା ଏପରି କଥା କେହି କହିବେ ନାହିଁ, କହି ନାହାନ୍ତି କହନ୍ତୁ ନାହିଁ । ଅବଶ୍ୟ ଦିନେ ହେଲେ ବାପ ପୁଅର ହୃଦୟ ଚହ୍ନି ପାରିବେ । ଈଶ୍ୱର ଆମ୍ଭମାନଙ୍କ ରାଜରାଜେଶ୍ୱରଙ୍କୁ ଆମ୍ଭମାନଙ୍କ ଗୁହାରି ଶୁଣିବାକୁ ଦୀର୍ଘାୟୁ ଓ ବଳ ଦିଅନ୍ତୁ ଏବଂ ଆମ୍ଭମାନଙ୍କ ଗୁହାରି ଗୋଟି ଗୋଟି କରି ରାଜାଙ୍କ କାନରେ ପକାଇବାକୁ ଆମ୍ଭମାନଙ୍କୁ ଧୈର୍ଯ୍ୟ ଓ ସାହସ ଦିଅନ୍ତୁ । ଯାହା ମାଗିଲେ ସହଜରେ ପାଇ ପାରିବୁଁ, ସେଥିପାଇଁ କି ଘୋର ଚିତ୍କାର କରିବାର ନୁହେ, କରନ୍ତୁ ନାହିଁ । ଦେଶଯାକ ଆମ୍ଭମାନଙ୍କ କଷ୍ଟର ବିଷୟ ଆଲୋଚନା କରନ୍ତୁ, ଇଂଲଣ୍ଡରେ ଆନ୍ଦୋଳନ କରନ୍ତୁ, ରାଜାଙ୍କ ପାଖରେ କର ଯୋଡ଼ି ଜଣାଇବୁଁ । ଅବଶ୍ୟ ରାଜାଙ୍କ ହୃଦୟ ଦିନେ ତରଳିବ । ଆମ୍ଭେମାନେ ସମ୍ମାନର ଯୋଗ୍ୟ ହେଲେ ଅବଶ୍ୟ ରାଜା ଆମ୍ଭମାନଙ୍କୁ ସମ୍ମାନିତ କରିବେ, ଆମ୍ଭମାନଙ୍କ [illegible]

ଯେଉଁବେ । ଆଉ ଗୋଟିଏ କଥା :—ବାକ୍ୟାଡ଼ମ୍ବର ମାତ୍ରା କମି କରି ପ୍ରକୃତ କାର୍ଯ୍ୟର ମାତ୍ରା ବଢ଼ାଇବାର ଅବଶ୍ୟକ । ଈଶ୍ୱର କରନ୍ତୁ, ଅମ୍ଭେମାନେ ଅମ୍ଭମାନଙ୍କ ଅଭାବ ବୁଝି ପାରୁଁ ଓ ରାଜରାଜେଶ୍ୱର ଅମ୍ଭମାନଙ୍କ ଦୁଃଖ ଜାଣନ୍ତୁ । ଇତିହାସ ଦେଖ, ଇଂରାଜ ରାଜା କେବେହେଁ ଅତ୍ୟାଚାରର ସପକ୍ଷ ନୁହନ୍ତି; ଇଂରାଜ ଜାତି ସ୍ୱାଧୀନତାପ୍ରିୟ, ଇଂରାଜ ଜାତି ଅନେକ ପଶୁଙ୍କୁ ମନୁଷ୍ୟ କରିଅଛନ୍ତି, ସଭ୍ୟତା ଶିଖାଇଅଛନ୍ତି, ଅନ୍ଧଙ୍କୁ ଚକ୍ଷୁ ଦେଇଅଛନ୍ତି । ସମସ୍ତ ଜଗତ ଯେ ଏକ ମହାନ୍ ଲକ୍ଷ୍ୟ ଆଡ଼କୁ ଅଗ୍ରସର ହେଉଅଛି, ଦିନକୁଦିନ ଉନ୍ନତ ହେଉଅଛି, ଏଥିରେ ଆଉ ସନ୍ଦେହ ନାହିଁ ।"

ମର୍ଦ୍ଦରାଜଙ୍କ ବାଗ୍ମିତାପରିପୂରିତ ବାକ୍ୟଚୟ ଶୁଣି ଅମ୍ଭମାନଙ୍କ ମନରେ ନବଜୀବନର ସଞ୍ଚାର ହେଲା ଓ ଅମ୍ଭେମାନେ ସମସ୍ତେ ଘନ ଘନ କରତାଳି ଦେଲୁଁ । ଅମ୍ଭେମାନେ ମଫସଲିଆ; ଅମ୍ଭମାନଙ୍କ ମନରେ ଧାରଣା ଥିଲା ଯେ ଅମ୍ଭମାନଙ୍କ ଦୁଃଖ ଶୁଣିବାକୁ କେହି ନାହିଁ, ମାଡ଼ ଖାଇ ଘରେ ଲୁଚୁଁ; ଗୋଇଠା ଖାଉଁ, ଅପଣା ପିଠିକି ନ ଅଉଁସି ଗୋଇଠା ମାରିବା ଗୋଡ଼କୁ ହାତରେ ଅଉଁସି ପକାଉଁ ! ଆଜି ଏ କଥା ଶୁଣି ମନରେ କେତେ ଆଶାର ସଞ୍ଚାର ହୋଇଗଲା । ମଧ୍ୟ ମର୍ଦ୍ଦରାଜଙ୍କଠାରୁ ଶୁଣିଲୁଁ ଯେ ଏ ସମୟରେ କଂଗ୍ରେସ ପକ୍ଷରୁ ଜଣେ Agent (ଦୂତ) ନିଯୁକ୍ତ ହୋଇ ଓଡ଼ିଶାର ଗ୍ରାମ ଗ୍ରାମ ବୁଲି କଂଗ୍ରେସର ମର୍ମ ମଫସଲର ଲୋକଙ୍କୁ ବୁଝାଇବେ । ମନେ ମନେ ବିଚାରିଲୁଁ, 'ଓଡ଼ିଶାରେ ଉପଯୁକ୍ତ ଲୋକ ନ ମିଳିବାରୁ ଜଣେ ଉତ୍କଳାନଭିଜ୍ଞ ଲୋକଙ୍କୁ ବାଧ୍ୟ ହୋଇ ନିଯୁକ୍ତ କରାଗଲା' ଏ କଥା ସମ୍ବାଦ ପତ୍ରରେ ନ ବାହାରିଲେ ରକ୍ଷା । ହାୟ ! କେତେ ମୁନିଙ୍କର କେତେ ମତ ! ମୁହଁରେ ଦେଶହିତୈଷୀ ବୋଲି ପରିଚୟ ଦେବା ଓ କାର୍ଯ୍ୟରେ କରିବା ବହୁତ ପ୍ରଭେଦ । ଜଣେ [illegible] ଦ୍ୱାରା ପ୍ରକାଶ କରୁଥିଲେ, ଓଡ଼ିଶାରେ ଏତେ ଉଚ୍ଚ ଶିକ୍ଷିତ ଯୁବକ ଅଛନ୍ତି, ଏତେ ଥିଲେହେଁ ଜଣେ ଲୋକ ସ୍ୱବା ସ୍ୱାଧୀନବ୍ୟବସାୟୀ କଂଗ୍ରେସକୁ ମିଳିଲେ ନାହିଁ । ଏ କଥା ବିଲାତ ପର୍ଯ୍ୟନ୍ତ ଖବର ହୋଇଗଲା । ତେବେ ଅସଲ ଭିତରର ଅପ୍ରିୟ ସତ୍ୟ କଥା ଦେଉଁ ଆଡ଼ରେ ଲୁଚିଗଲା ! ବଣର କୁରାଢ଼ୀ ଓ କାଠ ମଧ୍ୟରେ ଯେଉଁ ସାରଗର୍ଭ ଗଳ୍ପ ଅଛି, ତାହା ମନେ ପଡ଼ିଲା । ଭଗବାନ୍ Congress (ଜାତୀୟ ମହାସମିତି)ରେ କେବଳ ଆଡ଼ମ୍ବରପ୍ରିୟ ଯଶଃପ୍ରେପ୍ସୁ ଲୋକ ନ ରଖି ପ୍ରକୃତ, ଆଡ଼ମ୍ବରଶୂନ୍ୟ, କାର୍ଯ୍ୟକ୍ଷମ, ଗୁଣଗ୍ରାହୀ, ପରିଶ୍ରମୀ ଲୋକଙ୍କ ହସ୍ତରେ କାର୍ଯ୍ୟଭାର ନ୍ୟସ୍ତ କରନ୍ତୁ, ଏହାହିଁ ପ୍ରାର୍ଥନା ।

ପଣ୍ଡିତ ମହାଶୟ ମଧ୍ୟ ଆଜି ଅନେକ ବାଟକୁ ଆସିବାର ଦେଖି ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହେଲୁଁ । ଇଂରାଜ ରାଜାଙ୍କ ବିଷୟ ପଡ଼ିଲେ ଯେ ନୀରବ ହୋଇ ବସି ରହନ୍ତି, ସେ ମଧ୍ୟ ଆଜି 'ଜୟ ରାଜରାଜେଶ୍ୱରଙ୍କର ଜୟ' 'ଜୟ ଜାତୀୟ ମହାସମିତିର ଜୟ' ବୋଲି ଚିତ୍କାର କରି ଉଠିଲେ ।

ମର୍ଦ୍ଦରାଜେ 'ବହିର୍ଦ୍ଦେଶାର୍ଥେ' ବାହାରକୁ ଗଲେ । ଏହି ସମୟରେ ମାହେନ୍ଦ୍ର ଯୋଗ ପଡ଼ିଲା ପରି ଜମାଦାର ବାବୁ ଆରକ୍ତ ନୟନରେ 'ଦରେସ' ପିନ୍ଧି ଟୁଙ୍ଗୀରେ ଉପସ୍ଥିତ । ଅମ୍ଭେମାନେ ଦେଖି ଅବାକ୍ ! ଟୁଙ୍ଗୀରେ ପଦକ୍ଷେପ କରିବା ମାତ୍ରେକେ ଜମାଦାର ପୂର୍ବପରିଚିତ ଲୋକମାନଙ୍କୁ ଭୁଲି ଗଲେ ଓ କହିଲେ, "ଦେଖୋ ! କୋଇ ବାହାର ମତ୍ ଯାଓ, ହାମ୍ ସବ୍‌କୁ ଗିରଫ୍ କରକେ ଥାନାମେ ଲେଙ୍ଗେ ! (ଜମାଦାର ଜାଣି ନ ଥିଲେ ଯେ ମର୍ଦ୍ଦରାଜେ ଆଜି ଟୁଙ୍ଗୀରେ ଉପସ୍ଥିତ । ଗ୍ରାମରେ ମର୍ଦ୍ଦରାଜଙ୍କ ଛଡ଼ା ଜମାଦାର ଆଉ ବିଶେଷ କାହାକୁ ଖାତିର କରନ୍ତି ନାହିଁ । ମର୍ଦ୍ଦରାଜେ କଲିକତା ଯାଇଅଛନ୍ତି, ତାଙ୍କ ନିମନ୍ତେ ଖବରକାଗଜ ଅଛି, କଲମ, କାଳି, କାଗଜ ଅଛି, ତାଙ୍କ ମଧ୍ୟ ଅଛି ।) ବିରାଡ଼ି ଆଖି ବୁଜି ଦୁଧ ପିଇଲେ କେହି ଦେଖି ପାରିବ ନାହିଁ ବୋଲି ବିଚାରୁଥିଲା ।

ଆଜି କାଲି ଅଉଲ୍ ଟୋମା ନଗା ଏ ବାତ୍ ଶୁନ୍-ମାନେକୁ ଓ ଆଜବ୍ ନ ଶୁନ୍ ପଗ ! ଅବ୍ ଦେଖୋ କେସା ମଜା ହ୍ !"

ଏ ମା କହିବା ମାତ୍ରକେ ଆଉ ଜଣେ Constable (ମଫସଲରେ ଅମ୍ଭେମାନେ ଯାହାଙ୍କୁ 'କନାଷ୍ଟବଲ' ଜମାଦାରଙ୍କୁ ଅମ୍ଭେମାନେ ଜାଣୁ 'କେନ୍‌ଷ୍ଟବଲ' ଓ ଆଜିଙ୍କର ନମ୍ରସ୍ଥ କର୍ମଚାରୀମାନଙ୍କୁ ଜାଣୁ 'କନେଷ୍ଟବଲ') ଆସି ଦ୍ୱାରରେ ଦଣ୍ଡାୟମାନ ।

ରମ୍ଭୁ ଭୋଇ, ଶାମ ପଧାନ, ଦାମା ପତ୍ରିଡା ଜମାଦାରଙ୍କ ଗୋଡ଼ ତଳେ ଲମ୍ବଲମ୍ବ ପଡ଼ି ଚିତ୍କାର କଲେ, 'ହଜୁର୍ ଆମର ମା ବାପ, ଜଜ, କମିଶନ, ଆମକୁ ମାଷ୍ଟରେ ଏଠାକୁ ଡାକି ଆଣିଛନ୍ତି, ଆମେ ଆସୁ ନ ଥିଲୁଁ । ହଜୁର ରଖିଲେ ରଖିବେ, ମାରିଲେ ମାରିବେ ।'

ଜମାଦାର ଏମାନଙ୍କ ସଙ୍ଗେ କେତେଗୁଡ଼ାଏ ମୌଖିକ ଅବୈବାହିକ ସମ୍ବନ୍ଧ ସ୍ଥାପନ କରି ହିନ୍ଦି ଭାଷାର ଜ୍ଞାନ ଦେଖାଉଅଛନ୍ତି, ଏହି ସମୟରେ ମର୍ଦ୍ଦରାଜ 'ବହିର୍ଦେଶ'ରୁ ଫେରି ଆସିଲେ । (କୌଣସି ସମ୍ବାଦପତ୍ରରେ କେତେ ଦିନ ତଳେ ଜମାଦାରଙ୍କର କଷ୍ଟ ଦୁର୍ନାମ ବାହାରି ଥିବାରୁ ଉପଯୁକ୍ତ ବିଭାଗୀୟ ତଦନ୍ତ ପରେ ଜମାଦାରଙ୍କର ୨ ମାସ ଦେଲା ୧୦ ଟଙ୍କା ଅର୍ଥଦଣ୍ଡ ହୋଇଅଛି । ଜମାଦାରେ ଆଜି ସୁଯୋଗ ବୁଝି ସେ ଅର୍ଥଦଣ୍ଡଟା ଦୁରାଚାରଦ୍ୱାରା ଭରଣା କରି ନେବେ ବୋଲି ଟୁଙ୍ଗୀକୁ ଆସିଥିଲେ । କିନ୍ତୁ ଭାଗ୍ୟ ନ ଥିଲେ ଯାତ୍ରାକାଳ ଭଗ୍ନ—ମର୍ଦ୍ଦରାଜ ଆସି ପହଞ୍ଚିଲେ ଓ ଜମାଦାରେ 'ଭେଗୀବ ମନ୍ଦୀରଥିବାବୁ ବିର୍ଯ୍ୟା' ହୋଇ ଗଲେ !) ମର୍ଦ୍ଦରାଜଙ୍କର ଓ ଜମାଦାରଙ୍କର ଖଣ୍ଡିତ କଣ୍ଠମାଲାପରେ ଜମାଦାରେ ବାଟ୍‌ପକ୍ଷ ନ କରି ସଦଳବଳରେ ପ୍ରସ୍ଥାନ କଲେ ଓ ଅମ୍ଭେମାନେ ମର୍ଦ୍ଦରାଜଙ୍କୁ ବେଶ ଆଶୀର୍ବାଦ କରି ଟୁଙ୍ଗୀରୁ ପ୍ରସ୍ଥାନ କଲୁଁ ।

ଶ୍ରୀ ଦୁର୍ମୁଖ ଶର୍ମା ।

## ଅଲୋକ-ଚିତ୍ର ବା ଫଟୋଗ୍ରାଫି । (୨)

ଅଲୋକ-ବିଶ୍ଳେଷଣ—ଅମ୍ଭେମାନେ ଏପର୍ଯ୍ୟନ୍ତ କେବଳ ଅଲୋକର ଗତି ବିଷୟ ବର୍ଣ୍ଣନା କରି ଅଛୁଁ । ବର୍ତ୍ତମାନ ତାହାର ଅନ୍ୟ ଗୋଟିଏ ଆଶ୍ଚର୍ଯ୍ୟ-ଜନକ ପ୍ରକୃତିର ବର୍ଣ୍ଣନା କରିବୁଁ । ତାହା ସହିତ ଫଟୋଗ୍ରାଫି-ଶିଳ୍ପର ଅତି ଘନିଷ୍ଠ ସମ୍ବନ୍ଧ ଅଛି । ଏମନ୍ତ କି ଅଲୋକର ସେହି ଗୁଣ ସାହାଯ୍ୟରେ ଅଲୋକ-ଚିତ୍ର କିଆଯାଏ ।

ସୂର୍ଯ୍ୟରଶ୍ମି ସପ୍ତ ଗୋଟି ବିଭିନ୍ନ ବର୍ଣ୍ଣ ଯୋଗରେ ଉତ୍ପନ୍ନ—ଆପାତତଃ ସୂର୍ଯ୍ୟାଲୋକ ଯେପରି ଅମିଶ୍ର ବା ଅସଂଯୁକ୍ତ ବୋଲି ବୋଧ ହୁଏ, ପ୍ରକୃତରେ ତାହା ସେପରି ନୁହେ । ଅଲୋକ ଅନେକ ଗୁଡ଼ାଏ ବର୍ଣ୍ଣ ବା ରଙ୍ଗର ଏକତ୍ର ସଂଯୋଗରେ ଉତ୍ପନ୍ନ । କିନ୍ତୁ କୌଶଳ ଅବଲମ୍ବନଦ୍ୱାରା ଏହି ସମସ୍ତ ବର୍ଣ୍ଣକୁ ଭିନ୍ନ କରି ଯାଏ । ସୂର୍ଯ୍ୟ, ତଡ଼ିତ୍, ମ୍ୟାଗ୍ନେସିୟମ୍ ପ୍ରଭୃତିର ଶ୍ୱେତବର୍ଣ୍ଣ ଅଲୋକମାନଙ୍କେ କତିପୟ ବର୍ଣ୍ଣର ସମଷ୍ଟି । ଏ ସ୍ଥଳରେ କେବଳ ସୂର୍ଯ୍ୟାଲୋକର ବିଷୟ ବର୍ଣ୍ଣିତ ହେବ ।

ପ୍ରିୟ ପାଠକ ! ବାଲ୍ୟାବସ୍ଥାରେ ଖେଳୁଥିବା ସମୟରେ ବେଲୋୟାରୀ ଝାଡ଼ର ତ୍ରିକୋଣ ଲଟକଣ (ତ୍ରିପାର୍ଶ୍ୱ-ବିଶିଷ୍ଟ କାଚଖଣ୍ଡ) କେବେ ଚକ୍ଷୁ ନିକଟରେ ଧରି ଦେଖିଥିବେ, ତହିଁରେ ନାନାପ୍ରକାର ରଙ୍ଗ ବା ବର୍ଣ୍ଣ ଦେଖାଯାଏ; ସେ ବର୍ଣ୍ଣଗୁଡ଼ିକ କଣ ? ତାହା ସୂର୍ଯ୍ୟ-ରଶ୍ମିର ବା ଅଲୋକର ବିଶ୍ଳେଷିତ ବର୍ଣ୍ଣ ଅଟେ । ତ୍ରିପାର୍ଶ୍ୱବିଶିଷ୍ଟ କାଚଫଳକର (Prism) ଅଲୋକ ବକ୍ରୀକରଣ କରିବା ଗୁଣ ଯେପରି ଅଛି, ସେହିପରି ମଧ୍ୟ ଅଲୋକ ବିଶ୍ଳେଷଣ କରିବା ଗୁଣ ଅଛି । ଏହି କାଚଫଳକ ଅଲୋକକୁ ବକ୍ରିମ କରି ତାହାର ସଂଯୁକ୍ତ ବର୍ଣ୍ଣଗୁଡ଼ିକୁ ପରସ୍ପର ପୃଥକ୍ କରି ଦିଏ । ସେଥିରୁ ଦେଖାଯାଇଅଛି ଯେ ଅଲୋକ ସାତ ଗୋଟି ବିଭିନ୍ନ

ଯୋଗରେ ଉତ୍ପନ୍ନ । ଆଲୋକର ଏହି ବର୍ଣ୍ଣ-ବିଶ୍ଳେଷଣ କ୍ରିୟା ଅତି ସହଜରେ ସମ୍ପନ୍ନ ହୋଇ ପାରେ ।

ଗୋଟିଏ ଘରର ଦ୍ୱାର, ଝରକା (ବାତାୟନ) ରୁଦ୍ଧ କରି ଦେଇ ଘରକୁ ସମ୍ପୂର୍ଣ୍ଣରୂପେ ଅନ୍ଧକାରାବୃତ କରି, କେବଳ ଯେବେ ପୂର୍ବଦିଗନୁଯାୟୀ କୌଣସି ଦିଗରେ ଝରକା କିମ୍ବା କବାଟରେ କନିଷ୍ଠାଙ୍ଗୁଳି-ବେଧ-ପରିମିତ ଗୋଟିଏ କ୍ଷୁଦ୍ର ଛିଦ୍ର କରାଯାଏ ଏବଂ ସେହି ପଥ ଦେଇ ସୂର୍ଯ୍ୟାଲୋକ ଗୃହମଧ୍ୟରେ ପ୍ରବେଶ କରେ, ଦେଖିବ ଯେ ଗୃହର ଅପରପାର୍ଶ୍ୱସ୍ଥ କାନ୍ଥ ଉପରେ ଗୋଟିଏ ବୃତ୍ତାକାର କ୍ଷୁଦ୍ର ଆଲୋକ ପଡ଼ିବ, ଘର ମଧ୍ୟରେ ସେହି ରଶ୍ମି-ପଥ ସୁସ୍ପଷ୍ଟ ଦୃଷ୍ଟ ହେବ । ରଶ୍ମି-ପଥରେ ବାୟୁରେ କ୍ଷୁଦ୍ରକ୍ଷୁଦ୍ର ଧୂଳିକଣାସମୂହ ଭାସମାନ ହେବାର ଦେଖା ଯିବ । ଏଥିର ତାତ୍ପର୍ଯ୍ୟ ଏହି ଯେ ସବୁବେଳେ ବାୟୁରେ ଅଣୁପ୍ରମାଣ ସୂକ୍ଷ୍ମ ସୂକ୍ଷ୍ମ ଧୂଳିକଣା ଭାସମାନ ହେଉଥାଏ । ବର୍ତ୍ତମାନ ଗୃହଟି ସମ୍ପୂର୍ଣ୍ଣ ଅନ୍ଧକାରାବୃତ ଥିବାରୁ କେବଳ ପ୍ରବିଷ୍ଟ ରଶ୍ମିର ବାୟୁପଥରେ ଭାସମାନ ହେଉଥିବା ଧୂଳିକଣାଗୁଡ଼ିକ ଆଲୋକିତ ହୋଇ ଦୃଷ୍ଟିଗୋଚର ହୁଏ । ବର୍ତ୍ତମାନ ଯେବେ ଉକ୍ତ ଛିଦ୍ରର କିଛି ଦୂରରେ ଏହି ରଶ୍ମି-ପଥରେ ଗୋଟିଏ ତ୍ରିପାର୍ଶ୍ୱ କାଚ ବା ପ୍ରିଜମ୍ (Prism) ରଖା ହୁଏ, ତେବେ ଦେଖିବ ଯେ ଗୃହପ୍ରବିଷ୍ଟ ରଶ୍ମିଟି ଏହି ତ୍ରିପାର୍ଶ୍ୱବିଶିଷ୍ଟ କାଚର ଏକ ପାର୍ଶ୍ୱରେ ପଡ଼ି ତାହାର ମଧ୍ୟ ଦେଇ ବକ୍ର ହୋଇ ସାତୋଟି ବିଭିନ୍ନ ଉଜ୍ଜ୍ୱଳ ବର୍ଣ୍ଣରେ ପରିଣତ ହେବ । ରଶ୍ମିଟି ଆଉ ଶ୍ୱେତବର୍ଣ୍ଣ ବୃତ୍ତାକାରରେ ନ ପଡ଼ି ସପ୍ତ ଗୋଟି ବିଭିନ୍ନ ବର୍ଣ୍ଣ ଧାରଣ କରି କାନ୍ଥ ଉପରେ ପରମ୍ପରାନୁସାରେ ଗୋଟିଏ ଦୀର୍ଘ ମେଖଳାରେ ପରିଣତ ହେବ । ଏହିପରି ତ୍ରିପାର୍ଶ୍ୱବିଶିଷ୍ଟ କାଚ ସାହାଯ୍ୟରେ ସର୍ ଆଇଜାକ୍ ନିଉଟନ ମହୋଦୟ ସର୍ବପ୍ରଥମରେ ଆଲୋକକୁ ବିଶ୍ଳିଷ୍ଟ କରିଥିଲେ । [illegible]ରେ ଏହି ମହାତ୍ମା ଆବିଷ୍କାର କଲେ ଯେ ଶ୍ୱେତ ଆଲୋକ ବା ସୂର୍ଯ୍ୟାଲୋକ ଅମିଶ୍ର ରୂଢ଼ ପଦାର୍ଥ ନୁହେ—ଏହା ସପ୍ତ ଗୋଟି ବିଭିନ୍ନ ବର୍ଣ୍ଣ-ସଂଯୋଗରେ ଉତ୍ପନ୍ନ । ଏହିପରି ତ୍ରିକୋଣ କାଚ ସାହାଯ୍ୟରେ ଆଲୋକର ଉପାଦାନ ବର୍ଣ୍ଣଗୁଡ଼ିକୁ ପରସ୍ପର ପୃଥକ୍‌କରଣର ନାମ ସୌର-ରଶ୍ମି-ବିଶ୍ଳେଷଣ ଅଟେ ଏବଂ ବିଶ୍ଳିଷ୍ଟ ବର୍ଣ୍ଣପରମ୍ପରାକୁ ସୌର-ବର୍ଣ୍ଣ-ମେଖଳା କହନ୍ତି । ଏହି ମେଖଳାର ଲୋହିତ, ପାଟଳ, ପୀତ, ହରିତ, ନୀଳ, ଧୂମଳ ଓ ଭାୟୋଲେଟ୍ ଏହି ସପ୍ତ ବର୍ଣ୍ଣ ଦେଖାଯାଏ । ତନ୍ମଧ୍ୟରେ ଲୋହିତ ସର୍ବ ନିମ୍ନରେ, ତଦୁପରି ପାଟଳ, ପୀତ; ଏହିପରି ପରମ୍ପରାନୁସାରେ ହରିତ, ନୀଳ, ଧୂମଳ ଏବଂ ସର୍ବ ଶେଷରେ ଭାୟୋଲେଟ୍ ଅବସ୍ଥିତ ହୁଏ—ସର୍ବ ନିମ୍ନରେ ଲୋହିତବର୍ଣ୍ଣରୁ ଆରମ୍ଭ ହୋଇ ସର୍ବୋପରି ଭାୟୋଲେଟରେ ବର୍ଣ୍ଣ-ମେଖଳା ଶେଷ ହୁଏ ।

ଏ ସ୍ଥଳରେ ଏପରି ସନ୍ଦେହ ଉତ୍ଥାପିତ ହୋଇ ପାରିବ ଯେ ତ୍ରିପାର୍ଶ୍ୱ କାଚର ତ ଏପରି ବର୍ଣ୍ଣ ଉଦ୍‌ଭାସିତ କରିବାର ଧର୍ମ ଥାଇ ପାରେ ? ସପ୍ତ ଗୋଟି ବର୍ଣ୍ଣ ତ୍ରିକୋଣ କାଚରୁ ତ ଉତ୍ପନ୍ନ ହୋଇ ପାରେ ? କିନ୍ତୁ ପ୍ରକୃତରେ ଯେ ତାହା ନୁହେ, ତହିଁର ଉତ୍ତମ ପ୍ରମାଣ ଅଛି । ତ୍ରିକୋଣ କାଚର ଏପରି ବର୍ଣ୍ଣ-ଉତ୍ପାଦକ କୌଣସି ଶକ୍ତି ନାହିଁ । ବର୍ଣ୍ଣଗୁଡ଼ିକ କେବଳ ଆଲୋକର ଉପକରଣ ମାତ୍ର; ପ୍ରିଜମ୍ ସହକାରେ ସେଗୁଡ଼ିକ ପରସ୍ପର ପୃଥକ୍ କରାଯାଏ । ଏହି କେତୋଟି ବିଶ୍ଳିଷ୍ଟ ବର୍ଣ୍ଣକୁ ପୁନରାୟ ଏକତ୍ର କଲେ ପୂର୍ବବତ୍ ଶ୍ୱେତ ଆଲୋକରେ ପରିଣତ ହେବ । ଅନ୍ତର ମଧ୍ୟ ଏହି ସପ୍ତବିଧ ବର୍ଣ୍ଣର ଧର୍ମ ମଧ୍ୟରେ ପରସ୍ପର ପ୍ରଭେଦ ଅଛି, ତଦ୍‌ବିଷୟ ପରେ ବିଶିଷ୍ଟରୂପେ ଆଲୋଚିତ ହେବ । ଏକବିଧ ତ୍ରିକୋଣ କାଚ ମଧ୍ୟ ଦେଇ ବହିର୍ଗତ ରଶ୍ମିରୁ ଏପରି ବିଭିନ୍ନ ଧର୍ମାକ୍ରାନ୍ତ ବିଭିନ୍ନ ବର୍ଣ୍ଣର ଉତ୍ପତ୍ତି କିପରି ହୋଇ ପାରେ ? ସୁତରାଂ ସ୍ୱୀକାର କରିବାକୁ ହେବ ଯେ ସାତୋଟି ବିଭିନ୍ନ ବର୍ଣ୍ଣର

ସଂଯୋଗରେ କେବଳ ଶ୍ୱେତ ଆଲୋକର ଉତ୍ପତ୍ତି। ବର୍ଣ୍ଣିଷ୍ଟ ବର୍ଣ୍ଣ-ମେଖଳାକୁ ଏକୀଭୂତ କରି ପୂର୍ବବତ୍ ଶ୍ୱେତ ଆଲୋକରେ ପରିଣତ କରଣକୁ ଆଲୋକ-ସଂଶ୍ଳେଷଣ କହାଯାଏ ।

ପୂର୍ବବର୍ଣ୍ଣିତ ଅନ୍ଧକାରାବୃତ ଗୃହରେ ତ୍ରିପାର୍ଶ୍ୱ କାଚଦ୍ୱାରା ସୌରରଶ୍ମି-ବିଶ୍ଳେଷଣ ପରୀକ୍ଷା ସମୟରେ ବର୍ଣ୍ଣିଷ୍ଟ ବିଭିନ୍ନ ବର୍ଣ୍ଣର କିରଣସମୂହର ପଥରେ ଖଣ୍ଡିଏ ଦ୍ୱିକୁବ୍ଜ କାଚ (Double Convex Lense) ସ୍ଥାପିତ କଲେ ତନ୍ମଧ୍ୟରେ ଏହି କିରଣସମୂହ କେନ୍ଦ୍ରୀଭୂତ ହୋଇ ବିପରୀତ ଦିଗରେ କାନ୍ଥରେ ଅଥବା ଖଣ୍ଡିଏ ସାଦା କାଗଜ ଧରିଲେ ତାହା ଉପରେ ଏକତ୍ରିତ ହୋଇ ଗୋଟିଏ କେନ୍ଦ୍ରରେ ଶ୍ୱେତ ଆଲୋକରେ ପରିଣତ ହେବ ।

ତ୍ରିପାର୍ଶ୍ୱ କାଚ ମଧ୍ୟଦେଇ ରଶ୍ମିର ସପ୍ତ ଗୋଟି ବିଭିନ୍ନ ବର୍ଣ୍ଣ ଯେତେବେଳେ ସ୍ପଷ୍ଟରୂପେ ପରସ୍ପର ପୃଥକ୍ ହୋଇ ଯାଏ, ବୁଝିବାକୁ ହେବ ଯେ ସୌର-କର ଅମିଶ୍ର ନୁହେ; ପୁଣି ମଧ୍ୟ ତ୍ରିପାର୍ଶ୍ୱକାଚ ଭିନ୍ନ ଭିନ୍ନ ବର୍ଣ୍ଣକୁ ବିଭିନ୍ନ ପରିମାଣରେ ବକ୍ର କରି ଦିଏ । ଯେବେ ତ୍ରିପାର୍ଶ୍ୱ କାଚର ସବୁ ବର୍ଣ୍ଣଗୁଡ଼ିକୁ ସମପରିମାଣରେ ବକ୍ର କରିବାର କ୍ଷମତା ଥାଆନ୍ତା ତେବେ ତଦୁପରି ପତିତ ରଶ୍ମି ତନ୍ମଧ୍ୟ ଦେଇ ବକ୍ର ହୋଇ ବିପରୀତ ଦିଗରେ ଗୋଟିଏ ମାତ୍ର ଶ୍ୱେତବର୍ଣ୍ଣ ରେଖାପଥରେ ବାହାରନ୍ତା ଏବଂ ସେହି ପଥରେ ଧୃତ ହୋଇଥିବା କୌଣସି ପଦାର୍ଥ ଉପରେ ଗୋଟିଏ ଶ୍ୱେତାଲୋକ ବୃତ୍ତାକାରରେ ପଡ଼ନ୍ତା । କିନ୍ତୁ ତାହା ନ ହୋଇ ସପ୍ତ ଗୋଟି ଭିନ୍ନ ଭିନ୍ନ ବର୍ଣ୍ଣ ତ୍ରିକୋଣ କାଚ ମଧ୍ୟରେ ଅଳ୍ପ କମ୍ବା ବେଶି ପରିମାଣରେ ବକ୍ର ହୋଇଯାଏ । ତ୍ରିକୋଣ କାଚର ଏହି ବର୍ଣ୍ଣବିସ୍ତାରକାରୀ ଗୁଣ ହେତୁ ରଶ୍ମି ସପ୍ତଗୋଟି ବିଭିନ୍ନ ବର୍ଣ୍ଣରେ ବିଭକ୍ତ ହେବାର ଦେଖା ଯାଏ ଏବଂ ବର୍ଣ୍ଣିଷ୍ଟ ହୋଇ ଗୋଟିଏ ଦୀର୍ଘ ବର୍ଣ୍ଣ-ମେଖଳାରେ ପରିଣତ ହୁଏ ।

ଲୋହିତବର୍ଣ୍ଣ ସର୍ବାପେକ୍ଷା ଅଳ୍ପ ବକ୍ର ହୁଏ; କ୍ରମେ ତଦୁପରସ୍ଥ ବର୍ଣ୍ଣଗୁଡ଼ିକ ପରମ୍ପରାକ୍ରମରେ ଅଧିକତର ବକ୍ର ହେବାରୁ ଭାୟୋଲେଟ୍ ବର୍ଣ୍ଣଟି ସର୍ବୋପରି ଅବସ୍ଥିତ ହୁଏ । ତ୍ରିକୋଣ କାଚର ଯେବେ ସମସ୍ତ ବର୍ଣ୍ଣକୁ ସମପରିମାଣରେ ବକ୍ର କରିବାର କ୍ଷମତା ଥାନ୍ତା, ତାହାହେଲେ ଆଲୋକ-ରଶ୍ମିର ସପ୍ତ ଗୋଟି ଉପାଦାନ ବର୍ଣ୍ଣ କଦାପି ପରସ୍ପର ପୃଥକ୍ ହୋଇ ଦୈର୍ଘ୍ୟରେ ବିସ୍ତୃତ ହୋଇ ପଡ଼ନ୍ତା ନାହିଁ । ଏଥିରୁ ପ୍ରମାଣିତ ହେଉଅଛି ଯେ ତ୍ରିକୋଣ କାଚର ଆଲୋକ-ବକ୍ରୀକାରକତା, ବର୍ଣ୍ଣ-ବିସ୍ତାରକାରିତା ଏହି ଦୁଇ ଗୋଟି ସ୍ୱତନ୍ତ୍ର ଗୁଣ ଅଛି ।

ସୂର୍ଯ୍ୟକିରଣର ସପ୍ତ ଗୋଟି ବର୍ଣ୍ଣ ମଧ୍ୟରୁ କେତୋଟି ମାତ୍ର ମୂଳ ବର୍ଣ୍ଣ—ବୈଜ୍ଞାନିକମାନେ ରଶ୍ମିର ବର୍ଣ୍ଣିଷ୍ଟ ସପ୍ତ ବର୍ଣ୍ଣର ପ୍ରତ୍ୟେକକୁ ଉପଯୁକ୍ତ ଉପାୟଦ୍ୱାରା ପରୀକ୍ଷା କରି ଦେଖିଅଛନ୍ତି ଯେ ସେଥିରେ ଏହି ସପ୍ତ ଗୋଟି ବର୍ଣ୍ଣ ମଧ୍ୟରୁ ଲୋହିତ, ପୀତ ଓ ନୀଳ ଏହି ତିନି ଗୋଟି ମୂଳ ବର୍ଣ୍ଣ ଅଟେ ଏବଂ ଅବଶିଷ୍ଟ ବର୍ଣ୍ଣଗୁଡ଼ିକ ଏହି ତିନି ମୂଳବର୍ଣ୍ଣର କେବଳ ମିଶ୍ରଣଜାତ ବର୍ଣ୍ଣ ବୋଲି ପ୍ରତିପନ୍ନ କରିଅଛନ୍ତି । ପ୍ରତ୍ୟେକ ସୌର କରରେ ଏହି ତିନି ଗୋଟି ମୂଳ ବର୍ଣ୍ଣ ଅଛି; ପୁଣି ଏମାନଙ୍କର ପରସ୍ପର ସମ୍ମିଳନରେ ଅବଶିଷ୍ଟ ଚାରିଗୋଟି ମିଶ୍ର ବର୍ଣ୍ଣର ଉତ୍ପତ୍ତି । ନୀଳ ଓ ଭାୟୋଲେଟ୍ ଯୋଗରେ ଧୂମଳ ବର୍ଣ୍ଣ, ନୀଳ ଓ ପୀତରେ ହରିତ୍, ପୀତ ଓ ଲୋହିତରେ ପାଟଳବର୍ଣ୍ଣ ଏବଂ ଗାଢ଼ ଲୋହିତ ଓ ନୀଳ ବର୍ଣ୍ଣରେ ଭାୟୋଲେଟ୍ ବର୍ଣ୍ଣର ଉତ୍ପତ୍ତି ହୋଇଥାଏ ।

ପ୍ରତ୍ୟେକ ମୂଳ ବର୍ଣ୍ଣ ସମଗ୍ର ବର୍ଣ୍ଣ-ମେଖଳା ଅଧିକାର କରିଥାଏ । ବର୍ଣ୍ଣିଷ୍ଟବର୍ଣ୍ଣ-ମେଖଳାରେ ଏହି ତିନୋଟି ମୂଳବର୍ଣ୍ଣର ଅବସ୍ଥାନର ଅନ୍ତରୁଚ୍ଛ ଅଛି । ବର୍ଣ୍ଣ-ମେଖଳାରେ ଏହି ବର୍ଣ୍ଣରୁ ପ୍ରତ୍ୟେକ ବର୍ଣ୍ଣ ଯେଉଁ ସ୍ଥାନରେ ଦୃଷ୍ଟ ହୁଏ, ପ୍ରକୃତରେ ସେ ବର୍ଣ୍ଣ ଯେ କେବଳ ସେହି ସ୍ଥାନ ଅଧିକାର କରିଥାଏ, ତାହା ନୁହେ; ଫଳତଃ ସେ ସବୁ ମେଖଳାର ସମସ୍ତ ଅଂଶ ବ୍ୟାପିଥାଏ । କେବଳ

କୌଣସି ସ୍ଥାନର ଅଳ୍ପ କିମ୍ବା କୌଣସି ସ୍ଥାନରେ ଅଧିକ ପରିମାଣରେ ଘନ ଦେଖାଯାଏ । ବର୍ଣ୍ଣ-ମେଖଳାରେ ନିର୍ଦ୍ଦିଷ୍ଟ ହୋଇଥିବା କେତେକ ସ୍ଥାନରେ ଏହି ବର୍ଣ୍ଣଗୁଡ଼ିକ ଘନଭାବରେ ପ୍ରତିଫଳିତ ହେବାର ଦେଖାଯାଏ । ସେଥି ଯୋଗୁଁ ଏହି ସେ ସ୍ଥାନରେ ସ୍ପଷ୍ଟରୂପେ ଦେଖାଯାଏ । ସୁତରାଂ ଏହି ସେ ସ୍ଥାନ ମୂଳ ବର୍ଣ୍ଣର ନିର୍ଦ୍ଦିଷ୍ଟ ସ୍ଥାନ ବୋଲି ଧାର୍ଯ୍ୟ ହୋଇଅଛି । ବିଶେଷ ପର୍ଯ୍ୟବେକ୍ଷଣ କରି ଦେଖିଲେ ଅନୁଭୂତ ହେବ ଯେ ବର୍ଣ୍ଣ-ମେଖଳାର ଏକ ପ୍ରାନ୍ତଠାରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ସମଗ୍ର ବର୍ଣ୍ଣଗୁଡ଼ିକର ଆଭାସ ରହିଅଛି । ଲୋହିତ ବର୍ଣ୍ଣଠାରୁ ଧରିଲେ—ଏହି ବର୍ଣ୍ଣଟି ସର୍ବନିମ୍ନ ସ୍ଥାନରେ ଅତି ଗାଢ଼ ଦେଖାଯାଏ ଏବଂ କ୍ରମେ ଉପରକୁ ପାତଳ ବା ଫିକା ହୋଇଥାଏ; ତଦୁପରିସ୍ଥ ମୂଳ ବର୍ଣ୍ଣଟି ପୀତ, ଏ ମଧ୍ୟ ସ୍ୱସ୍ଥାନରେ ଘନ ଦେଖାଯାଏ ଏବଂ ଦୁଇ ପାର୍ଶ୍ୱରେ (ଉପର ଓ ନିମ୍ନ ସ୍ଥାନରେ) କ୍ରମେ ଫିକା ହୋଇ ନିମ୍ନସ୍ଥ ଫିକା ଲାଲ ବର୍ଣ୍ଣ ସହିତ ମିଶ୍ରିତ ହୋଇ ପାଟଳ ବର୍ଣ୍ଣ ଉତ୍ପନ୍ନ କରେ ଓ ତତ୍ପରବର୍ତ୍ତୀ ମୂଳ ବର୍ଣ୍ଣ ନୀଳ ବର୍ଣ୍ଣ ସଙ୍ଗରେ ମିଶି ହରିତ୍ ବର୍ଣ୍ଣ ହୁଏ । ଏହିପରି ମଧ୍ୟ ନୀଳ ଓ ଭାୟୋଲେଟ୍ ଏକତ୍ର ଯୋଗରେ ଧୂମଳ ବର୍ଣ୍ଣର ଉତ୍ପତ୍ତି ହୁଏ । ଭାୟୋଲେଟ୍ ବର୍ଣ୍ଣର ଉତ୍ପତ୍ତି କେଉଁଠାରୁ ହେଲା ? ଲୋହିତ ଓ ଧୂମଳର ସମିଶ୍ରଣରେ ଭାୟୋଲେଟର ଉତ୍ପତ୍ତି । ଲୋହିତ ବର୍ଣ୍ଣ-ମେଖଳାର ଏକ ପ୍ରାନ୍ତରେ ଏବଂ ଧୂମଳ ଅପର ପ୍ରାନ୍ତରେ ଥାଇ କିପରି ପରସ୍ପର ମିଳିତ ହୁଏ ? ତାହାର ତାତ୍ପର୍ଯ୍ୟ ଏହି ଯେ ସାତୋଟି ବିଶ୍ଳିଷ୍ଟ ବର୍ଣ୍ଣ ଯେପରି ମେଖଳାର ଅଧିକ ସ୍ଥାନ ଆବୃତ କରିଥିବାର ଦେଖାଯାଏ, ରଶ୍ମି ମଧ୍ୟରେ ସ୍ୱାଭାବିକ ଅବସ୍ଥାରେ ସେହି ସମସ୍ତ ବର୍ଣ୍ଣର ପରସ୍ପର ଦୂରତ୍ୱ ଏତେ ଅଳ୍ପ ଅଟେ ଯେ ତାହା ଅନୁଭୂତ ହୋଇ ପାରେ ନାହିଁ । ସୁତରାଂ ଗୋଟିଏ ଗୋଟିଏ ରଶ୍ମି-କଣାକୁ ପରୀକ୍ଷା କଲେ ତହିଁରେ ମଧ୍ୟ ଏହି ସପ୍ତ ଗୋଟି ବର୍ଣ୍ଣର ସମାବେଶ ଥିବାର ଲକ୍ଷିତ ହେବ ଏବଂ ଯେଉଁ ସ୍ଥାନରେ ଏକ ବର୍ଣ୍ଣ ଶେଷ ହୋଇଥାଏ ପୁଣି ସେହି ସ୍ଥାନରୁ ଅପର ବର୍ଣ୍ଣର ଆରମ୍ଭ ହୋଇଥାଏ । ଏହି ହେତୁ ଲୋହିତ ବର୍ଣ୍ଣ ପରେ ଧୂମଳ ବର୍ଣ୍ଣର ସମିଶ୍ରଣରେ ଭାୟୋଲେଟ ବର୍ଣ୍ଣର ଉତ୍ପତ୍ତି ହୁଏ ।

ବୈଜ୍ଞାନିକମାନେ ବିଶେଷ ପରୀକ୍ଷା କରି ଦେଖି ଅଛନ୍ତି ଯେ ସୌର-ବର୍ଣ୍ଣ-ମେଖଳାର ସର୍ବୋପରି ଓ ସର୍ବ ନିମ୍ନରେ, ସୀମାର ବାହାରେ, କେତେଦୂର ପର୍ଯ୍ୟନ୍ତ ଅନ୍ୟ ଦୁଇଟି ବର୍ଣ୍ଣ ବିସ୍ତୃତ ରହିଥାଏ । ଉପରିସ୍ଥ ଭାୟୋଲେଟ ଉପରେ ଅତି-ଭାୟୋଲେଟ (Extra Violet or Lavender) ବା ଗାଢ଼ ଭାୟୋଲେଟ ବର୍ଣ୍ଣ ଏବଂ ଲୋହିତ ବର୍ଣ୍ଣର ନିମ୍ନଭାଗରେ ଅତି ଲୋହିତ ବା ଘୋର ଲାଲ ବର୍ଣ୍ଣ ( Crimson ) ଦେଖାଯାଏ । ଏହି ଘୋର ଲାଲ ବର୍ଣ୍ଣ ଊର୍ଦ୍ଧ୍ୱଦେଶରେ କ୍ରମେ ଫିକା ବା ପତଳା ହୋଇ ତଦୁପରିସ୍ଥ ମୂଳ ବର୍ଣ୍ଣ ପୀତ ସହିତ ମିଳିତ ହୋଇ ଅରେଞ୍ଜ ବର୍ଣ୍ଣରେ ପରିଣତ ହୁଏ । ଏହିପରି କ୍ରମେ ବର୍ଣ୍ଣ-ମେଖଳାର ସମସ୍ତ ବର୍ଣ୍ଣଗୁଡ଼ିକ ଉଦ୍ଭାସିତ ହୋଇଥାଏ ।

ଶ୍ୱେତାଲୋକ ବା ସୂର୍ଯ୍ୟରଶ୍ମିର ଉପାଦାନ ବର୍ଣ୍ଣ-ସମୂହ କେବଳ ପଦାର୍ଥର ବର୍ଣ୍ଣବୈଚିତ୍ର୍ୟର ମୂଳ—ବର୍ଣ୍ଣ ପଦାର୍ଥର ପ୍ରକୃତିଗତ କୌଣସି ଧର୍ମ ନୁହେଁ । ଆଲୋକ ଗୁଣରେ ପଦାର୍ଥ ବିଭିନ୍ନ ବର୍ଣ୍ଣ-ବିଶିଷ୍ଟ ଦେଖାଯାଏ । କୌଣସି ପଦାର୍ଥ ସ୍ୱଭାବତଃ ରଞ୍ଜିତ ବା ବର୍ଣ୍ଣବିଶିଷ୍ଟ ନୁହେଁ । ପଦାର୍ଥର ନିଜ ବର୍ଣ୍ଣ କିଛି ନାହିଁ, ତେବେ ତଦୁପରି ପତିତ ଶୁଭ୍ର ଆଲୋକକୁ ବିଶ୍ଳିଷ୍ଟ କରିବାର କ୍ଷମତା ତାହାର ଅଛି, ଅର୍ଥାତ୍ ପଦାର୍ଥର ଏପରି ଗୁଣ ଅଛି ଯେ ତାହା ଉପରେ ଆଲୋକ ପତିତ ହେଲେ ତାହା ସେହି ଆଲୋକର ଉପାଦାନ ବା ମୂଳ ବର୍ଣ୍ଣ-ଗୁଡ଼ିକୁ ପରସ୍ପର ପୃଥକ୍ କରିଦିଏ ଏବଂ ତତ୍ପରେ ଏହି ପୃଥଗ୍ଭୂତ ବର୍ଣ୍ଣରୁ କେତେଗୁଡ଼ିକୁ ନିଜ ଦେହରେ ଶୋଷଣ କରି ନିଏ ବା ବିଲୁପ୍ତ କରେ ଏବଂ ଅବଶିଷ୍ଟ ବର୍ଣ୍ଣକୁ ପ୍ରତିଫଳିତ କରେ ।

ଶୋଷିତ ବର୍ଣ୍ଣସମୂହ ପଦାର୍ଥ ମଧ୍ୟରେ ବିଲୀନ ହୋଇ ଯାଏ, କେବଳ ପ୍ରତିଫଳିତ ବର୍ଣ୍ଣମାତ୍ର ଦେଖା ଯାଏ। ତେତେବେଳେ ପଦାର୍ଥ ଏହି ପ୍ରତିଫଳିତ ବର୍ଣ୍ଣବିଶିଷ୍ଟ ବୋଲି ବୋଧ ହୁଏ। ଭିନ୍ନ ଭିନ୍ନ ପଦାର୍ଥର ଏହିପରି ଆଲୋକ-ବିଶ୍ଳେଷଣୀ ଶକ୍ତିର ବିଭିନ୍ନତାନୁସାରେ ପଦାର୍ଥମାନ ନାନା ବର୍ଣ୍ଣବିଶିଷ୍ଟ ଦେଖାଯାନ୍ତି। ଯେଉଁ ପଦାର୍ଥ ତାହାର ପତିତ ଆଲୋକର ଯେଉଁ ବର୍ଣ୍ଣ ବିକୀର୍ଣ୍ଣ କରେ, ସେହି ପଦାର୍ଥ ସେହି ବର୍ଣ୍ଣବିଶିଷ୍ଟ ବୋଲି ବୋଧ ହୁଏ। ଗୋଟିଏ ଉଦାହରଣ ଦେଲେ ଏ ବିଷୟ ସ୍ପଷ୍ଟ ହୋଇ ପାରେ, ସିନ୍ଦୂର ପ୍ରକୃତରେ ନାଲବର୍ଣ୍ଣ ନୁହେ, ତେବେ କାହିଁକି ନାଲବର୍ଣ୍ଣ ଦେଖାଯାଏ? ତାହାର କାରଣ ଏହି ଯେ ତାହାର ଗୋଟିଏ ସ୍ୱାଭାବିକ ଗୁଣ ଏପରି ଅଛି ଯେ ତାହା ପ୍ରଭାବରେ ଆଲୋକର ଅନ୍ୟସମସ୍ତ ବର୍ଣ୍ଣ ଗ୍ରହଣ ଓ ନିଜ ଦେହରେ ଲୀନ କରି କେବଳ ଲୋହିତ ବର୍ଣ୍ଣଟି ମାତ୍ର ପ୍ରତିଫଳିତ କରେ। ଏହିପରି ଗଛର ପତ୍ର ଆଲୋକର ଅନ୍ୟାନ୍ୟ ବର୍ଣ୍ଣାପେକ୍ଷା ସବୁଜ ବର୍ଣ୍ଣକୁ ସର୍ବାଧିକ ପ୍ରତିଫଳିତ କରେ ବୋଲି ତାହା ସବୁଜ ବର୍ଣ୍ଣ ଦେଖା ଯାଏ ନତୁବା ବୃକ୍ଷପତ୍ର ପ୍ରକୃତ ପକ୍ଷରେ ସବୁଜ ବର୍ଣ୍ଣ ନୁହେ। ଫଳତଃ ଯେଉଁ ପଦାର୍ଥ ଆଲୋକର ଯେଉଁ ବର୍ଣ୍ଣ ପ୍ରତିଫଳିତ କରେ, ସେହି ପଦାର୍ଥ ସେହି ବର୍ଣ୍ଣବିଶିଷ୍ଟ ଦେଖାଯାଏ। ବର୍ଣ୍ଣ-ମେଖଳାର ସାହାଯ୍ୟରେ ଏ ବିଷୟ ପ୍ରତ୍ୟକ୍ଷ ଭାବରେ ପ୍ରମାଣ କରାଯାଏ। ଗୋଟିଏ ଅନ୍ଧକାରବୃତ ଗୃହ ମଧ୍ୟରେ ତ୍ରିକୋଣ କାଚ ସହକାରେ (Prism) ସୂର୍ଯ୍ୟ-ରଶ୍ମିକୁ ବିଶ୍ଳିଷ୍ଟ କରି ବର୍ଣ୍ଣ-ମେଖଳାରେ ପରିଣତ କର ଏବଂ ଭିନ୍ନ ଭିନ୍ନ ବର୍ଣ୍ଣର କେତେଗୁଡ଼ିଏ ବସ୍ତୁ ନେଇ ଏହି ବର୍ଣ୍ଣ-ମେଖଳାର ସପ୍ତ ବର୍ଣ୍ଣର ପ୍ରତ୍ୟେକ ବର୍ଣ୍ଣ ଉପରେ ଏହାକୁ ରଖିଲେ ଦେଖିବ ଯେ ସବୁଜ ବର୍ଣ୍ଣ ପତ୍ର ଯେବେ ସବୁଜ ବର୍ତ୍ତି ଉପରେ ଧୃତ ହୁଏ ତେବେ ଏହାର ବର୍ଣ୍ଣ ଅଧିକ ସ୍ପଷ୍ଟ ଓ ଉଜ୍ଜ୍ୱଳ ଦେଖାଯିବ। କାରଣ, ସ୍ୱଭାବତଃ ଏହାର ସବୁଜ ବର୍ଣ୍ଣ ବିକୀର୍ଣ୍ଣ କରିବାର କ୍ଷମତା ଅଛି। ବର୍ତ୍ତମାନ ଏହା ମେଖଳାର କେବଳ ସବୁଜ ବର୍ଣ୍ଣକୁ ପୃଥକ୍ ଅବସ୍ଥାରେ ପାଇ ତାହାକୁ ଅଧିକ ପରିମାଣରେ ପ୍ରତିଫଳିତ କରେ। ସ୍ୱଭାବତଃ ଅନ୍ୟ ଆଲୋକ ମଧ୍ୟ ଦେଇ ତାହାର ବିକୀର୍ଣ୍ଣ ଏହି ଆଲୋକ ଏପରି ନିର୍ମଳ ଦେଖାଯାଏ ନାହିଁ। ପୁଣି ଏହି ପତ୍ରଟିକୁ ମେଖଳାର ଲୋହିତ ବର୍ତ୍ତିରେ ଧରିଲେ ଦେଖିବ ତାହା କେବଳ ଏହି ବର୍ତ୍ତି ବିକୀର୍ଣ୍ଣ କରିବ, ସବୁଜ ବର୍ତ୍ତିର ପତ୍ର ତେତେବେଳେ ଏକାବେଳେକେ କଳାବର୍ଣ୍ଣରେ ପରିଣତ ହେବ, ତାହାର ସବୁଜତ୍ୱର ଚିହ୍ନ ମାତ୍ର ଦେଖାଯିବ ନାହିଁ। ଏହିପରି ଯେଉଁ ବର୍ଣ୍ଣ ମଧ୍ୟରେ ଧରିବ ପତ୍ରଟି ମଧ୍ୟ ସେହି ବର୍ଣ୍ଣବିଶିଷ୍ଟ ବୋଧ ହେବ। ସବୁଜ ବର୍ଣ୍ଣ ଯେବେ ତାହାର ସ୍ୱତଃସିଦ୍ଧ ବର୍ଣ୍ଣ ହୋଇଥାନ୍ତା, ତେବେ ମେଖଳାର ବିଭିନ୍ନ ବର୍ତ୍ତିରେ ତାହାର ନିଜ ବର୍ଣ୍ଣ ଏକାବେଳକେ ଲୁପ୍ତ ହୁଅନ୍ତା ନାହିଁ। ମେଖଳା ମଧ୍ୟରେ ଧରିଲେ ତାହା ଆଉ ଶ୍ୱେତ ଆଲୋକ ପାଏ ନାହିଁ ଯେ ତାହାକୁ ବିଶ୍ଳିଷ୍ଟ କରି କେବଳ ତାହାର ସବୁଜ ବର୍ଣ୍ଣକୁ ବିକୀର୍ଣ୍ଣ କରିବ। ସୁତରାଂ ଯେତେବେଳେ ଯେଉଁ ବର୍ଣ୍ଣ ଉପରେ ଧରାଯାଏ, ତାହା ତାହାହାଲକ ସେହି ବର୍ଣ୍ଣକୁ ବିକୀର୍ଣ୍ଣ କରେ। ଏହିପରି ଗୋଟିଏ ଗୋଲାପ ଫୁଲକୁ ବର୍ତ୍ତିମେଖଳାର ପ୍ରତ୍ୟେକ ବର୍ତ୍ତିରେ ଧରିଲେ ଦେଖାଯିବ ଯେ ଯେତେବେଳେ ଯେଉଁ ବର୍ତ୍ତି ଧରିବ ତାହା ସେହି ବର୍ତ୍ତିବିଶିଷ୍ଟ ବୋଲି ବୋଧ ହେବ; ବର୍ତ୍ତି ତାହାର ନିଜ ଧର୍ମ ନୁହେ। ସ୍ୱଭାବତଃ ଆଲୋକ ବିଶ୍ଳିଷ୍ଟ କରି ତାହାର ଯେଉଁ ବର୍ତ୍ତିଟି ବିକୀର୍ଣ୍ଣ କରିବାର କ୍ଷମତା ଅଛି, ବର୍ତ୍ତି-ମେଖଳାର ବାହାରେ କେବଳ ସେହି ବର୍ତ୍ତି ବିକୀର୍ଣ୍ଣ କରେ।

ଯେଉଁ ପଦାର୍ଥ ଆଲୋକର ସମସ୍ତ ବର୍ତ୍ତିଗୁଡ଼ିକୁ ପ୍ରତିଫଳିତ କରେ, ତାହା ଶ୍ୱେତ ବର୍ଣ୍ଣ ଦେଖା ଯାଏ; କାରଣ ସମସ୍ତ ବର୍ଣ୍ଣର ସଂଯୋଗରେ ଶ୍ୱେତବର୍ଣ୍ଣର ଉତ୍ପତ୍ତି; ଏବଂ ଯେଉଁ ପଦାର୍ଥ

ସମସ୍ତ ବର୍ଣ୍ଣଗୁଡ଼ିକୁ ଶୋଷଣ କରେ, କୌଣସି ବର୍ଣ୍ଣକୁ ବିକୀର୍ଣ୍ଣ କରେ ନାହିଁ ତାହା କୃଷ୍ଣବର୍ଣ୍ଣ ଅଟେ । ବର୍ଣ୍ଣର ଅଭାବ କେବଳ କୃଷ୍ଣବର୍ଣ୍ଣ । କଳାରଙ୍ଗ ସ୍ୱତନ୍ତ୍ର ବର୍ଣ୍ଣ ନୁହେ । ଯେପରି ତାପର ଅଭାବହିଁ ଶୈତ୍ୟ, ଶୀତଳତା ସ୍ୱତନ୍ତ୍ର କୌଣସି ଧର୍ମ ନୁହେ, ସେହିପରି ବର୍ଣ୍ଣସବୁର ଅଭାବ କେବଳ କୃଷ୍ଣ ବା ଅନ୍ଧକାର ।

ଆପାତତଃ ବୋଧ ହୁଏ ସୂର୍ଯ୍ୟରଶ୍ମି କେବଳ ଆଲୋକ ଓ ଉତ୍ତାପର ମୂଳ । କିନ୍ତୁ ପଦାର୍ଥ-ତତ୍ତ୍ୱବିତ୍ ପଣ୍ଡିତମାନେ ତ୍ରିପାର୍ଶ୍ୱ କାଚ ସାହାଯ୍ୟରେ ରଶ୍ମି ବିଶ୍ଳିଷ୍ଟ କରି ତାହାର ବର୍ଣ୍ଣ-ମେଖଳାକୁ ପୁଙ୍ଖାନୁପୁଙ୍ଖ ରୂପେ ପର୍ଯ୍ୟାଲୋଚନା କରି ଆଲୋକର ଆଉ ଗୋଟିଏ ପରମାଶ୍ଚର୍ଯ୍ୟ ଗୁଣ ବାହାର କରିଅଛନ୍ତି । ସେହି ଗୁଣର ଆବିଷ୍କାରରୁ ଫଟୋ-ଗ୍ରାଫି ଶିଳ୍ପର ଜନ୍ମ । ସେହି ଧର୍ମଟି କଣ ଏବଂ ପଣ୍ଡିତମାନେ କପରି ପରୀକ୍ଷା-ପ୍ରଣାଳୀ ଅବଲମ୍ବନ କରି ତାହା ଆବିଷ୍କାର କରିଅଛନ୍ତି, ତନ୍ନିମ୍ନେ ସଂକ୍ଷେପରେ ଆଲୋଚିତ ହେବ ।

ବିଶ୍ଳିଷ୍ଟ ରଶ୍ମିର ବର୍ଣ୍ଣ-ମେଖଳାରେ ପ୍ରତ୍ୟେକ ବର୍ଣ୍ଣରେ ବିବିଧ ବସ୍ତୁ ଧରିଲେ ଦେଖାଯିବ ଯେ ହରିଦ୍ରା ବର୍ଣ୍ଣରେ ବସ୍ତୁଗୁଡ଼ିକ ସର୍ବାଧିକ ଉଜ୍ଜ୍ୱଳ-ରୂପେ ଏବଂ ଭାୟୋଲେଟ ବର୍ଣ୍ଣରେ ମଳିନ ଭାବରେ ଆଲୋକିତ ହୋଇଥାଏ । ଖଣ୍ଡେ ମୁଦ୍ରିତ କାଗଜ ଧରିଲେ ତାହା ହରିଦ୍ରା ବର୍ଣ୍ଣରେ ଉଜ୍ଜ୍ୱଳତମ ଓ ସର୍ବାପେକ୍ଷା ନିର୍ମଳ ଦେଖାଯିବ । ଅନ୍ୟ କୌଣସିଟି ଉପରେ ତଦ୍ରୂପ ଦେଖାଯିବ ନାହିଁ ।

ଗୋଟିଏ ସୂକ୍ଷ୍ମଧର୍ମୀ ତାପମାନଯନ୍ତ୍ର (Thermo-meter) ମେଖଳାର ଉପରସ୍ଥ ଭାୟୋଲେଟ ବର୍ଣ୍ଣରୁ କ୍ରମେ କ୍ରମେ ନିମ୍ନବର୍ତ୍ତୀ ବର୍ଣ୍ଣସମୂହରେ ଧରିଲେ ଦେଖାଯିବ ଯେ ଏହି ଯନ୍ତ୍ର କ୍ରମେ ନିମ୍ନବର୍ତ୍ତୀ ବର୍ଣ୍ଣସମୂହରେ ଅଧିକତର ଉଷ୍ଣତା ନିର୍ଦ୍ଦେଶ କରିବ । ଏଥିରୁ ପ୍ରମାଣିତ ହେଉଅଛି ଯେ ସର୍ବନିମ୍ନସ୍ଥ ଘୋର ଲୋହିତ ବର୍ଣ୍ଣ ସର୍ବାଧିକ ତାପ-ଉତ୍ତେଜକ ଅଟେ ।

ଆଲୋକ ପ୍ରଭାବରେ ଅନେକ ପଦାର୍ଥର ରାସାୟନିକ ଧର୍ମାନ୍ତର ବା ପରିବର୍ତ୍ତନ ଘଟେ — ଅଧିକାଂଶ ଉଦ୍ଭିଦର ବର୍ଣ୍ଣ ଆଲୋକ ସହଯୋଗରେ ବିନଷ୍ଟ ହୁଏ । କେତେଗୁଡ଼ିଏ ବସ୍ତୁ ଅଛି, ସେ ସମସ୍ତ ସ୍ୱଭାବତଃ ଶ୍ୱେତବର୍ଣ୍ଣ, କିନ୍ତୁ ସୂର୍ଯ୍ୟରଶ୍ମି ସ୍ପର୍ଶରେ କୃଷ୍ଣବର୍ଣ୍ଣ ବା କଳା ହୋଇଯାଏ । କଷ୍ଟିକ (Nitrate of silver) ଏବଂ କଷ୍ଟିକସଂଯୁକ୍ତ ଆହୁରି ମଧ୍ୟ କେତେ ରାସାୟନିକ ମିଶ୍ରପଦାର୍ଥ ଅଛି,—ଯଥା କଷ୍ଟିକ ଆୟୋଡାଇଡ଼ (Iodide of silver) କ୍ଲୋରାଇଡ ଅବ୍ ଗୋଲଡ୍ (chloride of gold) କ୍ରୋମିକ ଅମ୍ଳ (chromic acid) ଲୌହ-କାଷ୍ଠ (Guia cum) ଏହି କେତୋଟି ମିଶ୍ର ପଦାର୍ଥ ଆଲୋକସ୍ପୃଷ୍ଟ ହେଲେ କୃଷ୍ଣବର୍ଣ୍ଣ ଧାରଣ କରେ, ଅର୍ଥାତ୍ ଏହି ସମସ୍ତ ରାସାୟନିକ ମିଶ୍ର ପଦାର୍ଥର ବିଶ୍ଳେଷଣ ସଂଘଟିତ ହୁଏ ବା ସେମାନଙ୍କର ଉପାଦାନ ପଦାର୍ଥସମୂହ ପରସ୍ପର ପୃଥକ୍ ହୁଏ । ଆଲୋକସହକାରେ ପଦାର୍ଥର ଯେ ଏବମ୍ବିଧ ରାସାୟନିକ-ବିଶ୍ଳେଷଣ ବା ରାସାୟନିକ ଧର୍ମାନ୍ତର ସଂଘଟିତ ହୁଏ, ତାହା ଆଲୋକର ସମସ୍ତ ବର୍ଣ୍ଣଦ୍ୱାରା ହୁଏ ନାହିଁ; ଭାୟୋଲେଟରେ ଏହି ଧର୍ମ ସର୍ବାଧିକ ପରିମାଣରେ ବର୍ତ୍ତମାନ ଅଛି ।

ଏତଦ୍ଦ୍ୱାରା ସ୍ପଷ୍ଟ ଦେଖାଯାଉଅଛି ଯେ ସୌରକର ବା ସୂର୍ଯ୍ୟାଲୋକର ତିନି ଗୋଟି ପ୍ରଧାନ ଧର୍ମ ଅଛି, ଯଥା; ଆଲୋକ-କାରିତା, ତାପକତା ଓ ରାସାୟନିକ-ବିଶ୍ଳେଷଣ-ସାଧକତା । ଆଲୋକର ଉପାଦାନ ବର୍ଣ୍ଣସମୂହ ମଧ୍ୟରେ କେବଳ ତିନୋଟି ବର୍ଣ୍ଣରେ ଏହି ତିନି ଗୁଣ ବିଶେଷ ପରିମାଣରେ ବର୍ତ୍ତମାନ ଅଛି,—ହରିଦ୍ରାବର୍ଣ୍ଣ ଆଲୋକପ୍ରଦ, ଲୋହିତ ବର୍ଣ୍ଣ ତାପକର ଏବଂ ଭାୟୋଲେଟ୍ (ଗାଢ଼ ବା ଅତି ଭାୟୋଲେଟ୍ ପର୍ଯ୍ୟନ୍ତ) ରାସାୟନିକ-ବିଶ୍ଳେଷଣ-ସାଧକ । ଏହି ତିନି ଗୋଟି ବିଭିନ୍ନ ଧର୍ମ ଆଲୋକରୂପ ଏକାଧାରରେ

ବର୍ତ୍ତମାନ ଅଛି । ଆଲୋକ ଯେପରି କେବଳ ତିନି ଗୋଟି ମୂଳ ବର୍ଣ୍ଣ ଯୋଗରେ ନିଷ୍ପନ୍ନ ଏବଂ ଏହି ମୂଳ ବର୍ଣ୍ଣର ସମ୍ମିଶ୍ରଣରେ ପୁଣି ଚାରି ଗୋଟି ପ୍ରଧାନ ଓ ତଦ୍‌ବ୍ୟତୀତ ମଧ୍ୟରେ ମଧ୍ୟରେ ଅସଂଖ୍ୟ ବର୍ଣ୍ଣାଭାସ । (Shades) ଅଛି, ସେହିପରି ତିନି ଗୋଟି ମୂଳ ବର୍ଣ୍ଣର ତିନୋଟି ବିଭିନ୍ନ ଧର୍ମ ମଧ୍ୟ ବର୍ଣ୍ଣ-ମେଖଳାର ସର୍ବତ୍ର ଅସମ ଭାବରେ ଅବସ୍ଥିତ । ଅର୍ଥାତ୍ ଗାଢତମ ଲୋହିତ ବର୍ଣ୍ଣର ସର୍ବାଧିକ ତାପକାରୀ ଗୁଣ ଥାଏ ଏବଂ କ୍ରମେ କ୍ରମେ ତାହା ଯେତେ ଫିକା ହୁଏ, ସେହି ଅନୁପାତରେ ତାହାର ତାପକାରିତା ଗୁଣ ମଧ୍ୟ କ୍ରମେ କ୍ରମେ ହ୍ରାସ ହୋଇ ଯାଏ । ଏହିପରି ମଧ୍ୟ ହରିଦ୍ରାବର୍ଣ୍ଣର ନ୍ୟୂନାଧିକ୍ୟାନୁସାରେ ଆଲୋକଦାୟକତା ଗୁଣ ମଧ୍ୟ ନ୍ୟୂନାଧିକ ଲକ୍ଷିତ ହୁଏ । ଭାୟୋଲେଟର ଗାଢ଼ତମ ଅଂଶରେ ରାସାୟନିକ-ବିଶ୍ଲେଷଣସାଧକତା ଗୁଣ ସର୍ବାଧିକ ଦେଖାଯାଏ ।

ପୂର୍ବୋକ୍ତ ତିନି ଗୋଟି ବିଭିନ୍ନ ଧର୍ମ ସୂର୍ଯ୍ୟରଶ୍ମିରେ ମିଳିତଭାବରେ ଅବସ୍ଥିତ ଥିଲେହେଁ ପଦାର୍ଥତତ୍ତ୍ୱବିତ୍ ପଣ୍ଡିତମାନେ ଏହିପରି ଉପାୟ ଉଦ୍ଭାବନ କରି ଅଛନ୍ତି ଯେ, ତଦ୍ୱାରା ଏହି ତିନି ଗୁଣକୁ ପରସ୍ପର ପୃଥକ୍ କରି ଦେଇ ପରୀକ୍ଷା କରା ଯାଏ । ଭିନ୍ନ ଭିନ୍ନ ବର୍ଣ୍ଣର ରଞ୍ଜିତ କାଚର ବ୍ୟବଧାନାନୁସାରେ ସୂର୍ଯ୍ୟରଶ୍ମିର ପୂର୍ବୋକ୍ତ ତିନି ଗୋଟି ଧର୍ମ ପରସ୍ପର ପୃଥକ୍ କରା ହୁଏ । ଅକ୍‌ସାଇଡ଼ ଅବ୍ କପର (Oxide of Copper) ଦ୍ୱାରା ରଞ୍ଜିତ କାଚର ଏକ ପାର୍ଶ୍ୱରେ Solution Allum ଦ୍ୱାରା ସିକ୍ତ କରି ସୂର୍ଯ୍ୟରଶ୍ମିରେ ଧରିଲେ, ରଶ୍ମିର ଆଲୋକପ୍ରଦ ଭାଗ ସମସ୍ତ ଅବାଧରେ ଏହି କାଚ ଭେଦ କରି ବିପରୀତ ଦିଗରେ ବହିର୍ଗତ ହୁଏ, କିନ୍ତୁ ଶତକଡ଼ା ୯୫ ଭାଗ ତାପମୂଳକ ରଶ୍ମିଭାଗ ପ୍ରତିହତ ହେବ, ଅର୍ଥାତ୍ ଏହି କାଚ ଭେଦ କରି ଅପର ଦିଗରେ ବାହାର ପାରିବ ନାହିଁ । ପୁଣି କୃଷ୍ଣବର୍ଣ୍ଣର ମାଇକା (Mica)ରଶ୍ମିର ସମସ୍ତ ଆଲୋକପ୍ରଦ ଅଂଶକୁ ଅବରୋଧ କରିବ, କିନ୍ତୁ ତାପମୂଳକ ବର୍ଣ୍ଣସମୂହ ଏହା ମଧ୍ୟ ଦେଇ ଅବାଧରେ ଯାଇପାରିବ । ରଶ୍ମିର ଏହି ଗୁଣ ଆଲୋଚନା ସମ୍ବନ୍ଧରେ ଆମ୍ଭମାନଙ୍କର ଏ ସ୍ଥଳରେ ବିଶେଷ ପ୍ରୟୋଜନ ନାହିଁ । ତାହାର ତୃତୀୟ ଧର୍ମ—ରାସାୟନିକ-ବିଶ୍ଲେଷ-ସାଧକତା ଗୁଣ କେବଳ ଫଟୋଗ୍ରାଫିର ଜନ୍ମଦାତା ଅଟେ । ବର୍ତ୍ତମାନ ଏହି ରାସାୟନିକ-ବିଶ୍ଲେଷଣସାଧକ ଧର୍ମ ସମନ୍ୱିତ ବର୍ଣ୍ଣକୁ ତାହାର ସହଯୋଗୀ ବର୍ଣ୍ଣସମୂହରୁ କି ଉପାୟରେ ପୃଥକ୍ କରାଯାଇ ପାରେ, ଦେଖାଯାଉ । ପୂର୍ବୋକ୍ତ ଯେ କେତୋଟି ପଦାର୍ଥ ଆଲୋକସ୍ପୃଷ୍ଟ ହେଲେ ବିକୃତ ହୁଏ ଅର୍ଥାତ୍ ଯାହାର ରାସାୟନିକ ଧର୍ମାନ୍ତର ସଂଘଟିତ ହୁଏ; ତନ୍ମଧ୍ୟରେ ଆୟୋଡ଼ାଇଡ଼ ଅବ୍ ସିଲଭର (Iodide of Silver) ସର୍ବାଧିକ ରାସାୟନିକ-ବିଶ୍ଲେଷଣ-ପ୍ରବଣ ଅଟେ । ଏହି ମିଶ୍ର ପଦାର୍ଥ ଆୟୋଡ଼ାଇଡ୍ ଅବ୍ ପଟାସିଅମ୍ ଓ କଷ୍ଟିକର ପରସ୍ପର ସଂଯୋଗରେ ଉତ୍ପନ୍ନ ହୁଏ । କଷ୍ଟିକ ବା ନାଇଟ୍ରେଟ୍ ଅବ୍ ସିଲଭର (Nitrate of Silver)ପୁଣି ରୌପ୍ୟ ଓ ଯବକ୍ଷାର ଦ୍ରାବକ (Nitric Acid) ଏହି ଦୁଇ ଦ୍ରବ୍ୟର ସମ୍ମିଶ୍ରଣରେ ପ୍ରସ୍ତୁତ ହୁଏ । ଖଣ୍ଡେ କାଗଜ ଏହି ଆୟୋଡ଼ାଇଡ଼ ଅବ୍ ସିଲଭର ଦ୍ରାବଣରେ ସିକ୍ତ କରି, ଅନ୍ଧକାରବୃତ ଗୃହ ମଧ୍ୟରେ ଶୁଷ୍କ କରି ପରେ ସୂର୍ଯ୍ୟକିରଣରେ ରଖିବା ମାତ୍ରକେ ଦେଖା ଯିବ ଯେ ତାହା ଅତି ଶୀଘ୍ର କୃଷ୍ଣବର୍ଣ୍ଣ ହୋଇ ଯିବ ଏବଂ କିଛିକ୍ଷଣ ପରେ ସର୍ବତୋଭାବରେ କୃଷ୍ଣ ବର୍ଣ୍ଣରେ ପରିଣତ ହେବ । ଏ ବିଷୟ ସମୟାନ୍ତରରେ ବିଶଦରୂପେ ଆଲୋଚିତ ହେବ । ବର୍ତ୍ତମାନ କେବଳ ରଶ୍ମିର ରାସାୟନିକ-ବିଶ୍ଲେଷଣସାଧକ ଗୁଣଟି ପରୀକ୍ଷା କରି ଦେଖିବା ନିମିତ୍ତ ଏହିପରି ଖଣ୍ଡେ କାଗଜର ପ୍ରୟୋଜନ ହେବ । ସେଥି ନିମିତ୍ତ ଏ ସ୍ଥଳରେ ତାହାର ଉଲ୍ଲେଖ କରାଗଲା । ଏହିପରି ପ୍ରସ୍ତୁତ କାଗଜକୁ ଆମ୍ଭେମାନେ କଷ୍ଟିକ-ସିକ୍ତ କାଗଜ କହୁଅଛୁଁ । ଏହି କଷ୍ଟିକ-ସିକ୍ତ କାଗଜ ଖଣ୍ଡେ

ନେଇ ଗୋଟିଏ ଅନ୍ଧକାରବୃତ ଗୃହ ମଧ୍ୟରେ ପତିତ ହୋଇ ଥିବା ବର୍ଣ୍ଣ-ମେଖଳାର ସପ୍ତ ବର୍ଣ୍ଣ ମଧ୍ୟରେ ପରେ ପରେ ସ୍ଥାପିତ କଲେ ଦେଖାଯିବ ଯେ ମେଖଳାର ସପ୍ତ ବର୍ଣ୍ଣର ଧର୍ମାନୁସାରେ ଏହି କାଗଜର ବର୍ଣ୍ଣର ପରିବର୍ତ୍ତନ ଘଟିବ, ଅର୍ଥାତ୍ ଭାୟୋଲେଟ ବର୍ଣ୍ଣରେ ସର୍ବୋଚ୍ଚ ବା ସର୍ବାଧିକ ଅଂଶରେ କାଗଜଖଣ୍ଡ ଘୋର କୃଷ୍ଣ ବର୍ଣ୍ଣ ହେବ ଏବଂ କ୍ରମେ କ୍ରମେ ବର୍ଣ୍ଣାନୁସାରେ କାଗଜର ବର୍ଣ୍ଣ ଅଳ୍ପ ଅଳ୍ପ ହୋଇ କଳା ହେବ । ପୁଣି ଖଣ୍ଡେ ପରିଷ୍କୃତ ପୀତ ବର୍ଣ୍ଣର କାଚ ରଶ୍ମି ପଥରେ ଧାରଣ କଲେ, ରଶ୍ମିର ରସାୟନ-ବିଶ୍ଳେଷଣ-ସାଧକ ଭାଗ ସର୍ବତୋଭାବରେ ପ୍ରତିହତ ହେବ । ଖଣ୍ଡେ କଷ୍ଟିକ-ସିକ୍ତ କାଗଜ ଉପରେ ଖଣ୍ଡେ ପରିଷ୍କାର ପୀତବର୍ଣ୍ଣର କାଚ ଲଗାଇ ଦେଇ ପ୍ରଖର ସୂର୍ଯ୍ୟ-କିରଣରେ ରଖିଲେ କାଗଜର ବର୍ଣ୍ଣ ପରିବର୍ତ୍ତିତ ହେବ ନାହିଁ । କାରଣ ଏ ସ୍ଥଳରେ ହରିଦ୍ରାବର୍ଣ୍ଣର କାଚ ଆଲୋକର ରସାୟନ-ବିଶ୍ଳେଷଣସାଧକ ବର୍ଣ୍ଣ ଭାଗକୁ ତନ୍ମଧ୍ୟ ଦେଇ ଯିବାକୁ ଦିଏ ନାହିଁ । ଆଲୋକ-ପ୍ରଦାୟକ ଓ ତାପକର ବର୍ଣ୍ଣଭାଗ ସମସ୍ତ ତାହାକୁ ଅବାଧରେ ଭେଦ କରି ଯାଏ । ପୁନଶ୍ଚ ଖଣ୍ଡେ ଘୋର ନୀଳବର୍ଣ୍ଣ କାଚ କଷ୍ଟିକସିକ୍ତ କାଗଜ ଉପରେ ରଖିଲେ, ତଦ୍ଦ୍ୱାରା ଅଧିକାଂଶ ଆଲୋକ ପ୍ରତିରୁଦ୍ଧ ହେବ, କିନ୍ତୁ ରସାୟନ-ବିଶ୍ଳେଷଣସାଧକ ସମସ୍ତ ବର୍ଣ୍ଣଗୁଡ଼ିକ ତନ୍ମଧ୍ୟ ଦେଇ ପ୍ରବେଶ କରି କାଗଜକୁ କୃଷ୍ଣ ବର୍ଣ୍ଣ କରି ଦେବ ।

ଏଥିରୁ ପ୍ରତ୍ୟକ୍ଷ ପ୍ରମାଣ ମିଳୁଅଛି ଯେ ସୂର୍ଯ୍ୟାଲୋକ ସାହାଯ୍ୟରେ ଯେ ରସାୟନିକ ବିଶ୍ଳେଷଣ ସାଧିତ ହୁଏ, ତାହା ରଶ୍ମିର ଆଲୋକକାରୀ ବର୍ଣ୍ଣ ବିଭାଗର ଗୁଣରେ ଅଥବା ତାହାର ଉତ୍ତାପ-ମୂଳକ ବର୍ଣ୍ଣାଂଶଗୁଣରେ ହୁଏ ନାହିଁ । ସୁତରାଂ ସ୍ୱୀକାର କରିବାକୁ ହେବ ଯେ, ରସାୟନ-ବିଶ୍ଳେଷଣ ସାଧନ କରିବା ଆଲୋକର ଗୋଟିଏ ସ୍ୱତନ୍ତ୍ର ଧର୍ମ । ଏହି ଧର୍ମ ରଶ୍ମିର ଆଲୋକମୂଳକ ଓ ତାପମୂଳକ ଗୁଣ ଅପେକ୍ଷା ସ୍ୱତନ୍ତ୍ର ଅଟେ । ତେବେ ସୁଦ୍ଧା ରାସାୟନିକ ବିଶ୍ଳେଷଣ ସୂର୍ଯ୍ୟାଲୋକ ଭିନ୍ନରେ ହୁଏ ନାହିଁ, ଅଥବା ଏହାର ଆଲୋକ ମଧ୍ୟ ହୁଏ ନାହିଁ । ସୂର୍ଯ୍ୟ-ରଶ୍ମିର ତାପ ଓ ଆଲୋକଠାରୁ ଏପରି ସ୍ୱତନ୍ତ୍ର ଗୁଣ ଏ ତଥା ବୁଝାଇବା ନିମନ୍ତେ ଇଂରାଜୀରେ ଗୋଟିଏ ସ୍ୱତନ୍ତ୍ର କଥା ଅଛି, ତାହାକୁ 'Actinism' କହନ୍ତି । ଭାଷାରେ ପ୍ରତିବାକ୍ୟର ଅଭାବରୁ ଏହି ଗୁଣକୁ 'ରସାୟନ-ରଶ୍ମି-ଧର୍ମ'(Chemical ray-power) କହନ୍ତି । ଅର୍ଥାତ୍ ସୂର୍ଯ୍ୟରଶ୍ମିର ଯେଉଁ ବିଶେଷ ଧର୍ମ ଅଛି, ଯାହାର ପ୍ରକୃତି ବା ଗୁଣଦ୍ୱାରା କୌଣସି ପଦାର୍ଥର ରସାୟନିକ ପରିବର୍ତ୍ତନ ଘଟେ ଏବଂ ଯେଉଁ ଗୁଣ ରଶ୍ମିର ଆଲୋକ-ବର୍ଣ୍ଣ ଓ ତାପ-ବର୍ଣ୍ଣଠାରୁ ସମ୍ପୂର୍ଣ୍ଣ ବିଭିନ୍ନ ଅଟେ । ଏହି ରସାୟନ-ରଶ୍ମି-ଧର୍ମ କେବଳ ଫଟୋଗ୍ରାଫି ବିଦ୍ୟାର ମୂଳକାସ୍ୱରୂପ ।

କ୍ରମଶଃ

ଶ୍ରୀ ଶ୍ୟାମସୁନ୍ଦର ସାଠିଆ ।

## ସୌଦାମିନୀ ।

### ( କ୍ଷୁଦ୍ର ଗଳ୍ପ )

'କି ମରି ମୁଁ କାହିଁକି ବଞ୍ଚିଲି, ଏ ପୋଡ଼ା କପାଳରେ ଆଉ କେତେ କଅଣ ଅଛି ! ଏତେ କରୁଛି, ଯେତେବେଳେ ଯାହା କହିଲେ, ତା କଲି, ତାଙ୍କୁ ମୋ କଥା କିଛି ଭଲ ଲାଗୁ ନାହିଁ, ମୋର ଦୋଷ କଅଣ, ଭଲ ଥରେ କହନ୍ତେ, ଜାଣନ୍ତି, ସେପରି କରନ୍ତି, କିଛି କଥା ନାହିଁ, ବାର୍ତ୍ତା ନାହିଁ, ବୁଲିବାକୁ ଆସିଲେ, କହିଲେ, ଯା ଦେ, ତା ଦେ, ନ ଦେଲେ ଏତିକି ହଇରାଣ, ଏ ଦଣ୍ଡ କେତେ ସହିବ ? ମା କଥାଟା ! ତାଙ୍କ ମୁହଁ ଦେଖିଲେ ମୋ ମନ କେତେ ଖୁସି ହୁଏ, ଟିକିଏ ଦୟା ନାହିଁ, ମାୟା ନାହିଁ, ମୋ କପାଳରେ କଅଣ ଏତିକି ଲେଖା ଥିଲା !'

ଏକ ଧ୍ୟାନରେ ଏକ ମନରେ ସାଧ୍ୱୀ, ପତି-ପ୍ରାଣା ସୌଦାମିନୀ ଏହିପରି କେତେ ଭାବ ଭାବ

ନୀରବରେ ଅଶ୍ରୁପାତ କରେ । ହାୟ ! ଶତ ଦୁଃଖ ମଧ୍ୟରେ ଦିନକପାଇଁ ପୂର୍ବା ସ୍ୱାମିଙ୍କଠାରୁ ଆଦର ପାଇଥିଲେ ସେ ଆପଣାକୁ ସୁଖୀ ରାଜରାଣୀ ବୋଲି ମନେ କରୁଥାନ୍ତା । ସେ ସରଳା, ପତିପ୍ରାଣା; ତାହାର ଧନରେ ଇଚ୍ଛା ନାହିଁ, ମାନରେ ଇଚ୍ଛା ନାହିଁ, ସ୍ୱର୍ଗସୁଖ ତା ନିକଟରେ ଅକିଞ୍ଚିତ୍କର—କେବଳ ସ୍ୱାମିର ସୁଖ, ସ୍ୱାମିର ସ୍ୱାଚ୍ଛନ୍ଦ୍ୟ ତା ପକ୍ଷରେ ସ୍ୱର୍ଗ ସଦୃଶ—କିନ୍ତୁ ବିଧାତାଙ୍କର ଅପୂର୍ବ ଲୀଳା, ସେ ସ୍ୱାମୀ ଯେବେ ଥରେ ଅଧେ କେବେ ଦିବାବସାନରେ ଘରକୁ ଆସନ୍ତି, ତାଙ୍କର ମୂର୍ତ୍ତି ଉଗ୍ର, ବିରକ୍ତିମୟ ।

ଦ୍ୱିପ୍ରହର ଅତୀତ ହୋଇ ଯାଇଅଛି, ଚିର-ଦୁଃଖିନୀ ସୌଦାମିନୀ ତାହାର ଏକମାତ୍ର ନୟନର ମଣି ପ୍ରିୟତମା କନ୍ୟା କମଳାକୁ କୋଳରେ ଧାରଣ କରି ଅଶ୍ରୁସିକ୍ତ ନୟନରେ ମୁହୁର୍ମୁହୁ ତାହାର ମୁଖ ଚୁମ୍ବନପୂର୍ବକ ଆପଣାର ଅନଶନ-କ୍ଲେଶ ନିବାରଣ କରୁଅଛି ।

ଏହି ସମୟରେ କବାଟରେ କିଏ ଧକ୍କା ମାରି ଚିତ୍କାର କରି ଡାକିଲା, 'କବାଟ ଫିଟା !'

ଅନେକ ଦିନ ହେଲା ସ୍ୱାମୀ ଜଲଧରଙ୍କର ଦେଖା ନ ଥିଲା । ପତିପ୍ରାଣା ସୌଦାମିନୀ ଏକାକୀ ଅନଶନରେ ଭଗ୍ନ ଗୃହ ମଧ୍ୟରେ ପ୍ରାଣପ୍ରିୟା କମଳାକୁ ନେଇ ସ୍ୱାମିଙ୍କର ପ୍ରତୀକ୍ଷାରେ କାଳାତି-ପାତ କରୁଥିଲେ ।

...ଆଜି ସାତ ଦିନରେ ଜଲଧର ଘରକୁ ଫେରି ଆସି 'କବାଟ ଫିଟା' ବୋଲି ଚିତ୍କାର ଆରମ୍ଭ କରି ଦେଇଅଛନ୍ତି ।

'ଏତେ ଦିନରେ ଆଜି ଆସିଅଛନ୍ତି !' ଏହା ଭାବି ଭାବି ଦୁଃଖିନୀ କବାଟ ଫିଟାଇ ଦେଲେ ।

କିନ୍ତୁ ସର୍ବନାଶ ! ଏ କଅଣ ! ସେ ଭୀଷଣ ମୂର୍ତ୍ତି ଦେଖି ସୌଦାମିନୀ ସ୍ତମ୍ଭିତ ! ଟଳ ଟଳ ଅକ ଜଲଧର ଘରେ ପ୍ରବେଶ କଲେ ।

କିନ୍ତୁ ହେଲେ କଣ ହେଲା, ଅତି ସଯତ୍ନ ଚିତ୍ତରେ, ସସମ୍ଭ୍ରମରେ, ସୌଦାମିନୀ ପତିଙ୍କର ଶ୍ରାନ୍ତି ଅପନୋଦନାର୍ଥ ଏକ ଜଳପୂର୍ଣ୍ଣ ପାତ୍ର ତାଙ୍କର ସମ୍ମୁଖରେ ସ୍ଥାପନ କଲେ । ପଦାଘାତରେ ପାତ୍ରଟି ନିକ୍ଷିପ୍ତ ହେଲା । ଭୟରେ ସୁପ୍ତା କନ୍ୟା କମଳା କ୍ରନ୍ଦନ କରି ଉଠିଲା ।

ସୌଦାମିନୀ ଧୀରେ ଧୀରେ ବାଳିକାଟିକୁ କୋଳରେ ଧରି ଗୃହାନ୍ତରରେ କାନ୍ଦି କାନ୍ଦି ପ୍ରାଣରେ ଟିକିଏ ଶାନ୍ତି ଅନୁଭବ କଲେ ।

ସ୍ୱାମିଙ୍କପାଇଁ ଆହାର ପ୍ରସ୍ତୁତ କରି ଦେବା ଏକାନ୍ତ କର୍ତ୍ତବ୍ୟ ମନେ କରି ଦେଖେ ଯେ ଘରେ ଗୋଟାଏ ଚାଉଳ ନାହିଁ ! କଣ କରିବ ? ହାତରେ ପାହୁଲାଟିଏ ପୂର୍ବା ନାହିଁ ! ମାଗିଲେ ପୂର୍ବା କେହି କିଛି ଦେବେ ନାହିଁ ।

ଅନନ୍ୟୋପାୟ ହୋଇ କନ୍ୟାଟିକୁ ହାତେଧରି ପାଡ଼ାପଡ଼ଶାମାନଙ୍କ ପାଖକୁ କିଛି ମାଗିବାକୁ ଗଲା । କିଏ କେତେ ବକେଇ ବକେଇ କହିଲେ, କେହି କିଛି ଦେଲେ ନାହିଁ । କିନ୍ତୁ ଯାହାହେଉ ଜଣେ ସମ୍ଭ୍ରାନ୍ତ ବ୍ୟକ୍ତିର କନିଷ୍ଠା ପୁତ୍ର-ବଧୂ ଶାଶୁଦେବୀଙ୍କର ଅଜ୍ଞାତରେ କିଛି ସାମଗ୍ରୀ ତାହାକୁ ଦେଇଥିଲେ । ସୌଦାମିନୀ ସେଥିରେ ଅତି ଯତ୍ନରେ ଆହାର ପ୍ରସ୍ତୁତ କଲେ ।

ଯାଇଁ ଦେଖିଲେ ଯେ ସ୍ୱାମୀ ଭୂତଳଶାୟୀ, ଅତି ବିନୀତ ଭାବରେ ପଦ ପାର୍ଶ୍ୱରେ ଦଣ୍ଡାୟମାନ ହୋଇ କରୁଣ ସ୍ୱରରେ କହିଲେ, "ଟିକିଏ ଉଠ, ଭାତ ବାଢ଼ିଛି, ଦୁଇ ଗଣ୍ଡି ଖାଇ ଶୋଇବ, ଚାଲ ।" ଜଲଧରଙ୍କର ଜ୍ଞାନ ନାହିଁ ।

ଅନେକ ଚେଷ୍ଟାରେ ରୋଷଦୀପ୍ତ ନେତ୍ରରେ ଉତ୍ତର କଲେ "ଦୂର ହୋ ! କଣ, ଖାଇବି, ନାଚିବି ! ରହ, ରହ, ଦେଖିବୁ !"

ସଶଙ୍କ ଚିତ୍ତରେ କେତେ ତିରସ୍କାର, କେତେ ପଦାଘାତ ସହ୍ୟ କରି କୌଣସି ପ୍ରକାରେ ସ୍ୱାମିଙ୍କୁ ଉଠାଇଲେ । ଜଲଧର ଟଳି ଟଳି ଖାଇବାକୁ ବସିଲେ । ମହୋଲ୍ଲାସରେ ସୌଦାମିନୀ କଷ୍ଟୋ-ପାର୍ଜ୍ଜିତ ଅନ୍ନ ପତିଙ୍କ ସମ୍ମୁଖରେ ସ୍ଥାପନ କଲେ । ସେ ଯାହା ଖାଇଲେ ଭଗବାନ ଜାଣନ୍ତି ! କିନ୍ତୁ ଜିଭ ମଧ୍ୟରେ ଅଶ୍ରାବ୍ୟ ସ୍ତୁତି ଅକଥ୍ୟ କଟୂବାକ୍ୟ ବର୍ଷଣ ଓ ଉଚ୍ଛିଷ୍ଟ ବ୍ୟଞ୍ଜନ ନିକ୍ଷେପ । ଅବଳାର ହୃଦୟ କେତେ ଆଉ ସହିବ ! ତାହାର ଭରସା ଏକ

ସ୍ୱାମୀ ଭିନ୍ନ ଆଉ କେହି ନାହିଁ—ସେ ସ୍ୱାମୀ ଭିନ୍ନ ଆଉ କାହାକୁ ଜାଣେ ନାହିଁ—ସୁତରାଂ ସେହି ନୃଶଂସ ସ୍ୱାମିର ଚରଣ ଧରି କାନ୍ଦି କାନ୍ଦି କହିଲା, "ତୁମେ ମୋର ସ୍ୱାମୀ, ତୁମ ଭିନ୍ନ ମୋର ଆଉ କିଏ ଅଛି ? ମୁଁ ଆଉ କାହା ପାଖକୁ ଯିବି ? ତୁମ ଗୋଡ଼ତଳେ ପଡ଼ୁଛି, ମୋର କିଛି ଦୋଷ ଥିଲେ କ୍ଷମା କର । ମତେ ଆଉ ଏପରି ମାରନା! ବଡ଼ କଷ୍ଟ ହେଉଛି !"

ଆଜି ଅମାବସ୍ୟାର ରାତ୍ରି, ସେଥିରେ ପୁଣି ଘନ ମେଘାଚ୍ଛନ୍ନ, ସୁ ସୁ ପବନ ବହୁଅଛି । ଏପରି ସମୟରେ ସୁଦୂରବର୍ତ୍ତୀ ଭଗ୍ନ ଗୃହରେ କିଏ ଅସ୍ପଷ୍ଟ ଦୀପାଲୋକରେ ବସି ରୋଦନ କରୁଅଛି ? ସେ ସେହି ହତଭାଗିନୀ ସୌଦାମିନୀ । ଅହା ! ଆଉ ଏ କୋମଳ ପ୍ରାଣରେ ତପ୍ତ ହୁତାଶନ ସହ୍ୟ ହେଉ ନାହିଁ କି ?

ସୌଦାମିନୀ ରୋଗଶଯ୍ୟାରେ ଶାୟିତା—ପାଖରେ ସ୍ନେହର ପ୍ରତିମା କମଳା ବସି ବସି କାନ୍ଦୁଅଛି । କ୍ରମଶଃ ରଜନୀ ଗମ୍ଭୀର ପ୍ରକୃତି ଧାରଣ କଲା । କୌଣସିଠାରେ ଜନପ୍ରାଣୀର କିଛି ଶବ୍ଦ ଶୁଣା ଯାଉ ନାହିଁ । ଚତୁର୍ଦ୍ଦିଗରେ ବିକଟ ନିସ୍ତବ୍ଧତା ! କେବଳ ସେହି ଏକ କ୍ଷୁଦ୍ର ଗୃହରେ ସୌଦାମିନୀ କମଳାକୁ ବକ୍ଷରେ ଧାରଣ କରି ଭୟରେ ଦୁଃଖରେ ଅଶ୍ରୁପାତ କରୁଅଛି । ମନେ ମନେ ଭାବୁଅଛି, "କାହିଁକି ଆଜି ସେ ଏତେ ବେଳଯାଏ ଆସିଲେ ନାହିଁ ! କଣ ହେଲା ! କି ବିପଦ ଘଟିଲା !"

ଏହିପରି ସମୟରେ ଜଳଧର ଉଗ୍ରମୂର୍ତ୍ତି ଧାରଣ କରି ଆସି ଉପସ୍ଥିତ । ସୌଦାମିନୀ ଆଜି ୭।୮ ଦିନ ପରେ ସ୍ୱାମିଙ୍କର ଚରଣଦର୍ଶନରେ ଆହ୍ଲାଦିତ ହୋଇ ଅତି କଷ୍ଟରେ ଶଯ୍ୟା ଉପରେ ଉଠି ବସିଲେ । କିନ୍ତୁ ଜଳଧରଙ୍କର ସେ ଆଡ଼କୁ ଦୃଷ୍ଟିପାତ ନାହିଁ—ବିକଟ ଅଟ୍ଟହାସ୍ୟ, କଳକଳା ରବ ! ପରେ, ଅହା କି ସୁମଧୁର ପ୍ରାର୍ଥନା ବାକ୍ୟ ! "ଦେ ପାଞ୍ଚ ଟଙ୍କା ଦେ, ମୋର ଦରକାର ଅଛି ।"

ଏ କଥା ଶୁଣି ସୌଦାମିନୀର ମସ୍ତକରେ ବଜ୍ରପାତ ହେଲା । ସେ କ୍ଷଣକାଳ ମୂର୍ଚ୍ଛିତା ହୋଇ ରୋଗଶଯ୍ୟାର ଏକ ପାର୍ଶ୍ୱରେ ପଡ଼ିଗଲେ । କେହି ଦେଖିବାକୁ ନାହିଁ, ପଚାରିବାକୁ ନାହିଁ, ବାଳିକା କମଳା ମାତାଙ୍କୁ ଏପରି ଜଡ଼ବତ୍ ପଡ଼ିଥିବା ଦେଖି ଆର୍ତ୍ତସ୍ୱରରେ କ୍ରନ୍ଦନ କରି କରି କେତେ ହଲା-ହଲି କଲା । କିଛି ହେଲା ନାହିଁ । ଶେଷକୁ ନିରୁପାୟ ହୋଇ ମାଙ୍କ ମୁହଁକୁ ଚାହିଁ ବସି କାନ୍ଦିବାକୁ ଆରମ୍ଭ କଲା ।

କିନ୍ତୁ ବିଧାତାର ବିଚିତ୍ର ଲୀଳା ! ସୌଦାମିନୀର ଅଦୃଷ୍ଟରେ ଏହାଠାରୁ ଆହୁରି ଅଧିକ ଯାତନା ଭୋଗ କରିବାକୁ ଅଛି—ଅହୁରି ହୃଦୟସ୍ପର୍ଶୀ ଦୃଶ୍ୟ ଦେଖିବାକୁ ଅଛି—ତାହାର ଏ ନିଦ୍ରା ଅନ୍ତିମ ନିଦ୍ରା ହେଲା ନାହିଁ । କ୍ଷଣ କାଳ ପରେ ସଜ୍ଞା ଲାଭ କରି ଜାଗ୍ରତ ହୋଇ ଦେଖନ୍ତି ଯେ ଜଳଧର ବିକଟ ମୂର୍ତ୍ତି ଧାରଣ କରି ଘରର ସମସ୍ତ ଜିନିଷ ତନ୍ନ ତନ୍ନ କରି ଖୋଜୁଅଛନ୍ତି—ବାକ୍ସ, ପେଟରା, ହାଣ୍ଡି, ମାଠିଆ ସବୁ ଭାଙ୍ଗି ଚୂନା କରି ସାରିଲେଣି—ଲୁଗାପଟା ଯାହା ଦୁଇଖଣ୍ଡ ଥିଲା, ସମସ୍ତ ଖୋଜି ସାରି କେଉଁଠାରେ ପାହୁଲାଟିଏ ସୁଦ୍ଧା ପାଇଲେ ନାହିଁ ।

ଚିରଦୁଃଖିନୀ ସୌଦାମିନୀ—ବର୍ଷକରେ ଥରେ ସୁଦ୍ଧା ସ୍ୱାମିଙ୍କର ଚରଣଦର୍ଶନ ହୁଏ ନାହିଁ—ପେଟ ପୂରାଇ ଖାଇବାକୁ ଅକାଳେସକାଳେ ଥରେ ମିଳେ କି ନାହିଁ ସନ୍ଦେହ—ଟଙ୍କା କେଉଁଠାରୁ ପାଇବ—କିଏ ଦେବ—କେଉଁଠାରୁ ଆଣିବ ? ଚରଣ ଧରି କରୁଣସ୍ୱରରେ କାନ୍ଦି କାନ୍ଦି କେତେ କହିଲା, ମୋତେ କ୍ଷମା କର, ମୁଁ ଟଙ୍କା କେଉଁଠାରୁ ପାଇବ ? ତୁମେ ମୋର ଧନ, ମୋର ମାନ, ମୋର ଟଙ୍କା କଉଡ଼ି ସବୁ ତୁମେ—ଥିଲେ କଣ ଦିଅନ୍ତି ନାହିଁ, କାହା ପାଇଁ ରଖନ୍ତି ?"

ନିର୍ମମହୃଦୟ ପାଷଣ୍ଡ ଜଳଧରର ହୃଦୟ ଏଥିରେ ବିଗଳିତ ହେଲା ନାହିଁ । ପୁଣି କହିଲା, "ଓଃ ଏତେ ଅପମାନ ! ଟଙ୍କା ଦିବ ନାହିଁ, ଏତେ ବଡ଼ କଥା—ମୋ ଆଗରେ ମିଛ କଥା—ଆଚ୍ଛା ଦେଖୁଛି—ଏକା ଚୋଟରେ ସବୁ ଦେଖାଇ ଦେବି—କେମିତି ଟଙ୍କା ନାହିଁ, ବାହାରିବ !!"

ଏହା କହି ଉପର୍ଯ୍ୟୁପରି ଚାରି ପଦାଘାତ ଓ ପଳାୟନ ! ଲେଖିବାକୁ ଲେଖନୀ ଚଳୁ ନାହିଁ —ହସ୍ତ କମ୍ପୁଅଛି—ନିଷ୍ଠୁର ପଦାଘାତ ମଧ୍ୟରୁ ଦୁଇଟି ଗୋଟିଏ କମଳାର କୋମଳ ବକ୍ଷରେ ପତିତ ହେଲା ! କମଳା ଦୁଇ ତିନି ଥର ମା,ମା, ବୋଲି ଡାକିଲା । ଆଉ କଣ୍ଠ ନାହିଁ—ପିତାର ପଦାଘାତ କୋମଳ ହୃଦୟରେ ଧାରଣ କରି ଇହ ଧାମ ତ୍ୟାଗ କଲା ।

ଏଣେ ସୌଦାମିନୀ-ଅଭାଗିନୀ ବୁଢ଼ି, ବୁଢ଼ି, ବୋଲି ଦୁଇ ତିନି ଥର ଡାକିଲା । କିଛି କଥା ନାହିଁ—ଶବ୍ଦ ନାହିଁ ! ସବୁ ଜାଣି ପାରିଲା— ଦାରୁଣ କ୍ରନ୍ଦନ ଶବ୍ଦରେ ଗଗନ ବିଦୀର୍ଣ୍ଣ ହେବାକୁ ଲାଗିଲା ।!!

ଆଉ କଣ ଦେଖିବ ପାଠକେ !—କି ଭାଷାରେ କନ୍ୟାଗତପ୍ରାଣା ମାତାର ଆକୁଳ ହୃଦୟ ବୁଝାଇବି ? ଅନ୍ତର ଦେଖିବାର ଅଛି—ଏଠାରେ ଯବନିକା ପତିତ ହୋଇ ନାହିଁ—ଏହି ଦେଖ, ଉନ୍ମାଦିନୀ ବେଶରେ କନ୍ୟାକୁ କୋଳରେ ଧରି ଅଟ୍ଟହାସ୍ୟ କରି ସୌଦାମିନୀ ଗୃହରୁ ବହିର୍ଗତ ହେଲେ । ଦେଖ ବିଜୁଳି ଚମକୁଛି ! ଘନ ଘନ ଘଡ଼ଘଡ଼ି ମାରୁଛି—ପବନ ପ୍ରଚଣ୍ଡ ବେଗରେ ବହୁଛି—ପ୍ରକୃତି ଦେବୀ ଯେଣେ କରାଳ ମୂର୍ତ୍ତି ଧାରଣ କରିଅଛନ୍ତି—ସୌଦାମିନୀର ଜୀବନ-ନାଟକର ଯବନିକା ପତନର ସମୟ ଉପସ୍ଥିତ ! ଦେଖ, ଉନ୍ମାଦିନୀ ଦୌଡ଼ି ଦୌଡ଼ି କନ୍ୟାକୁ ନେଇ ଯାଇ ଅଦୂରବର୍ତ୍ତୀ ପ୍ରାଚୀ କୂଳରେ ଉପସ୍ଥିତ । ଏହି ଦେଖ, କନ୍ୟାକୁ ଘନ ଘନ ଚୁମ୍ବନ କରୁଛି ! ଊର୍ଦ୍ଧ୍ୱକୁ ଉତ୍ତୋଳନ କରୁଛି ! ଦେଖ, କିପରି ଥରେ ଥରେ କୋଳରେ ଚାପି ଧରୁଛି—ଏହି ଶୁଣ, ବିକଟ ଅଟ୍ଟହାସ୍ୟ ! ଆଉ କଣ ଦେଖିବ ! କନ୍ୟାକୁ କୋଳରେ ଧରି ସୌଦାମିନୀ ପାଣିକି ଡେଇଁ ପଡ଼ିଲା !!! ଦେଖ, କଲ୍ଲୋଳିନୀ ଦୁଇଟି ପ୍ରାଣୀକୁ ବକ୍ଷରେ ଧାରଣ କରି ବିଷାଦ-ଗମ୍ଭୀର କଳ କଳ ଶବ୍ଦରେ ଦୌଡ଼ୁଛି ! ତରଙ୍ଗ ଉପରେ ତରଙ୍ଗ ଆସି କେଉଁଆଡ଼େ ସେମାନଙ୍କୁ ଭସାଇ ନେଲା ! ଅନ୍ଧକାର ମାଡ଼ି ଆସିଲା—ସବୁ ସରି ଗଲା !

ଶ୍ରୀ ର—

## କ୍ଷୁଦ୍ର କ୍ଷୁଦ୍ର କବିତା ।

### ବିଚ୍ଛେଦେ ।

ହଜି ନାହିଁ ଯାର କେବେ କିଛିହିଁ ରତନ,
ଏ ମର୍ତ୍ତ୍ୟ ସଂସାରେ ସେହି ଦୀନ ଅକିଞ୍ଚନ ।
ଯେ ପୁଣି ଦରିଦ୍ରତର ହରାଇ ରତନ,
ଏ ଭବଭବନେ ତାହା ପାସୋରେ ଯେ ଜନ ।
ସେ ପୁଣି ଦରିଦ୍ରତମ କୃପାପାତ୍ର ଅତି,
ହରାଇ ପାସୋରିବାକୁ ବଳେ ଯାର ମତି ।
ଶୋକର ଅସୀମ ମସୀମୟ ଅନ୍ଧକାରେ
ପ୍ରେମର ପ୍ରଦୀପ ଜାଳି ମର୍ମବେଦନାରେ,
ଯେ ଜନ ଜପଇ ଶିବ-ରାତ୍ରି-ଜାଗରଣେ
ଅଶ୍ରୁପୂତ ପ୍ରେମ-ମନ୍ତ୍ରେ ହୃଦୟ-ରତନେ,
ସେହି ଏକା ଏ ଜଗତେ ମହାଧନେ ଧନୀ,
ଅକ୍ଷୟ ଭଣ୍ଡାର ତାର ଦିବସ ରଜନୀ ।
ପ୍ରଭୁ ହେ ଶାଶ୍ୱତ ତବ ଶ୍ରୀକୋଠଭଣ୍ଡାରେ
ରଖ ମୋ ହୃଦୟନିଧି ପ୍ରେମ-ପ୍ରତିମାରେ ।

ଶ୍ରୀ ମଧୁସୂଦନ ରାଓ ।

### ତୀର୍ଥଯାତ୍ରା ।

"Lo here! Lo there! But within!"

ଖେଳୁଥିଲି କରି ଧୂଳି ଘର,
ବନ୍ଧୁ ଆସି କହିଲେ ମୋହର,—
ଚାଲ ଯିବା ତୀର୍ଥ ଯାତ୍ରା କରି
"ଆନନ୍ଦ-ଧାମରେ ଦେବ-ଘର ।"
ବିଭ୍ରମିଲି କେତେ କେତେ ସ୍ଥାନ,
ନ ମିଳିଲା ତାହାଙ୍କ ସନ୍ଧାନ ।
ଜଡ଼-ପ୍ରାଣି-ଉଦ୍ଭିଦ-ଜଗତେ
ଲୋଡ଼ିଲି ମୁଁ ତାଙ୍କୁ କେତେମତେ ।

ସ୍ୱର୍ଗୀୟ ଲାବଣ୍ୟମୟ ଧରା
ହେରି ନବ ଋତୁ-ପରମ୍ପରା
ପୂର୍ଣ୍ଣ-ଇନ୍ଦୁ ଶୋଭା ସାନ୍ଦ୍ର ଘନ
ଚନ୍ଦ୍ରାର୍କ-ମଣ୍ଡିତ ଗଗନ
ସୂର୍ଯ୍ୟ ଚନ୍ଦ୍ର ତାରକା ସାଗର
ଗିରି ନଦୀ କାନନ ପ୍ରାନ୍ତର
ପଲ୍ଲବ କୁସୁମ ତରୁ ଲତା—
ସମସ୍ତଙ୍କୁ ପୁଚ୍ଛିଲି ବାରତା ।
ବିହଙ୍ଗମ-ମଧୁର ନିସ୍ୱନ
କରି ନାରୀ-ସୁନ୍ଦର-ଆନନ
ଅବନୀର ଅଜ୍ଞାତ କାହାଣୀ
ଜ୍ଞାନ-ନବ-ଉପଦେଶ-ବାଣୀ—
ଖୋଜି ଖୋଜି ହୋଇଲି ନିରାଶ,
ପ୍ରାଣ ମୋର ଉଦାସ ଉଦାସ !
ନ ପାଇଣ ପ୍ରାଣର ଆଶ୍ରୟ
ମନ ହେଲା ପାପପଙ୍କମୟ ।
କିନ୍ତୁ ଶୁଣି କାହାର ଆହ୍ୱାନ
ଧରା-ଧୂଳି-ଅତୃପ୍ତ ମୋ ପ୍ରାଣ !
ଅଲକ୍ଷିତେ ବୋଇଲା କେ ଗୀର,—
"ଖୋଜ ଖୋଜ ହୃଦୟ-ମନ୍ଦିର;
"ବାହାରର ଭେକ ଆଡ଼ମ୍ବର
"ପ୍ରବେଶ ତୁ ଅନ୍ତର ନଗର;
"ନ ଦେଖିଲେ ହୃଦୟ-କନ୍ଦରେ
"ନ ମିଳିବ ବିଶ୍ୱ-ବ୍ରହ୍ମାଣ୍ଡରେ ।"
ଦେଖିଲି ମୁଁ ଅନ୍ତରକୁ ଚାହିଁ
ଅନ୍ଧକାର ଛଡ଼ା କିଛି ନାହିଁ ।
କ୍ଷୀଣ-ରେଖା ଥିଲା ଯା ସଞ୍ଚିତ,
ସଂଶୟ ସେ କଲା ଦ୍ୱିଗୁଣିତ ।
ନୈରାଶ୍ୟରେ ଜର୍ଜରିତପ୍ରାଣ
ହେଲା ପୁଣି ଦୁଃଖେ ମ୍ରିୟମାଣ ।
ସଂସାରର ସୁଖ ସଖ୍ୟ ଜ୍ଞାନ
ପ୍ରାଣେ ଶାନ୍ତି ନ କଲା ପ୍ରଦାନ ।
ଶୁଣିଲି ମୁଁ ଅଲକ୍ଷେ ଆଦେଶ
"ଶୁଦ୍ଧ କର ହୃଦୟ-ପ୍ରଦେଶ;
"ପବିତ୍ର ନ ହେଲେ ପ୍ରାଣ ମନ
"ପାପୀ ସତ୍ୟ ନ କରେ ଦର୍ଶନ ।"
ମନ ରିପୁକବଳୁଁ ଉଦ୍ଧାର
କରିବା ତ ବିଷମ ବ୍ୟାପାର !
ବିଷମ ସଂଗ୍ରାମେ ପରାଜିତ
ବାରମ୍ବାର ହୋଇଲି ବ୍ୟଥିତ ।
ବୋଇଲି ବିକଳେ "କୃପା କରି
ତାର ମୋତେ ପାପ-ପଙ୍କୁ ହରି ।"
ହେଲାଟି ମୋ ଗରବ-ଗଞ୍ଜନ
ଅହଙ୍କାର-ମାନ-ବିନାଶନ,
ଶୁଭକ୍ଷଣେ ଦୟାମୟ ହରି
ଦେଲେ ପଥ ପରିଷ୍କାର କରି ।
ଛିଣ୍ଡି ଗଲା ସଂଶୟ-ବନ୍ଧନ,
ମୋହ-ଧ୍ୱାନ୍ତ କଲା ପଳାୟନ ।
ଦେଖିଲି ପଙ୍କରେ ପଦ୍ମପରି
ପ୍ରାଣମଧ୍ୟେ ବିରାଜନ୍ତି ହରି ।
ଜ୍ଞାନ-ପୁଣ୍ୟ-ପ୍ରେମରୂପୀ ହରି
ହଅନ୍ତି ମୋ ପାପ ଧୌତ କରି ।
ସାର ସୃଷ୍ଟି କରି ସଞ୍ଜୀବିତ
ଅଛନ୍ତି ମୋ ପ୍ରଭୁ ବିରାଜିତ ।

ଶ୍ରୀ ନନ୍ଦକିଶୋର ବଳ ।

## ଉତ୍କଳ ମାତା ପ୍ରତି ।

ଏହି କି ଉତ୍କଳମାତା ଭାରତ ମଧ୍ୟରେ
କାଠଯୋଡ଼ି ନଦୀକୂଳେ ଯାହାର ଗଠନ,
ଯା ନାମ କଟକ ବୋଲି ଲୋକେ ବିଦ୍ୟମାନ,
ଯାହା ଆଜ୍ଞା ଶିରେ ଧରି ଉତ୍କଳ ରାଜ୍ୟରେ
ଭ୍ରମିଣ 'ଦୀପିକା' ଥରେ ସପ୍ତାହ ମଧ୍ୟରେ
ଘରେ ଘରେ ଭଲମନ୍ଦ କରଇ ଜଣାଣ,
ପୁଣି ଯେ ମାସକୁ ଥରେ 'ସାହିତ୍ୟ' ଭ୍ରମିଣ
ଜ୍ଞାନ ଦାନ କରି ଯାଏ ଜନସମାଜରେ,
ଏହି କି ସେ ଯାହା ଦେହେ ଶ୍ରେଷ୍ଠ କବିଗଣ
ରାଧାନାଥ ମଧୁ ଆଉ ଫକୀରମୋହନ
ବାସ କରି ରଚିଛନ୍ତି କେତେ କେତେ ବହି,
ତହିଁ ମହାଯାତ୍ରା ଛନ୍ଦମାଳା ରାମାୟଣ
ତିନି କବିଙ୍କର ତିନି ଅଟନ୍ତି ପ୍ରଧାନ,
ପଢନ୍ତି ଉତ୍କଳପୁତ୍ରେ ଯାହା ଶ୍ରଦ୍ଧା ବହି ।

ଶ୍ରୀ ଅପର୍ଣ୍ଣା ପଣ୍ଡା ।

## ବିବିଧ ପ୍ରସଙ୍ଗ ।

୧ । କଂଗ୍ରେସ୍—କଂଗ୍ରେସର ନାମଟାରୁ ଆମ୍ଭେମାନେ ତାହାର ଭକ୍ତ । ଏପର୍ଯ୍ୟନ୍ତ ଦୂରରୁ ଏହାକୁ ଦେଖୁଥିଲୁଁ । ବିଗତ ଡିସେମ୍ବର ମାସରେ କଲିକତା ମହାନଗରୀରେ ଏହାର ସପ୍ତଦଶ ଅଧିବେଶନରେ ଯୋଗ ଦେବାକୁ ସମର୍ଥ ହୋଇ ପ୍ରାଣର ଚିରପୋଷିତ ଆକାଂକ୍ଷା ପୂର୍ଣ୍ଣ କରିଅଛୁଁ । କଂଗ୍ରେସ୍ ! ତୁମ୍ଭକୁ ବାରମ୍ବାର ନମସ୍କାର । ତିନି ଦିନ କଂଗ୍ରେସ୍ ମଣ୍ଡପରେ ବସି ଆମ୍ଭେମାନେ ପାଦଦଳିତ ଭାରତଭୂମିର ଭବିଷ୍ୟତର ଯେଉଁ ଉଜ୍ଜ୍ୱଳ ଛବି ଦେଖିଲୁଁ, ତାହା ବର୍ଣ୍ଣନ କରିବାର ଶକ୍ତି ଆମ୍ଭମାନଙ୍କର ନାହିଁ । ଯେହି ଚିତ୍ର ବାସ୍ତବିକ ଦିନେ ଉଜ୍ଜ୍ୱଳରୂପେ ପ୍ରତିଭାତ ହେବ, ଏହି ବିଶ୍ୱାସରେ ଆମ୍ଭେମାନେ ଉତ୍ଫୁଲ୍ଲ । ଏବର୍ଷ କଲିକତାର ବିଡ଼ନ ଉଦ୍ୟାନରେ ଗୋଟିଏ ସୁବୃହତ୍ ଓ ସୁଦୃଶ୍ୟ ମଣ୍ଡପ ତଳେ କଂଗ୍ରେସର ଅଧିବେଶନ ହୋଇଥିଲା । ଭାରତର ବିଭିନ୍ନ ପ୍ରଦେଶରୁ ପ୍ରାୟ ଏକ ସହସ୍ର ପ୍ରତିନିଧି ଏବଂ ଆଠ ସହସ୍ର ଦର୍ଶକଙ୍କର ସମାଗମ ହୋଇଥିଲା । ମହିଳା-ଦର୍ଶକଙ୍କ ସଂଖ୍ୟା ଏକ ଶତରୁ ଊଣା ନ ଥିଲା । ବଙ୍ଗ ଭୂମିର ଗୋଟିଏ ସୁକନ୍ୟା ଏ ବର୍ଷ ପ୍ରାଣ-ଉନ୍ମାଦିନୀ ଭାଷାରେ ରଚିତ ତାଙ୍କର "ହିନ୍ଦୁସ୍ଥାନ" ନାମକ ସଙ୍ଗୀତଦ୍ୱାରା କଂଗ୍ରେସକୁ ଉନ୍ମତ୍ତ କରିଥିଲେ । ସ୍ଥାନାଭାବରୁ ଉକ୍ତ ସଙ୍ଗୀତଟି ପାଠକପାଠିକାବର୍ଗଙ୍କୁ ଉପହାର ଦେଇ ନ ପାରି ଦୁଃଖିତ ହେଲୁଁ । ୫୬ ଜଣ ଭିନ୍ନଜାତୀୟ ଭିନ୍ନଧର୍ମାବଲମ୍ବୀ ଭିନ୍ନବେଶଧାରୀ ଗାୟକଙ୍କ କଣ୍ଠରେ ଏହି ଗୀତ ଯେ କି ମହାଭାବ—କି ଜ୍ୱଳନ୍ତ ଉଦ୍ଦୀପନା ଜାତ କରାଇଥିଲା, ତାହା ବର୍ଣ୍ଣନାତୀତ । କଂଗ୍ରେସ୍ ପ୍ରତି ଲୋକଙ୍କର ଆସ୍ଥା କମି ଥିବାର ଯେଉଁ ଅଭିଯୋଗ ଶୁଣି ଆସୁଥିଲୁଁ, ଗତ ଅଧିବେଶନରେ ତହିଁର ବରଂ ବିପରୀତ ପ୍ରମାଣ ପାଇ ଆନନ୍ଦିତ ହେଲୁଁ । ୧୬ ବର୍ଷ କାଳ ଏହାର କାର୍ଯ୍ୟପ୍ରଣାଳୀ ଦେଖି ଓ ସମାଲୋଚନା କରି ପୁବା ବର୍ତ୍ତମାନ ଯେଉଁମାନେ ଏହାର ହିତକାରିତା ଅସ୍ୱୀକାର କରିବାକୁ ସାହସୀ ହୁଅନ୍ତି, ସେମାନଙ୍କୁ ବାତୁଳ ଛଡ଼ା ଅନ୍ୟ କଣ ବୋଲାଯିବ ? କେବଳ ୫ ମିନିଟର ସ୍ପଷ୍ଟ ଓ ନୀରସ ବକ୍ତୃତା ଛଡ଼ା କଂଗ୍ରେସରେ ଆଉ କି ଆକର୍ଷଣର ବସ୍ତୁ ଥାଏ ଯେ ଭାରତର ବିଭିନ୍ନ ପ୍ରଦେଶରୁ ଏତେଗୁଡ଼ିଏ ସୁସନ୍ତାନ ଅସୀମ କଷ୍ଟ ଓ ବ୍ୟୟ ସ୍ୱୀକାର କରି ପ୍ରତି ବର୍ଷ ତହିଁରେ ଯୋଗ ଦେବାକୁ ଧାଇଁ ଆସନ୍ତି ? ସେମାନେ କି ପାଗଳ ? କଂଗ୍ରେସ୍ ରାଜଦ୍ରୋହୀ ବୋଲି ଗୋଟାଏ ନିତାନ୍ତ ଭ୍ରାନ୍ତ ଓ ଅମୂଳକ ଭାବ ହୃଦୟରେ ପୋଷଣ କରି ଏପର୍ଯ୍ୟନ୍ତ ଦେଶର ରାଜା, ମହାରାଜା ଓ ଜମିଦାର ଶ୍ରେଣୀର ଅନେକେ ସେଥିରେ ଯୋଗ ଦେବାକୁ ଇତସ୍ତତଃ ହୋଇ ଥାନ୍ତି । ଆମ୍ଭେମାନେ ଜାଣୁ ଗଭର୍ଣ୍ଣମେଣ୍ଟଙ୍କର କେତେକ ଅଯତ୍ନ କର୍ମଚାରୀ ଆପଣା ଆପଣାର ଖାମଖିଆଲ କାର୍ଯ୍ୟଦ୍ୱାରା ସେମାନଙ୍କ ମନରେ ଏହି ଭାବ ସଞ୍ଚାର କରି ଦେଇଅଛନ୍ତି । ମାତ୍ର ତାହା ବୋଲି ସେମାନେ କଦାପି ସେମାନଙ୍କ ହୃଦୟରୁ ସ୍ୱଦେଶପ୍ରେମ କାଢ଼ି ନେବାକୁ ସମର୍ଥ ହୋଇ ନାହାନ୍ତି । ରାଜା, ମହାରାଜା ପ୍ରଭୃତିଙ୍କ ପକ୍ଷରେ କେବଳ ଟିକିଏ ସତ୍ସାହସର ଅଭାବ ଯୋଗୁଁ ରାଜକର୍ମଚାରୀମାନେ ଏ ପର୍ଯ୍ୟନ୍ତ ସେମାନଙ୍କୁ କ୍ରୀଡ଼ାପୁତ୍ତଳିକା ସଦୃଶ ନଚାଇ ଆସୁଅଛନ୍ତି । ସୁଖର ବିଷୟ, ଏଥର ବଙ୍ଗଳାର ଜଣେ ସୁବିଖ୍ୟାତ ଜମିଦାର—ନାଟୋରର ମହାରାଜା ଶ୍ରୀ ଜଗଦିନ୍ଦ୍ରନାଥ—ସବୁପ୍ରକାର ବିଘ୍ନବିପତ୍ତିକୁ ତୁଚ୍ଛ କରି କଂଗ୍ରେସର ଜଣେ ପ୍ରଧାନ ପୃଷ୍ଠପୋଷକ ହୋଇ ଅଛନ୍ତି । ସେ ଏ ବର୍ଷ ଅଭ୍ୟର୍ଥନା କମିଟୀର ସଭାପତିରୂପେ ଯେଉଁ ବକ୍ତୃତା ପାଠ କରିଥିଲେ, ତାହାର ପ୍ରତ୍ୟେକ କଥାରେ ତାଙ୍କର ଗଭୀର ସ୍ୱଦେଶାନୁରାଗ ଓ ନିର୍ଭୀକତାର ପରିଚୟ

ଉଠ ସମସ୍ତେ ପରମ ସୁଖୀ ହୋଇଅଛନ୍ତି । କେବେ ଆମ୍ଭମାନଙ୍କର ରାଜା, ମହାରାଜାମାନେ ତାଙ୍କର ସାଧୁ ଦୃଷ୍ଟାନ୍ତ ଅନୁସରଣ କରିବାକୁ ସାହସୀ ହେବେ? ଏ ବର୍ଷ କଂଗ୍ରେସରେ ଯେତେଗୁଡ଼ିଏ ବିଷୟର ଆଲୋଚନା ହୋଇଥିଲା, ସେ ସମସ୍ତହିଁ ଦେଶର ମଙ୍ଗଳ ନିମିତ୍ତ । ସଭାପତି ମହାଶୟ ଓଜସ୍ୱୀ, ତାଙ୍କର ପାଣ୍ଡିତ୍ୟପୂର୍ଣ୍ଣ ସୁଦୀର୍ଘ ବକ୍ତୃତାରେ କୃଷି ଓ ଅର୍ଥନୀତି-ଶାସ୍ତ୍ରର ସୂକ୍ଷ୍ମ ସୂକ୍ଷ୍ମ ଆଲୋଚନା କରିଥିଲେ । ସମୟରେ ଏ ବର୍ଷର କଂଗ୍ରେସ୍ ସକଳ ବିଷୟରେ ପୂର୍ବ କଂଗ୍ରେସମାନଙ୍କ ଅପେକ୍ଷା ଅଧିକତର ସଫଳ ହୋଇଥିଲା ।

ଉତ୍କଳ ପ୍ରଦେଶ ବହୁ କାଳରୁ କଂଗ୍ରେସ କାର୍ଯ୍ୟରେ ଔଦାସୀନ୍ୟ ପ୍ରକାଶ କରି ଆସୁଥିଲା । ଏ ବର୍ଷ ଅନେକଗୁଡ଼ିଏ ପ୍ରତିନିଧି ଓ ଦର୍ଶକ ମାତୃପୂଜାରେ ଉତ୍ସାହର ସହିତ ଯୋଗ ଦେଇଥିବାର ଦେଖି ଅତ୍ୟନ୍ତ ସୁଖୀ ହେଲୁଁ ଏବଂ ପ୍ରାଣରେ ଆଶାର ସଞ୍ଚାର ହେଲା । ଏ ବର୍ଷ ବଙ୍ଗୀୟ ପ୍ରାଦେଶିକ ସମିତିର ଅଧିବେଶନ କଟକରେ ହେବ । ବଙ୍ଗ ପ୍ରଦେଶରୁ ଅନେକ ପ୍ରତିନିଧି ସମିତିରେ ଉପସ୍ଥିତ ହେବେ । ବଙ୍ଗଭୂମି ସହିତ ଉତ୍କଳର ଯୋଗ ଘନିଷ୍ଠତର ହେବ । ଉତ୍କଳ ପକ୍ଷରେ ଏହା ଗୋଟିଏ ଶୁଭ ଅନୁଷ୍ଠାନ ଅଟେ । ମାନ୍ୟବର ଦାସ ମହୋଦୟ ସମିତିର ପ୍ରଧାନ ଉଦ୍‌ଯୋଗୀ । ଯଥାର୍ଥରେ ତାଙ୍କର ଯୋଗୁଁ କଟକରେ ଏହାର ସମ୍ଭାବନା ହୋଇଅଛି । ଅଧିବେଶନର କାଳ ନିକଟବର୍ତ୍ତୀ ହେଲା । ଏପର୍ଯ୍ୟନ୍ତ ଆମ୍ଭେମାନେ ସେ ବିଷୟରେ କୌଣସି ଉଦ୍‌ଯୋଗ-ଆୟୋଜନର କଥା ଜାଣି ପାରି ନାହୁଁ । ଅବଶ୍ୟ ନେତୃସ୍ଥାନୀୟ ବ୍ୟକ୍ତିମାନେ ଆୟୋଜନରେ ତ୍ରୁଟି କରୁ ନ ଥିବେ । ମାତ୍ର ସର୍ବସାଧାରଙ୍କୁ ଉଦ୍‌ବୁଦ୍ଧ କରିବାପାଇଁ ସକଳ ବିଷୟ ସାଧାରଣରେ ପ୍ରକାଶ କରିବା ସର୍ବଥା ବାଞ୍ଛନୀୟ । କଟକର—ତଥା ଉତ୍କଳର ମୁଖପତ୍ର "ଉତ୍କଳ-ଦୀପିକା" ଏ ବିଷୟରେ ନୀରବ ରହିଅଛନ୍ତି କାହିଁକି ? ଆମ୍ଭେମାନେ ଆଶା କରୁଁ ଦେଶର ସୁସନ୍ତାନମାନେ ସାନ ବଡ଼ ସମସ୍ତେ ମିଳି ପରମୋତ୍ସାହରେ କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ହୋଇ ଅଧିବେଶନର ସଫଳତା ବିଧାନ କରିବେ ।

୨ । ଭାରତୀୟ ଶିଳ୍ପମେଳା — ଏପର୍ଯ୍ୟନ୍ତ କଂଗ୍ରେସ୍ କେବଳ ରାଜଦ୍ୱାରରେ ଭିକ୍ଷାର୍ଥୀସ୍ୱରୂପ ଦଣ୍ଡାୟମାନ ହୋଇ ଆସୁଥିଲେ । ଏ ବର୍ଷ ତାହାର ନେତାମାନେ ଦେଶର ଶିଳ୍ପ ପ୍ରତି ଦୃଷ୍ଟି ଦେବାର ଦେଖି ଆନନ୍ଦିତ ହେଲୁଁ । ବାସ୍ତବିକ ଦେଶୋନ୍ନତିର ଏହାହିଁ ସୂଚନା । କଂଗ୍ରେସ୍ ମଣ୍ଡପର ଏକ ପାର୍ଶ୍ୱରେ ଏ ବର୍ଷ ଗୋଟିଏ ଶିଳ୍ପ-ପ୍ରଦର୍ଶନୀ ସ୍ଥାପିତ ହୋଇଥିଲା । ପ୍ରାୟ ଦୁଇ ମାସ ପୂର୍ବରୁ ଏହାର ଆୟୋଜନ ଆରମ୍ଭ ହୋଇଥିଲେହେଁ ଏହି ଅଳ୍ପ ସମୟ ମଧ୍ୟରେ ଏହାର ସାଫଲ୍ୟ ଦେଖି ବାସ୍ତବିକ ଆୟୋଜନକାରୀମାନଙ୍କୁ ଧନ୍ୟବାଦ ନ ଦେଇ ରହି ପାରିଲୁଁ ନାହିଁ । ପ୍ରଦର୍ଶନୀରେ ନାନା ସ୍ଥାନର ନାନା ପ୍ରକାର ଶିଳ୍ପ ଦ୍ରବ୍ୟର ସମାବେଶ ହୋଇଥିଲା । ଭାରତ ନାନାବିଧ ସୂକ୍ଷ୍ମ ଶିଳ୍ପ ସକାଶେ ଚିର ବିଖ୍ୟାତ । ବର୍ତ୍ତମାନ ତାହାର ପତିତାବସ୍ଥାରେ ସୁଦ୍ଧା ଯାହା ଦେଖିଲୁଁ, ତାହା ଆମ୍ଭମାନଙ୍କ ପ୍ରାଣରେ ମୃତସଞ୍ଜୀବନୀ ଆଶାକୁ ଉଦ୍ଦୀପ୍ତ କରି ଦେଲା । ପୁଣି ଅଧୁନାତନ ସମୟୋପଯୋଗୀ ନାନାବିଧ ନୂତନ ଦ୍ରବ୍ୟ ଓ ନବୋଦ୍ଭାବିତ ବିବିଧ ଯନ୍ତ୍ରାଦି ନବ ଭାରତର ଶ୍ରୀଭାଗ୍ୟର ଜୀବନ୍ତ ସାକ୍ଷୀରୂପେ ବିଦ୍ୟମାନ ଥିଲା । କାହାକୁ ଛାଡ଼ି କାହାକୁ ଦେଖିବୁଁ କିଛି ସ୍ଥିର କରି ପାରିଲୁଁ ନାହିଁ । ଭାରତର ଲୁପ୍ତପ୍ରାୟ ଶିଳ୍ପ-ଗୌରବ ରକ୍ଷା କରି ପାରିଲେ ଏବଂ ବର୍ତ୍ତମାନ ଯୁଗୋପଯୋଗୀ ନିତ୍ୟ ପ୍ରୟୋଜନୀୟ ସାଧାରଣ-ବ୍ୟବହାର୍ଯ୍ୟ ବିବିଧ ଦ୍ରବ୍ୟ ଉତ୍ପାଦନ କରି ପାରିଲେ ପ୍ରକୃତ ପକ୍ଷରେ ଭାରତର ମୁଖ ଉଜ୍ଜ୍ୱଳ ହେବ, କଂଗ୍ରେସ୍ ଦେଶରେ ଚିରସ୍ମରଣୀୟ ହେବ । ପ୍ରଦର୍ଶିତ ଦ୍ରବ୍ୟମାନଙ୍କର କେବଳ ଗୋଟିଏ ତାଲିକା

ଦେବାର ସ୍ଥାନ ମଧ୍ୟ "ଉତ୍କଳସାହିତ୍ୟ"ରେ ନାହିଁ; ଏତିକି କହିଲେ ଯଥେଷ୍ଟ ହେବ ଯେ ଭାରତର ପ୍ରାୟ ସକଳ ପ୍ରଧାନ ପ୍ରଧାନ ସ୍ଥାନର ବିଖ୍ୟାତ ଶିଳ୍ପଦ୍ରବ୍ୟମାନ ପ୍ରଦର୍ଶନୀରେ ସଂଗୃହୀତ ହୋଇଥିଲା । ମାନନୀୟ ଦାସ ମହୋଦୟ ଆପଣା କୋଠିରେ ସ୍ଥାପିତ ଓଡ଼ିଶା-ଶିଳ୍ପଶାଳାରୁ ନାନା ପ୍ରକାର ଦ୍ରବ୍ୟ ପ୍ରଦର୍ଶନ କରି ଓଡ଼ିଶାର ଟେକ ରଖିଥିଲେ । ପୁରସ୍କାର ତାଲିକାରେ ଓଡ଼ିଶା-ଶିଳ୍ପଶାଳାର ନାମ ଦେଖି ସୁଖୀ ହେଲୁଁ । ଦିନେ କେବଳ ମହିଳାମାନଙ୍କ ନିମିତ୍ତ ପ୍ରଦର୍ଶନୀର ଦ୍ୱାର ଉଦ୍ଘାଟିତ ହୋଇଥିଲା ଏବଂ ଆମ୍ଭେମାନେ ଶୁଣି ସୁଖୀ ହେଲୁଁ ଯେ ଉକ୍ତ ଦିବସ ପ୍ରାୟ ଦେଢ଼ ହଜାରରୁ ବେଶି ଭଦ୍ର ମହିଳା ପ୍ରଦର୍ଶନୀ ଦେଖି ଥିଲେ । ସେ ଦିନ ପ୍ରଦର୍ଶନୀର କାର୍ଯ୍ୟ କେବଳ ମହିଳା-ମାନଙ୍କଦ୍ୱାରା ସମ୍ପନ୍ନ ହୋଇଥିଲା । ପୁରୁଷମାନେ କୌଣସି କାର୍ଯ୍ୟଭାର ଗ୍ରହଣ କରି ନ ଥିଲେ ।

୩ । ସମାଜସଂସ୍କାର-ସଭା—ଶିକ୍ଷା, ଅବସ୍ଥା, ରୁଚି ଓ ଭାବର ପରିବର୍ତ୍ତନ ସଙ୍ଗେ ସଙ୍ଗେ ଆମ୍ଭ-ମାନଙ୍କ ଦେଶରେ ଅନେକ ବ୍ୟକ୍ତିଙ୍କ ପ୍ରାଣରେ ସମାଜସଂସ୍କାରର ଆକାଂକ୍ଷା ଜାଗ୍ରତ ହୋଇଅଛି ଏବଂ ଏହି ଆକାଂକ୍ଷା କାର୍ଯ୍ୟରେ ପରିଣତ କରିବା ନିମିତ୍ତ ଅନେକେ ଅନେକ ପ୍ରକାର ଉପାୟ ଉଦ୍ଭାବନ ଓ ଅବଲମ୍ବନ କରୁଅଛନ୍ତି । ଏ ସମସ୍ତ ଦେଖିଲେ ଅବଶ୍ୟ ପ୍ରାଣରେ ଆନନ୍ଦ ଜାତ ହୁଏ । ମାତ୍ର ଅନେକ ସମୟରେ ଏ ଶ୍ରେଣୀର କାର୍ଯ୍ୟପ୍ରଣାଳୀ ଓ ତାହାର ପରିଣାମ ଦେଖି ଚିତ୍ତରେ ଅଧିକ କ୍ଷୋଭ ଉପସ୍ଥିତ ହୁଏ । ରାଜନୈତିକ ଆନ୍ଦୋଳନର ପନ୍ଥା ଅନୁସରଣ କରି ଦେଶର କେତେଗୁଡ଼ିଏ ପ୍ରତିନିଧି ବ୍ୟକ୍ତି କେତେକ ବର୍ଷ ହେଲା ଜାତୀୟ ମହା-ସମିତିର ଅଧିବେଶନ ସମୟରେ ସମାଜସଂସ୍କାର ସମିତିର ଅଧିବେଶନ କରି ଆସୁଅଛନ୍ତି । ଆମ୍ଭେ-ମାନେ ସମିତିର ବିଗତ ଅଧିବେଶନରେ ଉପସ୍ଥିତ ଥାଇ ଯାହା ଦେଖିଲୁଁ, ସେଥିରେ ଆମ୍ଭମାନଙ୍କର ଶ୍ରଦ୍ଧା ଭକ୍ତି ଅନେକ ପରିମାଣରେ ଦୂର ହୋଇଗଲା ! ଏପରି ବର୍ଷକେ ଥରେ ଏକତ୍ର ହୋଇ କେତେଗୁଡ଼ିଏ ନିର୍ଦ୍ଧାରଣ କଲେ ଯେ [illegible] ଫଳ ହେବ, ଏ ବିଶ୍ୱାସ ଆମ୍ଭ-ମାନଙ୍କର ନାହିଁ । ଯଥାର୍ଥ ସଂସ୍କାରକ ଯେଉଁମାନେ, ସେମାନେ ସଭା ସମିତିର ଅପେକ୍ଷା ନ ରଖି ଜନସାଧାରଣଙ୍କ ମତାମତ ପ୍ରତି ଦୃଷ୍ଟିପାତ ନ କରି ନିଜର ସରଳ ବିଶ୍ୱାସ ଅନୁସାରେ କାର୍ଯ୍ୟ କରି ଚାଲିଯାନ୍ତି । ବିଶ୍ୱାସାନୁଯାୟୀ କାର୍ଯ୍ୟହିଁ ପ୍ରଚାରର ପ୍ରକୃଷ୍ଟ ପନ୍ଥା । ବାକ୍‌ସର୍ବସ୍ୱ, ଯଶୋଲିପ୍ସୁ ଦ୍ୱିଭାବାପନ୍ନ ବ୍ୟକ୍ତିମାନଙ୍କଦ୍ୱାରା କୌଣସି କାଳେ କିଛି ହୋଇ ନାହିଁ, ହେବ ନାହିଁ । ଦୁଃଖର ବିଷୟ, ଏ ବର୍ଷ ସମାଜସଂସ୍କାର ସମିତିରସଭାପତି ଏବଂଅନେକଗୁଡ଼ିଏ ବକ୍ତା ଏହି ଶ୍ରେଣୀର ଲୋକ ଥିଲେ । ଏମାନଙ୍କ ପୋଗ୍ରାଁ ସମିତିର ଅଧିବେଶନରେ ଯେପ୍ରକାର ପ୍ରହସନର ଅଭିନୟ ହେଲା, ତହିଁରେ ସରଳଚିତ୍ତ ସଂସ୍କାରପ୍ରୟାସିଗଣ ଅତ୍ୟନ୍ତ ବ୍ୟଥା ଅନୁଭବ କରି ଅଛନ୍ତି । ଏମାନେ ନିଜ ନିଜ ଅପଦାର୍ଥତା ପ୍ରତିପନ୍ନ କରିବା ସଙ୍ଗେ ସଙ୍ଗେ ସମିତିକୁ ମଧ୍ୟ ସାଧାରଣ ଚକ୍ଷୁରେ ହେୟ ଓ ଉପହାସାସ୍ପଦ କରିଅଛନ୍ତି । ଏପରି ଦାୟିତ୍ୱଜ୍ଞାନଶୂନ୍ୟ ହୋଇ ଲୋକେ ଗୁରୁତର କାର୍ଯ୍ୟଭାର ଗ୍ରହଣ କରନ୍ତି, ଏ ଧାରଣା ଆମ୍ଭମାନଙ୍କର ପୂର୍ବେ ନ ଥିଲା । ଦେଖି ଶୁଣି ଏ ଦେଶର ନେତାଗଣଙ୍କ ସମ୍ବନ୍ଧରେ କେତେକ ନୂତନ ଶିକ୍ଷା ଲାଭ କଲୁଁ । ଯଥାର୍ଥ ସଂସ୍କାରପ୍ରୟାସିମାନେ ବୃଥା ଗଣ୍ଡଗୋଳ ପରିତ୍ୟାଗ କରି ନୀରବରେ କାର୍ଯ୍ୟ କରି ଚାଲି ଯାଉନ୍ତୁ । ରାଜନୈତିକଆନ୍ଦୋଳନ ଓ ସମାଜସଂସ୍କାର ଏକ ନୁହେ—ଉଭୟରପନ୍ଥା ମଧ୍ୟ ଏକ ନୁହେ । ରାଜନୈତିକ ଅଧିକାର ପର ହସ୍ତରେ; ସାମାଜିକ ଅଧିକାର ଆମ୍ଭମାନଙ୍କ ନିଜ ହସ୍ତରେ । ଏ ଅଧିକାରରୁ କେହି ଆମ୍ଭମାନଙ୍କୁ ବଞ୍ଚିତ କରି ନ ପାରେ । କେବଳ ସତ୍‌ସାହସ ଓ ସ୍ୱାର୍ଥତ୍ୟାଗ ଆବଶ୍ୟକ । ଏତିକି ହେଲେ ପରିଣାମରେ ଜୟ ଅବଶ୍ୟମ୍ଭାବୀ ।

୪ । କାନ୍ତି ଅଞ୍ଚଳର ଓଡ଼ିଆ ଭାଷା—ପ୍ରାଚୀନ ଉତ୍କଳ ପ୍ରଦେଶରୁ ଯେ କେତୋଟି ଅଂଶ ବିଚ୍ଛିନ୍ନ ହୋଇ ବଙ୍ଗଭାଷୀ ପ୍ରଦେଶର ଅନ୍ତର୍ଗତ ହୋଇଅଛି, ତନ୍ମଧ୍ୟରୁ କାନ୍ତି ସବ୍‌ଡିଭିଜନ ଗୋଟିଏ । ଅଳ୍ପ ଦିନ ହେଲା ଆମ୍ଭେମାନେ ସେ ଅଞ୍ଚଳର କେତେକ ସ୍ଥାନ ଭ୍ରମଣ କରି ଆସିଅଛୁଁ ।

ଆମ୍ଭେମାନେ ଗଞ୍ଜାମ ଓ ସମ୍ବଲପୁର ଅଞ୍ଚଳ ଭ୍ରମଣ କରି ଦେଖିଅଛୁଁ । ମାତ୍ର ମାତୃଭାଷା ପ୍ରତି ଏପରି ଅନାସ୍ଥା କୌଣସିଠାରେ ଦେଖି ନାହୁଁ । ଅଳ୍ପ ଦିନ ହେଲା ସମ୍ବଲପୁରବାସୀ ବନ୍ଧୁମାନେ ମାତୃଭାଷାର ରକ୍ଷା ନିମିତ୍ତ ଯେପରି ଉତ୍ସାହ, ଉଦ୍ୟମ ଓ ତ୍ୟାଗସ୍ୱୀକାର ଦେଖାଇଅଛନ୍ତି, ତାହା ଦେଖି ପ୍ରାଣରେ ଅଭୂତପୂର୍ବ ଆନନ୍ଦରେ ସଞ୍ଚାର ହୋଇ ଅଛି । ଗଞ୍ଜାମ ଅଞ୍ଚଳର ଭାଷା ଅପେକ୍ଷାକୃତ ବିକୃତ ହେଲେହେଁ ଅଧିକାଂଶ ଗଞ୍ଜାମବାସୀ ଉତ୍କଳ ସନ୍ତାନଙ୍କର ମାତୃଭାଷା ଚର୍ଚ୍ଚାରେ ତାଦୃଶ ଆଗ୍ରହ ନ ଥିଲେହେଁ ସେ ଅଞ୍ଚଳରୁ ମାତୃଭାଷା ବିଲୁପ୍ତ ହୋଇ ନାହିଁ—ହେବାର ସମ୍ଭାବନା ମଧ୍ୟ ନାହିଁ । ବରଂ କେତେଗୁଡ଼ିଏ ଉତ୍ସାହୀ ବନ୍ଧୁଙ୍କ ଯତ୍ନରେ ଓଡ଼ିଆ ସାହିତ୍ୟର ଚର୍ଚ୍ଚା କ୍ରମଶଃ ବର୍ଦ୍ଧିତ ହେଉଅଛି । ମାତ୍ର କାନ୍ଥି ଅଞ୍ଚଳର ଅବସ୍ଥା ସମ୍ପୂର୍ଣ୍ଣ ବିପରୀତ । ନବ୍ୟଶିକ୍ଷିତ ଉତ୍କଳସନ୍ତାନମାନେ ମାତୃଭାଷା ପ୍ରାୟ ଭୁଲି ଗଲେଣି ! ପ୍ରାଚୀନ ଶ୍ରେଣୀ ମଧ୍ୟରେ ଓଡ଼ିଆ ଭାଷାର ଚର୍ଚ୍ଚା କେବଳ ଭାଗବତ ପୁସ୍ତକ ପର୍ଯ୍ୟନ୍ତ ! ପୁଣି ସେମାନେ ସ୍ୱୀୟ ସନ୍ତାନମାନଙ୍କୁ ଓଡ଼ିଆ ଶିଖାଇବା ଆଦୌ ଆବଶ୍ୟକ ବିବେଚନା କରନ୍ତି ନାହିଁ । ଉତ୍କଳ ସନ୍ତାନମାନଙ୍କ ମଧ୍ୟରେ ଉତ୍କଳ ଭାଷାର ଏପରି ଶୋଚନୀୟ ଅବସ୍ଥା ଦେଖି ଏବଂ ସ୍ୱଜାତୀୟମାନଙ୍କ ସହିତ ବାଧ୍ୟ ହୋଇ ବଙ୍ଗ ଭାଷାରେ କଥୋପକଥନ କରି ଆମ୍ଭେମାନେ ପ୍ରାଣରେ ଅତ୍ୟନ୍ତ ବ୍ୟଥା ଅନୁଭବ କରିଅଛୁଁ ! ବିଭିନ୍ନ ସ୍ଥାନ ସମ୍ବନ୍ଧରେ ଆମ୍ଭମାନଙ୍କ ଅଭିଜ୍ଞତା ଏବଂ ସ୍ଥୂଳ ବିବରଣ ପ୍ରକାଶ କରିବାର ସ୍ଥାନ ବର୍ତ୍ତମାନ ଆମ୍ଭମାନଙ୍କ ହସ୍ତରେ ନାହିଁ । ସମୟାନ୍ତରରେ ତାହା ପାଠକ-ସାଧାରଣଙ୍କୁ ଜଣାଇବାର ଆଶା କରୁଅଛୁଁ ।

ବର୍ତ୍ତମାନ ବକ୍ତବ୍ୟ ଏହି ଯେ ଓଡ଼ିଆ ଭାଷାର ପ୍ରସାର ବୃଦ୍ଧିପାଇଁ ଓଡ଼ିଶାର ଶିକ୍ଷିତ ସମ୍ପ୍ରଦାୟ କି ବିଶେଷ ଚେଷ୍ଟା କରୁ ଅଛନ୍ତି ? ବିଭିନ୍ନ ପ୍ରଦେଶାନ୍ତର୍ଗତ ଉତ୍କଳ ସନ୍ତାନମାନଙ୍କ ଏକତା-ସୂତ୍ରରେ ବାନ୍ଧିବାର ଏକମାତ୍ର ଉପାୟ ସାହିତ୍ୟ । ପ୍ରାଚୀନ ଉତ୍କଳ ସାହିତ୍ୟର ଉଦ୍ଧାର ଓ ପ୍ରଚାର ଏବଂ ନୂତନ ଘଡ଼ରେ ସାହିତ୍ୟ ସଂଗଠନ ଉଭୟ କାର୍ଯ୍ୟ ଶିକ୍ଷିତ ଉତ୍କଳ ସନ୍ତାନଙ୍କ ହସ୍ତରେ । ସେମାନେ ଉଦାସୀନ ହେଲେ ବା ଅତି ସାମାନ୍ୟରେ ପରିତୃପ୍ତ ହୋଇ ରହିଲେ ଆଉ କାହା ଉପରେ କି ଆଶା କରାଯିବ ? ବର୍ତ୍ତମାନ ସକଳ ବିଭାଗରେ ପ୍ରବଳ ସଂଗ୍ରାମର ସମୟ ଏ ଦେଶରେ ଉପସ୍ଥିତ ହୋଇଅଛି । ଆମ୍ଭେମାନେ ସ୍ୱସ୍ଥାନରେ ଅବସ୍ଥିତ ଥାଇ ଆତ୍ମୋନ୍ନତି ସାଧନରେ ଯତ୍ନବାନ୍ ନ ହେଲେ ସର୍ବଦା ସକଳ ବିଷୟରେ ଅବନତ ଓ ଲାଞ୍ଛିତ ହେଉଥିବୁ !

୫ । ନବୀନ ଚିତ୍ରକର ଗଗନ ବାବୁ ।— ବାବୁ ଗଗନବିହାରୀ ଦାସ ବାଲେଶ୍ୱରନିବାସୀ ସୁପ୍ରସିଦ୍ଧ ମହାଜନ ୬/ [illegible]ଚରଣ ଦାସଙ୍କ ପୌତ୍ର । କଳା ବିଦ୍ୟାରେ ଏହାଙ୍କର ସ୍ୱାଭାବିକ ଅନୁରାଗ । ନିସର୍ଗଦତ୍ତ ପ୍ରବୃତ୍ତିଦ୍ୱାରା ଚାଳିତ ହୋଇ ସେ ବାଲ୍ୟକାଳରେ ପୁସ୍ତକ ପାଠଠାରୁ ଚିତ୍ରାଙ୍କନ କାର୍ଯ୍ୟରେ ଅଧିକାଂଶ ସମୟ ଯାପନ କରୁଥିଲେ । ଅବଶେଷରେ କଲିକତା ଆର୍ଟ ସ୍କୁଲରେ ଉପଯୁକ୍ତ ଶିକ୍ଷା ପ୍ରାପ୍ତ ହୋଇ ସୁକୁମାର କଳାବିଦ୍ୟାରେ ବିଶେଷ ନୈପୁଣ୍ୟ ଲାଭ କରି ଅଛନ୍ତି । କଟକର କୃଷି-ଶିଳ୍ପ-ପ୍ରଦର୍ଶନୀ ନିମିତ୍ତ ପ୍ରେରିତ ତାଙ୍କ କୃତ ପାଞ୍ଚ ଖଣ୍ଡି ଚିତ୍ର ଦେଖି ଆମ୍ଭେମାନେ ଅତ୍ୟନ୍ତ ପ୍ରୀତ ଲାଭ କଲୁଁ । ସେଥି ମଧ୍ୟରୁ କାମଣ୍ଡାଧିପତି ମହାରାଜ ଶ୍ରୀଯୁକ୍ତ ସଚଳ ଦେବ କେ. ସି. ଆଇ. ଇ. ମହୋଦୟଙ୍କ ଚିତ୍ର ସର୍ବୋତ୍କୃଷ୍ଟ ହୋଇଅଛି । ଏହାର ପରିମାଣ ୩୦ × ୨୦ ଇଞ୍ଚ । ଗଗନ ବାବୁ ଅଷ୍ଟାଦଶବର୍ଷୀୟ ଯୁବକ । ଆମ୍ଭମାନଙ୍କର ସମ୍ପୂର୍ଣ୍ଣ ଆଶା ଅଛି, ସମୟରେ ସେ କଳା ବିଦ୍ୟାରେ ବିଶେଷ ପ୍ରତିଷ୍ଠା ଲାଭ କରି ପାରିବେ । ଫଟୋଗ୍ରାଫି ସମ୍ବନ୍ଧରେ କଟକର ସାଠିଆ କୋମ୍ପାନୀ ଅନେକ ପରିମାଣରେ କୃତିତ୍ୱ ଲାଭ କରି ଥିବାର ଦେଖି ଆମ୍ଭେମାନେ ବିଶେଷ ଆନନ୍ଦ ଅନୁଭବ କରିଥିଲୁଁ । ବର୍ତ୍ତମାନ ଗଗନ ବାବୁଙ୍କର କୃତିତ୍ୱ ଦେଖି ଅଧିକ ଆନନ୍ଦିତ ହୋଇଅଛୁଁ । ଉତ୍କଳୀୟ ଯୁବକମାନେ ଏହିପରି ଭିନ୍ନ ଭିନ୍ନ ବିଭାଗରେ ପ୍ରବେଶ କରି ଉନ୍ନତି ସାଧନ କଲେ ଉତ୍କଳର ଗୌରବ ବର୍ଦ୍ଧିତ ହେବ । ଆଶା କରୁଁ ଏମାନେ ସାଧାରଣଙ୍କଠାରୁ ସମୁଚିତ ଉତ୍ସାହ ପ୍ରାପ୍ତ ହେବେ ।

୫ ମ ଭାଗ ।                    ୧୧, ୧୨ ଶ ସଂଖ୍ୟା ।

ଫାଲ୍ଗୁନ, ଚୈତ୍ର, ୧୩୦୯ ।




ମାସିକପତ୍ର ଓ ସମାଲୋଚନା ।

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ ।

——✻○✻——

ପ୍ରବନ୍ଧମାନଙ୍କର ମତ ନିମନ୍ତେ ଲେଖକମାନେ ଦାୟୀ ।



CUTTACK:

PRINTED BY V. KAR,

AT THE UTKAL SAHITYA PRESS.

1902.

ବାର୍ଷିକ ମୂଲ୍ୟ ଡାକମାସୁଲ ସମେତ ୮ ୨୧ ଙ୍କା ।

ଆମ୍ଭ ନିକଟରେ ନାନାପ୍ରକାର ପ୍ରୟୋଜନୀୟ ଓଡ଼ିଆ ପୁସ୍ତକ ବିକ୍ରୟାର୍ଥ ପ୍ରସ୍ତୁତ ଅଛି । ମଫସଲର ଲୋକମାନଙ୍କଠାରୁ ଭିଃ ପିଃ ଡାକରେ ପୁସ୍ତକ ପଠାଉଥାଉଁ ।

ନନପଡ଼ା
ସମ୍ବଲପୁର } ଶ୍ରୀ ବୃନ୍ଦାବନ ମିଶ୍ର ।

---

ଗୃହସ୍ଥମାନଙ୍କର ବିଶେଷ ପ୍ରୟୋଜନୀୟ
ନୂତନ ପୁସ୍ତକ ।

# ରନ୍ଧନ ପ୍ରଣାଳୀ ।

ମୂଲ୍ୟ ଟ ୦ ।/

ଏଥିରେ ପ୍ରାୟ ୧୬୦ ପ୍ରକାର ସୁଖାଦ୍ୟ ପାକ କରିବାର ସହଜ ଓ ଉତ୍କୃଷ୍ଟ ପ୍ରଣାଳୀ ସରଳ ଭାଷାରେ ପ୍ରଦତ୍ତ ହୋଇଅଛି ।

କଟକର ସମସ୍ତ ପୁସ୍ତକ ଦୋକାନମାନଙ୍କରେ ଏବଂ ଉତ୍କଳ ସାହିତ୍ୟ ଅଫିସରେ ମିଳେ ।

---

ଶ୍ରୀ ନନ୍ଦକିଶୋର ବଳ ବି, ଏ, ପ୍ରଣୀତ "ପଲ୍ଲୀଚିତ୍ର" (ମୂଲ୍ୟ ଟ ୦ ୵) "ନିର୍ଝରିଣୀ" (ମୂଲ୍ୟ ଟ ୦ ।) "ସୀତାବନବାସ" (ମୂଲ୍ୟ ଟ ୦ ।୵) "କୃଷ୍ଣକୁମାରୀ" (ମୂଲ୍ୟ ଟ ୦ ।୵) ବସନ୍ତକୋକିଳ (ମୂଲ୍ୟ ଟ ୦ ।) ଶିଶୁଚନ୍ଦ୍ର (ମୂଲ୍ୟ ଟ ୦ ।) କଟକର ସମସ୍ତ ବଡ଼ ବଡ଼ ପୁସ୍ତକ ଦୋକାନରେ ଓ ସମ୍ବଲପୁର ନନପଡ଼ାର ଶ୍ରୀ ବୃନ୍ଦାବନ ମିଶ୍ରଙ୍କଠାରେ ମିଳେ ।

---

ଶ୍ରୀ ମଧୁସୂଦନ ରାଓ ଓ ଶ୍ରୀ ମଧୁସୂଦନ ଦାଶଙ୍କ ପ୍ରଣୀତ
ଅଙ୍କପୁସ୍ତକ ( ଦୁଇଭାଗ)

ଶ୍ରୀ ମଧୁସୂଦନ ରାଓଙ୍କ ପ୍ରଣୀତ
ଅଙ୍କପ୍ରଶ୍ନ ସମାଧାନ

ଅଙ୍କପୁସ୍ତକର ୧ ମ ଭାଗ ନିମ୍ନପ୍ରାଇମେରି ସ୍କୁଲ ଓ ଅନ୍ୟ ସ୍କୁଲମାନଙ୍କର ନିମ୍ନ ଶ୍ରେଣୀମାନଙ୍କ ନିମିତ୍ତ,
ମୂଲ୍ୟ— ଟ ୦ ।;

୨ୟ ଭାଗ ଉଚ୍ଚପ୍ରାଇମେରି ଓ ମଧ୍ୟମ ଶ୍ରେଣୀ ସ୍କୁଲମାନଙ୍କ ନିମିତ୍ତ, ମୂଲ୍ୟ ଟ ୦ ୳
ଅଙ୍କପ୍ରଶ୍ନସମାଧାନ ମୂଲ୍ୟ ଟ ୦ ୳

ଏହି ପୁସ୍ତକମାନ ଅନ୍ୟାନ୍ୟ ଗଣିତପୁସ୍ତକମାନଙ୍କ ସଙ୍ଗେ ତୁଳନା କରି ଦେଖନ୍ତୁ ।

କଟକ ନର୍ମାଲ ସ୍କୁଲରେ ଶ୍ରୀ ପ୍ରଶାନ୍ତ ରାଓଙ୍କଠାରେ ଓ କଟକର ପୁସ୍ତକ ଦୋକାନମାନଙ୍କରେ ପ୍ରାପ୍ତବ୍ୟ । ଶ୍ରୀ ପ୍ରଶାନ୍ତ ରାଓଙ୍କଠାରୁ ଏକାବେଳେ ୫ ଖଣ୍ଡ ବା ତତୋଽଧିକ କିଣିଲେ ଟଙ୍କାକେ ଟ ୦ ୵ କମିଶନ ପାଇବେ ।

☞ ଅଙ୍କପୁସ୍ତକରେ ଥିବା କଠିନ ପ୍ରଶ୍ନମାନ ଅଙ୍କପ୍ରଶ୍ନ ସମାଧାନରେ କଷା ଯାଇଅଛି ।

---

ଧାତୁର ଅବ୍ୟର୍ଥ ମହୌଷଧ ।

ମୂଲ୍ୟ ପ୍ରତି ଡବା ଟ ୦ ।୵ ଛ ଅଣା, ମାଶୁଲ ଚାରି ଅଣା । ଜ୍ୱାଲାଯନ୍ତ୍ରଣାବର୍ଜ୍ଜିତ ଆଶୁଫଳଦାୟକ ଧାତୁ ରୋଗର ଏମନ୍ତ ମହୋପକାରୀ ଔଷଧ ଆଜି ଯାଏ ଆଉ ବାହାରି ନାହିଁ । ସହସ୍ର ସହସ୍ର ଧାତୁବ୍ୟାଧିଗ୍ରସ୍ତ ଲୋକ ଆରୋଗ୍ୟ ଲଭି ମୁକ୍ତକଣ୍ଠରେ ଔଷଧର ଗୁଣର ପ୍ରଶଂସା କରୁଅଛନ୍ତି । ଶତ ଶତ ଲୋକଙ୍କ ପ୍ରଶଂସାପତ୍ର ଅଛି ।

ସ୍ପଷ୍ଟରୂପେ ନାମ, ଧାମ, ଡାକଘର, ଜିଲ୍ଲା ଏବଂ କାହାର କେତୋଟି ଡବା ଆବଶ୍ୟକ, ଖଣ୍ଡିଏ ପୋଷ୍ଟକାର୍ଡଦ୍ୱାରା ଜଣାଇବା ମାତ୍ରେ ଔଷଧ ଓ ତାହାର ବ୍ୟବସ୍ଥାପତ୍ର ପ୍ରେରିତ ହୁଏ ।

ପ୍ରାପ୍ତି ସ୍ଥଳ ଶ୍ରୀ ରାମତାରକ ସେନ,
ଦେକ୍ଷ ଦହଳ ପ୍ରେସ, ବାଲେଶ୍ୱର ।

# ଉତ୍କଳ ସାହିତ୍ୟ ।

—:0:—

ପଞ୍ଚମ ଭାଗ ।

୧୩୦୮—୧୩୦୯ ସାଲ ।

ଶ୍ରୀ ବିଶ୍ୱନାଥ କର କର୍ତ୍ତୃକ ସମ୍ପାଦିତ ।



PRINTED AT THE UTKAL SAHITYA TRES…

CUTTACK.

1902.

ବାର୍ଷିକ ମୂଲ୍ୟ ଡାକମାସୁଲ ସହିତ ଟ ୨ ୧

## ସୂଚୀପତ୍ର ।




ବ୍ରିଟିସ ଗଭର୍ଣ୍ଣମେଣ୍ଟଙ୍କର ଆଇନାନୁସାରେ ରେଜେଷ୍ଟରି ହୋଇଅଛି ।

ଏହିପରି ଆଦର୍ଶ "ଟ୍ରେଡ଼ମାର୍କ" ଯେଉଁ ସିସିରେ ସଂଲଗ୍ନ ନାହିଁ ତାହା କୃତ୍ରିମ ଔଷଧ; ଏବଂ ସେହି କୃତ୍ରିମ-କାରୀକୁ ଧରାଇ ଦେଇ ଯେ କେହି ପ୍ରମାଣ କରିପାରିଲେ ପାଞ୍ଚହଜାର ଟଙ୍କା ପୁରସ୍କାର ପାଇବେ ।

ଆମେରିକା ପ୍ରଦେଶସ୍ଥ ନିଉୟର୍କ ନଗରବାସୀ ମହାଯଶା ଡ଼ାକ୍ତର ଜେମସ୍ ମେଜର, ଏମ୍, ଏ, ଏମ୍, ଡି ସାହେବଙ୍କ ଆବିଷ୍କୃତ :—

# ଇଲେକ୍ଟ୍ରୋ ସାଲସା ।

---



ଏପରି ସର୍ବଗୁଣସମ୍ପନ୍ନ ମହୌଷଧ ଇତି-ପୂର୍ବେ କେବେହେଁ ଆବିଷ୍କୃତ ହୋଇ ନାହିଁ । ଏହାର ଗୁଣ ଅସୀମ, କ୍ରିୟା ଅଲୌ-କିକ, ଶକ୍ତି ମନ୍ତ୍ରବତ୍ ଅଦ୍ଭୁତ ! ଯେଉଁ ରୋଗ କୌଣସି ଔଷଧରେ ଆରୋଗ୍ୟ ହୁଅଇ ନାହିଁ, ବିଜ୍ଞ ଚିକିତ୍ସକମାନେ ଯେଉଁ ରୋଗ ଅସାଧ୍ୟ ବୋଲି ନିର୍ଣ୍ଣୟ କରିଅଛନ୍ତି ଏହି ମହୌଷଧ ସେହି ରୋଗରେ ବ୍ରହ୍ମାସ୍ତ୍ର !!!

ଇଲେକ୍‌ଟ୍ରୋ ସାଲସା;—ନବୋଦ୍ଭାବିତ ଉପାୟରେ ରସାୟନିକ ପ୍ରକରଣରେ ତାଡ଼ିତଶକ୍ତି ସଂଯୁକ୍ତ ରହିବାରୁ ଶୀଘ୍ର ମାନବ ଦେହରେ ଏହାର ଆଶ୍ଚର୍ଯ୍ୟ କ୍ରିୟା ପ୍ରକାଶ ପାଏ ଏବଂ ପ୍ରତ୍ୟେକଥର ଔଷଧ ସେବନାନ୍ତେ ମନରେ ହୁଏ ଯେମନ୍ତ ଶରୀରା-ଭ୍ୟନ୍ତରେ କୌଣସି ବୈଦ୍ୟୁତିକ କ୍ରିୟା ଜନ୍ମିଲା ହୋଇଗଲା । ଏହିଠାରେ ଏହାର ଶକ୍ତିମତ୍ତାର ପ୍ରଥମ ପରିଚୟ ! ଅଲୌକିକତାର ପ୍ରଥମ ନିଦର୍ଶନ !!!

ବିଜ୍ଞାନ ଆମ୍ଭମାନଙ୍କୁ ଶିକ୍ଷା ଦେଉଅଛନ୍ତି ଯେ ଚପଳାର ଶରୀରଦତ୍ତ ତେଜୋମୟ ଶକ୍ତିହିଁ ପ୍ରକୃତିର ଜୀବନ । ଚପଳାର ପ୍ରବାହ ବ୍ୟତୀତ ପ୍ରକୃତି ଦେଖି ଯାଇଥାନ୍ତା, ଏପରି ଚପଳାର ଏମନ୍ତ ଶକ୍ତି ଯେ ଔଷଧରେ ସଂଯୋଗ ରହିଅଛି, ତାହା ଯେ ଅଲୌକିକ ଶକ୍ତି ଧାରଣ କରିବ ଏଥିରେ ଆଉ ବିଚିତ୍ର କଣ ?

ପାଶ୍ଚାତ୍ୟ ଶାରୀରତତ୍ତ୍ୱଜ୍ଞ ପଣ୍ଡିତମାନେ ବୋଲନ୍ତି, ବାଲ୍ୟ ଚପଳ୍ୟର ଉଚ୍ଛୃ-ଙ୍ଖଳତାରେ ଓ ସ୍ୱାସ୍ଥ୍ୟରକ୍ଷାର ଅନିୟମରେ ଶରୀରସ୍ଥ ବୈଦ୍ୟୁତିକ ଶକ୍ତିର ହ୍ରାସ ହୋଇ ଧାତୁସମୂହର ବିକୃତ ଘଟେ ଏବଂ ପରିଣାମରେ ରକ୍ତ ଓ ଶୁକ୍ର ସମ୍ବନ୍ଧୀୟ ପୀଡ଼ାର

[illegible] ସେହି ତାପଯାପ ବୈଦ୍ୟୁତିକ ଶକ୍ତିର ମାତ୍ରା ଶରୀରାଭ୍ୟନ୍ତରରେ

ରକ୍ଷା କରିପାରିଲେ ମାନବ ନିରୋଗୀ ଓ ଦୀର୍ଘାୟୁ ହେବାହିଁ ସ୍ୱଭାବିକ । ମାତ୍ର ଔଷଧ ସମଷ୍ଟିଦ୍ୱାରା ସେ ଅଭାବର ସମତା ରକ୍ଷା ହୋଇ ନ ପାରେ । ତଡ଼ିତାର ଶକ୍ତି ସଂଯୋଗ ବ୍ୟତୀତ କୌଣସି ଔଷଧରେ ସେ ଅଭାବ ସମ୍ୟକ୍ ମୋଚନ ହୋଇ ନ ପାରେ, ସେଥିପାଇଁ ପାଶ୍ଚାତ୍ୟ ବୈଜ୍ଞାନିକମାନେ ବହୁ ଗବେଷଣାରେ ପ୍ରଥମେ ଗ୍ୟାଲ-ଭ୍ୟାନିକ ବ୍ୟାଟେରୀ ବା ତାଡ଼ିତଯନ୍ତ୍ର ଅବିଷ୍କାର କରନ୍ତି ଏବଂ ରୋଗୀ ଦେହରେ ତାହାର ବାହ୍ୟିକ ପ୍ରୟୋଗ କରାଇ ବାତ, ପକ୍ଷାଘାତ, ସ୍ନାୟୁଦୌର୍ବଲ୍ୟ ପ୍ରଭୃତି କେତୋଟି ଜଟିଳ ରୋଗ ଆଶୁ ଦମନ କରିବାକୁ ସମର୍ଥ ହୁଅନ୍ତି ; ଫଳରେ ତାହାଙ୍କ କ୍ରିୟା ମଧ୍ୟ ଯେ ଅସ୍ଥାୟୀ ଏ କଥା ଶିକ୍ଷିତ ସମାଜକୁ ଏବେ ଆଉ ବୁଝାଇ ଦେବାକୁ ହେବ ନାହିଁ । ଆଉ ଏହି ବିଂଶଶତାବ୍ଦୀର ପ୍ରାରମ୍ଭରେ ବିଜ୍ଞାନର ମହାପୃଷୀ କ୍ଷମତା-ଦ୍ୱାରା ଡାକ୍ତର ମେଜର ତାଡ଼ିତଶକ୍ତିର ଅଭ୍ୟନ୍ତରିକ ପ୍ରୟୋଗାର୍ଥ ତାହାକୁ ବିବିଧ ଭେଷଜସାର୍ଯ୍ୟରେ ସଂଯୋଗ କରି ଏହି ଅମୋଘ ଔଷଧକୁ ସଜୀବ କରି ଉଠାଇଅଛନ୍ତି ଏବଂ ଶୁକ୍ର ଓ ରକ୍ତ ସମ୍ବନ୍ଧୀୟ ପୀଡ଼ାର ଅବ୍ୟର୍ଥ ଆରୋଗ୍ୟ ସନ୍ଧାନରେ ଚିକିତ୍ସା ଜଗ-ତରେ ନୂତନ ଯୁଗ ଆଣି ଦେଇଅଛନ୍ତି !!!

ଆଉ କାହାକୁହିଁ ଅଯଥା ଓ ଅସ୍ଥାୟୀଗୁଣବିଶିଷ୍ଟ କୃତ୍ରିମ ସାଲସା ବା କୌଣସି ପ୍ରକାର ଔଷଧ ସେବନ କରିବାକୁ ହେବ ନାହିଁ ଆଉ କାହାକୁହିଁ ରୋଗ ଯନ୍ତ୍ରଣା ଭୋଗିବାକୁ ହେବ ନାହିଁ, ଥରେ ଏହି ମହୌଷଧକୁ, ଏହି ମହାଶକ୍ତିକୁ, ଏହି ବୈଦ୍ୟୁତିକ ସଞ୍ଜୀବନୀ "ଇଲେକ୍ଟ୍ରୋ ସାଲସା"କୁ ପରୀକ୍ଷା କରି ଦେଖନ୍ତୁ ସଙ୍ଗେ ସଙ୍ଗେ ଶୁଭଫଳ ଫଳିବ, ଅକର୍ମଣ୍ୟ ଦେହ ପୁଣି କର୍ମକ୍ଷମ ହେବ, ଯୌବନକାଳୋ-ଚିତ ବଳବୀର୍ଯ୍ୟ ଓ ନଷ୍ଟସ୍ୱାସ୍ଥ୍ୟ ପୁଣି ଫେରି ପାଇବ ।

ଇଲେକ୍ଟ୍ରୋ ସାଲସା—ଯେଉଁ ଯେଉଁ ୭୬ ଗୋଟି ଉପାଦାନରେ ପ୍ରସ୍ତୁତ ହୋଇଅଛି ସେ ସବୁ ଏଣ୍ଡିସ୍ ଏବଂ ହିମାଳୟ ପର୍ବତରୁ ଜାତ ଲତା ଓ ଗୁଳ୍ମ । ବହୁ-କାଳର ଶ୍ରମରେ ବହୁଦକ୍ଷ ବୈଜ୍ଞାନିକ ପରୀକ୍ଷାରେ ଓ ବହୁ ଅର୍ଥ ବ୍ୟୟରେ ସେହି ଉଦ୍ଭିଦଗୁଡ଼ିକର ସଂଗ୍ରହ ଓ ତାହାର ସାରାଂଶ ସହିତ ତଡ଼ିତାର ଶକ୍ତି ସଂଯୋଜିତ କରି ମହାନୁଭବ ଭିଷକ୍ ଶ୍ରେଷ୍ଠ ମେଜର ସାହେବ ଏହି ସାଲସା ପ୍ରସ୍ତୁତ କରିଅଛନ୍ତି ଏବଂ ପରୀକ୍ଷାଦ୍ୱାରା ପୃଥିବୀସ୍ଥ ସକଳସଭ୍ୟ ରାଜ୍ୟରେହିଁ ଏହାର ପ୍ରକୃତଗୁଣାବଳୀ ପ୍ରକାଶପାଇଁ ଏହା ଚିକିତ୍ସା ଜଗତରେ ପରମଶରଣରୂପେ ବିରାଜିତ ହେଉଅଛି । ଏହାର କାର୍ଯ୍ୟ ଅମୋଘ କ୍ରିୟାସ୍ଥାୟୀ !! ଏବଂ ଗୁଣରେ ଅମୃତତୁଲ୍ୟ !!!

ଇଲେକ୍ଟ୍ରୋ ସାଲସା—ଦୂଷିତରକ୍ତ ଶୋଧନ କରିବାକୁ, ନୂତନରକ୍ତ ତଥା ସୃଷ୍ଟି କରିବାକୁ, ଦୁର୍ବଳ ଦେହ ସବଳ ଓ ଦୃଢ଼ କରିବାକୁ ଅଦ୍ୱିତୀୟ । ସର୍ବ-ପ୍ରକାର ବାତ ବ୍ୟାଧି, ପକ୍ଷାଘାତ, ଆମବାତ ଉପଦଂଶ, କୁଷ୍ଠ, ଗାତ୍ରକଣ୍ଡୁ, ନାଳିଘା, ଖାଜ୍, ଭଣ୍ଡିପ୍ରାଣ, ପାରା ଗର୍ମିର ଉପଦ୍ରବ (ଗାତ୍ରରେ ଚକା ଚକା ଦାଗ) ହସ୍ତ ପାଦ ଓ ସନ୍ଧି ସବୁର ଫୁଲିବା ଓ ବେଦନା ହସ୍ତ ଓ ପାଦ ତଳରେ ଧଳା ବା କଳା ଚକଟା ଚମଡ଼ା ଦେଇ ଜଳପଡ଼ିବା, ମଥାରୁ ଚୂଳ ଉଠିବା, କୃଶତା, ରକ୍ତହୀନତା, ଶରୀର ଫଟାଫାଟିଆ ପ୍ରଭୃତି ଯାବତୀୟ ରକ୍ତ ସମ୍ବନ୍ଧୀୟ ପୀଡ଼ା ଓ ତଜ୍ଜାତ ଅନ୍ୟାନ୍ୟ ଦୁଷ୍ଟ ଉପସର୍ଗ ଅଚିରେ ଧ୍ୱଂସ କରିବାର ଏପରି ଔଷଧ ଆଉ ନାହିଁ ।

ଇଲେକ୍ଟ୍ରୋ ସାଲସା—ସର୍ବବିଧ ଶୁକ୍ର ପୀଡାର ଏକମାତ୍ର ଅମୋଘ ଔଷଧ । ଅନିୟମ ବା ଅତ୍ୟଧିକ ଇନ୍ଦ୍ରିୟସେବାଜନିତ ଧାତୁ ଦୌର୍ବଲ୍ୟ, ପୁରୁଷତ୍ୱ ହାନି, ଶୁକ୍ର ତାରଲ୍ୟ ମୂତ୍ରନଳୀ ଓ ପୁରୁଷାଙ୍ଗ ମେହ, ସ୍ୱପ୍ନଦୋଷ, ପ୍ରସ୍ରାବ ଜ୍ୱାଳା, ସହବାସ ଅଳ୍ପକ୍ଷଣରେ ବା ପ୍ରକାଶ୍ୟରେ ବୀର୍ଯ୍ୟପତନ, ଅତିରକ୍ତ ପ୍ରସ୍ରାବ, କେଶର ଅକାଳପକ୍ୱତା, ରତିଶକ୍ତି-ହୀନତା, ଧାରଣାଶକ୍ତିର ଅଭାବ, ଶୁକ୍ରକ୍ଷୟଜନିତ ମସ୍ତିଷ୍କ ଘୂରିବା କୋଷ୍ଠବଦ୍ଧତା, ପ୍ରଭୃତି ସର୍ବବିଧ ଶୁକ୍ରଜ ରୋଗ ଓ ଉପସର୍ଗାଦି ଆରୋଗ୍ୟ କରିବାରେ ବ୍ରହ୍ମାସ୍ତ୍ରସ୍ୱରୂପ ।

ଏହାର କେତେକ ମାତ୍ରା ସେବନରେ ଶରୀରରେ ବିଶେଷ ସ୍ଫୂର୍ତ୍ତି ଓ ଶକ୍ତିର ଆଧିକ୍ୟ ଅନୁଭବ କରାଯାଏ । ଅଧିକ ଦିନ ବ୍ୟବହାରରେ ରତିଶକ୍ତିର ସମ୍ପୂର୍ଣ୍ଣ ବିକାଶ ହୁଏ, ଶରୀର ହୃଷ୍ଟପୁଷ୍ଟ ଓ ବଳିଷ୍ଠ ହୁଏ, ଅହିଫେନାଦି ସେବନଜନିତ ଅବସାଦ ଦୂରୀଭୂତ ହୁଏ ।

ଶୁକ୍ର ବା ରକ୍ତ ସମ୍ବନ୍ଧୀୟ ପୀଡ଼ା । ଯେତେ ପୁରାତନ ଯେତେ କଠିନ, ବା ଜଟିଳ ହେଉ ଏହି ମହୌଷଧରେ ତାହା ଆରୋଗ୍ୟ ହେବହିଁ । ଏତେ ଶୀଘ୍ର ଏତେ ସହଜରେ ଓ ସୁଲଭରେ ସ୍ଥାୟୀ ଆରୋଗ୍ୟ ଲାଭର ଏମନ୍ତ ଶକ୍ତିଶାଳୀ ଔଷଧ ଆଉ ନାହିଁ ।

ଇଲେକ୍ଟ୍ରୋ ସାଲସାର ପ୍ରତ୍ୟେକ ମାତ୍ରାହିଁ ଅଶେଷ ଫଳପ୍ରଦ ଓ ହିତକର । ସବଳ ସୁସ୍ଥ ଶରୀରରେ ସେବନ କଲେ କ୍ଷୁଧା ବୃଦ୍ଧି ହୁଏ, କୋଷ୍ଠ ପରିଷ୍କାର ହୁଏ, ଲାବଣ୍ୟ ବଢ଼େ, ପୁରୁଷତ୍ୱ ବୃଦ୍ଧି ହୁଏ ଏବଂ ଶରୀରସ୍ଥ ସପ୍ତଧାତୁର ଉତ୍କର୍ଷସାଧିତ ହୁଏ ।

ବାସ୍ତବରେ ଏମନ୍ତ ଫଳପ୍ରଦ, ଏକାଧାରେ ଏତେ ଅଧିକ ଗୁଣସମ୍ପନ୍ନ ଔଷଧ ଜଗତରେ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇ ନାହିଁ ।

ମୂଲ୍ୟ—ଇଂରାଜୀ, ବଙ୍ଗଳା, ଓଡ଼ିଆ ଭାଷାରେ ବ୍ୟବସ୍ଥାପତ୍ର ସମ୍ବଳିତ ୧ ସପ୍ତାହ ସେବନୋପଯୋଗୀ ପ୍ରତ୍ୟେକ ଶିଶିର ମୂଲ୍ୟ ଟ ୨ ଙ୍କା; ତିନି ଶିଶି ଟ ୫୲; ଛ ଶିଶି ୧୦୲ ; ଡ଼ଜନ ଟ ୨୦ ଙ୍କା; ତିନି ଡ଼ଜନ ଟ ୫୦ ଙ୍କା । ପ୍ୟାକିଂ ଓ ଡାକ ମାଶୁଲ ପ୍ରତ୍ୟେକ ଶିଶି ଟ ୦ ୲ ଅଣା; ତିନି ଶିଶିକୁ ଟ ୦ ୷ ଅଣା; ଛ ଶିଶି ଟ ୧ ଙ୍କା; ଡ଼ଜନ ଟ ୧୷ ଅଣା; ତିନି ଡ଼ଜନ ଟ ୪ ଙ୍କା ।

ମଫସଲବାସୀମାନେ—ଯେ କୌଣସି ଭାଷାରେ ହେଉ ପତ୍ରଦ୍ୱାରା ଆପଣା ଆପଣା ନାମ, ଗ୍ରାମ, ଡ଼ାକଘର, ଜିଲ୍ଲା ଏବଂ କେତେ ଶିଶି ଔଷଧ ଆବଶ୍ୟକ ଲେଖି ପଠାଇଲେ ଭି, ପି, ପାର୍ଶଲ ଯୋଗେ ଔଷଧ ପଠାଇ ନିର୍ଦ୍ଦିଷ୍ଟ ମୂଲ୍ୟ ଆଦାୟ କରୁଁ ।

ଭାରତବର୍ଷର ଏକମାତ୍ର ଏଜେଣ୍ଟ ଓ ପ୍ରୋପ୍ରାଇଟର—

W. MAJOR & Co.
Calcutta.
} ଡବଲିଉ, ମେଜର ଏଣ୍ଡ କୋ,
କଲିକତା ।

TELEGRAPHIC ADDRESS.—"*MAJOR*" *CALCUTTA.*

# ଉତ୍କଳର କାହାଣୀ ।

—o:o—

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ବି. ଏ. ସଂଗୃହୀତ ।

୮୬ ପୃଷ୍ଠାରେ ସମାପ୍ତ—ମୂଲ୍ୟ ଚାରି ଅଣା ।

ଏ ପୁସ୍ତକ କଟକ ବାଲୁବଜାର ଉତ୍କଳ ସାହିତ୍ୟ ଅଫିସ, କଟକର ଅନ୍ୟାନ୍ୟ ପୁସ୍ତକ ଦୋକାନ, ବାଲେଶ୍ୱର ଟ୍ରେନିଂ ସ୍କୁଲର ଶିକ୍ଷକ ଶ୍ରୀ ନାରାୟଣ ମିଶ୍ର, ପୁରୀ ହରଚଣ୍ଡୀ ସାହି ସ୍କୁଲର ହେଡପଣ୍ଡିତ ଶ୍ରୀ କାଶୀନାଥ ମହାପାତ୍ର, ଯାଜପୁର ହାଇ ସ୍କୁଲର ଦ୍ୱିତୀୟ ପଣ୍ଡିତ ଶ୍ରୀ ଗଦାଧର ରଥ, ଭଦ୍ରଖ ହାଇ ସ୍କୁଲର ଦ୍ୱିତୀୟ ପଣ୍ଡିତ ଶ୍ରୀ ମହାଦେବ ମିଶ୍ର, କନପଡ଼ା—ସମ୍ବଲପୁର ଶ୍ରୀ ବୃନ୍ଦାବନ ମିଶ୍ରଙ୍କ ନିକଟରେ ମିଳିବ ।

ଏହି ପୁସ୍ତକ ସମ୍ବନ୍ଧରେ ମତ :—

"ପୁସ୍ତକର ଭାଷା ସରଳ ଏବଂ ହାଟବାଟର ବାଳକମାନେ ସହଜରେ ପଢ଼ି ବୁଝି ପାରିବାର କୌଣସି କଷ୍ଟ ନାହିଁ ।" ଉତ୍କଳଦୀପିକା ।

"ପୁସ୍ତକ ଖଣ୍ଡି ସରଳ ଭାବରେ ଲିଖିତ ହୋଇ ଥିବାରୁ ବାଳକ ବାଳିକା-ମାନଙ୍କ ପକ୍ଷରେ ବିଶେଷ ଉପଯୋଗୀ ହୋଇଅଛି ।" ସମ୍ବଲପୁରହିତୈଷିଣୀ

"Your labours in this direction seem to have borne good fruit. You have done the Uriyas a distinct service."

ଶ୍ରୀଯୁକ୍ତ ପଦ୍ମନାଭ ନାରାୟଣ ଦେବ ସେକଣ୍ଡପ୍ରିନ୍ସ ପାରଳାଖେମିଡି ।

"ଏ ସଂଗ୍ରହ ଓଡ଼ିଆ ଭାଷାର ଖଣ୍ଡେ ଉପାଦେୟ ଗ୍ରନ୍ଥ"

ଶ୍ରୀଯୁକ୍ତ ରାୟ ରାଧାନାଥ ରାୟ ବାହାଦୁର, ସ୍କୁଲ ସମୂହର ଇନସ୍‌ପେକ୍ଟର, ବର୍ଦ୍ଧମାନ ।

"ଦେଖିଲି ଉପଯୁକ୍ତ ହସ୍ତରେ ଉପଯୁକ୍ତ କାର୍ଯ୍ୟ ହୋଇଅଛି । କାହାଣୀଗତ ଭାବ ଏବଂ ଭାଷା ରକ୍ଷା ବିଷୟରେ ସମ୍ପୂର୍ଣ୍ଣରୂପେ କୃତକାର୍ଯ୍ୟ ହୋଇଅଛନ୍ତି" ।

ଶ୍ରୀଯୁକ୍ତ ଫକୀରମୋହନ ସେନାପତି, କଟକ ।

"I am of openion that you have very highly obliged the whole Oria-speaking population by preserving from oblivion a useful branch of traditional literature" ଶ୍ରୀଯୁକ୍ତ ଅଭିରାମଭଞ୍ଜ ଏମ୍. ଏ.

"ଉତ୍କଳ ସାହିତ୍ୟ କ୍ଷେତ୍ରରେ ତୁମ୍ଭ ଦ୍ୱାରା ଗୋଟିଏ ନୂତନ କ୍ଷେତ୍ରକୁ ବାଟ ଫିଟିଲା । ତୁମ୍ଭର ଲେଖା ନୂତନ ପଦ୍ଧତି ଅବଲମ୍ବନ କଲେହେଁ ସେଥିରେ ସଫଳ କୃତିତ୍ୱର ଲକ୍ଷଣ ବିଦ୍ୟମାନ ।" ଶ୍ରୀଯୁକ୍ତ ଚନ୍ଦ୍ରମୋହନ ମହାରଣା ବି, ଏ, ଡେପୁଟୀ ଇନସ୍ପେକ୍ଟର ପୁରୀ

"ଏହା ଉତ୍କଳ ସାହିତ୍ୟ ଭଣ୍ଡାରରେ ଗୋଟିଏ ରତ୍ନ ହୋଇ ରହିଲା ।"

ଶ୍ରୀଯୁକ୍ତ ନନ୍ଦକିଶୋର ବଳ ବି, ଏ, କଟକ ।

"ଏହି ପ୍ରକାର ଭାଷାର ପୁସ୍ତକ ଉତ୍କଳରେ ସର୍ବତ୍ର ପ୍ରଚାରିତ ଓ ଆଦୃତ ହେବା ଆବଶ୍ୟକ । ଏହାଦ୍ୱାରା ଉତ୍କଳରେ ଗୋଟିଏ ଅଭାବ ଦୂର ହୋଇଅଛି ।"

ଶ୍ରୀଯୁକ୍ତ ସଦାଶିବ ବିଦ୍ୟାଭୂଷଣ, ବ୍ରହ୍ମପୁର ଗଞ୍ଜାମ ।

# ଉତ୍କଳ-ସାହିତ୍ୟ ।



ଅପୂର୍ବ ମିଳନ ।
( ଐତିହାସିକ ଉପନ୍ୟାସ । )

ସପ୍ତମ ପରିଚ୍ଛେଦ ।

ଯୋଯୋ ଗ୍ରାମ ।

କେଉଁଝରର କିଛି ଦୂର ପୂର୍ବପ୍ରାନ୍ତ ନିବିଡ଼ ଅରଣ୍ୟ ମଧ୍ୟରେ ଗୋଟିଏ କ୍ଷୁଦ୍ର ଗ୍ରାମ, ନାମ ଯୋଯୋ । ଗ୍ରାମ ମଧ୍ୟରେ କୋଡ଼ିଏ କି ପଚିଶ ଘର ବାସ । ଏମାନେ ଅରଣ୍ୟ ଅନାର୍ଯ୍ୟ ଜାତି, ଭୂୟାଁ, ସାନ୍ତାଳ, କୁମ୍ଭିର କି ଏହିପରି କିଛି ଜାତି ହେବେ । ଗ୍ରାମଟି ପ୍ରାୟ ବୃତ୍ତାକାର, ଘରଗୁଡ଼ିକ କ୍ଷୁଦ୍ର କ୍ଷୁଦ୍ର ପର୍ଣ୍ଣ ଘର ପରି ବିଶୃଙ୍ଖଳ ଭାବରେ ନିର୍ମିତ । ଝାଟିର ବାଡ଼ ମାଟିଲିପା; ବଣଫୁଲ ଲଟା କବାଟ । ଘର ମାପରେ ଦୁଆର, ନଇଁପଡ଼ି ଘର ଭିତରକୁ ପ୍ରବେଶ କରିବାକୁ ହୁଏ । ଗ୍ରାମ ପ୍ରାନ୍ତ ବିପରୀତ ଦୁଇ ପାର୍ଶ୍ୱରେ ଅନ୍ୟ ଅନ୍ୟ ଘରକୁ ଛାଡ଼ି ଦୁଇ ଗୋଟି ଘର, ଅନ୍ୟ ଅନ୍ୟ ଘରଠାରୁ କିଛି ବଡ଼; ଗୋଟିଏ ଧାଙ୍ଗଡ଼ା ଆଉ ଗୋଟିଏ ଧାଙ୍ଗଡ଼ୀ ଘର । ସଭ୍ୟତାଭିମାନୀ ହିନ୍ଦୁ ସମାଜର ପଞ୍ଚ ବର୍ଷୀୟା ବାଳିକାକୁ କନ୍ୟା ଦାନ କରି ସଙ୍ଗେ ସଙ୍ଗେ ଊର୍ଦ୍ଧ୍ୱତନ ସପ୍ତ ପୁରୁଷଙ୍କୁ ସ୍ୱର୍ଗ ରାଜ୍ୟକୁ ଚାଲାଣ ଦେବା ପ୍ରଥା ଏମାନଙ୍କ ମଧ୍ୟରେ ନାହିଁ । ଏମାନେ ପ୍ରକୃତିର ଶିଶୁ, ପ୍ରକୃତିର ଅନୁଶାସନ ଏମାନଙ୍କର ଶାସ୍ତ୍ରବିଧି । କନ୍ୟା କାଳରେ ପନ୍ଦର, ପୁତ୍ର କୋଡ଼ିଏ ବର୍ଷ ପୂର୍ଣ୍ଣ ନ ହେଲେ ବିବାହ ବିଧାନ-ବହିର୍ଭୂତ । ଅବିବାହିତ କନ୍ୟାକୁ ଧାଙ୍ଗଡ଼ୀ, ଅବିବାହିତ ପୁତ୍ରକୁ ଧାଙ୍ଗଡ଼ା ବୋଲାଯାଏ । ଧାଙ୍ଗଡ଼ା ଧାଙ୍ଗଡ଼ୀମାନେ ଆପଣା ଆପଣା ଗୃହମଧ୍ୟରେ ରାତ୍ରି କାଳରେ ଶୟନ କରି ରହିବାର ନିଷେଧ । ସନ୍ଧ୍ୟା ସମୟରେ ସମସ୍ତ ଧାଙ୍ଗଡ଼ା ସମସ୍ତ ଧାଙ୍ଗଡ଼ୀ ପୂର୍ବୋକ୍ତ ଦୁଇ ଘରେ ଶୟନ କରନ୍ତି । ଧାଙ୍ଗଡ଼ୀ ଘରେ ଦୁଇ ଜଣ ବୁଢ଼ୀ, ଧାଙ୍ଗଡ଼ା ଘରେ ଦୁଇଜଣ ବୁଢ଼ା ପ୍ରହରୀ ସ୍ୱରୂପେ ଶୟନ କରନ୍ତି ।

ଅନ୍ୟ ପାର୍ଶ୍ୱରେ ଗ୍ରାମକୁ କିଛି ଦୂର ଛାଡ଼ି ଆଉ ଗୋଟିଏ ଘର । ଅନ୍ୟ ସମସ୍ତ ଗୃହଠାରୁ ବୃହତ ଏବଂ ସୁନ୍ଦର ଲିପାପୋଛା । ଏ ଘରଟା ସବୁ ଦିନେ ଶୂନ୍ୟ ପଡ଼ିଥାଏ; ପ୍ରବାସୀ ମହାଜନ, ବାଟୋଇ କିମ୍ବା ଅନ୍ୟ ଗ୍ରାମରୁ କୁଣିଆ ଆସିଲେ ଏହି ଘରେ ରହନ୍ତି । ଗ୍ରାମର ପଶୁଗଣ ବର୍ଷାକାଳରେ ଏହି ଘରେ ପଶୁ ଅନ୍ତ କରେ ।

ଗ୍ରାମର ଚତୁର୍ଦ୍ଦିଗରେ ଅରଣ୍ୟ, ନିବିଡ଼ ଅରଣ୍ୟ ଶାଳ, ପିଆଶାଳ, ଅଶନ, ଶିଶୁ, ଧଉରା, ଗମ୍ଭାରି, କେନ୍ଦୁ ପ୍ରଭୃତି ବୃହତ ଜାତୀୟ ଏବଂ ଅନ୍ୟାନ୍ୟ ବହୁବିଧ କ୍ଷୁଦ୍ର ବୃହତ ଅଜ୍ଞାତନାମା, ଅଜ୍ଞାତଗୁଣ ଗୁଳ୍ମ, ବଲ୍ଲୀ, ଲତା, ସଳଖଳିକ, କଣ୍ଟକିତ, ଦୀର୍ଘ, ହ୍ରସ୍ୱ ବହୁଧାକାରପତ୍ରବିଶିଷ୍ଟ ଲଗାଲଗି ଛନ୍ଦାଛନ୍ଦି ଲତାମଣ୍ଡିତ, ଲତାଶୂନ୍ୟ ଅଗଣ୍ୟ ବନସ୍ପତିବର୍ଗ ଦିଗନ୍ତପର୍ଯ୍ୟନ୍ତ ବିସ୍ତୃତ । କୌଣସି କୌଣସି ସ୍ଥାନରେ କେବଳ ଶାଳବଣ ବୃହତ ଶାଳବୃକ୍ଷ ପତ୍ର ଶାଖା-ପତ୍ରବିହୀନ ହୋଇ ସରଳ ଭାବରେ ବଢ଼ିଅଛି । ମସ୍ତକ ଉପରେ କେବଳ ପତ୍ରବିଶିଷ୍ଟ ଛତ୍ରାକାର ଶାଖାପ୍ରଶାଖାବିଜଡ଼ିତ ଅନ୍ଧକାରମୟ, ସୂର୍ଯ୍ୟ କିରଣ ପ୍ରବେଶର ଛିଦ୍ର ମାତ୍ର ଶୂନ୍ୟ । ବିଶାଳବପୁ ବୃକ୍ଷଗୁଡ଼ିକ ସମୋଚ୍ଚ ସମାନାନ୍ତର ସ୍ୱଭାବର ସୌନ୍ଦର୍ଯ୍ୟାଧାର ଉଦ୍ୟାନ ସ୍ୱରୂପ ରହିଅଛି । ବୃକ୍ଷତଳଭୂମି ସମତଳ ପରିଷ୍କୃତ —ଦୂର୍ବାଦଳଟି ପର୍ଯ୍ୟନ୍ତ ଅଦୃଶ୍ୟ । ବିସ୍ତୀର୍ଣ୍ଣ

ଶୁଷ୍କ ବୃକ୍ଷପତ୍ର ପତନଦ୍ୱାରା ଭୂମି ଏପରି କୋମଳ ହୋଇଅଛି ଯେ ବିସ୍ତୃତ ସୁପାରି ଉପରେ ଗଲି ଗଲା ପରି ଜଣାଯାଏ । ଶାଳବୃକ୍ଷର ଅତି ଉଚ୍ଚ କ୍ଷୁଦ୍ର ପତ୍ରାବଳୀବିଶିଷ୍ଟ କ୍ଷୁଦ୍ର ଶାଖା ମଧ୍ୟରେ ସୂର୍ଯ୍ୟ ଦେବଙ୍କୁ ଘୋଡ଼ାଇ ଶ୍ୟାମା ଗାନ ଗାଉଅଛି । ସେହି କ୍ଷୁଦ୍ର ପ୍ରାଣୀର କ୍ଷୁଦ୍ରକଣ୍ଠନିଃସୃତ ଶ୍ରବଣ-ମନୋହର ଅଦ୍ଭୁତ ସ୍ୱରଲହରୀ ବହୁଦୂରପର୍ଯ୍ୟନ୍ତ ଅରଣ୍ୟ ମଧ୍ୟରେ ଖେଳି ଯାଇ ଗିରିକନ୍ଦର ମଧ୍ୟରେ ପ୍ରତିଧ୍ୱନିତ ହେଉଅଛି । ସେହି ସମୟରେ ଶ୍ୟାମା-ସୁନ୍ଦରୀ ଛଦ୍ମରୂପ ଏକ ନିଭୃତ ସ୍ଥାନରେ ବସି ସ୍ୱାମିର ସଙ୍ଗୀତକୁ ଅନୁକରଣ କରୁଅଛି । ଶ୍ୟାମାସୁନ୍ଦରୀ ଅପେକ୍ଷା କରି ବସି ଥାଏ, ସ୍ୱାମିର ସଙ୍ଗୀତ ନିବୃତ୍ତ ହେବା ମାତ୍ରକେ ଆପଣାର ତାନଲହରୀଦ୍ୱାରା ବୃକ୍ଷସମୂହକୁ ପରିପୂର୍ଣ୍ଣ କରି ଦିଏ । ଏହିପରି ପ୍ରହରବ୍ୟାପୀ ସଙ୍ଗୀତ ଆଦାନ ପ୍ରଦାନ ଉତ୍ତାରେ ବିହଗଦମ୍ପତି ଉଡ଼ି ଆସି ଏକତ୍ରିତ ହୁଅନ୍ତି । ଅନନ୍ତ ବିଚିତ୍ରକର୍ମୀ ବିଶ୍ୱବିଧାତା ଏହି ନଗଣ୍ୟ କ୍ଷୁଦ୍ର ପ୍ରାଣୀଟିର କଣ୍ଠରେ ଏଡ଼େ ସୁମଧୁର ଏଡ଼େ ଉଚ୍ଚ ସ୍ୱର ପ୍ରଦାନ କରିଅଛନ୍ତି, ଶୁଣିଲେ ମନ ବିମୋହିତ ହୋଇ ଯାଏ । ଶାଳବଣର କୌଣସି କୌଣସି ସ୍ଥାନରେ ବିଚିତ୍ରଦେହ ମୟୂର ଆପଣାର ବିଶ୍ୱବିମୋହନ ବିଧାତୃ-ସୃଷ୍ଟି-ସୌନ୍ଦର୍ଯ୍ୟର ପରାକାଷ୍ଠାରୂପ ଚିତ୍ରମୟ ପୁଚ୍ଛ ଉନ୍ନତ ଓ ବିସ୍ତୃତ ଏବଂ ସମୟ ସମୟରେ କମ୍ପିତ କରାଇ ବିଚିତ୍ର ଭଙ୍ଗିରେ ଚତୁର୍ଦ୍ଦିଗରେ ଘେରି ବୁଲି ଆପଣାର ସୌନ୍ଦର୍ଯ୍ୟଗରିମା ମୟୂରୀକୁ ଦେଖାଉଅଛି । ମୟୂରୀ ମଧ୍ୟ ସେହି ବିମୋହନ ରୂପରେ ବିମୁଗ୍ଧ ହୋଇ ଅନାଇ ରହିଅଛି ।

କୌଣସି କୌଣସି ସ୍ଥାନରେ ଚଞ୍ଚଳସ୍ୱଭାବା ତ୍ରସ୍ତ ଚକିତା ହରିଣୀଯୂଥ ବୃକ୍ଷପତିତ ଶାଳ ଗୋଟାଇ ଖାଉଁ ଖାଉଁ ଚମକି ପଡ଼ି ଚଞ୍ଚଳଭାବରେ ଅନାଉଅଛନ୍ତି, ଶିଶୁଗୁଡ଼ିକ ଘୋଡ଼ାଉଅଛନ୍ତି, କେହି ଦୁଗ୍ଧ ପାନ । କେହି କ୍ଷୁଦ୍ର ତୃଣାଙ୍କୁରଟି ମୁଖରେ ଧରି ନୃତ୍ୟ କରୁଅଛି । ଗ୍ରାମ ନିକଟବର୍ତ୍ତୀ ସ୍ଥାନରେ ଅଭ୍ରଭେଦୀ ଉଚ୍ଚ ପର୍ବତ ନାହିଁ । ମାତ୍ର କ୍ଷୁଦ୍ର ପାହାଡ଼ ଅସଂଖ୍ୟ । ଉତ୍ତର ଏବଂ ପଶ୍ଚିମ ଭାଗରେ ଅନୁଚ୍ଚ କ୍ଷୁଦ୍ର କ୍ଷୁଦ୍ର ଖଣ୍ଡଶୈଳମାଳ ପରିପୂର୍ଣ୍ଣ, ଛଡ଼ାଛଡ଼ି ଲଗାଲଗି ପର୍ବତ, ପର୍ବତ ଉପରେ ପର୍ବତ, ଅସଂଖ୍ୟ ପର୍ବତମାଳା ବହୁଦୂର ପର୍ଯ୍ୟନ୍ତ ବ୍ୟାପ୍ତ ହୋଇ ରହିଅଛି । ପର୍ବତ ଖୋଲମାନ କଣ୍ଟକବଣ ଝଣ୍ଟି ନାନାପ୍ରକାର ଜଟିଳ ଲତା ଗୁଳ୍ମ ଏବଂ ନିବିଡ଼ ବୃକ୍ଷରେ ପୂର୍ଣ୍ଣ । ଦିବା ନିଶି ଅନ୍ଧକାରମୟ; ମନୁଷ୍ୟ ମାନଙ୍କର ଅଗମ୍ୟ; ବନ୍ୟ ବରାହ, ଭଲ୍ଲୁକ, ହିଂସ୍ର ପ୍ରଭୃତିଙ୍କ ଆଗମନ ହେତୁ ଏବଂ ସୁଦୃଢ଼ ଆଗାର । ଗ୍ରାମର ଉତ୍ତର ଦିଗରେ ସ୍ୱଚ୍ଛତୋୟା ସାନନୀ ନଦୀ ଲଜ୍ଜାଶୀଳା କୁଳବଧୂ ରମଣୀ ପରି ବୃକ୍ଷଲତା ମଧ୍ୟରେ ଦେହକୁ ଘୋଡ଼ାଇ କଳ କଳ ଶବ୍ଦ କରି କୁଟିଳା ଭୁଜଙ୍ଗୀ ସମାନ ପ୍ରବାହିତା । ସୋସୋ ଅନ୍ୟାନ୍ୟ ଗ୍ରାମଠାରୁ ବହୁଦୂରବିଚ୍ଛିନ୍ନ, ଏଥିରୁ ବିଦେଶୀପ୍ରସମାଗମ ବିରଳ । ଗ୍ରାମବାସିମାନେ ରଜାର ପ୍ରଜା କମ୍ପା ସାନ୍ତର ଖାଜନା ଦିଅନ୍ତି । ଏମାନଙ୍କର କୌଣସି ବିଷୟର ଅଭାବ ନାହିଁ, ଜୀବନର ଅବଲମ୍ବନ ଟୁଙ୍ଗା, କତିବା, ମଟିଆ, ମହୁଲ, ସଳପ, ବେଲ, ଆମ୍ବ ଅକ୍ଷୟ ଭଣ୍ଡାର-ରୂପେ ରହିଅଛି । ହେଲେ ମହୁଲ ସଳପ ଏହି ଦୁଇଟି ବୃକ୍ଷ ମହାମୂଲ୍ୟ; କାରଣ, ଏହା ଖାଦ୍ୟ ଏବଂ ଏଥିରେ ହାଣ୍ଡିଆ ପ୍ରସ୍ତୁତ ହୁଏ । ଏହି ବୃକ୍ଷଗୁଡ଼ିକ ଗ୍ରାମବାସିମାନଙ୍କ ମଧ୍ୟରେ ବଣ୍ଟା, ଆପଣା ଆପଣା ବୃକ୍ଷ ସମସ୍ତେ ପୁତ୍ରପୌତ୍ରାଦିକ୍ରମେ ଭୋଗ ଦଖଲ କରନ୍ତି । ଗ୍ରୀଷ୍ମ ଏବଂ ବସନ୍ତ ଋତୁରେ ଦୁଇ ଏଗୋଟି ପଞ୍ଜାବଦେଶୀ ମହାଜନ ଗ୍ରାମକୁ ଆସନ୍ତି, ସେମାନେ ଚର୍ମ ହରିଣ ଶିଙ୍ଗ ମହୁ ମହଣ ନେଇ ବଦଳରେ ଲୁଣ ଲୁଗା ଧୂଆଁପତ୍ର ଦେଇ ଯାନ୍ତି । ଗ୍ରାମର ଜଳ ଜଙ୍ଗଲ, ମହୁଲସଳପବୃକ୍ଷପଟ୍ଟିକ ଦେହାନ ସାମଲା ସମସ୍ତ ଗ୍ରାମର ପରଗଣା ବୁଝା ସୁଝା କରେ । ପରଗଣା ଆଜ୍ଞା ସମସ୍ତଙ୍କ ଶିରୋଧାର୍ଯ୍ୟ । ପରଗଣା ଅଙ୍କା ଅସାମାନ୍ୟକାର୍ଯ୍ୟପ୍ରଭ ପ୍ରହାରଦଣ୍ଡ ବଧ,

ଗୁରୁତର ଅପରାଧୀମାନଙ୍କ ଦଣ୍ଡ ଗ୍ରାମରୁ ନିର୍ବାସନ। ବର୍ତ୍ତମାନ ପରଗଣାର ନାମ ମୃତ୍ୟୁରୁ ମାଳି ।

ଶୀତ ଗ୍ରୀଷ୍ମ ମାସ ଗ୍ରାମର କୌଣସି ଲୋକ ଘରେ ରହନ୍ତି ନାହିଁ, ପୂର୍ବକଥିତ ଶାଳବଣ ମଧ୍ୟରେ ବୃକ୍ଷତଳରେ କେତେ ଗଦା ଧୂନି ଜାଳି ଦେଇ ତାହା ମଧ୍ୟରେ ରହନ୍ତି । ସମସ୍ତ ପୁରୁଷ ଏକ ପାଖରେ, ସମସ୍ତ ସ୍ତ୍ରୀ ଅନ୍ୟ ପାଖରେ ରହିବା ବିଧି । ଗୃହ ବନାଇବା ପୁରୁଷମାନଙ୍କର କାର୍ଯ୍ୟ, ସ୍ତ୍ରୀମାନଙ୍କ କାର୍ଯ୍ୟ ନୃତ୍ୟ ଏବଂ ସଙ୍ଗୀତ । ଅନନ୍ତ ଆନନ୍ଦରେ ରାତି ପାହି ଯାଏ ।

ଅଭାବ ନାହିଁ, ଅଭିଯୋଗ ନାହିଁ, ଚିନ୍ତା ନାହିଁ, ଭାବନା ନାହିଁ. ପରମସୁଖରେ ଦିନ ଉତ୍ତାରେ ରାତି, ରାତି ଉତ୍ତାରେ ଦିନ ଯାଉଅଛି । କେବଳେ ରଜା ହେଉ ପ୍ରଜା ହେଉ, ଧନୀ ହେଉ ଦରିଦ୍ର ହେଉ, ରୋଗଗ୍ରସ୍ତ ହେଉ ସୁସ୍ଥ ଶରୀର ହେଉ, କାହାର ଅବସ୍ଥା ସ୍ଥାୟୀ ନୁହେ; ପରିବର୍ତ୍ତନଶୀଳ ଜଗତରେ ଭବିଷ୍ୟ ରୂପାନ୍ତର ଘଟୁଅଛି । ସୋସୋଗ୍ରାମର ଅଧିମ ନିବାସିମାନଙ୍କ ଉପରେ ଅଭାବନୀୟ ବିପତ୍ପାତ, ବାସସ୍ଥାନ ପରିତ୍ୟାଗ କରି ସମସ୍ତେ ନିବିଡ଼ ଅରଣ୍ୟକୁ ପଳାଇ ଯାଇଅଛନ୍ତି । ଦୈବାତ୍ କେଉଁ ଦେଶରୁ ପ୍ରାୟ ତିନି ଶତ ଭୁର୍କି, ପ୍ରାୟ ପାଞ୍ଚ ଶତ ପଞ୍ଚହତ୍ୟାରିବନ ଖଣ୍ଡାଏତ ପାଇକ ଆସି ଗ୍ରାମ ମଧ୍ୟ ଅଧିକାର କରି ବସିଅଛନ୍ତି । ଗୃହନିର୍ମାଣୋପଯୋଗୀ ଉପକରଣର ଅଭାବ ନାହିଁ, ବନ୍ୟ ଲୋକମାନଙ୍କ ଗୃହ ଭାଙ୍ଗି ଦେଇ ହିନ୍ଦୁ ଭୁର୍କି ସ୍ୱତନ୍ତ୍ର ଗ୍ରାମ ବସାଇଅଛନ୍ତି ।

---

## ଅଷ୍ଟମ ପରିଚ୍ଛେଦ ।

### ନାଗା ଜମାଏତ ।

ଅଜ୍ ସୋସୋ ଗ୍ରାମରେ ଭାରି ନାଚ, ନାଗା ଜମାଏତ ପଡ଼ିଅଛନ୍ତି । ନ ଜଣ ନାଗା, ଜଣେ ମହନ୍ତ । ନାଗାମାନଙ୍କର ଲମ୍ବ ମୁଞ୍ଚ, ବକ୍ଷଃ-ଅବରଣକାରୀ ବିଶାଳ ଶ୍ମଶ୍ରୁ, ବର ଓଁର ପର ବୋଝେ ବୋଝେ ଜଟା ପିଠି ଘୋଡ଼ାଇ ପକାଇ ଅଛି । ସମସ୍ତେ ବଳିଷ୍ଠ, କେଶକ୍ଲେଶ ବୀରତ୍ୱ-ବ୍ୟଞ୍ଜକ । ବିଭୂତିଭୂଷଣ, କେହି ସନ୍ଧାନୀ ଲୋକ ନିରୀକ୍ଷଣ କରି ଦେଖିଲେ ସମସ୍ତଙ୍କ ଦେହରେ ଅସ୍ତ୍ରାଘାତର ଚିହ୍ନ ଦେଖନ୍ତା । ସଙ୍ଗରେ ମୃଗଛାଲ, ଗୋଟିଏ ଗୋଟିଏ ଚିମଟା ଏବଂ ତ୍ରିଶୂଳ, ଦଶ ଜଣଙ୍କର ଦଶ ଗୋଟି ଭଟ୍ଟୁ । ଶାଳ ବଣ ମଧ୍ୟରେ ଧୂନି ଜଗାଇ ବସିଅଛନ୍ତି । ଗ୍ରାମବାସିମାନେ ସାଧୁ ସେବାରେ ବ୍ୟସ୍ତ; ଅଧିକ ବ୍ୟସ୍ତ ପିଲାମାନେ, ଭୁଖାଁରେ ପାତି ଧରି ଗ୍ରାମ ମଣ୍ଡି ଦାଣ୍ଡରେ ଧାଁ ଦୌଡ଼ କରୁଅଛନ୍ତି । ପ୍ରଥମ ଦିନ ରାତିରେ ସାଧୁମାନେ ପ୍ରସାଦ ସେବା କରି ଅବା ଖାନା ଖାଇ ବିଶ୍ରାମ କରିଥିଲେ । ଦ୍ୱିତୀୟ ଦିନ ପ୍ରାତଃକାଳରେ ସାଧୁ ଦଶ ଜଣ ଏବଂ ଗ୍ରାମର ପ୍ରଧାନ ପ୍ରଧାନ ଭୁର୍କି ଏବଂ ଖଣ୍ଡାଏତ ଗୋଟିଏ ବୃହତ୍ ଶାଳଗଛମୂଳରେ ବସିଅଛନ୍ତି । ଚତୁର୍ଦ୍ଦିଗରେ ପାଇକ ପହରା, ନିର୍ଜ୍ଜନ ବନରେ ପ୍ରୟୋଜନ ନାହିଁ, ତଥାପି ପହରା । ନାଗାମାନଙ୍କ ମୁଣ୍ଡ ଲମ୍ବା—ଜଟା ସମସ୍ତ ଧୂଳିସାରି ହେଲାଣି । ସେମାନଙ୍କ କଥୋପକଥନ ବିଶେଷ ଅନୁସନ୍ଧାନଦ୍ୱାରା ଯାହା ଆମ୍ଭମାନଙ୍କ ଜ୍ଞାନଗୋଚର ହୋଇଥିଲା, ସଂକ୍ଷେପରେ ପ୍ରକାଶ କରୁଅଛୁଁ ।

ଗ୍ରାମର ପ୍ରଧାନ ଭୁର୍କି ମୀର କାଶିମ ପଚାରିଲେ, ବର୍ତ୍ତମାନ ବାଟ ବନ୍ଦ, ଆପଣମାନେ କପରି ଆଇଲେ ? ମହନ୍ତବେଶୀ କହିଲେ—ଆରେ ଚୋ—ବା, ଆସିବାର କି ବାଟ ଅଛି? ବାଲେଶ୍ୱର ବନ୍ଦରଠାରୁ ମେଦନୀପୁର ପର୍ଯ୍ୟନ୍ତ ବାଟରେ ମରହଟ୍ଟା ପାଇକ ପୂରି ରହିଅଛନ୍ତି । ସ୍ଥାନେ ସ୍ଥାନେ ଘାଟି, ସ୍ଥାନେ ସ୍ଥାନେ ଖଟି । ବାଟୋଇ କଥା ଛାଡ଼, ତୀର୍ଥଯାତ୍ରିମାନଙ୍କର ମଧ ବାଟ ପଡ଼ି ଗଲାଣି ।

ମୀର କାଶିମ—ଆପଣ କପରି ଆସିଲେ ?

ମହନ୍ତ—ହିନ୍ଦୁ ନାଗା ସନ୍ନ୍ୟାସିମାନଙ୍କୁ ପାଇକେ ସମ୍ମାନ କରନ୍ତି, ସେଥି ସକାଶେ ମାନେ ଏହି ବେଶ ଧରି ଆସିଅଛୁଁ ।

ମୀର କାଶିମ—ଶୁଣାଯାଏ ନାଗା ସନ୍ନ୍ୟାସିମାନେ ଗ୍ରାମକୁ ଗ୍ରାମ ଲୁଟ ପାଟ କରି ନେଉଅଛନ୍ତି, ସେମାନଙ୍କ ଉତ୍ପାତରେ ପ୍ରଜାମାନେ ଅସ୍ଥିର ।

ମହାନ୍ତ—ପ୍ରକୃତ ହିନ୍ଦୁ ଧାର୍ମିକ ନାଗା ସନ୍ନ୍ୟାସୀ ବର୍ତ୍ତମାନ ଏ ଦେଶରେ ନାହାନ୍ତି । ଡକାଏତମାନେ ନାଗା ସାଜି ଦେଶ ଉଜାଡ଼ କରୁଅଛନ୍ତି । ମରହଟ୍ଟାମାନଙ୍କ ହାତରୁ ଯେ ସମସ୍ତ ଗ୍ରାମ ରକ୍ଷା ପାଇଥିଲା, ନାଗାମାନେ ସେ ସମସ୍ତ ପଡ଼ିଆ କରି ଦେଲେଣି । ଆପଣ ଶୁଣିଥିବେ, ସେମାନେ ପିଣ୍ଡାରୀ ଜାତି ଏବଂ ବୁନ୍ଦେଲଖଣ୍ଡବାସୀ; ବଙ୍ଗଦେଶରୁ ସେମାନଙ୍କୁ ତଡ଼ି ଦେବା ନିମନ୍ତେ ହଜରତ ଅଲି-ବର୍ଦ୍ଦି ଖାଁ ଏକ ଫୌଜ କାଏମ କରିଅଛନ୍ତି ।

ମୀର କାସିମ—ମରହଟ୍ଟାମାନେ ଓଡ଼ିଶାରେ ଆପଣାକୁ ରଜା ବୋଲି ପରିଚୟ ଦେଉଅଛନ୍ତି, ତେବେ ଡକାଏତ ତଡ଼ୁ ନାହାନ୍ତି କିଂ୍ୟା ?

ମହାନ୍ତ—ଆହା ଅକବର ! "ପରେସ୍ଥିକା ମାଲ ଲିଅ ଲେଗ, କ୍ୟା ନୋକସାନ୍ ତେରା ମେରା ।" ଏମାନେ ଯେ ଆପେ ଡକାଇତର ଗୋସେଇଁ ବାପ ! ଆପେ ଲୁଟକାରଜରେ ଲାଗିଅଛନ୍ତି, ଡକାଇତ ତଡ଼ିବାର ବେଳ କାହିଁ ?

ମୀର କାସିମ—ବାଲେଶ୍ୱର ବନ୍ଦରର ହାଲ କଣ ?

ମହନ୍ତ—ଅମ୍ଭେମାନେ ପଟ୍ଟାଶପୁର ମଧରେ ପଶି ଝାଡ଼ି ବାଟେ ଆଇଲୁଁ; ମାତ୍ର ବାଲେଶ୍ୱର ବନ୍ଦର ବାଟେ ଯିବାକୁ ହେବ, ଫୌଜଙ୍କୁ ଆଗେ ବାଟର ହାଲ ଜାଣିବା ଦରକାର । ସମସ୍ତ ଦୋସ୍ତ ଖଣ୍ଡାଏତ କି ଆପଣଙ୍କ ସଙ୍ଗରେ ଆସିଅଛନ୍ତି ?

ମୀର କାଶିମ—ନା, ମୁଷ୍ଟିଏ ମୁଷ୍ଟିଏ କେତେ ଲୋକ ଆସିଅଛନ୍ତି, ଆଉ ସମସ୍ତ ଖଣ୍ଡାଏତ ଚତୁର୍ଦ୍ଦିଗରେ ବୁଣି ପଡ଼ିଅଛନ୍ତି, ଥୋକେ ଜାତି ଭିନ୍ନ କରାଇ ପଳାଇ ଦେଇ କଷ୍ଟରେ ଆପଣା ଘରେ ରହିଅଛନ୍ତି ।

କାଶିମ—ମୁରଶିଦାବାଦର ହାଲ କଣ ?

—ହଜରତ ନବାବ ସାହେବଙ୍କ ପର- ସମସ୍ତ ଜୁଅକଫ୍ ହେବେ ।

ମହାନ୍ତ ଆପଣା ଝୁଲି ମଧରୁ ନବାବ ସାହେବଙ୍କ ଦସ୍ତଖତ ମୋହରଯୁକ୍ତ ପରୱାନା ବାହାର କରି ମୀର କାଶିମ ହାତରେ ଦେଲେ । ପରୱାନା ପାରସ୍ୟ ଭାଷାରେ ଲେଖା, ଉତ୍କଳ ଭାଷାରେ ତର୍ଜମା କରି ଖଣ୍ଡାଏତମାନଙ୍କୁ ଶୁଣାଇ ଦିଆଗଲା । ଖୋଦ ମୀର କାଶିମ ପରୱାନା ପାଠ କଲେ । ତାହାର ମର୍ମ—

ମେହେରବାନ୍ ଦୋସ୍ତାନ୍ ଫୌଜଦାର ସେକ୍
ମୀର୍ କାଶିମ୍

ତକ୍ତ ବନ୍ଦର ବାଲେଶ୍ୱର, ସୁଲମହଲ !

ଯେହେତୁ ହରକରା ମାରଫତ ତୁମ୍ଭ ଅର୍ଜି ପହଞ୍ଚି ପେଶ୍ ହେବାରୁ ସମସ୍ତ ହାଲ ଜାହେର ହେଲା । ଭାସ୍କର ପଣ୍ଡିତ ଜୁଲମରେ ତୁମ୍ଭେ ଆପଣା ଏଲାକା ଛାଡ଼ି କେଉଁଝର ଜଙ୍ଗଲ ତରଫକୁ ଚାଲି ଯାଇଅଛ । ତୁସମନ୍ ବର୍ତ୍ତମାନ ଛାଉଣି କରି ଉକ୍ତ ମୋକାମରେ ରହିଅଛି । ତୁସମନକୁ ଜବଦ କରିବା ସକାଶେ ଏହି ରମଜାନ ମାସର ଆଖର ଇଦ ପର୍ବର ତେସରା ରୋଜ ଖୋଦ୍ ସର୍କାର୍ ଫୌଜ ହମରାଏ ମୁରଶିଦାବାଦଠାରୁ ରମାନା ହେବେ । ତୁମ୍ଭକୁ ମୁନାସବ୍ କି ହିସାବ ମୁତାବକ ସରକାର ଫୌଜ ବାଲେଶ୍ୱର ବନ୍ଦର ଉତ୍ତର ତରଫ ପୁଲାର ନଦୀ ନକଟ ହାଜର ହେବାର ପସନ୍ଦ କରି ତୁମ୍ଭେ ଝାଡ଼ି ରାହାରେ ପୁସିଦା ମାଫିକ ଆସି ରାସ୍ତବଣିଆ କନ୍ଥାର ମାଲନ୍ ସରକାର ତରଫ ଦୋସ୍ତ ରାସ୍ତ ରାଜବ ରାସ୍ତପ୍ରସିଂହ ବୈଷ୍ଣଗଞ୍ଜନ ଜଗଦେବ ମାନ୍ଧାତାଙ୍କ ଫୌଜ ସାମିଲ ହେବ । ଏ ମାହାର ପରୱାନା ମାନ୍ଧାତା ନୌସ୍ତଫଠାରୁ ମଧ୍ୟ ଦେଲା ଗଲା । ଏହି ପର-ୱାନାବାହକ ଛଦ୍ମବେଶଧାରୀ ସେକ୍ ସମସର ଖାଁ ଜଣେ ଭାରି ଜଙ୍ଗୀ ହୁସିଆର ସରକାର ଖ୍ୟାତମନ୍ଦ୍ ଲୋକ ଅଟନ୍ତି । ଏହାଙ୍କ ଜବାନରୁ ଅନ୍ୟ ଆଉ ହାଲ ଜଅକଫ୍ ହେବ । ଇତି ।

ସନ ୧୧୪୮ ରମଜାନ ମହିନା ତେସରରୋଜ ଫୀର, ତକ୍ତ ମୁର୍ଶିଦାବାଦ ।

ପରଓଅନାରୁ ଜଣା ଗଲା, ଛଦ୍ମବେଶୀ ମହନ୍ତଙ୍କ ନାମ ସେକ୍ ସମସର ଖାଁ ଏବଂ ସେ ଜଣେ ହଜାରୀ ମନସବଦାର ।

ଅତଃପର ବାଲେଶ୍ୱର ବନ୍ଦରର ଅବସ୍ଥା ଏବଂ ମରହଟ୍ଟାଙ୍କ ଗତିବିଧି ତଦନ୍ତ ନିମନ୍ତେ ଛଦ୍ମବେଶି ନାଗାମାନେ ସୋରୋ ଗ୍ରାମରୁ ବିଦାୟ ଗ୍ରହଣ କରି ଭଦ୍ରକ ହବେଲି ମାର୍ଗରେ ବାଲେଶ୍ୱର ବନ୍ଦର ଦିଗକୁ ଯାତ୍ରା କରି ଗଲେ ।

---

ନବମ ପରିଚ୍ଛେଦ ।

ଫୌଜ କୁଚ ।

ବର୍ଗୀ ସହିତ ଯୁଦ୍ଧ, ନବାବ ସାହେବ ଇତିପୂର୍ବେ ସର୍ବତ୍ର ଘୋଷଣା କରିଅଛନ୍ତି । ଇଦ ପର୍ବ ଦିବସର ସେଜ ନବାବ ଅଲିବର୍ଦ୍ଦି ଖାଁ ପ୍ରାତଃକାଳରେ ଉଜୀର, ଫୌଜଦାର, ପେସ୍କାର, ମନସବଦାର, କାରକୁନ ସମସ୍ତ କର୍ମଚାରୀଙ୍କୁ ସେନ ଉକ୍ତ ନିତ୍ତରେ ଜୁମା ମସଜିଦରେ ନମାଜ ପଢ଼ିଲେ । ତହିଁ ଉତ୍ତାରେ ଯୁଦ୍ଧଯାତ୍ରା । ବିଶେଷ ଆଡ଼ମ୍ବର ସହିତ ନବାବସାହେବ ବାହାରିଅଛନ୍ତି; ଏପରି ସୈନ୍ୟସମାଗମ, ଏପରି ଆଡ଼ମ୍ବର ମୁର୍ଶିଦାବାଦରେ କେବେ ଦେଖା ନ ଥିଲା । ନବାବଙ୍କ ନିଜ ସରକାରୀ ଫୌଜ ଛଡ଼ା ଅନ୍ୟାନ୍ୟ ଫୌଜ ମଧ୍ୟ ମିଶିଅଛନ୍ତି । ମରହଟ୍ଟା ସାଧାରଣର ଶତ୍ରୁ, ସେମାନଙ୍କ ବିନାଶକଳ୍ପେ ସମସ୍ତେ ଯତ୍ନଶୀଳ । ପୂର୍ଣ୍ଣିଅର ନବାବ ଶଉକତ ଜଙ୍ଗ, ନବଦ୍ୱୀପର ମହାରାଜ କୃଷ୍ଣଚନ୍ଦ୍ର, ରାମ୍ପୂ ରାପ୍ପା, ବର୍ଦ୍ଧମାନର ମହାରାଜ ଅପଛାପ୍ ଚାନ୍ଦ, ସମସ୍ତେ ଉପଯାଚକ ହୋଇ ସ୍ୱ ସ୍ୱ ସୈନ୍ୟ ପ୍ରେରଣ କରିଅଛନ୍ତି । ଜଗତ୍ ଶେଠଙ୍କ ଦୁଇ ହଜାର ସୈନ୍ୟ ମଧ୍ୟ ମିଳିଛି । ସେନାପତି ମୀର୍ ଜାଫର ଖାଁ ନବାବ ସାହେବଙ୍କ ନିକଟରେ ସୈନ୍ୟ ସଂଖ୍ୟାର ଏହିପରି ହିସାବ ଦାଖଲ କରିଥିଲେ;—ପଦୃଦଲ ଜଙ୍ଗୀ ପଞ୍ଚାଶ ହଜାର, ଘୋଡ଼ସବାର ତିରିଶ ହଜାର, ଗୋଲନ୍ଦାଜ ଦୁଇ ହଜାର, ଢାଲୀ ତର୍ବ୍ବାଦାର ବରକନ୍ଦାଜ ଚାରି ହଜାର, ଗାଏ ଛପ୍ପନି ହଜାର । ଏମାନଙ୍କ ସଙ୍ଗେ ଥିବା ଲସ୍କର ପ୍ରାୟ ପଞ୍ଚାଶ ହଜାର । ଫୌଜ କୁଚ ପୂର୍ବ ଦିନ ପ୍ରାତଃକାଳରେ ଏକ ହଜାର ମନସବଦାର ସେନ ଉନାଏତ ହୋସେନ ଅପଣା ତାବେଦାର ଫୌଜ ପାଞ୍ଚ ହଜାର ଲସ୍କର ସେନ ରଖାନା ହୋଇଅଛନ୍ତି । ଏହାର ନାମ ଅଗାଡ଼ି ଫୌଜ ଏହି ଫୌଜ ସଙ୍ଗରେ କୋଡ଼ି, କାଙ୍କି, ଖଣତି, ଦା, କଟୁରି, ବାଶି, ବଟାଲୀ, କରତ ପ୍ରଭୃତି ଅସ୍ତ୍ରମାନ ଧରି ମୂଲିଆ କମାର ବଢ଼େଇ ମାନେ ଚାଲିଅଛନ୍ତି । ମୂଳ ସୈନ୍ୟମାନଙ୍କ ଯାତ୍ରାର ସୁବିଧା ନିମନ୍ତେ ବଣ ଜଙ୍ଗଲ କାଟି ବାଟ ପରିଷ୍କାର କରିବା ଏବଂ ତୋପ ଶଗଡ଼ ରସଦ ଶଗଡ଼ ଯିବାର ସୁବିଧା ସକାଶେ ଖାଲ ଢିପ ହାଣି ସମତଳ କରିଦେବ ଏବଂ ଜଳ ସୁବିଧା ଦେଖି ଡେରା ପଡ଼ିବାର ସ୍ଥାନ ନିରୂପଣ ଓ ସ୍ଥାନ ପରିଷ୍କାର କରିବା ଅଗାଡ଼ି ଫୌଜର କାର୍ଯ୍ୟ । ମାର୍ଗ ସମ୍ମୁଖ ଏବଂ ଦୁଇପାର୍ଶ୍ୱ କେତେକ କୋଶ ପର୍ଯ୍ୟନ୍ତ ଦୁସମନର ଗତି ବିଧିର ସମ୍ବାଦ ପ୍ରଧାନ ସେନାପତିଙ୍କ ନିକଟକୁ ପ୍ରେରଣ କରିବା ମଧ୍ୟ ଅଗାଡ଼ି ଫୌଜଙ୍କର ବିଶେଷ ଗୋଟିଏ କାର୍ଯ୍ୟ ସ୍ୱରୂପ ନିରୂପିତ ଥିଲା । ଏହି କାର୍ଯ୍ୟ ସାଧନ ନିମନ୍ତେ ତାଙ୍କ ନିକଟରେ ଅନେକଗୁଡ଼ିଏ ସ୍ତ୍ରୀ ପୁରୁଷ ଗୋଇନ୍ଦା ଥାନ୍ତି । ସେହି ଗୋଇନ୍ଦାମାନେ ଯୋଗୀ, ସନ୍ନ୍ୟାସୀ, ଭିଖାରୀ, ମହାଜନ, ତୀର୍ଥଯାତ୍ରୀ, ବୈଷ୍ଣବୀ, ଭିଖାରୁଣୀ, ବାଜୀକର, ଟୋକୁଟେଇ ପ୍ରଭୃତି ବେଶରେ ଭ୍ରମଣ କରି ବିପକ୍ଷ ପକ୍ଷର ସମ୍ବାଦ ସଂଗ୍ରହ କରନ୍ତି ।

ଜୁମା ମସଜିଦ ନମାଜ ଅଖେର ଉତ୍ତାରେ ରଣବାଦ୍ୟ ବଜାଇ ସୈନ୍ୟ କୁଚ ଆରମ୍ଭ ହେଲେ । ଅର୍ଦ୍ଧଚନ୍ଦ୍ରାଙ୍କିତ ପତାକା ଅନୁସରଣ କରି ସୈନ୍ୟ ଶ୍ରେଣୀ ଚାଲିଅଛନ୍ତି । ସର୍ବାଗ୍ରେ ବେ ତାଙ୍କ ପଶ୍ଚାତ୍ ପଦୃଦଲ ଫୌଜ, ସବାର ସୈନ୍ୟ ଚାଲିଅଛନ୍ତି । ସର୍ବା ଭାଗରେ ପାରିଷଦବେଷ୍ଟିତ ବଙ୍ଗ,

ଏଡ଼ଗାର ମୋଦ୍ ନବାବ ଅଲିବର୍ଦ୍ଦି ଖାଁ, ସଙ୍ଗରେ ନବାବଙ୍କ କାଟ ସିରାଜ ଉଦ୍ଦୌଲା । ନବାବ ବାହାଦୂର ଏକ ବିଶାଳକାୟ ବିଶାଳଦଂଷ୍ଟ୍ର ହସ୍ତୀ ଆରୋହଣ କରିଅଛନ୍ତି । ସେହି ମତ୍ତ ମାତଙ୍ଗ ପୃଷ୍ଠରେ ସ୍ୱର୍ଣ୍ଣରୌପ୍ୟମୟ ଉନ୍ନତ ହାଉଦା । ଯହା ନାନାପ୍ରକାର କାରୁକାର୍ଯ୍ୟବିଶିଷ୍ଟ କୌଷେୟ ବସ୍ତ୍ର-ଦ୍ୱାରା ସର୍ବାଙ୍ଗ ଆବୃତ । ମହାର୍ଘ ବସ୍ତ୍ରାଳଙ୍କାର ବିଭୂଷିତ ହସ୍ତୀପକଦ୍ୱାରା ଚାଳିତ । ନବାବ ସବାରି ହସ୍ତୀ ସମ୍ମୁଖ ଭାଗରେ ସମତୁଲ୍ୟକାୟ ସ୍ୱର୍ଣ୍ଣ-ରୌପ୍ୟଜଡ଼ିତ କୌଷେୟବସନାବୃତ ଅନ୍ୟ ଦୁଇ ଗୋଟି ଦନ୍ତାବଳ । ସେହି ଦୁଇ ହସ୍ତୀ ପୃଷ୍ଠରେ ମହାର୍ଘବସ୍ତ୍ରାଳଙ୍କାରବିଭୂଷିତ ଦୁଇ ଗୋଟି ଯୁବକ ସୁବର୍ଣ୍ଣଦଣ୍ଡସଂଲଗ୍ନ କୌଷେୟ ପତାକା ଧରି ବସି ଅଛନ୍ତି । ବାମ ଭାଗରେ ରଜତ ହାଉଦାଯୁକ୍ତ ହସ୍ତୀ ପୃଷ୍ଠରେ ଏକ ସଜ୍ଜିତ ପୁରୁଷ ଗୋଲାପ ଜଳପୂର୍ଣ୍ଣ ପୁତ୍ତଳିମୟ ଅଲବୋଲା ନେଇ ବସିଅଛି । ବିଚିତ୍ରବର୍ଣ୍ଣ ରଜ୍ଜୁଜଡ଼ିତ ବିଂଶୋର୍ଦ୍ଧ୍ୱହସ୍ତ ପ୍ରମାଣ ଲମ୍ବବିଶିଷ୍ଟ ଅଲବୋଲାସଂଲଗ୍ନ ନଳ ନବାବଙ୍କ ହସ୍ତୀ ପୃଷ୍ଠ ପର୍ଯ୍ୟନ୍ତ ଲମ୍ବିତ ହୋଇ ରହିଅଛି । ନବାବ ବାହାଦୂରଙ୍କ ହାଉଦା ପଶ୍ଚାଦ୍ଭାଗରେ ଉପବିଷ୍ଟ ଏକ କୁଲୀନ ମୁସଲମାନଯୁବକ ସେହି ନଳର ଅଗ୍ରଭାଗ ଧାରଣ କରିଅଛି ଏବଂ ସମୟ ସମୟରେ ନବାବଙ୍କ ଶ୍ରୀମୁଖସଂଲଗ୍ନ କରାଉଅଛି । ବାମ ଓ ଦକ୍ଷିଣରେ କେତୋଟି ସମୋଚ୍ଚ ସଜ୍ଜିତ ହସ୍ତୀ ଉପରେ ସଜ୍ଜିତ ଯୁବକ ବାଦଶାହି ଛତ୍ର (ରାଜଛତ୍ର) ଆଶା ସୁଣ୍ଟା ରାଜଚିହ୍ନମାନ ଧାରଣ କରି ବସିଅଛନ୍ତି ଏବଂ ବାମ, ଦକ୍ଷିଣ ଓ ପଶ୍ଚା-ଭାଗରେ ପଦୋଚିତ ବେଶଭୂଷାବିମଣ୍ଡିତ ହୋଇ ଅମୀର ଓମରା ରାଜସେବୀ ପ୍ରଧାନ କର୍ମଚାରୀମାନେ ନବାବ ମହୋଦୟଙ୍କୁ ବେଷ୍ଟନ କରି ଚାଲିଅଛନ୍ତି । ପଛେ ନବାବଙ୍କ ଶରୀରରକ୍ଷୀ ସୈନ୍ୟ । ତତ୍ ପଶ୍ଚାତ୍ ରସଦ ଶଗଡ଼, ଯୋଡ଼ି ଓଟ, ଯୋଡ଼ି ବଳଦ, ଯୋଡ଼ି ଟଟ୍ଟୁ, ଯୋଡ଼ି ଗଧ, ଯୋଡ଼ି ହସ୍ତୀ, ଭାରୁଆ, ବୋଝିଆ, ମୋଟିଆ ଇତ୍ୟାଦି । ଶହ ହଜାର ଖାଲି ବରକନ୍ଦାଜ ଏହି ସମସ୍ତ ରସଦ ରକ୍ଷାକାରୀ । ସେମାନଙ୍କ ପଶ୍ଚାଦ୍ଭାଗରେ ବଜାର, ହଟାଣ, ଫେରିବାଲା, ପେଶାଦାର ନର୍ତ୍ତକୀ, ଗାୟକ, ଖେଳାଳି, ଭିକାରି, ହାକିମ, କବିରାଜ, ଓମେଦାର ଇତ୍ୟାଦି ଆପଣା ଆପଣା ପଦମର୍ଯ୍ୟାଦା ଓ ଅବସ୍ଥା ଅନୁସାରେ କେହି ଘୋଡ଼ା କେହି ଟଟ୍ଟୁ କେହି ଡୁଲି ଆରୋହଣ କରି ଚାଲିଅଛନ୍ତି । କେହି କେହି ଲୋକ ଗଧର ମଧ୍ୟ ମର୍ଯ୍ୟାଦା ରକ୍ଷା କରିଅଛନ୍ତି । ପଦବ୍ରଜୀ ଅସଂଖ୍ୟ ।

ନବାବ ସାହେବଙ୍କ ଅଗ୍ର ପଶ୍ଚାତ୍ ବାମ ଦକ୍ଷିଣ ଭାଗରେ ଶତ ଶତ ଦୀର୍ଘ ଜ୍ୱଳନ୍ତ ଅଙ୍ଗାରପୂର୍ଣ୍ଣ ବହ୍ନିରେ ପ୍ରକ୍ଷିପ୍ତ ଧୂଣା ଗୁଗ୍ଗୁଳ ଚନ୍ଦନ ଲୋବାନରୁ ଉଦ୍ଭୂତ ଧୂମରାଶିଯୁକ୍ତ ଜିମେଇକୁ କାନ୍ଧ ପୃଷ୍ଠରେ ବହନ କରି ଚାଲିଅଛନ୍ତି । ପ୍ରଥମ ଦିବସରେ ଚାରି କୋଶ ମାତ୍ର ଯାତ୍ରା କରି ମୁର୍ଶିଦାବାଦ ପ୍ରାନ୍ତ ଦେଶରେ ବିଶ୍ରାମ କଲେ । ତହିଁ ଆର ଦିନ ପ୍ରାତଃକାଳରେ ପୁନର୍ବାର କୁଚ । ଦିନମାନରେ ବେଳେ ମାତ୍ର କୁଚ ହୁଏ । କାହିଁ ସରଳ, କାହିଁ କୁଟିଳ ବିବିଧ ଭଙ୍ଗିରେ ଯୋଜନବ୍ୟାପୀ ସୈନ୍ୟପ୍ରବାହ ଚାଲିଅଛନ୍ତି । ଅତି ସାବଧାନ ନିୟମିତ ଶୃଙ୍ଖଳାବଦ୍ଧ ନୀରବ ଭାବରେ ଯୋଗ୍ୟ ଶିକ୍ଷିତ ସେନାପତି-ଦ୍ୱାରା ଚାଳିତ ହେଉଅଛନ୍ତି । ସୈନ୍ୟଶୀର୍ଷଭାଗ ଉତ୍କଳ ସୀମା ସ୍ପର୍ଶ କରିବାକୁ ଦଶାହ କାଳ ଅତୀତ ହେଲା । ରଘୁବଂଶିଅ ଦୁର୍ଗେଶର ରାୟ ରାଘବ ରାଜପୁତ ସିଂହ ଜଗଦ୍ଦେବ ବୈଦ୍ୟରାଜଙ୍କ ମାନାଜା ସୈନ୍ୟ ସାମନ୍ତ ସହିତ ପାଞ୍ଚେଟି ଯାଇ ଦାନ୍ତୋଣ-ଠାରେ ମିଳିତ ହେଲେ ।

ଶ୍ରୀ ଧୂର୍ଜଟୀ ।

—•—*※*—•—

# ଅଲୋକଚିତ୍ର ବା ଫଟୋଗ୍ରାଫି । (୩)

ପ୍ରିୟ ପାଠକ ! ପୂର୍ବରେ ବର୍ଣ୍ଣିତ ହୋଇଅଛି, ଯେବେ କୌଣସି ଗୃହର ସମସ୍ତ ଦ୍ୱାର ଓ ଝରକା ଉତ୍ତମରୂପେ ବନ୍ଦ କରାଯାଏ ଦେଖାଯିବ ଯେ କବାଟର କୌଣସି ଛିଦ୍ର ପଥ ଦେଇ ଗୃହ ମଧ୍ୟରେ ବହିସ୍ଥ ପଦାର୍ଥର ଛବି କାନ୍ଥ ଉପରେ ଓଲଟା ଭାବରେ ପ୍ରତିଫଳିତ ହେବ; ଯେବେ ସେହି ଛିଦ୍ରର ସମ୍ମୁଖରେ ଖଣ୍ଡେ ଧଳା କାଗଜ ଧରାଯାଏ ତେବେ ଦେଖାଯିବ ଯେ ସେହି କାଗଜ ଉପରେ ବହିସ୍ଥ ପଦାର୍ଥର ଓଲଟା ଛବି ସ୍ପଷ୍ଟରୂପେ ପ୍ରତିଫଳିତ ହେବ । ପୁଣି ଯେବେ ସେହି ଛିଦ୍ରକୁ କିଛି ବଡ଼ କରାଯାଇ ତହିଁରେ ଖଣ୍ଡେ ଦ୍ୱିନ୍ୟୁବ୍ଜ କାଚ (Lens) ଲଗାଇ ଦିଆଯାଏ ତେବେ ବହିସ୍ଥ ପଦାର୍ଥର ଛବି ଅପେକ୍ଷାକୃତ ଅଧିକ ସ୍ପଷ୍ଟତର ପ୍ରତିଫଳିତ ହେବ । ବର୍ତ୍ତମାନ ସହଜରେ ଅନୁମାନ କରି ପାରିବେ ଯେ ଅନ୍ଧକାରବୃତ ଗୃହ ପରିବର୍ତ୍ତେ ଚାରିଆଡ଼େ ବନ୍ଦ ହୋଇ ଥିବା ଗୋଟିଏ କାଠ ବାକ୍ସରେ ଗୋଟିଏ ଛିଦ୍ର କରି ଯେବେ ସେହି ଛିଦ୍ର ପଥରେ ଖଣ୍ଡେ ଲେନ୍‌ସ୍ ଲଗାଯାଏ, ତାହା ହେଲେ ସେହି ବାକ୍ସ ମଧ୍ୟରେ ସୁନ୍ଦର ଛବି ଓଲଟା ଭାବରେ ପଡ଼ିବ, ଏଥିରେ ସନ୍ଦେହ ନାହିଁ । ଏହିପରି ବାକ୍ସକୁ କେମେରା (Camera) ଓ ତହିଁ ଛିଦ୍ର ପଥରେ ଲଗା ହୋଇ ଥିବା କାଚକୁ (Lens) କହନ୍ତି ।

କେମେରା-(Camera):—ପୂର୍ବରେ କେମେରା କେବଳ କାଠରେ ପ୍ରସ୍ତୁତ ହେଉଥିଲା, କିନ୍ତୁ ବର୍ତ୍ତମାନ ଏହା କେତେକ କାଷ୍ଠ ଏବଂ କେତେକ ଚର୍ମଦ୍ୱାରା ପ୍ରସ୍ତୁତ ହେଉଅଛି । ଏପରି କରିବାରୁ କାର୍ଯ୍ୟ ପକ୍ଷରେ ବଡ଼ ସୁବିଧା ହୋଇଅଛି । ଏହିପରି ଅର୍ଦ୍ଧକାଷ୍ଠ ଓ ଅର୍ଦ୍ଧଚର୍ମଦ୍ୱାରା ପ୍ରସ୍ତୁତ କେମେରାକୁ (camera) "ବେଲୋଜ୍ ବଡି" (Bellows body) କେମେରା କହନ୍ତି । କେମେରା ନାନା ପ୍ରକାର ଅଟେ; ସେ ସମସ୍ତ ଯଥାକ୍ରମରେ କ୍ରମଶଃ ବର୍ଣ୍ଣିତ ହେବ ।

(୧) ରିଭର୍‌ସିବଲ୍ ବ୍ୟାକ୍ (Reversible back):--ଫଟୋଗ୍ରାଫି କେମେରାର ପଶ୍ଚାଦ୍ଭାଗରେ ଖଣ୍ଡିଏ ଯେଉଁ ଘସାକାଚ (Ground glass) ଥାଏ ତାହାକୁ "ଫୋକସ୍-ସ୍କ୍ରୀନ୍" କହାଯାଏ । ସେହି କାଚଖଣ୍ଡ ଗୋଟିଏ ଫ୍ରେମରେ ଆବଦ୍ଧ ଥାଏ । ଫ୍ରେମ ସହିତ ଫୋକସ-ସ୍କ୍ରୀନ୍‌କୁ ବୁଲାଇ ଇଚ୍ଛାନୁରୂପ କରି ଲମ୍ବ ଭାଗ କିମ୍ବା ପ୍ରସ୍ଥ ଭାଗରେ ଛବି ନେଇବାର ବନ୍ଦୋବସ୍ତ ନ ଥିଲେ ବଡ଼ ଅସୁବିଧା ହୁଏ । ଅଜି କାଲି ପ୍ରାୟ ବିଲାତି ସମସ୍ତ କେମେରାରେ ଏହିପରି ସୁବିଧା କରା ହୋଇଥାଏ । ଏହିପରି କେମେରାକୁ "ରିଭର୍‌ସିବଲ୍ ବ୍ୟାକ୍" କହନ୍ତି ।

(୨) 'ସୁଇଂ ବ୍ୟାକ୍' (Swing back):—କେମେରାର ପଶ୍ଚାଦ୍ଭାଗ ଟିକିଏ ଉପରକୁ କିମ୍ବା ଟିକିଏ ତଳକୁ ଘୂରାଇବାର ସୁବିଧା ଯହିଁରେ ଥାଏ ତାକୁ 'ସୁଇଂ ବ୍ୟାକ୍' କେମେରା କହନ୍ତି । କୌଣସି କୌଣସି କେମେରାରେ ମଧ୍ୟ (double swing) 'ଡବଲ୍ ସୁଇଂ' ଥାଏ, କିନ୍ତୁ ଏପରି କେମେରାର ବିଶେଷ କୌଣସି ପ୍ରୟୋଜନ ହୁଏ ନାହିଁ, ଗୋଟିଏ ଆଡ଼େ 'ସୁଇଂ'ର ସୁବିଧା ଥିଲେ ମଧ୍ୟ କାର୍ଯ୍ୟ ଚଳେ । ଏପରି କେମେରାର ବ୍ୟବହାର ପରେ ବର୍ଣ୍ଣିତ ହେବ ।

(୩) ମୁଭିଂ-ଫ୍ରଣ୍ଟ (Moving front)—କେମେରାର ଯେଉଁ ଅଡ଼େ ଲେନ୍‌ସ ଲଗାଯାଏ ତାହାକୁ "କେମେରା ଫ୍ରଣ୍ଟ" କହନ୍ତି । କେମେରାକୁ ସ୍ଥିର ରଖି ଲେନ୍‌ସ ସହିତ ସମ୍ମୁଖ ଖଣ୍ଡକୁ ଟିକିଏ ଉପରକୁ କିମ୍ବା ଟିକି[illegible] କରିବା ଅଥବା ଟିକିଏ ଉଭୟ ପାର୍ଶ୍ୱକୁ [illegible] ସୁବିଧା ଯହିଁରେ ଥାଏ, ତାକୁ କେମେରା କହନ୍ତି । ଏହା ବିଶେଷ ପ୍ରକ[illegible]

(୪) ବ୍ରାସ୍-ବାଉଣ୍ଡ (Brass-bound):— କେମେରାଗୁଡ଼ିକ ଅତ୍ୟନ୍ତ ପତଳା କାଷ୍ଠରେ ପ୍ରସ୍ତୁତ ହୁଏ, ସେଥିଯୋଗୁଁ ଅଧିକାଂଶ ସ୍ଥଳେ ଶିରସଦ୍ୱାରା ଯୋଡ଼ା ହୁଏ । ଆମ୍ଭମାନଙ୍କ ଦେଶ ପରି ବଙ୍ଗଳରେ ବର୍ଷାକାଳରେ ବିଶେଷ ଆର୍ଦ୍ରତା ଅନୁଭୂତ ହୁଏ ନାହିଁ, ସେଥିପାଇଁ ଶିରସଯୋଡ଼ା କେମେରା ସେଠାରେ ବେଶ ଶକ୍ତ ରହେ । କିନ୍ତୁ ଆମ୍ଭମାନଙ୍କ ଦେଶରେ ଶିରସଯୋଡ଼ା କେମେରା ବର୍ଷା ସମୟରେ ନଷ୍ଟ ହେବାର ସମ୍ଭବ, ଏଥିଯୋଗୁଁ ଯୋଡ଼ା ହୋଇଥିବା ସ୍ଥାନ ଯେବେ ପିତ୍ତଳ ପତ୍ର ଓ ପେଞ୍ଚଦ୍ୱାରା ଶକ୍ତରୂପେ ଆବଦ୍ଧ ହୁଏ, ତାହା ହେଲେ ଅନିଷ୍ଟ ହେବାର ବିଶେଷ କୌଣସି ସମ୍ଭାବନା ନ ଥାଏ । ଏହିପରି କେମେରାକୁ 'ବ୍ରାସ-ବାଉଣ୍ଡ' କେମେରା କହନ୍ତି ।

୫ । 'ବେଲୋଜ୍-ବଡି'(Bellows body)— ଚର୍ମ-ନିର୍ମିତ କେମେରା ସର୍ବୋତ୍କୃଷ୍ଟ ଅଟେ । ଆଜି କାଲି ସାଧାରଣତଃ ଦୁଇ ପ୍ରକାର କେମେରା ଦୃଷ୍ଟ ହୁଏ । ଏକ ଜାତୀୟ ସମ୍ମୁଖ ଓ ପଶ୍ଚାଦ୍ଭାଗ ସମାନ ମାପର ଅଟେ, ଏହାକୁ 'ସ୍କୋୟାର-ବଡି' (Square body) କହନ୍ତି; ଏବଂ ଅପର ଜାତୀୟ କେମେରାର ସମ୍ମୁଖ ଭାଗ ପଶ୍ଚାଦ୍ଭାଗ ଅପେକ୍ଷା ଅନେକ କ୍ଷୁଦ୍ର ଥାଏ, ଏହାକୁ 'କନିକେଲ' (conical) କହାଯାଏ । କନିକେଲ କେମେରା ତେତେ ଭଲ ନୁହେଁ, ତହିଁରେ ଛବିରୁ ଛବି ଉଠାଇବା କାର୍ଯ୍ୟ ଭଲ ହୁଏ ନାହିଁ । ସ୍କୋୟାର-ବଡି ସର୍ବୋତ୍କୃଷ୍ଟ ଅଟେ ।

୬ । 'ଲଂ ଏକ୍ସ୍ଟେନ୍‌ସନ୍'(Long extension) —ଏପରି କେମେରାକୁ ଲଂ ଫୋକସ୍ (Long Focus) କେମେରା କହନ୍ତି । ସାଧାରଣତଃ [illegible]ବି ନେବା ସମୟରେ କେମେରାକୁ ଅଧିକ [illegible]ହେବାର ବିଶେଷ କୌଣସି ପ୍ରୟୋଜନ ହୁଏ [illegible]କୁ ଯେବେ କୌଣସି ଫଟୋ କିମ୍ବା [illegible]ର ନକଲ (copy) କରିବାକୁ ହୁଏ, [illegible]ହେଲେ କେମେରାକୁ ଅନେକ ବଡ଼ କରିବାକୁ ହୁଏ । ଏହି କାରଣରୁ ବଡ଼ 'ବେଲୋ' ଦେଖି କେମେରା କିଣିବା ଉଚିତ, ନୋହିଲେ କପି (copy) କରିବା ପାଇଁ ଗୋଟିଏ ସ୍ୱତନ୍ତ୍ର କେମେରା ଆବଶ୍ୟକ ହୁଏ ।

ଡାର୍କ ସ୍ଲାଇଡ୍ (Dark slide):—ମସଲା ଯୁକ୍ତ କାଚ—ଡ୍ରାଇ କିମ୍ବା ଓଏଟ୍ ପ୍ଲେଟ— ଯହିଁରେ ନିଆଯାଏ ତାହାକୁ ଡାର୍କ ସ୍ଲାଇଡ୍ କହନ୍ତି । ଏହା ଦୁଇ ପ୍ରକାର ଅଟେ; ଯଥା,—ସିଙ୍ଗଲ ଓ ଡବଲ । ସିଙ୍ଗଲ ସ୍ଲାଇଡ଼ରେ କେବଳ ଖଣ୍ଡେ ମାତ୍ର କାଚ ଧରେ କିନ୍ତୁ ଅଧୁନା ଏକପ୍ରକାର ପୁସ୍ତକ ସଦୃଶ ଡାର୍କ ସ୍ଲାଇଡ୍ (Book form double dark slide)--ଯାହାକି ଠିକ ପୁସ୍ତକାକୃତ ଅଟେ ମଧ୍ୟ ପୁସ୍ତକ ପରି ଦୁଇଭାଗ ହୋଇ ଫିଟେ— ବ୍ୟବହୃତ ହୁଏ । ତହିଁରେ ଦୁଇ ଖଣ୍ଡ କାଚ ସହଜରେ ନିଆ ହୁଏ । ଏହିପରି ସ୍ଲାଇଡ୍ ବଡ଼ ସୁବିଧାଜନକ ଅଟେ । ପାଠକଙ୍କର ସ୍ମରଣ ରଖିବା ଉଚିତ ଯେ ସ୍ଲାଇଡ୍ କେମେରାର ଏକ ଅଂଶ ମାତ୍ର । ଯେଉଁ କେମେରା ସହିତ ସ୍ଲାଇଡ୍ ନ ଥାଏ, ତାହାକୁ ଅସମ୍ପୂର୍ଣ୍ଣ ବୋଲି ଜାଣିବେ ।

ଲେନ୍‌ସ (Lens):—ଅଣୁବୀକ୍ଷଣ ଦୂରବୀକ୍ଷଣ ପ୍ରଭୃତି ଯନ୍ତ୍ରସମୂହରେ ଯେଉଁ ନାନାପ୍ରକାର ବର୍ତ୍ତୁଳାକାର ଓ ପୁଟାକାର କାଚସମୂହ ବ୍ୟବହୃତ ହୁଏ ତାହାକୁ ଲେନ୍‌ସ କହନ୍ତି । ଲେନ୍‌ସ ନାନାପ୍ରକାର ଅଟେ, ଯଥା—ଦ୍ୱିପାର୍ଶ୍ୱସ୍ଫୀତ ବା ବର୍ତ୍ତୁଳାକାର (Double convex), ଏକପୃଷ୍ଠସ୍ଫୀତ (Plano-convex ), ଦ୍ୱିପାର୍ଶ୍ୱପୁଟାକାର (concave), ଏକପୃଷ୍ଠପୁଟାକାର (plano-concave), ଇତ୍ୟାଦି । ଫଟୋଗ୍ରାଫି ଯନ୍ତ୍ରରେ ମଧ୍ୟ ଏହିପରି ଲେନ୍‌ସ ବ୍ୟବହୃତ ହୁଏ । ଏହି ଲେନ୍‌ସ ମଧ୍ୟରୁ କେଉଁ ଲେନ୍‌ସ ବ୍ୟବହାର କଲେ ଭଲ ଓ କାହାକୁ ବ୍ୟବହାର କଲେ କଣ କ୍ଷତି ହୁଏ ଏ ସ୍ଥଳରେ ତଦ୍‌ବିଷୟ ସଂକ୍ଷେପରେ ବର୍ଣ୍ଣିତ ହେବ ।

(୧) ସିଙ୍ଗଲ୍ ଲେନ୍‌ସ(Single Lens)—ଏହି ଲେନ୍‌ସର ଏକପାର୍ଶ୍ୱରେ କେବଳ ତିନିଖଣ୍ଡି କାଚ

ଏକାବ ଯୋଡ଼ା ହୋଇଥାଏ। ଏଥିରେ ନୈସର୍ଗିକ ଦୃଶ୍ୟର (Landscape) ଫଟୋ ଅତ୍ୟୁତ୍କୃଷ୍ଟ ହୁଏ। ଏହାର କାର୍ଯ୍ୟ ମଧ୍ୟ ଦ୍ରୁତ ଏବଂ ଫୋକସ୍ ଅତି ସୂକ୍ଷ୍ମ ହୁଏ। ଏଥିରେ ଅଟ୍ଟାଳିକା ପ୍ରଭୃତି ଫଟୋ କାଢ଼ିଲେ କଣ୍ଟିସ ଇତ୍ୟାଦିର ସରଳ ରେଖାଗୁଡ଼ିକ ବକ୍ର ଦେଖାଯାଏ। ପ୍ରକାଶ ଥାଉ କି ସିଙ୍ଗଲ ଲେନ୍ସଦ୍ୱାରା ମଧ୍ୟ ଏସମସ୍ତ କାର୍ଯ୍ୟ ନିର୍ବାହିତ ହୁଏ, କିନ୍ତୁ ସେତେ ଭଲ ହୁଏ ନାହିଁ।

(୨) ରାପିଡ୍ ରେକ୍ଟିଲିନିୟର ଲେନ୍ସ (Rapid rectilinear lens):—ଏ ଲେନ୍ସର ଦୁଇ ଅଡ଼େ କାଚ ଥାଏ। ଏଥିରେ ଫଟୋଗ୍ରାଫ ଅତ୍ୟନ୍ତ ଦ୍ରୁତଭାବରେ ଉଠି ହେବା ହେତୁ ଏହାର ନାମ "ରାପିଡ୍" ଅଟେ। ଏହାର ଅନ୍ୟ ମଧ୍ୟ ଅନେକ ନାମ ଅଛି, ଯଥା,'ରାପିଡ ସେମିଟ୍ରିକେଲ୍' (Rapid symmetrical), "ରେକ୍ଟିଗ୍ରାଫ୍" (Rectigraph) ଇତ୍ୟାଦି। ନାମ ଭିନ୍ନ ଭିନ୍ନ ହେଲେହେଁ ଏ ସମସ୍ତ ଏକଜାତୀୟ ଲେନ୍ସ। ଏଥିରେ କୌଣସି କଣ୍ଟିସ ରେଖା ବକ୍ର ହୁଏ ନାହିଁ, ସର୍ବପ୍ରକାର କାର୍ଯ୍ୟ ଉତ୍ତମରୂପେ ଚଳେ। ଯେଉଁମାନେ କେହି କେବଳ ଗୋଟିଏ ଲେନ୍ସଦ୍ୱାରା ସର୍ବପ୍ରକାର କାର୍ଯ୍ୟ କରିବାକୁ ଇଚ୍ଛା କରନ୍ତି, ତାହା ହେଲେ ଏହିପରି ଲେନ୍ସ ଗୋଟିଏ କିଣିଲେ ଚଳେ। ଏହାଦ୍ୱାରା ମନୁଷ୍ୟର ପ୍ରତିରୂପ ମଧ୍ୟ ଉତ୍ତମ ଉଠେ। ପ୍ରଥମୋକ୍ତ ଲେନ୍ସ ଅପେକ୍ଷା ଏହା ପ୍ରାୟ ଚତୁର୍ଗୁଣ ଦ୍ରୁତ। ଯେଉଁ ଛବି ସିଙ୍ଗଲ୍ ଲେନ୍ସରେ ନେବାକୁ ୧୬ ସେକଣ୍ଡ ଲାଗେ, ଏହି ଲେନ୍ସରେ ତଦପେକ୍ଷା ଅତି ଶୀଘ୍ର ହୁଏ। ରେଲଓ୍ୱେ ଶକଟାଦି ଏବଂ ବେଗଶୀଳ କୌଣସି ପଦାର୍ଥର ଫଟୋ ଉଠାଇବାକୁ ହେଲେ ଅନେକ ସମୟରେ ଏକ ସେକେଣ୍ଡର ୫୦ ଭାଗର ଏକ ଭାଗ ସମୟରେ ହୁଏ। ରାପିଡ୍ ରେକ୍ଟିଲିନିୟର ଲେନ୍ସ ଏହି ସମସ୍ତ କାର୍ଯ୍ୟର ଉପଯୋଗୀ ଅଟେ।

୩। ପୋରଟ୍ରେଟ୍ ଲେନ୍ସ (Portrait lens)—ଏହି ଲେନ୍ସ କେବଳ ମନୁଷ୍ୟର ପ୍ରତିରୂପ ନେବା ନିମନ୍ତେ ଆବଶ୍ୟକ ହୁଏ। ଯାହାର ଅପେକ୍ଷା ଷ୍ଟୁଡ଼ିଓ (Studio) ମଧ୍ୟରେ ସ୍ଥାନ ଅଧିକ ନ ଥାଏ, ସେଥିପାଇଁ ରାପିଡ ରେକ୍ଟି-ଲିନିୟର ଲେନ୍ସଦ୍ୱାରା ଷ୍ଟୁଡ଼ିଓ ମଧ୍ୟରେ ଛବି ନେବା ଅତି ବିଘ୍ନକର ହୁଏ। ଲେନ୍ସନିର୍ମାତା-ମାନେ ଅନେକ ଚେଷ୍ଟା କରି ଅବଶେଷରେ "ପୋରଟ୍ରେଟ" ନାମକ ଲେନ୍ସକୁ ଏହି କାର୍ଯ୍ୟର ଉପଯୋଗୀ ସ୍ୱରୂପ ପ୍ରସ୍ତୁତ କରିଅଛନ୍ତି। ଯେଉଁ-ମାନେ ଅଧିକ ସମୟ ସ୍ଥିର ହୋଇ ବସି ନ ପାରନ୍ତି ସେମାନଙ୍କର ପ୍ରତିରୂପ 'ପୋରଟ୍ରେଟ' ଲେନ୍ସ ଦ୍ୱାରା ନେବାକୁ ହୁଏ। ଏହି ଲେନ୍ସ ରାପିଡ ରେକ୍ଟିଲିନିୟର ଅପେକ୍ଷା ଚତୁର୍ଗୁଣ ଦ୍ରୁତ ଅଟେ। ଏହା ଅପେକ୍ଷା ଆଶୁ କାର୍ଯ୍ୟକାରୀ ଲେନ୍ସ ଅଦ୍ୟ ଆବିଷ୍କୃତ ହୋଇ ନାହିଁ।

ଏହି ଲେନ୍ସର ଦୋଷ ମଧ୍ୟ ଅନେକ ଅଛି। ଏଥିରେ ଛବି ଉଠାଇଲେ ଫଟୋର ଚାରି ଧାର ବଡ଼ ଅସ୍ପଷ୍ଟ ହୁଏ। ଷ୍ଟପ୍ (Stop) ଦେଇ ଏହାର ଛିଦ୍ର ଛୋଟ କରି ଦେଲେ ଏ ଦୋଷ ସଂଶୋଧିତ ହୁଏ, କିନ୍ତୁ ଆଶୁକାର୍ଯ୍ୟକାରିତା ଗୁଣ ନଷ୍ଟ ହୋଇଯାଏ। ଅଟ୍ଟାଳିକା ପ୍ରଭୃତିରେ କଣ୍ଟିସର ରେଖାସମୂହ ଏଥିରେ ସମାନ ହୁଏ ନାହିଁ। ଦୂରର କୌଣସି ବସ୍ତୁ ସହିତ ନିକଟର କୌଣସି ବସ୍ତୁର ଫୋକସ୍ କରିବାକୁ ହେଲେ ବଡ଼ ଅସୁ-ବିଧା ହୁଏ। ଏଥିରେ କେବଳ ମନୁଷ୍ୟ ନେବାର ଭଲ ହୁଏ। କିନ୍ତୁ ଅନ୍ୟାନ୍ୟ କୌଣସି ବସ୍ତୁର ଫଟୋ ଭଲ ହୁଏ ନାହିଁ।

୪। ଓ୍ୱାଇଡ୍ ଏଙ୍ଗଲ୍ ରେକ୍ଟିଲିନିୟର ଲେନ୍ସ (Wide angle rectilinear lens ଏଥିରେ ପର୍ବତ, ଉଚ୍ଚ ମନ୍ଦିର, ଅଟ୍ଟାଳିକା ପ୍ର ଏବଂ ଉଚ୍ଚ ବୃକ୍ଷାଦିର ଛବି ଅତି ନିକଟରୁ ହୁଏ। ଏଥିରେ କାର୍ଯ୍ୟ ଅତି ଶୀଘ୍ର ନୋହିଲେ ଏହାର ଅନ୍ୟ କୌଣସି ଦୋଷ

୫। ୟୁନିଭରସେଲ୍ ଲେନ୍ସ (Un

lens):—ଏପର୍ଯ୍ୟନ୍ତ ଅମ୍ଭେମାନେ ଯେ କେତୋଟି ଲେନ୍ସର ବିଷୟ ଉଲ୍ଲେଖ କଲୁଁ, ସେଥିରୁ ପାଠକ ବୁଝି ପାରିଥିବେ ଯେ ଭିନ୍ନ ଭିନ୍ନ କାର୍ଯ୍ୟ ନିମନ୍ତେ ସ୍ୱତନ୍ତ୍ର ଲେନ୍ସର ପ୍ରୟୋଜନ ହୁଏ । ସାଧାରଣତଃ ଦୁଇଟି ଲେନ୍ସ ରଖିଲେ ଭଲ ହୁଏ । ଗୋଟିଏ 'ରାପିଡ୍ ରେକ୍ଟିଲିନିୟର' ଏବଂ ଅନ୍ୟ ଗୋଟିଏ 'ପୋର୍ଟ୍ରେଟ୍' । ଭଲ ଲେନ୍ସ କିଣିବା ସହଜ ନୁହେଁ । ଏଥି ଯୋଗୁଁ ନିର୍ମାତା-ମାନେ ବହୁ କୌଶଳରେ ଇଉନିଭର୍ସାଲ ଲେନ୍ସ ନିର୍ମାଣ କରିଅଛନ୍ତି । ଏଥିରେ ପୋର-ଟ୍ରେଟ ଓ ରେକ୍ଟିଲିନିୟର ଏହି ଲେନ୍ସଦ୍ୱୟର ଗୁଣସମୂହ ଏକୀଭୂତ ହୋଇଅଛି । ଏହି ଲେନ୍ସର ଅପର ଗୋଟିଏ ନାମ "ୟୁରିସ୍କୋପ୍' (Euryscope) ଅଟେ ।

ତ୍ରିପଦ ଷ୍ଟାଣ୍ଡ (Tripod stand):—ଯହିଁରେ କେମେରା ବସାଯାଏ ତାକୁ ତେପାୟା ବା ତ୍ରିପଦ (tripod) କହନ୍ତି । ଏହା ବିଶେଷ ଶକ୍ତ ହେବା ଆବଶ୍ୟକ, ଯେପରି ଅଳ୍ପ କୌଣସି ଆଘାତରେ କେମେରା ସହିତ ଓଲଟି ନ ପଡ଼େ । ଏହାକୁ କିଣିବା ସମୟରେ ଏହା ଉପରେ କେମେରା ବସାଇ କୌଣସି ବସ୍ତୁର ଫୋକସ କରି ନେଇ ଦେଖିବା ଆବଶ୍ୟକ ।

କ୍ରମଶଃ

ଶ୍ରୀ ଶ୍ୟାମସୁନ୍ଦର ସାଠିଆ ।

---

## ବାଇମାହାନ୍ତ ପାଞ୍ଜି । (୧)

ବିଜ୍ଞାପନ

ଆଜି କାଲି ଶିକ୍ଷିତମାନଙ୍କ ମଧ୍ୟରେ ପ୍ରତ୍ନତତ୍ତ୍ୱ ଗବେଷଣାର ବିଶେଷ ଚହଳ ପଡ଼ିଅଛି, ଶିକ୍ଷିତ-ମାନେ ଯେଉଁ କାର୍ଯ୍ୟରେ ବହୁତ କରି ଯୋଗ୍ୟତା ଦେଖାଉଅଛନ୍ତି, ତହିଁରେ ଅମ୍ଭମାନଙ୍କର ଅଯଥା ହସ୍ତକ୍ଷେପ କରିବା ଅନ୍ୟାୟ । ଅମ୍ଭେମାନେ ଯେ ଶ୍ରେଣୀର ଲୋକହୁଁ କ୍ଷମା ଗଣ୍ୟ ହେବାର ଆକାଂକ୍ଷା ବା ଆଶା ବା ଦୁରାଶା ଅମ୍ଭମାନଙ୍କର ନାହିଁ । ଅଧୁନା-ତନ ତତ୍ତ୍ୱ ଗବେଷଣା ନିମନ୍ତେ ଜଣେ ଉପଯୁକ୍ତ ଶିକ୍ଷିତ ଲୋକ ନ ମିଳିବାରୁ ସେଥି ନିମନ୍ତେ ଶ୍ରୀ ବାଇଧର ମହାନ୍ତିଙ୍କୁ (ତାଙ୍କ ନାମ ବାଇ ମାହାନ୍ତି) ସଂଯୋଜିତ କରିଅଛୁଁ । ତାଙ୍କର ପୁରୁଣାକାଳିଆ ମାଟିବଂଶ ଅବଧାନିଆ ପାଠପଢ଼ା; ସେ ତାଳପତ୍ର ...ବା କାଗଜ କଲମର ତତ୍ତ୍ୱ ଧାରନ୍ତି ନାହିଁ । ...ମାହାନ୍ତି ଅବଶ୍ୟ ବାଳକ ବା ଯୁବକ ନୁହନ୍ତି, ...ହାରୁ ପ୍ରକାଶ ନ ଅଛନ୍ତି ତାଙ୍କ ବୟସ ...ହୋଇଥିଲା । ଅମ୍ଭେମାନେ ହିସାବ କରି ...ଆପଣମାନେ ମଧ୍ୟ ଗଣନା କରିବେ । ...ନାଲି କୌଣସି ଗ୍ରନ୍ଥର ଚେଷ୍ଟାରେ ଅନେକ ସ୍ଥାନ ବୁଲି, ଅନେକ ଜମିଦାରଙ୍କୁ ଅନୁ-ସରଣ କରି, ଅନେକ ଦାର୍ଶନିକଙ୍କୁ ଶାଗ ମାଛ ଭେଟି ଦେଇ ଶେଷରେ ନିରସ୍ତ ହୋଇ ଦୈବଯୋଗେ ଆସି ଅମ୍ଭମାନଙ୍କ ଗ୍ରାମରେ ଉପସ୍ଥିତ । ଉଦ୍ଦେଶ୍ୟ ଥିଲା ଗୋଟିଏ ଚାଟଶାଳୀ କରିବାର; କିନ୍ତୁ ସୁପାରିସ ଯୋଗାଡ଼ କରି ନ ପାରିବାରୁ ଏଠାର ପାଠ-ଶାଳାରେ ଆଉ ଜଣେ ମୁନ୍ସିର ହୋଇଗଲେ । ଅମ୍ଭେମାନେ ବାଇ ମାହାନ୍ତିଙ୍କ ଦୁରବସ୍ଥା ଦେଖି ଦୟା କରି ତାଙ୍କୁ ଅଧୁନାତନ-ତତ୍ତ୍ୱ-ଗବେଷଣା କାର୍ଯ୍ୟରେ ପ୍ରାୟ ୧ ବର୍ଷ ହେଲା ନିଯୁକ୍ତ କରିଅଛୁଁ । ତାଙ୍କର କାର୍ଯ୍ୟ, ସ୍ଥାନେ ସ୍ଥାନେ ବୁଲି ଯାହା ଦେଖିବେ, ତାହା ପାଞ୍ଜିରେ ଲେଖି ମାସକୁ ମାସ ଅମ୍ଭମାନଙ୍କ ନିକଟରେ କାଗଜ ଦାଖଲ କରିବେ ଓ ମାସକୁ ଦରମା ବୁଝି ନେବେ । ଏଥିରେ ତ୍ରୁଟି କଲେ ଉଚିତ ଦଣ୍ଡ ପାଇବେ । କ୍ରମଶଃ ଦେଖୁଅଛୁ ଯେ ବାଇ ମାହାନ୍ତିଙ୍କ ଲେଖନୀ ଯେପରି ଗଡ଼ରେ ଗଡ଼ୁଅଛି ସେପରି ଆଉ ବର୍ଷେ ଖଣ୍ଡେ ଗଲେ ଅମ୍ଭମାନଙ୍କୁ ଅନୁତାପ କରିବାକୁ ହେବ । ଅର୍ଥାତ୍ ବର୍ତ୍ତମାନ ବର୍ଷ ପାଞ୍ଜିଟିକୁ ନ ଯୋଗାଇଲେ ଆଉ

ଦକ୍ଷାଦିଙ୍କ—ଅପବାଦ ମକଦ୍ଦମା ।
ଅଳ୍ପବୟସ୍କ ସ୍କୁଲଛାତ୍ର—ଚୁରୁଟ ।
ଯୁବକ ଛାତ୍ର—ଅଶାନ୍ତି ଓ ଚସମା ।
ବାପ—ପିଲାଏ ବଡ଼ ହେଲେ ବାପଙ୍କଠାରୁ ଭିନ୍ନ ହେବା ।
ଘରେଇ ଚାକର—ବେଳେବେଳେ କାନମୋଡ଼ା, ଗୋଇଠା ଓ ବିଦାୟକାଳରେ ଗଳାଧକ୍କା ।
ଫଉଜଦାରୀରେ ଫରିଆଦ—୨୧୧ ଦଫା ।
ଖଜଣା—ନିଅଣ୍ଟ ।
ଜମିଦାର—ହାକିମଙ୍କଠାରୁ ଧକ୍କା ଓ ଗାଳି ।
ପୂଜାପାର୍ବଣ—ବାବୁ ଓ ଠାକୁରାଣୀଙ୍କ ଭୋଜନାନ୍ତେ ଦଳେ ଦଳେ ଉପବାସ ।
ମୁଦ୍ରାଯନ୍ତ୍ରାଧ୍ୟକ୍ଷ—ଅଶ୍ଳୀଳ ପୁସ୍ତକ ମକଦ୍ଦମା ।
କୋଇଲା ଖଣିର କୁଲି—ଶ୍ୱାସରୋଗ ।
ଡାକ୍ତରଙ୍କ ରୋଗୀ—ଅଫିମ ଅଭ୍ୟାସ ।
ଜମିଦାରଙ୍କ ଘରଝିଅ—ଧକ୍କା ଓ ଅବୈବାହିକ [illegible] ।

ମାନ୍ୟ ଗଣ୍ୟ ହେବାର ଉପାୟ ।

୧—ବିବେକକୁ ବଳାତ୍ [illegible] କରିବ ।
୨—ଟଙ୍କାକୁ ହୃଦୟରେ ଈଶ୍ୱର ବୋଲି ମାନିବ ।
୩—ଭିତରେ ଏକ କଥା ବାହାରେ ଏକ କଥା ଦେଖାଇବ ।
୪—ପ୍ରତିଶ୍ରୁତ ହେବାକୁ କଦାପି ବିଳମ୍ବ ନ କରିବ; କିନ୍ତୁ କାର୍ଯ୍ୟକ୍ଷେତ୍ରରେ ତଦନୁଯାୟୀ କାର୍ଯ୍ୟ କରିବ ।
୫—ବାହାରେ 'ସୁଖ୍ୟାତି'କୁ ଘୃଣା କରିବ, ଅଥଚ ଭିତରର କଥା କେହି ନ ଜାଣନ୍ତୁ ।
୬—ବାହାରେ ଦେବତା ଅବତାର ବୋଲି ଦେଖାଇବ, କିନ୍ତୁ ହୃଦୟରେ ନିଜର ପ୍ରତିଷ୍ଠା କରିଥାଅ, ଛାଡ଼ ନାହିଁ ।
୭—ଯେଉଁ କାର୍ଯ୍ୟ କଲେ ନାମ ହେବ, ତହିଁରେ ସର୍ବପ୍ରଥମ ଯୋଗ ଦେବ ।
୮—ଉଚ୍ଚପଦସ୍ଥଙ୍କର ଦରବାରରେ ପଦମର୍ଦ୍ଦନ କରିବ ।
୯—ନୀଚପଦସ୍ଥଙ୍କୁ ସର୍ବଦା ପଦାଘାତ କରିବ ।

କ୍ରମଶଃ

ଶ୍ରୀ ଦୁର୍ମୁଖ ଶର୍ମା ।

---

## ବୈଦିକ ଯୁଗ

ପ୍ରାକୃତିକ ବୈଚିତ୍ର୍ୟପୂର୍ଣ୍ଣ ଭାରତର ମସ୍ତକରେ ମନୋଜ୍ଞ ହିମାଳୟ ପର୍ବତ ଯେପରି ସ୍ୱାଭାବିକ ଓ ସୁସଙ୍ଗତ, ଭାରତୀୟ ସଭ୍ୟତାର ସର୍ବପ୍ରଥମ ସ୍ଫୂର୍ତ୍ତି ବେଦ ମଧ୍ୟ ସେହିପରି ସ୍ୱାଭାବିକ । ହିମାଳୟର [illegible]ରୁ ଗଙ୍ଗା ପ୍ରଭୃତି ନଦୀ ପ୍ରବାହିତ ହୋଇ [illegible] ଭାରତଭୂମିକୁ 'ସୁଫଳା ଓ ଶସ୍ୟଶ୍ୟାମଳା' [illegible] ସେହିପରି ବେଦରୁ ଉଦ୍ଭୂତ ବେଦାନ୍ତ, ସଂହିତା, ମହାଭାରତ ଓ ପୁରାଣ ପ୍ରଭୃତି ଭାରତର ସାହିତ୍ୟକ୍ଷେତ୍ରକୁ ଉର୍ବର କରିଅଛି । ଭାରତର ସମୁଦାୟ ଶାସ୍ତ୍ରମାନଙ୍କ ମଧ୍ୟରେ ବେଦର ପ୍ରାଧାନ୍ୟ ସ୍ୱୀକୃତ ହୋଇଅଛି । Max Mullerଙ୍କ କଥାରେ—"In the laws of Manu, in the Puranas, in the Mahabharat and everywhere Veda is pro-

*ମାକ୍ସମୂଲର ( Max Muller ) ଙ୍କର 'The lessons of the Veda" ଅବଲମ୍ବିତ ।

ସ୍ଥାନ ବୈଦିକ ବିଷ୍ଣୁଦେବତାଙ୍କର ଶ୍ରେଷ୍ଠତା ସ ଜଗତେ ପ୍ରତିପନ୍ନ ହୋଇଅଛି ।

ବୈଦିକ ଦେବତାମାନଙ୍କ ବିଷୟ ଆଲୋଚନା କରିବା ପୂର୍ବରୁ ଆମ୍ଭମାନଙ୍କ ପ୍ରାଥମିକ ପୂଜାର ବିଷୟ ଆକାଶ ଓ ପୃଥିବୀ ସମ୍ବନ୍ଧରେ ଆଲୋଚନା କରିବୁଁ । ଆକାଶ ଓ ପୃଥିବୀକୁ ଆର୍ଯ୍ୟମାନେ ସର୍ବ ପ୍ରଥମରୁ ମାତାପିତା-ଦମ୍ପତିରୂପେ ପୂଜା କରୁଥିଲେ । କେବଳ ଭାରତବର୍ଷ ନୁହେଁ, ବହୁ କାଳ ଜାତି ଅସଭ୍ୟ, ଅର୍ଦ୍ଧସଭ୍ୟ ଓ ସଭ୍ୟମାନଙ୍କ ମଧ୍ୟରେ ଆକାଶ ଓ ପୃଥିବୀର ପୂଜା ପ୍ରଚଳିତ ଥିବାର ଦେଖାଯାଏ । ଆକାଶ ଓ ପୃଥିବୀର ଧାରଣା ପ୍ରାଚୀନତମ ଦାର୍ଶନିକମାନଙ୍କ ମଧ୍ୟରେ ଦେଖାଯାଏ । ପଲିନେସୀୟର (Manjaia) (ମାଞ୍ଜାୟା) ଦ୍ୱୀପରେ ନିମ୍ନଲିଖିତ ପୌରାଣିକ ଉପାଖ୍ୟାନ ( Myth ) ପ୍ରଚଳିତ ଅଛି । "ଆକାଶ ନୀଳବର୍ଣ୍ଣ-ପ୍ରସ୍ତରନିର୍ମିତ । ଏକ ସମୟରେ ଏହା ପୃଥିବୀ ସହିତ ପ୍ରାୟ ସଂଯୁକ୍ତ ଥିଲା । ଆକାଶ ଓ ପୃଥିବୀର ମଧ୍ୟସ୍ଥିତ ସ୍ଥାନ ମଧ୍ୟରେ ପୃଥିବୀର ଅଧିବାସୀମାନେ ଅବରୁଦ୍ଧ ଥିଲେ । ରୁ (Ru) ନାମକ ଜଣେ ଯାତ୍ରୀ - ପ୍ରବାସୀ ପୃଥିବୀରେ କିଛି ଦିନ ବାସ କରିବା ନିମିତ୍ତ ଆସିଥିଲେ । ସେ ପୃଥିବୀବାସୀଙ୍କର ଦୁଃଖରେ ବ୍ୟଥିତ ହୋଇ ଆକାଶକୁ କିଛିଟା ଉର୍ଦ୍ଧ୍ୱକୁ ଉଠାଇବାକୁ ଚେଷ୍ଟା କଲେ । ଏହି ନିମିତ୍ତ ସେ କେତେଗୁଡ଼ାଏ ଗଛ କାଠି ଖୁଣ୍ଟି ପ୍ରସ୍ତୁତ କଲେ ଏବଂ ସେହି ଦ୍ୱୀପର କେନ୍ଦ୍ରଭୂମି ରଙ୍ଗିମୋସିଆ (Rangimotia) ନାମକ ସ୍ଥାନରେ ସେ ଗୁଡ଼ିକୁ ପୋତି ଆକାଶକୁ କିଛିଟା ଉର୍ଦ୍ଧ୍ୱକୁ ଉଠାଇଲେ । ଏଥିରେ ପୃଥିବୀବାସୀମାନେ ...ଙ୍କ ପ୍ରତି ଅତ୍ୟନ୍ତ ସନ୍ତୁଷ୍ଟ ହେଲେ । ଏକଦା ...ବୃଦ୍ଧ ଯେତେବେଳେ ସେହି କାର୍ଯ୍ୟର ...ରଣ କରୁଥିଲେ ସେହି ସମୟରେ ତାଙ୍କ ...ଇ ( Maui ) ପିତାଙ୍କୁ ଦର୍ଶନ କରୁଅଛି ...ମ୍ଭରଲେ । ରୁ (Ru) ବିରକ୍ତ ହୋଇ ...ଚିଲେ, "ଛୋଟ ଛୁଆ କହିବାକୁ କଏ ଶିଖାଇ ଦେଲା ? ତୁ ତୋହର ନିଜ କାର୍ଯ୍ୟରେ ମନୋଯୋଗ ଦେ, ନ ହେଲେ ତତେ ଜାଣିଛି ମାରି ପକାଇବି ।" ମାଉଇ ( Maui ) ଉତ୍ତର ଦେଲା, "ତେବେ ତାହାହିଁ କର ।" ରୁ(Ru) ତାହାକୁ ଧରି ନିଜର ଉପରକୁ ଫୋପାଡି ଦେଲେ ମାତ୍ର ମାଉଇ ତତ୍କାଳେ ପକ୍ଷୀ ଆକାର ଧାରଣ କରିଥିବାରୁ ଅନୌ ଆଘାତ ପାଇଲା ନାହିଁ । ପରେ ପ୍ରତିଶୋଧପରବଶ ହୋଇ ସେ ସ୍ୱାଭାବିକ ରୂପ ଧାରଣ କଲା ଏବଂ ନିଜର ଆକାରକୁ ବହୁଗୁଣ ବର୍ଦ୍ଧିତ କରି ପିତା ଅଣ୍ଡାକୁ ଧାବିତ ହେଲା ଏବଂ ପିତାଙ୍କୁ ଧରି ଉର୍ଦ୍ଧ୍ୱକୁ ନିକ୍ଷେପ କଲା । ରୁ ସଙ୍ଗେ ସଙ୍ଗେ ଆକାଶ ମଧ୍ୟରେ ଏତେ ଦୂରକୁ ନିକ୍ଷିପ୍ତ ହେଲେ ଯେ ଆଉ ସେ ସ୍ଥାନରୁ ଫେରି ଆସି ପାରିଲେ ନାହିଁ । ଏହି ହେତୁରୁ ବର୍ତ୍ତମାନ ଆମ୍ଭେମାନେ ଆକାଶକୁ ଏତେ ଉର୍ଦ୍ଧ୍ୱରେ ଦେଖୁଁ । ରୁ ର ମସ୍ତକ ଓ ସ୍କନ୍ଧଦେଶ ନକ୍ଷତ୍ରପୁଞ୍ଜ ମଧ୍ୟରେ ଲାଗି ରହିଲା ଏବଂ ତାହାର ଅସ୍ଥିଗୁଡ଼ିକ ପ୍ରସ୍ତରଖଣ୍ଡରୂପେ ସମୁଦ୍ରକୂଳରେ ବହୁଦିନ ପର୍ଯ୍ୟନ୍ତ ପଡ଼ିଥିଲା । ନିଉଜିଲାଣ୍ଡ ( New Zeland ) ରେ ମଧ୍ୟ ଠିକ ଏହିପରି ପ୍ରବାଦ ପ୍ରଚଳିତ ଅଛି ।

ଅଧିକାଂଶ ପୌରାଣିକ ଉପାଖ୍ୟାନ ( Myth )ର ଲକ୍ଷଣ ଏହି ଯେ ସେଗୁଡ଼ିକ ନିତ୍ୟ ନୈମିତ୍ତିକ ଘଟଣାବିଶେଷକୁ ପରିବର୍ତ୍ତିତ ଆକାରରେ ଗୋଟିଏ ଐତିହାସିକ ସାମୟିକ ଘଟଣାରୂପରେ ପ୍ରକାଶ କରେ । ଦିବା ରାତ୍ରିର ଦୈନିକ ବିବାଦ ଏବଂ ଶୀତ ବସନ୍ତର ବାର୍ଷିକ ବିବାଦ ଏହି ପ୍ରକାର ଆଖ୍ୟାୟିକାରେ ନିବଦ୍ଧ ହୋଇଅଛି । ଉଲ୍ଲିଖିତ ପ୍ରବାଦଟି ନିମ୍ନଲିଖିତରୂପେ ବ୍ୟାଖ୍ୟାତ ହୋଇପାରେ । ଅନ୍ଧକାର ରାତ୍ରିରେ ଆକାଶ ପୃଥିବୀକୁ ଆଚ୍ଛନ୍ନ କରିଥିବାପରି ଦେଖାଯାଏ । ଆକାଶ ଏବଂ ପୃଥିବୀ ଅଭିନ୍ନ ଦିଶନ୍ତି । ପ୍ରଭାତ ଆଗମନରେ ପୃଥିବୀର ଆଚ୍ଛାଦନ କ୍ରମଶଃ ପରିମାଣରେ ଉନ୍ମୋଚିତ ହୁଏ । ତତ୍ପରେ ସୂର୍ଯ୍ୟ ମାଉଇ (Maui) ରୂପେ ଉଦିତ ହୁଅନ୍ତି । ତାଙ୍କର କିରଣ ପ୍ରଥମରେ

ପୃଥିବୀ ଉପରେ ପଡ଼େ, ପରେ ତାହା ଆକାଶମଧ୍ୟ ପରିବ୍ୟାପ୍ତ ହୁଏ ଏବଂ ଆକାଶ ଓ ପୃଥିବୀର ମଧ୍ୟସ୍ଥିତ ବ୍ୟବଧାନକୁ ସୁସ୍ପଷ୍ଟରୂପେ ପ୍ରକାଶ କରେ ।

ବର୍ତ୍ତମାନ ବେଦ ସମ୍ବନ୍ଧରେ ଆଲୋଚନା କରାଯାଉ । ଋଗ୍‌ବେଦାଦି ଗ୍ରନ୍ଥର ଅନେକସ୍ଥଳରେ ପୃଥିବୀ ଓ ଆକାଶର ପୃଥକ୍‌କରଣ ବିଷୟ ବର୍ଣ୍ଣିତ ଅଛି ଏବଂ ଏହି କାର୍ଯ୍ୟ ସର୍ବାପେକ୍ଷା ଜନଶ୍ରେଷ୍ଠ ଦେବତାଙ୍କଠାରେ ଆରୋପିତ ହୋଇଅଛି । "ଅଗ୍ନି ପୃଥିବୀକୁ ଧାରଣ କରିଅଛି ଏବଂ ଆକାଶକୁ ଧାରଣ କରିଅଛି ।" (ଋକ୍ ୧ଅ, ୬୭, ୩) ପୁଣି "ଇନ୍ଦ୍ର ଆକାଶ ଓ ପୃଥିବୀକୁ ପୃଥକ୍ କରି ରଖିଅଛନ୍ତି ।" (ଋକ୍ ୧୦ ଅ ୮୯,୪) "ସୋମ ଆକାଶ ଓ ପୃଥିବୀକୁ ପୃଥକ୍ କରି ରଖିଅଛନ୍ତି ।" (ଋକ୍ ୯ଅ, ୧୦୧, ୧୧) ଐତରେୟ ବ୍ରାହ୍ମଣରେ ଅଛି "ଏହି ଦୁଇ ଦେବ (ଆକାଶ ଓ ପୃଥିବୀ) ଏକ ସମୟରେ ଏକତ୍ର ଥିଲେ, ତତ୍ପରେ ସେମାନେ ପୃଥକ୍ ହେଲେ, ତତ୍ପରେ ବୃଷ୍ଟି ହେଲା ନାହିଁ ଏବଂ ସେମାନଙ୍କ ମଧ୍ୟରେ ବିବାଦ ଉପସ୍ଥିତ ହେଲା, ଦେବତାମାନେ ଏହି ଦୁହିଁଙ୍କୁ ଏକତ୍ରିତ କଲେ, ତତ୍ପରେ ଆକାଶ ଓ ପୃଥିବୀ ମଧ୍ୟରେ ଦୈବ ପରିଣୟ ସମ୍ପନ୍ନ ହେଲା ।" ବୈଦିକ ଋଷିମାନେ ମନେ କରୁଥିଲେ ଆକାଶ ଓ ପୃଥିବୀ ଯାବତୀୟ ପଦାର୍ଥର ଜନକ ଜନନୀ ଅଟନ୍ତି । ପ୍ରାଚୀନ ଗ୍ରୀକ୍ ସାହିତ୍ୟରେ ମଧ୍ୟ ଦେଖାଯାଏ ଯେ ଇଟାଲି ଓ ଗ୍ରୀସରେ ଏହି ପ୍ରକାର ଧାରଣା ବିଦ୍ୟମାନ ଥିଲା । ହୋମର (Homer) ପୃଥିବୀକୁ ସମ୍ବୋଧନ କରି କହୁଅଛନ୍ତି,—

"Mother of gods, the wife of the
starry heaven."

ଇଉରିପିଡସ୍ (Euripides) କହନ୍ତି—

"There is the mighty Earth, jove's
Æther
He (the Æther) is the creator of men
and gods;
The Earth receiving the moist drops
of rain
Bears mortals
Bears food, and the tribes of animals;
Hence she is not unjustly regarded
As the mother of all."

ଅତଏବ ଆମ୍ଭେମାନେ ଦେଖିଲୁଁ ଯେ ଭାରତ ବର୍ଷ, ଗ୍ରୀସ ଓ ଇଟାଲୀଦେଶୀୟ ଆର୍ଯ୍ୟମାନଙ୍କରେ ଆକାଶ ଓ ପୃଥିବୀ ସମ୍ବନ୍ଧରେ ଏକ ଭାବ ବିଦ୍ୟମାନ ଥିଲା ।

ଋଷିମାନେ ଆକାଶକୁ '[illegible]' '[illegible]' "[illegible]" ଓ ପୃଥିବୀକୁ "[illegible]" "[illegible]" ([illegible], "[illegible]" "[illegible]" (ଜ୍ୟୁପିଟରଜନକ) ପ୍ରଭୃତି ଆଖ୍ୟାରେ ଅଭିଧାନ କରୁଥିଲେ । ଏଥିରୁ ଜଣାପଡ଼ୁଛି ବୈଦିକ ଋଷିମାନେ ପ୍ରାକୃତିକ ଆକାରକୁ ନିରାକାରରେ, ଇନ୍ଦ୍ରିୟଗ୍ରାହ୍ୟ ବସ୍ତୁକୁ ଇନ୍ଦ୍ରିୟାତୀତ ବସ୍ତୁରେ, ମାନବୀୟ ଭାବରୁ ଦେବଭାବରେ ଯାଇ ଉପସ୍ଥିତ ହୋଇଥିଲେ । ଆକାଶ ଓ ପୃଥିବୀ ଦୃଷ୍ଟିପଥର ବହିର୍ଭୂତ ନୁହେଁ ଏବଂ ଆମ୍ଭମାନଙ୍କ ମନରେ ତାହା ଦ୍ରଷ୍ଟବ୍ୟ ଓ ସୀମାବଦ୍ଧ ବସ୍ତୁ ମଧ୍ୟରେ ପରିଗଣିତ । କିନ୍ତୁ ଋଷିମାନେ ଯଦ୍ୟପି ଆକାଶ ଓ ପୃଥିବୀକୁ ଦେଖି ପାରୁଥିଲେ ତଥାପି ସମଗ୍ର ଆକାଶ ଓ ପୃଥିବୀକୁ ଦେଖି ନ ପାରୁଥିବାରୁ ମନେ କରୁଥିଲେ ଯେ ଏହିପରି ଦୃଶ୍ୟମାନ ବସ୍ତୁଦ୍ୱୟର ଅନ୍ତରାଳରେ କୌଣସି ଇନ୍ଦ୍ରିୟାତୀତ ଅନନ୍ତ ବସ୍ତୁର ସତ୍ତା ବିଦ୍ୟମାନ ଅଛି, ସେହି ହେତୁରୁ ସେମାନେ ବୃକ୍ଷ, ଲତା, ମନୁଷ୍ୟ ପ୍ରଭୃତିଙ୍କୁ ଯେଉଁ ଚକ୍ଷୁରେ ଦେଖୁଥିଲେ, ଆକାଶ ଓ ପୃଥିବୀକୁ ସେହି ଚକ୍ଷୁରେ ଦେଖୁ ନ ଥିଲେ ।

କିନ୍ତୁ ଏ ଭାବ ବହୁ ଦିନ ସ୍ଥାୟୀ ହୋଇ ନ ଥିଲା । ଯେତେବେଳେ ବୈଦିକ ଋଷି ବ୍ୟକ୍ତିତ୍ୱସମ୍ପନ୍ନ ଈଶ୍ୱରଙ୍କର (Persona ପୂଜା କରିବାକୁ ଆରମ୍ଭ କଲେ, ସେହି ସ ସେମାନଙ୍କ ମନରେ ଏହି ପ୍ରଶ୍ନ "ଏହି ଆକାଶ ଓ ପୃଥିବୀକୁ କିଏ ସୃଷ୍ଟି କରିଅଛ

ଧର୍ମରେ ସେ ସମାବେଶ ଦେଖନ୍ତି ସେ ଏହି ନିଷ୍କଳ ଅକାଶ ଓ ପୃଥିବୀକୁ ସୃଷ୍ଟି କରିଅଛନ୍ତି ।" ଋଗ୍ବେଦରେ ଆକାଶ ଓ ପୃଥିବୀର ସୃଷ୍ଟିକାର୍ଯ୍ୟ ଇନ୍ଦ୍ରଙ୍କଠାରେ ଆରୋପିତ ହୋଇଅଛି । ଋଷି ଇନ୍ଦ୍ରଙ୍କୁ ସମ୍ବୋଧନ କରି କହୁଅଛନ୍ତି, "ଆମ୍ଭମାନଙ୍କ ପୂର୍ବରୁ କେଉଁ ଋଷି ତୁମ୍ଭର ମହିମାର ଅନ୍ତ ଦେଖିଅଛନ୍ତି ? କାରଣ ତୁମ୍ଭେ ତୁମ୍ଭର ନିଜ ଶରୀରରୁ ତୁମ୍ଭର ପିତାମାତାଙ୍କୁ (ଆକାଶ ଓ ପୃଥିବୀକୁ) ଜନ୍ମ କରାଅଛ ।"

ଏକ ପକ୍ଷରେ ଆକାଶ ଓ ପୃଥିବୀ ସମୁଦାୟ ଦେବତାମାନଙ୍କ ଜନକ ଜନନୀ ଅଟନ୍ତି ଏବଂ ଅନ୍ୟ ପକ୍ଷରେ ପ୍ରତ୍ୟେକ ଶକ୍ତିଶାଳୀ ଦେବତାଙ୍କୁ ଆକାଶର ସୃଷ୍ଟିକର୍ତ୍ତା ବୋଲି କଥିତ ହୋଇଅଛି । ଋଗ୍ବେଦର ବିଶେଷ ବିଶେଷ ସ୍ଥାନରେ ପୃଥିବୀ ଓ ଆକାଶର ସୃଷ୍ଟି କାର୍ଯ୍ୟ ସୋମ, ସୂର୍ଯ୍ୟ ପ୍ରଭୃତି ଦେବତାଙ୍କଠାରେ ଅର୍ପିତ ହୋଇଅଛି । ଋଗ୍ବେଦର ଧର୍ମର ଅନ୍ତର୍ବିଷୟ Max Muller ଙ୍କ କଥାରେ ପ୍ରକଟିତ ହେଲା ।

"When we see those two giant spectres of heaven and earth on the background of the Vedic religion, exerting their influence for a time, and then vanishing before the light of more active gods, we learn a lesson which it is well to learn, and which we could hardly learn anywhere else—the lesson how gods were made and unmade—how the Beyond or Infinite was named by different names in order to bring it near to the mind of man, to make it for a time comprehensible, untill when name after name had proved of no avail, a nameless God was felt to answer best the restless cravings of the human heart."

ଶ୍ରୀ ଅନନ୍ତଚନ୍ଦ୍ର ଦାସ ।



## ସଂଗ୍ରାମ ଓ ଜୀବନ ।

(କଟକ ଛାତ୍ରସମାଜର ସାପ୍ତାହିକ ଉତ୍ସବ ଉପଲକ୍ଷରେ ଲିଖିତ ଓ ପଠିତ)



ଜୀବନ ଏହି ଶବ୍ଦଟି ଉଚ୍ଚାରିତ ହେବା ସଙ୍ଗେ ସଙ୍ଗେ ସଂଗ୍ରାମ ଏହି ଶବ୍ଦଟି ମଧ୍ୟ ସୂଚିତ ହୁଏ । ଏହି ଦୁଇ ଶବ୍ଦ ଆମ୍ଭମାନଙ୍କ ମନରେ ଓତପ୍ରୋତରୂପ ସମ୍ବନ୍ଧରେ ଏକତ୍ର ଗ୍ରଥିତ । ଜଡ଼ଠାରୁ ଆରମ୍ଭ କରି ଉଦ୍ଭିଜ୍ଜ ପଶୁପକ୍ଷ୍ୟାଦି ସମସ୍ତ ସୃଷ୍ଟ ବସ୍ତୁ ସଂଗ୍ରାମରେ ବ୍ୟସ୍ତ । ଯାହାର ସଂଗ୍ରାମ ନାହିଁ, ତା ଅସ୍ତିତ୍ୱ ନାହିଁ, ଜୀବନ କଥା ଦୂରେ ... ଯେ ଜଡ଼ପଦାର୍ଥ ସକଳ ଯେଉଁମାନଙ୍କୁ ... ବାହ୍ୟତଃ ନିଶ୍ଚଳ ଏବଂ ସ୍ଥିର ଦେଖୁଁ, ... ଅସ୍ତିତ୍ୱ ନିମିତ୍ତ ଚତୁର୍ଦ୍ଦିଗସ୍ଥ ପଦାର୍ଥ ... ମୁହୂର୍ତ୍ତ ଅବିରତ ଭାବରେ ... ପରମାଣୁ ବିଶ୍ଳେଷଣର ଅନ୍ୟାନ୍ୟ ଯାବତୀୟ ପରମାଣୁଦ୍ୱାରା ଆକର୍ଷଣ ଓ ବିପ୍ରକର୍ଷଣ ବଳରେ ଆକୃଷ୍ଟ ଏବଂ ବିତାଡ଼ିତ । କିନ୍ତୁ ସେମାନଙ୍କ ଆକର୍ଷଣ-ବିପ୍ରକର୍ଷଣ-ବଳର ସମତା ହେତୁ ପଦାର୍ଥମାନଙ୍କର ଦୃଶ୍ୟମାନ ନିଶ୍ଚେଷ୍ଟତା ଉତ୍ପାଦିତ ହୁଏ । ଯେପରି ଦୁଇ ବ୍ୟକ୍ତି ପରସ୍ପରକୁ ଟାଣିଲେ ସେମାନଙ୍କ ଶକ୍ତି ଯେବେ ସମାନ ଥାଏ, ତେବେ ସେମାନେ ନିଜ ନିଜ ପୂର୍ବ ସ୍ଥାନରେ ନିଶ୍ଚେଷ୍ଟଭାବରେ ଦଣ୍ଡାୟମାନ ରହିଥିବାପରି ବୋଧ ହୁଏ । କିନ୍ତୁ ବସ୍ତୁତଃ ସେମାନେ ସମସ୍ତ ଶକ୍ତି ପ୍ରୟୋଗ କରି ସଂଗ୍ରାମରେ ବ୍ୟସ୍ତ ଥାନ୍ତି । ସେହିପରି ଉଦ୍ଭିଦ-ଜଗତର କାର୍ଯ୍ୟକଳାପ ପର୍ଯ୍ୟବେକ୍ଷଣ କଲେ ଆମ୍ଭେମାନେ ଦେଖିପାରୁଁ,

ସେଠାରେ ମଧ୍ୟ ନିତ୍ୟ ସଂଗ୍ରାମ ଲାଗିଅଛି । ଜାତ ଭୂମିରେ ପ୍ରୋଥିତ ହେଲା ମୁହୂର୍ତ୍ତରୁ ତାହାକୁ କେତେ ବାଧା ବିଘ୍ନ ଅତିକ୍ରମ କରି କେତେ ଶତ୍ରୁକୁ ପରାସ୍ତ କରି ସ୍ୱୀୟ ଅସ୍ତିତ୍ୱ ରକ୍ଷା କରିବାକୁ ହେଉଅଛି । ପ୍ରାଣିଜଗତରେ କୀଟ ପତଙ୍ଗ ପଶୁ ପକ୍ଷୀ ଜୀବଗଣଙ୍କୁ ମଧ୍ୟ ସ୍ୱ ସ୍ୱ ଜୀବନରକ୍ଷା ନିମନ୍ତେ ନିରନ୍ତର ଘୋର ସଂଗ୍ରାମରେ ବ୍ୟାପୃତ ରହିବାକୁ ହେଉଅଛି । ଏହିପରି ସମସ୍ତେ ପ୍ରତି ନିୟତ ଜୀବନ-ସଂଗ୍ରାମରେ ବ୍ୟସ୍ତ । ଏହି ସଂଗ୍ରାମରେ ଯୋଗ୍ୟତମର ଜୟ (Survival of the fittest) ଅବଶ୍ୟମ୍ଭାବୀ । ଦୁର୍ବଳ ପରାସ୍ତ ହୋଇ ପ୍ରବଳକୁ ପଥ ପ୍ରଦାନ କରୁଅଛି ଏବଂ ନିଜେ ପରିପିଷ୍ଟ ହୋଇ ଚରମରେ ବିନଷ୍ଟ ହୋଇ ଯାଉଅଛି । ଅପରନ୍ତୁ ଯାହାର ଜୀବନ ଯେତେ ଜଟିଳ ଏବଂ ଉନ୍ନତ, ତାହାର ଜୀବନ-ସଂଗ୍ରାମ ସେତେ କଠିନ ଏବଂ ଦୁରୂହ । ଏହିପରି ସୃଷ୍ଟିର ଯାବତୀୟ ବସ୍ତୁ ବା ପ୍ରାଣୀ ଯେତେବେଳେ ଯୁଦ୍ଧଦ୍ୱାରା ସ୍ୱୀୟ ଅସ୍ତିତ୍ୱ ରକ୍ଷା ବା ଜୀବନ ଧାରଣ କରୁଅଛନ୍ତି, ସୃଷ୍ଟିର ଶ୍ରେଷ୍ଠ ଜୀବ ମାନବ ପକ୍ଷରେ ସେହି ନିୟମର କାହିଁକି ବ୍ୟତିକ୍ରମ ହେବ ? ବରଂ ମାନବଜୀବନର ଯେତିକି ପରିମାଣରେ ଶ୍ରେଷ୍ଠତା, ତାହାର ସଂଗ୍ରାମ ସେତିକି ପରିମାଣରେ କଠିନ ହେବାର ସମ୍ଭାବନା ଏବଂ ତାହାହିଁ କାର୍ଯ୍ୟତଃ ଘଟୁଅଛି ।

ପଶୁପକ୍ଷ୍ୟାଦି ଇତର ପ୍ରାଣିଗଣ ପ୍ରକୃତିଦତ୍ତ ପ୍ରବୃତ୍ତି (Instinctive impulses) ଦ୍ୱାରା ପରିଚାଳିତ ହୋଇ ସ୍ୱୀୟ ଜୀବନ ପରିଚାଳନ କରୁଅଛନ୍ତି । ବିହଙ୍ଗଶାବକ ବା ପଶୁବତ୍ସ ଜନ୍ମର କତିପୟ କ୍ଷଣ ମଧ୍ୟରେ ନିଜ ଚରଣୋପରି ଶରୀରର ଭାର ବିନ୍ୟସ୍ତ କରି ଧରଣୀପୃଷ୍ଠରେ ଦଣ୍ଡାୟମାନ ବା ଶୂନ୍ୟ ମାର୍ଗରେ ଉଡ୍ଡୀୟମାନ ହେବାକୁ ସମର୍ଥ ହୁଏ । କିନ୍ତୁ ମାନବଶିଶୁ ପକ୍ଷରେ ଏହି କାର୍ଯ୍ୟ କେତେଦୂରେ କଠିନ ! ତାହା ପକ୍ଷରେ ଏହା ଶିକ୍ଷା-ସାପେକ୍ଷ ଏବଂ ଦୀର୍ଘକାଳବ୍ୟାପୀ ସାଧନର ଫଳ । ପଶୁ ନିମିତ୍ତ ପାନାହାର ପ୍ରସ୍ତୁତ ହୋଇ ରହିଅଛି । ଦିଗନ୍ତବିସ୍ତାରୀ ହରିତ୍ ପ୍ରାନ୍ତରଶ୍ରେଣୀ ସମ୍ମୁଖରେ ବିସ୍ତୃତ । କିନ୍ତୁ ମାନବର ଖାଦ୍ୟ ବସ୍ତୁ ଅପ୍ରସ-ଲଭ୍ୟ । ପଶୁ ପକ୍ଷୀ ନିଜ ନିଜ ଅଙ୍ଗପ୍ରତ୍ୟଙ୍ଗ ସଞ୍ଚାଳନ କରି ଖାଦ୍ୟ ଗ୍ରହଣ କରନ୍ତି । କିନ୍ତୁ ମନୁଷ୍ୟ ତନ୍ନିମିତ୍ତ ଅସ୍ତ୍ରଶସ୍ତ୍ର ଆବଶ୍ୟକ କରେ । ପ୍ରତ୍ୟେକ ପଶୁର ଶିର ଶରୀର ତୁଳନାରେ ଅଳ୍ପ-ଭାରବିଶିଷ୍ଟ । ସୁତରାଂ ସନ୍ତରଣ ସମୟରେ ଶିର ଜଳୋପରି ଭାସମାନ ହେବାରୁ ସନ୍ତରଣ ପଶୁ ପକ୍ଷରେ ସହଜ ଓ ସ୍ୱାଭାବିକ । କିନ୍ତୁ ମାନବର ମସ୍ତକ ଶରୀରର ତୁଳନାରେ ବିଶେଷ ଭାର-ବିଶିଷ୍ଟ, ତେଣୁ ସନ୍ତରଣ ମାନବ ପକ୍ଷରେ ଆୟାସକର । ଏ ସୃଷ୍ଟିରେ ମାନବର ଅବସ୍ଥା ଭାବିଲେ ସ୍ତବ୍ଧ ହେବାକୁ ହୁଏ । ମନୁଷ୍ୟ ସେହି ସହସ୍ରହସ୍ତପ୍ରସ୍ତୁତ ଆଶ୍ଚର୍ଯ୍ୟଜନକ ଅଟକାଳି (Wonderful pudding) ପ୍ରଭୃତି ଭୋଜନ କରୁଅଛି । ମାନବ ଅତି ଦୁର୍ବଳ, ତାହାର ଅଭାବ ସର୍ବାପେକ୍ଷା ଅଧିକ । କିନ୍ତୁ ତାହାକୁ ଜଗତ୍‌ସ୍ରଷ୍ଟା ଯେଉଁ ଅନନ୍ତ ଉନ୍ନତିଶୀଳ ମାନସିକ ଶକ୍ତି ପ୍ରଦାନ କରିଅଛନ୍ତି ତତ୍‌ସାହାଯ୍ୟରେ ଏହି ସବୁ ଅସୁବିଧା ସତ୍ତ୍ୱେ ସେ ଯେ କେବଳ ତାହାର ଜୀବନର ଅଭାବ ସକଳ ମୋଚନ କରି ପାରୁଅଛି ତାହା ନୁହେଁ, ଅଧିକନ୍ତୁ ତାହାର ଅତୁଳ୍ୟ ଉନ୍ନତି ସାଧନପୂର୍ବକ ଜଡ଼ୀୟ ଏବଂ ପାଶବ ଜଗତ ଉପରେ ଆଧିପତ୍ୟ ସଂସ୍ଥାପନ କରିଅଛି । ଉନ୍ନତିପରାୟଣତାହିଁ ମାନବତ୍ୱ ଏବଂ ଅନନ୍ତ ଉନ୍ନତି ଅର୍ଥ ଅନନ୍ତ ସଂଗ୍ରାମ ।

କିନ୍ତୁ ଏତାହିଁ କି ମାନବର ଶ୍ରେଷ୍ଠତା ? ବୈଦ୍ୟୁତିକ ରଶ୍ମି, ବାଷ୍ପ ଆଧିପତ୍ୟ ଇତ୍ୟାଦି ଉନ୍ନତିଶୀଳ ମାନବକୁ ମାନବେତର ପ୍ରାଣୀଗଣଙ୍କ ମଧ୍ୟରେ ପ୍ରାଧାନ୍ୟ ପ୍ରଦାନ କଲେ ସୁଦ୍ଧା ତା
ସ୍ୱାତନ୍ତ୍ର୍ୟ ଏବଂ ଶ୍ରେଷ୍ଠତାର କାରଣ
ନୁହେ, ଜଗତରେ । ଅନନ୍ତ ଉନ୍ନତିଶ
ମନହିଁ ତାହା ପକ୍ଷରେ ବିଶ୍ୱବ୍ୟାପ
ଆଶୀର୍ବାଦ । ଏହି
ଗୁରୁତ୍ୱ ସଙ୍ଗେ ସଙ୍ଗେ

ଅଛି । ମହାଜନୋକ୍ତି ଅଛି,—ଯାହାକୁ ବିଶେଷ ଶକ୍ତି ପ୍ରଦତ୍ତ ହୋଇଅଛି, ତାହାର ବିଶେଷ ଦାୟିତ୍ୱ ଅଛି ।

ମନୁଷ୍ୟ ମଧ୍ୟରେ ପାଶବ ମାନବୀୟ ଏବଂ ଦୈବ ଏହି ତ୍ରିବିଧ ଭାବର ସମାବେଶ । ଯେଉଁ ମନୁଷ୍ୟଗଣ କେବଳ ଆହାର ବିହାର ନିଦ୍ରାରେ ଜୀବନ ଅତିବାହିତ କରନ୍ତି, ସେମାନେ ମାନବ-ଦେହଧାରୀ ପଶୁମାତ୍ର । ପାନାହାର ନିମନ୍ତେ ପଶୁ ପକ୍ଷୀ ମଧ୍ୟ ବନ ପର୍ବତରେ ସଂଗ୍ରାମ କରନ୍ତି, ଏଥିରେ ମନୁଷ୍ୟର ପ୍ରାଧାନ୍ୟ ଥାଇ ପାରେ କିନ୍ତୁ ସ୍ୱାତନ୍ତ୍ର୍ୟ ନାହିଁ । ଏ ବିଷୟରେ ମନୁଷ୍ୟକୁ ପ୍ରଧାନ ପଶୁ ବୋଲିଯାଇ ପାରେ ।

ମାନବର ମାନବତ୍ୱ ମନରେ, ଆତ୍ମର ସଂଗ୍ରାମରେ । ମାନବମନ ଜ୍ଞାନ, କର୍ମ ଏବଂ ପ୍ରେମର ହେତୁଭୂତ ବୁଦ୍ଧି ଇଚ୍ଛା ଓ ଭାବର ସମାବେଶ ।

ତରବୋଽପି ହି ଜୀବନ୍ତି ଜୀବନ୍ତି ମୃଗପକ୍ଷିଣଃ
ସ ଜୀବତି ମନୋ ଯସ୍ୟ ମନନେନ ହି ଜୀବତି ।

ଜଗତର ଇତିହାସ ପାଠ କଲେ ଦେଖାଯାଏ ଯେ ଜ୍ଞାନପିପାସୁ ମାନବ କେତେ ବାଧା ବିଘ୍ନ ଦୁଃଖ ଦାରିଦ୍ର୍ୟ ପ୍ରତିକୂଳ ଅବସ୍ଥା ସଙ୍ଗରେ ସଂଗ୍ରାମ କରି ଅସାଧ୍ୟ ସାଧନ କରି ଯାଇଅଛନ୍ତି । ଯେଉଁ ରୁଷୋଙ୍କ ତେଜୋମୟୀ ଲେଖନୀସମ୍ଭୂତ ଅଗ୍ନିମୟୀ ବାଣୀପରମ୍ପରା ସମଗ୍ର ଜଗତରେ ନବ ଯୁଗର ଆବିର୍ଭାବକାରୀ ପ୍ରଳୟସଙ୍କାଶ ମହା ଫରାସୀରାଷ୍ଟ୍ରବିପ୍ଳବର ଏକତମ ହେତୁ, ସେହି ପୁରୁଷସିଂହ ଗାରେଟ୍ ନିବାସୀ ଥିଲେ । ଇଂଲଣ୍ଡର ସୁସନ୍ତାନ ଜନ୍‌ସନ୍ ଏବଂ ସାଭେଜ୍ ଯେତେବେଳେ ଏକ ସଙ୍ଗରେ ଲଣ୍ଡନ ନଗରୀକୁ ଆଗମନ କରି-ଥିଲେ, ସେମାନଙ୍କୁ ନିଜ ମହାନଗରୀରେ ମସ୍ତକ [illegible] ସ୍ଥାନ ମିଳି ନ ଥିଲା; ଦୁଇ ବନ୍ଧୁ [illegible] ରାଜପଥରେ ଭ୍ରମଣ କରି ରାଜ-[illegible] ସାହାଯ୍ୟରେ ଗ୍ରନ୍ଥ ଅଧ୍ୟୟନ କରି ଜ୍ଞାନପିପାସା ନିବାରଣ

ସୁପୁରୁଷ ଗାରଫିଲ୍ଡଙ୍କ ଜୀବନ କାହାଣୀ ଆମ୍ଭେମାନେ ସମସ୍ତେ ଜାଣୁଁ । ଆମ୍ଭମାନଙ୍କ ଏହି ଦେଶରେ ବିଦ୍ୟାସାଗର ଦାରିଦ୍ର୍ୟ ଓ ପ୍ରତିକୂଳ ଅବସ୍ଥା ବିରୁଦ୍ଧରେ ମହାସମର ଘୋଷଣା କରି ଥିଲେ, ତାହାର ଜୟନିନାଦ ଏପର୍ଯ୍ୟନ୍ତ ଏହି ଦେଶବାସିଙ୍କ କର୍ଣ୍ଣପଟହରେ ପ୍ରତିଧ୍ୱନିତ ହେଉଅଛି । ଏହିପରି ଜ୍ଞାନପିପାସୁ ମାନବ ନିରନ୍ତର ସେହି ଅସୀମ ଜ୍ଞାନାକାଶର ଚକ୍ରବାଳ ନିକଟକୁ ଅଗ୍ରସର ହେଉଅଛି । କିନ୍ତୁ ତାହାର ସୀମା ନାହିଁ । ମନୁଷ୍ୟ ଯେତେ ଅଗ୍ରସର ହେଉଅଛି, ଜ୍ଞାନରାଜ୍ୟର ପରିସର ସେତେ ବର୍ଦ୍ଧିତ ହୋଇ ଯାଉଅଛି ଏବଂ ସଂଗ୍ରାମ ଭୀଷଣତର ଆକାର ଧାରଣ କରୁଅଛି । ତଥାପି ଜ୍ଞାନପିପାସୁ ମହାତ୍ମାର କବିଙ୍କ ଭାଷାରେ କହୁଅଛନ୍ତି:—

..................................I will drink
Life to the lees. .................................
I am a part of all that I have met
Yet all experience is an arch where-thro'
Gleams that untravelled world, whose margin fades
For ever and for ever when I move.
How dull it is to pause, to make an end
To rust unburnished, not to shine in use!
As tho to breathe were life. Life piled on life
Were all to little, and of one to me
Little remains. But every hour is saved
From that eternal silence, something more
A bringer of new things; and vile it were
For some three suns to store and hard myself
And this gray spirit yearning in desire

To follow knowledge like a sinking star
Beyond the utmost bound of human life.

ଅପରନ୍ତୁ ଜଗତର ଇତିହାସରେ କେତେ ହାନିବଲ, ସିଜର, ପମ୍ପି, ସେକନ୍ଦର, ଗ୍ଲିମାନ୍, ନେପୋଲିଅନ ଅବତୀର୍ଣ୍ଣ ହୋଇ ଉକ୍ତ ସଂଗ୍ରାମ କରି ଯାଇଅଛନ୍ତି । ଜଗତରେ ଯଶୋପାର୍ଜନ ସେମାନଙ୍କ ଉଦ୍ଦେଶ୍ୟ ଥିଲା । ଏମାନେ ମହା ଯଶସ୍ୱୀ ହେଲେ ମଧ୍ୟ ଏମାନଙ୍କ ଶକ୍ତିନିକଟରେ ଆମ୍ଭେମାନେ ବିସ୍ମୟାବିଷ୍ଟ ଚିତ୍ତରେ ସ୍ତମ୍ଭିତ ହୋଇ ପାରୁଁ; କିନ୍ତୁ ଏମାନଙ୍କୁ ହୃଦୟର ଭକ୍ତି ଶ୍ରଦ୍ଧା ଅର୍ପଣ କରି ପାରୁଁ ନାହିଁ । ଏ ଜଗତରେ ଧର୍ମଯୁଦ୍ଧ ଅଧର୍ମଯୁଦ୍ଧ ଦୁଇ ପ୍ରକାର ସଂଗ୍ରାମ ଅଛି । ପକ୍ଷାନ୍ତରେ ଏହି ପୃଥିବୀରେ କେତେ କର୍ମବୀର ସ୍ୱଦେଶପାଇଁ, ଧରାପୃଷ୍ଠରେ ସତ୍ୟ, ନ୍ୟାୟ, ଶାନ୍ତି ଏବଂ ସ୍ୱାଧୀନତା ପ୍ରତିଷ୍ଠିତ କରିବା ପାଇଁ ନିଜ ନିଜର ଧନ ମାନ ସ୍ୱାସ୍ଥ୍ୟ ସାମର୍ଥ୍ୟ ଏମନ୍ତ କି ଜୀବନ ପର୍ଯ୍ୟନ୍ତ ବିସର୍ଜନ ଦେଇ ଯାଇଅଛନ୍ତି । ଗାଲିଲିଓ, ହାମ୍ପ୍‌ଡେନ୍, ଇଲିଅଟ୍, ୱାଶିଙ୍ଗଟନ୍ ଆଦି ବୀରମାନଙ୍କ ପ୍ରତି ଆମ୍ଭମାନଙ୍କ ହୃଦୟର ସମ୍ମାନ ସ୍ୱତଃ ପ୍ରଧାବିତ ହୁଏ; କାରଣ ଏମାନେ ନିଃସ୍ୱାର୍ଥ ଭାବରେ ଧର୍ମ-ଯୁଦ୍ଧରେ ମନପ୍ରାଣ ଅର୍ପଣ କରିଥିଲେ ।

ଏପର୍ଯ୍ୟନ୍ତ ଆମ୍ଭେମାନେ ଯେଉଁ ସଂଗ୍ରାମ ବିଷୟରେ ଆଲୋଚନା କଲୁଁ, ତାହା ମାନବକୁ ପଶୁତ୍ୱ ଅତିକ୍ରମ କରାଇ ମାନବତ୍ୱର ଊର୍ଦ୍ଧ୍ୱତର ଗ୍ରାମକୁ ନେଇ ଯାଏ । ଧର୍ମବୀରଗଣ ମନୁଷ୍ୟର ଆଦର୍ଶର ଅଭିମୁଖରେ ବହୁଦୂର ଅଗ୍ରସର । ଅପିଚ ମାନବମଧ୍ୟରେ ଯେ ଦେବତ୍ୱର ବୀଜ ନିହିତ ଅଛି, ତାହାକୁ ପ୍ରତିକୂଳ ଅବସ୍ଥା ମଧ୍ୟରେ ଅନୁଶୀଳନ ପୂର୍ବକ ବିକଶିତ କରାଇବା ହିଁ ମାନବ ଜୀବନର ଶ୍ରେଷ୍ଠତମ ସଂଗ୍ରାମ । ଶାକ୍ୟସିଂହ, ଈଶା, ମହମ୍ମଦ ଇତ୍ୟାଦି ମହାପୁରୁଷମାନେ ମାନବସମାଜର ପାପ ତାପ ଦୁଃସ୍ଥାର ଦୁଃସଙ୍ଗର ମୋହ ଅନ୍ଧକାର ଇତ୍ୟାଦି ବିନାଶ ଉଦ୍ଦେଶ୍ୟରେ ଏହି ସଂଗ୍ରାମରେ ଜୀବନ ବିସର୍ଜନ ଦେଇ ଜୟଲାଭ ପୂର୍ବକ ଜଗତର ଇତିହାସର ଗତି ପରିବର୍ତ୍ତିତ କରି ମାନବ ସମାଜକୁ ମୂର୍ତ୍ତିମଙ୍ଗଳରୂପ ମହାନ୍ ଆଦର୍ଶାଭିମୁଖରେ ପରିଚାଳିତ କରି ଯାଇଅଛନ୍ତି । ଅବଶ୍ୟ ଆମ୍ଭେମାନେ ସମସ୍ତେ ବୁଦ୍ଧ ବା ଖ୍ରୀଷ୍ଟ ହୋଇ ପାରିବା ନାହିଁ । ତଥାପି ପ୍ରତ୍ୟେକ ମନୁଷ୍ୟ ମଧ୍ୟରେ ଅନନ୍ତ ସମ୍ଭାବନାର ବୀଜ ନିହିତ ଅଛି । ଆମ୍ଭମାନଙ୍କ ପ୍ରତ୍ୟେକଙ୍କୁ ସେହି ଅଙ୍କୁରକୁ ମହାଦ୍ରୁମରେ ପରିଣତ କରିବାର ଶକ୍ତି ଓ ସୁବିଧା ପ୍ରଦତ୍ତ ହୋଇ ଅଛି । କିନ୍ତୁ ହାୟ ! ଆମ୍ଭମାନଙ୍କର ଇଚ୍ଛା ନାହିଁ, ପ୍ରବୃତ୍ତି ନାହିଁ । ଆମ୍ଭେମାନେ ମ୍ରିୟମାଣ ହୋଇ ପଡି ରହିଅଛୁଁ ଏବଂ ମାନବର ପ୍ରଧାନ ଆଶୀର୍ବାଦ ଏବଂ ପଶୁଠାରୁ ଶ୍ରେଷ୍ଠତାପ୍ରଦାନକାରୀ ଯେ ସ୍ୱାଧୀନତା ତାହାର ଅପବ୍ୟବହାର କରି ସାଂସାରିକ ଅସାର ସୁଖ ସମ୍ମାନ ଏବଂ ଯୌବନର ଅପାତ-ମଧୁର ବିଷମୟ ଇନ୍ଦ୍ରିୟସୁଖରେ ଉନ୍ମତ୍ତ ରହିଅଛୁଁ । ଏହା ଜୀବନ ନୁହେଁ, ଏହା ମରଣରୁ ନିକୃଷ୍ଟତର ଜୀବନ୍ମୃତ୍ୟୁ । କବି କହିଅଛନ୍ତି "Better not be at all than not be noble."

ଚରିତ୍ରହୀନ ବ୍ୟକ୍ତି ସମାଜର ଘୋର କଳଙ୍କ । ଯେଉଁ ସମାଜ ନୈତିକଜ୍ଞାନବିରହିତ ଦାମ୍ଭିକ-ଚରିତ୍ର ସାମାଜିକଗଣଙ୍କଦ୍ୱାରା ପୂର୍ଣ୍ଣ ହୁଏ, ସେ ସମାଜର ଗତି କେଉଁ ଆଡ଼କୁ ହୁଏ ? ଆମ୍ଭେମାନେ ନିଜେ କି ଏହା ଶ୍ରେୟସ୍କର ମଣିବା ? କୌଣସି ଲୋକ ଦୁର୍ବୃତ୍ତ ହେଲେ ଆମ୍ଭେମାନେ ତାହାକୁ ଘୃଣା କରୁଁ । ସେହିପରି ଆମ୍ଭେମାନେ ସ୍ୱ ସ୍ୱ ଚରିତ୍ର କଳଙ୍କିତ କଲେ ଅନ୍ୟ ଲୋକେ ଆମ୍ଭମାନଙ୍କୁ ନିନ୍ଦା କରିବେ । ଏହା ହିଁ ସମାଜିକ ଦଣ୍ଡ । ସମାଜ ଯେତେ ପତିତ ହେଉ ପ
ପାପିପ୍ରତି ଘୃଣା ଅନିବାର୍ଯ୍ୟ । ଆମ୍ଭେମାନେ
ଅନ୍ୟଠାରୁ ପୁଣ୍ୟଶୀଳତା ଆଶା କରୁଁ
ଆମ୍ଭମାନଙ୍କର ମଧ୍ୟ ପୁଣ୍ୟଶୀଳ ଓ ସ
କର୍ତ୍ତବ୍ୟ । ଏହା ହିଁ ଅ
ନିୟମ । "Do to

wish others do to you." କିନ୍ତୁ ସଚ୍ଚରିତ୍ରତା ଲାଭ କରିବାକୁ ହେଲେ କାମକ୍ରୋଧାଦିର ଉତ୍ତେଜନା ଏବଂ ଆଳସ୍ୟ ଔଦାସୀନ୍ୟ ବିରୁଦ୍ଧରେ ସଂଗ୍ରାମ କରିବାକୁ ହେବ ।

ପ୍ରତ୍ୟେକ ମନୁଷ୍ୟର ଜୀବନରେ ଏପରି ଗୋଟିଏ ସମୟ ଉପସ୍ଥିତ ହୁଏ, ଯେତେବେଳେ ମହାବୀର ହରକ୍ୟୁଲିସଙ୍କ ପରି ତାହା ସମ୍ମୁଖରେ ଶ୍ରେୟ ଓ ପ୍ରେୟ ଦୁଇ ରମଣୀ ଉପସ୍ଥିତ ହୁଅନ୍ତି । ପ୍ରେୟର ପଥ ସାଂସାରିକ ଆମୋଦ ପ୍ରମୋଦ ହର୍ଷକୋଳାହଳ ଆପାତମଧୁର ଇନ୍ଦ୍ରିୟସୁଖ କିନ୍ତୁ ପରିଣାମରେ ହାହାକାର, ଅନୁତାପ, ଦୁଃଖ ଏବଂ ନୈରାଶ୍ୟ । ପକ୍ଷାନ୍ତରରେ ଶ୍ରେୟର ପଥ ପ୍ରଥମରେ ଦୁର୍ଗମ ହେଲେହେଁ ଚରମରେ ଅନନ୍ତ-ସୁଖ-ଶାନ୍ତିପ୍ରଦ । ସ୍ୱଦେଶୀ ଭ୍ରାତୃବୃନ୍ଦ ! ଆମ୍ଭମାନଙ୍କ ସମ୍ମୁଖରେ ଏକ ଅଡ଼େ ଯୌବନସୁଖ, ସାଂସାରିକ ଆମୋଦ, ଦଶ ଜଣଙ୍କ ସଙ୍ଗରେ ଜଣେ ହେବାର ଆକାଙ୍କ୍ଷା ଏବଂ ଅନ୍ୟ ଅଡ଼େ କଠିନ ସାଧନ, ଇନ୍ଦ୍ରିୟନିଗ୍ରହ, ରିପୁସଂଯମ, ନୀରବ ପ୍ରାର୍ଥନା ଏବଂ ମନଲୋକମାନଙ୍କ କୁଟିଳ କଟାକ୍ଷ ଓ ଉପହାସ ବିଦ୍ରୂପ ଉପସ୍ଥିତ । ଆମ୍ଭେମାନେ କେଉଁଟି ବାଛି ନେବା ? ଭଗବାନ୍ କରନ୍ତୁ ଆମ୍ଭେମାନେ ସେହି ମହାବୀର-ରୂପୀ ଆଦର୍ଶମନୁଷ୍ୟଙ୍କର ପଥ ଅନୁସରଣ କରୁଁ । କିନ୍ତୁ ଏହି ପଥ ସଂଗ୍ରାମର ପଥ ! ଅନ୍ତର ଏବଂ ବାହ୍ୟ ଶତ୍ରୁ ସଙ୍ଗରେ ନିରନ୍ତର ସଂଗ୍ରାମ କରିବାକୁ ପଡ଼ିବ । ଅବଶ୍ୟ ଆମ୍ଭମାନଙ୍କ ପଦସ୍ଖଳନ ହେବ । କିନ୍ତୁ ଅକୃତକାର୍ଯ୍ୟତା ପରେ ନିଶ୍ଚେଷ୍ଟ ହେବା ନାହିଁ । ସଂଗ୍ରାମହିଁ ତ ଜୀବନ, ଆମ୍ଭେମାନେ ପଡ଼ିବା ଏବଂ ଉଠିବା, ନିରାଶ ହେବା ନାହିଁ । ଶେଷରେ ସାଧୁ ମହାତ୍ମାମାନଙ୍କ ପରି ଆମ୍ଭେମାନେ [illegible]ସ୍ଥ କରିବା ଏବଂ ସେତେବେଳେ ଆମ୍ଭ-[illegible]ର ସୀମା ରହିବ ନାହିଁ । ସଂଗ୍ରାମରେ [illegible]ହିବାର ସୁଖର ତୁଳନା ନାହିଁ । [illegible] ହେଲେହେଁ ଆମ୍ଭେମାନେ ଏହି [illegible]ରିଲେ । [illegible] ହେବା । ଏହି ପଥର ପଥିକ ହେବାକୁ ହେଲେ ପ୍ରଥମରେ ଭିତରୁ ସଂଗ୍ରାମ ଆରମ୍ଭ କରିବାକୁ ହେବ । ଅପବିତ୍ରତା, କ୍ରୋଧ, ଲୋଭ, ମିଥ୍ୟାବାଦିତା, ଘୃଣା ପ୍ରଭୃତି ଆମ୍ଭମାନଙ୍କର ପ୍ରଧାନ ଶତ୍ରୁ; ସେହିମାନେହିଁ ଆମ୍ଭମାନଙ୍କ କର୍ତ୍ତବ୍ୟ ପଥ ବଳପୂର୍ବକ ରୋଧ କରନ୍ତି । ଆମ୍ଭେମାନେ ଯେବେ ଅଭ୍ୟନ୍ତରୀଣ ଶତ୍ରୁମାନଙ୍କୁ ବିନାଶ କରି ବିଶୁଦ୍ଧତା, ସହିଷ୍ଣୁତା, ମହତ୍ତ୍ୱ, ସତ୍ୟପରାୟଣତା, ସମଦର୍ଶିତା ଇତ୍ୟାଦି ଲାଭ ନ କରିବା, ତେବେ ଗୃହରେ ବିବାଦ ରହି ଯିବ ଏବଂ ବହିଃଶତ୍ରୁର ଆକ୍ରମଣରୁ ନିଜ ନିଜକୁ ରକ୍ଷା କରି ପାରିବା ନାହିଁ । ନିଜ ଗୃହକୁ ସୁରକ୍ଷିତ କରି ଆମ୍ଭମାନଙ୍କୁ ବାହାରର ଅନ୍ୟାୟ, ଅସାମ୍ୟ, ଅତ୍ୟାଚାର ବିରୁଦ୍ଧରେ ଦଣ୍ଡାୟମାନ ହେବାକୁ ହେବ । ଏହି ସଂଗ୍ରାମରେ ତିନି ଗୋଟି ଅସ୍ତ୍ର ଆବଶ୍ୟକ । ତାହା ଆତ୍ମସଂଯମ, ଆତ୍ମସମ୍ମାନ ଏବଂ ଆତ୍ମଜ୍ଞାନ ।

"Self-reverence, self-knowledge, self-control,
These three alone lead life to sovereign power
Yet not for power (power of herself
Would come uncalled for) but to live by law
Acting the law we live by without fear
And because right is right, to follow right
Love wisdom in the scorn of consequence."

ଉତ୍କଳୀୟ ଶିକ୍ଷିତ ଯୁବକର ଦାୟିତ୍ୱ ଗରୀୟାନ୍ । ଅଭିଭାବକବୃନ୍ଦଙ୍କ ଉଦ୍ଦେଶ୍ୟ, ସନ୍ତାନଗଣ ବୈଷୟିକ ଜ୍ଞାନାର୍ଜନ କରି ପଦମର୍ଯ୍ୟାଦା ଲାଭ କରିବେ । ବିଶ୍ୱବିଦ୍ୟାଳୟ ବାଧ୍ୟତଃ ତାହାହିଁ କରି ଦେଉଅଛି । ଏତଦପେକ୍ଷା ଅବସ୍ଥା ବର୍ତ୍ତମାନରେ ବିଶେଷ କିଛି ଆଶା କରାଯାଇ ନ ପାରେ । ଭିନ୍ନ ଭିନ୍ନ ଧର୍ମସମ୍ପ୍ରଦାୟଭୁକ୍ତ-ଛାତ୍ରସଙ୍କୁଳିତ ସ୍କୁଲ କଲେଜରେ ଏହାର ମୂଳ କାରଣ ଧର୍ମବିଶ୍ୱାସ ସମ୍ବନ୍ଧରେ ଉପଦେଶ ଦେବା ଶିକ୍ଷକଗଣ କର୍ତ୍ତବ୍ୟର

ବହୁଭୂତ କାର୍ଯ୍ୟ ବୋଲି ମଣନ୍ତି । ପୁଣି ସେ ସନ୍ଧିରେ ସାମର୍ଥ୍ୟ ବା କେତେ ଜଣ ଶିକ୍ଷକଙ୍କର ଥାଏ ? ଏବେ ପଶ୍ଚାତ୍ୟ ଜ୍ଞାନାର୍ଜନ କରୁଁ କରୁଁ ଯୁବମାନଙ୍କ ପୁରାତନ ସଂସ୍କାର ଓ ବିଶ୍ୱାସ ଦୂରୀଭୂତ ହୋଇ ଯାଉଅଛି । ରାଜପ୍ରଦତ୍ତ ନବ ଶିକ୍ଷା କେବଳ ପାଶ୍ଚାତ୍ୟ ଜ୍ଞାନ ପ୍ରଦାନଦ୍ୱାରା କେବଳ ବିନାଶ କାର୍ଯ୍ୟଟି ସମ୍ପାଦନ କରିଦେଉଅଛି । କିନ୍ତୁ ବର୍ତ୍ତମାନ ଅବସ୍ଥା ଦୃଷ୍ଟିରେ ରାଜାଙ୍କ ପକ୍ଷରେ ଗଠନ କାର୍ଯ୍ୟରେ ହସ୍ତକ୍ଷେପ କରିବା ଅସମ୍ଭବ; ତେଣୁ ଶୂନ୍ୟ ସ୍ଥାନରେ କିଛି ଦେଇ ପାରୁ ନାହାନ୍ତି । ତେଣେ ଗୃହ ପରିବାରରେ ଆଧୁନିକ ଆଦର୍ଶାନୁଯାୟୀ ଚରିତ୍ର ଗଠନ କରିବାର ଚେଷ୍ଟା ବା ଉପକରଣର ଅଭାବ । ବରଂ ନାନା ବାଧା ବିଘ୍ନ ରହିଅଛି, ଯାହା କି କାପଟ୍ୟ ଏବଂ ମିଥ୍ୟାକୁ ପ୍ରଶ୍ରୟ ଦେବ ।

ତେଣୁ ଯୁବକଗଣଙ୍କ କାର୍ଯ୍ୟ ଓ ବିଶ୍ୱାସ ମଧ୍ୟରେ ସାମ୍ୟ ରହି ପାରୁ ନାହିଁ । ସେମାନେ ଭିତରେ ଏକ ପ୍ରକାର, ବାହାରେ ଅନ୍ୟ ପ୍ରକାର । ଭିତରେ ପଶ୍ଚାତ୍ୟ ଜ୍ଞାନ ସମସ୍ତ ପୁରାତନ କୁସଂସ୍କାର, ତାହା ସଙ୍ଗେ ସଙ୍ଗେ ଈଶ୍ୱରବିଶ୍ୱାସକୁ ମଧ୍ୟ ବିତାଡ଼ିତ କରି ଦେଇଅଛି । ବାହାରେ ଅଭିଭାବକ, ପରିବାର, ଗୋଷ୍ଠୀ ଏବଂ ସମାଜର ମନୋରକ୍ଷା ନିମିତ୍ତ ସେମାନେ ସକଳ କାର୍ଯ୍ୟ କରି ଯାଉ ଅଛନ୍ତି, ଯହିଁରେ କି ସେମାନଙ୍କର ଟିକେ ମାତ୍ର ବିଶ୍ୱାସ ନାହିଁ । ଏହା ଘୋର କାପଟ୍ୟ ଛଡ଼ା ଆଉ କଣ ହୋଇ ପାରେ ? ଯେଉଁମାନେ ସରଳସ୍ୱଭାବ, ସେମାନେ ଏହା ସ୍ୱୀକାର କରୁଅଛନ୍ତି, କେହି କେହି ଏପରି ଉଦାସୀନ ଯେ ଏପରି ବିପଦସଙ୍କୁଳ ଅବସ୍ଥା ବୁଝି ପାରୁ ନାହାନ୍ତି; ଏବଂ ଯେଉଁମାନେ କୁଟିଳତା ଆଡ଼କୁ ବିଶେଷ ଅଗ୍ରସର ହୋଇ ଅଛନ୍ତି, ସେମାନେ ଏହା ଅସ୍ୱୀକାର କରି ଆର୍ଯ୍ୟଧର୍ମର ଆସ୍ଫାଳନ କରୁଅଛନ୍ତି । କିନ୍ତୁ ସେମାନଙ୍କ କାର୍ଯ୍ୟ କଳାପ ସେମାନଙ୍କ କଥାର ପ୍ରତିବାଦ କରୁଅଛି । ଏହି ଅବସ୍ଥାରେ ସ୍ୱୀୟ ବିଶ୍ୱାସ ଅନୁଯାୟୀ କାର୍ଯ୍ୟ କରିବାକୁ ହେଲେ ସଂଗ୍ରାମ ଅବଶ୍ୟକ । ପୁରାତନ ଶ୍ରେଣୀସ୍ଥ ବ୍ୟକ୍ତିମାନଙ୍କ ଇଚ୍ଛା ଯେ ନବଶିକ୍ଷିତ ଯୁବକବୃନ୍ଦ ତାଙ୍କ ପଦାଙ୍କ ଅନୁସରଣ କରନ୍ତୁ । ସେମାନଙ୍କର ଅପରାଧ ନାହିଁ । କାରଣ ସେ କାଳ ନିଜ ନିଜ ବିଶ୍ୱାସାନୁଯାୟୀ ଜୀବନ ଯାପନ କରି ପୁତ୍ର ପୌତ୍ରାଦିଙ୍କୁ ତାହାହିଁ କରାଇବାକୁ ଇଚ୍ଛା କରୁ ଅଛନ୍ତି । ତାହା ସ୍ୱାଭାବିକ । କିନ୍ତୁ ଏହିରେ ଯୁବକର ଘୋର ପରିବର୍ତ୍ତନ, ତଦନୁଯାୟୀ ବାହାରର ପରିବର୍ତ୍ତନ ହେବା ଅବଶ୍ୟକ । ନଚେତ୍ କପଟତା ଚରିତ୍ରକୁ ଅନ୍ତଃସାରଶୂନ୍ୟ କରିବ ଏବଂ ମାନବ ନିଶ୍ଚେଷ୍ଟ ହୋଇ କେବଳ ପଶୁଜୀବନଯାତ୍ରା ନିର୍ବାହ କରିବ ।

"The old order changeth yielding
place to new,
And God fulfills himself in many
ways,
Lest one good custom should
corrupt the age."

ଅତଏବ ସ୍ୱଦେଶର ଯାହା ମଙ୍ଗଳଜନକ, ଯାହା ସୁନ୍ଦର, ତାହା ମହାମୂଲ୍ୟ ହେଲେ ହେଁ ଯନ୍ତ୍ରପୂର୍ବକ ସଂରକ୍ଷଣ କରି ଯାହା ଅସତ୍ୟ, ଯାହା ଅନ୍ୟାୟ, ଯାହା ଅସୁନ୍ଦର, ତାହା ବିସର୍ଜନ କରିବାକୁ ହେବ । କିନ୍ତୁ ପୁରାତନ ସମାଜ ଓ ସ୍ରୋତହୀନ ନିଶ୍ଚେଷ୍ଟ ବ୍ୟକ୍ତି ବା ଯେଉଁମାନଙ୍କର ସ୍ୱାର୍ଥହାନି ହେବ, ସେମାନେ ଏହି ପରିବର୍ତ୍ତନର ବିରୋଧୀ ହେବେ । କଠୋର ସାଧନ ଓ ଅଟଳ ସାହସ ସହକାରେ ସଂଗ୍ରାମ କରିବାକୁ ହେବ । ନିଶ୍ଚେଷ୍ଟତା ଔଦାସୀନ୍ୟରେ କେବେ କିଛି ସମ୍ପାଦିତ ହୋଇ ନାହିଁ । ସ୍ଥିରତାକୁ ସ୍ଥିରତାକୁ ଗତି ନାହିଁ ।

କି ଅନ୍ତର ସଂଗ୍ରାମ କି ବହିଃ ସଂଗ୍ରାମ ଉଭୟରେ ଶକ୍ତି ଅବଶ୍ୟକ । କିନ୍ତୁ ମନୁଷ୍ୟ ... ଅତଏବ ଶକ୍ତି ସଞ୍ଚୟ କରିବାକୁ ... ମୁମୁକ୍ଷୁତା, ସାଧୁଜୀବନଚରିତ୍ର ପଠନ ... ସାଧୁସଙ୍ଗ କରିବା ଅବଶ୍ୟକ । ତେ... ପୂର୍ଣ୍ଣ ସତ୍ୟ ଏବଂ ... ଭଗବାନଙ୍କଠାରେ ।

ସାଧୁ ହେବାକୁ ଦେଲେ ମୁକ୍ତିକୁ ଯିବାକୁ ଦେବ ନାହିଁ । ସେ ଆମ୍ଭମାନଙ୍କ ଅନ୍ତରରେ ପ୍ରଜ୍ଞା ବା ବିବେକ ରୂପରେ ବିରାଜିତ ରହିଅଛନ୍ତି । ତେବେ ଯେଉଁମାନେ ପାପକାଳ ଏହି ଧର୍ମବୃତ୍ତି, ହୃତ ହୃତ କ୍ଷୀଣ, ପ୍ରଜ୍ଞା ବା ବିବେକକୁ ଅତିକ୍ରମ କରି ଚାଲିବାରେ ନିଯୁକ୍ତ ରହିଅଛନ୍ତି, ସେମାନଙ୍କ ବିବେକବାଣୀ କ୍ଷୀଣରୁ କ୍ଷୀଣତର; କିନ୍ତୁ ନିଷ୍କପଟହୃଦୟରେ ଅନୁତପ୍ତ ହୋଇ ପୁନରାୟ ଦୃଢ଼ପ୍ରତିଜ୍ଞ ହୋଇ ବିବେକପ୍ରଦର୍ଶିତ ପଥରେ ପରିଚାଳିତ ହେଲେ ତାହା ଦିନକୁ ଦିନ ନିର୍ମଳତର ହେବ ଏବଂ ପୁରାତନ କୁଅଭ୍ୟାସ ସକଳ ଦୁର୍ବଳ ହୋଇ ପଡ଼ିବ; ଧର୍ମବୃତ୍ତିସକଳ ବିକଶିତ ହୋଇ ଉଠିବେ, ସାହସ ବର୍ଦ୍ଧିତ ହେବ, ଆନନ୍ଦ, ଶାନ୍ତି ପ୍ରାଣକୁ ଦିବ୍ୟ ସୁଖ ପ୍ରଦାନ କରିବେ । ଧର୍ମଜନିତ ସୁଖହିଁ ପ୍ରକୃତ ସ୍ଥାୟୀ । ସୁଖ ଅନ୍ୟ ସମସ୍ତ ସୁଖରେ ଶାନ୍ତି ଅଛି, ଅବସାଦ ଅଛି, ନୈରାଶ୍ୟ ଅଛି । କିନ୍ତୁ ପାପ ବିରୁଦ୍ଧରେ ଅନନ୍ତ ପୁଣ୍ୟ-ସଂଗ୍ରାମରେ ଅନନ୍ତ ସୁଖ । ନୈତିକ ଚରିତ୍ରର ଉନ୍ନତି ସାଧନଦ୍ୱାରା ଆତ୍ମାରେ ସଚ୍ଚିଦାନନ୍ଦସ୍ୱରୂପ ଶ୍ରୀହରିଙ୍କ ଦର୍ଶନ ମିଳେ । ଅତଏବ ଯାହା ଅମଙ୍ଗଳ, ଯାହା ଅସୁନ୍ଦର, ଯାହା ଅଜ୍ଞାନତା କି ଅନ୍ତର୍ଜଗତରେ କି ବହିର୍ଜଗତରେ ତାହା ବିରୁଦ୍ଧରେ ନିରନ୍ତର ସଂଗ୍ରାମ କରିବାହିଁ ପ୍ରକୃତ ଶାଶ୍ୱତ ଜୀବନ ଲାଭର ଉପାୟ । ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ ।

ଶ୍ରୀ ନନ୍ଦକିଶୋର ବଳ ।

---

## ଭ୍ରମଣକାରୀର ପତ୍ର ।

### (ଆଠମଲ୍ଲିକ ।)

ବୌଦ୍ଧ ରାଜ୍ୟରୁ ଆଠମଲ୍ଲିକ ଯିବାର ଦୁଇ ଗୋଟି ପଥ । ସ୍ଥଳ ପଥରେ ପ୍ରାୟ ୭॥ କ୍ରୋଶ । ଜଳ ପଥ ମହାନଦୀ ଗର୍ଭରେ ପ୍ରାୟ ସ୍ଥଳପଥର ଦୁଇ ଗୁଣ । ପ୍ରଳୟକୁ ପରବର୍ତ୍ତୀ କାଳରୁ ନିରନ୍ତର କର୍ମଶୀଳା ମହାନଦୀ ଗମ୍ୟ ସ୍ଥାନକୁ ଯିବା ଲାଗି ଅଗମ୍ୟ ଶିଳା-ବନ୍ଧୁର ଶଯ୍ୟାରେ କୋଡ଼ ଭଗ୍ନ ହୋଇ ବାଟ ପିଟାଇଅଛି । ବୌଦ୍ଧ ଘାଟଠାରୁ ପ୍ରାୟ ୭ ମାଇଲ ତଳକୁ ମହାନଦୀ ଗର୍ଭ କେବଳ ଶିଳାମୟ । ସନ୍ଧି, କନ୍ଦ, ବିବର ଭେଦ ମହାନଦୀ-ସ୍ରୋତ ସହସ୍ର ଧାରରେ ବହୁଅଛି । ନାବିକମାନେ ... ଓ କ୍ଷଣପରିବର୍ତ୍ତନଶୀଳ ସ୍ରୋତରେ ... ନାବକୁ ସଙ୍କଟ ମଣୁଥିଲେ । ଏ ରଜନୀ ...ର ଯାପିତ ହେଲା । ଅର ଦିନ ପ୍ରାତଃ ...ମଲ୍ଲିକରେ ଉଠିଲୁ । ଘାଟଠାରୁ ...ଗଲି । ଏ ରାଜ୍ୟର ଅମୃତ ପୂର୍ଣ୍ଣ। ବନ୍ଧୁ । ଶ୍ରୀମାନ୍ ମହାରାଜ ବାହାଦୁରଙ୍କ ସହିତ ବହୁ କାଳରୁ ଆଳାପ ଥିଲା । ପନ୍ଥୁଥିବା ଘଟି ଅଜଣା ଅଦେଖା ସ୍ଥାନ, ଦେଖା ଶୁଣା ଜଣା ସ୍ଥାନ ପରି ଜଣା ଗଲା । "ମନୋ ହି ଜନ୍ମାନ୍ତରସଙ୍ଗତିଜ୍ଞଂ" ପୂର୍ବଜନ୍ମର ସମ୍ପର୍କ ଓ ପରିଚୟ ସଂସ୍କାରଦ୍ୱାରା ଇହ ଜନ୍ମକୁ ଆସି ପଡ଼େ । ଅନେକ ଲୋକ ସହିତ ଦେଖା ହୁଏ, ଆଳାପ ହୁଏ, ମାତ୍ର ତାହାର ଆକର୍ଷଣ ନ ଥାଏ । ପ୍ରକୃତ ଭିନ୍ନ, ସମ୍ପର୍କ ଭିନ୍ନ—ଆକର୍ଷଣ କୁଆଡ଼ୁ ଆସିବ ? ପରିଚିତ ବନ୍ଧୁ ଛାଡ଼ି ଦିଅ—ବେଳେ ବେଳେ ସମ୍ପୂର୍ଣ୍ଣ ଅପରିଚିତ ଲୋକ ସହିତ ଭେଟ ହେଲାକ୍ଷଣି ଚୁମ୍ବକାକର୍ଷଣ ଫୁଟି ଆସି ପଡ଼େ । ଏହା ପୂର୍ବ ସଂସ୍କାର ନୁହେଁ କି ? ସ୍ଫୁଟ ଅଥଚ ବଡ଼ ନୁହେ—ବୈଦ୍ୟୁତିକ ଶକ୍ତି । ଏହା ଅନନ୍ତ ଅବ୍ୟୟ ଅକ୍ଷୟ, ଅନନ୍ତ କାଳ ଅଛି—ଅନନ୍ତ କାଳ ଥିବ । କାଳ ହେଲ ଯୋଗ ଘଟିଲାକ୍ଷଣି ସୌଦାମିନୀର ସ୍ୱାଭାବିକ କ୍ରିୟା ଉଠିବ,

ଫୁଟିବ । ସ୍ତୁତ ଅନନ୍ତକାଳ-ଏକାନ୍ତସ୍ଥାନବ୍ୟାପୀ ବ୍ରହ୍ମକଳା ।

ଆଠମଲ୍ଲିକ—ଆଠଜଣ (Baron) ମାଲିକ-ଦ୍ୱାରା ଶାସିତ ହୋଇ ଥିବା ହେତୁରୁ ଏ ରାଜ୍ୟ ଆଠମଲ୍ଲିକ ନାମରେ ଆଖ୍ୟାତ । ପୂର୍ବତନ ରାଜା ଇଂରାଜ ଗବର୍ଣ୍ଣମେଣ୍ଟଙ୍କ ଧାର୍ଯ୍ୟ ପେସ୍କସ୍ ଗ୍ରହ ଶହ ଟଙ୍କା ଦେବାରେ ବିଳମ୍ବ କରିଥିବାରୁ ରାଜ୍ୟ ମାଲିକ ଉତ୍ତରଭାଗ ଭୂଖଣ୍ଡ ଅନୁଗୁଳର ଅନ୍ତର୍ଗତ ହୋଇଅଛି । ଏହି ରାଜ୍ୟର ପରିମାଣ ଫଳ ୭୩୦ ବର୍ଗମାଇଲ ଏବଂ ଲୋକସଂଖ୍ୟା ୪୧୦୦୦ । ଏ ରାଜ୍ୟ ଉତ୍ତର ପୂର୍ବ ଅନୁଗୁଳ ଏବଂ ପଶ୍ଚିମ ଦକ୍ଷିଣ ରେଢ଼ାଖୋଲ ଓ ବୌଦ ରାଜ୍ୟ । ମହାନଦୀ ବୌଦ ରାଜ୍ୟରୁ ଆଠମଲ୍ଲିକକୁ ପୃଥକ୍ କରି ଅଛି । ସୁନାଖଣିଆ ପର୍ବତ ପର୍ଯ୍ୟନ୍ତ ବୌଦର ପୂର୍ବସୀମା । ସୁନାଖଣି ଥିବାରୁ ପୂର୍ବକାଳରୁ ଏହି ଗିରିମାଳା ସୁନାଖଣିଆ ନାମରେ କଥିତ । ଉତ୍କଳ ଓ ମଧ୍ୟ ପ୍ରଦେଶର କରଦ ମିତ୍ର ରାଜ୍ୟମାନ ପର୍ବତସଙ୍କୁଳ । ଏହି ପାର୍ବତ୍ୟ ରାଜ୍ୟମାନଙ୍କରେ ସ୍ୱର୍ଣ୍ଣାଦି ବିବିଧ ଧାତୁ ଏବଂ ହୀରା ପନ୍ନା ପ୍ରଭୃତି ବହୁମୂଲ୍ୟ ପ୍ରସ୍ତରର ଖଣି ଅବଶ୍ୟ ଭୂଗର୍ଭରେ ନିହିତ ଅଛି । ଏ କାଳ ପର୍ଯ୍ୟନ୍ତ ଏହାର ଅନୁସନ୍ଧାନ ହୋଇ ନାହିଁ । ଘୋର ଅଜ୍ଞାନ-ତମସାଚ୍ଛନ୍ନ ଅନାର୍ଯ୍ୟ ବନ୍ୟଜାତୀୟ ମନୁଷ୍ୟ ଉପରେ ଆଧିପତ୍ୟ ଗୁଡ଼ାଏ ହିଂସ୍ର ଜନ୍ତୁଙ୍କୁ ଆୟତ୍ତାଧୀନ ରଖିବା ଭିନ୍ନ ଆଉ କିଛି ନୁହେ । ଦୀର୍ଘକାଳରୁ ପାର୍ବତୀୟ ନରପତିଗଣ ଏହି ଦାୟିତ୍ୱରେ ଦାୟଗ୍ରସ୍ତ । ସଭ୍ୟ ଜଗତର ସଂସର୍ଗରୁ ବିଚ୍ଛିନ୍ନ ହୋଇ ଆତ୍ମୋନ୍ନତି ବା ଦେଶୋନ୍ନତି ପଥରେ ଅଗ୍ରସର ହୋଇ ପାରି ନାହାନ୍ତି । ଭୂଗର୍ଭନିହିତ ରହସ୍ୟର ଉଦ୍‌ଘାଟନ ପାଇଁ ଯତ୍ନ କିଏ କଲା ? ସେ କାଳ ଅଦ୍ୟାପି ଦୂରବର୍ତ୍ତୀ ।

ଆଠମଲ୍ଲିକରାଜ ଯୋଗେନ୍ଦ୍ର ଦେବ ଏକମାତ୍ର ସନ୍ତାନ ମହେନ୍ଦ୍ରଦେବଙ୍କୁ ରଖି ୧୮୭୩ ଖ୍ରୀଷ୍ଟାବ୍ଦରେ ପରଲୋକ ଗମନ କରିଥିବାରୁ ରାଜା ମହେନ୍ଦ୍ର ଦେବ ରାଜାସନାସୀନ ହେଲେ । ଏହାଙ୍କର ବାଲ୍ୟ ଜୀବନ ଅଧ୍ୟବସାୟ ଓ ସହିଷ୍ଣୁତା ଥିବାର ଲୋକେ ଅନେକ କାହାଣୀ ଶୁଣିଅଛନ୍ତି । ଜୀବନଚରିତ ଲେଖକଙ୍କ ନିକଟରେ ତାହା ସଞ୍ଚିତ ରହିଲା । ସ୍ଥୂଳରେ ଏତିକି କୁହାଯାଇ ପାରେ, ମହାରାଜ ମହେନ୍ଦ୍ର ଦେବ ଜଣେ Self-made man— ଆପେ ଆପଣାର ଓ ରାଜ୍ୟର ଉନ୍ନତି କରି ଯଶସ୍ୱୀ ହୋଇଥିଲେ । ମହାରାଜ ମହେନ୍ଦ୍ର ଦେବ ପ୍ରଜାକୁଳର ମଙ୍ଗଳକାମୀ । ଏହାଙ୍କର ମନ ଶୁଦ୍ଧ, କର୍ମ ଶୁଦ୍ଧ । ରାଜନ ବୁଦ୍ଧିମନ୍ତ ପୁଣି ଅତ୍ୟନ୍ତ ଧୀର, ଦୟାର୍ଦ୍ରଚିତ୍ତ, ଗୁଣୀ, ଅଭଗ୍ନଚିତ୍ତ ଏବଂ ନିଷ୍କଳଙ୍କ ଥିଲେ ।

ପ୍ରଜାନାଂ ପାଳନଂ ଦାନଂ ଇଜ୍ୟାଧ୍ୟୟନମେବଚ
ବିଷୟେଷ୍ୱପ୍ରସକ୍ତିଶ୍ଚ କ୍ଷତ୍ରିୟସ୍ୟ ସମାସତଃ ।

ଏହି କ୍ଷତ୍ରିୟ ଧର୍ମ ଅଖଣ୍ଡ ଭାବରେ ମହାରାଜ ମହେନ୍ଦ୍ର ଦେବଙ୍କଠାରେ ବିଦ୍ୟମାନ ଥିଲା । ଏହାଙ୍କୁ ବାମଣ୍ଡା ନରେଶ ଦ୍ୱିତୀୟ ସୁଚଳ ଦେବ ବୋଲି ଲେଖକ ଉକ୍ତି କରନ୍ତେ, ମହାରାଜ ମହେନ୍ଦ୍ର ଦେବ ପ୍ରତ୍ୟୁତ୍ତରରେ କହିଲେ, ବାମଣ୍ଡା ରାଜାଙ୍କ ସହିତ କୌଣସି କାଳେ ମୋର ତୁଳନା ହୋଇ ନ ପାରେ । ସେ କେଡ଼େ ଲୋକ, ତାଙ୍କ ସଙ୍ଗ ମୁଁ କାହିଁ ହେବି ? ମୂର୍ତ୍ତିମାନ୍ ବିନୟ ଭ ଏ ବାକ୍ୟାବଳୀ ଉଚ୍ଚାରଣ କରୁଥିଲେ । ସାଧୁ, ସାଧୁ ! ବିନୟଠାରୁ ବଳ ଭୂଷଣ ଅଛି କି ? ଆଠମଲ୍ଲିକର ମାଟି ଅନୁର୍ବର ନୁହେ । ସ୍ଥାନେ ସ୍ଥାନେ ମହାନଦୀ ତଟବର୍ତ୍ତୀ ଭୂମି ବାଲୁକାଦ୍ୱାରା ପ୍ଲାବିତ । ଜୋର ପଥରେ ବନ୍ୟା ଜଳ ଉଠି ତୀର ଅତିକ୍ରମ କରେ । ସେହି ବନ୍ୟା ଜଳ ବାଲୁକାରାଶି ଅଣି ଉର୍ବର କ୍ଷେତ୍ର ପୋତି ପକାଏ । ସୁବଳୟା
କୋଶ ପୂର୍ବରେ ଦେଲେଇ ଗ୍ରାମ ବଗଡ଼ି
ଠାରୁ ଆରମ୍ଭ କରି ୪୦ ମାଇଲ ମହାନ
ତୀରରେ ଆଠମଲ୍ଲିକ । ମହାନଦୀ
ଭୂମି ଥିବାରୁ ଉକ୍ତ
ଛନ୍ନ ହୋଇଅଛି ।

ପାରେ ଭୂମିର ଅଭାବ ନାହିଁ । ବଦାନ୍ୟ ବାଦ୍‌ଶାନ ଦେଖି ଆସୁଅଛୁଁ. ଏପରି ପ୍ରଚୁର ବଦାନ୍ୟ ଯେଉଁ ରାଜ୍ୟରେ ଅଳ୍ପ ଯତ୍ନରେ ଜନ୍ମେ, ସେ ରାଜ୍ୟରେ ଦୁର୍ଭିକ୍ଷ କିପାଇଁ ଘଟେ ? "ଦଶ ଗୋଟି ଶତ କେନା, କ୍ୟା କରେଗା ଦୁର୍ଭିକ୍ଷ ଶାଳା ।" ଦଶ ଗୋଟି ଶଏ ବଦାନ୍ୟଙ୍କ ଥିଲେ ଦୁର୍ଭିକ୍ଷ କଣ କରି ପାରେ ? ପ୍ରଜାଙ୍କର ଘୋର ଅଳସ୍ୟ ଦୁର୍ଭିକ୍ଷକୁ ଡାକି ଆଣେ ସିନା !

୧୮୮୯-୯୦ ସାଲରେ ଆଠମଲ୍ଲିକ ପ୍ରଭୃତି ଗଡ଼ଜାତରେ ଭୀଷଣ ଦୁର୍ଭିକ୍ଷ ପଡ଼ିଥିଲା । ମହାରାଜ ମହେନ୍ଦ୍ର ଦେବ ପ୍ରଜାକୁଳକୁ ଦୁର୍ଭିକ୍ଷକବଳରୁ ବଞ୍ଚାଇବା ଲାଗି ନିଜ ତହବିଲରୁ ଅଶି ହଜାର ଟଙ୍କା ବ୍ୟୟ କରିଥିଲେ । ଏ ସମ୍ବାଦ ବଙ୍ଗଳା ଗବର୍ଣ୍ଣମେଣ୍ଟଙ୍କ କର୍ଣ୍ଣଗୋଚର ହେଲା । ଉକ୍ତ ଗବର୍ଣ୍ଣମେଣ୍ଟଙ୍କ ଚିଫ୍ ସେକ୍ରେଟେରୀ ସାର୍ ଜନ୍ ଏଡଗାର ଦୁର୍ଭିକ୍ଷର ପୂର୍ତ୍ତକାର୍ଯ୍ୟ ଦେଖିବାଲାଗି ସ୍ୱୟଂ ଆଠମଲ୍ଲିକ ଆସିଥିଲେ । ରାଜାବାହାଦୁରଙ୍କର ପ୍ରଜାବତ୍ସଳତା ଓ ସତ୍‌କାର୍ଯ୍ୟମାନ ବଙ୍ଗଳା ଗବର୍ଣ୍ଣମେଣ୍ଟଙ୍କର କର୍ଣ୍ଣଗୋଚର କରାଇବାରୁ ରାଜା ମହେନ୍ଦ୍ର ଦେବ ବାହାଦୁର ମହାରାଜା ଉପାଧିରେ ଭୂଷିତ ହେଲେ । ରାଜା ସୁବଳ ଦେବ ଯେପରି କବିଲସତ୍ତ୍ୱ କର୍ମଠ ଓ ଅଧ୍ୟୟନରତ, ମହାରାଜ ମହେନ୍ଦ୍ର ଦେବ ଠିକ ତଦ୍ରୂପ ଥିଲେ । କୌଣସି ଭଦ୍ରଲୋକଠାରୁ ପତ୍ର ପାଇଲାକ୍ଷଣି ସାରଗର୍ଭ ଉତ୍ତର ପ୍ରଦାନ କରୁଥିଲେ ।

ଆମ୍ଭେମାନେ ଏହି ଆଦର୍ଶ ଆର୍ଯ୍ୟ ନରପତିଙ୍କ ବିବରଣ ଲିପିବଦ୍ଧ କରିବାକୁ ଯାଇ ଅତୀତ କାଳର କିୟଦ୍ ଲେଖିଗଲୁଁ । ମହେନ୍ଦ୍ର-ପ୍ରତିମ ମହା-ମହେନ୍ଦ୍ର ଦେବଙ୍କ ନରଦେହ ଅତୀତକାଳ ରେ ବିଲୀନ ହୋଇଅଛି ଏବଂ ତାହାଙ୍କର ଅମରଧାମକୁ ଗମନ କରିଅଛି । ରହି ଗଲା ତାଙ୍କର କୀର୍ତ୍ତିକଲାପ । ...ଅ, ଧନୀ ଥିଅ, ଦରିଦ୍ର ...ଥ, ଅବା ହେଉ କାଳି ହେଉ, ଅନନ୍ତ କାଳଗର୍ଭକୁ ଚାଲି ଯିବ । ସଂସାରର ଶୋକବାକ୍ୟ ଲୁଚି ଯିବ ।

କବିବଚନ:—

"ଏ ଜୀବ ନୁହଇ ସ୍ଥିର, ସ୍ଥିରଟି ମରଣ,
ମାଟିର ଏ ଘଟ ନଷ୍ଟ ମିଶିବ ମାଟିରେ,
ସବୁହିଁର କାଳ ମହାବଳଠାରୁ ବଳୀ ।"

ମହାରାଜ ମହେନ୍ଦ୍ର ଦେବ ସ୍ୱର୍ଗରୁ ଆସିଥିଲେ । ରାଜ୍ୟଂ ଭୁକ୍ତ୍ୱା ସୁଖଂ ଭୁକ୍ତ୍ୱା ପୁନଃସ୍ୱର୍ଗେବ ଗଚ୍ଛତି । ରାଜ୍ୟ, ସୁଖ, ସମ୍ପଦ ଭୋଗ କରି ପୁଣି ସେହି ଅମରଧାମକୁ ଚାଲି ଗଲେ । ତାହାଙ୍କର ଏକମାତ୍ର ସୁଯୋଗ୍ୟ ସନ୍ତାନ ଯୁବରାଜ ଶ୍ରୀମାନ୍ ବିରେନ୍ଦ୍ର ଦେବ ପିତୃଗୁଣସହ ପିତୃରାଜ୍ୟର ଅଧିକାରୀ ହୋଇ ବନ୍ଧୁମାନଙ୍କର ମୋଦ ବର୍ଦ୍ଧନ କରନ୍ତୁ, ଈଶ୍ୱରଙ୍କଠାରେ ଏତିକି ପ୍ରାର୍ଥନା ।

ସାତକୋଶି ଗଣ୍ଡ ।

ବଦ୍ଧ ଭୋଗେଚ୍ଛାରେ ଚିର ପୀଡ଼ିତ ଏ ପାପ-ଜୀବନରେ ଶାନ୍ତି ସୁଖ କାହିଁ ? ଲୋଭ ମହାଶତ୍ରୁ ସବୁବେଳେ ମନର ମୋହାଡ଼େ । କାହାର ସ୍ୱାଧୀନ ଇଚ୍ଛା ଅଛି ବା ? ଶାନ୍ତି ଅଛି କି ? ନାହାନ୍ତି ମୋହମାଦେବୀଙ୍କ ମଧୁର ବାଣୀରେ କେତେ କେତେ ଦାନା ଲୋକଙ୍କର ଜିହ୍ୱାରୁ ଲାଳ ବୋହି ପଡ଼େ । କବିର ଜ୍ଞାନପୁରର ଦ୍ୱାର ହେଉଥିର ଥିଏ । ଯୋଗିର ଯୋଗ ହୁଡ଼ି ଯାଏ, ତୁମ୍ଭେ ମୁଁ କେଉଁ ଛାର ! କଣ କରିଯିବ ? ଏ ଯେ ଚିରକାଳ ଜୀବନର ଭଗାରୀ । ଭଗାରୀ ଉପୁରେ ମହାରଣ୍ୟରେ ପ୍ରବେଶ କଲେ ସୁଦ୍ଧା ତ୍ରାହି ନାହିଁ । ତୃଷ୍ଣାବେଶ ପ୍ରାପ୍ତ ଲୋଭ ସଂସ୍ଥାନ କନ୍ଧରେ ସବାର ହୋଇଅଛି । ଆନୁ ଛାଡ଼ିଲେ ସେ କି ଛାଡ଼ୁଛି ? ଛାଡ଼ ସେ କଥା । ଏବେ ସାତକୋଶି ଗଣ୍ଡର ଭୀମକାନ୍ତ ଦୃଶ୍ୟର ସୁମଧୁର ସଙ୍ଗୀତ ମନ ଦେଇ ଶୁଣ ।

"ମହାନଦୀ ନାମେ ପୂର୍ବସାଗରଗାମିନୀ,
ହରମୌଳିମାଳା ଦେବୀ ତ୍ରିସ୍ରୋତା ନାଭିଣୀ,
ସୁକାନ୍ତ-ମହର୍ଷି-ତପେ ପତିତପାବନୀ

ଭୂଷ୍କ ହୋଇ, ଏହି ମୁଣ୍ଡେ ଅଟିଲେ ଯେ କାଳେ,
ଅର୍ବ ପଥେ ତାଙ୍କ ଗତି ରୋଧିଲେ ଏଠାରେ,
ମଗଜ-ପ୍ରାଚୀରରୂପ ଏହି ମହାଗିରି,
ଇନ୍ଦ୍ର କୁଳଗିରି ଭୃଷି କୋପି ତପୋବଳେ
ଏ ବର୍ତ୍ମ ଛେଦିବା ଲାଗି କଲେ ଅନୁରୋଧ,
ବଜ୍ର କରେ ଅବତରି ଏହି ଶୈଳକୂଳେ,
ଛେଦି ଏ ଶଇଳ, ବଜ୍ରୀ ରଚିଲେ କୌଶଳେ
ଉତ୍କଳର ମୁକ୍ତିଦ୍ୱାରରୂପୀ ଏ ତୋରଣ
ସପ୍ତ କ୍ରୋଶବ୍ୟାପୀ ଶୈଳକକ୍ଷେ ଅଦ୍ଭୁତ,
ଛିନ୍ନ ଶିଳାପୁଞ୍ଜ ଯାର ବହିମି ଏ କାଳେ
ନଦୀ-ଶଯ୍ୟା ଉପୁକାନ୍ତ ଅଗଣ୍ୟ ପ୍ରପାତ
ପାଟେ ଠାବେ, କଲରବେ ପୂରଇ ଅଟବୀ ।"

ମଇ ୩ ତାରିଖ ଅପରାହ୍ନ ଅଠମଲ୍ଲିକ ଛାଡ଼ି ପହୁଅରେ ସାତକୋଶିଗଣ୍ଡ ପଶ୍ଚିମ ପ୍ରଦେଶ ମୁଖ ଅଦୂରରେ ରାଣିଯାପନ । ଆଜି ପୂର୍ଣ୍ଣିମା । ପୂର୍ଣ୍ଣଚନ୍ଦ୍ର ନିଶାଶଙ୍କା ଉଭା ହୋଇଅଛନ୍ତି । ପଦ୍ମବନସଲିଳା, ଶିଳା-ଶଯ୍ୟା-କେଳିରତା, କଳବାହିନୀ କୋଳରେ ସିକତା-ଶେଯରେ ଜ୍ୟୋତ୍ସ୍ନା ବୋଳି ହୋଇ ନିଃଶଙ୍କଭାବରେ ନିଦ୍ରାକୁ ଭଜିଲୁଁ । ସୁମନ୍ଦ ଶୀତଳ ଦକ୍ଷିଣାନିଳ ଗିରି ପ୍ରାଚୀର ଲଙ୍ଘନ କରି ମହାନଦୀକୁ ଆଲିଙ୍ଗନ କରୁଅଛି । ଅତି ପ୍ରଖର ରବିକରରେ ତାପିତ ହୋଇଥିଲେ ଅଚଳମାନ, ମାଳଭୂମି, ତଳସରିତ୍, ପ୍ରସସ୍ଥ ସିକତା-ଶେଯ । ସାରାଟା ତପନତାପରେ ଦଗ୍ଧ ହୋଇଥିଲା । ବଢୁଙ୍କ କରୁଣା-ସମୀରଣ ଶୀତଳ ଜ୍ୟୋତ୍ସ୍ନା ଗୋଳି ହୋଇ ସ୍ଥାବର ଜଙ୍ଗମ ଅଙ୍ଗରେ ବୋଳି ହେଲା । ଏତେବେଳେ ତାପ ସନ୍ତାପ ରୋହିତ ହେଲା । ଶାନ୍ତି ଆସିଲା । ଜଗଦାତ୍ମା ଇନ୍ଦୁବଦନକୁ ଅନାଇ ବଙ୍ଗଳା ଗୀତ ପଦଟିଏ ଗାଇ ବଢୁଙ୍କ ସ୍ତବ କଲି ।

"ଅତି ଯତନେ ହୃଦପୃଷ୍ଠେ ପେତେଛି ଆସନ ।
ବାଣ୍ଡପଡ ହେ କରବେ କି ହେଥା ଆଗମନ ।"

ସନ୍ତାପହାରିଣୀ-ନିଦ୍ରାର ସୁକୋମଳ ହସ୍ତ ସ୍ପର୍ଶ ହେଲାକ୍ଷଣି ଚେତନା ହତ ହେଲା ।

ସୁପ୍ରଭାତ । ଗଣ୍ଡ ମୁଣ୍ଡରେ ଉଦରକାଣ୍ଡ ଚଞ୍ଚଳ ହୋଇ ସାରି ନେଲୁଁ । କୁତୂହଳ-ଭୟ-ମିଶାମିଶି ଦୋଳାରେ ମନଟା ଦୋଳି ହେଉଥିଲା । ଭୟଙ୍କର ବନ ! ଭ୍ରମକାନ୍ତ ଦର୍ଶନ ! ଅଥଳ-ଅତଳସ୍ପର୍ଶ ଗଣ୍ଡରେ ଅଖଣ୍ଡ ଗତି । ଘୂର୍ଣ୍ଣଣରୁ ଘୂର୍ଣ୍ଣଣର ଝଞ୍ଜା ବାତ । ଏ ବାତ ବାଲୁକା-ପ୍ରପାତରେ କ୍ରୀଡ଼ା କରାଉଥିଲା । ବିଷମ ସଙ୍କଟ-ସଙ୍କୁଳ ଉତ୍କଳର ମୁକ୍ତିଦ୍ୱାର ସାତକୋଶିଗଣ୍ଡ ଉଚ୍ଚ, ମଗ, ଦହି, ଖେଳ ପାରୁ ହେଲୁଁ । କବି ବାସ୍ତବ ଠିକ୍ ନିର୍ଦ୍ଦେଶ କରିଅଛନ୍ତି । ଶତ ଶତ ଶିଖରୀ ଶତ ପ୍ରାଚୀରବତ୍ ମହାନଦୀକୁ ଘେରି ବାଟ ଓଗାଳି ଥିଲେ । ସତେ କି କୁଳିଶୀ ବଜ୍ର ଅଘାତରେ ଶୈଳଭୂକମାନ କାଟି କରି ବାଟ ଫିଟାଇଅଛନ୍ତି ! ଏହା ଉତ୍କଳର ସୁଯୋଗ୍ୟ ଖାଲ । ମହାନଦୀ ପତିତ-ପାବନୀ ଗଙ୍ଗା । ସାତକୋଶି ଗଣ୍ଡ ଦେଖା ଗଲା । ମନର ସାଧ ମେଣ୍ଟିଲା । ଏପରି ଭ୍ରମକାନ୍ତ ଦୃଶ୍ୟ ଏ ଜୀବନରେ ଦେଖିବାରେ ଆସିନାହିଁ ।

ସାତକୋଶି ଗଣ୍ଡ ପୂର୍ବ ମୁଣ୍ଡରେ ବଡ଼ମୂଳ ଘାଟି । ଏ ଘାଟି ଜଗିବାଲାଗି ବଡ଼ାମ୍ବାରାଜା ଦାୟୀ ଥିଲେ ।

ମହାନଦୀର ଦକ୍ଷିଣ ତୀରରେ ଦଶପଲ୍ଲା ରାଜ୍ୟରେ ମଣିଭଦ୍ରା, କୁଶଭଦ୍ରା, ଭୃଙ୍ଗଭଦ୍ରା, ଶିଖରମାନ ଦେଖା ଗଲା । ପୁରାଣରେ ପ୍ରମାଣ, କୃଷ୍ଣଙ୍କର ଅଷ୍ଟ ନାରୀ ମଧ୍ୟରୁ ଏକ ନାରୀ ସତ୍ୟ-ଭାମାଙ୍କୁ ଗୋବିନ୍ଦ ଦୈତ୍ୟ ହରି ନେଉଥିଲା । ଗୋବିନ୍ଦ ଦୈତ୍ୟର ରାଜ୍ୟଟା ଥିଲା ବୌଦ୍ଧ । ମଣିଭଦ୍ରା ପର୍ବତଠାରେ ଅର୍ଜ୍ଜୁନ ବାଣ ପେଷି ଦୈତ୍ୟର ଗତି ରୋଧ କରି ତାହାକୁ ବେଢ଼ି ପକାଇ ଥିଲେ । ନାଉରୀମାନେ ନାବ ନେଉ଼ ଏହି ପୌରାଣିକ ଗଳ୍ପ କହି ଅନୁଭବ କରୁଥିଲେ । ପୁରାଣବର୍ଣ୍ଣି ସ୍ଥାନ ଉତ୍କଳରେ ଅଛି । କ କରିଅଛି, କି ପ୍ରକ ଜାଣିଲ ? କନ

ଆସିବ ? କଳ୍ପନା ନ ଥିଲେ ଲୋକେ କ ପେନ ଦିନ କଟାଇବେ ? ଅଳସ ଜାତିଙ୍କର କାଳ୍ପନିକ କଳ୍ପନାରେ ଅଦର ଅଧିକ । ଦେଖୁ ନ, ଏହା ଭାରବହ ଜୀବନ କଟାଇବାର ଚଟଣି !

### ନରସିଂହପୁର ।

ଦେଖୁଁ ଦେଖୁଁ ନରସିଂହପୁର ଦେଖା ଗଲା । ଏ ରାଜ୍ୟଟି ଭ ବେଶ୍ ରାଜ୍ୟ । ସୁରମ୍ୟ, ସୁଶୀତଳ, ସୁବୃହତ୍ ଅମ୍ରକାନନ ଦେଖି ମନ ପ୍ରଫୁଲ୍ଲ ହେଲା । ଧୀରେ ଧୀରେ ରାଜଧାନୀରେ ପ୍ରବେଶ କଲୁଁ । ଆମ୍ଭର ପୂର୍ବପରିଚିତ ଅଚ୍ଛନ୍ଦର ମିଥିଁ ଏଠାର ମେନେଜର । ରାଜାସାହେବ ଅପ୍ରାପ୍ତବୟସ୍କ । ମିଥିଁ ସାହେବଙ୍କ ସହିତରେ ଅଗନ୍ତୁକ ବ୍ୟକ୍ତିର ଆସିବାର ସମ୍ବାଦଟା ଯଥାବଧିରେ ରାଜ-ଅନ୍ତଃପୁରକୁ ଗଲା । ଗୁଣବତୀ ରାଜମାତା—ମା ମହିମା ଆମ୍ଭମାନଙ୍କୁ ଚିତ୍ରୁ ଅଦୃଷ୍ଟ ମନେ କରି ଯେପରି ସ୍ନେହପୂର୍ଣ୍ଣ ଅଭ୍ୟର୍ଥନା କଲେ, ଏପରି ଅଭ୍ୟର୍ଥନା ଅଳ୍ପ ସ୍ଥାନରେ ଆମ୍ଭ ଭାଗ୍ୟରେ ଘଟିଥିବ । ଗୁଣବତୀ ରାଜମାତା ଏକମାତ୍ର ସନ୍ତାନ ବର୍ତ୍ତମାନ ରାଜାଙ୍କୁ ଗର୍ଭରେ ଧରି ପତିବିୟୋଗ-ଶୋକରେ ଅଭିଭୂତା ହୋଇ ନ ଥିଲେ । ସେ ଅଭିଭୂତ ତାଙ୍କ ମନ-ବଳଠାରେ ପରାଜିତ ହୋଇଥିଲା । ଈଶ୍ୱର ତାହାଙ୍କୁ ସୁଖୀ କରଇଲେ । ନରସିଂହପୁର ଦେଖି ପୂର୍ବ ସ୍ମୃତି ଜାଗିଲା । ଲେଖକର କ୍ଷୁଦ୍ରଜୀବନ ସହିତ ଏଠାରେ ଟିକିଏ ସମ୍ପର୍କ ଘଟିଥିଲା । ଯେତେ-ବେଳେ ନରସିଂହପୁରର ପୂର୍ବ ରାଜାଙ୍କ ପରଲୋକ ଘଟେ, ସେତେବେଳେ ନୀଳଗିରିର ଦେବାନ ଥାଇ ମୟୂରଭଞ୍ଜର ଦ୍ୱିତୀୟ ରାଜକୁମାର ଶ୍ରୀମାନ୍ ଶ୍ୟାମଚନ୍ଦ୍ର ଦେବଙ୍କୁ ନୀଳଗିରିର ପୋଷ୍ୟପୁତ୍ର ...ରି ଆଣିଥିବା ଦାୟିତ୍ୱରେ ବିରୋଧୀ ଦଳଦ୍ୱାରା ...ରୂପୀଡ଼ିତ ଓ ବିତାଡ଼ିତ ହୋଇଥିଲି ଯେ ...ଣ ମାତ୍ରକେ ଲୋମହର୍ଷଣ ହୁଏ । ପରମ ...ର ଶତାଂଶର ଏକାଂଶ ଦୁର୍ଗତି କ... ନାହିଁ । ସାଳନୀପ୍ ...easure" ବିଦ୍ୱେଷ-ଜନିତ ଅନନ୍ତଟା ଅଛା ଭୋଗ କରି ନେଲେ ! ସାଧୁ ଉତ୍କଳଦୀପିକାର ସମ୍ପାଦକ—ସତ୍ୟବାଦୀ ଗୌରୀଶଙ୍କର ରାୟ ସତ୍ୟକଥା କହି ଏ ବିଷୟକୁ ବଖାଣି ଦେଇଥିଲେ । ଆଜି ସେହି ପୁଣ୍ୟଶ୍ଳୋକ, ଉତ୍କଳ-ନରସିଂହ ରାୟ ବାହାଦୁର ନନ୍ଦକିଶୋର ଛତ୍ରବାଳେ ନରସିଂହପୁରର ଦେବାନୀ ପଦରେ ନିଯୁକ୍ତ କରାଇ ନୀଳଗିରି ଜଞ୍ଜାଳରୁ ବାହି ଦେଇଥିଲେ । ଯୌବନର ମଦ ! ବିଦେଶ ରେଖା ହିତ ପିତା ଲାଗିଲା । କାଳଚକ୍ରରେ ପଡ଼ି ଯାହା ଘଟିବାର ଥିଲା ଘଟି ଗଲା । ଏତେକାଳେ ସେହି ନରସିଂହପୁର ଦେଖି ଗୋଲାପୀ ସ୍ମୃତି ପୁଣି ଟିକିଏ ମନରେ ମାଖି ନେଲି ।

ଏ ରାଜ୍ୟର ଉତ୍ତରରେ ହିନ୍ଦୋଳ, ପୂର୍ବରେ ବଡ଼ାମ୍ବା, ଦକ୍ଷିଣରେ ମହାନଦୀ, ପଶ୍ଚିମରେ ଅନୁଗୁଳ । ଭୂମିପରିମାଣ ୧୯୯ ବର୍ଗମାଇଲ ଏବଂ ଲୋକସଂଖ୍ୟା ୩୯୦୦୦ ହଜାର । ସ୍ୱର୍ଗୀୟ ରାଜାଙ୍କଦ୍ୱାରା ଯେ ରାଜପ୍ରାସାଦ ପ୍ରସ୍ତୁତ ହୋଇଅଛି ତାହା ସୁନ୍ଦର, ସୁଦୃଢ଼ ଓ ସୁରୁଚିସମ୍ପନ୍ନ । ବାବୁ ଜଗନ୍ମୋହନ ସୂର୍ଯ୍ୟକାଳ ଦେବାନ ଥାଇ ସୁଚାରୁରୂପେ ଏ ରାଜ୍ୟ ଚଳାଇ ଆସିଥିଲେ । ତାଙ୍କ ସୁଖ୍ୟାତି ଲୋକ-ମୁଖରୁ ଶୁଣି ସୁଖୀ ହେଲୁଁ । ଆମ୍ଭେମାନେ ଜାଣୁ, ବାବୁ ଜଗନ୍ମୋହନ କେନ୍ଦୁଝର ରାଜ୍ୟର ଦେବାନ ଥାଇ ବିଶେଷ ଦକ୍ଷତା ଦେଖାଇଥିଲେ । ଦୁଃଖର ବିଷୟ ବଙ୍ଗୀୟ ଗବର୍ଣ୍ଣମେଣ୍ଟ ଏପରି ସୁଯୋଗ୍ୟ ସୁଦକ୍ଷ ରାଜମନ୍ତ୍ରୀମାନଙ୍କୁ ରାୟବାହାଦୁର ଉପାଧିରେ ସମ୍ମାନିତ କରି ନାହାନ୍ତି । ଗବର୍ଣ୍ଣମେଣ୍ଟଙ୍କୁ କହିବାର ମଧ୍ୟ କଥା ନୁହେ । ଜଣେ ଉପଯୁକ୍ତ ବ୍ୟକ୍ତି ଦେବାନୀ ପଦରେ ନିଯୁକ୍ତ ହୋଇ ସେ ରାଜ୍ୟର ଉନ୍ନତି ନିମିତ୍ତ ବିଶେଷ ଯତ୍ନଶୀଳ । ମାତ୍ର ସେ ସ୍ଥଳ ହେଲେ ଗଡ଼ଜାତ କୁଟଚକ୍ରୀ ଲୋକଙ୍କୁ । ଗଡ଼ଜାତ ନୀତି ଏପରି କୁଟିଳ ଓ ଜଘନ୍ୟ ଯେ ଯେତେ ଉପଯୁକ୍ତ ଲୋକ ହେଉ ମିଥ୍ୟା, ପ୍ରବଞ୍ଚନାରେ ସେ ଲୋକଙ୍କୁ ବାତୁଳ କରିଦେବେ । ସତ୍ ଲୋକ କଥା ମିଛ ମଣୀ ହୁଏ କି ? ବିଶେଷତଃ

ଶୁଣିଲାମୁନିଙ୍କ ସବୁ କଥା—କାପଟ୍ନଥା—ତୁମ୍ଭେ କାନ ଡେରି କ ଶୁଣି ସ୍ଥିର ହୁଅନ୍ତେ ? ଯେବେ ତାଙ୍କ କଥା ଶୁଣିଛ, ତେବେ ସେ ତୁମ୍ଭଙ୍କୁ ହସ୍ତେ ଜଖମ କଲେ । ପ୍ରାୟ ଗଡ଼ଜାତ ଦେବାନ, ମେନେଜର ଜଖମୀ । ଯେ ଜଣେ ଅଧେ ରହି ଅଛନ୍ତି, ଗୁପ୍ ଚୁପ୍ ନାଡ ନିହାଡ଼ିରେ । କିନ୍ତୁ ଜଖମ ହେବାର ଆଶଙ୍କାଟା ଅନୁକ୍ଷଣ ତାଙ୍କ ମନରେ ଲାଗି ରହିଅଛି । ଏପରି ଅବସ୍ଥାରେ ଉପାୟ ଅର୍ଜନର ଆଶା ଗଡ଼ଜାତ ଦେବାନଙ୍କ ପକ୍ଷରେ ବିରଳ । ଭଗବାନଙ୍କ କୃପାରୁ ଏବେ ଗଡ଼ଜାତ ଗଜନବର୍ଗ ସୁଶିକ୍ଷା, ସୁସଙ୍ଗ ପାଉ ଅଛନ୍ତି । ସୁଯୋଗ୍ୟ ଦେବାନମାନଙ୍କର ଯୋଗ୍ୟତା ହେଲେ ସେମାନଙ୍କୁ ସ୍ୱାଧୀନ ଭାବେ ପରିଚାଳନଦ୍ୱାରା ରାଜ୍ୟର ଉନ୍ନତିକୁ ସୁବିଧା ଦେବେ । ଅସ୍ମେମାନେ ନରସିଂହପୁରର ଶ୍ରୀଯୋଗ ରାଜା ଶ୍ରୀମାନ୍ ସାଧୁଚରଣ ହରିଚନ୍ଦନ ମାନସିଂହଙ୍କର ସାଧୁ ବ୍ୟବହାରରେ ଅତ୍ୟନ୍ତ ପ୍ରୀତ ଲାଭ କରିଅଛୁଁ । ଏହାଙ୍କର ବିନମ୍ର-ମଧୁର ବ୍ୟବହାର ହୃଦୟରେ ସେହି ଉଦ୍ଦୀ [illegible] ଲା । ମଧୁର ଧୀର ମୂର୍ତ୍ତି ଚିତ୍ରପଟରେ ଚିର [illegible] ରହି ଗଲା ।

ଶ୍ରୀ ତ୍ରୈଲୋକ୍ୟନାଥ ସାମନ୍ତରାୟ ।

## ଭୁବନେଶ୍ୱରସ୍ଥ ଶ୍ରୀ ବାସୁଦେବ ମନ୍ଦିରର ଶିଳାଲିପି ।

### ଦ୍ୱିତୀୟ ଖଣ୍ଡ ।

ଓଁ ନମୋ ଭଗବତେ ବାସୁଦେବାୟ ।

ଗାଢ଼ୋପଗୂଢ଼କମଳାକୁଚକୁମ୍ଭପତ୍ର-
ମୁଦ୍ରାଙ୍କିତେନ ବପୁଷା ପରିତପ୍ୟମାନଃ ।
ଅଲ୍ପପ୍ରୟତ୍ନମଭିନବାବନମାଳନେତ
ବାଗ୍ଦେବତୋପହସିତୋଽସ୍ତୁ ହରିଃଶ୍ରିୟେ ବଃ ।୧

ଗାଢ଼ଭାବରେ ଆଲିଙ୍ଗିତ ହେବାରୁ ଲକ୍ଷ୍ମୀଙ୍କର କୁଚକଳଶପତ୍ରରଚନାଦ୍ୱାରା ଚିହ୍ନିତ ଶରୀରରେ ପ୍ରରଦୃଶ୍ୟମାନ ଏବଂ ସେହି ହେତୁରୁ ସରସ୍ୱତୀଙ୍କଦ୍ୱାରା 'ନୂତନ ବନମାଳା ଗ୍ରହଣ କରନ୍ତୁ' ବୋଲି ଉପହସିତ ଏବଂଭୂତ ହରି ତୁମ୍ଭମାନଙ୍କର ମଙ୍ଗଳ କାରଣ ହୁଅନ୍ତୁ (ମଙ୍ଗଳବିଧାନ କରନ୍ତୁ) ।

ବାଲ୍ୟାତ୍ ପ୍ରଭୃତ୍ୟହରହର୍ଯଦୁପାସିତାସି
ବାଗ୍ଦେବତେଽତଦଧୁନା ଫଳତୁ ପ୍ରସୀଦ ।
ବକ୍ଷ୍ୟାମି ଭଟ୍ଟଭବଦେବକୁଳପ୍ରଶସ୍ତି—
ସୂକ୍ତାକ୍ଷରାଣି ରସନାଗ୍ରମଧିଶ୍ରୟେଥାଃ ।୨।

ହେ ବାଗ୍ଦେବି ! ମୁଁ ବାଲ୍ୟକାଳରୁ ପ୍ରତ୍ୟହ ତୁମ୍ଭର ଉପାସନା କରୁଅଛି; ବର୍ତ୍ତମାନ ମୋପ୍ରତି କିଛିଏ ଅନୁଗ୍ରହ କରନ୍ତୁ; ମୁଁ ଭଟ୍ଟଭବ ଦେବଙ୍କର ବଂଶରଚନାର ସୁବର୍ଣ୍ଣିତାକ୍ଷରମାନଙ୍କୁ କହିବି, ଅତଏବ ମୋର ଜିହ୍ୱାଗ୍ରକୁ ଆଶ୍ରୟ କରନ୍ତୁ ।

ସାବର୍ଣ୍ଣିସ୍ୟ ମୁନେର୍ମହୀୟସି କୁଳେ
ଯେ ଜଜ୍ଞିରେ ଶ୍ରୋତ୍ରିୟା
ସ୍ତେଷାଂ ଶାସନଭୂମଯୋଽଜନ ଗୃହଂ
ଗ୍ରାମଃ ଶତଂ ସନ୍ତିତେ ।
ଆର୍ଯ୍ୟାବର୍ତ୍ତଭୁବାଂ ବିଭୂଷଣମିହ
ଖ୍ୟାତସ୍ତୁ ସର୍ବାଗ୍ରିମୋ
ଗ୍ରାମଃ ସିଦ୍ଧଲଏବ କେବଳମଳଂ-
କାରୋଽସ୍ତି ରାଢ଼ାଶ୍ରିୟଃ ।୩।

ସାବର୍ଣ୍ଣି ମୁନିଙ୍କର ପ୍ରଶସ୍ତବଂଶରେ ଯେଉଁ ଶ୍ରୋତ୍ରିୟ ବ୍ରାହ୍ମଣମାନେ ଜନ୍ମିଥିଲେ, ସେମାନ ଶାସନଭୂମିମାନ ଶତସଂଖ୍ୟକ ଗ୍ରାମରେ ଥି ହେଲା; ସେଥିରୁ ଆର୍ଯ୍ୟାବର୍ତ୍ତ ଭୂଷଣର ଭୂଷା, ସର୍ବପ୍ରସିଦ୍ଧ ଏବଂ '[illegible]' ନା ମାନଙ୍କର ଅଗ୍ରଣୀ ଗ୍ରାମ ବିଦ୍ୟମାନ ଅଛି ।

ସହୃଦପକ୍ଷବଃ ସ୍ଥିତିମତ୍ତ୍ୱୋ ଦୃଢ଼ବଦ୍ଧମୂଳଃ
ଶାଖାଗ୍ରଲଗ୍ନମୁଖରଦ୍ୱିଜନୀଳକଣ୍ଠଃ ।
ନ ଗ୍ରନ୍ଥିଲୋ ନ କୁଟିଲଃ ସରଳଃ ସୁପର୍ବା
ସର୍ବୋନ୍ନତଃ ସ୍ଫୁରତି ନ ପ୍ରସରାର ବଂଶଃ । ୪ ।

ବଂଶ ଅର୍ଥାତ୍ ବାଉଁଶ ଯେପରି ସୁନ୍ଦର ପତ୍ର-ବିଶିଷ୍ଟ, ବହୁକାଳସ୍ଥାୟୀ, ଦୃଢ଼ମୂଳ, ଶାଖାଗ୍ରରେ ମୁଖର ପକ୍ଷିମାନଙ୍କର କୂଜନଦ୍ୱାରା ଶୋଭିତ, ଗଣ୍ଠିରହିତ ସୁତରାଂ ସରଳ, ସୁନ୍ଦରପର୍ବବିଶିଷ୍ଟ ଓ ସର୍ବୋନ୍ନତ ହୋଇ ବର୍ଦ୍ଧିତ ହୁଏ; ସେହିପରି ଏଠାରେ ବଂଶ ଅର୍ଥାତ୍ କୁଳ ବନ୍ଧୁକୁଟୁମ୍ବୀ, ମର୍ଯ୍ୟାଦାନ୍ୱିତ, ସ୍ନେହଶ୍ରଦ୍ଧାଭକ୍ତ୍ୟାଦିଦ୍ୱାରା ସମ୍ବନ୍ଧ, ବେଦବେଦାଙ୍ଗପାଠୀ ପ୍ରଗଲ୍ଭ ବ୍ରାହ୍ମଣମାନଙ୍କଦ୍ୱାରା ଶୋଭମାନ, ଛଳ-କୁଟିଳଭାବରହିତ ସୁତରାଂ ସରଳସ୍ୱଭାବ, ବ୍ରତପୂଜାଦିଧର୍ମକାର୍ଯ୍ୟନିରତ ଏବଂ ସର୍ବଗୁଣସମ୍ପନ୍ନ ହୋଇ ବିସ୍ତାରିତ ହୋଇଥିଲା ।

ତଦ୍‌ବଂଶୋତ୍ତଂସମଣିଃ ଫଳସ୍ୟ ହାଛାପି ଶାସନ-
ପ୍ରଥମଃ ।
ଭବଭବକ୍ଷଦ୍ୟାଭନ୍ତପ୍ରସବଃ ପ୍ରଭବଭୁବଭବଦେବଃ ॥

ସେହି ବଂଶର ଶିରୋଭୂଷଣତୁଲ୍ୟ, ସମସ୍ତ ସଦାଚାରମାନଙ୍କ ବାଞ୍ଛାପୂର୍ତ୍ତିକାରୀ ହେଲେ ମଧ୍ୟ ଅନ୍ୟାୟିମାନଙ୍କ ପ୍ରତି ସୂର୍ଯ୍ୟସମ ତେଜସ୍ୱୀ ଅର୍ଥାତ୍ ଦୁର୍ଦ୍ଧର୍ଷ ଏବଂ ଶିବଙ୍କ ତୁଲ୍ୟ ସକଳ ବଦ୍ୟାହନ୍ତ-ନ୍ନିପାଦକ 'ଶ୍ରୀ ଭବଦେବ' ଜାତ ହେଲେ ।

ଅଗ୍ରଜାନୁଜୟୋର୍ମଧ୍ୟେ ମହାଦେବାଟ୍ଟହାସୟୋଃ ।
ସ ଜଜ୍ଞେ ଯଜ୍ଞପୁରୁଷୋ ବରଶ୍ଚୈତରୟୋରିବ ।୬।

ବ୍ରହ୍ମା ଶିବଙ୍କ ମଧ୍ୟରେ ଯଜ୍ଞପୁରୁଷ ତୁଲ୍ୟ, ମହାଦେବଙ୍କ ସଦୃଶ ଅଟ୍ଟହାସନାମୀ ଅଗ୍ରଜ ଅନୁଜ ...ଦ୍ୱୟଙ୍କ ମଧ୍ୟରେ ଭବଦେବ ଜାତ ହେଲେ ।

...ଂ ଗୌଡ଼ନୃପାଦବାପ
...ନ୍ତ୍ରିମନ୍ତ୍ରମନ୍ତ୍ରିଭୂମିଂ ।
...ମଦେଶମୂର୍ତ୍ତି ପ୍ରଶ୍ୟାନ୍
।

...ଙ୍କଠାରୁ ଶାସନ-ଯୋଗ୍ୟ, ତାଙ୍କ ଶାସନଦ୍ୱାରା ନିର୍ଦ୍ଦିଷ୍ଟ ଉତ୍ତମଭୂମି ପ୍ରାପ୍ତ ହୋଇଥିଲେ । ଶିବଙ୍କର ଅଷ୍ଟବିଧ ମୂର୍ତ୍ତି ସଦୃଶ ତାଙ୍କର ରଥାଙ୍ଗାଦି ଆଠୋଟି ପ୍ରଖ୍ୟାତ ସନ୍ତାନ ଜାତ ହୋଇଥିଲେ ।

ରଥାଙ୍ଗାଦନ୍ୟଙ୍ଗଃ ସମଜନି ଜନାନନ୍ଦଜନକଃ
ଶଶୀବ କ୍ଷୀରୋଦାଦବିକଳକଳାକେଳିନିଳୟଃ ।
ସ୍ଫୁରତ୍ପ୍ରଜ୍ଞୋ ଜ୍ୟୋତିଃ ସ୍ଫୁରିତ ଇବ ନାମ୍ନା ବଧି
ପ୍ରକାଶୋଽଭୂତ୍‌ସୌମ୍ୟ ଶ୍ରବଣବନ୍ୟସ୍ତସ୍ୟ ତନୟଃ

କ୍ଷୀରସମୁଦ୍ରରୁ ଚନ୍ଦ୍ରବତ୍ ରଥାଙ୍ଗଙ୍କଠାରୁ ଜନାନନ୍ଦକାରୀ, ସମସ୍ତ କଳାନିଧାନ ଅନ୍ୟଙ୍ଗ ନାମକ ପୁତ୍ର ଜାତ ହେଲେ; ଏବଂ ଅନ୍ୟଙ୍ଗଙ୍କଠାରୁ ଚନ୍ଦ୍ରଙ୍କଠାରୁ ବୁଧ ଗ୍ରହ ପରି ଦିବ୍ୟପ୍ରଜ୍ଞାଶାଳୀ ସ୍ୱୀୟ ନାମଦ୍ୱାରା ସର୍ବତ୍ର ପ୍ରସିଦ୍ଧ ବୁଧ ନାମା ବିଖ୍ୟାତ ପୁତ୍ର ଜାତ ହେଲେ ।

ତସ୍ମାଦଭୂଦଭିଜନାଭ୍ୟୁଦୟୈକବୀଜ
ମବ୍ୟାଜପୌରୁଷମହାତରୁମୂଳକନ୍ଦଃ ।
ଶ୍ରୀ ଆଦିଦେବ ଇତି ଦେବ ଇବାଦିମୂର୍ତ୍ତି
ର୍ମର୍ତ୍ତ୍ୟାମ୍ବନା ଭୁବନମେତଦଲଂକରିଷ୍ଣୁଃ । ୯ ।

ତାହାଙ୍କଠାରୁ ଅଭିଜନମାନଙ୍କର ଉନ୍ନତିର ଏକମାତ୍ର ହେତୁସ୍ୱରୂପ, ନିଷ୍କପଟ ପୌରୁଷ-ମହା-ଦ୍ରୁମର ମୂଳଗଣ୍ଠି ତୁଲ୍ୟ, ଦେବଙ୍କର ଆଦିମୂର୍ତ୍ତି ସଦୃଶ ଏବଂ ମନୁଷ୍ୟରୂପରେ ଏ ସଂସାର ବିଭୂଷଣ-କାରୀ ଶ୍ରୀ ଆଦିଦେବ ଜାତ ହେଲେ ।

ଯୋବଙ୍ଗରାଜରାଜ୍ୟଶ୍ରୀବିଶ୍ରାମସଚିବଃ ଶୁଚିଃ ।
ମହାମନ୍ତ୍ରୀ ମହାପାତ୍ରମବନ୍ଧ୍ୟମନ୍ଧିବିଗ୍ରହୀ । ୧୦ ।

ଯେଉଁ ଆଦିଦେବ ବଙ୍ଗରାଜାଙ୍କର ରାଜ୍ୟଲକ୍ଷ୍ମୀ ପରିବର୍ଦ୍ଧକ, ପବିତ୍ରାତ୍ମା, ମହାମନ୍ତ୍ରୀ ସୁପଣ୍ଡିତ ଏବଂ ଯାହାଙ୍କର ସନ୍ଧିବିଗ୍ରହାଦି ସଫଳ ହୋଇଅଛି ।

ସଦ୍ଦେବକୀଗର୍ଭଭବ ଭୁବିପ୍ରିତୌ
ସମର୍ଥମୂର୍ତ୍ତୌ ପଦଲବ୍ଧପୌରୁଷଂ ।
ସରସ୍ୱତୀଜାନମଜୀଜନତ୍ ସୁତଂ
ଜଗତ୍ସୁ ଗୋବର୍ଦ୍ଧନମଦ୍ଭୁତୋପମଂ । ୧୧ ।

ବିଷ୍ଣୁଙ୍କ ତୁଲ୍ୟ ସେ ଆଦିଦେବଙ୍କର ସ୍ତ୍ରୀ ଗର୍ଭରୁ ଗୋବର୍ଦ୍ଧନ ନାମକ ପୁତ୍ର ଜାତ ହେଲା । ବିଷ୍ଣୁ

ଦେବଙ୍କ ଗର୍ଭସମ୍ଭୂତ, ଭୂପାଳନସମର୍ଥ, ବାମନାବତାରରେ ଆକାଶ ପ୍ରତି ପଦବିସ୍ତାରଦ୍ୱାରା ପୌରୁଷପ୍ରାପ୍ତ, ସରସ୍ୱତୀବଲ୍ଲଭ, ପୃଥ୍ୱୀମଙ୍ଗଳବିଧାୟକ ଏବଂ ଅଚ୍ୟୁତୋପମ; ପୁଣି ଗୋବର୍ଦ୍ଧନ ଦେବଙ୍କ ନାମ୍ନୀ ମାତାଙ୍କଠାରୁ ଜାତ, ପୃଥ୍ୱୀମର୍ଯ୍ୟାଦାବର୍ଦ୍ଧକ, ଉତ୍କୋପାଧି ଧାରଣ ହେତୁରୁ ସୁପ୍ରତିଷ୍ଠ, ରାଜ୍ୟବିସ୍ତାରକ, ସରସ୍ୱତୀନାମ୍ନୀ-ଜାୟା-ବଲ୍ଲଭ ଏବଂ ଅଚ୍ୟୁତୋପମ ଅଟନ୍ତି ।

ବୀରସ୍ଥଲୀଷୁ ଚ ସଭାସୁ ଚ ଭାନ୍ତି ଯାନାଂ
ଦୋର୍ଲୀଲୟା ଚ କଲୟା ଚ ବରପ୍ରିନାଂ ଯଃ ।
ସଂବର୍ଦ୍ଧୟନ୍ ବସୁମତୀଂ ଚ ସରସ୍ୱତୀଂ ଚ
ଦ୍ୱେଧାବ୍ୟଧତ୍ତ ନିଜନାମପଦଂ ସଦର୍ଥଂ । ୧୨ ।

ଯେଉଁ ଗୋବର୍ଦ୍ଧନ ବୀରସ୍ଥଲୀମାନଙ୍କରେ ରଣବିଦ୍ୟାବିଶାରଦ ବୀରମାନଙ୍କର ଭୁଜଦଣ୍ଡ ପରିଚାଳନାରେ ପୃଥ୍ୱୀକୁ ଏବଂ ସଭାମାନଙ୍କରେ ବାଗ୍ମୀ ପଣ୍ଡିତମାନଙ୍କର ଚତୁଃଷଷ୍ଠୀ ବିଦ୍ୟାକଳା ଦ୍ୱାରା ବାଣୀ ବର୍ଦ୍ଧନ କରି ନିଜ ନାମକୁ ତା ଅର୍ଥାତ୍ ଭୂମି ଓ ବାଣୀ ଉଭୟର ବର୍ଦ୍ଧକ ବୋଲି ସାର୍ଥ କଲେ ।

ବନ୍ଦ୍ୟାଂ ବନ୍ଦ୍ୟଘଟୀଯୁସ୍ୟ ବ୍ରହ୍ମଣଃ ପ୍ରପୃଷ୍ଠାଂ ସୁତାଂ ।
ସାକ୍ଷାତ୍ କାମାଙ୍ଗନାରହ୍ନଂ ପତ୍ନୀଂ ସ ପରିଣୀତବାନ୍ ॥

ସେ ଗୋବର୍ଦ୍ଧନ ବନ୍ଦ୍ୟଘଟସଙ୍ଗକ ବ୍ରାହ୍ମଣର ମହନୀୟା କନ୍ୟା ଏବଂ ପ୍ରତ୍ୟକ୍ଷ ରତିସ୍ୱରୂପିଣୀ କନ୍ୟାକୁ ବିବାହ କଲେ ।

ତସ୍ୟାଂ ସ୍ୱପ୍ନବିଧାନବୋଧିତ ନନ୍ଦୋ-
ତ୍ପାଦଃ ସ ଦେବୋ ହରି
ର୍ଜାତଃ ଶ୍ରୀ ଭବଦେବ ମୂର୍ତ୍ତିରମୂତଃ
କ୍ଷ୍ମାମଣ୍ଡଳୀକଶ୍ୟପାତ୍ ।
ପାଣିପ୍ରଣୟିବିଗ୍ରହଂ ଜଲଜୟୋ-
ର୍ଗାଲକ୍ଷିତଂ ଲକ୍ଷ୍ମଣଂ
ଯସ୍ୟାନ୍ତର୍ହିତକୋସ୍ତି କୌସ୍ତୁଭ ଇତ
କ୍ଷାତୁଂ ପ୍ରକାଶୋଦୟାତ୍ । ୧୪ ।

ସ୍ୱପ୍ନଂ ହରି ସ୍ୱପ୍ନରେ ନିଜର ଜନ୍ମକୁ ଜଣାଇ ଦେଇ ଭୂମଣ୍ଡଳରେ କଶ୍ୟପତୁଲ୍ୟ ଗୋବର୍ଦ୍ଧନଙ୍କ ଔରସରେ ତାହାଙ୍କ ସ୍ତ୍ରୀଗର୍ଭରୁ ଭବଦେବମୂର୍ତ୍ତି ରୂପରେ ଜାତ ହେଲେ । ଏହି ମହାତ୍ମାଙ୍କର ହସ୍ତଦ୍ୱୟ ପଦ୍ମାଦି ଲକ୍ଷଣ ସହିତ ଶୋଭୁଥିଲା ଏବଂ ହୃଦୟାଭ୍ୟନ୍ତରେ କୌସ୍ତୁଭମଣି ଲୁଚିଛି ଥିବାର ବୋଧ ହେଉଥିଲା ।

ଲକ୍ଷ୍ମୀଂ ଦକ୍ଷିଣଦୋଷ୍ଣି ମଣ୍ଡଳବଲେନୈବାସ୍ୟ ଭୂମଣ୍ଡଳଂ
ଜିହ୍ୱାଗ୍ରେ ଚ ସରସ୍ୱତୀଂ ପୃଥୁତରୌ ନାଗାନ୍ତ୍ରକଂ
ପତ୍ରିଣଂ ।
ଚକ୍ରଂ ପାଦତଲେ ନିବେଶିତବତା ଦିବ୍ୟଂ ଯଦାଦ୍ୟଂ
ବପୁ
ର୍ନିହ୍ନୋତୁଂ ନିଜଲକ୍ଷ୍ମମେତଦମୁନା ନୂନଂ
ବ୍ୟପର୍ଯ୍ୟାସିତଂ । ୧୫ ।

ସ୍ୱୟଂ ବିଷ୍ଣୁ ଅବା ଅବତୀର୍ଣ୍ଣ ହୋଇଅଛନ୍ତି ଲୋକେ ଏପରି କାଳେ ବୁଝି ପାରନ୍ତି, ଏ ହେତୁରୁ ଭବଦେବ ନିଜ ଚିହ୍ନଗୁଡିକ ପ୍ରକୃତ ଶରୀର ଗୋପନ କରିବା ପାଇଁ ବିଭିନ୍ନ ସ୍ଥାନମାନଙ୍କରେ ରଖିଲେ; ଯଥା ଲକ୍ଷ୍ମୀଙ୍କୁ ଦକ୍ଷିଣ ଭୁଜରେ, ଭୂମଣ୍ଡଳକୁ ବାହୁରଶକ୍ତିରେ, ସରସ୍ୱତୀଙ୍କୁ ଜିହ୍ୱାରେ, ନାଗାନ୍ତକକୁ ଶନୁ ଉଦରରେ ଚକ୍ରକୁ ପାଦତଳରେ, ଇତି ।

ଯନ୍ମନ୍ତ୍ରଶକ୍ତି ସଚିବଃ ସୁଚିରଂ ପ୍ରଜାଭି-
ରାଜ୍ୟଂ ସ ଧର୍ମବିଜୟୀ ହରିବର୍ମଦେବଃ ।
ତନ୍ନନ୍ଦନେ ଚଲତି ଯସ୍ୟ ତ୍ରିଦଣ୍ଡନୀତେ
ର୍ମର୍ଯ୍ୟାନୁଗାବିହିତ କଲ୍ପଲତେବ ଲକ୍ଷ୍ମୀଃ । ୧୬ ।

ହରିବର୍ମ ଦେବ ନାମକ ରାଜା, ଯେଉଁ ଭବଦେବଙ୍କର ମନ୍ତ୍ରଶକ୍ତି ସାହାଯ୍ୟରେ ରାଜ୍ୟ ଚିରକାଳ ପାଳନ କଲେ । ତାଙ୍କର ପୁତ୍ର ସକ୍ଷମ ହୋଇଥିଲେ ଲକ୍ଷ୍ମୀ ପ୍ରସିଦ୍ଧ କଳ୍ପଲତା ପରି ଯାହାଙ୍କର ଦଣ୍ଡନୀତିପଥାନୁସାରିଣୀ ହେଲେ ।

ସତ୍ପାତ୍ରସ୍ୟ ମହାଶଯସ୍ୟ କମଳା-
ଧାରସ୍ୟ ଯସ୍ୟ
ବିଶ୍ୱାଣସ୍ୟ ଗୁଣମୁଦ୍ରେବ ନନ୍ଦନ-
ସ୍ୟାକୁ
ମର୍ଯ୍ୟାଦାମହମ

ପ୍ରାଜ୍ଞଃ ପ୍ରାଜ୍ଞସଭେବ ଚାନ୍ତପଥମତେ-

କାନ୍ତା ସ୍ୱଦେହେଷୁ ଗୁଣାଃ ।୧୭ ।

ସତ୍ୱବାନ, ମହାଶୟ, ଧନବାନ୍, କ୍ଷମାଶୀଳ, ଗୁଣନିଧି, ଗମ୍ଭୀରପ୍ରକୃତି, ପୁଣ୍ୟାତ୍ମା ଯେଉଁ ଭବଦେବଙ୍କର ମର୍ଯ୍ୟାଦା, ମହିମା, ପ୍ରସନ୍ନତା ନିଷ୍କପଟତା ଗାମ୍ଭୀର୍ଯ୍ୟ, ଧୈର୍ଯ୍ୟ ସ୍ଥିତି ପ୍ରଭୃତି ଗୁଣମାନେ ଅକୃଥିମସ୍ୱରୂପେ ଦର୍ଶନପ୍ରିୟ ହେଲେ ।

ମହାଗୌରୀ କୀର୍ତ୍ତିଃ ସ୍ଫୁରଦସି କରାଳା

ଭ୍ରୂକଲତା

ରଣକ୍ରୀଡ଼ାଚଣ୍ଡୀ ରିପୁରୁଧିରଚର୍ଚ୍ଚା-

ରଣ ଭୁବଃ

ମହାଲକ୍ଷ୍ମୀଃ ମୂର୍ତ୍ତିଃ ପ୍ରକୃତି ଲଳିତାସ୍ୟ

ଗିରଃଇତି

ପ୍ରପଞ୍ଚଃ ଶକ୍ତୀନାଂ ଯମିହ ପରମେଶଂ

ପ୍ରଥୟତି । ୧୮ ।

ଶକ୍ତିସମୂହ ଏ ସଂସାରରେ ଭବଦେବଙ୍କୁ ସ୍ୱୟଂ ମହାଦେବ ବୋଲି ବିସ୍ତାର କଲା । ଦେଖ ଶିବଙ୍କର ମହାଗୌରୀ, ପ୍ରକାଶ୍ୟ ଖଡ୍ଗ ଶୋଭିତହସ୍ତା କାଳୀ, ରଣକ୍ରୀଡ଼ାକାରିଣୀ ଚଣ୍ଡୀ, ଯୁଦ୍ଧକ୍ଷେତ୍ରରେ ରିପୁରୁଧିରସକ୍ତା ଚାର୍ଚ୍ଚା (ଚର୍ଚ୍ଚିକା), ମହାଲକ୍ଷ୍ମୀ ଓ ସରସ୍ୱତୀ ଅଛନ୍ତି । ଭବଦେବଙ୍କର କୀର୍ତ୍ତି ମହାଗୌରୀରୂପା ଅର୍ଥାତ୍ ଶୁଭ୍ର ଶୁକ୍ଳବର୍ଣ୍ଣବିଶିଷ୍ଟା; ଭ୍ରୂକଲତା ପ୍ରକାଶ୍ୟଖଡ୍ଗକରାଳା ଅର୍ଥାତ୍ ଭୟଙ୍କରୀ; ରଣକ୍ରୀଡ଼ା ଚଣ୍ଡୀସଦୃଶୀ ଅର୍ଥାତ୍ ପ୍ରଚଣ୍ଡ; ରଣଭୂମି ରିପୁରୁଧିରଚର୍ଚ୍ଚାସ୍ୱରୂପା ଅର୍ଥାତ୍ ଶତ୍ରୁରକ୍ତପ୍ଲାବିତା; ମୂର୍ତ୍ତି ମହାଲକ୍ଷ୍ମୀରୂପା ଅର୍ଥାତ୍ ସୁଶୋଭିତା; ପ୍ରକୃତି ଲଳିତା ସରସ୍ୱତୀସଦୃଶୀ ଅର୍ଥାତ୍ ଶୋଭନ-ଇତ ।

ବିଭ୍ରତି ବଳୀପ୍ସି ମନଶ୍ଚାର୍ଯ୍ୟଃ

ଧିକରିଣଂ ତରଣିନ୍ଦୋତ ।

ଯସ୍ୟାସ୍ୟ ଯଶଃ ଶଙ୍କରେ

କଳ ଲାକ୍ଷନ୍ଦନଃ । ୧୯ ।

ବ୍ରହ୍ମବେଦ-

ବ୍ୟାକ ପର

କରଣ ବିସ୍ତାର କଲା ଏବଂ ଯାହାଙ୍କର ଯଶଃସୌରଭ ବିଶେଷ ବିସ୍ତୃତ ହୋଇ ଅନ୍ତେ ହିମାଳୟ ଲଙ୍ଘିତ ହୋଇ ନାନୁପ୍ରକାଶିତ ହୋଇଗଲା ।

ବ୍ରହ୍ମାଦ୍ୱୈତବିଦାମୁଦାହରଣଭୂ-

ରୁଦ୍ଭୂତବିଦ୍ୟାଭୃତ—

ସ୍ରଷ୍ଟା ଭକ୍ତିଗିରାଂ ଗଭୀରମଗୁଣ-

ପ୍ରତ୍ୟକ୍ଷଦୃଶା କବିଃ ।

ବୌଦ୍ଧାମ୍ଭୋନିଧିକୁମ୍ଭସମ୍ଭବ ମୁନିଃ

ପାଷଣ୍ଡ ବୈତଣ୍ଡିକ—

ପ୍ରଜ୍ଞାଖଣ୍ଡନପଣ୍ଡିତୋଽୟ

ମବନୌ ସର୍ବଜ୍ଞଲୀଳାୟତେ । ୨୦ ।

ଏହି ଭବଦେବ ଅଦ୍ୱୈତ ବ୍ରହ୍ମବାଦମାନଙ୍କର ପଥପ୍ରଦର୍ଶକ, ଉଦ୍ଭୂତ ବିଦ୍ୟାର (ନାପୁସିକ ପ୍ରତ୍ୟକ୍ଷ ଯୋଗ୍ୟ ବିଦ୍ୟା ) ଅଭୁତ ସ୍ରଷ୍ଟା, ଭକ୍ତୋକ୍ତି-ମାନଙ୍କର ସୁଗଭୀର ଗୁଣର ପ୍ରତ୍ୟକ୍ଷଦର୍ଶକ, ସ୍ୱୟଂ କବି, ବୌଦ୍ଧମତ-ସମୁଦ୍ରର ଅଗସ୍ତ୍ୟତୁଲ୍ୟ ଅର୍ଥାତ୍ ବୌଦ୍ଧମତଖଣ୍ଡନକାରୀ ଏବଂ ପାଷଣ୍ଡ (ନାସ୍ତିକ) ମାନଙ୍କର ଅଯୌକ୍ତିକ ପ୍ରଜ୍ଞାଖଣ୍ଡନଦକ୍ଷ ବୋଲି ପୃଥିବୀରେ ସର୍ବଜ୍ଞ ବୋଲି ପ୍ରଥିତ ହେଲେ ।

ସିଦ୍ଧାନ୍ତତନ୍ତ୍ରଗଣିତାର୍ଣ୍ଣବପାରଦୃଶ୍ୱା

ବିଶ୍ୱାଭିତପ୍ରସବିତା ଫଳସଂହିତାସୁ ।

କର୍ତ୍ତା ସ୍ୱୟଂ ପ୍ରଥସ୍ୟିତା ଚ ନବୀନହୋରା-

ଶାସ୍ତ୍ରସ୍ୟ ଯଃ ସ୍ଫୁଟମଭୂଦପରୋଽବରାହଃ ।୨୧।

ସିଦ୍ଧାନ୍ତତନ୍ତ୍ରଗଣିତ ସମୁଦ୍ରର ପାରଦର୍ଶୀ, ସଂସାରରେ ଫଳସଂହିତା ବିଷୟରେ ବିଶିଷ୍ଟ ସୃଷ୍ଟିକର୍ତ୍ତା, ସ୍ୱୟଂ ନୂତନ ହୋରା (ଜ୍ୟୋତିଷ) ଶାସ୍ତ୍ରର ସୃଜନକାରୀ ଏବଂ ପ୍ରଚାରକ, ସୁତରାଂ ଯେଉଁ ଭବଦେବ ଏମାନଙ୍କଦ୍ୱାରା ଦ୍ୱିତୀୟ ବରାହରୂପେ ପ୍ରକାଶ ପାଉଥିଲେ ।

ଯୋ ଧର୍ମଶାସ୍ତ୍ର ପଦବୀଷୁ ନିରନ୍ତରବିବାନିବୀ-

ଉଚ୍ଚାର ରଚିତୋଚିତ ସତ୍ପ୍ରବନ୍ଧଃ ।

ସ ବ୍ୟାଖ୍ୟା ବିଶଦୟନ୍ ମୁନି ଧର୍ମଗାଥାଃ

ସ୍ମାର୍ତ୍ତକ୍ରିୟାବିଷୟସଂଶୟ ମୁନ୍ମମାର୍ଜ । ୨୨ ।

ଯେଉଁ ଭବଦେବ ଯଥାର୍ଥ ସତ୍ପ୍ରବନ୍ଧ ରଚନା-

ଦ୍ୱାରା ଧର୍ମଶାସ୍ତ୍ରପନ୍ଥାର ପଥିକମାନଙ୍କୁ ମୁକ୍ତ କରି ଦେଇଥିଲେ, ସେହି ଭବଦେବ ସମ୍ୟକ୍ ଆଲୋଚନାଦ୍ୱାରା ମୁନିପ୍ରଣୀତ ଧର୍ମଗ୍ରନ୍ଥମାନଙ୍କୁ ପରିଷ୍କାର କରି ସ୍ମାର୍ତ୍ତକର୍ମବିଷୟକ ସଂଶୟ ଛିନ୍ନ ଛେଦନ କରିଥିଲେ ।

ମୀମାଂସାମ୍ଭୋନିଧେଃ ସ ଖଲୁ
ବିରଚିତୋ ଯେନ ଭଟ୍ଟୋକ୍ତନୀତ୍ୟା
ଯତ୍ର ନ୍ୟାୟାଃ ସହସ୍ରଂ ରବିକିରଣ-
ସମାନ କ୍ଷମନ୍ତେ ତମାଂସି ।
କିଂ ଭୂମ୍ନାଂ ସୀମ୍ନି ସାମ୍ନାଂ ସକଳକବିକଳା-
ସ୍ୱାଗମେଷ୍ୱଙ୍ଗ ଶାସ୍ତ୍ରେ —
ଷ୍ୱାୟୁର୍ବେଦାସ୍ତ୍ରବେଦପ୍ରଭୃତିଷୁ କୃତଧୀର-
ଦ୍ୱିତୀୟୋଽୟମେବ । ୨୩ ।

ଯେଉଁ ଭବଦେବ ଭଟ୍ଟୋକ୍ତ ନୀତି ଅନୁଯାୟୀ ମୀମାଂସା ଶାସ୍ତ୍ରର ଅବଲମ୍ବନଭୂତ ପନ୍ଥା ରଚନା କରିଥିଲେ; ଯେଉଁ ପନ୍ଥାଦ୍ୱାରା ରବିକର ସଦୃଶ ସହସ୍ର ସହସ୍ର ନ୍ୟାୟମାନ ତଦ୍ବିଷୟକ ଅଜ୍ଞାନା-ନ୍ଧକାରକୁ କ୍ଷମା ଦେଉ ନ ଥିଲେ ଅର୍ଥାତ୍ ସମୂଳରେ ବିନାଶ କରୁଥିଲେ । ବିଶେଷ କଣ କହିବା, ଏହି ଭବଦେବ ସମାଜନୀତି ପ୍ରାନ୍ତରେ ସମସ୍ତ କବିକଳାମାନଙ୍କରେ ପୁଣି ଛନ୍ଦଶାସ୍ତ୍ର-ନୀତରେ, ଆୟୁର୍ବିଦ୍ୟା ଅସ୍ତ୍ରବିଦ୍ୟାଦିରେ କୃତବିଦ୍ୟ ହୋଇ ଇହ ଜଗତରେ ଅଦ୍ୱିତୀୟ ହୋଇଥିଲେ ।

ଯସ୍ୟ ଖଲୁ ବାଳବଲଭୀଭୁଜଙ୍ଗ ଇତି ନାମ
ନାଦୃତଂ କେନ ।
ମୀମାଂସତ୍ୱ ସଫୁଲକମାକର୍ଣ୍ଣ ତବର୍ଣ୍ଣିତୋଦ୍ଦୀତଂ ॥

ଯେଉଁ ଭବଦେବଙ୍କର 'ବାଳବଲଭୀଭୁଜଙ୍ଗ' ଏହି ନାମଟିକି କେହି ଆଦର କରୁ ନ ଥିଲେ । ଅମ୍ଳାନଶିକ୍ଷ ସେମାନଙ୍କର ବିଷୟ ତାହା ମୀମାଂସା କରି ଦେଉଅଛୁ ।

ଦଂଷ୍ଟ୍ରାଲଦୁଷ୍ଟଭୁଜଗବ୍ରଣମୋହଗର୍ବ-
ପ୍ରତ୍ୟର୍ଥତର୍କ୍ୟନନଦୈବ ମଣ୍ଡବନ୍ଧୈଃ ।
ଯୋ ଜୀବୟନ୍ ଜଗଦଶେଷମଭୂତପୂର୍ବଂ
ମୃତ୍ୟୁଞ୍ଜୟୋ ଗରଳଖେଳପୁ ନୀଲକଣ୍ଠଃ । ୨୪ ।

ଡ଼ିଲ୍ଲିଟି ବିଦେଶୀୟ ମୁକ୍ତ ଧର୍ମମାନଙ୍କର ସଂଶୟନାଶକ ଯେଉଁ ମୋହର୍ଥ ଅର୍ଥାତ୍ ଅଜ୍ଞାନତାରୂପୀ ତାହାର ପ୍ରତିକରଣ ବିଷୟରେ ନିଶାବିଷନାଶକ ଔଷଧ ତୁଲ୍ୟ, ମନ୍ତ୍ରବନ୍ଧ-ମାନଙ୍କଦ୍ୱାରା ଯେଉଁ ଜଗତର ସମସ୍ତ ସଂସାରକୁ ଅଶ୍ଚର୍ଯ୍ୟରୂପେ ଜୀବିତ କରିଥିଲେ ଗରଳଖେଳ-ବିଷୟକ ମୃତ୍ୟୁଞ୍ଜୟଙ୍କ ସ୍ୱୟଂ ଶିବଙ୍କ ତୁଲ୍ୟ ହୋଇ ଥିଲେ । ସୁତରାଂ ଏହାଙ୍କର ପୂର୍ବୋକ୍ତ ନାମକୁ ଅନାଦର କରିବା ସ୍ୱାଭାବିକ ।

ସତ୍ରାମ୍ବୁମଜ୍ଜନାନ୍ନ ଜାଙ୍ଗଳପଥଗ୍ରାମୋପକଣ୍ଠଦ୍ରୁମା
ସୀମନ୍ତ ଶ୍ରମମଗ୍ନପାନ୍ଥପଟଳପ୍ରାଣାଶପୂର୍ଣ୍ଣିତାଃ ।
ସେନାକାରି ଜଳାଶୟଃ ପରସରସ୍ନାତ-
ଡିମ୍ଭାଙ୍ଗନା-
ବକ୍ତ୍ରାମ୍ବୁପ୍ରତିବିମ୍ବମୁଗ୍ଧମଧୁପୀଟଙ୍କାରବନ୍ଦାନନଃ ॥

ଯେଉଁ ଭବଦେବ ରାଢ଼ବଙ୍ଗଦେଶରେ ରାଢ଼ା ନାମରେ ପ୍ରସିଦ୍ଧ, ନିର୍ଜଳ, ଅରଣ୍ୟପଥ ନିକଟବର୍ତ୍ତୀ ଗ୍ରାମମାନଙ୍କର ସୀମାପ୍ରଦେଶରେ ପରିଶ୍ରାନ୍ତ ପଥିକମାନଙ୍କର ମନ ପ୍ରାଣ ପ୍ରୀତିକର, ପୁଣି ଯାହାମଧ୍ୟରେ ସ୍ନାନ କରୁଥିବା କୁଳୀନସ୍ତ୍ରୀ-ମାନଙ୍କର ମୁଖପଦ୍ମପ୍ରତିବିମ୍ବଦ୍ୱାରା ପଦ୍ମଭ୍ରମରେ ଭ୍ରମରୀମାନଙ୍କ ଗର୍ଜ୍ଜିତ ଯାହାର ପଦ୍ମିନୀ ବନ ପରିବ୍ୟାପ୍ତ ହୁଏ ଏପରି ଏକ ଜଳାଶୟ ଖୋଳାଇ ଥିଲେ ।

ତେନାୟଂ ଭଗବାନ୍ ଭବାମ୍ବୁଧି-
ସମୁତ୍ତରଣ କାରଣଃ
ଶୈଳଃ ସେତୁରିବ ପ୍ରସାଧିତ-
ଧର୍ମଧୀଃ ପ୍ରତିଷ୍ଠାପିତଃ ।
ଯଃ ପ୍ରାଚୀବଦନେନ୍ଦୁନୀଳନଳିନୋ
ଲୀଳାବତଂ
ଭୂମେ ଦୁର୍ଲ୍ଲଭପାରଗାମ-
ବଟଦୀ ସଙ୍କଳ୍ପସିଦ୍ଧିପ୍ର

ସେହି ଭ[redacted]
ସମୁଦ୍ର ଲଂଘନ
ଭରୁଙ୍କ ଏହି

ପ୍ରଧାନ ଅବଲମ୍ବନ ସ୍ୱରୂପ ସର୍ବୈଶ୍ୱର୍ଯ୍ୟବାନ୍ ନାରାୟଣ ମୂର୍ତ୍ତି ଭୂପୃଷ୍ଠରେ ସଂସ୍ଥାପିତ ହେଲେ । ସେ ନାରାୟଣ ପୂର୍ବଦିଗ୍ ମୁଖଚନ୍ଦ୍ରର ନୀଳତିଳକ ତୁଲ୍ୟ, ଭୂମିର ଲଲାଟ ଅବତଂସସ୍ୱରୂପ, ଭୂତଳରେ ପାରିଜାତ ତରୁ ସମ ଏବଂ ପ୍ରାଣିମାନଙ୍କର ଅଭୀଷ୍ଟଦାୟକ ଅଟନ୍ତି ।

ତେନ ପ୍ରାସାଦ ଏଷ ତ୍ରିପୁରହରଗିରି
ସ୍ପର୍ଦ୍ଧୟା ବର୍ଦ୍ଧିତଶ୍ରୀଃ
ଶ୍ରୀମାନ୍ ଶ୍ରୀବତ୍ସଲକ୍ଷ୍ମା ହରିରିବ ବିହିତୋ
ବଦ୍ଧରତ୍ନକଟଚକ୍ରଃ ।
ଦୃଷ୍ଟ୍ୱା ଯୋ ବୈଜୟନ୍ତଂ ବିସୃତବଲନୁତେ
ବୈଜୟନ୍ତୀ ବିଲାସାନ୍
କୈଲାସେ ନାଭିଲାସଂ କଳୟତି ଗିରିଶୋ
ଯସ୍ୟ ସଂଲକ୍ଷ୍ୟ ଲକ୍ଷ୍ମୀଂ । ୨୮ ।

ସେ ଭବଦେବଙ୍କଦ୍ୱାରା ଏ ମନ୍ଦିର ନିର୍ମିତ ହୋଇଅଛି; ଯେ ଉଚ୍ଚତାରେ ହିମାଳୟକୁ ପରାସ୍ତ କରିଥିବା ଗର୍ବରେ ବର୍ଦ୍ଧିତଶ୍ରୀ, ବିଷ୍ଣୁଙ୍କ ତୁଲ୍ୟ ଶ୍ରୀବତ୍ସଲକ୍ଷ୍ମା ଅର୍ଥାତ୍ ଗୋ ମେଷ ମହିଷାଦିଦ୍ୱାରା ଶୋଭିତ, ବଦ୍ଧରତ୍ନକଟଚକ୍ର ଅର୍ଥାତ୍ ମସ୍ତକୋପରି ଚକ୍ରଦ୍ୱାରା ସୁଶୋଭିତ, ସୌନ୍ଦର୍ଯ୍ୟଶାଳୀ, ଏବଂ ଯେ ଇନ୍ଦ୍ରପ୍ରାସାଦକୁ ଉଚ୍ଚତାରେ ଜିଣିଥିବା ଗର୍ବରେ ଆକାଶରେ ଅର୍ଥାତ୍ ସ୍ୱମସ୍ତକୋପରି ବିଜୟସୂଚକ ପତାକାକୁ ଆନ୍ଦୋଳନ କରୁଅଛି, ପୁଣି ସ୍ୱୟଂ ସଦାଶିବ ଯାହାର ଶୋଭା ସନ୍ଦର୍ଶନ କରି କୈଳାସବାସରେ ଅନାସକ୍ତ ହେଉଅଛନ୍ତି ।

ନ୍ୟସ୍ଥାପୟତ୍ ବେଶ୍ମନ ଇହ ବିଷ୍ଣୋଃ
ସନର୍ଭରଂ ଗର୍ଭଗୃହାନ୍ତରେଷୁ ।
ନାରାୟଣାନନ୍ତ ନୃସିଂହମୂର୍ତ୍ତି
ର୍ବିଧାତୃବକ୍ତ୍ରେଷ୍ୱିବ ବେଦବିଦ୍ୟାଃ । ୨୦ ।

ଭବଦେବ ସେହି ମନ୍ଦିର ମଧ୍ୟରେ ବିଧାତା
ବେଦବିଦ୍ୟାମାନଙ୍କ ତୁଲ୍ୟ ବିଷ୍ଣୁଙ୍କର
ମାନ ନାରାୟଣ, ଅନନ୍ତ ଓ ନୃସିଂହ
ଲେ ।
ଣୀ
ଶାନ୍ତ ବିଦ୍ୟାର୍ଥୀ

ବିଭ୍ରାନ୍ତଂ ଦଧତାଃ ଶତଂ ସ ହି ଦଦୌ
ଶାରଙ୍ଗଶାବାକ୍ଷିଣାଃ ।
ଦଗ୍ଧସ୍ୟୋଗ୍ରଦୃଶା ଦୃଶୈବ ଦଶନାଃ
କାମସ୍ୟ ସଞ୍ଜୀବନଂ
କାରାଃ କାମିଜନସ୍ୟ ସଙ୍ଗମଗୃହଂ
ସଙ୍ଗୀତକେଳିଶ୍ରିୟଃ । ୩୦ ।

ସେ ଭବଦେବ ଇନ୍ଦ୍ର ସମ ଭୋଗାଭିଳାଷୀ ସେହି ବାସୁଦେବଙ୍କୁ ଧରରେ ବିଶ୍ରାମକାରିଣୀ ବିଦ୍ୟାଧରୀ ତୁଲ୍ୟା ଶତସଂଖ୍ୟକ ମୃଗ ଏଣୀନୟନା ସ୍ତ୍ରୀମାନଙ୍କୁ ତାଙ୍କ ସେବା ନିମିତ୍ତ ପ୍ରଦାନ କଲେ । ପୁଣି ଯେଉଁମାନେ ହରଦଗ୍ଧ କାମର ଜୀବଦାନ ବିଷୟରେ ସକ୍ଷମା, କାମୁକମାନଙ୍କର କାରାଗାର ସ୍ୱରୂପା ଏବଂ ମନୋହର ସଙ୍ଗୀତ କ୍ରୀଡ଼ାର ଆଧାର ତୁଲ୍ୟା ଅଟନ୍ତି ।

ପ୍ରାସାଦାଗ୍ରେ ସ ଶଳ୍ପୁ ଜଗତଃ
ପୁଣ୍ୟ ପୂର୍ଣ୍ଣେନ୍ଦୁକାନ୍ତାଂ
ଚକ୍ରେ ବାପୀଂ ମରକତ ମଣି
ସ୍ୱଚ୍ଛସୁସ୍ନିଗ୍ଧତୋୟାଂ ।
ମଧ୍ୟେ ବାରିପ୍ରତିକୃତ
ମିଷାଦ୍ଦର୍ଶୟନ୍ତୀବ ଭାଦୃଗ୍
ବିଷ୍ଣୋର୍ଧର୍ମାଦ୍ଭୁତମହିକୁଲ
ସ୍ୟାଧିକଂ ଯା ରସାପ୍ତି । ୩୧ ।

ସେ ଭବଦେବ ମନ୍ଦିର ଅଗ୍ରରେ ସୁନ୍ଦର ସୋପାନବିଶିଷ୍ଟ, ମରକତ ମଣିତୁଲ୍ୟ ସ୍ୱଚ୍ଛସୁନ୍ଦର ନୀର, ଗୋଟିଏ ବାପୀ ନିର୍ମାଣ କରିଥିଲେ, ଯେଉଁ ବାପୀ ନିଜ ଜଳ ମଧ୍ୟରେ ପଡ଼ିଥିବା ବାସୁଦେବ ମନ୍ଦିର ଛାୟା ଛଳରେ ପାତାଳଲୋକରେ ଥିବା ବିଷ୍ଣୁଙ୍କର ସେହି ପରି ଗୋଟିଏ ଅଦ୍ଭୁତ ସ୍ଥାନକୁ ଦେଖାଇ ଦେଲାପରି ଶୋଭା ପାଉଅଛି ।

ବ୍ୟଖ୍ୟାତବିବୁଧ ଧାମ୍ନଃ ସୀମ୍ନି ସଂସାରସାରଂ
ସ ଖଳୁ ନିଖିଳନେତ୍ରାନନ୍ଦନସ୍ୟନ୍ଦପାନ୍ଦ୍ରଂ ।
ତ୍ରିଭୁବନଜନତୃଷ୍ଣାଗ୍ଲାନିବିଶ୍ରାମଧାମ
ପ୍ରଥିତରତିବିହାରସ୍ଥାନ ମୁଦ୍ୟାନରତ୍ନଂ । ୩୨ ।

ସେ ଭବଦେବ ଦେବଧାମସୀମାରେ ସଂସାର-ଯାତ୍ରାଭୂତ, ମନ୍ତ୍ର କେଶର ଅନନ୍ତବାସୁଦେବ ପାଦସ୍ୱରୂପ ବିନ୍ଦୁବନଜନ୍ମଦ୍ୱାର ଯଉଗ୍ରାନ୍ତ କାନନ ସୀମାପକୋଦନ ସ୍ଥାନ ଭୂମି ଏବଂ ରଢରେ ପ୍ରସିଦ୍ଧ ବାଳାସଭୂମି ଗୋଷ୍ଠେ ଏ ଶ୍ରେଷ୍ଠ ଉପବନ ନିର୍ମାଣ କଲେ ।

ଭଟ୍ଟେଶ୍ୱର ପ୍ରିୟସୁହୃଦା ଦ୍ୱିଜାଗ୍ରିମେଣ
ଶ୍ରୀ ବାଚସ୍ପତି କବିନା କୃତା ପ୍ରଶସ୍ତିଃ ।
ଆକଲ୍ପଂ ଶୁଚିସଦନେ ସୁମୂର୍ତ୍ତିକୀର୍ତ୍ତି-
ର୍ଯ୍ୟାସ୍ତାଂ ଜଗଦମିତ୍ରଂ ପୁବନ୍ତିକାର୍ଯ୍ୟ । ୩୩ ।

ଏହି ରଚନାବଳୀ ସ୍ତୋତ୍ର ଭବଦେବଙ୍କର ପ୍ରିୟ ମିତ୍ର ଶ୍ରୀ ବାଚସ୍ପତି କବି ରଚିଅଛନ୍ତି ; ଏହି ମୂର୍ତ୍ତିମନ୍ତ କୀର୍ତ୍ତି କଳ୍ପାନ୍ତ ପର୍ଯ୍ୟନ୍ତ ନିର୍ମଳ ମନ୍ଦିରରେ ସ୍ଥିରଭାବରେ ଜଗତପ୍ରଦେଶକୁ ଶୋଭିତ କରି ବିରାଜମାନ ହେଉ ।

ପ୍ରଶସ୍ତିରଷ୍ଟଂ ବାଳବଲଭୀଭୁଜଙ୍ଗ—
ପରନାମ୍ନୋ ଭଟ୍ଟ ଶ୍ରୀ ଭବଦେବସ୍ୟ । ୩୪ ।

ଏ ରଚନା ଭଟ୍ଟ ଶ୍ରୀ ଭବଦେବଙ୍କର, ଯାହାଙ୍କର ନାମାନ୍ତର ବାଲବଲଭୀଭୁଜଙ୍ଗ ଅଟେ ।

ଶ୍ରୀ ଗଦାଧର ରଥ ।

## ଧର୍ମରାଜଙ୍କ ବିଚାରାଳୟ ।

ରାଗ ଶଙ୍କରାଭରଣ ।

ଗଣ୍ଡାପୁ ଜୀବଙ୍କୁ ଘେନି ଯମଦୂତଗଣ
ଯମାଳୟେ ଘେନି ଗଲେ ବାନ୍ଧିଣ ତକ୍ଷଣ,
ହୋଇ ତହିଁ ଉପସ୍ଥିତ
ଜୀବମାନ ବହୁଭାବେ ହେଲା ଅବଲୋକିତ ।
ଜ୍ୱଳନ୍ତ ଅନଳେ କାହିଁ ହୈରବ ରୌରବେ
ବ୍ୟାକୁଳେ ରଡ଼ନ୍ତି ଜୀବେ ମର୍ମଭେଦୀ ରବେ,
କାହିଁ ଦଣ୍ଡକୁଣ୍ଡେ ପଡ଼ି
ବୀଭତ୍ସ ପ୍ରକାରେ କେତେ ଯାଉଛନ୍ତି ସଡ଼ି !
ଦିବ୍ୟ ସୁଖେ ରମ୍ୟ ହର୍ମ୍ୟେ କାହିଁ ହର୍ଷଭରେ
ବିହରନ୍ତି ରଙ୍ଗେ ପୁଣି କେତେ ନାରୀ ନରେ,
ତାଙ୍କ ମୁଖ ଶଶୀ-ଧର
କ୍ଷୁରି କାହିଁ ଯେତେ କେବେ କର କଳଙ୍କର ।
ସୁଖଦୁଃଖମୟ ଏହି ଦୃଶ୍ୟର ଦର୍ଶନେ
ଗଣ୍ଡାପୁ ଭାବଇ ନିଜ ଭବ-ଦଶା ମନେ—
କାହିଁ ଥିଲି, କେଉଁଠାରେ
ଅଇଲି, ମୋ ଦଶା ଏଥି କିବ ହେଉଁ ଭାବେ ।
ଏକାଳେ ଭୀଷଣ-ଦଣ୍ଡ-ମଣ୍ଡିତ-କବର
ପ୍ରଜ୍ୱଳିତ ହୁତାଶନସମାନ ଦୁସ୍ତର
ଆସି ଯମ-ଦୂତ ବେନି
ଧାଇଁ ଗଲେ ଯମାନ୍ତିକେ ଗଣ୍ଡାପୁଙ୍କୁ ଘେନି ।

ବସିଛନ୍ତି ଧର୍ମରାଜ ଗମ୍ଭୀରମୂରତି
ପ୍ରଶାନ୍ତ ପବିତ୍ର-ଜ୍ୟୋତି ନିରପେକ୍ଷମତି,
ବେନି ପାଶେ ମନ୍ତ୍ରୀ ବେନି
ଚିତ୍ର ସେ ଜୀବ-ଜୀବନ-ପଞ୍ଜି ହାତେ ଘେନି ।
କହନ୍ତି ସେ ଧର୍ମରାଜ ଗଣ୍ଡାପୁଙ୍କୁ ଚାହିଁ —
କେତେ ଦିନ ଧାଇଁ ଭବ-ସୁଖେ ହେଲୁ ବାଇ,
ତେଜି ବିବେକ ବିଜ୍ଞାନ
ପାପ ପୁଣ୍ୟ ନ ବୁଝିଲୁ ଭୁଲି ରେ ଅଜ୍ଞାନ ।
ଜାଣି ଶୁଣି ତବେ ନରଦେହ ଦୁର୍ଲଭ ତର
ଯତନୋଦୟ ପ୍ରାପ୍ତେ କମ୍ପା ନାଗ୍ରୋତେ ନର !
ତାକୁ ଭାବିଲୁ ଅମର,
ଅହିତ ସେବନେ ଦିନ ନେଲୁ ନିରନ୍ତର !
ଶ୍ରେୟଃ ଛାଡ଼ି ପ୍ରେୟ ପଦେ ଆତ୍ମା ସମ
ଅନିତ୍ୟ ଶରୀରେ ମିଛ ସୁଖେ ଭୁ
କାଳୁ କେତେ କେତେ
ଅମୃତ ଭ୍ରମେ ଭୁ ବିଷ ପିଇଲୁ
ବଣହୂସ ପାଇଁ ବଧୂ ଦେଲେ ତୁ
ଭ୍ରମବଶେ ସେ
ଜୀ
ଏ ଭୂଜେ ଅଜି

ନେତ୍ର ଲଭିଥିଲୁ ବିଶ୍ୱଶୋଭା ନିରୀକ୍ଷଣେ
ତହିଁ ବିଶ୍ୱବିଧାତାର ମହିମା ଦର୍ଶନେ
କର ପବିତ୍ର ଜୀବନ
ଅବଶେଷେ ଗମିବାକୁ ବୈକୁଣ୍ଠଭବନେ ।
ସେହି ନେତ୍ର-ଯୋଗେ ସଦା ହିନା ନାନାରଙ୍ଗେ
କାମିନୀ-ଯୁବତୀ-ଶୋଭା-ସାଗର-ତରଙ୍ଗେ
ଭାସି ଆମୋଦ ଲଭିଲୁ,
କଣଉ ସଂସାର-ଚିତ୍ର ଶୋଭା କି ଦେଖିଲୁ !
ରସନା ଲଭିଲୁ ନାମାମୃତ ଆସ୍ୱାଦନେ,
ତାକୁ ରେ ମାତିଲୁ ବାଲାଧରମଧୁପାନେ,
କେବେ ନ ଭଜିଲୁ ହରି,
ଏବେ ରେ ସେ ସୁଖ ସବୁ ଗଲା କିମା ସରି !
ଅମୂଲ୍ୟ ରତନ ଲଭି ଯେହ୍ନେ ଦୁଃଖୀ ଜନେ
ନରତନୁ ଲଭି କେତେ ଅସାଧ୍ୟ ସାଧନେ
ହୋଇ ଥାଆନ୍ତୁ ସଫଳ,
ହରାଇ ସେ ଦିବ୍ୟ ମନ ଭୁଲି ଚିର କେବଳ—
ସଂସାର-କୁଷ୍ଟ-ପଙ୍କ-ମଳିନ ନାଳେ ସେ
ନାନା ଅପକର୍ମେ ରତ ରଜନୀ ଦିବସେ,
କାହିଁ ସେ ସୁଖ ରେ ଅଛି

ଏତେବେଳେ ମଣେ ଅଭ ହେବ କି ହୋ ସାଙ୍ଗ !
ବିଶ୍ୱମୂର୍ତ୍ତି କାନ୍ତି ମୁହିଁ ବିଧାତ୍ର ଆଦେଶେ
ପାପ ପୁଣ୍ୟ ଭୁଞ୍ଜିବାକୁ ନିଯୁକ୍ତ ଏ ଦେଶେ,
ଏଥି ପାପ ପୁଣ୍ୟ ଫଳେ
ନରପେଶେ ସୁଖ ଦୁଃଖ ଭୁଞ୍ଜନ୍ତି ସକଳେ ।
ଚାହିଁଦେଖ ଦେଖ କେତେ ପାପୀ ପୁଣ୍ୟବାନ
କେତେମତେ ଭୁଞ୍ଜୁଛନ୍ତି ସୁଖଦୁଃଖମାନ,
ଏଥି ଭୁମର ଦୁର୍ଗତି
ଦୂର ନ ଜୀବ ! ନିଜ କର୍ମ-ପରିଣତି !
କରିଛ କି ପୁଣ୍ୟ କିଛି କହି ହେ ଶୀଘ୍ର
ଭବକର୍ମସେତେ ଗଲା ଦିନ ବୃଥା ପାଇଁ ?
କିମ୍ପା ବିରସବଦନ,
ଦେଖ ଏ "ବୈକୁଣ୍ଠ", କର ନରକେ ଗମନ ।
ଏହି ସେ ବୈକୁଣ୍ଠ ମଧ୍ୟ ଅଛି ନରକର
ଅନ୍ତିମ ନିବାସ ପୁଣ୍ୟବନ୍ତ ମାନଙ୍କର,
ଯେତେ ପାପିଜନ ଅଛି
ପଡ଼ନ୍ତି ଏହି ଭୀଷଣ ନରକେ ସରବେ ।

ଶ୍ରୀ—



## ବିବିଧ ପ୍ରସଙ୍ଗ ।

୧ । ସୌଖୀନ ସାହିତ୍ୟ-ସେବା—ଆମ୍ଭେମାନେ ବାରମ୍ବାର କହିଅଛୁଁ, ନିଷ୍ଠାବାନ୍ ସାହିତ୍ୟସେବକ ଉତ୍କଳଭୂମିରେ ଅତି ବିରଳ । ଜାତୀୟସାହିତ୍ୟର ସାମ୍ପ୍ରତି ମଙ୍ଗଳ ସାଧନ ଉଦ୍ଦେଶ୍ୟରେ କଠୋର [illegible] ପ୍ରବୃତ୍ତ ହେବାର ଦୃଷ୍ଟାନ୍ତ କେତେଟା [illegible] ମିଳିବ ? ଅବସ୍ଥା, ଶିକ୍ଷା, ସଂସର୍ଗ [illegible] ହରୁ ଯେ କେତେଗୁଡ଼ାଏ ଭାବ [illegible] ଅଛି ବା ଯେଉଁ ସାମାନ୍ୟ [illegible] ଥିଲା, ସେହିଗୁଡ଼ିକ ଯେପରି ତେମନ [illegible] ବା ପୁସ୍ତକାଦ [illegible] ସ୍ଥାନୀୟ ସାହିତ୍ୟ- [illegible] ଜାତୀୟ ଉଦ୍ଦୀପନାର ସମ୍ଭାବନା ନାହିଁ । ପ୍ରକୃତ କବି ଓ ପ୍ରତିଭାଶାଳୀ ସୁଲେଖକଙ୍କ ସଂଖ୍ୟା ଏ ଦେଶରେ ଅଙ୍ଗୁଳି ଅଗ୍ରଭାଗରେ ଗଣନୀୟ ! ସେଥି [illegible] ଆପଣାକୁ ସୁକବି ଓ ସୁଲେଖକ ମନେ କରନ୍ତି, ଏପରି ବ୍ୟକ୍ତି ଅନେକ ! ଯାହା ସହଜ, ସେଥିରେ ସମସ୍ତଙ୍କର ପ୍ରବୃତ୍ତି । ଅକ୍ଷର ମିଳାଇ ପଦକତାଏ ଲେଖି ଦେଲେ କବି ହେବା ସହଜ ବୋଲି ଅନେକଙ୍କର ଧାରଣା । 'ବସନ୍ତ ବର୍ଣ୍ଣନା;' 'ଶରତ ବର୍ଣ୍ଣନା', 'ସମୁଦ୍ରପ୍ରତି,' 'ଚନ୍ଦ୍ରପ୍ରତି,', କୋକିଳ'— ନ ହେଲେ 'ଉତ୍କଳଭୂମି' ବା 'ଉତ୍କଳମାତା' ଏହିପରି କେତେଗୁଡ଼ାଏ ବିଷୟ ନେଇ ସେମାନେ କବିତା ( ? ) ! ନୂତନ ଗଢ଼ିବାର ଆକାଂକ୍ଷା

ନାହିଁ, ସ୍ପୃହା ନାହିଁ, ସାଧନା ନାହିଁ । ଆମ୍ଭେମାନେ ବିଗତ ୫ ବର୍ଷ ମଧ୍ୟରେ 'ଉତ୍କଳସାହିତ୍ୟ' ପାଇଁ ଏହିପରି କବିତା ନ୍ୟୂନକଳ୍ପେ ଦୁଇ ଶତ ପାଉଅଛୁଁ । ପ୍ରକାଶ କରୁନାହୁଁ ବୋଲି ଲେଖକଗଣ ଆମ୍ଭମାନଙ୍କ ଉପରେ ଅତ୍ୟନ୍ତ ରୁଷ୍ଟ ! ସାଧାରଣ ଲେଖକଙ୍କ କଥା ଛାଡ଼ । ଯେଉଁମାନେ ଯଥାର୍ଥ ସୁଲେଖକ, ଯେଉଁମାନଙ୍କ ସୁଚିନ୍ତିତ ପ୍ରବନ୍ଧରେ 'ଉତ୍କଳସାହିତ୍ୟ'ର କଳେବର ପୂର୍ଣ୍ଣ କରିବାର ଏକାନ୍ତ କାମନା କରୁଁ ଏବଂ ଯେଉଁମାନଙ୍କ ଲେଖାରେ ପାଠକସାଧାରଣ ପରିତୃପ୍ତ ଓ ଉପକୃତ ହେବେ, ବହୁ ସାଧନାରେ ସେମାନଙ୍କଠାରୁ ଗୋଟିଏ ଗୋଟିଏ ପ୍ରବନ୍ଧ ପାଇବା କଠିନ । ଅତି ସଙ୍କଟରେ ସମ୍ପାଦକର ଜ୍ୱାଳାରୁ ରକ୍ଷା ପାଇବାକୁ ବନ୍ଧୁମାନେ ସର୍ବଦା ଚେଷ୍ଟିତ । ଜଣେ ବନ୍ଧୁ ଗୋଟିଏ ଗୁରୁତର ଓ ଉଚ୍ଚ ବିଷୟରେ ପ୍ରବନ୍ଧ ବା କବିତା ଲେଖିବାକୁ ପ୍ରବୃତ୍ତ ହେଲେ, କିଛି ଦୂର ଅଗ୍ରସର ହୋଇ ଦେଖିଲେ ସମାପ୍ତ କରିବା କିଛି କଠିନ—ଟିକିଏ ଶ୍ରମସାଧ୍ୟ ! ସେହିଠାରେ ଖାତା ରହି ହେଲା । ପୁରୁଣା ଖାତା ବା ଖାତା ଘାଣ୍ଟି ଏଣୁ ତେଣୁ ଯାହା ମିଳିଲା, ସେହିଥିରେ ଗ୍ରହଶାନ୍ତ କରି ଦେଲେ ! ଅଧିକ କିଛି କହିବାକୁ ଡର ମାଡ଼ୁଅଛି—ବର୍ତ୍ତମାନ ଯେଉଁ ଅନୁଗ୍ରହଟିକିକ ମିଳୁଅଛି, କେଜାଣି ବା ତହିଁରୁ ବଞ୍ଚିତ ହେବାକୁ ନ ପଡ଼େ ! ବ୍ୟକ୍ତିବିଶେଷ ଆମ୍ଭମାନଙ୍କର ଲକ୍ଷ୍ୟ ନୁହନ୍ତି । ସାଧାରଣ ଅବସ୍ଥା ଏହିପରି । ଏଥିରେ ଗୋଟାଏ ସଜୀବ ସାହିତ୍ୟ ଗଠିତ ହେବ କିପରି ? ସାହିତ୍ୟାନୁରାଗୀ ଉତ୍କଳସନ୍ତାନଗଣ ଥରେ ସ୍ଥିରଚିତ୍ତରେ ଚିନ୍ତା କରିବେ କି ? ନିଜ ନିଜ କାର୍ଯ୍ୟ ଓ ପ୍ରବୃତ୍ତି ସୂକ୍ଷ୍ମରୂପେ ଆଲୋଚନା କରିବେ କି ?

୨ । ଉତ୍କଳୀୟ ପାଠକ—ଆମ୍ଭମାନଙ୍କର କୌଣସି ସାହିତ୍ୟସେବକ ବନ୍ଧୁ ଅନେକ ଥର କହିଅଛନ୍ତି, "ଅନେକ ବ୍ୟକ୍ତି ଅନୁଗ୍ରହପ୍ରକାଶକ ସ୍ୱରରେ ଓ ଗଦଗଦ କଣ୍ଠରେ ମତେ କହନ୍ତି, 'ଭାଇ ପୁସ୍ତକ ମୁଁ ପଢ଼ିଅଛି, ଉତ୍ତମ ହୋଇଅଛି ।' ଏହାର ଅର୍ଥ, ତୁମ୍ଭେ ଏକଥା ଶୁଣି କୃତାର୍ଥ ହୁଅ ଆଉ ଆଗ ପୁସ୍ତକରୁ ଖଣ୍ଡିଏ ଲେଖାଏ ମତେ ଉପହାର ଦିଅ ।" ତଥାପି ନିତାନ୍ତ ଉପେକ୍ଷଣୀୟ ନୁହେ । ଓଡ଼ିଆ ପୁସ୍ତକର ପାଠକ ଅତି ଅଳ୍ପ—ହେଲେହେଁ ଅଛି ! ତେବେ ଭଲ ଯେ କେତେଖଣ୍ଡ ପୁସ୍ତକ ବାହାରୁଅଛି, ତାହା କେତେ ଜଣ ପଢ଼ିଥାଆନ୍ତି ବା କେତେ ଜଣ କିଣନ୍ତି ? ପଇସା ଦେଇ ଓଡ଼ିଆ ପୁସ୍ତକ କିଣିବାକୁ କିଏ ? ଛି ! ସେ ତ ନିର୍ବୋଧର କାର୍ଯ୍ୟ ! ଯେ ଯେତେ ଆପଣାକୁ ବଡ଼ ମନେ କରେ, ସେ ସେତେ ଓଡ଼ିଆ ପୁସ୍ତକ ବା ପତ୍ରିକାଠାରୁ ଦୂରରେ ରହିବାକୁ ଇଚ୍ଛା କରେ । ନିତାନ୍ତ ଯଦି ଇଚ୍ଛା ହେଲେ, ନିର୍ବୋଧ ଗ୍ରନ୍ଥକାରକୁ ଅନୁଗ୍ରହପ୍ରକାଶକ ଭାଷାରେ ପଦେ ଅଧେ କହିଲେ ଖଣ୍ଡେ ପୁସ୍ତକ ଉପହାର ମିଳି ଯିବ । ନତୁବା କୌଣସି ବନ୍ଧୁଙ୍କ ଟେବଲ ଉପରୁ ଉପହାର-ସୂତ୍ରରେ ପ୍ରାପ୍ତ ଖଣ୍ଡେ ପୁସ୍ତକ ଟାଣି ଆଣି ଏଠୁ ସେଠୁ ଟିକିଏ ଲେଉଟାଇ ଦେଖି ଦେଲେ ହେଲା । ଏଥିରେ ଯେ ଅନେକ ଚତୁର ବ୍ୟକ୍ତି ଓଡ଼ିଆ ଗ୍ରନ୍ଥକାର ବା ଲେଖକମାନଙ୍କୁ ନିର୍ବୋଧ ବା ବାତୁଳ ବା ନିଷ୍କର୍ମା ମଧ୍ୟରେ ଗଣନା କରିବେ, ଏଥିରେ ବିଚିତ୍ର କଣ ? ଜଣେ ଓଡ଼ିଆ ଗ୍ରାଜୁଏଟ ଥରେ ଏ ପତ୍ରିକାର ସମ୍ପାଦକଙ୍କ ଓ ତତ୍‌ସମ୍ପର୍କୀୟ କୌଣସି କୌଣସି ବ୍ୟକ୍ତିଙ୍କୁ ମଦଦଗାରି ଦଳ ମଣିଲ କହିଥିଲେ ! କଥାଟା ଶୁଣି ଆମ୍ଭମାନଙ୍କ ମନରେ ବିନ୍ଦୁମାତ୍ର ବିରକ୍ତି ବା ଦୁଃଖ ଜାତ ହେ[illegible] ନାହିଁ । କାରଣ, ବର୍ତ୍ତମାନ ଅବସ୍ଥାରେ [illegible] ସାହିତ୍ୟସେବକଙ୍କ ଅନାସ୍ଥା, ଅଶ୍ରଦ୍ଧା, [illegible] ଗୁଳିଖୋରର ଖେୟାଲ ପରି ଅସାର [illegible] ଛଡ଼ା ଆଉ କଣ ?

୩ । ସାହିତ୍ୟର [illegible] ବିଷୟରେ ଓଡ଼ିଆ [illegible] ଭାଗ୍ୟବାନ୍ । ସଂସାର [illegible] ଜଣେ ଅଧେ ମୂର୍ଖ [illegible]

ମୁରବି ଅଭାବରୁ କେତେକେତେ ଜୀବନ-ସଂଗ୍ରାମରେ ହତାଶ ହୋଇ ସଂସାରର ସକଳ ଉନ୍ନତିର ଆଶାରେ ଜଳାଞ୍ଜଳି ଦେଇ ନୀରବରେ ଅଶ୍ରୁପାତ କରିଅଛନ୍ତି ଓ କରୁଅଛନ୍ତି, ତାହାର ସଂଖ୍ୟା କିଏ କରିବ ? କିନ୍ତୁ ଓଡ଼ିଆ ସାହିତ୍ୟସେବକର ମୁରବିର ଅଭାବ ନାହିଁ । ଅଜାତଶ୍ମଶ୍ରୁ [illegible] ପର୍ଯ୍ୟନ୍ତ ତାହାର ମୁରବି, ଶିକ୍ଷିତ, ପଦସ୍ଥ, ସମ୍ଭ୍ରାନ୍ତ ବ୍ୟକ୍ତିଙ୍କ କଥା କଣ ? ଏ କ୍ଷେତ୍ରରେ ମୁରବିଗିରି ବଡ଼ ସସ୍ତା । କିଛି ଦେବାକୁ ପଡ଼େ ନାହିଁ କିମ୍ବା କିଛି କରିବାକୁ ହୁଏ ନାହିଁ । ଲେଖାଟା ପଢ଼ ବା ନ ପଢ଼, ଆବଶ୍ୟକ ହେଲେ ପଦେ ଅଧେ ପ୍ରଶଂସା ଝାଡ଼ି ଦିଅ, ନହେଲା ଗୋଟାଏ ଉପଦେଶ କଥା ଶୁଣାଅ, ଏତିକେ ହେଲା । ଲେଖକର ସପ୍ତପୁରୁଷ କୃତାର୍ଥ ! ଆଉ ଯେବେ ତୁମ୍ଭେ ବଡ଼ ଲୋକ ହୋଇଥାଅ, ତୁମ୍ଭ ନାମରେ କେହି କୌଣସି ପୁସ୍ତକ ଉତ୍ସର୍ଗ କଲେ ନିର୍ବିକାରଚିତ୍ତରେ ଉଦାର ଭାବରେ 'ମୁଦ୍ରିମିଣିରର ସମାନ ଦର' କରି ଦଶ ପଚିଶ ଟଙ୍କା ଅଭାଗା ଗ୍ରନ୍ଥକାରଙ୍କୁ ଦେଇ ପକାଅ । କିମ୍ବା ଉତ୍ସର୍ଗକାରଙ୍କୁ ଲମ୍ବା ଚୌଡ଼ା ଗୋଟାଏ ଆଶା ଦେଖାଇ ଦିଅ ! ଟଙ୍କା ନ ଦେଲ ବା, କ୍ଷତି କଣ ? ଆଶା ତ ଦେଇଅଛ ? ସେ ତ ଟଙ୍କାଠାରୁ ବେଶି ମୂଲ୍ୟବାନ୍ । ଏତେ ମୁରବି-ଗିରିରେ ମଧ୍ୟ ଏ ଦେଶରେ ଯେ ସାହିତ୍ୟର ବିଶେଷ ଉନ୍ନତି ହେଉ ନାହିଁ, ଏହା କେବଳ ଜଳ ବାୟୁର ଦୋଷ !

୪ । ଅସାର ଅଭିମାନ— ଦୀର୍ଘକାଳବ୍ୟାପୀ
ନ୍ତି ଗତ ପରେ ବ୍ରିଟିଶ-ସୁଶାସନରେ
ତିର ନାନା ପ୍ରଦେଶ ବିବିଧ ବିଷୟରେ
ଣ ପ୍ରକାଶ କରୁଅଛି; ଜାତୀୟ
ଭାବର ସଞ୍ଚାର ଅନୁଭୂତ ହେଉଅଛି;
ସଜନ ଚର୍ଚ୍ଚା, ସମାଜ-
ଧ୍ୟରେ ଶିକ୍ଷିତ
ପ୍ରତିପାତ ହୋଇ
ପକ୍ଷପାତ କ

ହେଉନ୍ତି, ବିପକ୍ଷଚାରଣରେ ମଧ୍ୟ ଜୀବନର ଲକ୍ଷଣ ପ୍ରକାଶ ପାଏ । ସୂକ୍ଷ୍ମ ରୂପେ ଆଲୋଚନା କରି ଦେଖିଲେ ବୁଝା ଯିବ ଯେ ଶତ ତ୍ରୁଟି ଓ ଦୁର୍ବଳତା ସତ୍ତ୍ୱେ ଭାରତର ବିଭିନ୍ନ ପ୍ରଦେଶବାସି-ମାନେ ଏକତାର ଗଣ୍ଠିରେ ମିଳିତ ହୋଇ ଗୋଟିଏ ଜାତୀୟତା ଆଡ଼କୁ ଧୀରେ ଧୀରେ ଅଗ୍ରସର ହେଉଅଛନ୍ତି । ଏ ଅବସ୍ଥାରେ ଯେ ବିଚ୍ଛିନ୍ନ ହୋଇ ସ୍ୱୀୟ କ୍ଷୁଦ୍ର ସଙ୍କୀର୍ଣ୍ଣ ପ୍ରାଦେଶିକ ଭାବକୁ ସର୍ବସ୍ୱ ବୋଲି ଧରି ରଖିବେ—ଭାରତବ୍ୟାପୀ ଜାତୀୟ ସମ୍ମିଳନରେ ବ୍ୟାଘାତ ଘଟାଇବାକୁ ଚେଷ୍ଟା କରିବେ, ସେ କେବଳ ଆପଣାର ପାଦରେ କୁଠାରଘାତ କରିବେ । ପକ୍ଷାନ୍ତରରେ ବିଚ୍ଛିନ୍ନତା ଭାରତର ଅଧୋଗତିର କାରଣ, ଏହା ବର୍ତ୍ତମାନ ସର୍ବବାଦସମ୍ମତ । ଅନ୍ୟ ଦୃଷ୍ଟାନ୍ତ ଥାଉ, ଉତ୍କଳର ଇତିହାସ ଆଲୋଚନା କଲେ କଣ ଦେଖା ଯାଏ ? ଯେତେଦିନ ପର୍ଯ୍ୟନ୍ତ ଉତ୍କଳଭୂମି ଅନ୍ୟଜାତୀୟ ସଭ୍ୟତା ଓ ଉନ୍ନତ ଭାବ ଆତ୍ମସ୍ଥ କରୁଥିଲା—ବହିର୍ଦ୍ଦେଶରେ ନାନା ଜାତି ସହିତ ସମ୍ପର୍କ ରଖିଥିଲା, ସେତେଦିନ ପର୍ଯ୍ୟନ୍ତ ତାହାର ଗୌରବ ଦିନକୁ ଦିନ ବର୍ଦ୍ଧିତ ହେଉଥିଲା । ବିଚ୍ଛିନ୍ନ ଭାବ ଓ ଅସାର ଅଭିମାନର ସୂତ୍ରପାତ ସଙ୍ଗେ ସଙ୍ଗେ ଅଧୋଗତିର ସୂତ୍ରପାତ ହେଲା । ଅଧୋଗତିର ସୀମା କେତେଦୂର ପର୍ଯ୍ୟନ୍ତ ପହଞ୍ଚି ଅଛି, ତାହା ବିଶେଷ ଭାବରେ କହିବାକୁ ହେବ ନାହିଁ । ବର୍ତ୍ତମାନ ଯୁଗ ଅଡ଼େ ଜାଗରଣ, ଉତ୍କଳ-ବାସୀ ସେହି ଅଭ୍ୟସ୍ତ ବିଚ୍ଛିନ୍ନ ଭାବ ଓ ଅସାର ଅଭିମାନ ଯେପରି ବ୍ୟସ୍ତ ! ଦୁର୍ଭାଗ୍ୟ ଉତ୍କଳ ଜାତି ସର୍ବତ୍ର ଲାଞ୍ଛିତ ଓ ଅବମାନିତ ! ତଥାପି ଚେତନା ନାହିଁ—କାରଣ-ଅନୁସନ୍ଧାନର ପ୍ରବୃତ୍ତି ନାହିଁ ! ତଥାପି 'ଆମ୍ଭେ' ଓ 'ଆମ୍ଭ ଜାତି' ! ଜିଜ୍ଞାସା କରେଁ, 'ତୁମ୍ଭର' ଓ 'ତୁମ୍ଭ ଜାତିର' କଣ ଅଛି ? କେଉଁଟା ବିଷୟରେ ତୁମ୍ଭେ ଅପରାପର ଜାତି ସହିତ ଯୋଗ ରକ୍ଷା କରୁଅଛ ? ତୁମ୍ଭ ଭିତରେ ଯେ ମନୁଷ୍ୟତ୍ୱ ଅଛି, ସେ କଥା ଅନ୍ୟମାନେ ଜାଣିଲେ

ସେପରି ? ନିଜ ଜାତିର ଉନ୍ନତିପାଇଁ କେତେଜଣ ମହତ୍ ଅନୁଷ୍ଠାନ କରୁଅଛ ? ସ୍ୱଦେଶପାଇଁ ସ୍ୱଜାତିପାଇଁ କେତେ ପରିମାଣରେ ସ୍ୱାର୍ଥ ତ୍ୟାଗ କରୁଅଛ ? ଭାଗ୍ୟେ ଗବର୍ଣ୍ଣମେଣ୍ଟ ଦୟା କରି କଲେଜ, ମେଡିକେଲ ସ୍କୁଲ, ସର୍ଭେ ସ୍କୁଲ କରି ଦେଇଅଛନ୍ତି, ତେଣୁ କେତେଗୁଡ଼ିଏ ଲୋକ ଯଥା କଥଞ୍ଚିତ୍ ଶିକ୍ଷା ପାଇ ପେଟ ପୋଷୁଅଛନ୍ତି । ସେପର୍ଣ୍ଣ ବୃଖଣ୍ଡଙ୍କ ଉପରକୁ କେତେ ଜଣ ଉଠି ଅଛନ୍ତି ? କିଏ କାହା ପାଇଁ ଭାବେ ? କିଏ କାହା କଥା ଶୁଣେ ? ଅନ୍ୟ ଜାତି ସଙ୍ଗେ ଯୋଗ ନାହିଁ, ପରସ୍ପର ମଧ୍ୟରେ ଅଛି କି ? ସମସ୍ତେ ସମସ୍ତଙ୍କ ପ୍ରତି ବକ୍ର ଦୃଷ୍ଟିରେ ଅନାଇ ନାହାନ୍ତି କି ? ପରସ୍ପର ପ୍ରତି ଅଶ୍ରଦ୍ଧା ପୂର୍ଣ୍ଣ ମାତ୍ରାରେ ନାହିଁ କି ? ସ୍ୱଦେଶୀୟମାନେ ପରସ୍ପରଙ୍କୁ ସମୁଚିତ ସମ୍ମାନ କରିବାକୁ ଶିଖିଅଛନ୍ତି କି ? ଏହି ତ ଅବସ୍ଥା ! ଏଥିରେ ଯେବେ କେହି କୌଣସି ଦୁର୍ଗତିର କଥା, ଦୁର୍ନୀତି ଦୁରାଗ୍ରହର କଥା କହିଲା, ସେ ଦେଶର ଶତ୍ରୁ, ଜାତିର ଶତ୍ରୁ ! ତାହାପରି କପଟୀ ଉତ୍କଳ-ଖଣ୍ଡରେ ଆଉ କେହି ନାହିଁ ! ଫାଶି କାଠରେ ଝୁଲାଇଲେ ମଧ୍ୟ ତାହାର ଅପରାଧର ପ୍ରାୟଶ୍ଚିତ୍ତ ହେବ ନାହିଁ ! ପୂର୍ବ ଗୌରବ ସ୍ମରଣ କରି ଅସାର ଅଭିମାନରେ ବକ୍ଷ ସ୍ଫୀତ କରି ବୁଲିଲେ କିଛି ହେବ ନାହିଁ—କେହି ତୁମ୍ଭଙ୍କୁ ତିଳମାତ୍ର ସମ୍ମାନ ଦେବେ ନାହିଁ—ବରଂ ଅଧିକ ହାସ୍ୟାସ୍ପଦ ହେବ ! ଯୁଗୋଚିତ ସାଧନରେ ପ୍ରବୃତ୍ତ ହେବା ଆବଶ୍ୟକ, ପୂର୍ବ ଗୌରବ କୀର୍ତ୍ତନ ସଙ୍ଗେ ସଙ୍ଗେ ନିଜ ମହତ୍ତ୍ୱ ପ୍ରଦର୍ଶନ ଆବଶ୍ୟକ । ନତୁବା 'ତୁମ୍ଭେ' ଓ 'ତୁମ୍ଭ ଜାତି' ଘୋର ଅନ୍ଧକାରରେ ନିମଜ୍ଜିତ ରହିଥିବ । ଉତ୍କଳୀୟ ଭ୍ରାତୃବୃନ୍ଦ ! କଥା ଶୁଣି ରୁଷ୍ଟ ହୁଅ ନାହିଁ । ତୁମ୍ଭର ଯେଉଁ ଦଶା, ଅଭାଗା ସମ୍ପାଦକର ସେହି ଦଶା ! ନିଜର ଦୁର୍ଗତି ସ୍ମରଣ କରି ଏପରି କହୁଅଛି ମାତ୍ର । ମନେ କର ନାହିଁ, ଏ ବ୍ୟକ୍ତି ଗୋଟାଏ କାଳ୍ପନିକ ଉଚ୍ଚ ଭୂମିରେ ଦଣ୍ଡାୟମାନ ହୋଇ କେବଳ ସମସ୍ତଙ୍କୁ ଗାଳି ଦେଉଅଛି ।

୫ । ଉତ୍କଳ-ବାସୀ ପ୍ରବାସୀର ମିଳନ—ମୃତ୍ୟୁଗ୍ରସ୍ତ ଉତ୍କଳ ଭୂମି ବଙ୍ଗଳାଠାରୁ ବିଚ୍ଛିନ୍ନ ହୋଇ [illegible] ପ୍ରଦେଶର ଅଂଶରୂପେ ଶାସିତ ହୋଇ ଥାଉଅଛି । ବର୍ତ୍ତମାନ [illegible] ଉତ୍କଳ ବଙ୍ଗପ୍ରଦେଶର ଅନ୍ତର୍ଗତ ହୋଇ ସୁଦ୍ଧା ଆପଣାର ସ୍ୱାତନ୍ତ୍ର୍ୟ ଅନେକ ପରିମାଣରେ ରକ୍ଷା କରିବାକୁ ସମର୍ଥ ହୋଇଅଛି । ଏକମାତ୍ର ଭାଷା ଏହି ସ୍ୱାତନ୍ତ୍ର୍ୟର ହେତୁ । ଆଧୁନିକ ଓଡ଼ିଆ ଭାଷା ଉପରେ ବଙ୍ଗ ଭାଷାର ପ୍ରଭାବ ବଡ଼ ସାମାନ୍ୟ ନୁହେ । ମାତ୍ର ସମୁନ୍ନତ ବଙ୍ଗ ଭାଷା ଓଡ଼ିଆ ଭାଷାକୁ ଗ୍ରାସ କରି ପାରି ନାହିଁ—ପାରିବ ନାହିଁ, ଏହା ଅମ୍ଭମାନଙ୍କର ଦୃଢ଼ ବିଶ୍ୱାସ । ପ୍ରାଚୀନ ଉତ୍କଳର ଯଶସ୍ୱୀ କବି ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ, କବି ସୂର୍ଯ୍ୟ ବ୍ରହ୍ମା, ଜଗନ୍ନାଥ ଦାସ, ସାରଳା ଦାସ, ବଳରାମ ଦାସ ପ୍ରଭୃତି ସ୍ୱୀୟ ଜୀବନ-ଶୋଣିତରେ ଓଡ଼ିଆ ଭାଷାକୁ ଦୃଢ଼ମୂଳ କରି ଦେଇଅଛନ୍ତି । ଦେଖିଲୁ, କାନ୍ଥିଅଞ୍ଚଳର ଓଡ଼ିଆ ଭ୍ରାତାମାନେ ଓଡ଼ିଆ ଅକ୍ଷର ପର୍ଯ୍ୟନ୍ତ ପାସୋରି ଭୁଲି ଗଲେଣି । ମାତ୍ର ଜଗନ୍ନାଥ-ଭାଗବତର ମୋହ ଅତିକ୍ରମ କରି ପାରି ନାହାନ୍ତି । ଉକ୍ତ ଅମୂଲ୍ୟ ଗ୍ରନ୍ଥ ( ଏବଂ ଅପରାପର କେତେକ ପ୍ରାଚୀନ ଓଡ଼ିଆ ପୋଥି ) ବଙ୍ଗାକ୍ଷରରେ ମୁଦ୍ରିତ ହୋଇ ସେ ଅଞ୍ଚଳରେ ଘରେ ଘରେ ପଠିତ ହେଉଅଛି । ପ୍ରଧାନତଃ ଭକ୍ତକବି [illegible] ଅଞ୍ଚଳରେ ଓଡ଼ିଆ ଭାଷାର ଚର୍ଚ୍ଚାକୁ ସଜାଗ ରଖିଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ । ସେ ଯାହା ହେଉ, ବିଚ୍ଛିନ୍ନ ଓଡ଼ିଆ ପ୍ରଚାର—ତଥା ଓଡ଼ିଆ ଜାତି [illegible] ଉନ୍ନତିର ପ୍ରଧାନ ଅନ୍ତରାୟ । ଏ [illegible] ଅବସ୍ଥାରେ ପତିତ ହୋଇ ନ [illegible] ମୁଖାପେକ୍ଷ ଅନ୍ୟରୂପ ହୋଇ [illegible] ଭାରତବ୍ୟାପୀ ଏକତା ସା [illegible] ସଂଗଠନ ବର୍ତ୍ତମାନ ପକ୍ଷରେ [illegible] ଏବଂ ବର୍ତ୍ତମା [illegible] ସେହି ଅଭିମ [illegible] ଉତ୍କଳ ପ୍ରଦେ [illegible]

ସମ୍ବନ୍ଧ ଚେଷ୍ଟାଦ୍ୱାରା ସମସ୍ତ ଉନ୍ନତି ସାଧନ ସେହି ସାର୍ବଭୌମିକ ଜାତୀୟତାର ପ୍ରାଥମିକ ଓ ମୁଖ୍ୟ ଉପାୟ ଏବଂ ବିଭିନ୍ନ ପ୍ରଦେଶବାସିମାନେ ତାହାହିଁ କରୁଅଛନ୍ତି । ଏହି ହେତୁରୁ ଜାତୀୟ ମହାସମିତି ତଳେ ପ୍ରାଦେଶିକ ସମିତିର ଆବଶ୍ୟକତା । କେବଳ ଓଡ଼ିଆମାନେ ସମଗ୍ରଭାବରେ କୌଣସି କାର୍ଯ୍ୟ ସାଧନ କରିବାକୁ ସମର୍ଥ ହୋଇ ପାରୁ ନାହାନ୍ତି । ବିଭିନ୍ନ ପ୍ରଦେଶାନ୍ତର୍ଗତ ଓଡ଼ିଆମାନେ ସ୍ୱଜାତୀୟମାନଙ୍କ ସହିତ ମିଳିତ ହୋଇ ପାରୁ ନାହାନ୍ତି ଅଥଚ ଉକ୍ତ ପ୍ରଦେଶାନ୍ତର୍ଗତ ଜାତି ସହିତ ସ୍ୱାଧୀନ ଭାବରେ ସ୍ୱଚ୍ଛନ୍ଦରେ ମିଶି କାର୍ଯ୍ୟ କରିବାକୁ ସର୍ବଦା ସଙ୍କୁଚିତ ହେଉଅଛନ୍ତି । ଏହା ସୁସ୍ପଷ୍ଟ ପ୍ରତ୍ୟକ୍ଷ ଦୃଶ୍ୟମାନ ଘଟଣା, ପ୍ରମାଣପ୍ରୟୋଗ ବା ଯୁକ୍ତି ତର୍କର ପ୍ରୟୋଜନ ନାହିଁ । ସମ୍ବଲପୁରର ଓଡ଼ିଆ ଭ୍ରାତାମାନେ ଏହା ସୁସ୍ପଷ୍ଟ ଅନୁଭବ କରି ଉକ୍ତ ପ୍ରଦେଶକୁ ଓଡ଼ିଶା ସହିତ ସମ୍ମିଳିତ କରିବା ନିମିତ୍ତ ଗବର୍ଣ୍ଣମେଣ୍ଟଙ୍କ ନିକଟରେ ପ୍ରାର୍ଥନା କରିଅଛନ୍ତି । ଗଞ୍ଜାମ ଅଞ୍ଚଳରେ ମଧ୍ୟ ଅନେକେ ଏହା ଅନୁଭବ କରୁଅଛନ୍ତି ଏବଂ ଓଡ଼ିଶା ସହିତ ମିଳିତ ହେବାର ଆକାଂକ୍ଷା ତାହାଙ୍କ ତାହାଙ୍କ ପ୍ରାଣରେ ଜାଗ୍ରତ ହୋଇଅଛି । କେବଳ କାନ୍ଥିର ଅଧିବାସିମାନଙ୍କର ଭାବ ଭିନ୍ନ ପ୍ରକାର । ସେମାନେ ବଙ୍ଗପ୍ରଦେଶ ସହିତ ସର୍ବତୋଭାବରେ ଏକୀଭୂତ ହୋଇ ଅଛନ୍ତି ବା ହେବାର ଆକାଂକ୍ଷା କରନ୍ତି । ଏଥି-
...ଯେ ସେମାନେ ବଙ୍ଗୀୟ ଭ୍ରାତାମାନଙ୍କ-
ଆଦର ବା ଶ୍ରଦ୍ଧା ପାଉଅଛନ୍ତି,
...ସେମାନଙ୍କର ଗଭୀର ସନ୍ଦେହ ।
...ବିଶ୍ୱାସ ଏହି ଯେ ଯଦି
...ହୋଇଲେ ଅପେକ୍ଷାର ଉନ୍ନତ
...ବା ଶ୍ରଦ୍ଧା ପାଇବାର
...ସ୍ୱାତନ୍ତ୍ର୍ୟ
ନାହିଁ ।
...ଅସ୍ତୁ

ରହି ସକଳ ବିଷୟରେ ଉନ୍ନତିର ମାର୍ଗ ଅବଲମ୍ବନ କରି ଅପର ସମସ୍ତ ଜାତିଙ୍କ ନିକଟରେ ଛିଡ଼ା ହୋଇ ପାରିବେ, ସେହି ଦିନ ସମସ୍ତେ ସେମାନଙ୍କ ସହିତ ସାଦରେ କରମର୍ଦ୍ଦନ କରିବେ—ନଚେତ୍ ନୁହେ । ଏଥିରୁ କେହି ଏପରି ମନେ କରିବେ ନାହିଁ ଯେ ଆମ୍ଭେମାନେ ଜାତିଗତ ବିଦ୍ୱେଷ ବା କ୍ଷୁଦ୍ର ପ୍ରାଦେଶିକ ଭାବର ପକ୍ଷପାତୀ—ବରଂ ଆମ୍ଭେମାନେ ତାହାର ଘୋର ବିରୋଧୀ । ଯେଉଁ ଭାବ ଦେଶର ସର୍ବନାଶ ସାଧନ କରିଅଛି, କେଉଁ ବୁଦ୍ଧିମାନ୍ ବ୍ୟକ୍ତି ଜାଣି ଶୁଣି ତାହାକୁ ହୃଦୟରେ ସ୍ଥାନ ଦେବ ? ଆମ୍ଭମାନଙ୍କର ଅଭିପ୍ରାୟ ଏହି ଯେ ସମଗ୍ର ଉତ୍କଳସନ୍ତାନ ମିଳିତ ହୋଇ ଆଭ୍ୟନ୍ତରୀଣ ଉନ୍ନତି ସାଧନ କରି ଭାରତୀୟ ସାର୍ବଭୌମ ବିଷୟ ବ୍ୟାପାରମାନଙ୍କରେ ଅପରାପର ଜାତି ସହିତ ମିଳିତ ହେଉନ୍ତୁ । ଏହା କରିବାକୁ ହେଲେ ସମଗ୍ର ଉତ୍କଳୀୟମାନଙ୍କ ମଧ୍ୟରେ ଏକତା ସାଧନ ଏକାନ୍ତ ଆବଶ୍ୟକ । ବର୍ତ୍ତମାନ ଆଉ ନିଦ୍ରିତ ବା ଉଦାସୀନ ରହିବାର ସମୟ ନାହିଁ । ଯେଉଁମାନେ ଯଥାର୍ଥରେ ସ୍ୱଦେଶର ଓ ସ୍ୱଜାତିର ହିତକାମନା କରନ୍ତି, ସେମାନେ ଏହି ମହଦନୁଷ୍ଠାନରେ ସତ୍ୱର ପ୍ରବୃତ୍ତ ହୁଅନ୍ତୁ । ଯେଉଁ ଆକାଂକ୍ଷା ବ୍ୟକ୍ତିବିଶେଷଙ୍କ ପ୍ରାଣରେ ବା କ୍ଷୁଦ୍ର କ୍ଷୁଦ୍ର ଦଳ ମଧ୍ୟରେ ଜାଗ୍ରତ ହୋଇଅଛି, ତାହାର ବିସ୍ତୃତି ଏବଂ କାର୍ଯ୍ୟ-ପରିଣତି ନିମିତ୍ତ ସମସ୍ତେ ବଦ୍ଧ-ପରିକର ହେଉନ୍ତୁ । ଆମ୍ଭେମାନେ ଜାଣୁ, ଏ ବ୍ୟାପାରରେ ସମ୍ବଲପୁରର ଅଧିବାସିମାନେ ପୂର୍ଣ୍ଣ ହୃଦୟରେ ଯୋଗ ପ୍ରଦାନ କରିବେ ଏବଂ ଗଞ୍ଜାମର ଅଧିକାଂଶ ଉତ୍କଳସନ୍ତାନ ମଧ୍ୟ ଏଥିରେ ଯୋଗ ଦେବାକୁ ଏବଂ ସେ ଅଞ୍ଚଳର ଅପରାପର ବ୍ୟକ୍ତି-ମାନଙ୍କୁ ପ୍ରବର୍ତ୍ତାଇବାକୁ ପଶ୍ଚାତ୍ପଦ ହେବେ ନାହିଁ । କାନ୍ଥି ବର୍ତ୍ତମାନ ଯୋଗ ନ ଦେଲେ, ସମୟରେ ସ୍ୱୀୟ ଭ୍ରମ ବୁଝି ପାରି ଯୋଗ ଦେବା ନିତାନ୍ତ ଅସମ୍ଭବ ନୁହେ । ବିଷୟଟି ଯେପରି ଗୁରୁତର, ସାଧନ ସେହିପରି କଠିନ । ସମଗ୍ର ମନ ପ୍ରାଣ

ଢ଼ାଳ ଦେଇ ଯାନ ବନ୍ତ୍ର ସମ୍ଭେ ହାଡ ଯନ୍ତ୍ରାଗ ହୋଇ କାର୍ଯ୍ୟକ୍ଷେତ୍ରରେ ଅବତୀର୍ଣ୍ଣ ନ ହେଲେ ଫଳ ହେବ ନାହିଁ । ଓଡ଼ିଶା, ଗଞ୍ଜାମ ଓ ସମ୍ବଲ-ପୁରର ଶିକ୍ଷିତ ପଦସ୍ଥ ବ୍ୟକ୍ତିମାନଙ୍କୁ ଆମ୍ଭେମାନେ ଏହି ସୁମହତ୍ କାର୍ଯ୍ୟରେ ଅଗ୍ରସର ହେବାକୁ ଆହ୍ୱାନ କରୁଅଛୁଁ ।

୭ । ଅଶ୍ଳୀଳ ପୁସ୍ତକ ପ୍ରକାଶରେ ଦଣ୍ଡ—ବାଲେଶ୍ୱରବାସୀ ଜଣେ ମୁସଲମାନ ଗ୍ରନ୍ଥକାର ଏ ନଗରର ଅରୁଣୋଦୟ ଯନ୍ତ୍ରାଳୟରେ 'ବିରହ-ଲହରୀ' ନାମକ ଖଣ୍ଡେ କଦର୍ଯ୍ୟ ପୁସ୍ତକ ମୁଦ୍ରିତ କରାଇ ନେଇଥିଲେ । ପୁସ୍ତକ ଖଣ୍ଡ ପୁଲିସ କର୍ତ୍ତାମାନଙ୍କ ଦୃଷ୍ଟିରେ ପଡ଼ିବାରୁ ଯନ୍ତ୍ରାଳୟର ଅଧ୍ୟକ୍ଷ ଓ ପୁସ୍ତକବିକ୍ରେତା ଉଭୟଙ୍କ ବିରୁଦ୍ଧରେ ଅଭିଯୋଗ ଉପସ୍ଥିତ କରିବା ନିମିତ୍ତ ସ୍ଥାନୀୟ ପୁଲିସ ପ୍ରତି ଆଦେଶ ହେଲା । ଡେପୁଟି ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ ଡେଭିଡ୍‌ସନ ସାହେବଙ୍କ ବିଚାରରେ ଅସାମିଦ୍ୱୟଙ୍କର ୯ ୫୦୧ ଲେଖାଏ ଅର୍ଥଦଣ୍ଡ ହୋଇ ଯାଇଅଛି । ଓଡ଼ିଶାରେ ଏହା ଗୋଟିଏ ଅଭିନବ ମକଦ୍ଦମା । ଏ ଶ୍ରେଣୀର ପୁସ୍ତକ-ମାନ ଏତେ ଦିନ ଯାଏ ନିର୍ବିବାଦରେ ମୁଦ୍ରିତ ଓ ବିକ୍ରୀତ ହୋଇ ଆସୁଥିଲା । ଯଥ ବସିଲେ ଆଉ ଏପରି କେତେ ପୁସ୍ତକ ବାହାର ପଡ଼ିବ । କର୍ତ୍ତୃ-ପକ୍ଷଙ୍କ ଦୃଷ୍ଟି ଯେ ଏଥି ପ୍ରତି ଆକୃଷ୍ଟ ହୋଇଅଛି, ଏହା ଅବଶ୍ୟ ଶୁଭଲକ୍ଷଣ ବୋଲିବାକୁ ହେବ । ଏହାଦ୍ୱାରା ପ୍ରେସାଧ୍ୟକ୍ଷ, ପୁସ୍ତକବିକ୍ରେତା ଓ ପୁସ୍ତକପ୍ରଣେତା ସମସ୍ତଙ୍କର ଚୈତନ୍ୟୋଦୟ ହେବାର ଆଶା କରି ଯାଇ ପାରେ । ତେବେ ଆମ୍ଭେମାନେ ଉପସ୍ଥିତ ଘଟଣାରେ ଅସାମିଦ୍ୱୟଙ୍କ ପାଇଁ ଦୁଃଖିତ । ଅପରାଧଟା ସେମାନଙ୍କର ଜ୍ଞାନ-କୃତ ନ ହୋଇ ପାରେ । ଅସାବଧାନତାରେ ପୁସ୍ତକ ଖଣ୍ଡ ମୁଦ୍ରିତ ହୋଇଥିବା ନିତାନ୍ତ ଅସମ୍ଭବ ନୁହେଁ । ତହିଁ ଏପରି ପୁସ୍ତକର ପ୍ରକାଶ ଯେ ଦୋଷାବହ, ଏ ଜ୍ଞାନ ସେମାନଙ୍କର ନ ଥିଲା, ଏହା ମଧ୍ୟ ହୋଇ ପାରେ । ମାତ୍ର ଅଜ୍ଞାନ,ନିର୍ବିଜ୍ଞା ଲୋକମାନଙ୍କ ପକ୍ଷରେ ଯେତେଥିଲା କାରଣ ନୁହେ । ସେ ଯାହା ହେଉ, ଶ୍ରେଣୀଗତ ସାହିତ୍ୟରେ ଏମାନେ ଦଣ୍ଡିତ ହେଲେ । ମାତ୍ର ଯେଉଁ ବ୍ୟକ୍ତି ଯଥାର୍ଥ ଦୋଷୀ, ସେ ଅବ୍ୟାହତି ପାଇଲା । ଏହା ଅତ୍ୟନ୍ତ ଦୁଃଖର କଥା ନୁହେ କି ? ଅବଶ୍ୟ ଲେଖକ ଅପେକ୍ଷା ପ୍ରକାଶକ ଓ ବିକ୍ରେତାର ଦାୟିତ୍ୱ ଅଧିକ, ଏଥିରେ ସନ୍ଦେହ ନାହିଁ । ମାତ୍ର ଏ କ୍ଷେତ୍ରରେ ଯେ ଲେଖକ, ସେହି ପ୍ରକୃତ ପ୍ରକାଶକ । ପ୍ରକାଶକ-ରୂପେ ସେ କି ଦୋଷୀ ନୁହେ ? ଏ କଥା ଅଭିଯୋଗକାରୀମାନଙ୍କର ବିଚାର୍ଯ୍ୟ । ବିଚାର ସ୍ଥଳରେ ଆସାମିମାନେ ଆତ୍ମପକ୍ଷ ସମର୍ଥନର ଯେଉଁ ଉପାୟ ଅବଲମ୍ବନ କରିଥିଲେ, ତାହା ଆମ୍ଭମାନଙ୍କୁ ଅନୁମୋଦିତ ବୋଧ ହେଲା ନାହିଁ । ସେମାନେ ଦୋଷାବହ ଅଂଶଗୁଡ଼ାକର ସଦର୍ଥ ବ୍ୟାଖ୍ୟା କରିବାକୁ ଚେଷ୍ଟା କରିଥିଲେ । କଥା କଥାକେ ଆଧ୍ୟାତ୍ମିକ ଅର୍ଥ ବାହାର କରିବାକୁ ଅନେକ ଲୋକ ଆମ୍ଭମାନଙ୍କ ଦେଶରେ ଅନେକେ ବଡ଼ ମଜବୁତ ! ଏ ପ୍ରକାର ଚେଷ୍ଟା କେବଳ କୁଟିଳ କଳ୍ପନାର ଫଳ !

୨ । ରଜା ରାମମୋହନ-ପଦକ-ରଚନା—ଆମ୍ଭମାନଙ୍କ ପାଠକମାନେ ଅବଗତ ଅଛନ୍ତି ଯେ ଗତ ସେପ୍ଟେମ୍ବର ୨୭ ତାରିଖରେ ମହାତ୍ମା ରଜା ରାମମୋହନ ରାୟଙ୍କ ଶ୍ରାଦ୍ଧ-ସଭାରେ ଏ ନଗରର ଡେପୁଟି ମାଜିଷ୍ଟ୍ରେଟ ଶ୍ରୀଯୁକ୍ତ ବାବୁ ଅଶୁତୋଷ ଦତ୍ତ ମହାଶୟ 'ପ୍ରାଚୀନ ଉତ୍କଳ ସାହିତ୍ୟ' ବିଷୟରେ ସର୍ବୋତ୍କୃଷ୍ଟ ପ୍ରବନ୍ଧର ଲେଖକଙ୍କୁ ଗୋଟିଏ ରୌପ୍ୟପଦକ ପୁରସ୍କାର ଦେବାର ଅଭିପ୍ରାୟ ଜଣାଇଥିଲେ । ପ୍ରବନ୍ଧ ଭାଷାରେ ଲିଖିତ ହେବ ବୋଲି ଥିଲା । ମାତ୍ର ପରବର୍ତ୍ତୀ ବିଜ୍ଞା ପ୍ରବନ୍ଧଟି ଓଡ଼ିଆରେ ଲିଖିତ ଶେଷ ପର୍ଯ୍ୟନ୍ତ ପ୍ରବନ୍ଧପ୍ରେରଣ ହୋଇଥିଲା । କେତୋଟି ଅଛି, ଆମ୍ଭମା

ଥିଲେ, ଏ ବିଷୟରେ ବହୁତ ବେଶି ବ୍ୟକ୍ତି ପ୍ରୟାସୀ ହୋଇ ଥିବାର ଅନୁମିତ ହେଉ ନାହିଁ । ଏହାର କାରଣ କଣ ? ଉପଯୁକ୍ତ ଭାବରେ ବିଜ୍ଞାପନ ହେବାରେ ତ୍ରୁଟି ହୋଇଅଛି ? ଅଥବା ସ୍ୱଦେଶୀୟ ଶିକ୍ଷିତ ଯୁବକମାନେ ପଦକର ମୂଲ୍ୟର ଅଳ୍ପତା ହେତୁ ଏଥିପ୍ରତି ସମୁଚିତ ଆସ୍ଥା ପ୍ରଦର୍ଶନ କରି ନାହାନ୍ତି ? କିମ୍ବା ଦୁର୍ଭାଗ୍ୟ ଆଳସ୍ୟ ଓ ଔଦାସୀନ୍ୟ ହେତୁରୁ ଏପରି ଘଟିଅଛି ? ଯେଉଁ କାରଣରୁ ହେଉ, ଏହା ଅତ୍ୟନ୍ତ ବାଞ୍ଛନୀୟ ବା ଶୋଭନୀୟ ନୁହେ । ଅନ୍ତତଃ ମାତୃଭାଷାର ଓ ଜାତୀୟ ସାହିତ୍ୟର ଗୌରବ-ରକ୍ଷାନିମିତ୍ତ ଶକ୍ତିଶାଳୀ ସୁଶିକ୍ଷିତ ଯୁବକ-ମାନଙ୍କର ଏଥିରେ ପ୍ରବୃତ୍ତ ହେବା ସର୍ବଥା ଉଚିତ ମନେ କରୁଁ । ଆମ୍ଭମାନଙ୍କ ବିବେଚନାରେ କମିଟି ରଚନାଗ୍ରହଣର ସମୟ ବୃଦ୍ଧି କରି ସ୍ଥାନୀୟ ସକଳ ସମ୍ବାଦପତ୍ରରେ ବିଜ୍ଞାପନ ପ୍ରଚାର କରନ୍ତୁ ଏବଂ ପ୍ରବନ୍ଧର ଆକାର ଏବଂ ବିଷୟବିଭାଗ ସୁସ୍ପଷ୍ଟରୂପେ ନିର୍ଦ୍ଧାରଣ କରି ଦିଅନ୍ତୁ । ସେଥିରେ ସୁଦ୍ଧା ଯେବେ ବେଶି କେହି ଅଗ୍ରସର ନ ହୁଅନ୍ତି, ଦେଶର ଜଳବାୟୁ ଉପରେ ସବୁ ଦୋଷ ଢାଳି ଦେଇ ସ୍ୱୀୟ କର୍ତ୍ତବ୍ୟ ଶେଷ କରିବେ !

୮ । ପ୍ରାଚୀନ ଓଡ଼ିଆ ସାହିତ୍ୟର ଇତିହାସ—କଥା ପ୍ରସଙ୍ଗରେ ଜଣେ ମାନନୀୟ ବନ୍ଧୁ ଦିନେ କହିଲେ, ବର୍ତ୍ତମାନ ଗୋଟିଏ ବିଶେଷ ସୁଯୋଗ ଉପସ୍ଥିତ, ଯଦି କେହି ବିଶେଷ ଶ୍ରମ ଓ ଯତ୍ନ କରି ପ୍ରାଚୀନ ଓଡ଼ିଆ ସାହିତ୍ୟର ଖଣ୍ଡିଏ ଉପଯୁକ୍ତ ...ସ ପ୍ରଣୟନ କରି ପାରନ୍ତି, ତେବେ ଜଣେ ... ସେ ପୁସ୍ତକର ମୁଦ୍ରଣର ବ୍ୟବସ୍ଥା ... ହେବା ପ୍ରଶଂସାର୍ହ ହେବ । ...ଣି ମନରେ ଭାରି ଆନନ୍ଦ ହେଲା ... ଯଥାର୍ଥରେ ଭାରି ସୁଯୋଗ, ...ରେ ଯେତେବେଳେ ଅଗ୍ର... ସେତେବେଳେ ...ଡ଼େ ଅପସାରିତ ...ଷ୍ଟ ବ୍ୟକ୍ତିଟି ବଡ଼ ଚତୁର । ସହେ କଥାରେ କେତେ ବାହାଦୁରିଟାଏ ନ ନେଲେ ! ଦିନକ ସାଙ୍ଗ ବନ୍ଧୁ ବାନ୍ଧବଙ୍କ ନିକଟରେ ଅବଶୋଷ କରି ବାରି ଗୋଟାଏ ବେଶ ବାଟ ମିଳିଗଲା ! ଅର୍ଥାତ୍ ଦେଶର ଲୋକଗୁଡ଼ାକ ଯ କିଛି କରିବେ ନାହିଁ—କେହି ତ ମନୁଷ୍ୟ ହେଲେ ନାହିଁ, କଣ କରାଯିବ ! ଆମ୍ଭେ ଏହି ପ୍ରସ୍ତାବ କରି ଥିଲୁଁ, ଅମୁକ ବ୍ୟକ୍ତିଙ୍କଦ୍ୱାରା ପୁସ୍ତକ ଖଣ୍ଡ ମୁଦ୍ରିତ କରାଇ ଦେଇଥାନ୍ତୁ, କିନ୍ତୁ ଜଣେ କେହି ଅଗ୍ରସର ହେଲେ ନାହିଁ ! ଧନ୍ୟବାଦ, ଧନ୍ୟବାଦ । ପାଠକ ବିଚାର କରି ଦେଖନ୍ତୁ, ସୁଯୋଗଟା କିପରି । କାର୍ଯ୍ୟଟି ଯେପରି ଗୁରୁତର, ସେଥିରେ ଅବଶ୍ୟ ଜଣେ ଶକ୍ତିଶାଳୀ, ବିଚକ୍ଷଣ, ଅଧ୍ୟବସାୟଶୀଳ, ସୁଶିକ୍ଷିତ ବ୍ୟକ୍ତି ଛଡ଼ା ଯେପରି ସେପରି ଲୋକ-ଦ୍ୱାରା ହେବା ଅସମ୍ଭବ । ପୁଣି ସକଳ କାର୍ଯ୍ୟ ପରି-ତ୍ୟାଗ କରି କେବଳ ଏହି କାର୍ଯ୍ୟରେ ମନୋ-ନିବେଶ କଲେ ଅନ୍ତତଃ ୨ । ୩ ବର୍ଷରୁ ଊଣା ଲାଗିବ ନାହିଁ । ଓଡ଼ିଶାର ସମଗ୍ର ଶିକ୍ଷିତମଣ୍ଡଳୀ ମଧ୍ୟରେ ୨ । ୩ ବର୍ଷ 'ଘରରୁ ଖାଇ ଏ ବଣିଜ ଶିଖିବା' ଭଳି କେହି ବାହାରି ପାରିବେ କି ? ପୁଣି କାର୍ଯ୍ୟଟି ବ୍ୟୟସାଧ୍ୟ । ଘରେ ବସି କଳ୍ପନାର ସାହାଯ୍ୟରେ ପୁସ୍ତକ ଲେଖିବା ଚଳିବ ନାହିଁ । ନାନା ସ୍ଥାନରେ ଭ୍ରମଣ କରି ଉପକରଣ ସଂଗ୍ରହ କରିବାକୁ ହେବ—ଭ୍ରମଣ ବ୍ୟୟ ଛଡ଼ା ଅନେକ ସ୍ଥଳରେ ପୁରାତନ ପୋଥିମାନ ଅତିରିକ୍ତ ମୂଲ୍ୟରେ କ୍ରୟ କରିବାକୁ ପଡ଼ିବ । ସୁତରାଂ କେବଳ 'ଘରରୁ ଖାଇ' ନୁହେ, 'ଘରରୁ ଦେଇ' ବଣିଜ ଶିଖିବାକୁ ହେବ! ପ୍ରଥମ କଥା, ଏ କ୍ଷମତା ଓଡ଼ିଶାର ଶିକ୍ଷିତ-ମଣ୍ଡଳୀ ମଧ୍ୟରେ କାହାର ନାହିଁ । ଦ୍ୱିତୀୟ କଥା, ଯଦି କେହି ପାରେ, ତାହାର ଶେଷ ଫଳ କଣ ? ପୁସ୍ତକ ଖଣ୍ଡ ମୁଦ୍ରିତ ହେଲା, କିଣିବ କିଏ ? କେତେ ଖଣ୍ଡ ବିକ୍ରୟ ହେବ ? କେତେ ଦିନରେ ସେ ବ୍ୟକ୍ତିର ମୂଳଧନ ଉଠିବ ? ଅର୍ଥାତ୍ ଏ ଅସାଧ୍ୟ ସାଧନରେ କେହି ପ୍ରବୃତ୍ତ ହେବେ ନାହିଁ ! ଏତ ଗଲା ମୂଳ ପ୍ରସ୍ତାବ ସମ୍ବନ୍ଧରେ । ସେହି ପ୍ରସଙ୍ଗରେ

ଅମ୍ଭେମାନେ ଉକ୍ତ ମାନନୀୟ ବନ୍ଧୁଙ୍କୁ କହିନ୍ତୁ, ଯଦି ବାଣିଜ୍ୟ ବ୍ୟକ୍ତି କୌଣସି ଜଣେ ବ୍ୟକ୍ତିଙ୍କଦ୍ୱାରା ପୁସ୍ତକ ମୁଦ୍ରଣର ବ୍ୟବସ୍ଥା କରି ପାରନ୍ତି, ତେବେ ସେହିପରି ଆଉ କେତେକ ଜଣ ଏବଂ ସ୍ୱୟଂ ମିଳିତ ହୋଇ ଏ କାର୍ଯ୍ୟ ସାଧନପାଇଁ ଅନ୍ତତଃ ମାସିକ ଟ ୧୦୦୯ ବେତନରେ ଜଣେ ଉପଯୁକ୍ତ ବ୍ୟକ୍ତି ନିଯୁକ୍ତ କଲେ ତ ହୋଇ ପାରେ । ଓଡ଼ିଆ ଗ୍ରାଜୁଏଟମାନଙ୍କ ମଧ୍ୟରେ ଏପରି ବ୍ୟକ୍ତି ମିଳିବା ଅସମ୍ଭବ ନୁହେ । ସ୍ତୁତି ବରଂ ପ୍ରଶଂସାଙ୍କର ନ ହେଲା । ମାନନୀୟ ବନ୍ଧୁ କଥାଟା ସମ୍ପୂର୍ଣ୍ଣ ଅନୁମୋଦନ କରି କହିଲେ, ଟ ୧୦୦୯ ନ ହେଉ, ୫୦ । ୬୦ ଟଙ୍କା ତ ହେଉ । ଅମ୍ଭେମାନେ ନୀରବରେ ଗୋଟିଏ ଦୀର୍ଘନିଶ୍ୱାସ ପକାଇ ନିରୁତ୍ତର ରହିଲୁ ! ଭାବିଲୁ, କିଏ ବା ଟ୧୦୦୯ ଦେଉଅଛି, କିଏ ବା ଟ୫୦୯ ଦେଉଅଛି ! ମାତ୍ର କଳରଟା ଏହି ପର୍ଯ୍ୟନ୍ତ । ନ ହେବ ବା କାହିଁକି ? ଯେପରି ବେଲକାଲ ପଡ଼ିଅଛି, ସେଥିରେ ଟ ୫୦୯ ତ ଢେର ବେଶି ହେଲାଣି ! ଆଉ ଅଧିକର ପ୍ରୟୋଜନ ନାହିଁ । ଇତିହାସଲିଖନ ଏହିଠାରେ ଶେଷ ହେଲା ! ମେଜାଜ୍ ଖୁସ୍ ଥିଲେ ମନ୍ତ୍ରିସ୍ଥରେ କେତେ ଖେୟାଲ ଖେଳେ । ଏ ମଧ୍ୟ ସେହିପରି ଗୋଟାଏ !

୯ । କୃଷି-ଉନ୍ନତି-ଚେଷ୍ଟା—ଓଡ଼ିଶା କୃଷି ପ୍ରଧାନ ଦେଶ । ପ୍ରାଚୀନ ଉତ୍କଳରେ ନାନାପ୍ରକାର ଶିଳ୍ପୋନ୍ନତିର ନିଦର୍ଶନ ଥିଲେ ମଧ୍ୟ ବର୍ତ୍ତମାନ ଉତ୍କଳୀୟ ଶିଳ୍ପଜାତ ଦ୍ରବ୍ୟମଧ୍ୟରେ ସ୍ୱର୍ଣ୍ଣ ରୌପ୍ୟର ଦ୍ରବ୍ୟ ପ୍ରଭୃତି ଦୁଇ ଚାରିଟା ମାତ୍ର ଯଥା କଥଞ୍ଚିତ ମୃତ୍ପ୍ରାୟ ହୋଇ ରହିଅଛି । ମାତ୍ର ବିଦେଶୀୟ ଶିଳ୍ପ ସଙ୍ଗେ ପ୍ରତିଦ୍ୱନ୍ଦ୍ୱିତା କରିବାର ଶକ୍ତି ସାମର୍ଥ୍ୟ ତାହାର ନାହିଁ । ବାଣିଜ୍ୟରେ ଲକ୍ଷ୍ମୀଙ୍କର ବାସ । ଓଡ଼ିଶାର ବାଣିଜ୍ୟ ସ ଅଛି ଅଗରେ । ସାଧାରଣ ପ୍ରଜାଙ୍କର ଅବଲମ୍ବନ ଏକମାତ୍ର କୃଷି । ସାଧାରଣ ପ୍ରଜା କାହିଁକି ? ମଧ୍ୟବିତ୍ତ ଏବଂ ଅନେକ ସଙ୍ଗତିସମ୍ପନ୍ନ ବ୍ୟକ୍ତିଙ୍କର ମଧ୍ୟ କୃଷି ପ୍ରଧାନ ଅବଲମ୍ବନ । ଅନେକ ଶ୍ରେଣୀର ଲୋକ ବର୍ତ୍ତମାନ ସ୍ୱସ୍ୱ ବ୍ୟବସାୟ ଛାଡ଼ି କୃଷିର ଆଶ୍ରୟ ଗ୍ରହଣ କରୁଅଛନ୍ତି । ଏହି କାରଣରୁ ଏବଂ ବନ୍ଦୋବସ୍ତରେ କରବୃଦ୍ଧି ପ୍ରଯୁକ୍ତରୁ ଭୂମିର ମୂଲ୍ୟ ବର୍ଦ୍ଧିତ ହୋଇଅଛି । ମାତ୍ର ସମୟୋଚିତ ଉନ୍ନତ ପ୍ରଣାଳୀ ଅବଲମ୍ବନ ହୋଇ ନ ଥିବାରୁ ଶସ୍ୟାଦିର ପ୍ରକାର ବା ପରିମାଣ ବର୍ଦ୍ଧିତ ହେଉ ନାହିଁ । ଏଥିରେ ଦେଶର ଅବସ୍ଥା ଯେ ଦିନକୁ ଦିନ ଶୋଚନୀୟ ହେବ—କୃଷକସମ୍ପ୍ରଦାୟ ଯେ ଘୋର ଦାରିଦ୍ର୍ୟରେ ନିପୀଡ଼ିତ ହେବେ, ସେଥିରେ ସନ୍ଦେହ କଣ ? ବର୍ତ୍ତମାନ ଏ ଦେଶରେ କୃଷିର ଉନ୍ନତି ସାଧନ ପକ୍ଷରେ ଯଥେଷ୍ଟ ଅବସର ରହିଅଛି । କେବଳ ଶ୍ରମଦ୍ୱାରା କୌଣସି କାର୍ଯ୍ୟ ସୁସାଧିତ ହୁଏ ନାହିଁ—ବୁଦ୍ଧିବୃତ୍ତିର ସମ୍ୟକ୍ ପ୍ରୟୋଗ ଆବଶ୍ୟକ । ଅଜ୍ଞ ଜନସାଧାରଣ ଚିରାଗତ ପ୍ରଥା ଅନୁସରଣ କରି କୃଷିକାର୍ଯ୍ୟରେ ପ୍ରବୃତ୍ତ ରହିଅଛନ୍ତି । କେଉଁ ଭୂମିରେ କି ପ୍ରକାର କୃଷି ଅଧିକ ଲାଭଜନକ ହେବ—କେଉଁ ଶସ୍ୟ ପକ୍ଷରେ କେଉଁ 'ସାର' ଅଧିକ ଉପଯୋଗୀ, ଇତ୍ୟାଦି ବିଷୟ ସ୍ଥିର କରିବାର କ୍ଷମତା ସେମାନଙ୍କର ନାହିଁ । ଶିକ୍ଷିତ ବ୍ୟକ୍ତିମାନେ ଯଦି କୃଷିବିଷୟକ ଉନ୍ନତ ପ୍ରଣାଳୀମାନ ସମ୍ୟକରୂପେ ଆଲୋଚନା କରି କୃଷକମାନଙ୍କୁ ଉପଦେଶ ଦିଅନ୍ତି ଏବଂ ସୁବିଧାନୁଯାୟୀ ନିଜେ ତତ୍ତ୍ୱାବଧାରଣ କରନ୍ତି ତେବେ ଏ ଦରିଦ୍ର ଦେଶର ପ୍ରଭୂତ ଉନ୍ନତି ସାଧିତ ହୋଇ ପାରନ୍ତା । ଅମ୍ଭେମାନେ ଶୁଣିଅଛୁଁ

ମଧୁସୂଦନ ଦାସ ମହୋଦୟ

ଅନେକଗୁଡ଼ିଏ ଭୂମି ନେଇ

ନାନାବିଧ ଶସ୍ୟୋତ୍ପାଦନରେ

ଥିଲେ । ତାହାର ପରିଣା

ନ ପାରୁଁ ।

ଜଣେ

ସାହାଯ୍ୟରେ

ହୋଇ ଥି

ସେ ସବୁ ବୃହତ୍ ବ୍ୟାପାରର ତଥ୍ୟାନୁସନ୍ଧାନ ଆମ୍ଭମାନଙ୍କ ପକ୍ଷରେ ଧୃଷ୍ଟତା ମାତ୍ର । ବର୍ତ୍ତମାନ ଗୋଟିଏ କ୍ଷୁଦ୍ର କୃଷି-ଉନ୍ନତି-ସମାଜର କଥା ଉଲ୍ଲେଖ କରିବୁ । ଏ ନଗରର ଉତ୍ତର ପୂର୍ବ ୧୦ ମାଇଲ ଦୂରରେ ସିଦ୍ଧେଶ୍ୱରପୁର ଗୋଟିଏ କ୍ଷୁଦ୍ର ପଲ୍ଲୀଗ୍ରାମ । ଏଠାରେ ଗୋଟିଏ ମାଇନର ସ୍କୁଲ, ବାଳିକା ବିଦ୍ୟାଳୟ, ହରିଭକ୍ତିପ୍ରଦାୟିନୀ ଓ ଶିକ୍ଷା-ବର୍ଦ୍ଧିନୀ ସଭା ଏବଂ ଗୋଟିଏ ସାଧାରଣ ପୁସ୍ତକାଳୟ ଅଛି । ବିଗତ ବର୍ଷ ଏ ଗ୍ରାମର ଜମିଦାର ଶ୍ରୀଯୁକ୍ତ ଜଗନ୍ନାଥ ଆଚାର୍ଯ୍ୟ ଓ ଶ୍ରୀଯୁକ୍ତ ଅଭିମନ୍ୟୁ ଆଚାର୍ଯ୍ୟଙ୍କ ଯତ୍ନରେ ଏଠାରେ କୃଷି ଉନ୍ନତି ନିମିତ୍ତ ଗୋଟିଏ ସମାଜ ପ୍ରତିଷ୍ଠିତ ହୋଇଅଛି । ଏ ସମାଜର ସମ୍ପାଦକ ଶ୍ରୀଯୁକ୍ତ ଗୋପାଳଚନ୍ଦ୍ର ପ୍ରହରାଜ ବି.ଏ. । ଏହାର ପ୍ରବର୍ତ୍ତକ ଓ ପରାମର୍ଶଦାତା ଏଠା କେନାଲ ରେଭିନ୍ୟୁର ଭୂତପୂର୍ବ ଡେପୁଟି ଶ୍ରୀଯୁକ୍ତ ମାଧବ ଲାଲ ଅଟନ୍ତି । ପ୍ରତି ଅଂଶର ମୂଲ୍ୟ ଟ ୨୧ ଧାର୍ଯ୍ୟ ହୋଇଅଛି । ଗତ ବର୍ଷ ପରୀକ୍ଷା ସ୍ୱରୂପ ୧ ଏକର ଜମିରେ ଆଖୁ ଚାଷ କରା ହୋଇଥିଲା । କୃଷି ବିଭାଗର ଡାଇରେକ୍ଟରଙ୍କ ନିକଟରୁ ଉକ୍ତ କୃଷିବିଷୟକ ବିବିଧ ଜ୍ଞାତବ୍ୟ ବିଷୟମାନ ଅଣା ଯାଇଥିଲେହେଁ ପରୀକ୍ଷା କରିବା ନିମିତ୍ତ ଦେଶୀୟ କୃଷକମାନଙ୍କ ପଦ୍ଧତି ଅନୁସରଣ କରି ଆଖୁଚାଷ ହୋଇଥିଲା । ଏଥିରେ ବିଶେଷ କିଛି ଲାଭ ଦେଖା ଗଲା ନାହିଁ । ସର୍ବସୁଦ୍ଧା ଟ ୬୦୧ ବ୍ୟୟ ହୋଇଥିଲା; ଟ ୬୫୧ କାର ଗୁଡ଼ ମିଳିଲା ।

...ନ ଅର୍ଦ୍ଧ ଏକର ଜମିରେ ଆଳୁ ଚାଷ କରା
...ଛନ୍ତି । ଆଗାମୀ ବର୍ଷ ନୂତନ
...ଷ କରିବାକୁ ଏବଂ ଉକ୍ତ
...ବିହୁଅଠାରୁ ଲୌହନିର୍ମିତ
...ଆଣାଇବାକୁ ସମାଜ ବର୍ତ୍ତମାନ
...ବର୍ତ୍ତମାନ ଉତ୍କଳ
...କୁମାର ଓ
...ପୁଣି ପ୍ରତି
...ମାନେଜଉ-

ମାନେ ରହିଅଛନ୍ତି । ଆଉ ପ୍ରାୟ ପ୍ରତି ପ୍ରଧାନ ଗ୍ରାମରେ ଅନ୍ତତଃ ଜଣେ ଅଧେ ଶିକ୍ଷିତ ବ୍ୟକ୍ତି ବାହାରିବେ । ସେମାନେ କୃଷିର ଉନ୍ନତି-ସାଧନ ବିଷୟରେ ମନୋଯୋଗୀ ହେଲେ ଦରିଦ୍ର କୃଷକସମ୍ପ୍ରଦାୟର—ତଥା ସମସ୍ତ ଦେଶର ବିଶେଷ ଉପକାର ସାଧିତ ହୋଇ ପାରିବ । କଟକର କୃଷି-ଶିଳ୍ପ-ପ୍ରଦର୍ଶନୀର ଉଦ୍‌ଯୋଗିମାନେ ବର୍ଷକରେ ଥରେ ପ୍ରଦର୍ଶନୀର କାର୍ଯ୍ୟ କୌଣସି ପ୍ରକାରେ ସମାଧା କରି ନିଶ୍ଚିନ୍ତ ରହିଲେ ଚଳିବ ନାହିଁ । ଯଦ୍ଦ୍ୱାରା କୃଷିବିଷୟକ ବିବିଧ ନୂତନ ତତ୍ତ୍ୱମାନ ଜନସାଧାରଣରେ ପ୍ରଚାରିତ ହେବ, ତାହାର ଉଚିତ ଉପାୟ ବିଧାନ କରନ୍ତୁ । ପ୍ରଦର୍ଶନୀର କାର୍ଯ୍ୟକ୍ଷେତ୍ର ପ୍ରସାରିତ ହେବ—ଦେଶ ମଧ୍ୟରେ ଏହା ଯଥାର୍ଥ ପ୍ରତିଷ୍ଠା ଲାଭ କରି ପ୍ରକୃତ ହିତ ସାଧନ କରିବ ।

୧୦ । ପ୍ରାଦେଶିକ ସମିତି—ଏ ବର୍ଷ ବଙ୍ଗୀୟ ପ୍ରାଦେଶିକ ସମିତିର ଅଧିବେଶନ କଟକନଗରରେ ହେବାର ସ୍ଥିର ହୋଇଥିବା କଥା ପାଠକବର୍ଗ ଅବଗତ ଅଛନ୍ତି । ମହରମ ଛୁଟି ସମୟରେ ପ୍ରତିବର୍ଷ ଅଧିବେଶନ ହୋଇଥାଏ । ମାତ୍ର ମୁସଲମାନ ସମ୍ପ୍ରଦାୟର ପ୍ରଧାନ ପର୍ବ ସମୟରେ ଅଧିବେଶନ ହେବା ଉଚିତ ବିବେଚିତ ନ ହେବାରୁ ଆଗାମୀ ଦୁର୍ଗାପୂଜା-ଅବକାଶର ଶେଷ ଭାଗରେ ହେବାର ସ୍ଥିର ହୋଇଅଛି । ଏପରି ଗୋଟିଏ ବୃହତ୍ ବ୍ୟାପାର ଓଡ଼ିଶା ପକ୍ଷରେ ନୂତନ । ଏଥିରେ ଯେପରି ବହୁ ଅର୍ଥର ପ୍ରୟୋଜନ, ସେହିପରି ବିଶେଷ ପରିଶ୍ରମ ମଧ୍ୟ ଆବଶ୍ୟକ । ଓଡ଼ିଶାରେ ସମିତିର ଅଧିବେଶନ ହେଉଥିବା ସ୍ଥଳେ ଓଡ଼ିଶାର ଅଭାବ ଓ ଅଭିଯୋଗମାନ ବିଶେଷ ଭାବରେ ଆଲୋଚିତ ହେବା ସର୍ବଥା ଉଚିତ । ଏଥିପାଇଁ ପୂର୍ବରୁ ଆୟୋଜନ ହେବା ଏକାନ୍ତ ଆବଶ୍ୟକ । ଏ କାର୍ଯ୍ୟରେ ସର୍ବସାଧାରଣଙ୍କୁ ଉଦ୍‌ବୁଦ୍ଧ କରିବାପାଇଁ ବିଶେଷ ଚେଷ୍ଟା ହେବା ଉଚିତ ମନେ କରୁଁ । ସେଥିପାଇଁ

ନାନାସ୍ଥାନରେ ସଭା ଆହ୍ୱାନ କରିବା ଏବଂ ସମିତିର ଉଦ୍ଦେଶ୍ୟ ସରଳ ଭାଷାରେ ଲେଖି ପୁସ୍ତିକାକାରରେ ମୁଦ୍ରିତ କରି ସର୍ବତ୍ର ବିତରଣ କରିବାର ବ୍ୟବସ୍ଥା ହେଉ । ନଚେତ୍ 'ବାହା ବେଳେ ବାଇଗଣ ଗେଛଲେ' ଚଳିବ ନାହିଁ । ଆଶା କରୁଁ ନେତୃଦଳ ଶୀଘ୍ର ଉପଯୁକ୍ତ ଆୟୋଜନରେ ପ୍ରବୃତ୍ତ ହେବେ ।

## ସଂକ୍ଷିପ୍ତ ସମାଲୋଚନା ।

୧ । ରନ୍ଧନପ୍ରଣାଳୀ (ପ୍ରଥମ ଖଣ୍ଡ)—ଶ୍ରୀମତୀ ରେବା ରାୟଙ୍କଦ୍ୱାରା ସଙ୍କଳିତ । ମୂଲ୍ୟ ପାଞ୍ଚ ଅଣା । ଓଡ଼ିଆ ଭାଷାରେ ଏହା ଏ ଶ୍ରେଣୀର ପ୍ରଥମ ପୁସ୍ତକ । ଏଥିରେ ପ୍ରାୟ ଦେଢ଼ଶହରୁ ଊର୍ଦ୍ଧ୍ୱ ସୁଖାଦ୍ୟ ଓ କେତେଗୁଡ଼ିଏ ପଥ୍ୟ ପ୍ରସ୍ତୁତ କରିବାର ପ୍ରଣାଳୀ ସରଳ ଭାଷାରେ ବିଶଦରୂପେ ବର୍ଣ୍ଣିତ ହୋଇ ଅଛି । ଏ ଦେଶରେ ଖାଦ୍ୟାଦିର ପ୍ରକାରଭେଦ ବଡ଼ ଅଳ୍ପ । ପୁଣି ଅନେକ ସ୍ଥଳରେ ଦେଖା ଯାଏ ରୋଗୀପାଇଁ ଟିକିଏ ବାର୍ଲି ରାନ୍ଧି ଦେବାକୁ ଗୃହିଣୀମାନେ ଅକ୍ଷମ । ଏ ଅବସ୍ଥାରେ ପୁସ୍ତକ ଖଣ୍ଡି ଗୃହସ୍ଥମାନଙ୍କର ବିଶେଷ କାର୍ଯ୍ୟରେ ଲାଗିବ, ଏଥିରେ ସନ୍ଦେହ ନାହିଁ ।

୨ । ମୂଳଶବ୍ଦବୋଧିକା (ପ୍ରଥମ ଖଣ୍ଡ) —ଶ୍ରୀ ମୃତ୍ୟୁଞ୍ଜୟ ରଥଙ୍କଦ୍ୱାରା ସଙ୍କଳିତ ଓ କୌଣସି ଉତ୍କଳୀୟ ଯୁବକଙ୍କଦ୍ୱାରା ପ୍ରକାଶିତ । ମୂଲ୍ୟ ଚାରି ଅଣା । ଏଥିରେ ଚନ୍ଦ୍ରିଶହ ପ୍ରଚଳିତ ଓଡ଼ିଆ ଶବ୍ଦର ମୂଳ ସଂସ୍କୃତ ଶବ୍ଦ ଓ ଓଡ଼ିଆ ଭାଷାରେ ପ୍ରଚଳିତ କେତେଗୁଡ଼ିଏ ଅବିକୃତ ସଂସ୍କୃତ ଶବ୍ଦ ପ୍ରଦତ୍ତ ହୋଇଅଛି । ଏ ଶ୍ରେଣୀର ଦୁଇ ଏକ ଖଣ୍ଡ ପୁସ୍ତକ ଓଡ଼ିଆରେ ଥିଲେହେଁ ଏ ଖଣ୍ଡି ଯେ ତଦପେକ୍ଷା ବହୁ ଗୁଣରେ ଉତ୍କୃଷ୍ଟ ହୋଇଅଛି, ଏଥିରେ ସନ୍ଦେହ ନାହିଁ । ପ୍ରଣେତାଙ୍କର ଅନୁସନ୍ଧିତ୍ସା ଓ ଉତ୍ସାହ ବିଶେଷ ପ୍ରଶଂସନୀୟ । ପୁସ୍ତକ ଖଣ୍ଡି ବିଦ୍ୟାଳୟର ଛାତ୍ରମାନଙ୍କ ଉଦ୍ଦେଶ୍ୟରେ ପ୍ରଣୀତ ହୋଇଥିଲେହେଁ ଭାଷାଶିକ୍ଷାର୍ଥୀ ମାତ୍ରକେ ଏଥିରୁ ବିଶେଷ ସାହାଯ୍ୟ ଓ ଉପକାର ପାଇ ପାରିବେ ଏହା ଆମ୍ଭେମାନେ ମୁକ୍ତକଣ୍ଠରେ କହି ପାରୁଁ ।

୩ । ପ୍ରସୂତିପରିଚର୍ଯ୍ୟା—ଡାକ୍ତର ରାମକୃଷ୍ଣ ସାହୁଙ୍କଦ୍ୱାରା ପ୍ରଣୀତ ଓ ପ୍ରକାଶିତ । ମୂଲ୍ୟ ଦୁଇ ଅଣା । ପୁସ୍ତକର ନାମରୁ ବିଷୟ ସୂଚିତ ହେଉଅଛି । ପ୍ରସୂତିପରିଚର୍ଯ୍ୟାରୂପ ଗୁରୁତର ଦାୟିତ୍ୱପୂର୍ଣ୍ଣ କାର୍ଯ୍ୟରେ ଆମ୍ଭମାନଙ୍କ ଦେଶର ଜନସାଧାରଣ ନିତାନ୍ତ ଅନଭିଜ୍ଞ । ଏହି ଅନଭିଜ୍ଞତାରୁ ଯେ ଅନେକ ସ୍ଥଳରେ ଅତି ବିଷମୟ ଫଳ ଉତ୍ପାଦିତ ହୁଏ, ଏହା ସମସ୍ତେ ସ୍ୱୀକାର କରିବେ । ଏ ସମ୍ବନ୍ଧରେ ଅବଶ୍ୟଜ୍ଞାତବ୍ୟ ପ୍ରୟୋଜନୀୟ ବିଷୟମାନ ସଂକ୍ଷେପରେ ଉଲ୍ଲେଖ କରି ଜନସାଧାରଣଙ୍କ ପାଇଁ ପ୍ରକାଶ କରି ରାମକୃଷ୍ଣ ବାବୁ ବିଶେଷ ଧନ୍ୟବାଦର ପାତ୍ର ହୋଇଅଛନ୍ତି । ଏପରି ପୁସ୍ତକର ବହୁଳ ପ୍ରଚାର ବାଞ୍ଛନୀୟ । ଭାଷାଟା ବିଶୁଦ୍ଧ ନୁହେ ।

୪ । ଶୋକାବହଗମନୀ—ଶ୍ରୀ ପାରେଶର ସେନାପତିଙ୍କଦ୍ୱାରା ବିରଚିତ । ମୂଲ୍ୟ ଏକ ଅଣା । ଏଥିରେ ଭିନ୍ନ ଭିନ୍ନ ଦେବ ଦେବୀଙ୍କ ସ୍ତୁତି-ଗୀତ ଭିନ୍ନ ଭିନ୍ନ ରାଗରାଗିଣୀରେ ପ୍ରଦତ୍ତ ହୋଇଅଛି । ରଚନା ଓ ଭାବ ପ୍ରାଚୀନ ଧରଣର । ସେ ଧରଣରେ ପକ୍ଷପାତୀ ବ୍ୟକ୍ତିମାନଙ୍କ ନିକଟରେ ଆଦରଣୀୟ ହୋଇ ପାରିବ ।

୫ । ଭକ୍ତି-ସଙ୍ଗୀତ—ଶ୍ରୀ ରା[illegible] ଦ୍ୱାରା ରଚିତ । ମୂଲ୍ୟ ଏକ [illegible] ଗୁଡ଼ିକ ପାଠ କରି ଆମ୍ଭେମାନେ [illegible] ଅଛୁଁ । ରଚନା ସରଳ ଓ [illegible] ମୟ । ସଙ୍ଗୀତ [illegible] ମାନ ଦିଆ [illegible] ଥିବାରୁ ଅଙ୍ଗ [illegible]

ସଙ୍ଗୀତଗୁଡ଼ିକରୁ ଭକ୍ତିରସର ଆସ୍ୱାଦ ପାଇ ପାଠକଗଣ ପରିତୋଷ ଲାଭ କରିବେ ।

୬ । ବସନ୍ତକୋକିଳ —ଶ୍ରୀ ନନ୍ଦକିଶୋର ବଳ ବି. ଏ. ପ୍ରଣୀତ । ମୂଲ୍ୟ ଚାରି ଅଣା । ଏହି ପୁସ୍ତକରେ ୩୫ ଗୋଟି କ୍ଷୁଦ୍ର କ୍ଷୁଦ୍ର କବିତା ଅଛି । ଯେଉଁମାନେ କବି ନନ୍ଦକିଶୋରଙ୍କର ସୁମଧୁର ପଦାବଳୀର ଆସ୍ୱାଦ ଅନୁଭବ କରିଅଛନ୍ତି, ସେମାନଙ୍କ ନିକଟରେ ଆଉ ତାହାର ନୂତନ ପରିଚୟ ଦେବାକୁ ହେବ ନାହିଁ । ଆମ୍ଭେମାନେ କେବଳ ଏତିକି କହି ପାରୁଁ ଯେ ବସନ୍ତ-କୋକିଳରେ କବିଙ୍କର ଶକ୍ତି ଉଜ୍ଜ୍ୱଳତରରୂପେ ପ୍ରକାଶ ପାଇଅଛି । କବିଙ୍କର ପ୍ରଣୟ-ଗୀତଗୁଡ଼ିକ ଅତି ମଧୁର, ଅତି ସରଳ ଓ ସୁରୁଚିସମ୍ପନ୍ନ, ପାଠକ ପଦେ ପଦେ ତାହାର ପରିଚୟ ପାଇବେ । 'ନବ ଶତାବ୍ଦିର ଆମନ୍ତ୍ରଣ' 'ଶ୍ରୀକ୍ଷେତ୍ର' 'ଉତ୍କଳ-ଲକ୍ଷ୍ମୀ' ସ୍ୱଦେଶପ୍ରେମିକ ଉନ୍ନତିପିପାସୁ କବିଙ୍କର ହୃଦୟୋଚ୍ଛ୍ୱାସ । 'କେମାଦେଈ' କାଣ୍ଡଜ୍ଞାନରହିତ ସାମାଜିକମାନଙ୍କ ଉପରେ ତୀବ୍ର ଭର୍ତ୍ସନା । 'ସୀତା', 'ପାର୍ବତୀ,' 'ଶକୁନ୍ତଳା' ଚିତ୍ରଗୁଡ଼ିକ ହୃଦୟଗ୍ରାହୀ । ସ୍ଥଳବିଶେଷରୁ ଦୁଇ ଚାରି ପଂକ୍ତି ଉଦ୍ଧୃତ କରି ପାଠକମାନଙ୍କର ରସଭଙ୍ଗ କରିବାର ଇଚ୍ଛା ଆମ୍ଭମାନଙ୍କର ନାହିଁ । ଖଣ୍ଡ କବିତାରେ କବି ବେଶ କୃତିତ୍ୱ ଦେଖାଇଅଛନ୍ତି । ବର୍ତ୍ତମାନ କିଛି ନୂତନ ଗଢ଼ିବାର ଚେଷ୍ଟା କରନ୍ତୁ ଆମ୍ଭ-ମାନଙ୍କର ଏହି ଅନୁରୋଧ ।

୭ । ...ଦର୍ପଦଳନ ନାଟକ—ଶ୍ରୀ ପଦ୍ମନାଭ ...ଙ୍କଦ୍ୱାରା ପ୍ରଣୀତ । ବାଣକନ୍ୟା ...ତ ପୌରାଣିକ ବୃତ୍ତାନ୍ତ ଯେନ ...-ଖଣ୍ଡି ରଚିତ ହୋଇଅଛି । ...ରେ ସର୍ବଜନବିଦିତ । ପୁନଶ୍ଚ ...ରେ ଅନାବଶ୍ୟକ । ସ୍ଥାନେ ...ଥାର ସମାବେଶ ... ହୋଇ ... ନିର୍ଦ୍ଦୋଷ ହୋଇ ନାହିଁ । ଗ୍ରନ୍ଥକାରଙ୍କର ସଙ୍ଗୀତ ପ୍ରହ୍ଲାଦ ନାଟକର ସମାଲୋଚନାରେ ଆମ୍ଭେମାନେ ଯେଉଁ ସବୁ ଦୋଷର ଉଲ୍ଲେଖ କରିଅଛୁଁ, ଏ ପୁସ୍ତକରେ ମଧ୍ୟ ସେହି ସମସ୍ତ ଦୋଷ ଲକ୍ଷିତ ହେଲା । ସେ ଗୁଡ଼ିକର ପୁନରୁଲ୍ଲେଖ ଅପ୍ରୟୋଜନ । ତେବେ ଏଥିରେ ଦୋଷର ମାତ୍ରା ଖୁବ୍ ଅଳ୍ପ ଆଉ ଏହାର ଭାଷା ପୂର୍ବ ପୁସ୍ତକର ଭାଷା ଅପେକ୍ଷା ସୁନ୍ଦର ହୋଇଅଛି ।

୮ । କଥାଲହରୀ (ପ୍ରଥମ ଭାଗ)—ଶ୍ରୀ ସଦାନନ୍ଦ ଦାସ ବି. ଏ. ଙ୍କଦ୍ୱାରା ପ୍ରକାଶିତ । ମୂଲ୍ୟ ଆଠ ଅଣା । ବାଳକବାଳିକାଙ୍କର ପରମାଦରଣୀୟ ଦେଶପ୍ରଚଳିତ କାହାଣୀଗୁଡ଼ିକ ପ୍ରାୟ ବିଲୁପ୍ତ ହୋଇ ଆସୁଥିଲା । ଆମ୍ଭମାନଙ୍କର ସ୍ନେହାସ୍ପଦ ବନ୍ଧୁ ଶ୍ରୀଯୁକ୍ତ ଗୋପାଳ ଚନ୍ଦ୍ର ପ୍ରହରାଜ ବି. ଏ. ସେଗୁଡ଼ିକର ଉଦ୍ଧାରସାଧନ ଓ ରକ୍ଷା ନିମିତ୍ତ ପ୍ରଥମେ ଯତ୍ନବାନ୍ ହୋଇଥିଲେ । ଏ କ୍ଷେତ୍ରରେ କେବଳ ଗଳ୍ପଗୁଡ଼ିକ କୌଣସି ପ୍ରକାରେ ଲିପିବଦ୍ଧ କରି ରଖିଲେ ଚଳିବ ନାହିଁ, କଥିତ ଭାଷାର ଅକୃତ୍ରିମ ମାଧୁରୀ ଓ ଶିଶୁଜନବୋଧ୍ୟ ସରଳତା ରକ୍ଷା କରିବା ନିତାନ୍ତ ଆବଶ୍ୟକ । ସେ ବିଷୟରେ ଗୋପାଳ ବାବୁ କେତେଦୂର କୃତକାର୍ଯ୍ୟ ହୋଇ ଅଛନ୍ତି, ତାହା 'ଉତ୍କଳସାହିତ୍ୟ'ର ପାଠକ-ମାନଙ୍କ ନିକଟରେ ଅବିଦିତ ନାହିଁ । ସମାଲୋଚ୍ୟ ପୁସ୍ତକଖଣ୍ଡି ଜଣେ ତରୁଣ ମହିଳାଙ୍କଦ୍ୱାରା ଲିଖିତ । ଉପଯୁକ୍ତ କ୍ଷେତ୍ରରେ ଉପଯୁକ୍ତ ବ୍ୟକ୍ତି ପ୍ରବେଶ କରିଥିବାର ଦେଖି ଆମ୍ଭେମାନେ ଅତ୍ୟନ୍ତ ଆନନ୍ଦ ଲାଭ କରିଅଛୁଁ । ଏ ପୁସ୍ତକରେ ସାନ ବଡ଼ ପଚିଶଟି କାହାଣୀ ଅଛି । କାହାଣୀର ବିଷୟ ସମ୍ବନ୍ଧରେ କୌଣସି କଥା କହିବା ଅନାବଶ୍ୟକ । ବିଷୟର ଉପାଦେୟତା ସମ୍ବନ୍ଧରେ ସ୍ୱୀୟ ମତ ଆମ୍ଭେମାନେ ବହୁପୂର୍ବରୁ ବ୍ୟକ୍ତ କରିଅଛୁଁ । କେବଳ ଭାଷା ଉପଯୁକ୍ତ ହୋଇଅଛି କି ନାହିଁ, ଏତିକି ଦେଖିବା ଆବଶ୍ୟକ । ପୁସ୍ତକରେ ଏ ବିଷୟରେ ଅନେକଗୁଡ଼ାଏ ତ୍ରୁଟି ଲକ୍ଷିତ ହେଲା । ଦୃଷ୍ଟାନ୍ତ

ସ୍ୱରୂପ ଅମ୍ଭେମାନେ ଦୁଇ ଗୋଟିଏ ଉଲ୍ଲେଖ କରୁଅଛୁଁ । 'ଦଅନ୍ତଠାରେ (ଠଁ) ଦଣ୍ଡବଜନରେ' ତଥାରେ (ମିଛରେ) କାହିଁକି ସେମନ୍ତ (ସେମିତି) କହୁଛ,' 'ତୁମେ ସବୁ କେମନ୍ତ (କେମିତି) ଅନ୍ୟପ୍ରକାର (ଆଉ ଭଳି) କହୁଛ ?' 'ଏହା (ସ୍ତ୍ରୀ) କହି' 'ଏଣେ ପୁହ୍ୟାସ୍ତ୍ରୀ (ଗନ୍ଧୁଣୀ) ପାଖକୁ କହି ପଠାଇଲା ଅଟ୍ଟ ବେଶି କରି ଗୋଟିଏ ବାସ (ଉହାବଡ଼ା) କରିବ, ଭଲ ଭଲ କରି ଛରକାସ୍ତ୍ରୀ (ଡଥଣ) କରିବ;' 'ଭାଗୀ ଉସ୍ତ (ଡ଼ର) ମାଡୁଛି,' ଇତ୍ୟାଦି । ଏହା ଛଡ଼ା 'ହେବ' 'ଦେବ' 'ପଳାଇଲ' ଇତ୍ୟାଦି କ୍ରିୟା ପ୍ରୟୋଗଦ୍ୱାରା ମଧ୍ୟ ସେରେଇ ଭାଷାର ମାଧୁରୀ କେତେକ ପରିମାଣରେ ନଷ୍ଟ ହୋଇଅଛି । ଅବ-ମିଶ୍ର ସେରେଇ କଥାରେ ଲେଖିବାକୁ ବସି ମଧ୍ୟରେ ମଧ୍ୟରେ ସାଧୁ ଶବ୍ଦ ବ୍ୟବହାର କରିବାଟା ଭଲ ନୁହେଁ । 'ଗାଁ' କଥା ଥାଉଁ ଥାଉଁ 'ଗ୍ରାମ' କାହିଁକି ? ଏ ସବୁ ତ୍ରୁଟି କାହାର ? ଲେଖିକାଙ୍କର ? ନା, ପ୍ରକାଶକ ସଂଶୋଧନ କରିବାକୁ ବସି ଏପରି କରି ପକାଇଅଛନ୍ତି । ଯାହା ହେଉ, ଏସବୁ ତ୍ରୁଟି ସତ୍ତ୍ୱେ ଭାଷାର ମାଧୁରୀ ଯଥେଷ୍ଟ ଅଛି । ତେବେ ଏଗୁଡ଼ିକ ନ ଥିଲେ ଆହୁରି ଭଲ ହୋଇଥାନ୍ତା । ଆଶାକରୁଁ ଭବିଷ୍ୟତରେ ପ୍ରକାଶକ ମହାଶୟ ଏ ସବୁ ବିଷୟ ପ୍ରତି ଦୃଷ୍ଟି ଦେବେ ।

୯ । ଧ୍ରୁବ ନାଟକ—ଶ୍ରୀ ଶ୍ରୀ ଶ୍ରୀ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବଙ୍କ କର୍ତ୍ତୃକ ପ୍ରଣୀତ । ପାରଳାର ରାଜଭ୍ରାତା ଶ୍ରୀଯୁକ୍ତ ପଦ୍ମନାଭ ନାରାୟଣ ଦେବ ମହୋଦୟ ନାନାଭାବରେ ସାହିତ୍ୟ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଅଛନ୍ତି । ତାଙ୍କର ଅଗ୍ରଜ ପାରଳାର ବର୍ତ୍ତମାନ ରାଜା ମହୋଦୟ ହେ କ୍ଷେତ୍ରରେ ପ୍ରବେଶ କରିଥିବାର ଦେଖି ଅମ୍ଭେ-ମାନେ ଅତ୍ୟନ୍ତ ଆନନ୍ଦ ଲାଭ କରିଅଛୁଁ । ଅନଙ୍ଗଙ୍କର ସାଦର ଓ ସାନୁନୟ ଆହ୍ୱାନ ବିଫଳ ହୋଇ ନାହିଁ । ରାଜା ମହୋଦୟ ପ୍ରସିଦ୍ଧ ଭକ୍ତଶିଶୁ ଧ୍ରୁବଙ୍କ ଉପାଖ୍ୟାନ ଅବଲମ୍ବନ କରି ଏ ନାଟକ ଖଣ୍ଡି ପ୍ରଣୟନ କରିଅଛନ୍ତି । ପୌରାଣିକ ଉପା-ଖ୍ୟାନ ନେଇ କାବ୍ୟ ବା ନାଟକ ପ୍ରଣୟନ କରିବାକୁ ହେଲେ ସେ ଠିକ ହୁବହୁ ଅନୁସରଣ କରିବାକୁ ହେବ ଏପରି କୌଣସି କଥା ନାହିଁ । ଭବେର ନିର୍ଦ୍ଦିଷ୍ଟ ସାଧନ ନିମନ୍ତେ ଲେଖକ ନିଜ ଅଭିପ୍ରାୟାନୁଯାୟୀ ଯୋଗ ବିୟୋଗ କରିପାରନ୍ତି । ସକଳ ଦେଶର ଓ ସକଳ ଯୁଗର କବି ଓ ନାଟକ-କାରମାନେ ଏହା କରିଅଛନ୍ତି । ସମାଲୋଚ୍ୟ ନାଟକରେ ଚରିତ୍ରଗୁଡ଼ିକରେ ବିଶେଷତ୍ୱ ଅଧିକ ନ ଥିଲେହେଁ ସବୁଗୁଡ଼ିକ ସଙ୍ଗତଭାବରେ ଚିତ୍ରିତ ହୋଇଅଛି । ଭାଷାରେ ପ୍ରାଦେଶିକତା ଅତ୍ୟନ୍ତ ଅଧିକ । 'କୋଅଡ଼େ', 'କୋହିକ' 'ଜାଣି ଦେଉ ଅଛନ୍ତି' 'ତୁ ଗଲେ' 'ବାବୁ ମୋ କଥା ଶୁଣେ' 'ନ ଜାଣି ଯାହା ପାରୁ ଛାଡ଼ା ବୋଲି ଦେନ୍ତି' 'ବନେ ହେନ୍ତି' 'ତୋ ଅଡ଼େ ଦେଖିବେ ନାହିଁ' 'ତୁ ଦେଖିଲେ ହାକୁଛ' 'କେ କ ଦେଖୁଣ' 'କେ ଦେଖିବେ ନାହିଁଟି' 'ହାକୁଛି ପରାଗ' 'ସୁରୁଚି କହିଲା ପଦ ତୁ ବା ମୁ ପୁତ୍ରକନୁରେ ଉପଧ୍ୟା କରି ନାହିଁ' 'ଯାଉମାତ୍ର ମୂର୍ତ୍ତି ମାରି ଶୋଉଛି' 'ଅଭିନସ୍ତୁର କର ନା' ଏହିପରି ପ୍ରୟୋଗ ବହୁଲ ଦୃଷ୍ଟ ହେଲା । ଆଶାକରୁଁ ଗ୍ରନ୍ଥକାର ମହୋଦୟ ଭବିଷ୍ୟତରେ ଏସବୁ ତ୍ରୁଟି ପରିହାର କରିବାକୁ ଯତ୍ନ କରିବେ ।

୧୦ । ବସନ୍ତ-ଗାଥା—ଶ୍ରୀ ମଧୁସୂଦନ ରାଓଙ୍କ ପ୍ରଣୀତ । ଏ ପୁସ୍ତକରେ ବାଇଶଟି ଚତୁର୍ଦ୍ଦଶପଦୀ କବିତା ପ୍ରଦତ୍ତ ହୋଇଅଛି । ରାଓ ମହାଶୟଙ୍କ କବିତାର ନୂତନ ପରିଚୟ କଣ ଦେବୁଁ ? ତାଙ୍କ କବିତାର ସୁମଧୁର ଆସ୍ୱାଦ ସମ୍ଭୋଗ କ୍ର

ଏପରି ସାହିତ୍ୟରସିକ କିଏ

ଅଛନ୍ତି ? ରାଓ କବିଙ୍କର ଯାହା

ଏ ପୁସ୍ତକାନ୍ତର୍ଗତ କବିତାଗୁଡ଼ିକର୍

ପ୍ରକାଶିତ ହୋଇଅଛି । ସେ

କରିବାରେ କ୍

ଭାଷାର ସ

କବି ହୁଇ

ନୈକଟ୍ଟାରିଣୀ ପ୍ରତି, ଯୌବନର ସ୍ୱପ୍ନ) ଗାଠ ଅଛନ୍ତି । ସେଗୁଡ଼ିକ କି ଅପାର୍ଥିବଭାବପୂର୍ଣ୍ଣ, କେତେ ଅନାବିଳ, ତା ପାଠକ ସ୍ୱୟଂ ଅନୁଭବ କରିବେ । 'ବୈଷ୍ଣବେ' କବିତାଟି ସମଗ୍ରର ସାନ୍ତ୍ୱନାପୂର୍ଣ୍ଣ । କବିଙ୍କ ହୃଦୟ କି ସ୍ୱର୍ଗୀୟ କରୁଣା-ଧାରରେ ପ୍ଳାବିତ, 'ପତିତା ରମଣୀ ପ୍ରତି' କବିତାଟିପୁ ପାଠ କଲେ ସହଜରେ ବୁଝା ଯିବ ।

ଏକ ସ୍ଥଳରେ—

ଦେଖା ହୋଇ ହେମନ୍ତେ ତୁ ହୋଇଲୁ ସନ୍ନ୍ୟାସୀ,
ଯୋଡ଼ିଲା ଚୋ ଶୁଭ୍ର ପ୍ରାଣେ ଘୋର ପାପ-ମସୀ ।

ଅନ୍ୟ ସ୍ଥଳରେ—

କେ ସହିବ ସହିବୁଁ ଲୋକେ ଗର୍ବ ଅବଜ୍ଞାରେ,
ମନ୍ତୁ ନେ ଭଗିନି ମୁହିଁ ତୋ ଦୁଃଖେ ଢାଳିବି,
ଅହତ ମୋ ପ୍ରାଣ ତୋର ମର୍ମ-ହାହାକାରେ,
ଜାଗଇ ବଢ଼ିଲେ ମୋର ବ୍ୟଥିତ ଅନ୍ତର ।

ସମ୍ପୂର୍ଣ୍ଣ ନୈବଭୂମିରେ ଅବେଦନ ନ ହେଲେ ମାନବପ୍ରାଣରେ ଏପରି ଭାବ ଜାତ ହୁଏ ନାହିଁ । 'କଇନାକି' ଛବି କି ମନୋମୁଗ୍ଧକର, କି ତନ୍ମୟ । ତାହାର ଆସ୍ୱାଦ 'ଉତ୍କଳ ସାହିତ୍ୟର' ପାଠକବର୍ଗ ପାଇଅଛନ୍ତି । ଅଧିକ କହିବା ନିଷ୍ପ୍ରୟୋଜନ । ଦୁଇ ଚାରୋଟିର ନାମୋଲ୍ଲେଖ କରିବାର କାରଣ ଏହି ଯେ ଏଗୁଡ଼ିକରେ ବିଶେଷତ୍ୱ ସମଧିକ ପରିସ୍ଫୁଟ । ସବୁଗୁଡ଼ିକରେ ପାଠକ ବାଂଧନ୍ତ ଙ୍ଗୀତର ସଂଯୋଗ କରି ମୋହିତ ହେବେ, ଏଥିରେ ସନ୍ଦେହ ନାହିଁ । ତବେ ଶ୍ରୀ ମଧୁସୂଦନ ଉତ୍କଳ ପ୍ରଦେଶରେ ଅନନ୍ୟସାଧାରଣ ଶକ୍ତିମାନ କବି—ପ୍ରଚୁର ଭାବ-ସମ୍ପଦର ଅଧିକାରୀ ହୋଇ ଉତ୍କଳସାହିତ୍ୟ ପ୍ରତି ଯେପରି କୃପଣତା କରି-ଅଛନ୍ତି, ତାହା ଭାବିଲେ ଗଭୀର ଦୁଃଖ ଉପସ୍ଥିତ ହୁଏ । ଏହା କେବଳ ଏ ହତଭାଗ୍ୟ ଦେଶର ଜଳ ବାୟୁର ଦୋଷ, ଆମ୍ଭେମାନେ ମନକୁ ଏହି ପ୍ରବୋଧ ଦେଇ ନିରସ୍ତ ହେଲୁଁ ।

୧୧ । ରତ୍ନମାଳିକା ବା ଭାଗବତ ବର୍ଣ୍ଣନା (ଭକ୍ତିଗ୍ରନ୍ଥ)—କୃଷ୍ଣଦାସ କୃତ । ଶ୍ରୀ ବ୍ରହ୍ମାନନ୍ଦ ଷଡ଼ଙ୍ଗୀ ଏବଂ ଶ୍ରୀ ନାଥ ମହାପାତ୍ରଙ୍କଦ୍ୱାରା ପ୍ରକାଶିତ । ମୂଲ୍ୟ ଚାରି ପଇସା । ଏଥିରେ ଶ୍ରୀମଦ୍ଭାଗବତର ସଂକ୍ଷିପ୍ତ ପରିଚୟ ପ୍ରଦତ୍ତ ହୋଇ ଅଛି । ରଚନା ପ୍ରାଞ୍ଜଳ । ସ୍ଥାନେ ସ୍ଥାନେ ଅସଙ୍ଗତ ଓ ଅପୂର୍ଣ୍ଣତା ଲକ୍ଷିତ ହେଲା । ଏହା କବିଙ୍କର ତ୍ରୁଟି ବୋଲି ବୋଧ ହେଉ ନାହିଁ । ଏ ଦେଶର 'ଲେଖକକାର-ଦୋଷରେ' ଅନେକ ପ୍ରାଚୀନ ପୋଥିର ଏହିପରି ଦଶା ଘଟିଅଛି ! ଏପରି ପୋଥିମାନ ପ୍ରକାଶ କରିବା ବେଳେ ଦୁଇ ଚାରି ଖଣ୍ଡି ପୋଥିରୁ ସୁବିବେଚନାପୂର୍ବକ ପାଠ ମିଳାଇବା ଉଚିତ । ଦୁଃଖର ବିଷୟ ଏ ଦେଶରେ ସେ ଚେଷ୍ଟାର ବଡ଼ ଅଭାବ ।

:0:

# ନୂତନ ଆୟୋଜନ ।

ସର୍ବସାଧାରଣଙ୍କ ଅବଗତି ନିମିତ୍ତ ପ୍ରକାଶ କରୁଅଛୁ ଯେ ଆମ୍ଭେ ସନ ୧୮୯୬ ମସିହାରୁ ଏହି ସହରର ବାଲୁବଜାରରେ ଡାକ୍ତରୀ ଔଷଧାଳୟ ସ୍ଥାପନ କରି ସୁଖ୍ୟାତି ସହିତ ଚିକିତ୍ସା ବ୍ୟବସାୟ ଚଳାଇ ଆସୁଅଛୁଁ । ଆମ୍ଭ ଔଷଧାଳୟରେ ସର୍ବଦା ନୂତନ ଔଷଧ ଡାକ୍ତରୀ ଅସ୍ତ୍ର ବିକ୍ରୟାର୍ଥ ପ୍ରସ୍ତୁତ ଥାଏ, ଅଥଚ ଆମ୍ଭେ ସେ ସମସ୍ତ ଆଶାନୁରୂପ ସୁଲଭ ବିକ୍ରୟ ମୂଲ୍ୟରେ କରିଥାଉଁ । ଯେଉଁମାନେ ଆମ୍ଭ ସହିତ କାରବାର କରିଅଛନ୍ତି ଓ କରୁଅଛନ୍ତି, ସେମାନେ ଆମ୍ଭର ବ୍ୟବହାର କଥା ଉତ୍ତମ-ରୂପେ ଜାଣନ୍ତି । ବୃଥା ବାଗାଡମ୍ବରରେ କିଛି ପ୍ରୟୋଜନ ନାହିଁ ।

ସମ୍ପ୍ରତି ଆମ୍ଭର ହିତାକାଂକ୍ଷୀ କେତେକ ଭଦ୍ରବ୍ୟକ୍ତିଙ୍କ ଅନୁରୋଧରେ ସର୍ବସାଧାରଣଙ୍କୁ ସୁଲଭ ମୂଲ୍ୟରେ ଖାଣ୍ଟି ନୂତନ [illegible] ମାଣରେ ଯୋଗାଇବା ଅଭିପ୍ରାୟରେ ବ୍ୟବସାୟର ପ୍ରସାର ବଢାଇ ଅଛୁଁ । ପୂର୍ବାପେକ୍ଷା ଅଧିକ ପରିମାଣରେ ସର୍ବପ୍ରକାର ପ୍ରୟୋଜନୀୟ ଔଷଧ ଓ ଡାକ୍ତରୀ ଅସ୍ତ୍ର ସର୍ବଦା ପ୍ରସ୍ତୁତ ରଖିବାର ବିହିତ ବନ୍ଦୋବସ୍ତ କରିଅଛୁଁ । ଆମ୍ଭ ସହିତ କାରବାର କଲେ କେହି କୌଣସି ପ୍ରକାରେ ପ୍ରତାରିତ ହେବେ ନାହିଁ । ଆମ୍ଭେ ଅନ୍ୟ ବ୍ୟକ୍ତିଠାରେ ଭାର ଦେଇ ନିଶ୍ଚିନ୍ତ ନ ରହି ନିଜେ ସମସ୍ତ ବିଷୟ ପୁଙ୍ଖାନୁପୁଙ୍ଖରୂପେ ଦେଖି ବ୍ୟବସ୍ଥା କରି ଥାଉଁ । ଇଚ୍ଛା କଲେ ବହୁ ମାନ୍ୟଗଣ୍ୟ ବ୍ୟକ୍ତିଙ୍କଠାରୁ ପ୍ରଶଂସାପତ୍ର ସଂଗ୍ରହ କରି ସର୍ବସାଧାରଣଙ୍କ ଗୋଚରାର୍ଥ ପ୍ରକାଶ କରିପାରୁଁ । କିନ୍ତୁ ସେଥିରେ ଫଳ କଣ ? କାର୍ଯ୍ୟକାଳରେ ଭଲ ମନ୍ଦ ସବୁ ଆପେ ପ୍ରକାଶ ପାଏ । ଆମ୍ଭେ ଆଉ ଅଧିକ କିଛି ନ କହି ସର୍ବସାଧାରଣଙ୍କୁ ପ୍ରାର୍ଥନା କରୁଅଛୁଁ, ଯେ ନିଜେ ପରୀକ୍ଷା କରି ସତ୍ୟ ମିଥ୍ୟା ନିର୍ଣ୍ଣୟ କରନ୍ତୁ ।

ମଫସଲବାସିମାନଙ୍କଠାରୁ ଆମ୍ଭେ ଭି: ପି: ପାର୍ଶେଲରେ ଔଷଧାଦି ପଠାଇ ଥାଉଁ । ମାତ୍ର ଅପରିଚିତ ସ୍ଥଳମାନଙ୍କରୁ ଚତୁର୍ଥାଂଶ ମୂଲ୍ୟ ଅଗ୍ରିମ ନ ପାଇଲେ ପଠାଇବାର ନିୟମ ନାହିଁ ।

ଶ୍ରୀ ନରେନ୍ଦ୍ରନାଥ ଘୋଷ, ଜି, ଏଲ୍, ଏମ୍, ଏସ୍,

ସ୍ୱତ୍ୱାଧିକାରୀ

ଘୋଷ ଏଣ୍ଡ ବ୍ରଦର୍ସ ଡ୍ରଗିଷ୍ଟ ହଲ,

କଟକ